# ଓଡ଼ିଆ ତତ୍ତ୍ୱ ସାହିତ୍ୟ



ସଂକଳନ ଓ ସଂପାଦନା
ଯତୀନ୍ଦ୍ର ମୋହନ ମହାନ୍ତି

ଓଡ଼ିଆ ତତ୍ତ୍ୱ ସାହିତ୍ୟ

ସଂକଳନ ଓ ସଂପାଦନା : ଯତୀନ୍ଦ୍ର ମୋହନ ମହାନ୍ତି

ପ୍ରକାଶକ : ବିଦ୍ୟା
୧୫୭୩, ମଧୁବନ ସରଣୀ, ଭକ୍ତମଧୁ ନଗର,
ଭୁବନେଶ୍ୱର -୭୫୧୦୩୦
ଫୋନ୍ : (୦୬୭୪) ୨୩୫୦୨୮୯/୨୩୫୦୫୧୧

ଅକ୍ଷର : ଶାରଳା ଗ୍ରାଫିକ୍ସ,
ନିକୋପାର୍କ ରୋଡ, ଭୁବନେଶ୍ୱର

ମୁଦ୍ରଣ : କ୍ରିଏଟିଭ୍ ଅଫସେଟ୍, ନୂଆପଲ୍ଲୀ, ଭୁବନେଶ୍ୱର-୯

ବନ୍ଧେଇ : ସ୍ୱାଧୀନ ବାଇଣ୍ଡରସ୍, କଟକ

ସଂସ୍କରଣ : ୧ମ ସଂସ୍କରଣ-୨୦୦୭ (ସେପ୍ଟେମ୍ବର)

ମୂଲ୍ୟ : ୩୦୦ ଟଙ୍କା

**Odia Tatwa Sahitya**
(Anthology of Oriya Philosophico Religious Literature)

Compiled and Edited by :
**Jatindra Mohan Mohanty**

Publisher : **Vidya**
1573, Madhuban Sarani,
Bhaktamadhu Nagar,
Bhubaneswar-751030
Ph.(0674)2350289 / 2350511

D.T.P : **Sarala Graphics,**
Nicco Park Road,
Bhubaneswar-12

Printed at : **Creative Offset,**
Nayapalli, Bhubaneswar

1st Edition-**2007** (September)

Price : **Rs 300.00**



**ISBN : 81- 903438-4-x**

# ସୂଚୀ

# ସ୍ୱୀକୃତି


୧. ବ୍ରହ୍ମାଣ୍ଡ ଭୂଗୋଳ, ବଳରାମ ଦାସ; ସଂପାଦନା ଡକ୍ଟର କୃଷ୍ଣ ଚରଣ ସାହୁ; କ୍ୱାଲିଟି, କଟକ, ୧୯୮୫ ।

୨. ଦାରୁବ୍ରହ୍ମ ଗୀତା, ଜଗନ୍ନାଥ ଦାସ; 'ଜଗନ୍ନାଥଙ୍କ ରଚନାବଳୀ', ସଂପାଦନା, ଡଃ ବଂଶୀଧର ଷଡଙ୍ଗୀ ଓ ଡଃ. କୁଂଜବିହାରୀ ମହାନ୍ତି; ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୨୦୦୦ ।

୩. ଚାରିଖାନି ବା ଶବ୍ଦ ବ୍ରହ୍ମ ସଂହିତା, ଅଚ୍ୟୁତାନନ୍ଦ ଦାସ; ସଂପାଦନା ଡକ୍ଟର କୃଷ୍ଣଚରଣ ସାହୁ; ବୁକ୍‌ସ ଏଣ୍ଡ ବୁକ୍‌ସ, କଟକ, ୧୯୭୯ ।

୪. ଶୂନ୍ୟ ସଂହିତା, ଅଚ୍ୟୁତାନନ୍ଦ ଦାସ; 'ଅଚ୍ୟୁତାନନ୍ଦ ରଚନାବଳୀ: ସଂହିତା ଖଣ୍ଡ', ସଂପାଦନା ଡକ୍ଟର ରତ୍ନାକର ଚଇନି; ଅଚ୍ୟୁତାନନ୍ଦ ସ୍ମୃତି ସଂସଦ, ନେମାଳ (କଟକ), ୧୯୯୨ ।

୫. ଗୋବିନ୍ଦଚନ୍ଦ୍ର, ଯଶୋବନ୍ତ ଦାସ; 'ଯଶୋବନ୍ତ ଦାସ ଓ ଗୋବିନ୍ଦଚନ୍ଦ୍ର', ସଂପାଦନା ଡକ୍ଟର କୃଷ୍ଣ ଚରଣ ସାହୁ; ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୯୨ ।

୬. ପ୍ରେମଭକ୍ତି ବ୍ରହ୍ମ ଗୀତା , ଯଶୋବନ୍ତ ଦାସ; 'ପଞ୍ଚସଖା ଯଶୋବନ୍ତ ରଚନାବଳୀ', ସଂପାଦନା ଡକ୍ଟର ଗୌରାଙ୍ଗ ଚରଣ ରାୟ; ଆର୍ଯ୍ୟ ପ୍ରକାଶନ, କଟକ, ୧୯୯୮ ।

୭. ହେତୁ ଉଦୟ ଭାଗବତ, ଶିଶୁ ଅନନ୍ତ ଦାସ; ସଂପାଦନା ଡକ୍ଟର ନଗେନ୍ଦ୍ରନାଥ ପ୍ରଧାନ; ସିଦ୍ଧ ବାରଙ୍ଗ ଉନ୍ନୟନ କମିଟି, ପୂର୍ଣ୍ଣଗ୍ରାମ (ଜଗତସିଂହପୁର), ୧୯୭୭ ।

୮. ବ୍ରହ୍ମକୁଣ୍ଡଳୀ ଗୀତା, ସିଦ୍ଧ ବାରଙ୍ଗ; ସଂପାଦନା ଡକ୍ଟର ବଂଶୀଧର ମହାନ୍ତି; ସିଦ୍ଧ ବାରଙ୍ଗ ଉନ୍ନୟନ କମିଟି, ପୂର୍ଣ୍ଣଗ୍ରାମ, ୧୯୭୯ ।

୯. ମହୀମଣ୍ଡଳ ଗୀତା, ଅରକ୍ଷିତ ଦାସ; ସଂପାଦନା ନାହିଁ; ଧର୍ମଗ୍ରନ୍ଥ ଷ୍ଟୋର, କଟକ, ପ୍ରକାଶ ବର୍ଷ ନାହିଁ ।

୧୦. ଅନନ୍ତ ଗୁପ୍ତ ଟୀକା, ହାଡ଼ିଦାସ; 'ହାଡ଼ିଦାସ ଗ୍ରନ୍ଥାବଳୀ : ୧ମ ଖଣ୍ଡ', ସଂପାଦନା ଡକ୍ଟର ବୈଷ୍ଣବଚରଣ ସାମଲ; ଶ୍ରୀ ଶ୍ରୀ ଅନନ୍ତ ଗୋପାଳ ପୀଠ, ଛତିଆ (ଯାଜପୁର), ୨୦୦୩

୧୧. ବ୍ରହ୍ମ ନିରୂପଣ ଗୀତା , ଭୀମ ଭୋଇ; 'ଭୀମ ଭୋଇ ଗ୍ରନ୍ଥାବଳୀ', ସଂପାଦନା ଶ୍ରୀ କରୁଣାକର ସାହୁ; ଧର୍ମଗ୍ରନ୍ଥ ଷ୍ଟୋର, କଟକ, ୧୯୯୨ ।

# ଉତ୍ସର୍ଗ

ପଣ୍ଡିତ ଶ୍ରୀ ଦୁଃଖୀଶ୍ୟାମ ପଟ୍ଟନାୟକଙ୍କୁ
ଶାସ୍ତ୍ରଜ୍ଞ, ଧର୍ମଜ୍ଞ, ସଂସ୍କୃତଭାଷା-ପ୍ରବୀଣ
ସାହିତ୍ୟାନୁରାଗୀ
ବନ୍ଧୁ ।

## କୃତଜ୍ଞତା

ଓଡ଼ିଶା ଫାଉଣ୍ଡେସନ୍, ଡକ୍ଟର ଦେବୀପ୍ରସାଦ ମିଶ୍ର,
ଶ୍ରୀମତୀ ସରୋଜିନୀ ମିଶ୍ର ।
ଡକ୍ଟର ବିଷ୍ଣୁପ୍ରସାଦ ମହାପାତ୍ର ।
ଶ୍ରୀ ସୁବ୍ରତ ଷେଣ୍ଢ ।

# ଭୂମିକା

ଓଡ଼ିଆ ତତ୍ତ୍ୱ ସାହିତ୍ୟ ଓଡ଼ିଆ ଭକ୍ତି ସାହିତ୍ୟର ଗୋଟିଏ ମୁଖ୍ୟ ଅଂଶ, ଓ ଷୋଡ଼ଶ ଶତାବ୍ଦୀ ପଞ୍ଚସଖାଙ୍କ ସାହିତ୍ୟରେ ଏହା ବିଶେଷ ଭାବରେ ପ୍ରସାରିତ ହୋଇଥିଲା । ତେବେ ପଞ୍ଚସଖାଙ୍କ ଲେଖାଲେଖିରେ ତତ୍ତ୍ୱ ସାହିତ୍ୟର ଯେଉଁ ପରମ୍ପରା ଆରମ୍ଭ ହେଲା ପରବର୍ତ୍ତୀ ସମୟରେ ମଧ ଭକ୍ତ କବିମାନେ ସେହି ପରମ୍ପରା ଦ୍ୱାରା ପ୍ରଭାବିତ ହୋଇ ନିଜ ନିଜ ଲେଖାରେ ତତ୍ତ୍ୱ ସାହିତ୍ୟର ଅନୁଶୀଳନ ଓ ଅଭିବୃଦ୍ଧି କରିଛନ୍ତି, ଯାହାର ପ୍ରକୃଷ୍ଟ ଉଦାହାରଣ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧର ବିଶିଷ୍ଟ ଭକ୍ତ କବି ଭୀମ ଭୋଇ । ଏହିସବୁ ଭକ୍ତ କବିମାନେ ପ୍ରତ୍ୟେକ ଉଚ୍ଚକୋଟୀର ଭଜନ ଓ ଜଣାଣ ପ୍ରଭୃତି ଲେଖିଛନ୍ତି ଯେଉଁଥିପାଇଁ ସେମାନେ ସମଧିକ ପ୍ରସିଦ୍ଧ । ତତ୍ତ୍ୱ ସାହିତ୍ୟ ଭଜନ ବା ଜଣାଣ ସ୍ତରର ନୁହେଁ, ଓ ଭଜନ ଓ ଜଣାଣର ସଂଗଠନ ଠାରୁ ଏହାର ସଂଗଠନ ଭିନ୍ନ । ଭଜନ ଓ ଜଣାଣରେ ଛୋଟ ଛୋଟ କବିତାର ସଂଗଠନ, ଓ ସେସବୁ ମୁଖ୍ୟତଃ ବ୍ୟକ୍ତିମୂଳକ ଭଗବତ୍ ଅନୁଭୂତିର ପ୍ରକାଶ । ତତ୍ତ୍ୱ ସାହିତ୍ୟରେ ଦୀର୍ଘ କବିତା ବା କାବ୍ୟର ସଂଗଠନ ଓ ଅନୁଭୂତି ବ୍ୟକ୍ତି-ନିରପେକ୍ଷ, ଅର୍ଥାତ୍ ପ୍ରଚଳିତ ଭଗବତ୍ ବିଶ୍ୱାସ ଓ ଭଗବତ୍ ବିଚାରଧାରା ଉପରେ ଆଧାରିତ । ଆଭିମୁଖ୍ୟ କବିର ସୂକ୍ଷ୍ମ ଓ ସ୍ୱର୍ଶକ୍ଷମ ଅନୁଭୂତିର ସମ୍ପ୍ରସାରଣ ନୁହେଁ, ଆଭିମୁଖ୍ୟ ଲୋକଶିକ୍ଷା, ଭଗବତ୍ ଜ୍ଞାନର ସମ୍ପ୍ରସାରଣ, ଉଦ୍ଦେଶ୍ୟ ଯେପରି ପାଠକ ବା ଶ୍ରୋତାର ମାନସିକ ଉତ୍କର୍ଷ ସାଧିତ ହୋଇପାରିବ, ଓ ସମାଜରେ ସବୁ ପ୍ରତିକୂଳତା ସତ୍ତ୍ୱେ ସେ ସୁସ୍ଥ, ସୌଷ୍ଠବପୂର୍ଣ୍ଣ ଜୀବନ ଯାପନ କରି ପାରିବ । .

ଷୋଡ଼ଶ ଶତାବ୍ଦୀରେ ଭକ୍ତ କବିମାନଙ୍କର ବିଶ୍ୱାସ ଓ ସେମାନେ ଯେପରି ଭାବରେ ନିଜ ନିଜର ବିଶ୍ୱାସକୁ ଧର୍ମ ଓ ଧର୍ମ କଥାର ଆଧାରରେ ଲୋକ ଚରିତ୍ରର ଉନ୍ନତି ପାଇଁ ପ୍ରଚାର କଲେ ତାହା ସେହି ସମୟ ପାଇଁ ଅତ୍ୟନ୍ତ ଉପଯୋଗୀ ଥିଲା । ବିଶେଷ କରି ଏକ ଅତ୍ୟନ୍ତ ସଂକଟ କାଳରେ ସାଧାରଣ ଲୋକମାନଙ୍କୁ ବଞ୍ଚି ରହିବା ପାଇଁ ଯଥେଷ୍ଟ ଶକ୍ତି ଯୋଗାଇ ପାରିଥିଲା । ଗଜପତି ପ୍ରତାପରୁଦ୍ରଙ୍କର ୧୫୩୮ରେ

ମୃତ୍ୟୁ ହେଲା, ଓ ଯେପରି ବିଭାଜକ ଶକ୍ତିମାନେ ଏହି ସମୟକୁ ଅପେକ୍ଷା କରି ରହିଥିଲେ, ଓ ସାଙ୍ଗେ ସାଙ୍ଗେ ଗୋଟାଏ ପ୍ରକାର ଅରାଜକତା ରାଜ୍ୟଯାକ ବ୍ୟାପି ଯାଇଥିଲା । ପ୍ରତାପରୁଦ୍ରଙ୍କ ଦୁଇ ପୁଅ କାଳୁଆ ଦେବ ଓ କଖାରୁଆ ଦେବଙ୍କର ବୟସ ହୋଇ ନ ଥିଲା, ଓ ସେମାନଙ୍କର କୌଣସି ବ୍ୟକ୍ତିତ୍ୱ ବି ନ ଥିଲା । ଉଭୟଙ୍କୁ ପରେ ପରେ ପ୍ରତାପରୁଦ୍ରଙ୍କର ଉଚ୍ଚାଭିଳାଷୀ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ହତ୍ୟା କଲେ, ଓ ନିଜେ ୧୫୪୦ରେ ରାଜ ସିଂହାସନ ଦଖଲ କରି 'ଭୋଇ ବଂଶ' ନାମରେ ଗୋଟିଏ ନୂତନ ରାଜବଂଶର ଆରମ୍ଭ କଲେ । କିନ୍ତୁ ସେ ବି ବେଶୀ ଦିନ ରାଜତ୍ୱ କରି ପାରିଲେ ନାହିଁ । ୧୫୪୯ରେ ତାଙ୍କର ପୁତ୍ର ଚକ୍ରପ୍ରତାପ ତାଙ୍କୁ ହତ୍ୟା କରି ନିଜେ ରାଜା ହେଲେ । ସେ ବି ୧୫୫୭ ପର୍ଯ୍ୟନ୍ତ । ୧୫୫୭ରେ ସେ ନିଜର ପୁତ୍ର ନରସିଂହ ଜେନାଙ୍କ ଦ୍ୱାରା ନିହତ ହେଲେ । ନରସିଂହ ଦୁଇ ବର୍ଷରୁ କମ ସମୟ ରାଜତ୍ୱ କରିଥିଲେ । ୧୫୫୮ରେ କଟକର ତତ୍କାଳିନ ଶାସକ ମୁକୁନ୍ଦ ହରିଚନ୍ଦନ ତାଙ୍କୁ ହତ୍ୟା କରି, ୧୫୬୦ରେ ଓଡ଼ିଶାର ଶାସକ ହେଲେ, ଓ ୧୫୬୮ ପର୍ଯ୍ୟନ୍ତ ଓଡ଼ିଶାର ଶାସନ କାର୍ଯ୍ୟ ସେ ପରିଚାଳନା କରିଥିଲେ । ମୁକୁନ୍ଦ ଦେବ ଜଣେ ସମର୍ଥ ଶାସକ ଥିଲେ । କିନ୍ତୁ ୧୫୬୮ରେ ବଂଗଳାର ମୁସଲମାନମାନଙ୍କ ସହ ଯୁଦ୍ଧ କରିବା ସମୟରେ ନିଜର ସାମନ୍ତ ରାଜାମାନଙ୍କର ଷଡଯନ୍ତ୍ରରେ ସେ ନିହତ ହେଲେ, ଓ ୧୫୬୮ରେ ଓଡ଼ିଶାର ସ୍ୱାଧୀନ ଶାସନ ଲୋପ ପାଇ ଓଡ଼ିଶା ବଂଗଳାର ମୁସଲିମ୍ ମାନଙ୍କ ଅଧୀନକୁ ଚାଲିଗଲା । ଏ କେବଳ ସଂକଟଜନକ ସମୟ ନୁହେଁ, ଅତ୍ୟନ୍ତ ବିଶୃଙ୍ଖଳାର ସମୟ । ପଞ୍ଚଦଶ ଶତାବ୍ଦୀରେ, କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ସମୟରେ, ଓଡ଼ିଆ ଜାତିର ଯେଉଁ ଉଦ୍ଦୀପନା ଓ କର୍ମଶକ୍ତି ଥିଲା, ଷୋଡଶ ଶତାବ୍ଦୀର ତୃତୀୟ ଦଶକ ବେଳକୁ ତାହା ଅନେକ କମି ଆସିଥିଲା, ଓ ପ୍ରତାପରୁଦ୍ରଙ୍କର ମୃତ୍ୟୁ ବେଳକୁ ତାହା ହତାଶାର ଗଭୀରତମ ସ୍ତରକୁ ଖସି ଯାଇଥିଲା । ତା'ପରେ ୧୫୬୮ ପର୍ଯ୍ୟନ୍ତ, ୩୦ ବର୍ଷ କାଳ, ନିରବଚ୍ଛିନ୍ନ ଷଡଯନ୍ତ୍ର ଓ ହତ୍ୟାର ଲୋମହର୍ଷକ କାହାଣୀ, ମଣିଷର ନିମ୍ନତମ ପ୍ରବୃତ୍ତିର ପ୍ରକାଶ ସୂର୍ଯ୍ୟବଂଶ ଶାସକମାନଙ୍କର ଗୌରବମୟ ରାଜତ୍ୱର ଦୁଃଖଦାୟକ ପରିଣତି । ୧୫୬୮ରେ ଶାସନର ପରିବର୍ତ୍ତନ ସଙ୍ଗେ ସଙ୍ଗେ ପରିସ୍ଥିତି ଆହୁରି ଗୁରୁତର ହେଲା, ଯେତେବେଳେ ଗୋଟିଏ ଯତ୍ନହୀନ, ବିଚାରହୀନ ଓ ସଂପୂର୍ଣ୍ଣ ସ୍ୱାର୍ଥ-ପ୍ରଣୋଦିତ ଶାସନ ଦ୍ୱାରା ସ୍ଥାନୀୟ ସୂତ୍ରସବୁ କଟିଗଲା । ସମସାମୟିକ ଜୀବନଧାରା ଏସବୁ ଦ୍ୱାରା ଯଥେଷ୍ଟ ପ୍ରଭାବିତ ହୋଇଥିଲା । ପଞ୍ଚଦଶ ଶତାବ୍ଦୀରେ ଲେଖା ଯାଇଥିବା ସାରଳା ଦାସଙ୍କର 'ମହାଭାରତ' ଓ 'ଚଣ୍ଡୀପୁରାଣ' ଗୋଟିଏ ଶକ୍ତିଶାଳୀ ଓ ଉଚ୍ଚାଭିଳାଷୀ ଜାତିର ଆନନ୍ଦ-ପରିପୂର୍ଣ୍ଣ ମାନସିକତାର ପ୍ରକାଶ । ଷୋଡଶ

ଶତାବ୍ଦୀର ମଝିବେଳକୁ ଏ ମନୋଭାବ ବଦଳି ଯାଇଥିଲା - ଗୋଟିଏ ଅନିଶ୍ଚିତ, ଅସୁରକ୍ଷିତ, ବିଶୃଙ୍ଖଳିତ ଓ ହତାଶାର ମନୋଭାବ । ଏ ପରିବର୍ତ୍ତିତ ମାନସିକତା ପାଇଁ ପରିବର୍ତ୍ତିତ ସୃଜକ-ଦୃଷ୍ଟିର ଆବଶ୍ୟକତା ଥିଲା, ଯାହାକି ଜାତିକୁ ଏକାଠି କରି ବାନ୍ଧି ରଖି ପାରିବ, ଓ ଆଶା ଓ ବିଶ୍ୱାସର ଶକ୍ତି ଆଣିଦେବ । ଯାହା ଦରକାର ଥିଲା ସେ କେବଳ କଳ୍ପନାର ପରିସର ନୁହେଁ, ଶିକ୍ଷକର  ବିଚାର ଧାରା ଓ ଏହି ବିଚାରାଧାରାର ନୈତିକ ଶକ୍ତି, ଯାହା ମାନସିକତାକୁ ଉଦ୍ଦୀପିତ କରିବା ସଂଗେ ସଂଗେ ଅନିଶ୍ଚିତ ମନୋଭାବକୁ ଏକ ନିଶ୍ଚିତ ଶକ୍ତି ଓ ଦମ୍ଭରେ ସ୍ଥିର କରି ପାରିବ । ଷୋଡଶ ଶତାବ୍ଦୀରେ ଓଡ଼ିଆ ଭକ୍ତ କବି, ଯେଉଁମାନଙ୍କୁ 'ପଞ୍ଚସଖା' କୁହାଯାଏ, ସେହିମାନେ ହିଁ ସେମାନଙ୍କର ଲେଖାର ମାଧ୍ୟମରେ ଏ କାର୍ଯ୍ୟ କଲେ । ସେମାନେ ସାମାଜିକ ଜାତି ପ୍ରଥା ଓ ଜାତିର ବିଭେଦକୁ କୌଣସି ଗୁରୁତ୍ୱ ଦେଲେ ନାହିଁ, ଯେଉଁ ଭାଷା ସମସ୍ତେ ସହଜରେ ବୁଝି ପାରିବେ ସେହି ଭାଷାରେ  ହିଁ ଲେଖିଲେ, ଓ ଏପରି ବିଷୟରେ ଲେଖିଲେ ଯାହାକି ସାଧାରଣ ସାମାଜିକ ଲୋକର ବିଶ୍ୱାସ, ଅଭ୍ୟାସ ଓ ଅନୁଭବର କଥା । ଫଳରେ ଲେଖକ ଓ ସାଧାରଣ ପାଠକ ବା ଶ୍ରୋତା ମଧ୍ୟରେ ଗୋଟାଏ ପ୍ରକାର ସହଜ ସହୃଦୟତା ସମ୍ଭବ ହେଲା, ଓ କ୍ରମଶଃ ଆତ୍ମବିଶ୍ୱାସ ହରାଉଥିବା ଜାତି ବଂଚିବା ପାଇଁ କିଛି ପରିମାଣରେ ଆଶା ଓ ସାହସ ସଂଚୟ କରି ପାରିଲା । କୁହାଯାଇ ପାରେ ଏ ଗୋଟାଏ ପ୍ରକାର ଅନନ୍ୟ ସ୍ଥିତି, ଯାହା କୌଣସି ରାଜକୀୟ ବା ଅସ୍ତ୍ରବଳରେ ନୁହେଁ, ସମ୍ପୂର୍ଣ୍ଣ ଭାବରେ ଜନ ଚେତନାରେ, ଜନ ଆନ୍ଦୋଳନ ପରି, ଜନତାର ବିଶ୍ୱାସ ଓ ସମର୍ଥନରେ ସମ୍ଭବ ହୋଇ ପାରିଲା ।

ଓଡ଼ିଶାର ଭକ୍ତ କବିମାନେ ସାଧାରଣ ବୈଷ୍ଣବମାନଙ୍କ ପରି ନିଜର ଆତ୍ମଶୁଦ୍ଧି ପାଇଁ ପ୍ରେମଭକ୍ତି ଯେ ଏକମାତ୍ର ପନ୍ଥା ତାହା ଭାବୁ ନ ଥିଲେ । ସେମାନେ ଗୁରୁଙ୍କ ପ୍ରତି ଭକ୍ତି ଓ ଆନୁଗତ୍ୟ ସହ ତନ୍ତ୍ର, ମନ୍ତ୍ର, ଜପ ଓ ଯୋଗର ଜ୍ଞାନ ଉପରେ ଗୁରୁତ୍ୱ ଦେଉଥିଲେ । କୁହାଯାଇ ପାରେ ସେମାନଙ୍କର ଚିନ୍ତାରେ ଉଭୟ ଜ୍ଞାନ ଓ ଭକ୍ତି ମିଶିକରି ରହିଥିଲା । ଭଗବାନଙ୍କ ସଂପର୍କରେ ଆସିବା ପାଇଁ ମନ୍ଦିର ଯେ ଏକମାତ୍ର ସ୍ଥାନ ନୁହେଁ, ଏକଥା ସେମାନେ ଘୋଷଣା କରି କହୁଥିଲେ । ବରଂ ସେ ଦିଗରୁ ମଣିଷର ନିଜର ଦେହ ହିଁ ଶ୍ରେଷ୍ଠ ସ୍ଥାନ ବୋଲି ସେମାନଙ୍କର ମତ ଥିଲା । କିନ୍ତୁ ସେଥିପାଇଁ ଶୁଦ୍ଧପୂତ ଜୀବନ ଯାପନ କରିବା ସାଙ୍ଗେ ସାଙ୍ଗେ ଧ୍ୟାନ, ପ୍ରାର୍ଥନା ଓ ଯୋଗର ଶୃଙ୍ଖଳା ମାନିବା ଦରକାର । ଅର୍ଥାତ୍ ଦେହ କେବଳ ଶାରୀରିକ ଅର୍ଥରେ ଦେହ ନୁହେଁ, ଯାହାକୁ ଆମେ ଆପାତତଃ ଦେଖୁ ଓ ବୁଝୁ । ଏ ଦେହର ଅନ୍ତର୍ଗତ ଶକ୍ତିର ସ୍ରୋତ ସଂପର୍କରେ ସଚେତନ ହେବା । ଏ ଶକ୍ତି ବ୍ୟକ୍ତିର କୁଣ୍ଡଳିନୀ ଶକ୍ତି ।

ଭକ୍ତ କବି ମାନଙ୍କ ମତରେ ଏହାହିଁ ପ୍ରାଣମୟ ଶକ୍ତି । ଏହା ଦେହସ୍ଥ 'ଇଡା', 'ପିଙ୍ଗଳା' ଓ 'ସୁଷୁମ୍ନା' ସ୍ନାୟୁ-ପ୍ରଣାଳୀ ମଧ୍ୟ ଦେଇ ସଂଚାଳିତ ହୋଇ 'ବ୍ରହ୍ମ ରନ୍ଧ୍ର'ରେ ପ୍ରବେଶ କରେ, ଓ ପରିଶେଷରେ ବ୍ରହ୍ମ ରନ୍ଧ୍ରକୁ ଅତିକ୍ରମ କରି ଯେଉଁ ସ୍ଥାନରେ ଉପନୀତ ହୁଏ ତାହା ଅତ୍ୟନ୍ତ ସୂକ୍ଷ୍ମ ମାନସିକ ଚେତନା, ଓ ତାହାହିଁ 'ବୈକୁଣ୍ଠ' । ଏହାହିଁ ଭକ୍ତର ସମସ୍ତ ଭକ୍ତିଭାବନାର ପରିଣତି, ଓ ଏଠାରେ ଭକ୍ତ ରାଧାକୃଷ୍ଣଙ୍କର ନିତ୍ୟ ଲୀଳା ଅବଲୋକନ କରିବା ସହିତ ନିଜେ ବି ସେଥିରେ ଅଂଶୀଦାର ହୋଇ ପାରିବ । ଏହା ହିଁ ବ୍ୟକ୍ତି-ଆତ୍ମାର ସଂପୂର୍ଣ୍ଣ ବିଶୋଧନ ।

ଏହି ଚେତନାର ଅନ୍ୟ ଗୋଟିଏ ବିଶିଷ୍ଟ ଆୟତନ ରହିଛି, ଯାହାକି ଶ୍ରୀକ୍ଷେତ୍ରର ଶ୍ରୀଜଗନ୍ନାଥଙ୍କ ସଂପର୍କରେ । ଅର୍ଥାତ୍, ଶ୍ରୀଜଗନ୍ନାଥ ଆଦି ଦେବତା, ସେ ଅବତାର ନୁହଁନ୍ତି, ସବୁ ଅବତାରର ଉତ୍ସ, ବା ଅନ୍ୟଭାବରେ ସବୁ ଅବତାର ତାଙ୍କରି ଠାରେ ବିଲୀନ, ବା ସେ ସବୁ ଅବତାରର ପରିଣତି । ସେ ବିଷ୍ଣୁ, ଷୋଳ କଳାରେ ପୂର୍ଣ୍ଣ, ଓ ତାଙ୍କର ସ୍ଥାନ ପୁରୁଷୋତ୍ତମ କ୍ଷେତ୍ର ହିଁ 'ବୈକୁଣ୍ଠ', କବିମାନେ ତାଙ୍କର 'ଦାସ', ଓ କେବଳ ତାଙ୍କୁହିଁ ଧ୍ୟାନ ଓ ପ୍ରାର୍ଥନା କଲେ ହିଁ ବ୍ୟକ୍ତି ପୂର୍ଣ୍ଣତମ ଆନନ୍ଦ ଓ ସ୍ୱର୍ଗୀୟ ସୁଖ ଲାଭ କରି ପାରିବ । ତେଣୁ ବଙ୍ଗଳାର ବୈଷ୍ଣବମାନଙ୍କ ପରି ସେମାନେ 'ରାଧା-ପ୍ରେମ'ରେ ପାଗଳ ନୁହଁନ୍ତି । ସେମାନେ ଭଗବାନଙ୍କର 'ଦାସାନୁଦାସ' । ଏହା ହିଁ ଷୋଡଶ ଶତାବ୍ଦୀର ଓଡ଼ିଆ ଭକ୍ତ କବି ମାନଙ୍କର ବିଶିଷ୍ଟତା । ସେମାନଙ୍କର ବିଶ୍ୱାସ ବା ଭକ୍ତି-ଧର୍ମରେ ଜାତି, ଧର୍ମ ବା ଗୋଷ୍ଠୀର ସଂକୀର୍ଣ୍ଣତା ରହିଲା ନାହିଁ, ଓ ସମାଜର ସାମଗ୍ରିକତାରେ ଏହା ପ୍ରସାରିତ ହେବା ସଂଗେ ସଂଗେ ଏକ ସାର୍ବଜନୀନ ବିଶ୍ୱାସରେ ରୂପାନ୍ତରିତ ହେଲା । ପଞ୍ଚସଖାଙ୍କ ମଧ୍ୟରୁ କେବଳ ଜଗନ୍ନାଥ ଦାସଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ଅବ୍ରାହ୍ମଣ, ବା ବ୍ରାହ୍ମଣେତର ଜାତିର ଲୋକ । କିନ୍ତୁ ପ୍ରତ୍ୟେକ ଅତ୍ୟନ୍ତ ବିଶିଷ୍ଟ ଧର୍ମଗୁରୁ ଭାବରେ ପ୍ରତିଷ୍ଠିତ ହୋଇ ପାରିଥିଲେ, ପ୍ରତ୍ୟେକଙ୍କର ପୁରୀ ବା ପୁରୀ ବାହାରେ ନିଜ ସଂପ୍ରଦାୟର ମଠ ଥିଲା, ଓ ପ୍ରତ୍ୟେକ ସମାଜର ସବୁ ଶ୍ରେଣୀରୁ ଶିଷ୍ୟ ଗ୍ରହଣ କରୁଥିଲେ । କେବଳ କବିତା ପାଇଁ ସେମାନେ କବିତା ଲେଖୁ ନ ଥିଲେ । କବିତା ସେମାନଙ୍କ ପାଇଁ ଗୋଟିଏ ଦରକାରୀ ମାଧ୍ୟମ ଥିଲା, ଲକ୍ଷ୍ୟ ଥିଲା ନୈତିକ ଓ ଆଧ୍ୟାତ୍ମିକ ବିଶ୍ୱାସର ପ୍ରସାର, ମୁକ୍ତ, ପ୍ରବୁଦ୍ଧ ଲୋକ ଚରିତ୍ରର ପ୍ରତିଷ୍ଠା, ଓ ପାଠକମାନଙ୍କୁ କର୍ମ-ଶକ୍ତିରେ ସଂଜୀବିତ କରିବା । ଓଡ଼ିଆ ଭକ୍ତି କବିତା ବା ଭକ୍ତି ସାହିତ୍ୟର ତିନୋଟି ବିଭାଗ – ଜ୍ଞାନ, କର୍ମ ଓ ଭକ୍ତି । କବିମାନେ ଏସବୁକୁ ବିଭିନ୍ନ ଭାବରେ ଆଲୋଚନା କରିଛନ୍ତି, ପୁଣି ସମ୍ମିଳିତ ଭାବରେ ବି । ଏସବୁର ସଂଗଠନରେ ସାଧାରଣ ଭାବରେ ଆମେ ଦୁଇଟି ସ୍ତର ଲକ୍ଷ୍ୟ କରି ପାରିବା । ଗୋଟିଏ ବିଚାର ଓ ବିଶ୍ଳେଷଣର ସ୍ତର-

ସମକାଳୀନ ତତ୍ତ୍ୱ ଓ ଦର୍ଶନକୁ ପାଠକମାନଙ୍କର ଅବଗତି ଓ ଅବବୋଧ ପାଇଁ ସରଳ ଭାଷା, ବିନ୍ୟାସ ଓ ପ୍ରଣାଳୀରେ ପ୍ରକାଶ କରିବା । ଦ୍ୱିତୀୟ ସ୍ତରରେ ବିଚାର ନୁହେଁ, ଉଦ୍ଦେଶ୍ୟ – କିପରି ସମକାଳୀନ ଜୀବନର ସ୍ଥିତିରେ ସାମାଜିକ ଓ ଧାର୍ମିକ ସୁସଂହତି ଅଣାଯାଇ ପାରିବ । ପଂଚସଖା ଓ ତାଙ୍କର ପରବର୍ତ୍ତୀ ଭକ୍ତ କବିମାନଙ୍କର ତତ୍ତ୍ୱ ସାହିତ୍ୟ କେବଳ ସାହିତ୍ୟ ନୁହେଁ । ଏ ଗୋଟିଏ ପରଂପରା, ଯେଉଁ ପରଂପରାକି ବହୁ ଶତାବ୍ଦୀ ଧରି ଓଡ଼ିଆ ଜାତି ଓ ସମାଜକୁ ଉଦ୍‌ବୁଦ୍ଧ କରି ଆସିଛି, ଓ ବର୍ତ୍ତମାନ କାଳର ପ୍ରଚଣ୍ଡ କ୍ଷୟକାରୀ ପରିବେଶରେ ବି ବ୍ୟକ୍ତିକୁ ଜୀବନର ମୂଳ ସୂତ୍ର ସଂପର୍କରେ ବାରମ୍ବାର ସଚେତ କରିଥାଏ ।

ପଂଚସଖା ପ୍ରତ୍ୟେକଙ୍କର ତତ୍ତ୍ୱ ସାହିତ୍ୟ ସଂପର୍କିତ ଏକାଧିକ ରଚନାମାନ ରହିଛି । ଏ ସବୁରୁ ଅନେକ ବି ପ୍ରକାଶିତ ହୋଇନାହିଁ । କିନ୍ତୁ ସାଧାରଣ ଭାବରେ ସେସବୁ ଲେଖା ସେହି ସେହି କବିମାନଙ୍କର ବୋଲି ଗୃହୀତ ଓ ସ୍ୱୀକୃତ, ଓ ସମଗ୍ର ଭାବରେ ସେସବୁ ଓଡ଼ିଶାର ବୈଷ୍ଣବ ବିଚାର ଓ ଦର୍ଶନର ସ୍ୱଷ୍ଟତମ ପ୍ରକାଶ । ଅର୍ଥାତ୍, ବ୍ରହ୍ମଜ୍ଞାନ ଲାଭ କରିବା ପାଇଁ ଯୌଗିକ ପ୍ରଣାଳୀ ଓ ଶୃଙ୍ଖଳା, ଓ ନିଜର ବିଚାରରେ ଭକ୍ତି ଓ ଜ୍ଞାନର ମିଶ୍ରଣ ଏସବୁ ଲେଖାର ପ୍ରଧାନ ଉପଜୀବ୍ୟ । ସଂକ୍ଷେପରେ କିଛି ବିଶିଷ୍ଟ ରଚନା ମାନଙ୍କର ଉଲ୍ଲେଖ କରାଯାଇ ପାରେ । ଯେପରି ବଳରାମ ଦାସଙ୍କର 'ଗୁପ୍ତ ଗୀତା' ବା 'ବ୍ରହ୍ମ ଗୀତା', ଗଦ୍ୟ ଓ ପଦ୍ୟର ମିଶ୍ରଣରେ ବ୍ରହ୍ମଜ୍ଞାନ ବିଷୟରେ; 'ବେଦାନ୍ତସାର ଗୁପ୍ତ ଗୀତା', 'ଅମରକୋଷ ଗୀତା', 'ବିରାଟ ଗୀତା', ଏ ପ୍ରତ୍ୟେକ ବି ବ୍ରହ୍ମଜ୍ଞାନ ସଂପର୍କରେ; 'ଗୀତା', ଶ୍ରୀମଦ୍ ଭଗବତ ଗୀତାର ଅନୁବାଦ, ଅତ୍ୟନ୍ତ ଲୋକପ୍ରିୟ; 'ଜ୍ଞାନ ଚୂଡ଼ାମଣି', ଗଦ୍ୟରେ ପ୍ରଶ୍ନ-ଉତ୍ତର ଧାରାରେ ଯୌଗିକ ପ୍ରଣାଳୀ ଓ ଶୃଙ୍ଖଳାର ବିବରଣୀ; ଓ 'ବ୍ରହ୍ମାଣ୍ଡ ଭୂଗୋଳ' ଯାହାକି ପିଣ୍ଡ ବ୍ରହ୍ମାଣ୍ଡବାଦ ଭାବଧାରାର ତାତ୍ତ୍ୱିକ ଆଲୋଚନା । ଜଗନ୍ନାଥ ଦାସଙ୍କର 'ବ୍ରହ୍ମଗୀତା', ଗଦ୍ୟ ଓ ପଦ୍ୟରେ, ବ୍ରହ୍ମଜ୍ଞାନ ସଂପର୍କରେ; 'ଗୁପ୍ତ ଗୀତା', ଦେହ ବିଷୟରେ ଓ ଭକ୍ତି ଭାବାପନ୍ନ; 'ପଞ୍ଚଭୂତ ଗୀତା', ପୁରୁଷୋତ୍ତମ କ୍ଷେତ୍ର, ପିଣ୍ଡ ବ୍ରହ୍ମାଣ୍ଡବାଦ ଓ କ୍ଷିତି, ଅପ, ତେଜ ଇତ୍ୟାଦି ପଞ୍ଚଭୂତ ସଂପର୍କରେ; 'ତୁଳା ଭିଣା', ଗଦ୍ୟରେ ଯୋଗର ବିଭିନ୍ନ ବିଭାଗ ସଂପର୍କରେ, ଆଧ୍ୟାତ୍ମିକ ଧାରଣା ସହିତ ପିଣ୍ଡ ବ୍ରହ୍ମାଣ୍ଡବାଦର ମିଶ୍ରଣ; 'ଅନାମୟ କୁଣ୍ଡଳୀ', ନବାକ୍ଷରୀ ବୃତ୍ତରେ ନିତ୍ୟ ରାସ ସଂପର୍କରେ ଓ ନିଜର ଦେହ ଓ ଶ୍ରୀକ୍ଷେତ୍ରରେ ଶ୍ରୀଚୈତନ୍ୟଙ୍କ ବିଷୟରେ ସୂଚନା; 'ଶ୍ରୀ ନାମ ଚନ୍ଦ୍ରିକା', ନବାକ୍ଷରୀ ବୃତ୍ତରେ ଉଦ୍ଧବ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ କଥୋପକଥନ, ଭଗବାନଙ୍କ ନାମର ମାହାତ୍ମ୍ୟ ଓ ସେଥି ସହିତ ଯନ୍ତ, ମନ୍ତ୍ର, ଷଡ଼ଚକ୍ର, ଅଷ୍ଟାଙ୍ଗ ଯୋଗ ସାଧନା ପ୍ରଭୃତିର ସୂଚନା; ଓ 'ଦାରୁବ୍ରହ୍ମ ଗୀତା', ଶ୍ରୀକୃଷ୍ଣଙ୍କର

ମହାପ୍ରୟାଣ ପରର ଅବସ୍ଥା, ଓ ନୀଳାଚଳରେ ଶ୍ରୀଜଗନ୍ନାଥଙ୍କର ପୂଜାର୍ଚ୍ଚନା ଓ ପ୍ରତିଷ୍ଠାର ବିବରଣୀ । ଅଚ୍ୟୁତାନନ୍ଦଙ୍କର 'ଶୂନ୍ୟ ସଂହିତା'ରେ ବ୍ରହ୍ମଜ୍ଞାନର ବ୍ୟାଖ୍ୟା, ଶୂନ୍ୟ ସଂପର୍କରେ ଜ୍ଞାନ, ବ୍ୟକ୍ତିର ଦେହ ସଂପର୍କରେ ଜ୍ଞାନ, ଓ ଶ୍ରୀ ଚୈତନ୍ୟ ଓ ଯଶୋବନ୍ତଙ୍କ ସଂପର୍କରେ ସୂଚନା; 'ଶବ୍ଦବ୍ରହ୍ମ ସଂହିତା' ବା 'ଚାରିଖାନି'ରେ ବି ସେହିପରି ଶବ୍ଦର ବ୍ରହ୍ମଜ୍ଞାନ ସହିତ ସଂଯୋଗର ବିବରଣୀ; 'ଅଣାକାର ସଂହିତା'ରେ ଭଗବାନଙ୍କ ନାମର ମାହାତ୍ମ୍ୟ, ତାର ପ୍ରାସଙ୍ଗିକତା ଓ ଗୁରୁତ୍ୱ; 'ଜ୍ୟୋତି ସଂହିତା'ରେ ଭଗବାନଙ୍କର ଜ୍ୟୋତିର ରହସ୍ୟ; 'ଗୁରୁଭକ୍ତି ଗୀତା'ରେ ଗୁରୁ ଓ ଶିଷ୍ୟର ସଂପର୍କ, ସାମାଜିକ ଜୀବନରେ ବଂଚିବାର ନୈତିକତା, ଓ ରାସ ଲୀଳା, ଓ ଅଚ୍ୟୁତାନନ୍ଦଙ୍କର ନିଜ ସ୍ଥାନ ସଂପର୍କରେ ସୂଚନା; 'ଶୂନ୍ୟ ଗୀତା'ରେ ଶୂନ୍ୟବାଦ ଓ ପ୍ରକୃତ ଗୁରୁଙ୍କ ସଂପର୍କରେ କାବ୍ୟିକ ଓ ତାତ୍ତ୍ୱିକ ଆଲୋଚନା; 'ଆଦି ବ୍ରହ୍ମଗୀତା' ରେ ସୃଷ୍ଟିର ପୂର୍ବବର୍ତ୍ତୀ ସମୟ ଓ ସୃଷ୍ଟିର ଆରମ୍ଭ ସମୟର ବିବରଣୀ; 'ନିତ୍ୟ ରାହାସ'ରେ ନିତ୍ୟ ରାହାସ ଅର୍ଥାତ୍ ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କ ସହିତ ନିରବଚ୍ଛିନ୍ନ ସଂପର୍କ ପରି ଭକ୍ତର ଭଗବାନଙ୍କ ସହିତ ନିରବଚ୍ଛିନ୍ନ ସଂପର୍କର ସୂଚନା; 'ଅଷ୍ଟଗୁଜରୀ' ଭକ୍ତି ପରଂପରାର ସଂଗୀତାବଳୀ, ଚେତନାର ଆଠଟି ସ୍ତର ସଂପର୍କରେ ଆଲୋଚନା, ଅତ୍ୟନ୍ତ ଲୋକପ୍ରିୟ; ଓ 'ଚଉରାଶି ଯନ୍ତ୍ର', ଯନ୍ତ୍ରର ବିସ୍ତାରିତ ବିବରଣୀ ଓ ଦିବ୍ୟ ଜ୍ଞାନ ବା ବ୍ରହ୍ମଜ୍ଞାନର ବିସ୍ତାରିତ ବ୍ୟାଖ୍ୟା ।

ଯଶୋବନ୍ତଙ୍କର 'ପ୍ରେମଭକ୍ତି ବ୍ରହ୍ମଗୀତା', ନବାକ୍ଷରୀ ବୃତ୍ତରେ, ପାଞ୍ଚ ଅଧ୍ୟାୟରେ, ଓଡ଼ିଶୀ ବୈଷ୍ଣବ ଧର୍ମ-ବିଶ୍ୱାସର ସଂକ୍ଷିପ୍ତ ସାର, ଉଭୟ ଜ୍ଞାନଭକ୍ତି ଓ ପ୍ରେମଭକ୍ତି ଓ ଉଭୟର ସଂଯୋଗ ବିଷୟରେ, ବିଶେଷ କରି ପ୍ରେମଭକ୍ତିର ବିଶିଷ୍ଟତାର ସୂଚନା; 'ଆତ୍ମାପରଚେ ଗୀତା' ପାଞ୍ଚ ଅଧ୍ୟାୟରେ, ଅର୍ଜୁନ ଓ ଶ୍ରୀକୃଷ୍ଣଙ୍କ ('ଶ୍ରୀ ଜଗନ୍ନାଥ', 'ଭଗବାନ') ମଧ୍ୟରେ କଥୋପକଥନ, ଗୁରୁଭାବରେ ଶ୍ରୀଜଗନ୍ନାଥଙ୍କ ପାଖରୁ ଧର୍ମଶିକ୍ଷାର ସୂଚନା, ଜ୍ଞାନ, ନିତ୍ୟକ୍ଷେତ୍ର, ନିତ୍ୟ ରାସ ଓ ଅଷ୍ଟାଙ୍ଗ ଯୋଗ ବିଷୟରେ ଜ୍ଞାନ ପ୍ରଦାନ ଓ ବ୍ରହ୍ମଜ୍ଞାନ ବିଷୟରେ ଗୁରୁଙ୍କର ଅନୁପମ ଅବଦାନ ଧାର୍ମିକ ଉତ୍ତରଣ ବିଷୟରେ ଅନୁସଂଧାନମୂଳକ ବିବରଣୀ; 'ବନଭୋଜି ବୋଲି', ୫୦୦ ଧାଡ଼ିରେ, କବିତାରେ ଦୀର୍ଘ ଗଳ୍ପ, ଗୋପର ଗୋପାଳୁଣୀ ଓ ମଥୁରାର ବ୍ରାହ୍ମଣୀମାନଙ୍କର ମିଳିତ ଭାବରେ କୃଷ୍ଣ ଉପାସନା, ଭକ୍ତିର ବିଚାର, ଓ ଦିବ୍ୟଜ୍ଞାନ ପାଇବା ପାଇଁ ଭକ୍ତିର ଗୁରୁତ୍ୱ; 'ଦିବ୍ୟଦେହ ବୋଲି', ୨୦୦ ଧାଡ଼ିର କବିତାରେ ପୂର୍ବପରି ଭକ୍ତିର ଆବେଗପୂର୍ଣ୍ଣ ବିଚାର, ଓ ପୂର୍ବପରି ଦିବ୍ୟଜ୍ଞାନ ଲାଭ କରିବା ପାଇଁ ଭକ୍ତିଭାବର ଗୁରୁତ୍ୱ; 'ଯନ୍ତ୍ରବୋଲି' ୨୮୪ ଧାଡ଼ିର କବିତା, ଯଶୋବନ୍ତ ଓ ତାଙ୍କର ଶିଷ୍ୟ ଲୋଇଙ୍କ ମଧ୍ୟରେ କଥୋପକଥନ, ବ୍ରହ୍ମଜ୍ଞାନ ଯେ ମୂଳତଃ 'ନାମ ବ୍ରହ୍ମଜ୍ଞାନ' ଅର୍ଥାତ୍ ଭଗବାନଙ୍କ

ନାମ ଓ ତା'ର ଆନୁସଙ୍ଗିକ ଭାବ ଉପରେ ନିର୍ଭରଶୀଳ ତାହାରି ବିଚାର ଓ ଓଡ଼ିଶାରେ ବୈଷ୍ଣବ ଧର୍ମର ମୁଖ୍ୟ ସାଧକ ଯଥା ଅନନ୍ତ, ଅଚ୍ୟୁତ, ଜଗନ୍ନାଥ ଓ ନିଜେ ଯଶୋବନ୍ତ ପ୍ରଭୃତିଙ୍କ ସଂପର୍କରେ ବିବରଣୀ; ଓ 'ଗୋବିନ୍ଦ ଚନ୍ଦ୍ର', ୨୧୮୪ ଧାଡ଼ିର କାବ୍ୟ, ଗଳ୍ପମୂଳକ, ବଙ୍ଗ ଦେଶ ରାଜା ଗୋବିନ୍ଦ ଚନ୍ଦ୍ରଙ୍କର ଯୋଗୀ ହେବା ପାଇଁ ରାଜ୍ୟ ଓ ରାଜତ୍ୱ ବିସର୍ଜନ ବିଷୟବସ୍ତୁ, ଗୁରୁଙ୍କର ଗୁରୁତ୍ୱର ବିଚାର, ଓ ଯୋଗ ଓ ଷଡଚକ୍ର ସାଧନାରେ କିପରି ମନ ଓ ଦେହସ୍ଥ ବାୟୁ ସଂଚାଳନକୁ ନିୟନ୍ତ୍ରିତ କରାଯାଇ ପାରିବ ତାର ସୂଚନା - ନାଥ ଯୋଗୀମାନଙ୍କର ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଦଲିଲ; 'ଶିବସ୍ୱରୋଦୟ', ମୂଳ ସଂସ୍କୃତ ଲେଖାର ବହୁ ପରିବର୍ତ୍ତନ ସହ ଅନୁକୃତି, ୪୭୪ ଯୁଗ୍ମ ଚରଣରେ ପାର୍ବତୀଙ୍କର ବିଭିନ୍ନ ପ୍ରଶ୍ନରେ ଶିବଙ୍କର ଉତ୍ତର, ଦେହର ଅସଂଖ୍ୟ ଶିରାପ୍ରଶିରା ଦେଇ 'ସ୍ୱର' ବା 'ବାୟୁ'ର ସଂଚାରଣ, ଓ ସ୍ଥାନ ଓ ସଂଚାଳନ ଭେଦରେ ବ୍ୟକ୍ତି, ସମାଜ ଓ ଆଧ୍ୟାତ୍ମିକତା ଉପରେ ଏହାର ପ୍ରଭାବ ଓ ପ୍ରାସଙ୍ଗିକତା, ଓ ବାୟୁ ସଂଚାରଣର ଯୌଗିକ ଶୃଙ୍ଖଳାର ପରିଣତିରେ ଧ୍ୟାନ, ଆଧ୍ୟାତ୍ମିକତା, ଓ ଦେହ ଓ ଚରିତ୍ରର ସ୍ୱାସ୍ଥ୍ୟର ଅଭିବୃଦ୍ଧି । ଶିଶୁ ଅନନ୍ତ ବା ଅନନ୍ତ ଦାସଙ୍କର 'ହେତୁ ଉଦୟ ଭାଗବତ', ବୈଷ୍ଣବ ସାଧନାର ପ୍ରାମାଣିକ ଗ୍ରନ୍ଥ, ବ୍ରହ୍ମ ଜ୍ଞାନ, ପିଣ୍ଡ ବ୍ରହ୍ମାଣ୍ଡବାଦ, ନାମ ମାହାତ୍ମ୍ୟ, ଗୁରୁଙ୍କର ଶ୍ରେଷ୍ଠତ୍ୱ, ଗୁରୁଙ୍କ ପ୍ରତି ଭକ୍ତି ଓ ଆନୁଗତ୍ୟ, ଓ ବ୍ୟକ୍ତି-ଆତ୍ମାର ପରମ-ଆତ୍ମା ସହିତ ମିଳନ ପ୍ରଭୃତିର ବିସ୍ତୃତ ବିବରଣୀ; 'ଗୁପ୍ତଟୀକା' ବା 'ଯନ୍ତ୍ର ଟୀକା'ରେ ସୃଷ୍ଟିର ରହସ୍ୟର କଥା, ମହାଶୂନ୍ୟରୁ ଓଁକାରର ସୃଷ୍ଟିର ବିବରଣୀ, ଦେହର ଅଭ୍ୟନ୍ତରରେ ଆତ୍ମା ଓ ପରମାତ୍ମାର ରହସ୍ୟଜନକ କାର୍ଯ୍ୟାବଳୀର ସୂଚନା, ଓ ପଂଚସଖାଙ୍କର ଯୋଗ ସାଧନା ଓ ଶୂନ୍ୟ ସମାଧି ସଂପର୍କରେ ଗୁରୁତ୍ୱପୂର୍ଣ୍ଣ ଚିନ୍ତା; 'ବ୍ରହ୍ମ ପାର୍ଥିବ ତତ୍ତ୍ୱସାର ଗୀତା', ଛଅ ଅଧ୍ୟାୟରେ ଓ ୨୩୩ ଯୁଗ୍ମ ଚରଣରେ, ଶ୍ରୀହରି ବକ୍ତା ଓ ଅର୍ଜୁନ ଶ୍ରୋତା, ଚାରି ବେଦର ସୃଷ୍ଟି ଓ ବେଦର ମାହାତ୍ମ୍ୟ ଓ ଐଶ୍ୱରିକତା ସଂପର୍କରେ, ଓ ଦେହ ଓ ଆତ୍ମାର ରହସ୍ୟ ଜାଣିବା ପାଇଁ ଦେହ ମାଧ୍ୟମରେ ସାଧନା, ଓ ଯେଉଁଠି ବ୍ୟକ୍ତି-ଆତ୍ମା ଚିରନ୍ତନ ଆତ୍ମାରେ ମିଳିତ ହୁଏ ସେହି ପରମ ସ୍ଥାନ ସଂପର୍କରେ ବିଚାର ଓ ଜ୍ଞାନ - ଅନନ୍ତଙ୍କର ନିଜ ଦର୍ଶନର ଶ୍ରେଷ୍ଠ ବିବରଣୀ; 'ତତ୍ତ୍ୱପୂର୍ଣ୍ଣ ଗୀତା', ଦୁଇ ଅଧ୍ୟାୟରେ, ଗୁରୁ ଓ ଶିଷ୍ୟ ମଧ୍ୟରେ କଥୋପକଥନ (ପ୍ରଶ୍ନ - ଉତ୍ତର) ଜରିଆରେ, ପ୍ରଳୟ ପରେ ଜୀବ ଜଗତର ସୃଷ୍ଟି ଓ ମଣିଷର ଦେହରେ ଏହି ସୃଷ୍ଟିର ପ୍ରକ୍ରିୟା ସଂପର୍କରେ; 'ସଂସାର ତତ୍ତ୍ୱବୋଧ ଗୀତା', ପାଞ୍ଚ ଅଧ୍ୟାୟରେ, ସୃଷ୍ଟିର ପ୍ରଣାଳୀ, ଓ ମାତା ଗର୍ଭରୁ ସାମାଜିକ ପୃଥିବୀ ଦେଇ ମୃତ୍ୟୁର ପରବର୍ତ୍ତୀ ଅବସ୍ଥା ପର୍ଯ୍ୟନ୍ତ ଜୀବର ଅଗ୍ରଗତି, ଶ୍ରୀକୃଷ୍ଣଙ୍କର ଶ୍ରୀ ଜଗନ୍ନାଥଙ୍କ ସହିତ ଅଭିନ୍ନତା, ଓ ଯେ କୌଣସି ଅବସ୍ଥାରେ ବି ସତ୍ୟ

ପ୍ରତି ନିଷ୍ଠା ଯେ ଏକାନ୍ତ ଆବଶ୍ୟକ ତା'ର ସୂଚନା; 'ଶବ୍ଦବ୍ରହ୍ମ' ବା 'ସ୍ୱପ୍ରକାଶ', କବିଙ୍କର ନିଜ ଜୀବନ ବିଷୟରେ, ନିଜର ପିତାମାତା, ଜନ୍ମସ୍ଥାନ, କାର୍ଯ୍ୟାବଳୀ ଓ ସାଧନାର ବିବରଣୀ, ଓ ଭକ୍ତି, ଆରାଧନା ଓ ଅନୁରକ୍ତି ମାଧ୍ୟମରେ ଦେବତ୍ୱ ବା ଐଶ୍ୱରିକତାର ଅନୁଭବ; 'ଜ୍ଞାନ ଲହରୀ', ପ୍ରଶ୍ନ-ଉତ୍ତର ଧାରାରେ ନାଥ ସଂପ୍ରଦାୟର କାର୍ଯ୍ୟାବଳୀର ସୂଚନା, ପ୍ରଶ୍ନ ମାୟାର ସ୍ୱରୂପ ଓ ଜୀବଜଗତର ସୃଷ୍ଟି ସଂପର୍କରେ ଓ ଉତ୍ତର ସେହି ଭାବରେ ପ୍ରଣୋଦିତ, ପରିଶେଷରେ ଯୋଗ ଓ ଯଥାର୍ଥ ଗୁରୁଙ୍କର ପ୍ରାସଙ୍ଗିକତା ସଂପର୍କରେ ଆଲୋଚନା; 'ଶିଶୁ ମନ୍ତ୍ର ବିଚାର', ବିଶେଷ କରି ଭଗବାନଙ୍କର ନାମର ଗୌରବ – ୧୬ ନାମ ଓ ୩୨ ଅକ୍ଷର ଓ ଆଦିବ୍ରହ୍ମ ଓ ମହାମନ୍ତ୍ରର ବ୍ୟାଖ୍ୟା; 'ଅର୍ଥ ତାରେଣୀ', ୩୦ ଅଧ୍ୟାୟରେ, ଉଭୟ ଗଦ୍ୟ ଓ ପଦ୍ୟରେ, ଧାର୍ମିକ ଆଚାର ବ୍ୟବହାର, ଭକ୍ତିର ଧାରା ଓ ଆତ୍ମାର ବିଭିନ୍ନ ଆୟୋଜନ ସଂପର୍କରେ ଆଲୋଚନା; ଓ 'ଉଦେବାଖର', ଗୋଟିଏ ଗୁରୁତ୍ୱପୂର୍ଣ୍ଣ ମାଳିକା, ଆଲୋଚନାର ଧାରାରେ 'ହେତୁ ଉଦୟ ଭାଗବତ' ସହିତ ତୁଳନୀୟ ।

ତତ୍ତ୍ୱ ସାହିତ୍ୟ ଯେ କେବଳ ପଞ୍ଚସଖାମାନେ ଲେଖିଥିଲେ ତା' ନୁହେଁ । ସେମାନେ ଏହି ପରଂପରାକୁ ଆରମ୍ଭ କରି ପ୍ରତିଷ୍ଠିତ କରିଥିଲେ, ଓ ଏହି ପରଂପରାର ସେମାନେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରବକ୍ତା । କହିଛି, ଏ କେବଳ ସମକାଳୀନ ଧର୍ମ, ଦର୍ଶନ ବା ଜୀବନର ନୀତି ସଂପର୍କରେ ଆଲୋଚନା ନୁହେଁ । ମୂଳ ଉଦ୍ଦେଶ୍ୟ, ସରଳ କାବ୍ୟ-ସଂଗଠନରେ ଓ ଲୋକମାନେ ସହଜରେ ବୁଝି ପାରୁଥିବା ଚଳନ୍ତି ଭାଷାରେ ଲୋକ-ଚରିତ୍ରର ଉନ୍ନତି ପାଇଁ, ଲୋକମାନଙ୍କ ମନରେ ସାହସ ଓ ଦମ୍ଭ ଆଣିଦେବା ପାଇଁ, ଧର୍ମ ଓ ଜୀବନ ଦର୍ଶନର ମୂଳ କଥା ସବୁ ବ୍ୟାଖ୍ୟା କରିବା । ଷୋଡଶ ଶତାବ୍ଦୀର ପରିବର୍ତ୍ତିତ ରାଜନୈତିକ ଅବସ୍ଥାରେ ସମାଜର ଚଳଣିରେ ସଙ୍ଗତି ଓ ସଂହତି ଆଣିବା ପାଇଁ ଏପରି ଲେଖାର ଆବଶ୍ୟକତା ଥିଲା ଓ ପଂଚସଖାଙ୍କର ତତ୍ତ୍ୱ ସାହିତ୍ୟ ବିଶିଷ୍ଟ ଭାବରେ ଏହି ଆବଶ୍ୟକତା ପୂରଣ କଲା । ପଂଚସଖାଙ୍କର ସମସାମୟିକ ଓ ସେମାନଙ୍କ ପରେ ଯେଉଁ ଭକ୍ତ କବିମାନେ ତତ୍ତ୍ୱ ସାହିତ୍ୟ ପରଂପରାରେ ନିଜ ନିଜର ଲେଖାମାନ ଲେଖିଥିଲେ ସେମାନଙ୍କ ମଧ୍ୟରୁ ବିଶେଷ ଭାବରେ ଚାରିଜଣଙ୍କ ନାମ ଉଲ୍ଲେଖ କରାଯାଇ ପାରେ । ସେମାନେ ହେଲେ, ୧.ପଂଚସଖାଙ୍କର ସମସାମୟିକ ଓ ଶିଶୁ ଅନନ୍ତଙ୍କର ଶିଷ୍ୟ ସିଦ୍ଧ ବାରଙ୍ଗ; ୨.ଅଷ୍ଟାଦଶ ଓ ଉନବିଂଶ ଶତାବ୍ଦୀର ଅରକ୍ଷିତ ଦାସ ଓ ୩. ହାଡ଼ି ଦାସ; ୪. ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧର ଭୀମ ଭୋଇ । ସିଦ୍ଧ ବାରଙ୍ଗ ବର୍ତ୍ତମାନର ଜଗତସିଂହପୁର ଅଞ୍ଚଳର (ସେ ସମୟର ହରିହରପୁର), ଓ କୁହାଯାଏ ଅଧୁନା ଲୁପ୍ତ ଅଳକା ନଦୀ କୂଳରେ ତାଙ୍କର

ପୀଠ ଥିଲା ଓ ନିକଟବର୍ତ୍ତୀ ପୂର୍ଣ୍ଣଗ୍ରାମ ବା ପୁନଙ୍ଗରେ ତାଙ୍କର ଆଶ୍ରମ ପ୍ରତିଷ୍ଠା କରିଥିଲେ । ସେ ଅନେକ ଭଜନ, ଜଣାଣ ଓ ଚଉତିଶା ରଚନା କରିଥିବା ମନେ ହୁଏ । 'ବ୍ରହ୍ମକୁଣ୍ଡଳୀ ଗୀତା', ତାଙ୍କର ଏକମାତ୍ର ପ୍ରକାଶିତ ତତ୍ତ୍ୱମୂଳକ ଧର୍ମଗ୍ରନ୍ଥ, ଓଡ଼ିଶୀ ବୈଷ୍ଣବ ଧର୍ମର ଧର୍ମଗ୍ରନ୍ଥ ମଧ୍ୟରେ ଏକ ବିଶିଷ୍ଟ ରଚନା । ପ୍ରଫେସର ବଂଶୀଧର ମହାନ୍ତିଙ୍କ ଦ୍ୱାରା ସଂପାଦିତ ହୋଇ 'ସିଦ୍ଧ ବାରଙ୍ଗ ଉନ୍ନୟନ କମିଟି' ଆନୁକୂଲ୍ୟରେ ୧,୯୭୯ ମସିହାରେ ଏହା ପ୍ରକାଶିତ ହୋଇଥିଲା । ଗ୍ରନ୍ଥଟି ବହୁ ଯୋଗ ତତ୍ତ୍ୱରେ ପରିପୂର୍ଣ୍ଣ, ଓ ଭକ୍ତିବାଦ ଅପେକ୍ଷା ଜ୍ଞାନ ତତ୍ତ୍ୱରେ ଅଧିକତର ଗୁରୁତ୍ୱ ଦିଆଯାଇଛି । ଅରକ୍ଷିତ ଦାସ ଗଂଜାମର ବଡ଼ଖେମୁଣ୍ଡି ଅଂଚଳରେ କ୍ଷତ୍ରିୟ ରାଜ ପରିବାରରେ ଆନୁମାନିକ ୧୭୪୩ଜନ୍ମ ହୋଇଥିଲେ । ସେ ତରୁଣ ବୟସରେ ରାଜ ପରିବାରର ସ୍ୱାଚ୍ଛନ୍ଦ୍ୟ ପରିତ୍ୟାଗ କରି, ବହୁସ୍ଥାନ ଭ୍ରମଣ କଲା ପରେ, ପରିଶେଷରେ କେନ୍ଦ୍ରାପଡ଼ାର ଜମିଦାର ରାଧାଶ୍ୟାମ ନରେନ୍ଦ୍ରଙ୍କ ଆନୁକୂଲ୍ୟରେ କେନ୍ଦ୍ରାପଡ଼ା ଅଞ୍ଚଳ ଅନ୍ତର୍ଗତ ଓଳାଶୁଣି ପର୍ବତରେ ନିଜର ପୀଠ ପ୍ରତିଷ୍ଠା କରିଥିଲେ ଓ ସେହିଠାରେ ହିଁ ନିଜର ଶେଷ ଜୀବନ ଅତିବାହିତ କରିଥିଲେ । ସେ ଜଣାଣ, ଚଉତିଶା ଓ ଭଜନ ପ୍ରଭୃତି ବ୍ୟତୀତ ଅନେକ କାବ୍ୟଗ୍ରନ୍ଥ ବି ରଚନା କରିଥିଲେ । ଯେପରିକି, 'ମହିମଣ୍ଡଳ ଗୀତା', 'ଭକ୍ତିଟୀକା', 'ମହାକବଚ', 'ଅବଧୂତ ସଂହିତା', 'ମହୀମଣ୍ଡଳ ଗୁପ୍ତଟୀକା' ପ୍ରଭୃତି । କୁହାଯାଏ ଅରକ୍ଷିତ 'ଆଜ୍ଞାଧର୍ମ'ର ପ୍ରବର୍ତ୍ତକ, ଅର୍ଥାତ୍ 'ଆଜ୍ଞା' ଅର୍ଥରେ ଭଗବାନଙ୍କର ଆଦେଶ, ମହିମା, ମହତ୍ତ୍ୱ, ଯଶ, ପ୍ରଶସ୍ତି, ଖ୍ୟାତି ଓ ଗୌରବର ସ୍ୱୀକୃତି ଓ ପ୍ରସାର, ଓ ଯେଉଁ ପରବ୍ରହ୍ମ ବିଶ୍ୱର ମୂଳାଧାର ଓ ଯାହାଙ୍କ ଆଜ୍ଞାରେ ସମଗ୍ର ସୃଷ୍ଟି ପରିଚାଳିତ ସେହି ବ୍ରହ୍ମଙ୍କ ସହିତ ଜୀବର ଅଭିନ୍ନତାବୋଧରେ ବିଶ୍ୱାସ । ଅରକ୍ଷିତ ଦାସ ମୁଖ୍ୟତଃ ଯୋଗୀ, ସାଧକ ଓ ଭକ୍ତ, ଓ ପଞ୍ଚସଖାଙ୍କର ପରମାର୍ଥ ସମ୍ବନ୍ଧୀୟ ତତ୍ତ୍ୱକୁ ସେ ନିଜର ରଚନାମାନଙ୍କରେ ମୁଖ୍ୟ ଉପାଦାନ ଭାବରେ ଗ୍ରହଣ କରିଛନ୍ତି । ହାଡି ଦାସ (ହରି ଦାସ) କଟକ ଯାଜପୁର ମଧ୍ୟବର୍ତ୍ତୀ ଛତିଆ ଅଞ୍ଚଳର ଚଂପାପୁର ଗ୍ରାମରେ କମାର କୂଳରେ ଜନ୍ମ ହୋଇଥିଲେ (ଆନୁମାନିକ ୧୭୭୨), ଓ ଦର୍ପଣୀର ଶାସକ ଗୁଲଜାର ହୋସେନଙ୍କ ଆନୁକୁଲ୍ୟରେ ଛତିଆରେ ନିଜର ଆଶ୍ରମ ପ୍ରତିଷ୍ଠା କରିଥିଲେ ଯାହାକି ପରେ 'ଛତିଆ ବଟ' ନାମରେ ପ୍ରସିଦ୍ଧ ହୋଇଛି । କବିଙ୍କ ଜୀବନ ବହୁ ସାମାଜିକ ପ୍ରତିକୂଳତାରେ କଟିଥିଲା, କିନ୍ତୁ ପରବର୍ତ୍ତୀ ସମୟରେ ସେ ବିଶିଷ୍ଟ ସାଧକ ଓ ଭକ୍ତ ଭାବରେ ପ୍ରତିଷ୍ଠିତ ହୋଇଥିଲେ । ଭଜନ, ଜଣାଣ, ଚଉତିଶା, ମାଳିକା, ଓ ଜାମୁଡ଼ାଳୀ ଗୀତ, ରଥଯାତ୍ରା ଗୀତ ଓ ମାଳଶ୍ରୀ ପ୍ରଭୃତି ବ୍ୟତୀତ ସେ ଅନ୍ୟାନ୍ୟ ବହୁ ଗ୍ରନ୍ଥ ରଚନା କରିଥିଲେ । କେତେକ ବିଶିଷ୍ଟ ରଚନା ହେଲା – 'ଅନନ୍ତ ଗୁପ୍ତ ଟୀକା', 'ଅନନ୍ତ

ଗୋଇ', 'ଶଙ୍ଖନାଭି', 'ଭାବନାବର', 'ଲକ୍ଷ୍ମୀଧର ବିଳାସ', 'କ୍ଷେତ୍ରମାହାତ୍ମ୍ୟ', 'ନୀଳ ମାଧବ ଗୀତା', 'ହନୁମନ୍ତ ଗୀତା' ଓ 'ଗୃହସମ' ପ୍ରଭୃତି । କବି ଯୋଗାଶ୍ରୟୀ ଜ୍ଞାନମିଶ୍ରା ଭକ୍ତିର ଉପାସକ ଥିଲେ, ଓ ନୀଳାଚଳନାଥ ଜଗନ୍ନାଥଙ୍କର ପ୍ରଶସ୍ତି ଗାନ କରିବା ସଂଗେ ସଂଗେ ଜଗନ୍ନାଥଙ୍କୁ ସ୍ୱୟଂ ପୂର୍ଣ୍ଣବ୍ରହ୍ମ ରୂପରେ ଉପସ୍ଥାପିତ କରିଛନ୍ତି । ସେ ଗୁରୁବାଦ, ପିଣ୍ଡ ବ୍ରହ୍ମାଣ୍ଡବାଦ, ଶୂନ୍ୟବାଦ, ନାମ ମାହାତ୍ମ୍ୟ, ଆତ୍ମଜ୍ଞାନ ଓ ଯୋଗାଭ୍ୟାସ ପ୍ରଭୃତି ସହିତ ପରୋପକାରର ମହତ୍ତ୍ୱ, ସାଧୁ ସଙ୍ଗ ଓ ସତ୍ୟର ଆଦର୍ଶ ପ୍ରଭୃତି ସାମାଜିକ ଗୁଣବତ୍ତା ସଂପର୍କରେ ବର୍ଣ୍ଣନା କରିଛନ୍ତି ।

ଭୀମ ଭୋଇ ରେଢ଼ାଖୋଲ ଅଞ୍ଚଳର କଙ୍କଣପଡ଼ା ଗ୍ରାମରେ ଗୋଟିଏ କନ୍ଧ ପରିବାରରେ ଜନ୍ମ ହୋଇଥିଲେ (ଆନୁମାନିକ ୧୮୪୨), ଓ ତରୁଣ ବୟସରେ ମହିମା ସ୍ୱାମୀଙ୍କ ଦ୍ୱାରା ମହିମା ଧର୍ମରେ ଦୀକ୍ଷିତ ହୋଇ ମହିମା ଧର୍ମର ପ୍ରଚାରରେ ପ୍ରମୁଖ ଅଂଶ ଗ୍ରହଣ କରିଥିଲେ । ପରବର୍ତ୍ତୀ ସମୟରେ ସେ ସୋନପୁର ଅଂଚଳରେ ଖଲିଆପଲ୍ଲୀରେ ନିଜର ଆଶ୍ରମ ପ୍ରତିଷ୍ଠା କରି (୧୮୭୭) ମୃତ୍ୟୁ ପର୍ଯ୍ୟନ୍ତ ସେହିଠାରେ ହିଁ ରହିଥିଲେ (୧୮୯୫) । କବି ବହୁ ଭଜନ ଓ ଚଉତିଶା ରଚନା କରିଥିଲେ । ତା' ବାହାରେ ପ୍ରକାଶ ପାଇଥିବା ତାଙ୍କର ବିଶିଷ୍ଟ ରଚନାଗୁଡ଼ିକ ହେଲା – 'ସ୍ତୁତି ଚିନ୍ତାମଣି', 'ବ୍ରହ୍ମ ନିରୂପଣ ଗୀତା', 'ଆଦି ଅନ୍ତ ଗୀତା', 'ଅଷ୍ଟକ ବିହାରୀ ଗୀତା', 'ନିର୍ବେଦ ସାଧନା', ଓ 'ଶ୍ରୁତି ନିଷେଧ ଗୀତା' । 'ସ୍ତୁତି ଚିନ୍ତାମଣି'ରେ ଧର୍ମତତ୍ତ୍ୱ ଓ ଧର୍ମଚେତନା ସହିତ କବିଙ୍କର ନିଜର ବ୍ୟକ୍ତିଗତ ଜୀବନ ବିଷୟରେ ବହୁ ସୂଚନା ରହିଛି । ବିଶେଷ କରି ତାଙ୍କର ପ୍ରାରମ୍ଭିକ ଜୀବନର କ୍ଳେଶ ଓ ଦୁଃଖ ଦୁର୍ଦ୍ଦଶା ସଂପର୍କରେ, ଓ ମହିମା ସ୍ୱାମୀଙ୍କ ସହିତ ତାଙ୍କର ସଂପର୍କ ଓ ମହିମା ଧର୍ମ ବିଷୟରେ, ଓ ଅନ୍ୟ ଭାବରେ, ସମସାମୟିକ ଅନ୍ୟାୟ, ଅସତ୍ୟ ଓ ସାମାଜିକ ଅବକ୍ଷୟ ସଂପର୍କରେ ବି । ଏସବୁ ବାହାରେ 'ସ୍ତୁତି ଚିନ୍ତାମଣି' ଗଭୀର ଭାବରେ ଆଧାତ୍ମିକ ଓ ଭକ୍ତି-ଅନୁଭବ ମୂଳକ ରଚନା, ଯେଉଁଠି କବି ବ୍ରହ୍ମଜ୍ଞାନ, ପିଣ୍ଡ ବ୍ରହ୍ମାଣ୍ଡ ବାଦ ଓ ଅଲେଖ ପରମବ୍ରହ୍ମଙ୍କ ସଂପର୍କରେ ଆଲୋଚନା କରିଛନ୍ତି, ଓ ମଣିଷ ଜୀବନରେ ଭକ୍ତି, ଧର୍ମଚେତନା ଓ ସଦିଚ୍ଛାର ମହତ୍ତ୍ୱ ପ୍ରତିପାଦିତ କରିଛନ୍ତି । 'ବ୍ରହ୍ମ ନିରୂପଣ ଗୀତା'ରେ ବ୍ରହ୍ମଜ୍ଞାନ ଓ ଅନ୍ୟାନ୍ୟ ଆଧାତ୍ମିକ ଚିନ୍ତାଧାରାର ବିଶ୍ଳେଷଣ; 'ଅଷ୍ଟକ ବିହାରୀ ଗୀତା'ରେ ସମକାଳୀନ ସାମାଜିକ ଅବସ୍ଥାର ଚିତ୍ର ଓ ମଣିଷର ଦେହ ସଂପର୍କରେ ସୂଚନା; ଓ ଉଭୟ 'ନିର୍ବେଦ ସାଧନା' ଓ ଶ୍ରୁତି ନିଷେଧ ଗୀତା'ରେ, ଯାହାକି ଭୀମ ଭୋଇ ମହିମା ଧର୍ମ ଗ୍ରହଣ କରିବା ପରେ ଲେଖା ଯାଇଥିଲା, ମହିମା ଧର୍ମର ଇତିହାସ, ଅଭିବୃଦ୍ଧି ଓ ବିଚାର ଧାରାର ବିବରଣୀ ।

ବଳରାମଙ୍କର ବ୍ରହ୍ମାଣ୍ଡ ଭୂଗୋଳ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ । ଏଥିରେ ଉଭୟ ଆଧିଭୌତିକ ଓ ଆଧିବିଦ୍ୟକ ଶୃଙ୍ଖଳାର ବିବରଣୀ ରହିଛି । କବି ଜ୍ଞାନ ଲାଭ କରିବାରେ ଆଗ୍ରହୀ । କିନ୍ତୁ ଏ ଜ୍ଞାନ ନିଜର ଦେହ ଓ ସ୍ଥିତିର ବାହାରେ କୌଣସି ବାହ୍ୟିକ ବା ବାହ୍ୟ ଅନୁଭୂତି ନୁହେଁ । ଯେପରିକି ନିଜର ଜ୍ଞାନ ଅନ୍ୟ ଲୋକଙ୍କୁ ଜଣେଇବାର ଚେଷ୍ଟା କରିବା, ବା ଭାଷଣ ଓ ପ୍ରବଚନ ଦେଉଥିବା ଅନ୍ୟ ଲୋକର ଆଲୋଚନାରୁ ଜ୍ଞାନ ଆହରଣ କରିବା, ବା ଲୋକମାନଙ୍କୁ ପ୍ରଭାବିତ କରିବା ପରି ବିଭିନ୍ନ ପୋଷାକ ପତ୍ର ପିନ୍ଧି ନିଜକୁ ଜ୍ଞାନୀ ବୋଲି ପ୍ରତିପାଦିତ କରିବା, ବା ସର୍ବସାଧାରଣରେ ନିଜର ଭକ୍ତି ଓ ଭଗବାନଙ୍କ ପ୍ରତି ଆନୁଗତ୍ୟକୁ ପ୍ରଚାର କରିବା ପାଇଁ ଗୋଟିଏ ତୀର୍ଥସ୍ଥାନରୁ ଆଉ ଗୋଟିଏ ତୀର୍ଥ ସ୍ଥାନକୁ ପରିଭ୍ରମଣ କରିବା, ବା ନିଜକୁ ଭକ୍ତ ଭାବରେ ପ୍ରତିଷ୍ଠିତ କରିବା ପାଇଁ ଦିନରାତି ଅସଂଖ୍ୟ ଆଚାର ବିଚ୍ଛାରର ଶୃଙ୍ଖଳା ମାନି ନିଜକୁ ଶୁଦ୍ଧପୂତ କରି ରଖିବାର ଚେଷ୍ଟା । ଏସବୁ ନିଜର ଦେହ ବା ନିଜସ୍ୱ ସତ୍ତାର ବାହାରର ବସ୍ତୁ । ବଳରାମଙ୍କ ମତରେ ପ୍ରକୃତ ଜ୍ଞାନ ସହିତ ଏସବୁର ସଂପର୍କ ନାହିଁ, ବା ଏସବୁରୁ କୌଣସି ବ୍ୟକ୍ତି ପ୍ରକୃତ ଜ୍ଞାନ ଆହରଣ କରି ପାରିବ ନାହିଁ । ସେଥିପାଇଁ ନିଜକୁ ନିଜେ ଦେଖିବାକୁ ହେବ, ନିଜର ଦେହକୁ, ନିଜର ସତ୍ତାକୁ, ନିଜର ଅନ୍ତଃସ୍ଥଳକୁ, କାରଣ ଏକମାତ୍ର ନିଜ ଠାରେ ହିଁ ପ୍ରକୃତ ଜ୍ଞାନ ଅବଲମ୍ବିତ ହୋଇ ରହିଛି, ଓ ସେହିହିଁ ପ୍ରକୃତ ଜ୍ଞାନୀ ଯେ ଏ ଜ୍ଞାନକୁ ବୁଝିପାରେ, ଆହରଣ କରି ପାରେ, ଓ ନିଜର ଜୀବନକୁ ଏହି ଜ୍ଞାନର ଧାରାରେ ପରିଚାଳିତ କରିପାରେ । ଏହି ଜ୍ଞାନର ମୂଳସୂତ୍ର ହେଉଛି ପରମବ୍ରହ୍ମଙ୍କ ସଂପର୍କରେ ସଚେତ ହେବା, ଯେ କି ସବୁ ଗୁଣର ଊର୍ଦ୍ଧ୍ୱରେ, 'ତ୍ରିକୂଟ'ର ଶୀର୍ଷରେ ଅବସ୍ଥାନ କରନ୍ତି, ଓ ସଂପୂର୍ଣ୍ଣ ଆଲୋକିତ ସ୍ଥିତିରେ ନିଜକୁ ପ୍ରକାଶିତ କରନ୍ତି; ଯେ ଭସ୍ମରେ ଅଗ୍ନି ପରି, ଜଳରେ ଦେହର ପ୍ରତିବିମ୍ବ ପରି, ବା ଦର୍ପଣରେ ମୁହଁର ପ୍ରତିଛାୟା ପରି; ଯାହାଙ୍କ ବିଷୟରେ ସଚେତ ହେଲେ ପ୍ରଦୀପ ଅଂଧକାର ଦୂରୀଭୂତ କଲାପରି ମନର ଅଂଧକାର ଦୂରୀଭୂତ ହୋଇଯାଏ, ଓ ଯାହା ଦେହର ଉତ୍ତାପକୁ ଶୀତଳ କରେ :

ବୋଲନ୍ତି ପ୍ରଭୁ ଚକ୍ରପାଣି, ଶୁଣ ଅର୍ଜ୍ଜୁନ ଜ୍ଞାନ ବାଣୀ ।
ଯେ ଜ୍ଞାନ ତହିଁ ଉପଦେଶ, ଜାଣିଲେ ତାପ ହୁଏ ନାଶ ।
ଗୃହ ଯେସନ ଅଂଧକାର, ପ୍ରଦୀପ ଜ୍ୱାଳନ୍ତେ ନିର୍ମଳ ।

ତେମନ୍ତ ମୋହର ବଚନ । ପ୍ରଦୀପ ଅଟଇ ଅର୍ଜୁନ ।
ସଂସାରେ ମୂଢ଼ ପ୍ରାଣୀମାନେ । ଜ୍ଞାନ ନ ଜାଣି ଟାଣପଣେ ।
ମିଛେ ହେଁ ଟାଣି ହେଉଥାନ୍ତି । ଆମ୍ଭେ ଜାଣୁ ବୋଲି ବୋଲନ୍ତି ।

**********

ଯେ ସର୍ବ ମିଥ୍ୟା ହେ ଅର୍ଜୁନ । ମୁଇ ସତ୍ୟ ଜ୍ଞାନୀ ନିର୍ଗୁଣ ।
ଅନିତ୍ୟ ଶରୀର ନିର୍ଗୁଣ । ତ୍ରିକୂଟ ପରେ ଦେଖ ବୀର ।
ଭସ୍ମ ଭିତରେ ଅଗ୍ନି ଯେହ୍ନେ । ମୋ ରୂପ ତ୍ରିକୂଟରେ ତେହ୍ନେ ।
ପାଣି ଭିତରେ ଦେହ ଯେହ୍ନେ । ବ୍ରହ୍ମ ଦ୍ରୋଛନା ଦେହ ତେହ୍ନେ ।
ଦର୍ପଣେ ମୁଖ ଯେହ୍ନେ ଦିଶି । ଧ୍ୟାନେ ତାହାନ୍ତେ ତେହ୍ନେ' ଦିଶି ।

(ସପ୍ତଦଶ ଅଧ୍ୟାୟ)

ଏହିପରି ବୁଝି ପାରିବାହିଁ ବଳରାମଙ୍କ ମତରେ ପ୍ରକୃତ ଜ୍ଞାନ । ଏହି ଜ୍ଞାନର ସଠିକ୍ ଆହରଣ ପାଇଁ ସାଧକଙ୍କୁ ପ୍ରଥମେ ଦେହ (ଘଟ) ଓ ଦେହର ଶୃଙ୍ଖଳା ବିଷୟରେ ଅବହିତ ହେବା ଆବଶ୍ୟକ, ଯାହାକି 'ଷଡଚକ୍ର'ର ନିୟମରେ ସଂଗଠିତ ହୋଇଛି ଓ ନିଶ୍ୱାସ ପ୍ରଶ୍ୱାସର ଅଭ୍ୟାସରେ ପରିଚାଳିତ । ଅନ୍ୟତ୍ର, ଅଷ୍ଟମ ଅଧ୍ୟାୟରେ, ବଳରାମ 'ଷଡଚକ୍ର' ଓ 'ଦ୍ୱାଦଶ ଶବ୍ଦ'କୁ ପ୍ରତିକଳ୍ପର ପ୍ରତୀକତାରେ ପ୍ରକାଶ କରିଛନ୍ତି :

ଶ୍ରୀହରି ବୋଲନ୍ତି ଅର୍ଜୁନ । ଯାହା ପୁଛଇ ବ୍ରହ୍ମଜ୍ଞାନ ।
ଶୁଣ ହୋ ଦୃଷ୍ଟାନ୍ତର ଅର୍ଥ । ଗୋଧିକା ଘାଟ ପରେ ତତ୍ତ୍ୱ ।
ସେ ଭୂମି ଅଖଣ୍ଡ ମଣ୍ଡଳ । ପୁଷ୍କରିଣୀ ତହିଂ ଅମୂଲ୍ୟ ।
ତହିଂ ସପତ ତାଳ ଜଳ । ପଦ୍ମ କି ଫୁଟଇ ନିର୍ମଳ ।
ସହସ୍ରେ ପାଖୁଡ଼ା ପଦ୍ମର । ଭ୍ରସଲ କୂଳ ଅଗୋଚର ।
ପାଖୁଡ଼ା ଗୋଟିକେ ଭ୍ରମର । ସହସ୍ରେ ଲେଖାଂ ଯେ ହୋ ବୀର ।
ମଧୁ ଲୁବ୍‌ଧେ ବସିଛନ୍ତି । କେଶର କେବେ ନ ତେଜନ୍ତି ।
ସେ ପଦ୍ମ ମୂଳ ଅଗୋଚର । ନ ଜାଣେ ବ୍ରହ୍ମାଦି ଶଙ୍କର ।
ପୁଷ୍କରିଣୀ ମଧ୍ୟରେ ସାର । ସ୍ତମ୍ଭେକ ଅଛଇ ହୋ ବୀର ।
ସମୀର ସ୍ତମ୍ଭ ସେ ଅଟଇ । ତଦଗ୍ରେ ହଂସ ବସିଥାଇ ।
ସେ ହଂସ ଜପଇ ମୁଖରେ । ରାମ ଶବଦ ନିରନ୍ତରେ ।
ସେ ଷଡ ପଦ୍ମରେ ଭେଦଇ । ଦ୍ୱାଦଶ ପ୍ରକାରେ ଶୁଭଇ ।
ସକଳ ବ୍ରହ୍ମଋଷିମାନେ । ସାଧନ୍ତି ଏକାଗ୍ର ଧିଆନେ ।

********

ଯେମନ୍ତେ ଦ୍ୱାଦଶ ଶବଦ । ଛଡ଼ ଚକ୍ରରେ ଶୂଳ ନାଦ ।
ଯେକୋଇଶ ସହସ୍ର ଜାଣ । ଶତ ଶତ ତାର ଭଜନ ।
ଆଠ ସହସ୍ର ଯେ ଆଠଶ । ଅଠାଶୀ ବେଳା ବାୟୁଭ୍ୟାସ ।
ଯେତେକ ଜୀବର ଭଜନ । ଯେ ରାମ ଶବଦ ଅର୍ଜୁନ ।
ଯେ ପଟେ ସାଧନ କରିବୁ । ନିଚୟେ ଶବଦ ଶୁଣିମୁ ।

ଶୂନ୍ୟ ଶୂନ୍ୟରେ ଅବସ୍ଥାନ କରେ । ଏ ଠିକ୍ ଦର୍ପଣର ଉଜ୍ଜ୍ୱଳତା ପରି, ବା ଅଗ୍ନିର ଜ୍ୟୋତି ପରି, ଓ ପ୍ରତ୍ୟେକ ଭକ୍ତ ବା ସାଧକର ନିଜର ଦେହ ବା ଘଟରେ ଯେ ପରମ ବ୍ରହ୍ମ ରହିଛନ୍ତି ଏହା ବୁଝିବା ଏକାନ୍ତ ଆବଶ୍ୟକ । ପୂର୍ବପରି ପ୍ରତୀକତାରେ, ଓ ଧନ୍ଦାମୂଳକ ଆଚ୍ଛାଦନରେ କବି ନିଜର ଅନୁଭୂତି ପ୍ରକାଶ କରିଛନ୍ତି । ଯେପରି ପ୍ରଥମ ଅଧ୍ୟାୟରେ :

ବୃକ୍ଷ ଶିଖରେ ପକ୍ଷି ବେନି । ଅତ୍ୟନ୍ତ ପ୍ରୀତି ସେହ୍ନ ବେନି ।
ସକଳ କର୍ମମାନ ଜାଣ । ଏକଇ ପକ୍ଷି ତା ବୃକ୍ଷେଣ ।
ଆରକ-ପକ୍ଷୀ ବିଲ ଗଲେ, ସେ ଥାଇ ଅମନ ମନ୍ଦିରେ ।
କାଉଁରି ମଣ୍ଡଳରେ ସ୍ଥାନ । ସୁହଂସ ନାମ ନିରଞ୍ଜନ ।
ଅବ୍ୟକ୍ତ ମହାବ୍ରହ୍ମଂ ସେହି । ଯେ ଚିନ୍ତେ ତାର ଭୟ ନାହିଁ ।

ଦ୍ୱାଦଶ ଅଧ୍ୟାୟରେ ସେହିପରି,

ଯେ ଅଣାକାର ଶୂନ୍ୟ ଭୂଇଁ । ତହିଁରେ ଚନ୍ଦ୍ର ସୂର୍ଯ୍ୟ ନାହିଁ ।
ଯେ ଯେତେ ଯାଗ ଯଜ୍ଞମାନ । ସେ ଥାନେ ନାହିଁ ହୋ ଅର୍ଜୁନ ।
ସେ ବ୍ରହ୍ମରୂପ ନିର୍ବିକଳ୍ପ । ଅନାଦି ପରମ ଅଗୋପ୍ୟ ।
ଉତୁଶୀ (ଅତସୀ) ପୁଷ୍ପ ପ୍ରାୟେ ବର୍ଣ୍ଣ । ତା ମଧ୍ୟେ ପ୍ରଭୁ ନିରଞ୍ଜନ ।
ତା' ମଧ୍ୟେ ଜ୍ୟୋତି ବ୍ରହ୍ମ ରହି, ମଧ୍ୟେ ବାଲୁତ ଦିଶଇ ।
ବାଲୁତ ମଧ୍ୟେ ମହାବ୍ରହ୍ମ । ସେ ବ୍ରହ୍ମ ସକଳ ଘଟଣ ।

'ବ୍ରହ୍ମାଣ୍ଡ ଭୂଗୋଳ'ରେ ଷୋଡଶ ଶତାବ୍ଦୀର ଭକ୍ତି ସାହିତ୍ୟର ତିନୋଟି ମୁଖ୍ୟଧାରା ବିଷୟରେ କୁହାଯାଇଛି – ଜ୍ଞାନ, ଯୋଗ ଓ ଭକ୍ତି ଓ ବଳରାମଙ୍କ ଲେଖାରେ ଆମେ ଏହି ତିନୋଟି ଧାରାର ସଂମିଶ୍ରଣ ଲକ୍ଷ୍ୟ କରି ପାରିବା । ଏ ପ୍ରତ୍ୟେକ ଧାରାର ନିଜସ୍ୱ ସଂଗଠନ ରହିଛି, ଓ ଏ ପ୍ରତ୍ୟେକ ଧାରା ସମାନ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ କବି ତାଙ୍କର ନିଜସ୍ୱ ଉପସ୍ଥାପନା ଓ ବିଶ୍ଳେଷଣରେ, ମନେହୁଏ, ଭକ୍ତିଧାରା ପ୍ରତି କିଛି ଅଧିକ ଗୁରୁତ୍ୱ ଦେଇଛନ୍ତି । ତା' ସହିତ ଦେହର ସଂଗଠନ ଓ ଶୃଙ୍ଖଳା ସହିତ ପରିଚିତ ହେବା ଯେପରି ଆବଶ୍ୟକ, ଦେହର ଶୃଙ୍ଖଳାରେ ପରମ ବ୍ରହ୍ମଙ୍କର ଉପସ୍ଥିତି ପ୍ରତି

ସଚେତ ହେବା ସେହିପରି ଗୁରୁତ୍ୱପୂର୍ଣ୍ଣ । ଅର୍ଥାତ୍, ଅନ୍ୟ ଭାବରେ କହିଲେ, ସାଧକ ବା ଭକ୍ତ ଯେ ହେଉ ବା ଯେଉଁ ପ୍ରକାରର ହେଉ, ତାର ଦେହ ଓ ମନର ଶୁଦ୍ଧତା, ଏକାଗ୍ରତା ଓ ଆନ୍ତରିକତା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ଓ କେବଳ ସେହି ମାଧ୍ୟମରେ ହିଁ ସେ ପରମ ଜ୍ଞାନ ଲାଭ କରି ପାରିବ ।

ଦାରୁବ୍ରହ୍ମ ଗୀତାରେ ଅନ୍ୟପକ୍ଷରେ 'ବ୍ରହ୍ମାଣ୍ଡ ଭୂଗୋଳ' ପରି ତତ୍ତ୍ୱର ବ୍ୟାଖ୍ୟାନ ବା ଆଲୋଚନା ନାହିଁ । ଏହା ମୁଖ୍ୟତଃ ଘଟଣାଭିତ୍ତିକ । ଅର୍ଥାତ୍ ଗୋଟିଏ ଘଟଣାକୁ ଭିତ୍ତିକରି ତାର ବିଭିନ୍ନ ପର୍ଯ୍ୟାୟକୁ ଦେଖେଇ ଦିଆଯାଇଛି । ଘଟଣାଟି ଶ୍ରୀକୃଷ୍ଣଙ୍କର ଦେହାନ୍ତ ଓ ତାର ପରବର୍ତ୍ତୀ କେତେକ ଘଟଣାର ବିବରଣୀ । ଏହି ବିବରଣୀର ଧାରା ମୂଳ ମହାଭାରତ ନୁହେଁ, 'ସାରଳା ମହାଭାରତ'ରୁ ଅଣାଯାଇଛି ଓ ଏଥିରେ ଅଲୌକିକତାର ସୂଚନା ସହିତ କିମ୍ବଦନ୍ତୀ ଓ ବାସ୍ତବତା ମିଶି କରି ରହିଛି । ଦ୍ୱିତୀୟରେ, ବିବରଣୀର ସଂଗଠନରେ ଐଶ୍ୱରିକତା ବା ଦୈବୀ ଶକ୍ତିର ଉପସ୍ଥାପନା ଅତ୍ୟନ୍ତ ସ୍ପଷ୍ଟ । ସ୍ୱରରେ ବିସ୍ମୟ ଓ ଭୟ, ଓ ଅନୁଭବ ଗଭୀର ଭାବରେ ଭକ୍ତିର ଅନୁଭବ । ତୃତୀୟରେ, ବିବରଣୀରେ ଶ୍ରୀକୃଷ୍ଣ ଶ୍ରୀ ଜଗନ୍ନାଥରେ ରୂପାନ୍ତରିତ ହୋଇଛନ୍ତି, ଯାହାକି ଓଡ଼ିଶାର ବୈଷ୍ଣବୀୟ ଧାରାର ମୁଖ୍ୟ ବିଚାରଧାରା ଓ ଓଡ଼ିଶାର ଭକ୍ତି ସାହିତ୍ୟର ମୁଖ୍ୟ ଆଭିମୁଖ୍ୟ । ସାରଳା ଦାସ ଯେଉଁ ପରିବର୍ତ୍ତନର ସୂଚନା ଦେଇଥିଲେ, 'ଦାରୁବ୍ରହ୍ମ ଗୀତା'ରେ ତାହା ସ୍ପଷ୍ଟତର ହେଲା, ଓ ଶ୍ରୀକୃଷ୍ଣଙ୍କର 'ପୁଣ୍ୟ ଦାରୁ' ଦ୍ୱାରକାର ସମୁଦ୍ର କୂଳରୁ ନୀଳାଚଳର ସମୁଦ୍ର କୂଳକୁ ଆସି ବହୁ ଯୁଗ ପରେ ନୀଳାଚଳରେ 'ଦାରୁବ୍ରହ୍ମ' ରୂପରେ ପ୍ରତିଷ୍ଠିତ ହୋଇ ପୂଜିତ ହେଲେ । ଜଗନ୍ନାଥଙ୍କର ବର୍ଣ୍ଣନା ଗୋଟିଏ ନକ୍ସା ପରି :

ଦେଖିବ ଦାରୁରୂପେ ହରି । ବିଜୟ ପ୍ରଭୁ ଦଇତାରି ।
ରାଜା ତା ଘେନାଇ ଆସିବ । ପ୍ରାସାଦ ଭିତରେ ରଖିବ ।
ଏମନ୍ତେ ଷୋଳ ଦିନ ଅନ୍ତେ । ଦେଖିବ ଯାଇ ନରନାଥେ ।
ଧରିଣ ଚତୁର୍ଦ୍ଧା ମୂରତି । କପଟେ ଦାରୁ ବ୍ରହ୍ମ ଜ୍ୟୋତି ।
ଦେଖିବ ନୃପତି ଶେଖର । ମନରେ ହୋଇବ କାତର ।
ଭୋଗ ନିମନ୍ତେ ବିଚାରିବ । ଛତିଶ ନିଯୋଗ ଖଞ୍ଜିବ ।
ତିନି ଧୂପକୁ ଆରମ୍ଭିବ । ପଞ୍ଚ ଅବକାଶ କରିବ ।
ସମସ୍ତ କରିଣ ଭିଆଇ । ପୂଜା ଯେ ସମସ୍ତ କରାଇ ।
ଏ ରୂପେ ପ୍ରଭୁ ପ୍ରକାଶିବେ । ନୀଳାଚଳରେ ବିଜେ ହେବେ ।
ଯୁଗକୁ ଯୁଗ ଏହି ମତେ । ପରମାନନ୍ଦ ଏ ଜଗତେ ।

(୩ୟ ଅଧ୍ୟାୟ)

ବିବରଣୀର ପ୍ରଥମ ପର୍ଯ୍ୟାୟରେ ଶ୍ରୀକୃଷ୍ଣଙ୍କର ଦେହାନ୍ତ, ଜାରା ଶବରର ମାନସିକ ଯନ୍ତ୍ରଣା, ଓ ଜାରାର ମୋକ୍ଷପ୍ରାପ୍ତି ("ଯାଅତୁ ଚଳି ଏହି କ୍ଷଣ । ଜାରାକୁ ନିଅ ସେହି ସ୍ଥାନ ।। ଆମ୍ଭେ ଯେ ନକ୍ଷତ୍ର ରୂପରେ । ଉଦୟ ହେଉ ନିରନ୍ତରେ ।। ସେଠାକୁ ଆମ୍ଭ ପାଶେ ନେଇ । ନକ୍ଷତ୍ର ରୂପେ ଦେହ ବହି । ଏହାକୁ ରଖ ସେ ଠାବରେ । ସେ ଥାଉ ଯୁଗ ଯୁଗାନ୍ତରେ ।") । ପରେ ପରେ ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କର ଲୌକିକ କାର୍ଯ୍ୟ କରିବା ପାଇଁ ଦ୍ୱାରକାରେ ଆସି ପହଞ୍ଚିଛନ୍ତି । କିନ୍ତୁ ସବୁ ଚେଷ୍ଟା ସତ୍ତ୍ୱେ ସେମାନେ ଶ୍ରୀକୃଷ୍ଣଙ୍କର ମର ଶରୀରକୁ ଦାହ କରିବାରେ ସଫଳ ହେଲେ ନାହିଁ । ("ଏମନ୍ତେ ଦୁଇଦିନ ଗଲା । ଅଗ୍ନି ତା ଦହି ନ ପାରିଲା । ଅଗ୍ନି ଜଳିଲା ଦାଉ ଦାଉ । ଲେଶେ ହେଁ ନ ପୋଡ଼ିଲା ଆଉ ।। ପାଣ୍ଡବେ ତାଟକା ହୋଇଲେ । ବିସ୍ମୟ ହୋଇଣ ବସିଲେ ।। ସୁବର୍ଣ୍ଣ ଅଗ୍ନିରେ ଦହନ୍ତେ । ଶୋଭା ଦିଶଇ ସେ ଯେମନ୍ତେ ।। ଦିଶେ ସେପରି କୃଷ୍ଣ ଅଙ୍ଗ । ପାଣ୍ଡବେ ମନେ ଉଦବେଗ") ଓ ପରିଶେଷରେ ଶ୍ରୀକୃଷ୍ଣଙ୍କର ମର ଶରୀରକୁ ସେହିପରି ଭାବରେ ସମୁଦ୍ରକୁ ଅର୍ପଣ କଲେ ("ଏମନ୍ତେ ଚାରିଭାଇ ଗଲେ । ଜଳ ସମୁଦ୍ରରୁ ଆଣିଲେ ।। ଅଗ୍ନିକି କରିଣ ଶୀତଳ । କୃଷ୍ଣର ଧରିଣ ଶରୀର ।। ନିର୍ଦ୍ଧୂମ ଅଗ୍ନି ପ୍ରାୟେ ଦେହୀ । କୋଟିଏ ସୂର୍ଯ୍ୟଙ୍କୁ ନିନ୍ଦଇ ।। କୋଟିଏ ଚନ୍ଦ୍ରରୁ ଶୀତଳ । କୃଷ୍ଣର ଧରିଣ ଶରୀର ।। ପାଣ୍ଡବ ମାନେ ଘେନିଗଲେ । ସମୁଦ୍ର କୂଳରେ ଥୋଇଲେ ।। ସମୁଦ୍ର ଭିତରେ ପଶିଲେ । କୃଷ୍ଣର ପିଣ୍ଡ ମେଲିଦେଲେ ।") । ବର୍ଣ୍ଣନାରେ ବାସ୍ତବ ଚିତ୍ର ସହିତ କିଛି କିଛି ଅଲୌକିକତାର ଅନୁଭବ ରହିଛି । ବିବରଣୀର ଦ୍ୱିତୀୟ ପର୍ଯ୍ୟାୟରେ ସେହିପରି ଉଭୟ ବାସ୍ତବ ଘଟଣାର ଚିତ୍ର ଓ ଅଲୌକିକତା । ଶ୍ରୀକୃଷ୍ଣଙ୍କ ଶରୀର 'ଦାରୁ'ରେ ପରିବର୍ତ୍ତିତ ହୋଇଛି, ଓ ଭାସି ଆସି ପୁରୀ (ନୀଳଗିରି) ର ସମୁଦ୍ର କୂଳରେ ଲାଗିଛି । ଶେଷ ପର୍ଯ୍ୟାୟରେ ଦୁଇ ବିଭିନ୍ନ ସ୍ଥିତି । ପ୍ରଥମରେ ପୁଣ୍ୟ 'ଦାରୁ' ସେହିପରି ଭାବରେ ଶବର ରାଜା ବସୁ ଦ୍ୱାରା ଅରଣ୍ୟର ଅଭ୍ୟନ୍ତରରେ ପୂଜିତ ହୋଇଛି, ଓ ଦ୍ୱିତୀୟରେ ରାଜା ଇନ୍ଦ୍ରଦ୍ୟୁମ୍ନ ('ଇନ୍ଦ୍ରଦ୍ୟୁମନ') ଦାରୁ ବ୍ରହ୍ମକୁ 'ଚତୁର୍ଦ୍ଧା' ମୂର୍ତ୍ତି ଭାବରେ ପୂଜା କରିଛନ୍ତି, ଓ ପୁରୀର ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କର ପୂଜା ଅର୍ଚ୍ଚନା ଆରମ୍ଭ ହୋଇଛି । ଲକ୍ଷ୍ୟ କରିବାର କଥା ଏ ବିବରଣୀ ସଂପୂର୍ଣ୍ଣ ଭାବରେ ଶ୍ରୀ ଜଗନ୍ନାଥଙ୍କର ସୃଷ୍ଟି ଓ ଆରାଧନାର ବିବରଣୀ – କିପରି ଭାବରେ ପୁରୀରେ ଶ୍ରୀଜଗନ୍ନାଥଙ୍କୁ ଉପଲକ୍ଷ୍ୟ କରି ବୈଷ୍ଣବମାନଙ୍କର, ବିଶେଷ କରି ଓଡ଼ିଶାର ବୈଷ୍ଣବମାନଙ୍କର, ଭକ୍ତି ଓ ପ୍ରାର୍ଥନାର ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ କେନ୍ଦ୍ର ଗଢ଼ି ଉଠିଲା । 'ଦାରୁ ବ୍ରହ୍ମ ଗୀତା'ର ଏହାହିଁ ବିଶେଷତ୍ୱ । ଅନ୍ୟାନ୍ୟ ଭକ୍ତ କବିମାନଙ୍କର ରଚନା ପରି, ଏଥିରେ ଜ୍ଞାନଯୋଗ, ଜ୍ଞାନଯୋଗର ବିସ୍ତାରିତ ବିବରଣୀ ବା ଯୋଗର ଶୃଙ୍ଖଳା ଓ ଧ୍ୟାନର ବିବରଣୀ ନାହିଁ । ଏହାର

ଆଭିମୁଖ୍ୟ ମୁଖ୍ୟତଃ ଭକ୍ତି, ଭକ୍ତିର ଏକାଗ୍ରତା, ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କୁ ମିଳିତ କରି ଉଭୟଙ୍କର ଏକତ୍ୱର ଅନୁଭବ, ଓ ଉଭୟଙ୍କ ଠାରେ ସର୍ବୋଚ୍ଚ ଐଶ୍ୱରିକ ଗୁଣର ଆରୋପ । ଲେଖାର ଆରମ୍ଭରୁ କବି ପରମ ପୁରୁଷ ନାରାୟଣଙ୍କର ପ୍ରାର୍ଥନା କରିଛନ୍ତି- "ଜୟ ହେ ଜୟ ନାରାୟଣ, ଯେ ନାମ ପରମ କାରଣ । / ଅଖିଳ ବ୍ରହ୍ମାଣ୍ଡ ଠାକୁର, ଯେ ନାମ ଜପଇ ଶଙ୍କର ।" ପରେ 'ଦାରୁ ବ୍ରହ୍ମ ଗୀତା'ରେ ତିନୋଟି ଅଧ୍ୟାୟରେ ଉଭୟ ଶ୍ରୀକୃଷ୍ଣ ଓ ଶ୍ରୀ ଜଗନ୍ନାଥଙ୍କୁ ବାରମ୍ବାର 'ପରମ ପୁରୁଷ' ଓ 'ପରମ ବ୍ରହ୍ମ' ଭାବରେ ଅନୁଭବ କରାଯାଇଛି । ପ୍ରଥମେ, ଯେପରି ଶ୍ରୀକୃଷ୍ଣଙ୍କ ଶରୀରକୁ ଦାହ କରିବା ପାଇଁ ପାଣ୍ଡବମାନଙ୍କର କୁଣ୍ଠା, ସଂକୋଚ ଓ ଅସଫଳତା, କାରଣ ଶ୍ରୀକୃଷ୍ଣ ସବୁ ପ୍ରକାର ମାନବୀୟ ଅବସ୍ଥାର ଉର୍ଦ୍ଧ୍ୱରେ :

ଏ ତ ଅନାଦି ନାରାୟଣ । କେମନ୍ତେ କରିବା ଦହନ ।
ଅଗ୍ନି ତ ନ ପାରଇ ଦହି । ପବନ ନ ପାରେ ଉଡ଼ାଇ ।
ଖଡ଼ଗେ ନ ଛିଡଇ ଜାଣ । ପୁଣି ନୋହିବ ଏହି ପୁଣ ।
ଅବ୍ୟକ୍ତ ବ୍ରହ୍ମ ନିରାକାର । ପୂରି ଅଛଇ ଜଗତର ।
ସବୁ ଘଟରେ ଅଛି ପୂରି । ମହିମା କେହୁ କହି ପାରି ।

(୨ୟ ଅଧ୍ୟାୟ)

ପରେ ପରେ, ସେହି ୨ୟ ଅଧ୍ୟାୟରେ, ସମାନ ବିଚାର, ସମାନ ଭୟ :

ଯାହାର ବର୍ଣ୍ଣ ଚିହ୍ନ ନାହିଁ । ସଚ୍ଚିଦାନନ୍ଦ ପୁଣ୍ୟ ଦେହୀ ।
ଅଗ୍ନି ତେଜରୁ ତା' ଶରୀର । ଅଗ୍ନି ଯା ଗର୍ଭରୁ ବାହାର ।
ଏ ତ ଅନାଦି ନାରାୟଣ । ନାମ ଯାହାର ପରବ୍ରହ୍ମ ।

ସେହିପରି, ଅଲୌକିକ ଦାରୁକୁ ସମୁଦ୍ରରେ ଭାସୁଥିବାର ଦେଖି ବସୁ ଶବରର ସେହି ଏକା ଅନୁଭବ :

ନିର୍ଧୂମ ଅଗ୍ନି ପ୍ରାଏ ତେଜ । ଜିଣି ପାରେ ସେ କୋଟି ସୂର୍ଯ୍ୟ ।
କୋଟିଏ କାମ ପ୍ରାଏ ଅଙ୍ଗ । ଶ୍ରୀ ଅଙ୍ଗେ ବାଜୁଛି ତରଙ୍ଗ ।
ଏ ତ ପରମ ବ୍ରହ୍ମ ରାଶି । ଦେଖିଲି ଚର୍ମନେତ୍ରେ ଆସି ।
ଏ ପ୍ରଭୁ ଜଗତ ଈଶ୍ୱର । ଭାସୁଛି ସମୁଦ୍ରର ତୀର ।
କୋଟିଏ ଅଗ୍ନି ପ୍ରାଏ ତେଜ । ସହସ୍ର ସୂର୍ଯ୍ୟ ପ୍ରାଏ ତେଜ ।
କେମନ୍ତେ ଛୁଇଁବିଟି ମୁହିଁ । ଛୁଇଁଲେ ଜଳିଯିବ ଦେହୀ ।

(୩ୟ ଅଧ୍ୟାୟ)

ପରିଶେଷରେ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥ ଏକୀଭୂତ ହୋଇ ଯାଇଛନ୍ତି- ଏକା ଅନୁଭବ,

ଏକା ବିଶ୍ୱାସ, ଓ ଚତୁର୍ଦ୍ଧା ମୂର୍ତ୍ତି ଭାବରେ ପୂଜା, ଅର୍ଚ୍ଚନା, ଆରାଧନା ମାଧ୍ୟମରେ 'ଦାରୁ ବ୍ରହ୍ମ' ପୂଜିତ ହୋଇ ଆସୁଛନ୍ତି ("ଏ ରୂପେ ପ୍ରଭୁ ପ୍ରକାଶିବେ । ନୀଳାଚଳରେ ବିଜେ ହେବେ ।")

ଏହାହିଁ 'ଦାରୁବ୍ରହ୍ମ ଗୀତା'ର ମୁଖ୍ୟ ଆଭିମୁଖ୍ୟ ଓ ଅନୁଭବ ଯାହାର କି ସମସାମୟିକ ଅନ୍ୟାନ୍ୟ ବିଶିଷ୍ଟ ଭକ୍ତ କବିମାନଙ୍କର ଆଭିମୁଖ୍ୟ ସହିତ ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ଏହା ସହିତ ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସାମଞ୍ଜସ୍ୟ ବି ଲକ୍ଷ୍ୟ କରାଯାଇପାରେ । ସେ ସାମାଜିକ ବିଚାରଧାରାର ଆୟତନ । ଅଚ୍ୟୁତାନନ୍ଦଙ୍କର 'ମାଳିକା' ପରି ଭବିଷ୍ୟତ କଥନ – ଭବିଷ୍ୟତର ଆଧ୍ୟାତ୍ମିକ ଓ ଚରିତ୍ରଗତ ଅବକ୍ଷୟର ସୂଚନା, ଯେପରି ୨ୟ ଅଧ୍ୟାୟରେ 'ଶ୍ରୀ ଶୁକ ଉବାଚ'ରେ :

କଳି ଯୁଗରେ ନର ଲୋକେ । ହିଂସା ବହିବେ ଏକେ ଏକେ ।
ବେଦ ବଚନ ନ ମାନିବେ । ମୂଢ଼ ପଣରେ ଦିନ ନେବେ ।
ନିନ୍ଦିବେ ଶାସ୍ତ୍ର ଗୁରୁବାଣୀ । ପିତାମାତାଙ୍କୁ ହିଁ ନ ଗଣି ।
ଧର୍ମରେ ନ କରି ବିଚାର । ଅଧର୍ମେ ନେଉଥିବେ କାଳ ।

ଅଚ୍ୟୁତାନନ୍ଦଙ୍କର ଚାରିଖାନି ବା ଶବ୍ଦବ୍ରହ୍ମ ସଂହିତାରେ ସମୁଦାୟ ୪ଟି ବିଭାଗ, ୧୬୩ ଧାଡ଼ି, ଓ ମନ ଚୈତନ୍ୟ ବିବରଣୀରେ ଏହା ଲେଖାଯାଇଛି । ଅର୍ଥାତ୍, ମନ ହିଁ ମୁଖ୍ୟ, ଓ ଅନ୍ୟ ଯାହା କିଛି ଆମେ ଚିନ୍ତା କରିବା ସେ କେବଳ ମନର ଉପଯୋଗିତା ବା ପରିପୁଷ୍ଟି ପାଇଁ । ଯେପରି ଶରୀର, ବିଦ୍ୟା, ଜ୍ଞାନ ଓ ଯେତେ ପ୍ରକାର କଠୋର ବା ସଂଯତ ଅଭ୍ୟାସ, ସବୁକିଛି । ମନକୁ ଠିକ୍ ଭାବରେ ବୁଝିଲେହିଁ ମଣିଷ ନିଜର ମୋକ୍ଷ ବା ଅନ୍ତିମ ମୁକ୍ତି ପାଇପାରେ, ଅନ୍ୟଥା ନୁହେଁ । କବି ଏହି ସ୍ଥିତିର ସାମଗ୍ରିକ ବିଶ୍ଳେଷଣ କରିଛନ୍ତି । ତାଙ୍କ ମତରେ ମନର ସ୍ଥିତି ଶରୀର ଉପରେ ନିର୍ଭରଶୀଳ, ଓ ବିପରୀତ ଭାବରେ ଶରୀରର ସ୍ଥିତି ମଧ୍ୟ ମନ ଉପରେ ନିର୍ଭରଶୀଳ । ଉଭୟ କଠୋର ଶୃଙ୍ଖଳା ଓ ଅଭ୍ୟାସ ଦ୍ୱାରା ସଂଯତ ନ ହେଲେ ମୋକ୍ଷ ବା ମୁକ୍ତି ସମ୍ଭବ ନୁହେଁ । ଦେହର ସୁରକ୍ଷା ଓ ମନର ନିୟନ୍ତ୍ରଣ ପାଇଁ କବିଙ୍କ ମତରେ ଏହାହିଁ ପ୍ରଥମ କାର୍ଯ୍ୟ । ସେ କହନ୍ତି ଦେହରେ ମନର ସ୍ଥାନ ପୁଷ୍ପରେ ସୁଗନ୍ଧି ପରି, ଇକ୍ଷୁ ଖଣ୍ଡରେ ଗୁଡ଼ ପରି, କ୍ଷୀରରେ ଘୃତ ପରି ଓ ସମୁଦ୍ରରେ ଲବଣ ପରି, ଓ ମନରେ ହିଁ ଜ୍ଞାନର ସ୍ଥାନ :

ଯେସନେ ପୁରୁଷ ସଙ୍ଗେ ପ୍ରକୃତି । ଜୀବ ବିକାରେ ହୋଇଅଛି ପ୍ରୀତି ।
ପୁଷ୍ପର ଭିତରେ ବାସ ଯେମନ୍ତ । ଶରୀର ଭିତରେ ମନ ତେମନ୍ତ ।
ଇକ୍ଷୁ ଭିତରେ ଗୁଡ଼ ଯେହ୍ନେ ଅଛି । ଦୁଗ୍ଧ ଭିତରେ ଘୃତ ଯେହ୍ନେ ଲେଛି ।
ସମୁଦ୍ର ମଧ୍ୟେ ଲବଣ ଯେମନ୍ତ । ମନର ଭିତରେ ଜ୍ଞାନ ତେମନ୍ତ ।

('ଦ୍ୱିତୀୟ ଖାନି')

ଅନ୍ୟତ୍ର 'ଦ୍ୱିତୀୟ ଖାନି'ରେ ବି କବି ସେହିପରି ମନ, ଓ ଦେହ ଓ ମନର ସଂପର୍କ ବିଷୟରେ ସୂଚନା ଦେଇଛନ୍ତି :

ଏବେ ହୋ ମନ ତୁହି ତୋତେ ଚିହ୍ନ । ସଂସାର ଦେହୁଁ ତୁ ନୋହୁନା ଭିନ୍ନ ।
ତୋହୋ ନ ଥିଲେ ତ ସଂସାର ନାହିଁ । ସଂସାର ନ ଥିଲେ ତୁ ଥିବୁ କାହିଁ ।
ଏଣୁକରି ଦେହ ମନର ସାଖା । ସଂସାର ମନ ଦେହ ଘେନି ଲେଖା ।
ତୁ ଅବା ବୋଲୁ ଏ ସଂସାର ଥାଇ । ଦେଖ ଉପେଖି ମନ କିଂପା ଯାଇ ।
ମନର ଦେହକୁ ଆଶା ନାହିଁକି । ଯେବେ ମମତା ଛାଡ଼ିଲା କାହିଁକି ।
ହେନ ବିଚାରି ନ କରସି ଭ୍ରାନ୍ତି । ବିବେକ ବୁଦ୍ଧି ଗୁଣି ହୁଅ ଶାନ୍ତି ।
ବେଭାରେ ମନ ଦୃଷ୍ଟିଭେଦ ସିନା । ସୁଗତି କୁଗତି ବେନି ବାସନା ।
ଯଦି ଏ ମନ ସୁଗତିକି ଯାଇ । ବନ୍ଧ ବିନାଶି ମୋକ୍ଷଗତି ପାଇ ।
ଅଥବା ଯେବେ କୁଗତି ଆଚରି । ଜନ୍ମ ମରଣ ଦୁଖେ ଅଧିକାରୀ ।

କବିଙ୍କ ମତରେ ଏ ଏକପ୍ରକାର ରହସ୍ୟମୟ ସ୍ଥିତି, ଯେଉଁ ବିଷୟରେ ମଣିଷର ଜ୍ଞାନ ସ୍ୱପ୍ନପରି । ଏ ରହସ୍ୟମୟ ଅନୁଭୂତି ଭିତର ଦେଇ ଠିକ ଭାବରେ ଯିବାକୁ ହେଲେ ଉପଯୁକ୍ତ ଶିକ୍ଷକ ବା 'ଗୁରୁ'ର ଆବଶ୍ୟକ । ଶିକ୍ଷକ ବା ଗୁରୁ ଭକ୍ତ ପାଇଁ ପ୍ରକୃତ ପଥ ପ୍ରଦର୍ଶକ । ଏହା ହିଁ ଦ୍ୱିତୀୟ ଗୁରୁତ୍ୱପୂର୍ଣ୍ଣ ବିଚାର – ପ୍ରକୃତ ଗୁରୁଙ୍କର ସଂଧାନ କରିବା ଓ ତାଙ୍କ ଦ୍ୱାରା ପରିଚାଳିତ ହେବା । ତାଙ୍କର ଉପଦେଶର ଶକ୍ତି ମଣିଷକୁ ମାୟାର ଆବରଣ ଅତିକ୍ରମ କରିଯିବାକୁ ସାହାଯ୍ୟ କରେ ଓ ଦର୍ପଣର ଜ୍ୟୋତି ପରି ଶରୀର ମଧ୍ୟସ୍ଥ ରହସ୍ୟର ବଳୟକୁ ସେ ପ୍ରବେଶ କରେ । ଅଚ୍ୟୁତ ଗୁରୁଙ୍କ ବଚନକୁ ଯଥେଷ୍ଟ ଗୁରୁତ୍ୱ ଦେଇଛନ୍ତି :

ଶ୍ରୀଗୁରୁ ବଚନ ଅତି ଅମୂଲ୍ୟ । ଶ୍ରବଣ ପଥେ ଭଲ କରି ତୁଲ୍ୟ ।
ସକଳ ବେଦ ପୁରାଣର ସାର । ବିଷମ ସଂଧି ବିବେକ ବିଚାର ।
ଯହିଁ ରମିଲେ ନ ରୁଚଇ ଆନ । ଅମୃତ ସଙ୍ଗେ ବିଷ କାହିଁ ପାନ ।
ତାହା ଗୁଣ ଜାଣି ଯେ ତହିଂ ରତ । କୋଟି ଇନ୍ଦ୍ରପଦ ଭିକ୍ଷୁକ ମତ ।

('ପ୍ରଥମ ଖାନି')

ଅନ୍ୟତ୍ର 'ତୃତୀୟ ଖାନି'ରେ,

ଗୁରୁ ବଚନ ଯେସନେକ ସୁଖ । ପଟାଧି ବସ୍ତରେ ପ୍ରକାଶେ ମୁଖ ।
ଦର୍ପଣ ଭିତରେ ଜ୍ୟୋତି ପ୍ରକାଶଇ । ଶରୀର ଯାକ ସମତୁଲ ଦିଶଇ ।

ଓ,

କିବା ଅନୁଭବେ ନ ଜାଣି ତତ୍ତ୍ୱ । ଗୁରୁ ପଟାନ୍ତର ପଥୁକୀ ମତ ।

ପଥୁକୀ ପଥ ଦେଖାଇଣ ଦେଇ । କହିଲା ଲୋକକି ସଙ୍ଗତେ ଯାଇ ।
ବାଟ ଦେଖାଇ ସେ ରହିବ ଯେହ୍ନେ । ଗୁରୁ ବଚନ ଶିଷ୍ୟ କରି ତେହ୍ନେ ।
ଶାନ୍ତି ଖଡ଼୍‌ଗେ ଭ୍ରାନ୍ତିକି ହାଣିବ । ଆତ୍ମା ନାରାୟଣ ବୋଲି ଜାଣିବ ।

ଏହା ହିଁ କବିଙ୍କ ମତରେ ପରମ ମୋକ୍ଷ; ପରମ ମୁକ୍ତି, ସବୁ ଜ୍ଞାନର ପରିଣତି । ଏ ଏପରି ଏକ ଅବସ୍ଥା ଯେଉଁଠି ଶରୀର୍‌ ଶରୀର ହୋଇ ରହେ ନା, ସବୁ ଶାରୀରିକ ଅବସ୍ଥାକୁ ଅତିକ୍ରମ କରି ଏକ ଅଧିବିଦ୍ୟାମୂଳକ ଅନୁଭୂତିରେ ରୂପାନ୍ତରିତ ହୁଏ, ଯେଉଁଠି ଜୀବନର ପ୍ରତୀକ 'ହଂସ' ସବୁ ଜୀବନର ମୂଳ ସୂତ୍ର 'ପରମହଂସ'କୁ ଭେଟେ, ଯାହାକୁ କି କବି ଅନ୍ୟ ଭାବରେ 'ନିର୍ବାଣ', 'ଜ୍ୟୋତି', 'ନିଃଶବ୍ଦ ଘର', 'ମହାସୁଖ' ଓ 'ପରମାନନ୍ଦ' ଭାବରେ ବର୍ଣ୍ଣନା କରିଛନ୍ତି । ଏ ସଂପର୍କରେ 'ଚତୁର୍ଥ ଖାନି'ରେ କବିଙ୍କର ଉପମା-ଉପମେୟର ପ୍ରୟୋଗ ଲକ୍ଷଣୀୟ :

ଚାହିଁଲେ ବୁଝିଲେ ଯାହା ନ ଦେଖି । ଅଛି ନାହିଁ ବୋଲି ତାହା ନ ଦେଖି ।
ପଞ୍ଚ ମହାଭୂତ ତହୁଁ ସେ ଝର । ସେ ପଞ୍ଚଭୂତ ପଞ୍ଚ ପରକାର ।
ସେ ଝର ଯେବେ ଆଚରି ରୁହାଇ । ପୂର୍ବର ନଦୀ ପଶ୍ଚିମେ ବୁହାଇ ।
ଝର ରହନ୍ତେ ଉଚ୍ଛୁଳଇ ଜଳ । ଜଳେ ଲହରୀ ଅନ୍ତରୀକ୍ଷେ ମାଳ ।
ଯଦି ସରୋବରରେ ପୂରିବ କର୍ମେ । ପରମହଂସ ମହାସୁଖେ ଭ୍ରମେ ।
ଜ୍ଞାନ ଅମୃତ ଭୋଜନ ତାହାକୁ । ଯୋଗୀ ଜନମାନେ ଚିନ୍ତେ ଯାହାକୁ ।
ସହସ୍ର ଦଳ କମଳ ଉପରେ । ଭ୍ରସଳ ଜଡ଼ି ଚୁମ୍ବେ ମଣ୍ଡୋଳେ ।
ତହିଁ ଉପରେ ନିରାକୁଳ ଭୂମି । ଅଲେଖ ବିଜେ ନିରଞ୍ଜନ ସ୍ୱାମୀ ।

'ଚାରିଖାନି'ରେ ଅଚ୍ୟୁତ ବିଶେଷ କରି ଜ୍ଞାନର ଧାରା ସଂପର୍କରେ ବିଚାର କରିଛନ୍ତି । କିନ୍ତୁ ସେଥି ସହିତ ଭକ୍ତି ଯେ ସାଧକ ପକ୍ଷରେ ଅପରିହାର୍ଯ୍ୟ ଏହା ସ୍ୱୀକାର କରିଛନ୍ତି, ଓ ଗୁରୁଙ୍କର ଉପଦେଶ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି କହିଛନ୍ତି । ପରିଶେଷରେ ସେ ଏ ସବୁକୁ ଶ୍ରୀ ଜଗନ୍ନାଥଙ୍କ ସହିତ ସଂପୃକ୍ତ କରି ଶ୍ରୀଜଗନ୍ନାଥଙ୍କୁ-ସବୁ ପ୍ରକାର ଅନୁଭୂତି ଓ ଅନୁଭବର ପରିସରରେ ଶ୍ରେଷ୍ଠ ଆସନ ଦେଇଛନ୍ତି :

ନିର୍ମଳ ରୂପ ନୀଳଗିରି ବସେ । ଯେବଣ ଜ୍ଞାନ ଗୁଣ ପରକାଶେ ।
ଲବଣ ଜଳଧି ଉତ୍ତର ତଟେ । ରତ୍ନ ସିଂହାସନ ବଟ ନିକଟେ ।
ଚିତ୍ର କଳେବର ଚତୁର୍ଦ୍ଧା ଅଙ୍ଗ । ମନ ବୁଦ୍ଧି ଅହଂକାରେ ନିସଙ୍ଗ ।
ଅନାଦି ଅଚଳ ଜ୍ୟୋତି ଯାହାର । ସ୍ଥୂଳହିଁ ନୁହଇ ଶୂନ୍ୟ ବାହାର ।
ଦେବାଧିଦେବ ଦେବଙ୍କର ରାଜା । ପାଦେ ବେଦବର ଶଙ୍କର ପୂଜା ।
ବିକାର ନାହିଁ ଅବିକାର ବ୍ରହ୍ମ । ଯହୁଁ ଉତପତି ସକଳ କର୍ମ ।

****

ଆବର ଜ୍ଞାନ ଅନୁଭବେ ଲେଖ । ଜଗନ୍ନାଥ ଜ୍ଞାନ ନୟନେ ଦେଖ ।
ଏତେ ନିକଟେ ମହାସୁଖ ଛାଡ଼ି । କିଂପା ମୂଢ଼େ ମର ଅମଡ଼ା ମାଡି ।
ରୁଦ୍ଧି ସିଦ୍ଧି ବୁଦ୍ଧି ଯାହାର ଦତ୍ତ । ଏ ସେ ଜଗବଂଧୁ ପରମ ତତ୍ତ୍ୱ ।
ଏହା ମହିମା କେ କହି ପାରଇ । ଦୁବେ ବାହିଲେ କି ସମୁଦ୍ର ସରଇ ।

ଅଚ୍ୟୁତାନନ୍ଦଙ୍କର ଶୂନ୍ୟ ସଂହିତା ଦୀର୍ଘ ରଚନା, ୨୯ ଅଧ୍ୟାୟ ଓ ସମୁଦାୟ ୫୭୬୦ ଧାଡ଼ି । ଏହା ଗୁରୁଶିଷ୍ୟ ପ୍ରଶ୍ନ-ଉତ୍ତର ଧାରାରେ ଲେଖା ଯାଇଛି – ଅଚ୍ୟୁତାନନ୍ଦ ଶିଷ୍ୟଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ଦେଇଛନ୍ତି । କବିଙ୍କର ଆଲୋଚନାର ମୂଳ-ଉପାଦାନ ହେଉଛି 'ଶୂନ୍ୟ' ଧାରଣାକୁ ସ୍ପଷ୍ଟ କରିବା । ପ୍ରଥମରୁ କୁହାଯାଉଛି ଯେ ଶୂନ୍ୟର ଧାରଣା ଆଦୌ ସହଜ ନୁହେଁ – ଅଚିନ୍ତନୀୟ, ଚେତନାର ଏହା ସର୍ବୋତ୍ତମ ବିନ୍ଦୁ, ଓ ଏହା ମହାଶୂନ୍ୟରେ ପ୍ରତିଭାତ ହେଉଥିବା ଉଜ୍ଜ୍ୱଳ ଜ୍ୟୋତି ପରି । ଦ୍ୱିତୀୟରେ, ଶରୀର ବା 'ପିଣ୍ଡ'ରେ ଶୂନ୍ୟ ସେହି ସ୍ଥିତି ଯେଉଁଠି ସବୁ ପ୍ରକାର ମାନସିକ ଅବସ୍ଥା କେନ୍ଦ୍ରୀଭୂତ ହୁଏ, ଓ 'ପିଣ୍ଡ'କୁ 'ବ୍ରହ୍ମାଣ୍ଡ' ଭାବରେ ଉପଲବ୍ଧି କରିବା ସାଙ୍ଗେ ସାଙ୍ଗେ 'ଶୂନ୍ୟ' ଯେ ସବୁ ପ୍ରକାର ସୃଷ୍ଟି ଓ ସୃଷ୍ଟିମୂଳକ କାର୍ଯ୍ୟର ମୂଳାଧାର ଏହାହିଁ ସ୍ପଷ୍ଟ ହୋଇଉଠେ :

ଯେତେବେଳେ ନ ଥିଲା ଯେ ଜଳ ସ୍ଥଳ କିଛି
ପିଣ୍ଡକୁ ଆରମ୍ଭ କଲେ ଆପେ ନନ୍ଦ ବଛି ।

***

ଯେମନ୍ତ ପ୍ରକାରେ ପିଣ୍ଡ ବ୍ରହ୍ମାଣ୍ଡ ଯେକଦ୍ଧ
ତିନି ଖଣ୍ଡ ମଧ୍ୟେ ଏକବିଂଶ ପୁର ଥିତ ।
ତଳାତଳ ସୁତଳ ନିତଳ ଆଦିକରି
ବିତଳ ଯେ ରସାତଳ ତଳ ସପ୍ତସରି ।
ମଞ୍ଚର ଯେ ସପ୍ତପୁର କହିବାକ ଶୁଣ,
ଅଯୁଧ୍ୟା ଦ୍ୱାରିକା କାଶୀ ସୌରାଷ୍ଟ ପ୍ରମାଣ ।
ଗୋପ ଯେ ମଥୁରା ଯାଜନଗ୍ର ସପ୍ତପୁର
ବିଜୟେ ସେ ଜଗନ୍ନାଥ ବ୍ରହ୍ମାଣ୍ଡ ଠାକୁର ।
ବେନି ବାହୁ ହୃଦ ନାଭି ଉଦରକୁ ଘେନି
ପୃଷ୍ଟଦେଶ କଟି ସ୍ତନ ସପତ ଏ ପୁଣି ।

*****

ଏକୋଇଶ ପୁର ପିଣ୍ଡ ବ୍ରହ୍ମାଣ୍ଡ ଯେ ସରି
ଜ୍ୟୋତି ମଣ୍ଡଳରେ ବିଜେ କରିଛନ୍ତି ହରି ।
ଯେକାକ୍ଷର ପରଂବ୍ରହ୍ମ ସପ୍ତମାତ୍ରା ଯେହ୍ନୁ
ସପ୍ତଦଳ ପଦ୍ମ ସପ୍ତ ପାଖୁଡ଼ାଟି ସେହ୍ନୁ ।
ସେ ପଦ୍ମ ପ୍ରକାଶ ନେତ୍ରମଧ୍ୟେ ପ୍ରକାଶୁଚି
ପଦ୍ମ ପୀଠ ମଧ୍ୟରେ ନାହାସ ଲାଗିଅଛି ।

(ପଞ୍ଚମ ଅଧ୍ୟାୟ)

ତେଣୁ 'ଶୂନ୍ୟ' ସେହି ଆଲୋକିତ ଜ୍ୟୋତିମଣ୍ଡଳ ଯାହାର ଅବସ୍ଥାନ ମଣିଷ ଶରୀରର ଏକୋଇଶ 'ପୁର'ର ଉର୍ଦ୍ଧ୍ୱରେ । ଏହି 'ଶୂନ୍ୟ'ର ସଠିକ ଅବଧାରଣା ପାଇଁ ସାଧକକୁ ବିଭିନ୍ନ ସ୍ତର ଦେଇ ଯିବାକୁ ପଡ଼େ । ଯେପରି ଯୋଗ ଓ ଯୋଗର ସାଧନା ଓ ଶୃଙ୍ଖଳା, ଓ ଅଲେଖ, ଅରୂପ ପ୍ରତି ଏକାଗ୍ର ଧ୍ୟାନ ଓ ଭକ୍ତି । ଯୋଗର ପ୍ରଣାଳୀରେ ଏହାହିଁ 'ମହାଶୂନ୍ୟ'ର ଅନୁଭବ ଯାହାର ସ୍ଥିତି ସହସ୍ରଦଳ ପଦ୍ମର ଅନ୍ତଃସ୍ଥଳରେ । ସେହି ସ୍ଥିତିରେ ସାଧକ ନିଜର ଧ୍ୟାନର ମାଧ୍ୟମରେ ପହଞ୍ଚି ପାରେ, ଓ ଯାହା ସେ ଦେଖିପାରେ ସେ 'ମହାନିତ୍ୟ ରାସ' ଓ ରାଧାକୃଷ୍ଣଙ୍କର 'ଯୁଗଳ ମୂର୍ତ୍ତି' ।

ଏ ବିଷୟରେ, ବିଶେଷ କରି ଶରୀର ଓ ଯୋଗ ମାଧ୍ୟମରେ ଆତ୍ମା, ମନ ଓ ଅନୁଭବର ଉତ୍ତରଣ ବିଷୟରେ ଅଚ୍ୟୁତାନନ୍ଦଙ୍କ ନିର୍ଦ୍ଦେଶ ସ୍ପଷ୍ଟ :

ଜ୍ୟୋତିବ୍ରହ୍ମ କଥା ଏବେ ଶୁଣ ମନ ଦେଇଂ,
ଯେକାକ୍ଷର ବ୍ରହ୍ମ ବୋଲି ଯାହାକୁହି କହି ।
ଶ୍ୱେତ ପୀତ ନୀଳ ଯେ ଲୋହିତ ଚାରିକଳା
ଚାରିକଳା ମିଶିଣ ଯେ କୁଙ୍କୁମ ସଙ୍ଗେ ମେଳା ।
ପାଞ୍ଚକଳା ଡୋଳା ମଧ୍ୟେ ଚିହ୍ନି ଠାବ କର
କହି ଦେବାଟି ଉପାୟେ ସେ ମନ୍ତ୍ର ଅକ୍ଷର ।
ପିଙ୍ଗଳା ଟେକିଣ ଯେ ଲଲାଟ ପରେ ରଖ
ନୟନକୁ ସ୍ଥିର କରି ଶୂନ୍ୟକୁ ନିରେଖ ।
ମଣ୍ଡୋଳ ସୋରୂପ ଜୋତି ପ୍ରକାଶ ହୋଇବ
ମନ ନୟନକୁ ତହିଂ ନିଶ୍ଚଳେ ଥୋଇବ ।
ଅଭ୍ୟାସ କରନ୍ତେ ଜ୍ୟୋତି ପ୍ରକାଶିବ ଯେବେ
ପାଇବ ପରମ ଗତି ଭ୍ରାନ୍ତି ଯିବ ତେବେ ।......

ଜାଲ ମାଳା ପ୍ରାୟେ ଯେ ନୟନ ଅଗ୍ରେ ଦେଖ
ହଂସର ସେ ରୂପ ସେହି ନୟନେ ନିରେଖ ।
ଦେହ ରୂପ ତଥି ଅଗ୍ରେ ବିନ୍ଦୁ ରୂପ ଦେଖ ।
ନୟନର ଅଗ୍ରେ ଲୀଳା କରନ୍ତି ଅଲେଖ ।

(ସପ୍ତମ ଅଧ୍ୟାୟ)

କୁହାଯାଏ ଓଡ଼ିଶାର ବୈଷ୍ଣବମାନଙ୍କର ବିଚାର ଧାରାରେ ଉଭୟ ଜ୍ଞାନ ଓ ଭକ୍ତି ସାଧକର ଚେତନା ଓ ଅବବୋଧ ସ୍ତରରେ ରୂପ ପରିଗ୍ରହ କରିଛି । ଅଚ୍ୟୁତାନନ୍ଦଙ୍କ ଲେଖାରେ ଏହି ଧାରା ଆମେ ବାରମ୍ବାର ଦେଖୁ । ତାଙ୍କ ମତରେ ତାହାହିଁ ଅନ୍ତିମ 'ମୁକ୍ତି'ର ସ୍ଥିତି ଓ ତାହାହିଁ 'ଶୂନ୍ୟ ପୁରୁଷ' । ଗଭୀର ଧ୍ୟାନ ଓ ନିବିଡ଼ ଭାବରେ ନିଜର ମାନସିକତାକୁ ନିବିଷ୍ଟ କରି ପାରିଲେ ସାଧକ ଅବବୋଧର ସେହି ସର୍ବୋତ୍ତମ ବିନ୍ଦୁରେ ପହଞ୍ଚି ପାରିବ ଯାହାକି ସ୍ଥାନ ଓ କାଳର ଊର୍ଦ୍ଧ୍ୱରେ ସେହି ଆଲୋକିତ ଜ୍ୟୋତି ମଣ୍ଡଳ । ଦ୍ୱିତୀୟରେ, ଶରୀର ପ୍ରଣାଳୀର ତାହାହିଁ କେନ୍ଦ୍ରବିନ୍ଦୁ, ଯେଉଁଠାରୁ ଶରୀରର ସମସ୍ତ ଜୀବନ-ସଂଗଠନ ଉଦ୍ଭୂତ । ତେଣୁ ମଣିଷର ଶରୀର 'ଶୂନ୍ୟ'ର ସଂଗଠନ ଓ 'ଶୂନ୍ୟ'ରେ ହିଁ ସଂସାର ଆତଯାତ ହେଉଛି । 'ଶୂନ୍ୟ ପୁରୁଷ' ସବୁ ଦେଖେ, କିନ୍ତୁ ତାକୁ କେହି ଦେଖି ପାରନ୍ତି ନାହିଁ । ସେ ସବୁଠାରେ ପ୍ରକାଶିତ ହୁଏ, କିନ୍ତୁ ସେ ଅରୂପ, ଦେହ 'ଶୂନ୍ୟ', ସଂସାର 'ଶୂନ୍ୟ' । ମଣିଷ 'ଶୂନ୍ୟ'ରୁ ଜନ୍ମ ନିଏ, ପୁଣି 'ଶୂନ୍ୟ'କୁ ଫେରିଯାଏ । ଅଚ୍ୟୁତାନନ୍ଦ ଓ ତାଙ୍କର ସମସାମୟିକ ସଖା ମାନଙ୍କର ଲେଖାରେ ଏହି ଦୁଇଟି ଦିଗ ଲକ୍ଷଣୀୟ । ଗୋଟିଏ ଅରୂପ, ରୂପହୀନ ପରମାତ୍ମାଙ୍କର ଧ୍ୟାନ, ଓ ଅନ୍ୟଟି ଏହି ପରମାତ୍ମାଙ୍କୁ ରୂପର ସୀମାରେ ବୁଝି ପାରିବାର ଶକ୍ତି :

ଭଲା ପଚାରିଲୁ ଗୁପତ ସନ୍ଧି । ଶୂନ୍ୟ ପୁରୁଷ ଶୂନ୍ୟ ଘରେ ବନ୍ଦୀ ।
ଶୂନ୍ୟ ପୁରୁଷ ଉଦାସରେ ରହେ । ଶୂନ୍ୟ ପୁରୁଷ ସବୁ ମାୟା ଭ୍ୟାୟେ ।
ଶୂନ୍ୟ ପୁରୁଷ ଦୟାଳୁ ଅଟଇଂ । ଶୂନ୍ୟ ପୁରୁଷ ସର୍ବଘଟେ ରହି ।
ଶୂନ୍ୟ ପୁରୁଷ କରେ ନଟଘଟ । ଶୂନ୍ୟପୁରୁଷ ଜାଣେ ଛନ୍ଦ କୂଟ ।...
ଶୂନ୍ୟ ପୁରୁଷ ଅଲଗେ ରହିଛି । ଶୂନ୍ୟପୁରେ ରହି ଲୀଳା କରୁଛି ।
ନ ଛୁଅଁନ୍ତି ତାକୁ ପଞ୍ଚାଶ ଜନ । ଅଲଗେ ରହି କରେ ଭିନ୍ନାଭିନ୍ନ ।
ଶୂନ୍ୟପୁରେ ଶୂନ୍ୟ ପୁରୁଷ ରହେ । ଶୂନ୍ୟ ଭଜନେ ନିରାକାର ଧାଏ ।...
ଦିଶିବ ଶୂନ୍ୟେ ଦିବ୍ୟ ନୀଳକାୟା । ନିରାକାର ରୂପ ଅରୂପ ଦେହା ।
ଚତୁର୍ଦ୍ଧା ରୂପେ ବିଜେ ନିରାକାର । ପଦ୍ମ ଫୁଟିବ କେଶର ଭିତର ।
ନିରାକାର ରୂପ ତାହାକୁ ମଣି । ନିର୍ଲେପ ନିରାକାର ଯେହୁ ପୁଣି ।

ପୂର୍ବ ଭାଗ୍ୟରୁ ଦିଶିବ କେଶରୀ । ଫୁଟିବ ପଦ୍ମ ବିଜେ ଦେବ ହରି ।
ପାଇବୁ ଭେଟ ନିର୍ଲେପ ରୂପକୁ । ଚାହିଂବୁ ନିଶ୍ଚଳ ହୋଇଣ ତାଙ୍କୁ ।

(ନବମ ଅଧ୍ୟାୟ)

ଅନ୍ୟତ୍ର, ୨୯ ଅଧ୍ୟାୟରେ 'ନକରାତ୍ମକ ଭାବରେ' ଏହି ଭାବଧାରାର ପ୍ରତ୍ୟକ୍ଷ ପ୍ରସାର ଲକ୍ଷ୍ୟ କରାଯାଇ ପାରେ :

ଅନାମ ଅନହତ ଅବିକାର ସେ ଅରେହ ଅରୂପାନନ୍ଦ ।
ଅଲେଖ ଅରେଖ ଅନାଦି ଅବ୍ୟକ୍ତ ଅଶ୍ରୁତି ଅମୂର୍ତ୍ତି ଛନ୍ଦ ।
ଅଶେଷ ନାମର ମୂଳ ସାରସ୍ୱତ ଅଣାକ୍ଷର ଅନାହତ ।
ଅଦୃଶ୍ୟ ଅଧାତ୍ମ ଶବ୍ଦ ଅଶବଦ ପରମାତ୍ମା ଗତି ତତ୍ତ୍ୱ ।
ସେଠାବୁଂ ସମସ୍ତେ କ୍ଷରାକ୍ଷର ହୋନ୍ତି ହେତୁ କରିବା ତୁ ରାମ
ତହିଂର ତଳରେ ବିଜେ କରିଛନ୍ତି ଆପଣେ ସେ ଜ୍ୟୋତିବ୍ରହ୍ମ ।
ଶବଦ ଦ୍ୱାଦଶ ବ୍ରହ୍ମରୁ ଛରିଣ ଜ୍ୟୋତିବ୍ରହ୍ମ ଉଦେ ଜାଣ
ଯେକାକ୍ଷର ବ୍ରହ୍ମ ଭୃଲତା ପରେଣ ବିଜେ ନାମ ପରଂବ୍ରହ୍ମ ।

ଏହାହିଁ 'ଶୂନ୍ୟ ସଂହିତା' ର ମୁଖ୍ୟ ଆଖ୍ୟାନ-ବସ୍ତୁ । କିନ୍ତୁ ଏହା ବ୍ୟତୀତ ଏହାର ଅନ୍ୟାନ୍ୟ ଆୟତନ ରହିଛି । ଯେପରି ଅଚ୍ୟୁତାନନ୍ଦ ନିଜ ବିଷୟରେ ଓ ନିଜ ଜୀବନର ବିଭିନ୍ନ ଘଟଣାବଳୀ ଓ ବିଭିନ୍ନ ସହକର୍ମୀଙ୍କ ବିଷୟରେ କହିଛନ୍ତି । ପୁଣି ଶ୍ରୀ ଚୈତନ୍ୟ ଓ ପଞ୍ଚସଖାଙ୍କ ସମ୍ପର୍କରେ ବି । ତା'ଛଡ଼ା ପ୍ରାଚୀ ନଦୀ କୂଳେ କୂଳେ, ନଦୀର ଉଭୟ ତୀରରେ ଥିବା ବହୁ ସିଦ୍ଧ ମାନଙ୍କର ଆଶ୍ରମ ଓ ସେମାନଙ୍କର ସାଧନା-ପୀଠ ସଂପର୍କରେ ବି ଅନେକ କଥା ରହିଛି । ଏହା ବ୍ୟତୀତ ନୀଳାଚଳରେ ଶ୍ରୀଜଗନ୍ନାଥଙ୍କର ଆସ୍ଥାନ ଓ ପୂଜା-ଅର୍ଚ୍ଚନା, ରାଧାକୃଷ୍ଣ ଲୀଳା, ରାଧା-କୃଷ୍ଣଙ୍କର ନିତ୍ୟ ରାହାସ, ନାମବାଦର ଗୁରୁତ୍ୱ ଓ ସୃଷ୍ଟି ଓ ଜୀବନର ଧାରାକୁ ଏହା କିପରି ପରିଚାଳିତ କରେ, ଓ ପରିଶେଷରେ ଭକ୍ତ ପାଇଁ ଗୁରୁବାଦର ମହତ୍ତ୍ୱ ଓ ଗୁରୁତ୍ୱ ପ୍ରଭୃତି, ବିଭିନ୍ନ ଭାବରେ 'ଶୂନ୍ୟ ସଂହିତା'ରେ ଆଲୋଚିତ ହୋଇଛି । ବିଶେଷ କରି ସମକାଳୀନ ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଗଜପତି ପ୍ରତାପରୁଦ୍ରଙ୍କର ସଂପର୍କରେ ବି ଅନେକ ସୂଚନା ରହିଚି। ଦେଶର ଭବିଷ୍ୟତ ସଂପର୍କରେ ଅଚ୍ୟୁତନନ୍ଦଙ୍କର ମତାମତ, ଅନ୍ୟତ୍ର, 'ମାଳିକା'ରେ ପ୍ରକାଶ ପାଇଥିବା ତାଙ୍କର ମତାମତ ପରି - ଜଣେ ମହାନ୍ ଦିବ୍ୟଦ୍ରଷ୍ଟାର ଅର୍ନ୍ତଦୃଷ୍ଟି :

ଶୁଣ ରାମଦାସ କହିବା ସନ୍ଦେଶ ହେତୁ ମନ ଥାଅ ଦେଇ,
ଚାରିଦିଗରୁ ଜନମାନ ପୂର୍ବରେ ପଡ଼ିବେଟି ରଣଭୂଇଂ ।

ହୋଇବ ସେ ମେଳି ସମୋଦ୍ର ଉଛୁଳି ଶୁଭିବଟି ମୁଖରାବ,
ଟିକିରାଗୋହାରିଠାବେ ମେଳି ହୋଇ ଠିକେକେ ଗୋଳ ବାଜିବ ।

(ଦ୍ୱାବିଂଶ ଅଧ୍ୟାୟ)

****

ଅଚାନିକେ ନଷ୍ଟଭ୍ରଷ୍ଟ ହେବେ ଅନ୍ୟୋଅନି,
ଗୁରୁଙ୍କୁ ନ ମାନି ଶିଷ୍ୟେ ହେବେ ବ୍ରହ୍ମଜ୍ଞାନୀ ।
ତପତ ତେଜରେ ବାୟୁ ପ୍ରବଳ ବହିବ,
ଜଳେ ବା ଅନଳେ ପୃଥୀ ନଷ୍ଟଭ୍ରଷ୍ଟ ହେବ ।
ପୃଥିବୀ କମ୍ପିବ ଅଶ୍ୱ ଆସିବ ଯେ ମାଡ଼ି,
ମାଡିବେ ଖଣ୍ଡ ଖୋଲାର ଅନ୍ୟାଅନ୍ୟେ ବଢ଼ି ।
ବଣିଜାର ବେପାର ଯେ ମୂଳଧନ ଯିବ,
ପୋତିଲାର ଧନ ଆଉ ଲୋଡ଼ି ନ ପାଇବ ।
ଶୋକରେ ମଜ୍ଜିବେ ଲୋକେ ହେବେ ବିକଳିତ,
ମାୟାରେ ଚତୁର ହେବେ କୁଟୁମ୍ବ ମୋହିତ ।
ଛନ୍ଦମାୟା ମନ୍ଦକଥା ବଢ଼ିବ ନିରତେ
ଦ୍ୱନ୍ଦବାଦ ହିଂସା ବହି ନଷ୍ଟହେବେ ଥୋକେ ।
ବେତାଳୀ ହେବେ ପ୍ରବଳ ଗ୍ରାମେ ଗ୍ରାମେ ପଶି
କାଳୀ ଯେ କାଙ୍କାଳୀ ପୁଣି ଖାଇବେ ଆକ୍ରୋଶି ।

(ତ୍ରୟୋବିଂଶ ଅଧ୍ୟାୟ)

'ଶୂନ୍ୟ ସଂହିତା' ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ରଚନା, ଓ ଅଚ୍ୟୁତାନନ୍ଦଙ୍କର ସମକାଳୀନ ବହୁ ବିଶ୍ୱାସ, ଧର୍ମଧାରା ଓ କାର୍ଯ୍ୟାବଳୀର ପରିଚୟ ଏଥିରୁ ମିଳିଥାଏ ।

ଯଶୋବନ୍ତଙ୍କର ଗୋବିନ୍ଦଚନ୍ଦ୍ର ତତ୍ତ୍ୱ ସାହିତ୍ୟ ଭାବରେ ପରିଚିତ ଅନ୍ୟାନ୍ୟ ରଚନାମାନଙ୍କଠାରୁ ଭିନ୍ନ ଧରଣର । ଏହାର ସଂଗଠନ ଆଖ୍ୟାନମୂଳକ । ଅର୍ଥାତ୍ ଏଥିରେ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ବା ଗଳ୍ପ ଅଛି, କିଛି ଚରିତ୍ର ଅଛନ୍ତି, ଘଟଣାର ପାରସ୍ପରିକ ଅଭିବୃଦ୍ଧିର ବିବରଣୀ ଅଛି, ଓ ଚରିତ୍ରମାନଙ୍କର ଆବେଗର ପରିପ୍ରକାଶ ଓ ସଂଘର୍ଷ ରହିଛି । କୁହାଯାଇପାରେ କାବ୍ୟର ସବୁ ଗୁଣ ବା ବିଶିଷ୍ଟତା ଏଥିରେ ନ ଥିଲେ ବି , ସଂଗଠନ ପ୍ରାୟ କାବ୍ୟର ସଂଗଠନ ପରି, ଯାହାକି ତତ୍ତ୍ୱ ସାହିତ୍ୟର ଅନ୍ୟାନ୍ୟ ରଚନା ମାନଙ୍କରେ ନାହିଁ, ଯେଉଁଠି ଧର୍ମ, ଦର୍ଶନ ଓ ଜୀବନର୍ଯାପନ ପ୍ରଣାଳୀର ଆଲୋଚନା ହିଁ ମୁଖ୍ୟ । ତଥାପି 'ଗୋବିନ୍ଦ ଚନ୍ଦ୍ର' ତତ୍ତ୍ୱ ସାହିତ୍ୟ, ଓ ତତ୍ତ୍ୱ ସାହିତ୍ୟର

ଅନ୍ୟାନ୍ୟ ବିଶିଷ୍ଟ ରଚନାମାନଙ୍କ ସହିତ ଏହାର ଯଥେଷ୍ଟ ସାମଞ୍ଜସ୍ୟ ଅଛି । ଏହି ସାମଞ୍ଜସ୍ୟ ଅନୁଭୂତିରେ, ଦୃଷ୍ଟିକୋଣରେ, ଆଭିମୁଖ୍ୟରେ । ଏସବୁ ରଚନାରେ ମଣିଷ ଆତ୍ମାର ଉତ୍ତରଣ ସୂଚିତ – କିପରି ମଣିଷ, ଜୀବନରେ ଯଥାର୍ଥ ଭାବରେ ବଂଚି ରହିବାକୁ ହେଲେ, ନିଜର ସବୁ ସୀମାବଦ୍ଧତା ସତ୍ତ୍ୱେ ଏକ ସୂକ୍ଷ୍ମ ଆଧ୍ୟାତ୍ମିକ ପର୍ଯ୍ୟାୟକୁ ଯିବା ଆବଶ୍ୟକ, କାରଣ ଆଧ୍ୟାତ୍ମିକ ଚେତନାର ବଳିଷ୍ଠତା ହିଁ ତାର ଆତ୍ମା ଓ ମାନସିକତାରେ ବଳିଷ୍ଠତା ଆଣିଦିଏ, ଓ ଜୀବନଯାପନ ପ୍ରଣାଳୀରେ ମାଧୁର୍ଯ୍ୟ ଓ ସୌଷ୍ଠବ ଆଣିଥାଏ । ପ୍ରଭେଦ ଏତିକି ଯାହା ଅଧିକାଂଶ ରଚନା ମାନଙ୍କରେ ଅନୁଭୂତି, ବ୍ୟାଖ୍ୟା ଓ ବର୍ଣ୍ଣନାତ୍ମକ ଭାବରେ କୁହାଯାଇଛି, 'ଗୋବିନ୍ଦଚନ୍ଦ୍ର'ରେ ତାହା କାର୍ଯ୍ୟକାରୀ ବା କ୍ରିୟାମୂଳକ ସ୍ତରରେ ସଂଗଠିତ ହୋଇଛି । ଗଳ୍ପ ବଙ୍ଗଦେଶର ରାଜା ଗୋବିନ୍ଦଚନ୍ଦ୍ରଙ୍କ ବିଷୟରେ । ଗୋବିନ୍ଦଚନ୍ଦ୍ର ଉତ୍ତମ ରାଜା । ଧନଧାନ୍ୟ ପରିପୂର୍ଣ୍ଣ ରାଜ୍ୟରେ ବେଶ୍ ବିଳାସପୂର୍ଣ୍ଣ ଜୀବନ ଯାପନ କରୁଥିଲେ । କିନ୍ତୁ ପରେ ନିଜର ମା'ଙ୍କର ପ୍ରରୋଚନାରେ ତାଙ୍କର ଜୀବନର ଗତିପଥ ବଦଳି ଗଲା । ସେ ଏ ସଂସାରିକ ଜୀବନ ଯେ ସଂପୂର୍ଣ୍ଣ ଅନିତ୍ୟ ଓ ଅସ୍ଥାୟୀ ବୁଝିଲେ, ଓ ଜୀବନରେ ଚିର ଶାନ୍ତି ପାଇବା ପାଇଁ, ମେହେନ୍ତର ହାଡ଼ିପାଙ୍କୁ ନିଜର ଗୁରୁ ଭାବରେ ବରଣ କଲେ, ଓ ରାଜକୀୟ ଜୀବନର ସମସ୍ତ ସ୍ୱାଚ୍ଛନ୍ଦ୍ୟକୁ ବିସର୍ଜନ ଦେଇ ଜଣେ ସାଧାରଣ ଯୋଗୀ ଭାବରେ ସମସ୍ତ ଦାରିଦ୍ର୍ୟ ଓ କୃଚ୍ଛ୍ରସାଧନାର ଭିତର ଦେଇ ନିଜର ଜୀବନ ଯାପନ କଲେ, ଓ ସେଥିରୁ କେବେହେଲେ ବିଚ୍ୟୁତ ହେଲେ ନାହିଁ । ପରିଣାମରେ ସେ ଯାହା ସଂଧାନ କରୁଥିଲେ ତାହା ହିଁ ଲାଭ କଲେ, ଅର୍ଥାତ୍ ମୁକ୍ତ ଆତ୍ମାର ସର୍ବୋତ୍ତମ ଆନନ୍ଦ ଓ ଶାନ୍ତି । ପ୍ରଥମେ ରାଜ୍ୟ, ଓ ରାଜା ଗୋବିନ୍ଦଚନ୍ଦ୍ରଙ୍କର ଉତ୍କୃଷ୍ଟତା :

ମହା ପରତାପୀ ରାଜା ବଳେ ବଳୀୟାର
ତିନିକ୍ରୋଶ ଆୟତନ କଟକ ତାହାର ।
ତିନିପୁର କାଙ୍ଗୁଲା ଯେ ପଥର ପାଚେରୀ
ତିନି ତାଳ ଗଭୀର ବିଳାସ ଖଣା ଝରି ।
ଜଗତି ଅଟାଳି ମେଢ଼ ମଣ୍ଡପ ନବର
ଉପରେ ଶଙ୍ଖୁଆ ଢାଳ ଭିତରେ ହିଙ୍ଗୁଳ ।
ଚନ୍ଦ୍ରଶାଳା ପୂରେ ଦିବ୍ୟ ମନ୍ଦିର ଉପମା
ଅଷ୍ଟରତ୍ନ ମିଶାଇ ଗଢ଼ିଲା ବିଶ୍ୱକର୍ମା ....
ଅତି ପରିମଳ ରାଜ୍ୟ ପଟାନ୍ତର ନାହିଁ
ବଙ୍ଗମତୀ ନଦୀତୀରେ ନବର ବସଇଁ ।

ଅବସନ୍ତେ ବସନ୍ତ ବହଇ ନିରନ୍ତର
ବିଦ୍ୟାଧର ପ୍ରାୟେ ତହିଁ ପୁରୁଷେ ସୁନ୍ଦର ।
ରୋଗ ଶୋକ ଚିନ୍ତା ନାହିଁ ଅଚିନ୍ତା ଭୁବନ
ଜନ ପ୍ରଜାମାନ ଅର୍ଜି କୁବେର ସମାନ । (୧୯-୧୮, ୩୬-୩୮)

ପରେ, ମାତା ମୁକ୍ତା ଦେଈଙ୍କର ଗୋବିନ୍ଦଚନ୍ଦ୍ରଙ୍କୁ ସଂସାରର ଅନିତ୍ୟତା ସଂପର୍କରେ ସଚେତ କରି ହାଡ଼ିପାଙ୍କୁ ଗୁରୁ କରି ନେବାପାଇଁ ଉପଦେଶ :

ମାତାୟେ ବୋଇଲେ ବାବୁ ଶୁଣରେ ଗୋବିନ୍ଦି
ମିଥ୍ୟାମାୟା ସଂସାରେ ତୁ ପଡ଼ି ନୁହଁ ବନ୍ଦୀ ।
ଯେବଣ ହାଡ଼ିପାରେ ଖଟଇ ବାଡ଼ିତାଟି
ତାକୁ ସେବା କରିବୁ ଚରଣ ତଳେ ଲୋଟି ।
ଯେବେ ସେ ପ୍ରସନ୍ନ ତୋତେ ହୋଇବେ କୁମର
ଯମ କାଳପାଶରୁ ବଂଚିବୁ ଚିର କାଳ । (୧୦୭-୧୦୯)

ପରେ ପରେ ପୁଣି, ରାଜା ଗୋବିନ୍ଦଚନ୍ଦ୍ରଙ୍କର ହାଡ଼ିପାଙ୍କ ସଂପର୍କରେ ଜ୍ଞାନଲାଭ, ଓ ସଂସାର ଯେ ମିଥ୍ୟା ମାୟାରେ ଆଚ୍ଛନ୍ନ, ଓ ଦେହ ଓ ଜୀବନର ସଂପର୍କ ଯେ ବିଜୁଳି ଓ ପବନର ସଂପର୍କ ପରି, ଓ ଏଥିରୁ ଉଦ୍ଧାରର ଉପାୟ ଯେ ଶ୍ରେୟ ଚିନ୍ତା, ତାର ସୂଚନା:

କୋଦାଳ କୁଣ୍ଡୋଇ ଯାଇଂ ଖଟେ ବାଡ଼ି ତାଟି
ପ୍ରତକ୍ଷ୍ୟେ ଦେଖିଲା ମାୟେ ମୋର ବେନି ଆଖି
ଜନନୀ ବୋଇଲେ ବାବୁ ଦେଖିଲୁ ପ୍ରତକ୍ଷ
ସଦଗୁରୁ ପୂଜା କଲେ ପିଣ୍ଡ ହୋୟେ ମୋକ୍ଷ ।
ଜନମ ହୋଇଲେ ଦେହ କ୍ଷୟ ହୋୟେ ବାବୁ
ନାମବ୍ରହ୍ମ ଶୁଣିଥିଲେ କାରଣ ପାଇବୁ ...
ଇନ୍ଦ୍ରଜାଳ ମାୟା କେହି କାହାର ନୁହନ୍ତି
ବିଜୁଳି ପବନ ପ୍ରାୟେ ଜୀବ ଘଟ ସ୍ଥିତି ।
ସର୍ବଜ୍ଞାନ ଆଦିମୂଳ ଗୋବିନ୍ଦର ନାମ
ଗୋବିନ୍ଦ ଚିନ୍ତିଲେ ପାଇ ପରମ କାରଣ ।....
ବରଷାରେ ପାଣିଥୋପା ଯେସନେ ଉତ୍ପନ୍ନ,
କେଣେ ଭାସିଯାଇ ନ ଦିଶଇ ରେଖ ବର୍ଣ୍ଣ ।
ସେହିମତି ଦେଖ ଯେ ଶରୀର ଗୋଟି ବାବୁ
କାଳକୁ ଜିଣିଲେ ଚାରିଯୁଗେ ରହିଥିବୁ । (୧୬୦-୧୬୨,୧୬୫-୧୬୯)

ଏସବୁ ମାୟାମୋହରୁ ଉଦ୍ଧାର ପାଇବାର ଉପାୟ ହେଉଛି ସବୁ ବିସର୍ଜନ ଦେଇ ଯୋଗୀ ହେବା ଓ ଯୋଗୀର ଜୀବନକୁ ବରଣ କରିନେବା । ତାହା ହିଁ ମୁକ୍ତାଦେଈଙ୍କର ଓ ପରେ ହାଡ଼ିପାଙ୍କର ଗୋବିନ୍ଦଚନ୍ଦ୍ରଙ୍କୁ ଉପଦେଶ :

କର୍ଣ୍ଣରେ ମଦୁରା ଲାଇ କାଇକନ୍ଥା ହୃଦେ
ସର୍ବାଙ୍ଗ ବିଭୂତି ଘଷି ରହିବ ଆନନ୍ଦେ ।
ଶିଙ୍ଘା ଶକତି ତ୍ରିଶୂଳ କନ୍ଧେ ଘେନିଥିବୁ
ଝୋଲିକନ୍ଥା ଲାଉଥାଳ ନିରତେ ବହିବୁ ।
ନଗ୍ରରେ ପଶିଣ ବାବୁ ମାଗିବୁ ତୁ ଭିକ୍ଷା
ଦେଉ କି ନ ଦେଉ ପୁଣ ଯେ ଯାହାର ଇଚ୍ଛା....
ଭୂମିରେ ଶୋଇଣ ପୁତା ଅଭକ୍ଷ୍ୟ ଭକ୍ଷିବୁ
ଶ୍ମଶାନ ଭୂମିରେ ପୁତା ଯେକାନ୍ତେ ବୁଲିବୁ ।
ଗ୍ରାମେ ନ ଭୁଞ୍ଜିବୁ ପୁତା ଯାନେ ନ ଚଢ଼ିବୁ
ଭୋଜନ ଶେଷକୁ ପୁତା ପାଣି ନ ଭକ୍ଷିବୁ ।
ଛପନ କୋଟି ଜୀବର ମୃତ୍ୟୁ ଅଟେ ସାର
ସର୍ବଘଟେ ନାରାୟଣ କେହି ନାହିଁ ପର । (୧୭୦-୧୭୨, ୨୦୭-୨୦୯)

'ଗୋବିନ୍ଦଚନ୍ଦ୍ର'ର ଦୁଇଟି ଆୟତନ । ଗୋଟିଏ ଯୋଗ, ଅନ୍ୟଟି ଭୋଗ । ଗୋବିନ୍ଦଚନ୍ଦ୍ର ଜୀବନର ପ୍ରାରମ୍ଭିକ ଅବସ୍ଥାରେ ଧନୀ, ପ୍ରତାପଶାଳୀ ରାଜା ଭାବରେ ରାଜକୀୟ ଓ ସାଂସାରିକ ବିଳାସ ବ୍ୟସନରେ ମଗ୍ନ ଥିଲେ । କିନ୍ତୁ ପରବର୍ତ୍ତୀ ଜୀବନରେ ସେ ସବୁକୁ ତ୍ୟାଗ କରି, ନିଜର କାମ, କ୍ରୋଧ, ଦୁଃଖ, ଆସକ୍ତି ପ୍ରଭୃତି ଆବେଗ ଓ ରିପୁମାନଙ୍କୁ ଦମନ କରି 'ମୁକ୍ତ' ବ୍ୟକ୍ତିଭାବରେ ଯୋଗୀରେ ରୂପାନ୍ତରିତ ହୋଇଥିଲେ । କବିଙ୍କ ମତରେ ଏହି ପରିବର୍ତ୍ତନର ଧାରା ଅତ୍ୟନ୍ତ କଠିନ, ଓ ଗୋବିନ୍ଦଚନ୍ଦ୍ରଙ୍କୁ ଏହି କଠିନ ସାଧନା ଦେଇ ଯିବାକୁ ପଡ଼ିଥିଲା । ବିଶେଷ କରି 'ବାୟୁ'ର ନିୟନ୍ତ୍ରଣ ଅତ୍ୟନ୍ତ ଆବଶ୍ୟକ, ଓ 'ଦଶଦ୍ୱାର' ରୁଦ୍ଧ କରି 'ଷଡଚକ୍ର'ର ଶୃଙ୍ଖଳାରେ ହିଁ ଏହା ସମ୍ଭବ, ଯାହାଦ୍ୱାରା ବାୟୁ ଉର୍ଦ୍ଧ୍ୱଗାମୀ ହୋଇ 'ସହସ୍ର ଦଳ ପଦ୍ମ'ର ମଣ୍ଡଳରେ ପ୍ରବେଶ କରି ପାରିବ । ଏହାକୁହିଁ ଅନ୍ୟଭାବରେ 'ଅମନ'ରେ ମନର ସ୍ଥିତି ବୋଲି କୁହାଯାଇପାରେ ଯାହାକି ମନକୁ ପରିପୂର୍ଣ୍ଣ ଓ ଦୃଢ଼ କରିବ :

ପବନକୁ ନିରୋଧିକୁ ଦଶଦ୍ୱାର ବାଟେ
ଶୋଷିଣ ଯେ ନିଃଶ୍ୱାସ ତୁ ଚଳାଅ ଉଚାଟେ ।
ଅମନ ମନ୍ଦିରେ ପଶି ମନ କର ଦୃଢ଼େ

ଯୋଗ ସାଧିବାର ପ୍ରୁତା ଅତି ମହାଗାଢ଼ ।
ନାଭିପାଶେ ନାସାଦଣ୍ଡ ଯେବେଟି ଲାଗିବ
ତେବେ ସେ ପ୍ରାଣକୁ କେବେ ପିଣ୍ଡ ନ ଛାଡ଼ିବ ।
ମୂଳ କମଳକୁ ପ୍ରୁତାରେ ପାରିବୁକି ସାଧି
ନ ସାଧିଲେ ଅକାରଣ ହୋଇବ ଯେ ବିଧି । (୨୧୦-୨୧୩)

ଯୋଗ ସାଧନାର ପରିଣାମ ସଂପୂର୍ଣ୍ଣ ମୋକ୍ଷ ଓ ମୁକ୍ତିର ସ୍ଥିତି :

ବାର ବରଷରେ ମୋ ଅଇଲା ଗୋବିନ୍ଦାଇ
ଯେତେ ବୋଲି ମାତା ପୁତ୍ରକୁହିଁ ଦେଲା ଚାହିଁ ।
ପୁତ୍ରର ବଚନ ଶୁଣି ଶୋକେ ଅସମ୍ଭାଳ
ନୟନରୁ ଲୋତକ ବହଇ ଅନର୍ଗଳ ।
ମେରୁହାଡ଼ ଭିତରେ ପଶିଅଛି ଲାଭି
କୁମ୍ଭନାଦ ପ୍ରାୟେକ ବଚନ ତାର ଶୁଭି ।
ଖାଇବାକୁ ଅନ୍ନ ଆଣି ପରଷିଲେ ମାଏ
କି କରିବି ଅନ୍ନ ମାୟେ ସିଦ୍ଧ ମୋର କାୟେ ।
ଜନନୀ ବୋଇଲେ ବାବୁ କ୍ଷୀର ପାନ କର
ନୃପତି ବୋଇଲେ ମାତା ତାହିଂ କଲି ଦୂର ।
ହରଷ ହୋଇଲେ ମାୟେ କୁମର ବଚନେ
ଯେବେ ସେ ତରିଲୁ ବାବୁ ମୋହର ନନ୍ଦନେ । (୮୮୮-୮୯୩)

'ଗୋବିନ୍ଦ ଚନ୍ଦ୍ର' ଓଡ଼ିଶାର ଗୋଟିଏ ଲୋକପ୍ରିୟ ଗ୍ରନ୍ଥ, ଓ ତତ୍ତ୍ୱ ସାହିତ୍ୟ ହେଲେ ବି ଏହାର ଲୋକପ୍ରିୟତା ଗୋଟିଏ କାବ୍ୟ ପରି । ଏଥିରେ ଯେ ଗୋଟିଏ ଗଳ୍ପର ଗଢ଼ଣ ରହିଛି କେବଳ ସେଥିପାଇଁ ନୁହେଁ । ଏହି ଗଳ୍ପର ମାନବିକ ଆବେଗ ଏହାର ଲୋକପ୍ରିୟତାର ବଡ଼ କାରଣ, ଯେ ବୁଦ୍ଧଦେବଙ୍କ ପରି, ଜଣେ ରାଜା ନିଜର ସୁଖସ୍ୱାଚ୍ଛନ୍ଦ୍ୟ ଛାଡ଼ି ଦରିଦ୍ର ଯୋଗୀ ହୋଇଗଲେ, ଏଇଟା ହିଁ ଗାଁ ଗଣ୍ଡାର ଲୋକମାନଙ୍କ ପ୍ରତି ବଡ଼ ଆକର୍ଷଣ । ସେଥି ସହିତ ନାଥ ଯୋଗୀମାନେ ଗୋବିନ୍ଦଚନ୍ଦ୍ର ଗୀତକୁ ଗାଁ ଗଣ୍ଡାରେ ଯେପରି କରୁଣ ସ୍ୱରରେ ଗାଇ ଗାଇ ବୁଲନ୍ତି ସେ ଆଉ ଗୋଟାଏ କାରଣ । ମୋଟ କଥା 'ଗୋବିନ୍ଦଚନ୍ଦ୍ର' ପଞ୍ଚସଖା ତତ୍ତ୍ୱ ସାହିତ୍ୟର ଗୋଟିଏ ବିଶିଷ୍ଟ ରଚନା ହେଲେ ବି, ଏହା ସାଧାରଣ ତତ୍ତ୍ୱ ସାହିତ୍ୟ ଠାରୁ ଭିନ୍ନ ଧରଣର ଓ ଏହାର ମାନବିକତା ଦିଗ ହିଁ ସବୁଦିନେ ଶ୍ରୋତା ଓ ପାଠକମାନଙ୍କୁ ପ୍ରଭାବିତ କରି ଆସିଛି । 'ଗୋବିନ୍ଦଚନ୍ଦ୍ର' ଗୋଟିଏ ଦୀର୍ଘ ରଚନା, ସାଂସାରିକ ଜୀବନ ଓ ଆଧାତ୍ମିକତା ସଂପର୍କିତ ଏହାର ମୁଖ୍ୟ

ଉପସ୍ଥାପନା ବ୍ୟତୀତ ଏଥିରେ ଆହୁରି ଅନେକ ବିବରଣୀ ଓ ସୂଚନା ରହିଛି । ଯେପରିକି ଗୋବିନ୍ଦଚନ୍ଦ୍ରଙ୍କର ତାଙ୍କର ରାଣୀ ରୋଦମା ପୋଦମାଙ୍କ ସହିତ ଉକ୍ତି ପ୍ରତ୍ୟୁକ୍ତି, ଗୋବିନ୍ଦଚନ୍ଦ୍ରଙ୍କର ଚାରିତ୍ରିକ ଶୁଦ୍ଧତା ପରୀକ୍ଷା କରିବା ପାଇଁ ହାଡ଼ିପା ଆଯୋଜନ କରିଥିବା ରମ୍ଭା ଗଣିକା, ଧନୀଶୁଣ୍ଢୀ, ଓ କୈବର୍ତ୍ତ କନ୍ୟା ପ୍ରଭୃତିଙ୍କର ବିବରଣୀ, ଯାହାକି ଉଭୟ ଆବେଗପୂର୍ଣ୍ଣ ଓ କୌତୁକପ୍ରଦ ବି । ପୁଣି ଏସବୁ ବାହାରେ କବିଙ୍କର ଗୋବିନ୍ଦଚନ୍ଦ୍ରଙ୍କ ସମେତ ପ୍ରତିଷ୍ଠିତ ନାଥଗୁରୁମାନଙ୍କର ପ୍ରତି ସମ୍ମାନ ଓ ଅନୁରକ୍ତିର ମନୋଭାବ ଲକ୍ଷ୍ୟ କରାଯାଇପାରେ :

ନମସ୍ତେ ହାଡିପା ସାଧ କଲ ମୋର କାୟେ
ଚାରିଯୁଗ ଗଲେ ତାଙ୍କୁ ଦିବସ ପରାୟେ ।
ତୁମ୍ଭର ଚରଣ ତଳେ ମମ ଶିର ଲୋଟୁ
କିଞ୍ଚିତେ ପ୍ରସନ୍ନ ହୁଅ ଭ୍ରାନ୍ତି ମୋର ଫିଟୁ ।
ନମସ୍ତେ ତନ୍ତୀପା ମୋତେ ହୁଅ ସୁପ୍ରସନ୍ନ
ମାୟା ମୋହେ ପଡ଼ି ମୁହିଁ ଯେ ହେଲି ହିନିମାନ ।
ମତ୍ସଇନ୍ଦ୍ର ଚଉରଙ୍ଗୀ ଆଦି ମୀନ ବୃନ୍ଦ
ତୁମ୍ଭର ଆଜ୍ଞାଂରେ ମୋର ପିଣ୍ଡ ହେଉ ସିଦ୍ଧ ।
ନମସ୍ତେ ଗୋରେଖନାଥ ଯତିଙ୍କ ଠାକୁର
ଚଉଷଠି ସିଦ୍ଧଙ୍କ ଉପରେ ଅଧିକାର ।
ଭବ ଜଳଧିରୁ ପାରି କର ମହାଯତି
ତୁମ୍ଭର ପ୍ରସନ୍ନେ ମୋର ହୋଇବ ମୁକତି ।
ନମସ୍ତେ ଗୋବିନ୍ଦଚନ୍ଦ୍ର ରିପୁଚନ୍ଦ୍ର ବନ୍ଧ
କିଞ୍ଚିତେ ପ୍ରସନ୍ନ ହୋଇ ମୋର ପ୍ରାଣ ରଖ ।

ଯଶୋବନ୍ତଙ୍କର ଅନ୍ୟତମ ରଚନା ପ୍ରେମଭକ୍ତି ବ୍ରହ୍ମଗୀତା ଓଡ଼ିଶାର ବୈଷ୍ଣବୀୟ ଚିନ୍ତାଧାରାର ଏକ ପ୍ରାମାଣିକ ଗ୍ରନ୍ଥ । ଶ୍ରୀକୃଷ୍ଣ ଅର୍ଜୁନ ଓ ଶ୍ରୀରାଧାଙ୍କର କଥୋପକଥନରେ ଏହି ଚିନ୍ତାଧାରାର ନିର୍ଯ୍ୟାସ ପ୍ରକାଶ କରାଯାଇଛି । ଅର୍ଥାତ୍ 'ବ୍ରହ୍ମଜ୍ଞାନ' ବା ସ୍ୱର୍ଗୀୟ ଜ୍ଞାନର ସଂଗଠନରେ 'ପ୍ରେମଭକ୍ତି' ବା ଭକ୍ତି ସହିତ ପ୍ରେମର ମିଶ୍ରଣର ଉପଲବ୍ଧିହିଁ ମୁଖ୍ୟ ଅନୁଭବ । କିନ୍ତୁ ଭକ୍ତିର ଧାରା ବା ପ୍ରଣାଳୀ ସଂପୂର୍ଣ୍ଣ ଭାବରେ ସାଧକର ନିଜ ଭିତରେ ହିଁ ରହିଛି ନିଜକୁ ନିଜେ ବୁଝିବାରେ, ନିଜର ଚେତନାରେ ସଂପୂର୍ଣ୍ଣ ଭାବରେ ନିମଜ୍ଜିତ ହେବାର କାର୍ଯ୍ୟରେ । ଭଗବାନଙ୍କୁ ପ୍ରାର୍ଥନା କରିବା ବା ତାଙ୍କର ବିବରଣୀ ଶୁଣିବା ବା ତାଙ୍କର ପୂଜା ଅର୍ଚ୍ଚନା କରିବା ପ୍ରଭୃତି ସଂପୂର୍ଣ୍ଣ ଭାବରେ ବାହାରର କାର୍ଯ୍ୟ,

ମୂଳ ବସ୍ତୁ ଉପରେ ସ୍ନିଗ୍ଧ ପ୍ରଲେପ ପରି, ଓ ନିଜ ଅନ୍ତରର ପ୍ରେମ ଭକ୍ତିର ଉଚ୍ଛ୍ୱାସ ବା ଧାରା ସହିତ ଏସବୁର ସଂପର୍କ ନାହିଁ, ବା ଗୁରୁତ୍ୱ ନାହିଁ । ଏହାହିଁ 'ପ୍ରେମ ଭକ୍ତି ବ୍ରହ୍ମଗୀତା'ର ମୁଖ୍ୟ ଅନୁଭବ, ଯେ ପ୍ରେମଭକ୍ତି ବ୍ରହ୍ମଜ୍ଞାନର ଅନ୍ତର୍ନିହିତ ଓ ଏହାର ନିର୍ଯ୍ୟାସ ।

ଆରମ୍ଭରୁ ହିଁ ଭଗବାନଙ୍କ ବିଷୟରେ ସୂଚନା, ସେ ସର୍ବୋଚ୍ଚ, ସର୍ବୋତ୍ତମ ଓ ସର୍ବୋତ୍କୃଷ୍ଟ ଐଶ୍ୱରିକ ସତ୍ତା । ତାଙ୍କୁ କେହି ସୃଷ୍ଟି କରି ନାହାନ୍ତି, ସେ ନିଜକୁ ନିଜେ ସୃଷ୍ଟି କରିଛନ୍ତି । ସେ ଆଦି, ପୁଣି ତାଙ୍କର ଆରମ୍ଭ ବୋଲି କିଛି ନାହିଁ । ଯେହେତୁ ସେ ସୃଷ୍ଟି କରିବାକୁ ଇଚ୍ଛା କଲେ, ବିପୁଳ ମହାଶୂନ୍ୟରୁ ସୃଷ୍ଟି ଆରମ୍ଭ ହେଲା, ଓ ଦୁଇ ରୂପ, ଆଦି ପୁରୁଷ ଓ ଆଦି ପ୍ରକୃତିର ସୃଷ୍ଟି ସହିତ ଏହାର ଶେଷ ହେଲା :

ମୁହିଂ ମୋହର ତହୁଂ ଜାତ । ମୁହିଂ ସେ ସୃଜିଲି ଜଗତ ।...
ମୋହର ନାହିଂ ଆଦି ଅନ୍ତ । ଯେ କାଳେ ନ ଥାଇ ଜଗତ ।
ନ ଥାଇ ରବି ଶଶୀ ତାରା । ସ୍ୱର୍ଗ ପାତାଳ ବସୁନ୍ଧରା ।
ନ ଥିଲେ ନାମ ରୂପ ଗୁଣ । ସଂସାର ଯେ ବିଧି ଭିଆଣ ।
ସେ କାଳେ ମୋର ଥାଏ ତନ । ଗଗନ ଯେହ୍ନେ ସର୍ବଶୂନ୍ୟ ।...
ଯେ ଶୂନ୍ୟ ପରେ ଜ୍ୟୋତି ଜାଣ । ତାପରେ ମହାଶୂନ୍ୟ ପୁଣ ।
ସେ ଶୂନ୍ୟ ଉପରେ ଚେତନା । ଚେତନା ମଧ୍ୟେ ମୋର ଠଣା ।
ଅଣ ଅକ୍ଷର ନିରାକାରେ । ବୁଦବୁଦା ପ୍ରାୟେ ମୁଁ ଶୂନ୍ୟରେ...

(ପ୍ରଥମ ଅଧ୍ୟାୟ)

ପରେ ପରେ, ପୁରୁଷ ଓ ସ୍ତ୍ରୀର ସଂଚାର :

ଶୂନ୍ୟରୁ ମହାରସ ଝଡ଼ି । ତାର ଆଂଜୁଳି ମଧ୍ୟେ ପଡ଼ି ।
ଊର୍ମି ଧୂର୍ମି ସେ ଜ୍ୟୋତି ଜ୍ୱାଳା, ଶୂନ୍ୟରେ ଥିଲେ ଚାରି କଳା ।
ସେ ଚାରିକଳା ରସେ ମିଶି । ସୁଗନ୍ଧ ସୁଶୀତଳ ବାସି ।
ବେନି ହସ୍ତରେ ସେ ଆଞ୍ଜୁଳି । ଧଇଲା ଯୋଗମାୟା ତୋଳି ।
ବେନି ହସ୍ତରେ ତାହା ଗ୍ରାସୀ । ବେନି ଭାଗରେ ଗର୍ଭେ ପଶି ।
"ତା' ଗର୍ଭେ ସମ୍ଭୂତ ହୋଇଲେ । ଅଣ୍ଡ ଯେ ଗର୍ଭେ ପ୍ରକାଶିଲେ ।
ବାମ ହସ୍ତର ଭାଗ ସ୍ତିରୀ । ଡାହାଣେ ପୁରୁଷ ସଞ୍ଚରି ....

(ଦ୍ୱିତୀୟ ଅଧ୍ୟାୟ)

ପରିଶେଷରେ କବିଙ୍କର ଆଧ୍ୟାତ୍ମିକ ଚିନ୍ତାଧାରାରେ ରାଧା-କୃଷ୍ଣ ଲୀଳାର ଅନୁଭବ ଆସିଛି, ଯାହାକି ସାଧକର ସର୍ବୋତ୍ତମ ଅନୁଭବ, ଓ ଜୀବନର ସର୍ବୋତ୍ତମ ଚେତନା ।

କବିଙ୍କର ମତରେ ଏ ଅନୁଭବ ଶରୀର ସଂଗଠନର ବହିଃସ୍ଥ ନୁହେଁ, ଏହା ଶରୀରର ସଂଗଠନରେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ, ଓ ଶରୀରର ସର୍ବୋଚ୍ଚ ବିନ୍ଦୁରେ ରାଧା-କୃଷ୍ଣଙ୍କର ଅନନ୍ତ, ଅମର ଲୀଳାର ଚେତନା ସାଧକ ପାଇଁ ବାସ୍ତବ ଐଶ୍ୱରିକ ଚେତନା । ଅନ୍ୟ ଭାବରେ, ଏହାହିଁ 'ନିତ୍ୟସ୍ଥଳୀ'ରେ 'ଜୀବ' ଓ 'ପରମ'ର ଅନନ୍ତ ଲୀଳା । ଏହା ଉପରେ 'ଅଣାକ୍ଷର', ତା ଉପରେ 'ନିରାକାର', ଓ ପରିଶେଷରେ 'ମହାଶୂନ୍ୟ', ଯେଉଁଠାରୁ ଐଶ୍ୱରିକ ନାମ କ୍ଷରିତ ହେଉଛି ଓ ସବୁ ପ୍ରକାର ସୃଷ୍ଟିର ସୃଷ୍ଟି ହେଉଛି । ରାଧା-କୃଷ୍ଣଙ୍କର କଥୋପକଥନରେ ଓ ପ୍ରାୟ ପ୍ରତୀକାତ୍ମକ ବର୍ଣ୍ଣନାରେ ଏହି 'ନିତ୍ୟଲୀଳା' ଓ 'ନିତ୍ୟସ୍ଥଳୀ'ର ସୂଚନା :

କହନ୍ତି ଦେବ ନାରାୟଣ । ତୁ ସଖୀ ସାବଧାନେ ଶୁଣ ।
ଯାହା ପୁଚ୍ଛିଲୁ ନିତ୍ୟ କଥା । ଶୁଣିମା ମନେ ଧରି ଶ୍ରୋତା ।
ଯେ କଳ୍ପ ବୃକ୍ଷର ମୂଳରେ । ଅନନ୍ତ ସହସ୍ର ଫେଣାରେ ।
ସପତ ଆବରଣ ଭେଦି । ମଧ୍ୟ ଫେଣାରେ ରତ୍ନବେଦୀ ।
ତା' ଚାରିପାଶେ ଚାରି ସ୍ତମ୍ଭ । ହୀରା ନୀଳାରେ ସେ ଆରମ୍ଭ ।
ମାଣିକ ପ୍ରବାଳ ଏ ଚାରି । ଶେଣୀ ବୈଦୂର୍ଯ୍ୟ ରାମ ସରି ।
ଉପରେ ରତ୍ନମୟେ ଚାଳ । ମୁକୁତା ଲମ୍ବେ ମାଳ ମାଳ ।
ଚାନ୍ଦୁଆ ଚନ୍ଦ୍ର ଦିନମଣି । ପାଟି ଝୁମ୍ପାରେ ଲମ୍ବେ ଶ୍ରେଣୀ ।
ଜବା ପୁଷ୍ପର ପ୍ରାୟେ ଶୋହେ । ଜଡ଼ି ମୁକୁତା ଦେହ ପ୍ରାୟେ ।
ସେ ସସ୍ତ୍ରଦଳର ଉପରେ । ତା'ପରେ ପ୍ରେମ ପଲଙ୍କରେ ।
ତା' ପରେ ପ୍ରେମମୟୀ ଦେହା । ତା'ପରେ କୃଷ୍ଣ ଘେନି ପ୍ରିୟା ।
ଶେଷେ ବୋଲାଇ ନିତ୍ୟ ସ୍ଥାନ । ଶ୍ରୀ ରାଧାକୃଷ୍ଣ ବେନି ଜନ ।
ବିହାର ଜୀବ ପରମରେ । ବେନି ଅକ୍ଷର ସେହିଠାରେ ।
ଶେଷେ ବୋଲାଇ ରାମ ନାମ । ଦେହାଧି ଜୀବ ସେ ପରମ ।

(ତୃତୀୟ ଅଧ୍ୟାୟ)

ଏ ପ୍ରକାରର ଉପଲବ୍ଧି ଉଭୟ ସରଳ ଓ ଜଟିଳ ବି । ପ୍ରଥମ କଥା ଏଥିପାଇଁ ସାଧକର ସଂପୂର୍ଣ୍ଣ ଏକାଗ୍ରତା ଦରକାର । ଦ୍ୱିତୀୟରେ, ସଂପୂର୍ଣ୍ଣ ଏକାତ୍ମତା । ଯାହା ଫଳରେ 'ନିତ୍ୟ ଲୀଳା' 'ନିତ୍ୟ ରାସ' ଓ 'ନିତ୍ୟସ୍ଥଳୀ'ର ଅନ୍ତର୍ନିହିତ ରହସ୍ୟ ଓ ପ୍ରକୃତ ତତ୍ତ୍ୱ ବୁଝିହେବ । କବି ସାତଟି ଆବରଣ ବା ବାଧା କଥା କହିଛନ୍ତି । ଗୋଟିଏ ଦିଗରେ ଗୋପୀମାନେ, ଗୋପାଳମାନେ ଓ ଧେନୁ ପ୍ରଭୃତି । ଅନ୍ୟ ଦିଗରେ ସିଦ୍ଧ, ଗନ୍ଧର୍ବ ଓ ବିଷ୍ଣୁ ବାସୁଦେବ ପ୍ରଭୃତି । ଭକ୍ତକୁ ଏ ସବୁକୁ ବୁଝି ଗୋଟାଏ ପରେ

ଗୋଟାଏ ଅତିକ୍ରମ କରି ଯିବାକୁ ହେବ । ପରିଶେଷରେ ସେ ସେହି ଗୁପ୍ତ, ଗୂଢ଼, ଚିରନ୍ତନ, ଶାଶ୍ୱତ ସ୍ଥାନରେ ଉପନୀତ ହେବ ଯେଉଁଠି ଭଗବାନ ରାଧା-କୃଷ୍ଣ ରୂପରେ ନିଜର ଲୀଳା ପ୍ରକଟ କରୁଛନ୍ତି । ଏହାହିଁ ଭକ୍ତର ସର୍ବୋତ୍ତମ ଚେତନା, ଓ ଓଡ଼ିଶାର ବୈଷ୍ଣବ ମାନଙ୍କର 'ପ୍ରେମଭକ୍ତି' ଅନୁଭୂତିର ନିର୍ଯ୍ୟାସ । 'ପ୍ରେମ ଭକ୍ତି ବ୍ରହ୍ମ ଗୀତା'ରେ ଏହି ଅନୁଭୂତିର ଅନ୍ୟ ଦିଗ ବି ଲକ୍ଷ୍ୟ କରାଯାଇ ପାରେ । ଅନ୍ୟାନ୍ୟ ବୈଷ୍ଣବୀୟ ବିବରଣୀ ପରି କବି ଏଠାରେ ସମଗ୍ର ଜାତିକୁ ଶ୍ରୀଜଗନ୍ନାଥଙ୍କ ସହିତ ଏକୀଭୂତ କରିଛନ୍ତି, ଓ ତାଙ୍କର ସ୍ଥାନ ନୀଳାଚଳ କ୍ଷେତ୍ରର ଗୌରବ ଶ୍ରେଷ୍ଠ ଗୌରବ ଭାବରେ ଘୋଷିତ ହୋଇଛି :

> ଜହିଲୁ ସେ ପୁରୁଷୋତ୍ତମ । ନିତ୍ୟ ରାହାସ ଅନୁପାମ ।
> ଯେ ରୁଦ୍ର ବଳଭଦ୍ର ରୂପ । ଅଟନ୍ତି ଅନନ୍ତ ସ୍ୱରୂପ ।
> ଆମ୍ଭେ ସେ ଜଗନ୍ନାଥ ଦେହୀ । ବ୍ରହ୍ମା ସୁଭଦ୍ରା ହୋଇ ତହିଁ ।
> ରାଧା ଗୁପତ ଅଙ୍ଗ ହୋଇ । ଆମ୍ଭ ସଙ୍ଗତେ ପୂଜା ପାଇ ।

********

> ଦେଖ ଯେ ନିତ୍ୟ ନୀଳାଚଳ । ସକଳ-ତୀର୍ଥଙ୍କର ଆଳ ।
> ଗୋପ ମଥୁରା ବୃନ୍ଦାବନ । ଦ୍ୱାରକା ଆଦି ଯେତେ ସ୍ଥାନ ।
> ସକଳ ଯେହି ସ୍ଥାନେ ପାଇ । ଆବର କାଶୀ ମଧ୍ୟ ହୋଇ ।
> କୋଟିଏ ତୀର୍ଥ ଯେ କ୍ଷେତ୍ରରେ। ମହିମା କହିଲେ ନ ସରେ ।

(ପଞ୍ଚମ ଅଧ୍ୟାୟ)

'ପ୍ରେମଭକ୍ତି ବ୍ରହ୍ମଗୀତା'ର ଏହାହିଁ ବିଶେଷତ୍ୱ । ଏହାର ଅନୁଭୂତିର ସଂଗଠନରେ ରାଧା-କୃଷ୍ଣ ଲୀଳା ଓ ଶ୍ରୀଜଗନ୍ନାଥ ଲୀଳା ଏକୀଭୂତ ହୋଇ ଯାଇଛନ୍ତି । ସଚ୍ଚା ଭକ୍ତ ପକ୍ଷରେ ଏହାହିଁ ଅନୁଭୂତି ।

ଶିଶୁ ଅନନ୍ତଙ୍କର ହେତୁ ଉଦୟ ଭାଗବତ, 'ହେତୁ' ବା ଜ୍ଞାନ ଓ 'ମନ'ର କଥୋପକଥନରେ ଦଶଟି ଅଧ୍ୟାୟରେ ସଂଗଠିତ ହୋଇଛି । ଓଡ଼ିଶାର ବୈଷ୍ଣବମାନଙ୍କର ଏ ଗୋଟିଏ ଗୃହୀତ ଓ ସମ୍ମାନିତ ଗ୍ରନ୍ଥ, ଓ ଏହାର ବିଭିନ୍ନ ବିଭାଗରେ ବ୍ରହ୍ମଜ୍ଞାନ, ପିଣ୍ଡ ବ୍ରହ୍ମାଣ୍ଡ ବାଦ, ଗୁରୁବାଦ, ନାମବାଦ ଓ ଜୀବ ପରମର ମିଳନ ପ୍ରଭୃତି ବିଭିନ୍ନ ଅନୁଭବ ଆଲୋଚିତ ହୋଇଛି । ଆରମ୍ଭରୁ ଗୁରୁଙ୍କୁ ପ୍ରାର୍ଥନା, ଓ ଗୁରୁ 'ଆଦିଶକ୍ତି', 'ଅନାଦି' 'ପରମ ରୂପ', 'ପରମ ପୁରୁଷ' ଇତ୍ୟାଦି ମନୋଭାବ - ଭକ୍ତି ଓ ଆଧ୍ୟାତ୍ମିକତାର ମିଶ୍ରଣ :

> ବନ୍ଦଇ ଶ୍ରୀଗୁରୁ ଚରଣ । ଗୁରୁ ଜୀବର ପରିତ୍ରାଣ ।

ଗୁରୁଟି ଆପେ ବ୍ରହ୍ମରାଶି । କାଳ ସ୍ୱରୂପେ ତମ ଗ୍ରାସି ।
ଶ୍ରୀଗୁରୁ ଆଦିଶକ୍ତି ହୋଇ । ଆଦି ଅନାଦି ନାମ ବହି ।
ଅନାଦିଠାରୁ ଆଦି ହୋଇ । ଏଣୁ ତା ଆଦିଅନ୍ତ ନାହିଁ,....

ପରେ ପରେ ଚିତ୍ରକଳ୍ପ ମାଧ୍ୟମରେ ଗୁରୁଙ୍କ ଗୌରବ ପ୍ରକାଶ ପାଇଛି :

ପରମ ରୂପ ଗୁରୁଦେବ । ନାହିଁ ଯାହାର ପରାଭବ ।
ପରମ ପୁରୁଷ ଈଶ୍ୱର । ଖେଳୁଛି ସଂସାର ଭାଗର ।
ସଂସାର ସାଗର ମଧ୍ୟର । ଗୁରୁ ସ୍ୱରୂପୀ କଣ୍ଡିଆର ।
ନାମ ନାବରେ ଛନ୍ତି ବସି । କେ ଚିହ୍ନି ପାରଇ ଭରସି ।
ସେ ନାବେ ବସି ହୁଅ ପାର । ଶବଦ କାତ କେରୁଆଳ ।
ଏମନ୍ତ ରୂପେ ଗୁରୁଦେବ । ପାରି କରନ୍ତି ପଶୁ ଜୀବ ।
ଗୁରୁଟି ଜୀବର ଜୀବନ । ଗୁରୁର ବିନୁ ନାହିଁ ଆନ ।

ଓ ପରିଶେଷରେ ଗୁରୁଙ୍କ ଉପଦେଶ :

ଶ୍ରୀଗୁରୁ କହନ୍ତି ମଧୁର । ସୁମନେ ଶୁଣ ମୋ ଉତ୍ତର ।
ବେଳହୁଁ ଗୋବିନ୍ଦ ସୁମର । ତୋ ପଛେ ଗୋଡ଼ାଇଛି କାଳ ।
ସେ କାଳ ଘଉଡ଼ିଣ ତୁହି । ସତ ଶାନ୍ତିରେ ରଖ ଦେହୀ ।
ଭ୍ରୂଲତା ମଧ୍ୟେ ହେତୁ ରଖ । ସକଳ କଳ୍ମଷ ଉପେଖ ।
ଅମନ ସଙ୍ଗେ ମନ ଦେଇ । ନିଗମ ଭେଦ କର ତହିଁ ।

(ପ୍ରଥମ ଅଧ୍ୟାୟ)

ଅନ୍ୟତ୍ର, ଦ୍ୱିତୀୟ ଅଧ୍ୟାୟରେ ବି, କବି ଗୁରୁଙ୍କୁ ପରମ ବ୍ରହ୍ମଙ୍କ ସହିତ ସମାନ ଆସନ ଓ ସମାନ ଗୌରବରେ ଭୂଷିତ କରିଛନ୍ତି :

ଶୁଣ ହେ ମନ ମୋ ଉତ୍ତର । ଗୁରୁଟି ଆପେ ନିରାକାର ।
ଗୁରୁ ପରମ ବ୍ରହ୍ମ ହୋଇ । ଗୁରୁଟି ବୈଷ୍ଣବ ଗୋସାଇଁ ।
ଗୁରୁ ସାକ୍ଷାତେ ନାରାୟଣ । ବେଦରେ ବ୍ରହ୍ମରୂପ ପୁଣ ।
ବେଦରେ ବ୍ରହ୍ମରୂପେ ଥାଇ । ସର୍ବଳ ସର୍ଜନା କରଇ ।

'ହେତୁ ଉଦୟ ଭାଗବତ'ରେ ଗୁରୁ ଶିଷ୍ୟର ସଂପର୍କର ବିବରଣୀ ଓଡ଼ିଶାର ବୈଷ୍ଣବଧର୍ମର ବିବରଣୀ କୁହାଯାଇ ପାରେ । ଗୁରୁ ଶିଷ୍ୟଙ୍କୁ 'ଯନ୍ତ୍ର' ଓ 'ମନ୍ତ୍ର'ର ଗୁପ୍ତ ଅର୍ଥ ବିଷୟରେ ଶିକ୍ଷା ଦିଅନ୍ତି । ସେଥି ସହିତ ଜ୍ଞାନ, ଜ୍ଞାନମିଶ୍ରା ଭକ୍ତି, ଓ କେବଳ ଭକ୍ତିର ଗୁରୁତ୍ୱ ଓ ଗୌରବ ବିଷୟରେ ବି ଶିକ୍ଷା ଦେଇ ଥାଆନ୍ତି । କବି ପ୍ରଥମେ ସୃଷ୍ଟି, ସୃଷ୍ଟିର ରହସ୍ୟ ଓ ସୃଷ୍ଟିର ପ୍ରଣାଳୀ ବିଷୟରେ କହିଛନ୍ତି । ପରେ ସେ ସବୁକୁ ବିଭିନ୍ନ

ପର୍ଯ୍ୟାୟରେ ବିସ୍ତାରିତ କରି ସତ୍ତ୍ୱ, ରଜ, ତମ ପ୍ରଭୃତି ଗୁଣମାନଙ୍କୁ ମଣିଷ ଶରୀରର ଶୀରା ଓ ସ୍ନାୟୁ ପ୍ରଣାଳୀ ସହିତ, ବିଶେଷ କରି ଇଡା, ପିଙ୍ଗଳା ଓ ସୁଷୁମ୍ନା ନାଡି ସହିତ ସମାନ କରିଛନ୍ତି, ଓ କହନ୍ତି ଏସବୁର ପରିମାପ ଓ ଅବବୋଧ କେବଳ ମାତ୍ର ମଣିଷର ଶରୀରର ସଂଗଠନର ଧାରାରେ ହିଁ ହୋଇ ପାରିବ, ଅନ୍ୟଥା ନୁହେଁ। ସେହିପରି ପିଣ୍ଡବ୍ରହ୍ମାଣ୍ଡ । କବିଙ୍କର ମତରେ ସାଧକ ପିଣ୍ଡବ୍ରହ୍ମାଣ୍ଡର ତତ୍ତ୍ୱକୁ ଠିକ୍ ଭାବରେ ବୁଝି ପାରିଲେ ସୃଷ୍ଟିର ମୂଳ ରହସ୍ୟକୁ ମଧ ଠିକ୍ ଭାବରେ ବୁଝି ପାରିବ । କାରଣ ପିଣ୍ଡ ମଧ୍ୟରେ ହିଁ ପଞ୍ଚଭୂତ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ଦେବତା ମଣ୍ଡଳ, ମନ, ବୁଦ୍ଧି, ଅହଂକାର, ଗଙ୍ଗା, ଯମୁନା, ସରସ୍ୱତୀ, ବୃନ୍ଦାବନ, ରାଧାକୁଣ୍ଡ, ଶ୍ୟାମକୁଣ୍ଡ, ବିନ୍ଦୁ ସରୋବର, ନୀଳାଦ୍ରି, ମଥୁରା, ଦ୍ୱାରକା, ରାଧାକୃଷ୍ଣ ଯୁଗଳ ମୂର୍ତ୍ତି, ଚନ୍ଦ୍ରାବଳୀ, ଚାରି ବେଦ, ଷୋଳ ନାମ, ବତିଶ ଅକ୍ଷର ପ୍ରଭୃତି ପ୍ରତ୍ୟେକ ରହିଛି, ଓ କବି ପ୍ରତ୍ୟେକର ବିସ୍ତାରିତ ବର୍ଣ୍ଣନା ଦେଇଛନ୍ତି । ସେହିପରି ଷଡଚକ୍ରର ବର୍ଣ୍ଣନା । ଯୋଗ ମାର୍ଗର ଶରୀର ସାଧନାରେ ମୁଖ୍ୟତଃ ଛଅଗୋଟି ମୁଖ୍ୟ ସ୍ନାୟୁ-କେନ୍ଦ୍ର ବା ଚକ୍ରର ବର୍ଣ୍ଣନା ରହିଛି । କବି ମଧ ଛଅଗୋଟି ଚକ୍ରର ବର୍ଣ୍ଣନା କରିଛନ୍ତି ('ମହାଶୂନ୍ୟ', 'ନିରଞ୍ଜନ', 'ନିରାଲମ୍ବ', 'ଅଲେଖ', 'ନିରାଧାର', 'ସହଜାନନ୍ଦ') ଓ କହନ୍ତି ଏହି ଛଅଗୋଟି ଚକ୍ରର ଭିତର ଦେଇ ପ୍ରାଣ ପ୍ରବାହ ସାହାଯ୍ୟରେ କୁଣ୍ଡଳିନୀ ଶକ୍ତିକୁ ଉର୍ଦ୍ଧ୍ୱମୁଖୀ କରାଯାଇ କପାଳସ୍ଥ ଶିବ ସହିତ ଯୁକ୍ତ କଲେ ନିର୍ଗୁଣ ପରଂବ୍ରହ୍ମଙ୍କର ଚେତନା ମିଳି ପାରିବ:

ତାହାଁ ତୁ କେମନ୍ତ ଦିଶୁଛି । କ୍ଷୀର ସମୁଦ୍ର କି ଘୋଟିଛି ।
ତହିଁ ଉପରେ ଚନ୍ଦ୍ର ସୂର୍ଯ୍ୟ । ନାହିଁଟି ପବନର ତେଜ ।
ନିଶ୍ଚଳେ ବସିଅଛି ସେହି । ନିରାକାର ଯେ ବ୍ରହ୍ମ ହୋଇ ।
ସଚ୍ଚିଦାନନ୍ଦ ବ୍ରହ୍ମ ରାଶି । ନିର୍ମଳ ଦିଶେ ଅବିନାଶୀ ।
ଅନାହତ ଉପରେ ଅଛି । ନାଗ ଯେ ଦେବ ଶୂନ୍ୟେ ବ୍ୟାପି ।
ଶୁକ୍ଳାମ୍ବର ଯେ ଦିବ୍ୟ ଜ୍ୟୋତି । ଶୋଭିତ ବିଶ୍ୱମ୍ଭର ମୂର୍ତ୍ତି ।
ଅଲକ୍ଷ୍ୟ ପୁରୁଷକୁ ଦେଖ । କି ଶୋଭା ପାଉଛି ନିରେଖ ।
ପିତା ହିଁ ଏହି ମାତା ଏହି । ଭୋକ୍ତା ହୋଇଣ ସର୍ବଠାଇଁ ।
ଏ ବ୍ରହ୍ମ ଚିହ୍ନ ସୁତ ତୁହି । ତୁହି ଯେ ମୁହିଁ ଏକ ଦେହୀ ।

(ଷଷ୍ଠ ଅଧ୍ୟାୟ)

ଏହି ପ୍ରସଙ୍ଗରେ ମଣିଷର ଶରୀର ସହିତ ସଂପର୍କ କରି କବିଙ୍କର ବିଷ୍ଣୁଙ୍କର ଦଶାବତାର କଳ୍ପନା ଉଲ୍ଲେଖ ଯୋଗ୍ୟ –"କାଳନ୍ଦୀ ନଦୀରେ ହେ ମୀନ / ହୋଇଲେ ଦେଖ ସ୍ୱରୂପେଣ / ଶିଶୁବେଦ ବୋଲିଣ ଯେହି / ଜିହ୍ୱା ଅଟଇ ସୁତ ସେହି / କୂର୍ମ

ଯେ ଚାରିପାଦ ଯେହି / ଚାରି ଯେ ପାଦେ ଅଟେ ସେହି / ବଚନ ଯେତି କୂର୍ମ ଜାଣ / ହେ ବତ୍ସ ସୁଚିତ୍ତେଣ ଶୁଣ / ବରାହ ମୂର୍ତ୍ତି ଅଟେ ସେହି / ତୋ ଦନ୍ତ ଅଗ୍ରକୁଟି କହି / ନୃସିଂହ ଜାଣ ହୋ ନାସିକା / ତିନି ଯେ ଭୁବନକୁ ଶାଖା / ବାମନ କର୍ଣ୍ଣକୁ ହେ କହି / ଶୁଣ ହେ ବତ୍ସ ମନ ଦେଇ / ବାଇକି ଜାଣି ମୁଁ ତୋହର / ପର୍ଶୁରାମ ଯେ ଅବତାର / ଲୋଚନ ଅଟେ ଏହୁ ପୁଣ / ଶ୍ରୀରାମ ରୂପଟି ପ୍ରମାଣ / କହ୍ଲା ଯେ ଅବତାର ଯେହୁ / ମୁଖମଣ୍ଡଳ ଅଟେ ସେହୁ / ବଉଦ୍ଧ ଦେହୀ ତୋର ହୋଇ / ଶୂନ୍ୟ ଯେ ସ୍ୱରୂପ ବୋଲାଇ / ବିନ୍ଦୁ ଯେ କଳଙ୍କି ଯେ ଜାଣ / ଦଶ ଯେ ରୂପ ଏ ପ୍ରମାଣ ।" (ଚତୁର୍ଥ ଅଧ୍ୟାୟ)

କିନ୍ତୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଭକ୍ତ ବା ସାଧକ ନିଜର 'ହେତୁ' ବା ନିଜର ଅର୍ଜିତ ଜ୍ଞାନର ସାହାଯ୍ୟରେ କିପରି ଭାବରେ ବା କେତେଦୂର ନିଜର ମନକୁ ସଂଯତ ଓ ଶୃଙ୍ଖଳିତ କରିପାରିବ, ଯାହା ଫଳରେ ସେ ସେହି ଅତ୍ୟୁଚ୍ଚ ବିନ୍ଦୁକୁ ଯାଇ ପାରିବ ଯେଉଁଠି ସହଜରେ ସେ ପୁରୁଷ ଓ ନାରୀ, ବା ରାଧା ଓ କୃଷ୍ଣ, ବା 'ଜୀବ' ଓ 'ପରମ'ର ଚିରନ୍ତନ ମିଳନ ଦେଖି ପାରିବ । ଏକମାତ୍ର ଏହା ହିଁ ସର୍ବୋତ୍ତମ ଆନନ୍ଦ ଓ ଶ୍ରେଷ୍ଠ ମୁକ୍ତି ଆଣିଦେବ । 'ମନ' ସଂପର୍କରେ କବିଙ୍କ ବକ୍ତବ୍ୟ ସ୍ପଷ୍ଟ :

ମନଟି ଆପେ ଆପେ । ମନ ବାହାରେ ଦିଅଁ କାହିଁ ।
ମନ ପୂଜିଲେ ପୂଜା ପାଇ । ନୋହିଲେ ଅପୂଜ୍ୟ ସେ ହୋଇ ।
ମନଟି ଅଟେ ଗୁରୁଦେବ । ମନଟି ଆପେ ବାସୁଦେବ ।
ମନଟି ଅଟେ ମତ୍ତ ଗଜ । ତିନି ଭୁବନେ ତାର ତେଜ ।
ଏ ମତ୍ତ ଗଜକୁ ଆଙ୍କୁଶ । ହେତୁ ଅଟଇ ଶୁଣ ବତ୍ସ ।
ମନ ସେ ଆୟତ୍ତ ନୋହିଲେ । କେ ଯୋଗ ସାଧିପାରେ ଭଲେ ।...
ମନ ସେ ଅଟଇ ହୋ ମୂଳ । ମନର ନାହିଁ ସ୍ଥଳ କୂଳ ।
ମନ ପବନ ଦୁଇ ହୋଇ । ଜୀବ ପରମ ରୂପେ ସେହି ।
ଖେଳୁଛି ସଂସାର ମଧ୍ୟରେ, କ୍ଷଣ ହେ ଭଙ୍ଗ ନାହିଁ ତାରେ ।

ତେଣୁ ମନକୁ ନିମଗ୍ନ କରି, ଜୀବ ପରମକୁ ଏକ କରି, ଦୃଢ଼ ଭାବରେ ସାଧନା କରି ପାରିଲେ ଯାହା ଦୃଶ୍ୟ ହେବ ସେ 'ଅରେଖ', 'ଅବର୍ଣ୍ଣ' :

ଯେ ରୂପ ଦେଖିବୁ ନୟନ । ସେ ଟି ଅନାଦି ଭଗବାନ ।
ଅରେଖ ଅବର୍ଣ୍ଣ ଅଟଇ । ଅବର୍ଣ୍ଣ ବର୍ଣ୍ଣ ସେ ନୁହଇ ।
ଦେଖ ସକଳ ଅଛି ପୂରି । ସ୍ଥାବରୁ କୀଟ ଯାଏ ସରି,
ଦେଖ ହୋ ଦେଖ ତୋ ନୟନେ । କ୍ଷୀର ସମୁଦ୍ରେ ଶଶୀ ଯେହ୍ନେ ।...

ସମସ୍ତ ଜୀବଜନ୍ତୁଙ୍କର । ଏହିଟି ଅଟଇ ଠାକୁର ।
ଦେଖ ସବୁରି ଏକ ପ୍ରାଣ । କେବେହେଁ ନୁହଇଁ ଅଭିନ୍ନ ।

(ଚତୁର୍ଥ ଅଧ୍ୟାୟ)

## (୩)

ବ୍ରହ୍ମ କୁଣ୍ଡଳୀ ଗୀତାରେ ସମୁଦାୟ ୩୬ଟି ଅଧ୍ୟାୟ । ପ୍ରଥମ ଅଧ୍ୟାୟରେ ସତ୍ତ୍ୱ, ରଜଃ,' ତମ ଗୁଣରୁ ବ୍ରହ୍ମାଣ୍ଡର ସୃଷ୍ଟି ପ୍ରକ୍ରିୟାର ସୂଚନା, ଦ୍ୱିତୀୟ ଅଧ୍ୟାୟରେ କଠୋର ଜ୍ୟୋତି ସାଧନାର ସମାବେଶ, ତୃତୀୟ ଅଧ୍ୟାୟରେ ଶୂନ୍ୟର୍ ସ୍ୱରୂପ ପ୍ରଭୃତି ଏହିପରି ଭାବରେ ପ୍ରଥମ ୩୫ ଅଧ୍ୟାୟରେ ଯୋଗ ସାଧନାର ବିଭିନ୍ନ ପର୍ଯ୍ୟାୟ ବର୍ଣ୍ଣିତ ହୋଇଛି । ଶେଷ ବା ୩୬ ଅଧ୍ୟାୟରେ ସମଗ୍ର ବିଷୟବସ୍ତୁର ସାରାଂଶ । 'ବ୍ରହ୍ମ କୁଣ୍ଡଳୀ ଗୀତା'ରେ ଯୋଗ ତତ୍ତ୍ୱ ଉପରେ ଗୁରୁତ୍ୱ ଦିଆଯାଇଛି, ଓ ଜ୍ଞାନ ଓ ଭକ୍ତି ଉଭୟଙ୍କୁ ସମାନ ସ୍ୱୀକୃତି ଦିଆଗଲେ ବି ଜ୍ଞାନକୁ ଅଧିକତର ଗୁରୁତ୍ୱପୂର୍ଣ୍ଣ ଧାରା ଭାବରେ ବିଚାର କରାଯାଇଛି । ସିଦ୍ଧ ବାରଙ୍ଗ ଶିଶୁ ଅନନ୍ତଙ୍କର ଶିଷ୍ୟ ଥିଲେ, ଓ କୁହାଯାଏ ତାଙ୍କରି ନିର୍ଦ୍ଦେଶରେ ସେ ଯୋଗ ସାଧନ କରି ସିଦ୍ଧି ଲାଭ କରିଥିଲେ ("ଅନାଦି ଆଜ୍ଞା କରିଥିଲେ ଯାହା । / ସତ ଅନନ୍ତ ମୋତେ ଦେଲେ ତାହା" - ଦ୍ୱିତୀୟ ଅଧ୍ୟାୟ)

ଆରମ୍ଭରୁ 'ବ୍ରହ୍ମ' ବିଷୟରେ କବି ସଚେତ, ଓ ବ୍ରହ୍ମ ଯେ ସୃଷ୍ଟିର ମୂଳାଧାର ତାର ସୂଚନା - "ବ୍ରହ୍ମ ଏକାକ୍ଷର ଜଗି ବସିଅଛି ମହାଶୂନ୍ୟ ଘର ମାଡି /... ତା ତହୁଁ ନିରତେ ବ୍ରହ୍ମାଣ୍ଡ ହୋଇଛି ସବୁ ତା' ଗର୍ଭେ କାରେଣୀ ।" ବ୍ରହ୍ମ ଅଖଣ୍ଡିତ, ତାଙ୍କର ଲୀଳା ତ୍ରିକୂଟରେ, ତାଙ୍କର ସାଧନ ଜ୍ୟୋତି ସାଧନ, ସାଧନ ସଂପୂର୍ଣ୍ଣ ହେଲେ 'ହଂସ' 'ପରମହଂସ'ଙ୍କୁ ଭେଟିବ ଓ ଶୂନ୍ୟରୁ ଶବ୍ଦ ଶୁଭିବ :

ସେ ସ୍ଥାନ ନାମ ଅଟଇ ତ୍ରିକୂଟ । ବଟ ପୁଟ ସେହିଠାକୁ ନିକଟ ।
ଅଖଣ୍ଡିତ ବ୍ରହ୍ମ ସେଠାରେ ଲୀଳା । ଜ୍ୟୋତିକି ଜଗିରହେ ଅଷ୍ଟକୀଳା ।...
ରାତି ପାହିବା ଯାଏ ଜଗିଥିବ । ଶୂନ୍ୟ ଶବଦ ସେ ତହିଁ ଶୁଭିବ ।
ଯେତେବେଳେ ସେ ଶବଦ ଶୁଭିବ । ନିର୍ଭୟ ହୋଇ ଶୂନ୍ୟେ ଦୃଷ୍ଟି ଦେବ ।
ନିରାଲମ୍ବ ଅକଳିତୁ ବାହାର । ରୂପ ନ ଦିଶଇ ଶବଦ ସାର ।

(ଦ୍ୱିତୀୟ ଅଧ୍ୟାୟ)

କବି ନିଜର ଜ୍ଞାନ ଭକ୍ତିର ଧାରାରେ ଚେତନାର ସର୍ବୋତ୍ତମ ସ୍ତର ବ୍ରହ୍ମଜ୍ଞାନରେ ଉପନୀତ ହୋଇଛନ୍ତି, ଓ ଶୂନ୍ୟ, ଅନନ୍ତ ଓ ଜ୍ୟୋତି ପ୍ରଭୃତିର ଅନୁଭବ ଏହି ଚେତନାର ବିଭିନ୍ନ ଦିଗ ବା ଉପାଦାନ । ଯେପରି 'ଶୂନ୍ୟ' ବିଷୟରେ:

ବହନ୍ତା ପବନ ସେହିଟି ଶୂନ୍ୟ । ଠୁଳ ଭିତରେ ରହିଅଛି ଶୂନ୍ୟ ।
ନାମଟି ଶୂନ୍ୟ ସମସ୍ତ ଧରିଛି । ରୂପ ନାଶ ଯାଇ ନାମ ରହିଛି ।
ଶୂନ୍ୟ ଗଲେ ରୂପ ରହିବ କାହିଁ । ଅନାମ ବିନ୍ଦୁ ଭିତରେ ସମ୍ଭାଇ ।
ଅନାମୟ ବୋଲି ଯେଉଁ ଅକ୍ଷର । ଗୁପତ ଜ୍ଞାନ ଗୁରୁଙ୍କ ଭଣ୍ଡାର ।
ସେହି ବିନ୍ଦୁ ଯେହୁ ଶୂନ୍ୟେ ଦେଖାଇ । ଥୟେ ହୋଇ କେବେ ରହଇ ନାହିଁ ।
ସେହିଟି ଆଦି ବ୍ରହ୍ମରୂପ ଜାଣ । ବିନ୍ଦୁ ଭିତରେ ତତ୍ତ୍ୱ ଅଛି ଜାଣ ।

(ଦ୍ୱାବିଂଶ ଅଧ୍ୟାୟ)

'ଅନନ୍ତ' ବିଷୟରେ :

ଯେଉଁ ଅନନ୍ତ ସ୍ୱୟଂ ଜ୍ୟୋତିର୍ମୟେ, ଉଦେହେଲେ ପାପ ହୁଅଇ କ୍ଷୟେ ।
ଅନନ୍ତୁ ଅନନ୍ତ ଜାତ ହୁଅନ୍ତି । ଅନନ୍ତ ଅବ୍ୟୟ ପରମ ଜ୍ୟୋତି ।
ଅନନ୍ତ ମୂରତି ଦେଖିବୁ ଯେବେ । ପଦ ଛୁଇଁଥାଅ ପରମ ଭାବେ ।
ଯେଉଁ ମାନେ କାମ କ୍ରୋଧ ତେଜନ୍ତି । ଯେ ଦୁଇ ତେଜିଲେ ମୋକ୍ଷ ଲଭନ୍ତି ।
ମୋକ୍ଷ ଭିତରୁ ବାହାର ଅନନ୍ତ । ଅନନ୍ତ କଳା ଶୂନ୍ୟମୟେ ସ୍ଥିତ ।

(ନବମ ଅଧ୍ୟାୟ)

ଓ 'ବ୍ରହ୍ମ ଜ୍ୟୋତି' ବିଷୟରେ :

ସେହି ବ୍ରହ୍ମ ଜ୍ୟୋତି ବ୍ରହ୍ମାଣ୍ଡେ ପୂରିଣ ପୂର୍ଣ୍ଣ ପ୍ରକାଶ ହୋଇଛି ।
ଯେଉଁ ବ୍ରହ୍ମ ମହାଶୂନ୍ୟ ଆତଯାତ ଭେଦି ବ୍ରହ୍ମାଣ୍ଡେ ପୂରିଛି ।...
ଅବ୍ୟୟ ବ୍ରହ୍ମତତ୍ତ୍ୱମୟେ ପୂର୍ଣ୍ଣ ତାର କିରଣଟି ଜ୍ୟୋତି
ଜ୍ୟୋତି କିରଣ ପରମ ଅଟଇ ଯେ ପୂରି ପ୍ରକାଶୁଛି ନିତି । (ଦଶମ ଅଧ୍ୟାୟ)

ଏପରିକି ଅନ୍ୟତ୍ର, ପଞ୍ଚବିଂଶ ଅଧ୍ୟାୟରେ, ଏକ ଭିନ୍ନ ସାଙ୍ଗୀତିକ ଗଠନରେ ('ଭୀଷ୍ମେଙ୍କ ବାଣୀ') ଜ୍ୟୋତି ସଂପର୍କରେ ଅନୁଭବ :

ହୃଦ ପଦ୍ମେ ଚାରି ଘେନି ଉଲଟାଇବୁ ତୁ ପୁଣି
ଅର୍ଦ୍ଧ ଊର୍ଦ୍ଧ୍ୱେ ଘେନିଣ ଯେ ତତ୍ତ୍ୱ ବିଚାର ।
ଯେକାଦଶେ ଇନ୍ଦ୍ରି ସାଧି ମନ ପବନ ନିରୋଧି
ପ୍ରଣବ ସ୍ଥାନରେ ଭେଦିଣ ପଣେ ଭିତର ।
ପ୍ରଣବକୁ ଜିଣିଗଲେ ଚଇତନ ରୂପୀ ହେଲେ

ସେ ସ୍ଥାନରେ ପଶ ହେଲେ ଜ୍ୟୋତି ଦେଖିବୁ ।
ପ୍ରଭାତ ସୂର୍ଯ୍ୟର ପ୍ରାୟେ ଭାନୁ ହୋଇଛି ଉଦୟେ
ସେହି ବର୍ଣ୍ଣେ ମନ ମଜ୍ଜି ସ୍ଥିର ହୋଇବୁ ।

ଏହା ହିଁ କବିଙ୍କ ମତରେ, ଅନ୍ୟ ଭାବରେ, 'ନାରାୟଣ ଦର୍ଶନ', 'ଅକ୍ଷର ବର୍ଣ୍ଣଭେଦ ଓ କାଳନ୍ଦୀ ହ୍ରଦ ବିଚାର' ଓ 'ସହସ୍ର ଦଳ ପଦ୍ମ'ର ଧ୍ୟାନ – "ହ ଅକ୍ଷର ପରେ ସେ ମହାଶୂନ୍ୟ । ସେଠାରେ କାଳନ୍ଦୀ ହ୍ରଦ ଜନନ / ଶତଦଳ ଫୁଟିଅଛି ସେଠାରେ, ପରମ ଆତ୍ମା ବସିଣ ନିର୍ଭରେ", ଓ କଥିତାରେ, "ଯେମନ୍ତ ଜାଣି ସହସ୍ରଦଳ ପଦ୍ମ ଧ୍ୟାନ କର, ଯେ ଧ୍ୟାନ କଲେ ହଂସ ଦିଶଇଟି । ଯେ ପଦ୍ମ ସରୋବରେ ପରମାତ୍ମା ବିଜେ କରିଅଛି ।" (ପଞ୍ଚଦଶ ଅଧ୍ୟାୟ) । ପରିଶେଷରେ କବି ଜୀବନର ଦୁଃସ୍ଥିତି, ଓ ଏହି ଦୁଃସ୍ଥିତିରୁ ମୁକ୍ତିର ଉପାୟ ନିଜର ସମକାଳୀନ ପଞ୍ଚସଖାମାନଙ୍କର ପରିଭାଷାରେ ହିଁ ପ୍ରକାଶ କରିଛନ୍ତି :

ଜୁଆର ମାଡ଼ିଲା ପ୍ରାୟେ ରାହୁ ଘୋଟିଅଛି
ପରମ ଯୋଗୀମାନଙ୍କୁ ବଶା ସେ କରୁଛି ।
ମନ ବୁଦ୍ଧି ଚିଆଁ ଚଇତନ ଏକ କଲେ
ରାହୁ ନ ପଶିବ ତୁହି ଏଥି ମନ ଦେଲେ ।

****

ପରମ ଶୂନ୍ୟ ଗୁମ୍ଫା ଚରିତ ଏବେ ଶୁଣ
ଯେଉଁ ଘରେ ଭ୍ରମର ଗୁମ୍ଫା ପଶୁ ସୁମନ ।
ମଧ୍ୟ ଶୂନ୍ୟ ଗୋଲାହାଟ ପରମ ସେ ସ୍ଥାନ
ଚଉକଣ ଦ୍ୱାର ସେ ତ୍ରିବେଣୀ ଘାଟ ପୁଣ ।
ଭ୍ରମର ଗୁମ୍ଫାଟି ସେହୁ ଗୋଲାହାଟ ସେହି
ପରମ ଗୁମ୍ଫାରେ ଦେବନାଶନଟି ଯହିଁ ।
ସେ ଦ୍ୱାରେ ପଶିବୁ ତାକୁ ମଣାଇ ତୁରିତେ
ପରମକୁ ପରତେ ହୋଇବୁ ଏହି ମତେ ।
ସେ ପରମ ପୁରୁଷ ଅନାଦି ଅବ୍ୟଗତ
ଗୁଣାତୀତ ହେଲେ ତହିଁ ହୋଇବୁ ତୁ ମୁକ୍ତ ।

(ଊନବିଂଶ ଅଧ୍ୟାୟ)

ସିଦ୍ଧ ବାରଙ୍ଗ ସାଧକ, ଯୋଗୀ, କବି । ନିଜର ଗୁରୁ ଶିଶୁ ଅନନ୍ତଙ୍କ ପରି ଦିବ୍ୟଦ୍ରଷ୍ଟା । ସମକାଳୀନ ବୈଷ୍ଣବ ଚିନ୍ତାର ଧାରା ଓ ଶ୍ରୀ ଜଗନ୍ନାଥଙ୍କର ଧ୍ୟାନ ଉଭୟ ତାଙ୍କର

ଆଧ୍ୟାତ୍ମିକ ଚେତନାକୁ ଉଦ୍‌ବୁଦ୍ଧ କରିଛି । ପଞ୍ଚସଖା ସମୟର ଅନ୍ୟାନ୍ୟ ବିଶିଷ୍ଟ ରଚନା ପରି ଜ୍ଞାନଭକ୍ତି 'ବ୍ରହ୍ମ କୁଣ୍ଡଳୀ ଗୀତା'ର ପ୍ରଧାନ ଉପଜୀବ୍ୟ । ମଣିଷ ଆଧ୍ୟାତ୍ମିକ ବା ଐଶ୍ୱରିକ ପଥ ଅବଲମ୍ବନ ନ କଲେ ଶାନ୍ତି ପାଇ ପାରିବ ନାହିଁ ଏହାହିଁ ତାଙ୍କର ମୂଳ ଅନୁଭବ ।

ଅରକ୍ଷିତ ଦାସଙ୍କର ମହୀମଣ୍ଡଳ ଗୀତା ୨୧ଟି ଅଧ୍ୟାୟରେ, 'ମନ' ଓ 'ଚୈତନ୍ୟ'ର କଥୋପକଥନରେ ସଜ୍ଜିତ ହୋଇଛି । ଏକ ବ୍ରହ୍ମ ସର୍ବାକ୍ଷର ହୋଇ ବ୍ରହ୍ମାଣ୍ଡ ଯାକରେ ପୂରି ରହିଛି, ଏହାହିଁ ମୂଳ କଥା, ଓ ପାଖାପାଖି ଦୁଇଟି ବିଭାଗରେ କବି ଏହା ପ୍ରକାଶ କରିଛନ୍ତି । ପ୍ରଥମେ ପଂଚଭୂତ ସଂପର୍କରେ ମନର ପ୍ରଶ୍ନ ଓ ଚୈତନ୍ୟଙ୍କରଂ ଉତ୍ତର ଭାବରେ ବିସ୍ତାରିତ ବିବରଣୀ । ଦ୍ୱିତୀୟରେ, ମନର ଭକ୍ତିବୋଧ, ଚୈତନ୍ୟଙ୍କୁ ସର୍ବବ୍ୟାପୀ ବ୍ରହ୍ମ ଭାବରେ ପ୍ରାର୍ଥନା, ଓ ଚୈତନ୍ୟଙ୍କର ମନକୁ ଉପଦେଶ ମାଧ୍ୟମରେ ନିଜର ସର୍ବବ୍ୟାପୀ ବ୍ରହ୍ମତ୍ୱର ପ୍ରତିଷ୍ଠା, ଓ 'ନାମ' ଅଭ୍ୟାସ ଯେ ଜୀବନର ଶ୍ରେଷ୍ଠ ଭକ୍ତିପୂର୍ଣ୍ଣ କାର୍ଯ୍ୟ ତାର ସୂଚନା । ପ୍ରଥମେ ଗୁରୁ ପ୍ରାର୍ଥନା, ଚୈତନ୍ୟଙ୍କୁ ସର୍ବଜ୍ଞାତା ଓ ସର୍ବମୋକ୍ଷଦାତା ଗୁରୁ ଭାବରେ ଗ୍ରହଣ କରି ମନର ବନ୍ଦନା– "ନମସ୍ତେ ପିତା ଗୁରୁ ଦାତା / ନମସ୍ତେ ଗୁରୁ ଜଗତ କର୍ତ୍ତା / ନମସ୍ତେ ଗୁରୁ ସର୍ବଦେହୀ / ତୋ ବିନୁ ଅନ୍ୟ ଗତି ନାହିଁ ।" ଓ "ନମସ୍ତେ ଗୁରୁ ସର୍ବଦେହୀ / ତୋହର ରୂପ ବର୍ଣ୍ଣ ନାହିଁ / ନମସ୍ତେ ଗୁରୁ ତୁ ଅନନ୍ତ / ନମସ୍ତେ ଗୁରୁ ଜଗନ୍ନାଥ / ନମସ୍ତେ ସର୍ବ ଜୀବ ଗୁରୁ / ନମସ୍ତେ ବାଞ୍ଛା କଳ୍ପତରୁ ।" ପରେ ପରେ ଚୈତନ୍ୟ ପଞ୍ଚଭୂତର ବର୍ଣ୍ଣନା କରିଛନ୍ତି- ପଞ୍ଚଭୂତର ଆବଶ୍ୟକତା, ଗୁରୁତ୍ୱ ଓ ମହିମା । ପ୍ରଥମେ ପୃଥିବୀ ବା 'ପୃଥ୍ୱୀ' :

ପୃଥ୍ୱୀ ନ ଥିଲେ ଲୀଳା କାହିଁ । କା ଘେନି ବିରହିବୁ ତୁହି ।
ନାନାଦି ଭୋଗ ତୁ କରିବୁ । ଯେବେ ପୃଥ୍ୱୀକୁ ରଖିଥିବୁ ।
ନାନାଦି ଲୀଳା ମୋର ଯେତେ । ପୃଥ୍ୱୀ ରଖିଣ ଦେଖ ନିତ୍ୟେ...
ସପ୍ତ ସମୁଦ୍ର ତୁହି ଜାଣ, ପୃଥ୍ୱୀ ଥିଲାକ ରହେ ପୁଣ ।
ଚଉଦ ବ୍ରହ୍ମାଣ୍ଡ ସହିତେ । ପୃଥ୍ୱୀ ଥିଲାକୁ ଏ ସମସ୍ତେ ।
ସପ୍ତ ପାତାଳ ସପ୍ତ ଦୀପ । ପୃଥ୍ୱୀ ଘେନିଣଟି ଅବ୍ୟକ୍ତ ।
ପୃଥ୍ୱୀ ଥିଲାକୁ ସର୍ବ ରହେ । ପୃଥ୍ୱୀ ଗଲେଟି କିଛି ନୋହେ ।

(ପ୍ରଥମ ଅଧ୍ୟାୟ)

ଦ୍ୱିତୀୟ, ଜଳ :

ଜଳର ମହିମା ତୁ ଶୁଣ । ଯେ ସର୍ବ ଘଟେ ଥାଇ ଜାଣ ।
ସ୍ୱର୍ଗ ମଞ୍ଚ ପାତାଳ ହୋଇ । ଜଳଟି ଅଛି ଜାଣ ତୁହି ।

ସପ୍ତ ବ୍ରହ୍ମାଣ୍ଡ ଦ୍ୱୀପ ସାତ । ଜଳଟି ଘୋଟିଛି ସମସ୍ତ...
ଜୀବେ ଅଜୀବେ ପୂରିଥାଇ । ଜାତ କରୁଛି ସବୁ ଦେହୀ ।
ଛପନ କୋଟି ଜୀବ ଯେତେ, ଜଳରୁ ଜାତ ଏ ସମସ୍ତେ ।
(ଦ୍ୱିତୀୟ ଅଧ୍ୟାୟ)

ତୃତୀୟରେ, ଅଗ୍ନି :

ଅଗ୍ନି ଟି ସର୍ବ ଭୂତେ ପୂରି । ଜୀବେ ଅଜୀବେ ସମ ସରି ।
ସକଳ ଜୀବ ହୃଦେ ଥାଇ । ତେଜ ସ୍ୱରୂପେ ପ୍ରକାଶଇ ।...
ଅଗ୍ନିଟି ସର୍ବ ଘଟେ ଥାଇ । ତା' ଭାବ କେହି ନ ଜାଣଇ ।
ଛପନ କୋଟି ଜୀବ ଯେତେ । ଅଗ୍ନି ବିହରେ ସର୍ବ ଗାତ୍ରେ ।
(ତୃତୀୟ ଅଧ୍ୟାୟ)

ଚତୁର୍ଥରେ, ପବନ :

ଆକାଶୁଁ ପବନ ଜନ୍ମିଲା, ବ୍ରହ୍ମାଣ୍ଡ ଯାକରେ ଘୋଟିଲା ।
ସକଳ ଜୀବ ହୃଦେ ଥାଇ । ରାତ୍ର ଦିବସ ବିହରଇ ।...
ଚଣ୍ଡାଳୁ ବ୍ରହ୍ମଯାଏ ଜାଣ, ପବନ ରହେ ସର୍ବସ୍ଥାନ ।
ସ୍ଥାବର କୀଟ ପତଙ୍ଗହିଁ । ଜଙ୍ଗମ ସହିତେଣ କହି ।
ଏ ଚାରିଖାନି ଜୀବଗଣ । ପବନ ସବୁ ଦେହେ ଜାଣ ।
(ଚତୁର୍ଥ ଅଧ୍ୟାୟ)

ପଞ୍ଚମରେ, ଆକାଶ :

ଆକାଶ ବ୍ରହ୍ମାଣ୍ଡେ ଘୋଟିଛି । କାହିଁ ନ ଲାଗେ ସର୍ବେ ଗଛି ।...
ସ୍ୱର୍ଗ ମଧ୍ୟ ପାତାଳ ଜାଣ । ତା' ଗର୍ଭେ ସର୍ବେ ଛନ୍ତି ପୁଣ ।
ଚଉଦ ବ୍ରହ୍ମାଣ୍ଡ ସହିତେ । ତା' ଗର୍ଭେ ଅଛନ୍ତି ସମସ୍ତେ ।
ସପ୍ତ ସମୁଦ୍ର ସ୍ୱର୍ଗ ସପ୍ତ । ତା' ଗର୍ଭେ ଅଛନ୍ତି ସମସ୍ତ ।
(ପଞ୍ଚମ ଅଧ୍ୟାୟ)

ଏ ପଞ୍ଚ ଭୂତ ଭିନ୍ନ ଭିନ୍ନ ହେଲେ ହେଁ, କବିଙ୍କ ମତରେ ଭିନ୍ନ ନୁହଁନ୍ତି । ଜନ୍ମ ସୂତ୍ରରେ ଏମାନେ ପରସ୍ପର ସହିତ ସଂପୃକ୍ତ । ଅର୍ଥାତ୍ ମହାଶୂନ୍ୟରୁ ଆକାଶ, ଆକାଶରୁ ପବନ, ପବନରୁ ଅଗ୍ନି, ଅଗ୍ନିରୁ ଜଳ, ଓ ଜଳରୁ ପୃଥିବୀର ଜନ୍ମ, ଓ ନିଜ ନିଜର ଲୀଳା ଭିନ୍ନ ଭିନ୍ନ ହେଲେ ବି, ଖେଳ ସରିଲେ ସେମାନେ ଗୋଟିଏ ଅଙ୍ଗରେ ମିଶିଯାନ୍ତି ("ଖେଳ ସରିଲେ ସର୍ବେ ଯାନ୍ତି / ଏକା ଅଙ୍ଗରେ ସେ ଚଳନ୍ତି, / ମହାଶୂନ୍ୟରେ ସେ ମିଶାଣ / ଏକା ଅଙ୍ଗରେ ସେ ଗୋପ୍ୟାନ ।") । ତେଣୁ କବିଙ୍କର ଅନୁଭବ – "ପୃଥ୍ୱୀ ସଙ୍ଗତେ

ପୃଥ୍ୱୀ ହେବୁ / ଜଳ ସଙ୍ଗତେ ଜଳ ଥିବୁ ।। / ଅଗ୍ନି ସଙ୍ଗତେ ଅଗ୍ନି ହୋଇ / ରହିବୁ ଶୁଣ ମନ ତୁହି / ପବନ ସଙ୍ଗତେ ପବନ / ମିଶିଣ ରହିଥିବୁ ଜାଣ / ଆକାଶ ସଙ୍ଗତରେ ତୁହି / ମିଶି ଆକାଶେ ଥିବୁ ରହି ।" ପରିଣତିରେ ଓ ପରିଶେଷରେ ପଞ୍ଚଭୂତକୁ ଅତିକ୍ରମ କରି ସେହି ସର୍ବୋତ୍ତମ ସ୍ଥିତି, ନାମ ବ୍ରହ୍ମର ଚେତନା, ଯେଉଁଠୁ ସମସ୍ତେ ଜନ୍ମ ହୁଅନ୍ତି ଓ ଯେଉଁଠାରେ ସମସ୍ତେ ଲୀନ ହୁଅନ୍ତି, ଓ ଯାହାହିଁ ଏକମାତ୍ର ସତ୍ୟ :

ହେ ମନ ନିଜ ନାମ ବ୍ରହ୍ମ । ଆଉଟି ସବୁ ମିଛ ଜାଣ ।
ବ୍ରହ୍ମରୁ ପୃଥ୍ୱୀ ଆତଯାତ । ବ୍ରହ୍ମରେ ଅଛନ୍ତି ସମସ୍ତ ।
ବ୍ରହ୍ମରୁ ସର୍ବେ ଜନ୍ମିଛନ୍ତି । ସଂସାରେ ଲୀଳା ସେ କରନ୍ତି ।
ବ୍ରହ୍ମରୁ ପଞ୍ଚଭୂତ ଜନ୍ମ । ଲୀଳା ନିମନ୍ତେ ଭିନ୍ନ ଭିନ୍ନ ।
ହେ ମନ ବ୍ରହ୍ମରୁଟି ସର୍ବ । ଜାତ ହୁଅନ୍ତି ଅସମ୍ଭବ ।
ମଲେ ସେ ବ୍ରହ୍ମରେ ପଶନ୍ତି । ବ୍ରହ୍ମରେ ଲୀନ ଯେ ହୁଅନ୍ତି ।

(ପଞ୍ଚମ ଅଧ୍ୟାୟ)

ଏହାହିଁ 'ମହିମଣ୍ଡଳ ଗୀତା'ର ମୁଖ୍ୟ ବିଚାରଧାରା । ଏହା ସହିତ ଅନ୍ୟାନ୍ୟ ଅନୁଭବ ଯୁକ୍ତ ହୋଇଛି । ଯେପରିକି ଦେହ, ପୃଥିବୀ, ଦେହର ବିଭିନ୍ନ ରୂପ ଓ କାର୍ଯ୍ୟ, ଓ ପୃଥିବୀର ବିଭିନ୍ନ ରୂପ, ଓ ଅସଂଖ୍ୟ ଅନ୍ତେବାସୀଙ୍କ ବିଷୟରେ । ଆପାତଦୃଷ୍ଟିରେ ଏସବୁ ପରସ୍ପର ଠାରୁ ଭିନ୍ନ, କିନ୍ତୁ ସାମଗ୍ରିକ ଅନୁଭବରେ ଏ ସବୁ ଭିନ୍ନ ଭିନ୍ନ ନୁହନ୍ତି, ପରସ୍ପର ସହିତ ସଂପର୍କିତ, ଓ ସମସ୍ତଙ୍କୁ ଯୁକ୍ତ କରି ଏକ ଓ ଅଦ୍ୱିତୀୟ ପରମାତ୍ମାଙ୍କର ଚେତନା ବିଦ୍ୟମାନ , ଓ ବିଭିନ୍ନ ପରିଚୟ ଓ ନାମ ଗୋଟିଏ ନାମ ଓ ଗୋଟିଏ ପରିଚୟର ପରିପ୍ରକାଶ । ଯେପରି ଷଷ୍ଠ ଅଧ୍ୟାୟରେ – "ମୁଁ ବ୍ରହ୍ମା ବିଷ୍ଣୁ ମହେଶ୍ୱର / ତୋତେ କହିଲି ମୁଁ ନିକର / ଶଂଖା ସୁରର ଅରି ମୁହିଁ / କଂସ ଅରି ମୁଁ ବୋଲାଇ / କଳପତରୁ ମୁହିଁ ହେଲି / ମୁଁ ଭଗବାନ ବୋଲାଇଲି / 'ନିରଂଜନଟି ମୋର ନାମ / ନାରାୟଣଟି ହେଲି ପୁଣ / ଅତ୍ରାହିଭଂଜନ ହୋଇଲି / ଗୋପୀ ଜୀବନ ବୋଲାଇଲି ।" ବା ସପ୍ତମ ଅଧ୍ୟାୟରେ–

ନଖ ମୁଖ ନାସିକା ହୋଇ । ମୁଁ ହାଡ଼ ଚର୍ମ ଯେ ବୋଲାଇ ।
ରକ୍ତ ମାଂସ ଯେ ମୁହିଁ ଜାଣ । ମୁଁ ଷୋଳ ଡମ୍ବରୁ ପ୍ରମାଣ ।
ପଞ୍ଚ ମନଟି ହେଲି ମୁହିଁ । ପଚିଶ ପ୍ରକୃତି ଅଟଇ ।
ତ୍ରିଗୁଣ ତ୍ରିକୁଟଟି ହେଲି । ଷଡ ଗୁଣଟି ବୋଲାଇଲି ।...
ମୁଁ ସତ୍ତ୍ୱ ରଜ ତମ ଜାଣ । କ୍ରୋଧ ଲୋଭଟି ମୁହିଁ ପୁଣ ।
କୂଟ କପଟ ମୁହିଁ ହେଲି । ମୁଁ ଦୟା ଶାନ୍ତି ବୋଲାଇଲି...

କୁଜା ଛୋଟା ଯେ ମୁହିଁ ଜାଣ । ରୋଗୀ ଭୋଗୀଟି ମୁଁ ପ୍ରମାଣ ।
ରାଜା ପରଜା ହେଲି ମୁହିଁ । ସେବକ ସାଆନ୍ତ ଅଟଇ ।

ବା ଅଷ୍ଟମ ଅଧ୍ୟାୟରେ- "ନାନା ବୃକ୍ଷଟି ହେଲି ମୁହିଁ / ନାନା ପୁଷ୍ପଟି ମୁଁ ବୋଲାଇ / ନାନା ଫଳଟି ମୁହିଁ ହେଲି / ନାନା ମୂଳଟି ବୋଲାଇଲି / ନାନା ବସ୍ତଟି ମୁହିଁ ଜାଣ / ନାନା ଧର୍ମଟି ମୁହିଁ ପୁଣ / ...ମଙ୍ଗଳା ଦୁର୍ଗା ହେଲି ମୁହିଁ / କାଳି କପାଳୀ ମୁଁ ବୋଲାଇ/ ଚଣ୍ଡୀ ଚାମଣ୍ଡା ମୁହିଁ ହେଲି / ଭୂତ ପ୍ରେତଟି ବୋଲାଇଲି /.... ବାଦ୍ୟ ମୃଦଙ୍ଗ ମୁହିଁ ଜାଣ / ଢୋଲ ଟମକ ମୁଁ ପ୍ରମାଣ / ବୀଣା ମହୁରୀ ମୁହିଁ ହେଲି / ତୁରୀ କାହାଳୀ ବୋଲାଇଲି ।" ବା ନବମ ଅଧ୍ୟାୟରେ- "ଅନନ୍ତ କୋଟି ସାଧୁ ମୁହିଁ / ବାଳକ ବୃଦ୍ଧ ମୁଁ ଅଟଇ / ଚୌରାଶୀ ସିଦ୍ଧି ମୁହିଁ ହେଲି / ନରନାଥ ମୁଁ ବୋଲାଇଲି / ... ବେଦ ପୁରାଣ ମୁହିଁ ଜାଣ / ମୁଁ ଗୀତ ଅର୍ଥ କଲି ପୁଣ / ଅଷ୍ଟାଦଶ ଗ୍ରନ୍ଥଟି ମୁହିଁ / ଦ୍ୱାଦଶ ସ୍କନ୍ଦଟି ବୋଲାଇ ।" ଏହାହିଁ ଚୈତନ୍ୟଙ୍କର ବକ୍ତବ୍ୟ । ସେ 'ଛପନ କୋଟି' ଜୀବ ହୋଇ ନାନା ରୂପରେ ଲୀଳା କରୁଛନ୍ତି ଓ ସେ ସଂସାରରେ ପରିପୂର୍ଣ୍ଣ ହୋଇ ରହିଛନ୍ତି, ଆଉ କେହି ନୁହେଁ । ମନକୁ ତାଙ୍କର ଉପଦେଶ ସେ ସଂସାରକୁ 'ଏକାକାର' ଓ 'ସର୍ବସମାନ' ଦେଖିଲେ ହିଁ ମୁକ୍ତି ପାଇବ ଓ ପରିଶେଷରେ ତା'ର ଜୀବ-ଆତ୍ମା ଚୈତନ୍ୟଙ୍କର ପରମ ଆତ୍ମାରେ ଲୀନ ହୋଇଯିବ :

ଏହି ଦେହକୁ ଛାଡ଼ିଯିବୁ । ଯେବେ ତୁ ଚିହ୍ନି ନ ପାରିବୁ ।
ଏହି ଦେହରୁ ତୁହି ଯିବୁ । ମୋର ଦେହରେ ସମ୍ଭାଇବୁ ।
ତୋ ଦେହ ମୋ ଦେହ ଏକତ୍ୱ । ଭିନ୍ନଟି ନାହିଁ କଦାଚିତ ।
ମୁଁ ତୋତେ ଜୀବ ଆତ୍ମା କଲି, ସଂସାର ଯାକ ବିହରିଲି ।

(ନବମ ଅଧ୍ୟାୟ)

ଏହାହିଁ 'ମହୀମଣ୍ଡଳ ଗୀତା'ର ମୂଳ ଅନୁଭବ । ଚୈତନ୍ୟ ବ୍ରହ୍ମସ୍ୱରୂପ । ତାଙ୍କର ବହୁବିଧ ରୂପ, ଲୀଳା ଓ କାର୍ଯ୍ୟରେ ମନ ବା ଜୀବାତ୍ମାର ଚେତନା ପ୍ରସାରିତ ହୋଇଛି, ଓ ସେ ସୃଷ୍ଟିର ମୂଳାଧର ସଂପର୍କରେ ଅବହିତ ହେବା ସଙ୍ଗେ ସଙ୍ଗେ ପରମ ଭକ୍ତିଭାବରେ ଅନୁପ୍ରାଣିତ ହୋଇଛି :

ନମୋ ନମସ୍ତେ ଦୀନବଂଧୁ, ନମୋ ନମସ୍ତେ ମହାସିନ୍ଧୁ ।
ନମୋ ନମସ୍ତେ ହେ ଜୀବନ । ନମୋ ନମସ୍ତେ ହେ ପରମ ।
ନମୋ ନମସ୍ତେ ନାରାୟଣ, ନମୋ ନମସ୍ତେ ଭଗବାନ ।

ଓ ନିଜ ପାଇଁ ଭକ୍ତିଯୋଗର 'ଆଜ୍ଞା' ପ୍ରାର୍ଥନା କରିଛି-

ଆହେ ମହିମା ମହାବାହୁ । ଭକତି ଯୋଗ ଆଜ୍ଞା ହେଉ ।

ଆହେ ବ୍ରହ୍ମାଣ୍ଡର ଠାକୁର । ଭକତି ମାଗୁଛି ପାମର ।
ଆହେ ହେ ଅନନ୍ତ ଶୟନ । ଭକତି ଯୋଗ ଦିଅ ପୁଣ ।
ଆହେ ଚଉବର୍ଗର ଦାନୀ । ଭକତି ଯୋଗ ଦେବ ସ୍ୱାମୀ ।

(ତ୍ରୟୋଦଶ ଅଧ୍ୟାୟ)

ଏହାହିଁ 'ମହୀମଣ୍ଡଳ ଗୀତା'- ପୃଥିବୀର ବିଭିନ୍ନ ରୂପରେ ଅଭିନ୍ନତାର ଧ୍ୟାନ, ଓ ଜୀବର ପରମାତ୍ମା ସହିତ ମିଳନର ଗଭୀର ଆନନ୍ଦାନୁଭୂତି, କୁହାଯାଇ ପାରେ ଓଡ଼ିଶାରେ ଭକ୍ତି ଯୋଗର ଏକ ବିଶିଷ୍ଟ ରଚନା ।

ହାଡ଼ି ଦାସଙ୍କର **ଅନନ୍ତ ଗୁପ୍ତ ଟୀକା** ୧୪ ଅଧ୍ୟାୟ ବିଶିଷ୍ଟ, ବିଶେଷ କରି ବ୍ରହ୍ମଜ୍ଞାନ ସମ୍ବନ୍ଧୀୟ ବହୁ ଗୁପ୍ତ ତଥ୍ୟ ଏଥିରେ ବର୍ଣ୍ଣିତ । କବି ଶୂନ୍ୟର ସତ୍ତାକୁ ସ୍ୱୀକାର କରି ସେଥିରେ ପରଂବ୍ରହ୍ମଙ୍କ ଅଧିଷ୍ଠାନର ପରିକଳ୍ପନା କରିଛନ୍ତି, ଓ ଷଡ ଚକ୍ର ସାଧନ, ଯୋଗ ମାର୍ଗ ଓ ପିଣ୍ଡ ବ୍ରହ୍ମାଣ୍ଡ ପ୍ରଭୃତି ବିଷୟରେ ଅନେକ ବିବରଣୀ ଦେଇଛନ୍ତି । କବି ଜ୍ଞାନମିଶ୍ରା ଭକ୍ତିର ଉପାସକ ଥିଲେ ଓ ନିଜ ରଚନାମାନଙ୍କରେ, ବିଶେଷ କରି 'ଅନନ୍ତ ଗୁପ୍ତ ଟୀକା'ର ବହୁ ସ୍ଥାନରେ ସେ ନୀଳାଚଳନାଥ ଜଗନ୍ନାଥଙ୍କର ପ୍ରଶସ୍ତି ଗାନ କରିଛନ୍ତି, ଓ ଜଗନ୍ନାଥଙ୍କୁ ସ୍ୱୟଂ ପୂର୍ଣ୍ଣବ୍ରହ୍ମ, ଆଦି, ସର୍ବରୂପ, ସର୍ବସଂପୂର୍ଣ୍ଣ, ଅଖିଳ ବ୍ରହ୍ମାଣ୍ଡର ସୃଷ୍ଟି କର୍ତ୍ତା ଓ ସ୍ୱୟଂ ଅବତାରୀ ଭାବରେ ପ୍ରତିଷ୍ଠା କରିଛନ୍ତି । ପୁରୁଷୋତ୍ତମ କ୍ଷେତ୍ରକୁ ସେହିପରି ସର୍ବଧାମର ମଉଡ଼ମଣି ବୋଲି ସେ କହିଛନ୍ତି, ଓ ଶ୍ରୀଜଗନ୍ନାଥ ବିଗ୍ରହରେ ନିତ୍ୟରାଧା ଓ ନିତ୍ୟକୃଷ୍ଣଙ୍କର ଅଖଣ୍ଡ ଲୀଳାର ଦର୍ଶନ ସାଧକର ଧର୍ମଚେତନାର ସର୍ବୋତ୍ତମ ସ୍ତର ବୋଲି ତାଙ୍କର ମତ । ରଚନାର ଧାରା ଗରୁଡ଼ ଓ ଶେଷଦେବଙ୍କ ମଧ୍ୟରେ କଥୋପକଥନ ଭାବରେ ପରିକଳ୍ପିତ ହୋଇଛି, ଓ ଆରମ୍ଭରୁ ହିଁ କବିଙ୍କର ପ୍ରାର୍ଥନା ଓ ବନ୍ଦନା । ପ୍ରଥମେ ଦେବୀ 'ଗିରିଜା ଈଶ୍ୱରୀ'ଙ୍କୁ, ଯାହାଙ୍କ 'ଆଜ୍ଞା'ରେ ହିଁ ସେ 'ଗୁପ୍ତଟୀକା' ଲେଖିବାକୁ ଆରମ୍ଭ କରିଛନ୍ତି- "ନମସ୍ତେ ନମସ୍ତେ ଗିରିଜା ଈଶ୍ୱରୀ ଗଉରା ଯେ ଠାକୁରାଣୀ / ଉତ୍ପତ୍ତି ପ୍ରଳୟ ସଂହାରକୁ ମା'ତ ତୋହରି ବିଷୟା ପୁଣି ।" ପରେ ପରେ, ଶ୍ରୀଜଗନ୍ନାଥଙ୍କୁ,

ଶ୍ରୀ ନୀଳକନ୍ଦରେ ସିଂହାସନ ପରେ ବସିଛନ୍ତି ଚଉବାହା ।
ଅଶରଣ ଲୋକ ଶରଣ ମାଗନ୍ତେ ଆପେ ଟେକିଛନ୍ତି ବାହା । ....
ନମସ୍ତେ ନମସ୍ତେ ନମସ୍ତେ ଭୋ ନାଥ ଜୟ ରତ୍ନ ସିଂହାସନ ।
ଜୟ ଜଗଜ୍ୟୋତି ଅଶେଷକୁ ଗତି ଜୟ ଶ୍ରୀ ଜଗମୋହନ ।
ତୁ ସିନା ଅଶେଷ ଅତ୍ରାହି କି ତ୍ରାହି ଦରିଦ୍ର ଲୋକଙ୍କ ଧନ ।

ଜୟ ଜୟ ଜଗନ୍ନାଥ ଦୀନବନ୍ଧୁ ଜୟ ଶ୍ରୀ ଜଗମୋହନ ।
(ପ୍ରଥମ ଅଧ୍ୟାୟ)

ଏ ଗୋଟିଏ ଦିଗ । 'ଅନନ୍ତ ଗୁପ୍ତ ଟୀକା'ରେ କବି ନୀଳାଦ୍ରିନାଥ ଜଗନ୍ନାଥଙ୍କର ଗୌରବ, ପ୍ରଭାବ ଓ ମହିମା ବାରମ୍ବାର ଉପସ୍ଥାପନା କରିଛନ୍ତି, ଓ ସେ ଯେ ଶ୍ରୀ ଜଗନ୍ନାଥଙ୍କର ଏକାନ୍ତ ଅନୁଗତ ଓ ପରମ ଭକ୍ତ ଏହା ହିଁ ସୂଚିତ କରିଛନ୍ତି । ଏପରିକି 'ନୀଳଗିରି'ର ମହିମାରେ ମଧ୍ୟ କବି ପଂଚମୁଖ :

ତୁ ଯେ ପଚାରିଲୁ ନୀଳଗିରି ଘର ଅଶେଷ ମହିଂମା ସ୍ଥାନ ।
ମୁଖେ ତା ବଖାଣି ସଂଚପି କହିଣ କେ ଅଛି ପୁଣି ଭାଜନ ।
ଯହିଂ ଷୋଳକଳା ମହିଂମା ପ୍ରକାଶ ମୁକତ ମଣ୍ଡପ ଥାନ ।
ଦ୍ୱାଦଶ କଳାରେ ଆତଯାତ ସିନା ଲୀଳା ଖେଳାର ବିଧାନ ।
(ଚତୁର୍ଦ୍ଦଶ ଅଧ୍ୟାୟ)

ଅନ୍ୟ ଦିଗରେ କବି ନିଜର ଲେଖାର ପରିସରରେ ବହୁ ଆନୁଶଙ୍ଗିକ ବିଷୟବସ୍ତୁର ଅବତାରଣା କରିଛନ୍ତି, ଯାହାର ସବୁ ପଂଚସଖାଙ୍କ ମତାମତ ସହିତ ସମାନତା ଅଛି । ଯେପରିକି, ପ୍ରଥମତଃ, ଭକ୍ତ ମନର ଗତି ଓ ଅନୁଭବ ପ୍ରଭୃତି ବିଷୟରେ, ଭକ୍ତର ଗୁଣ କଅଣ, ଏ ପ୍ରଶ୍ନର ଉତ୍ତରରେ :

ତୁ ଯେ ପଚାରିଲୁ ଭକତଙ୍କ ଗୁଣ ଭକତ ଅବାଣୀ ଜନ
ପ୍ରଭୁ ଭୃତ୍ୟେ ବୋଲି ନ ମଣଇ ଯହିଁ ଅନୁଭବ ଥିଲେ ଚିହ୍ନ ।
ସକଳରେ ଥାଇଁ ସର୍ବରେ ମିଶଇ କରିଣ ଏକତ୍ୱ ଭାବ
ହାରିବା ଜିଣିବା ଦୁଇ ନ ମଣଇଁ ସେ ଲୋକକୁ କେ ଚିହ୍ନିବ,
ମଣ୍ଡିଲେ ହେ ପୁଣ ହରଷ ନୁହଇ ଦଣ୍ଡିଲେ ନୋହେ ବିରସ
ସର୍ବକଥା ଶୁଣି ମୋର ଗୁଣ ଗୁଣି ଚାହିଂ ଟହ ଟହ ହସ ।
(ପ୍ରଥମ ଅଧ୍ୟାୟ)

ବା ମନର ବିଶ୍ଳେଷଣରେ :

ତେଣୁ ପାପଧର୍ମ ମନମୂଳେ ଜାଣ ମନଇଟି ସର୍ବଗତି
ମନକୁ ଯେ ଜନେ ଅମନେ ମିଶାନ୍ତି ସେହି ଜାଣନ୍ତି ଯେ ଗତି ।
ମନ ତ ବିବେକ ଧଇର୍ଯ ସେ ଲୋକ ଦୟାପଣେ ମହାବଳ
ଧନବନ୍ତ ପଣେ କୁବେରକୁ ବଳି ପାଣିରୁ ପୁଣି ପାତଳ ।
ଧୂମରୁ ଯେ କ୍ଷୀଣ ଶୂନ୍ୟରୁ ବିଶୂନ୍ୟ ବାତରୁ ସିନା ନିର୍ବାତ
ସୁଶୀଳ ପଣକୁ ମହାଗତି ପ୍ରାୟେ ସତକୁ ଥାଇ ନିସତ ।
(ପ୍ରଥମ ଅଧ୍ୟାୟ)

ସେହିପରି ଦେହ ବିଷୟରେ ମଧ କବିଙ୍କର ଚିନ୍ତାଧାରାରେ ଉଭୟ ପଞ୍ଚସଖା ପରଂପରାର ପ୍ରଭାବ ଓ ନିଜର ମୌଳିକ ପ୍ରକାଶ ଭଂଗୀ ଲକ୍ଷଣୀୟ :

ତୋ ଆଗେ କହୁଛି ଶୁଣ ପକ୍ଷୀରାଜ ଦେହ ସର୍ବଫଳ ଦାତା ।
ଦେହଇଟି ଅଟେ ଜୀବକୁ ସୁଗତି ଦେହ ଘେନି ସର୍ବକଥା ।
ଦେହ ଭିତରେଟି ସର୍ବ ପୂରିଅଛି ସୁଗତି କୁଗତି ଭାବ
ଦେହ ଭିତରେଟି ବିଶ୍ରାମି ଅଛନ୍ତି ଅଜରା ଅମରା ଦେବ ।

........

ଦେହ ଭିତରେଟି ଅଦେହ ମୂରତି ସାକ୍ଷାତେ ବିଜେ ଅଚ୍ୟୁତ
ଦେହକୁଟି ଚିହ୍ନ ଦେହରେ ଯେ ଜ୍ଞାନ ନ ଜାଣନ୍ତି ପଞ୍ଚଭୂତ ।

(ଦ୍ୱିତୀୟ ଅଧ୍ୟାୟ)

ଏ କେବଳ ଦେହ ବା ମନ ନୁହେଁ । ସେ ସବୁର ଚିନ୍ତାଧାରାକୁ ଅତିକ୍ରମ କରି କବିଙ୍କର ଅନୁଭବ ସୃଷ୍ଟିର ରହସ୍ୟ ଦିଗକୁ ପ୍ରସାରିତ ହୋଇଯାଇଛି, ଓ ପଂଚସଖାଙ୍କ ଅନୁଭବ ପରି ଏକ ସୂକ୍ଷ୍ମ ଅନୁଭବର ଧାରା, ବିଶେଷ କରି ଜୀବ ଅଜୀବ, ନିତ୍ୟଲୀଳା ଓ ନିତ୍ୟସ୍ଥଳୀ, ଓ ଅଲେଖ ପରଂବ୍ରହ୍ମଙ୍କର ଚେତନା କବିଙ୍କର ଚେତନାକୁ ସଂଜୀବିତ କରିଛି । ଯେପରି ଜୀବ ଅଜୀବର ବିଧାନ :

ତୁ ଯେ ପଚାରିଲୁ ଜୀବ ଅଜୀବର କେମନ୍ତ ଅଟେ ବିଧାନ ।
ଜ୍ଞାନଇଟି ସେହି ଅଜ୍ଞାନ ବୋଲାଇ କର୍ମ ଅକର୍ମଟି ସେହି ।
ସେହି କରେ ପାପ ସେହି କରେ ତପ ଯୋଗ ଶାସ୍ତ୍ର ସିନା ସେହି
ସେହି ବ୍ୟାଧି ହୋଇ ଔଷଧ ବୋଲାଇ ସେହି ବୈଦ୍ୟ ହୋଇଥାଇ ।...
ଯେହ୍ନେ ଦାବାନଳ ଦହଇ ସକଳ ବନଗିରି ତୃଣ ଘାସ
ପ୍ରାଣୀଙ୍କ ଦେହରେ ଜ୍ଞାନ ଉପୁଜିଲେ ତେହ୍ନେ ପାପ ହୁଏ ନାଶ ।
ତୁ ଯେ ପଚାରିଲୁ ଅଜୀବର ଗତି ଅଜୀବ କାହିଁ ନାହାନ୍ତି
ଜୀବ ଅଜୀବ ବୋଲି କରି ସଂସାରେ ବେନି କଥା ବୋଲୁଥାନ୍ତି ।

(ଦ୍ୱିତୀୟ ଅଧ୍ୟାୟ)

ବା ନିତ୍ୟଲୀଳା ଓ ନିତ୍ୟସ୍ଥଳୀ ସଂପର୍କରେ ଅନୁଭବ :

ଛଡ଼ ଚକ୍ର ଭେଦି ଠଣା ବ୍ରହ୍ମା ଶିବ ହୋନ୍ତି ବଣା
ସହସ୍ର ଦଳ କମଳ ପରେ ଯା ବାସ ।
ପୁଣି ନିତ୍ୟ ରାହାସ, ଷୋଳ ସସ୍ର ଗୋପୀ ସଙ୍ଗେ ପ୍ରେମ ରହସ୍ୟ ।
କି ଉପମା ଦେବି ତହିଁ ରାତ୍ର ଦିନ ଯହିଁ ନାହିଁ

ନାହିଁ ଯହିଁ ପାପ ପୁଣ୍ୟ ଅଟେ ଅପାର ।

.........

ସହସ୍ର ଦଳ କମଳେ ମଣିକର୍ଣ୍ଣିକାର ପରେ
ସହସ୍ର ପାଖୁଡ଼ା କିଶୋର ମଧ୍ୟେ ତା ବାସ ।
ଅଶେଷ ବନ୍ଧେ ରତି, ନାହିଁ ତହିଁ ସ୍ତିରୀ ଗୁଣ ପୁରୁଷ ନାସ୍ତି ।
ଷୋଳ ସସ୍ର ଗୋପୀ ମିଳି ନିଶବ୍ଦ ହୁଳହୁଳି
ପଞ୍ଚସ୍ୱର ବାଦ୍ୟ ସୁରୁଛି ଅଶେଷକୁ ।

(ତୃତୀୟ ଅଧ୍ୟାୟ)

ସେହିପରି ସର୍ବବ୍ୟାପୀ ବ୍ରହ୍ମର ଚେତନା :

ସାକ୍ଷାତେ ବିରାଜଇ ସେ ପୁଣି ଜଳହଳ ସେଇ ତେଜ
ସ୍ଥାବର ଜଙ୍ଗମ କୀଟ ପତଙ୍ଗକୁ ଦେଖିତେ ହେଲା ଅସଜ ।
ହସ୍ତ ନ ପାଉଛି ବ୍ରହ୍ମା ଶିବଙ୍କର ଧରିତେ କେବା ଭାଜନ
ଅଣ ଆକାର ଅଣାକାର ପୁରୁଷ ଉଦୟେଟି ମହାଶୂନ୍ୟ ।

(ପ୍ରଥମ ଅଧ୍ୟାୟ)

.......

ଥାବର ଜଙ୍ଗମ ଏ କୀଟ ପତଙ୍ଗ ଅଶେଷାଦି ବୋଲି ଯାହା
ସର୍ବଠାରେ ସତ ପୁରୁଷ ରହିଛି ଏ ଯେଉଁ ଦେବାଧି ନାହା ।
କୀଟୁ ବ୍ରହ୍ମ ଯାଏ ସେହିଟି ହୋଇଛି ଜୀବ ଶକ୍ତି ଗୁଣ ଘେନି
ଯେଝାକୁ ଯେଝା ମୁକାର କହିଛନ୍ତି କିଛି ଜାଣନ୍ତି ଯା ମୁନି ।

(ଚତୁର୍ଦ୍ଦଶ ଅଧ୍ୟାୟ)

କୁହାଯାଏ ହାଡ଼ି ଦାସଙ୍କର ସାହିତ୍ୟ ଆତ୍ମିକ ଜାଗରଣର ସାହିତ୍ୟ, ଏହା ଯଥାର୍ଥ । ବ୍ୟକ୍ତିର ଆଧ୍ୟାତ୍ମିକ ସାଧନା ଉପରେ ସେ ଯଥେଷ୍ଟ ଆସ୍ଥାବାନ ଥିଲେ, ଓ ତାଙ୍କର ପୂର୍ବସୂରୀ ପଂଚସଖାଙ୍କ ପରି ସେ ବ୍ୟକ୍ତିର ଚେତନାର ଉତ୍ତରଣରେ ବିଶ୍ୱାସ କରୁଥିଲେ । ଏଥି ସହିତ ନିଳାଦ୍ରୀନାଥ ଜଗନ୍ନାଥଙ୍କ ପ୍ରତି ଅଖଣ୍ଡ ଭକ୍ତି ଓ ଅନୁରାଗ , ଓ ସେ ଯେ ଅଶେଷ ବ୍ରହ୍ମାଣ୍ଡ ପୂର୍ଣ୍ଣ କରି ପୂର୍ଣ୍ଣବ୍ରହ୍ମ, ଏହି ବିଶ୍ୱାସ । ‘ଅନନ୍ତ ଗୁପ୍ତ ଟୀକା’ର ଏହାହିଁ ମୁଖ୍ୟ ଉପଜୀବ୍ୟ ।

ବ୍ରହ୍ମ ନିରୂପଣ ଗୀତା ୧୪ଟି ଅଧ୍ୟାୟରେ ଓ ପ୍ରଶ୍ନୋତ୍ତର ଶୈଳୀରେ ଲେଖାଯାଇଛି, ପ୍ରଶ୍ନ କରୁଛନ୍ତି ଶିଷ୍ୟ ‘ନିରାକାର’ ଓ ଉତ୍ତର ଦେଉଛନ୍ତି ଗୁରୁ ‘ଅନାଦି ପୁରୁଷ’ । ଭାଷା ସରଳ, ସାବଲୀଳ, କଥୋପକଥନର ଭାଷା, ଅଲେଖ ଦର୍ଶନ

ତତ୍ତ୍ୱ, ଅର୍ଥାତ୍ ନିରାକାର ବ୍ରହ୍ମ, ବ୍ରହ୍ମରୂପ ଓ ବ୍ରହ୍ମ ନିରୂପଣ ପ୍ରଭୃତି ଦାର୍ଶନିକ ତତ୍ତ୍ୱର ବିବରଣୀ । ରଚନାର ସଂଗଠନରେ ଜ୍ଞାନ ଓ ଭକ୍ତିର ସମନ୍ୱୟ । ପ୍ରଥମେ ଶୂନ୍ୟପୁରୁଷ ଅଲେଖ ପରମବ୍ରହ୍ମଙ୍କର ସ୍ୱରୂପର ବ୍ୟାଖ୍ୟା, ଓ ଦ୍ୱିତୀୟରେ, ତାଙ୍କୁ ଲାଭ କରିବାର ଉପାୟ – ଜ୍ଞାନ ନୁହେଁ ଭକ୍ତି, ପରିପୂର୍ଣ୍ଣ ଆତ୍ମ ସମର୍ପଣ ଓ ଅନନ୍ୟ ଭକ୍ତି ଦ୍ୱାରା । ଏହାହିଁ କବିଙ୍କର ପ୍ରତ୍ୟକ୍ଷ ଅନୁଭୂତି- ଲବ୍ଧ ବ୍ରହ୍ମଜ୍ଞାନ ଭକ୍ତିଯୋଗ ଓ ଏହା ହିଁ କାବ୍ୟର ମୁଖ୍ୟ ଆଭିମୁଖ୍ୟ । ସେଥିସହିତ ନାମତତ୍ତ୍ୱ, ଗୁରୁବାଦ, ଶୂନ୍ୟବାଦ ଓ କାମ ନିଷ୍କାମ ପ୍ରଭୃତିର ଆନୁସଙ୍ଗିକ ବିଚାର ମଧ୍ୟ ମିଶି କରି ରହିଛି ।

'ବ୍ରହ୍ମ ନିରୂପଣ ଗୀତା'ରେ କବି ଆକ୍ଷରିକ ଅର୍ଥରେ 'ବ୍ରହ୍ମ'ର ନିରୂପଣ କରିଛନ୍ତି । ସତେ ଯେପରି ବ୍ରହ୍ମ କୌଣସି ମାନସିକ ସ୍ଥିତି ବା ଚେତନା ନୁହେଁ, ବ୍ରହ୍ମ ଶାରୀରିକତାରେ ଗଠିତ ହୋଇଥିବା ଗୋଟିଏ ରୂପ, କୌଣସି ବ୍ୟକ୍ତିବିଶେଷ ବି ହୋଇପାରେ, ଓ କବି ସେହି 'ବ୍ୟକ୍ତିବିଶେଷ'ଙ୍କ ସଂପର୍କରେ ବିସ୍ତାରିତ ବିବରଣୀ ଦେବା ପାଇଁ ଆଗ୍ରହୀ । କୁହାଯାଏ କବି ଭୀମ ଭୋଇ ସାମଗ୍ରିକ ଭାବରେ ପଞ୍ଚ ସଖାଙ୍କର ଧର୍ମ ଦର୍ଶନର ଧାରା ଦ୍ୱାରା ପ୍ରଭାବିତ ହୋଇଛନ୍ତି, ଓ ସାରଳା ପଂଚସଖା ଐତିହ୍ୟର ବହୁ ପଦ, ଶବ୍ଦ ଓ ପରିଭାଷା ସେ ନିଜର କାବ୍ୟ ରଚନାମାନଙ୍କରେ ବିସ୍ତୃତ ଭାବରେ ବ୍ୟବହାର କରିଛନ୍ତି । ଏ ଠିକ୍, କିନ୍ତୁ ତାଙ୍କର ବିଶେଷତ୍ୱ ହେଉଛି ତାଙ୍କର ଧର୍ମ ଦର୍ଶନର ବିଚାର, ଯାହାକି ମୁଖ୍ୟତଃ ମହିମା ଦର୍ଶନ ଓ ଶୂନ୍ୟବାଦୀ ଦର୍ଶନର ବିଚାର, ମାନସିକତାର ସ୍ତରକୁ ଅତିକ୍ରମ କରି, ବା ମାନସିକତାର ଅନୁଭବକୁ ଆଚ୍ଛାଦିତ କରି ଯେଉଁ ଶାରୀରିକତାର ରୂପ ପରିଗ୍ରହ କରିଛି, ଯାହା ସ୍ଥାନ ଓ କାଳରେ ସୀମିତ ନୁହେଁ,ପୁଣି ଆପାତତଃ ସ୍ଥାନ ଓ କାଳରେ ସୀମିତ, ତାଙ୍କର ନିଜସ୍ୱ ଶୈଳୀ ବା ବିଚାରବୋଧ । ଚତୁର୍ଦ୍ଦଶ ଶତାବ୍ଦୀ ଠାରୁ ଉନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘ ଛଅଶହ ବର୍ଷ ଧରି ଓଡ଼ିଆ ସାହିତ୍ୟରେ ଭକ୍ତିବୋଧର ଯେଉଁ ଶକ୍ତିଶାଳୀ ଧାରା ପ୍ରବାହିତ ହୋଇ ଆସିଛି କବି ସେହି ଧାରାର ଜଣେ ପ୍ରମୁଖ ପ୍ରବକ୍ତା ଓ ନିଜର ମୌଳିକ ବିଶ୍ଳେଷଣରେ ସେ ଏହି ଧାରାକୁ ନୂତନ ଭାବରେ ସମୃଦ୍ଧ କରିଛନ୍ତି ।

'ବ୍ରହ୍ମ ନିରୂପଣ ଗୀତା'ରେ ବ୍ରହ୍ମଙ୍କୁ ନିରୂପଣ କରିବାରେ କବିଙ୍କର ଆଗ୍ରହ ଯେପରି କୌତୂହଳଜନକ, ସେହିପରି ଆନନ୍ଦଦାୟକ ଓ ବିସ୍ମୟକର, ବିଶେଷ କରି ସ୍ଥିତିର ବିଭିନ୍ନ ଆୟତନ ନିର୍ଦ୍ଦେଶ କରିବାରେ ଭାଷାର ବ୍ୟବହାର ଉଭୟ ସରଳ ଓ ଭାବଗର୍ଭକ । ଅର୍ଥାତ୍, ଗାଁ ଗହଳର ସାଧାରଣ ଲୋକ ଧର୍ମ ଦର୍ଶନର ଜଟିଳ ତତ୍ତ୍ୱକୁ ଶୁଣି ବୁଝି ପାରିବା ଭଳି ସହଜ ସରଳ ଭାଷାରେ ଓ ତା' ନିଜର ପରିବେଶର ପରିଚିତ ଶବ୍ଦାବଳୀର ମାଧ୍ୟମରେ ହିଁ କୁହାଯାଇଛି । କିନ୍ତୁ ଅନ୍ୟଭାବରେ କବିଙ୍କର

ଭାଷା, ବର୍ଣ୍ଣନା ଓ ବ୍ୟବହୃତ ଶବ୍ଦସବୁ ଦ୍ୱୈତଅର୍ଥକ ଓ ବିରୋଧାତ୍ମକ ବି ଯାହା ସେସବୁ ବିଚାରଧାରାରେ ଅନଭିଜ୍ଞ ବା ଅନଭ୍ୟସ୍ତ ବ୍ୟକ୍ତି ପକ୍ଷରେ ବୁଝିବା ସହଜ ନ ହୋଇ ପାରେ । କାବ୍ୟର ଆରମ୍ଭରୁ ହିଁ ପାଠକ ବ୍ରହ୍ମଙ୍କ ସଂପର୍କରେ ବାରମ୍ବାର ଅବହିତ ହୁଏ । ବ୍ରହ୍ମଙ୍କର ଶରୀର, ତାଙ୍କର ଆସ୍ଥାନ, ତାଙ୍କର ମାର୍ଗ, ଦେହରେ ବ୍ରହ୍ମଙ୍କର ସ୍ଥାନ, ଦେହରେ ବ୍ରହ୍ମ ନିରୂପଣର ଭେଦ, ବ୍ରହ୍ମଙ୍କର ଛନ୍ଦ, ବ୍ରହ୍ମଙ୍କର ବର୍ଣ୍ଣକାନ୍ତି, ବ୍ରହ୍ମଙ୍କର ମହିମା ଓ ମହିମାର ଭୂଷଣ ଓ ମହିମାର ପଥ, ଓ ବ୍ରହ୍ମଙ୍କର ସ୍ୱରୂପ ପ୍ରଭୃତି ବିସ୍ତାରିତ ଭାବରେ ପ୍ରଥମ ବିଭାଗରେ, ପ୍ରାୟ ପ୍ରଥମ ଅଧ୍ୟାୟରୁ ଅଷ୍ଟମ ଅଧ୍ୟାୟ ପର୍ଯ୍ୟନ୍ତ । ଦ୍ୱିତୀୟ ବିଭାଗରେ, ବ୍ରହ୍ମଙ୍କ ସହିତ ସଂପର୍କିତ ମହାନିତ୍ୟ ମଣ୍ଡଳ, ମହାନିତ୍ୟ ମହିମା, ମହାନିତ୍ୟ ସହସ୍ରଦଳ କୁଞ୍ଜର ବୃତ୍ତାନ୍ତ – ଅର୍ଥାତ୍ କୁଞ୍ଜ ଘର, କୁଞ୍ଜ ମନ୍ଦିର, କୁଞ୍ଜର ଆସ୍ଥାନ, ପାବଚ୍ଛ, ରତ୍ନ ସିଂହାସନ, ଓ ମହାନିତ୍ୟ ଭୁବନ ଓ ଭୁବନ ସୃଷ୍ଟିର ଭେଦ ପ୍ରଭୃତି ପରବର୍ତ୍ତୀ ତିନୋଟି ଅଧ୍ୟାୟରେ, ନବମ, ଦଶମ ଓ ଏକାଦଶରେ ବିସ୍ତୃତ ଭାବରେ ରହିଛି । ତୃତୀୟ ଓ ଶେଷ ବିଭାଗ, ଶେଷ ତିନୋଟି ଅଧ୍ୟାୟ, ଦ୍ୱାଦଶ, ତ୍ରୟୋଦଶ ଓ ଚତୁର୍ଦ୍ଦଶରେ ଲକ୍ଷ୍ୟ କରାଯାଇ ପାରେ । ଏଠାରେ ଶାରୀରିକତାକୁ ଅତିକ୍ରମ କରି ସ୍ପଷ୍ଟ ଭାବରେ ମାନସିକତା ସ୍ତରର ବିଚାର ଓ ବ୍ରହ୍ମଚେତନାର ବିଶ୍ଳେଷଣ, ବିଶେଷ କରି ଭେଦାନ୍ତ ନିର୍ଗୁଣ ଜ୍ଞାନ, ପରମ ନାମ, ଅକ୍ଷର ଭେଦ, ଜୀବ ପିଣ୍ଡଭେଦ, ଜୀବ ଆତ୍ମା ଘଟ, ଓ ଶରୀରରେ 'ହଂସ'ର ସଞ୍ଚାର ପ୍ରଭୃତି ସହିତ, ଧର୍ମର ସମାନତା, ଜୀବନର ଲକ୍ଷ୍ୟ, ଶରୀରର ଯଥାର୍ଥତା, ମୋକ୍ଷର ଆବଶ୍ୟକତା, ଓ ଶ୍ରୀଗୁରୁ, ବ୍ରହ୍ମଭକ୍ତି ଓ ଭକ୍ତିରସର ଗୁରୁତ୍ୱ ପ୍ରଭୃତିର ବିଚାର ଲକ୍ଷ୍ୟ କରାଯାଇ ପାରେ । 'ବ୍ରହ୍ମ ନିରୂପଣ ଗୀତା' ଭୀମ ଭୋଇଙ୍କର ଗୋଟିଏ ବିଶିଷ୍ଟ ରଚନା, ଓ ଏହାର ଅନ୍ତର୍ଗତ ଆଭିମୁଖ୍ୟ ଲୋକ ଜୀବନ, ଲୋକ ଚରିତ୍ର ଓ ଲୋକର ଆଧ୍ୟାତ୍ମିକତା ଉନ୍ନତ କରିବାରେ ଅଭିପ୍ରେତ ।

'ବ୍ରହ୍ମ ନିରୂପଣ ଗୀତା'ରେ ଯେଉଁ ଅଲେଖ ପରବ୍ରହ୍ମଙ୍କ କଥା ବର୍ଣ୍ଣନା କରାଯାଇଛି ସେହିଁ କବିଙ୍କର କାବ୍ୟଶକ୍ତି ଦାତା, ଓ କବି ଆରମ୍ଭରୁ ହିଁ ତାଙ୍କରି ସାହାଯ୍ୟ ପ୍ରାର୍ଥନା କରିଛନ୍ତି :

ବନ୍ଦଇ ଯେ ଅଣାକାର ଅରୂପ ଶରୀର
ଅନାମ ଅଦେହ ପ୍ରଭୁ ମହିମା ସାଗର ।
ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଅଲେଖ ପୁରୁଷ
ବ୍ରହ୍ମ ନିରୂପଣ ଗୀତା କର ମୋତେ ଦୃଶ୍ୟ ।

ନିରାକାର ବ୍ରହ୍ମଙ୍କର ଚେତନା କବିଙ୍କୁ ବାରମ୍ବାର ପ୍ରଣୋଦିତ କରିଛି ଓ ସେ ବାରମ୍ବାର ପାଠକଙ୍କୁ ସେହି ଚେତନାରେ ଉଦ୍‌ବୁଦ୍ଧ କରିଛନ୍ତି :

ଏକ ଧର୍ମ ଏକ ବ୍ରହ୍ମ ଏକ ଭେଦ ତାର
ସେ ଗର୍ଭରେ ଶୂନ୍ୟ ବ୍ରହ୍ମ କରନ୍ତି ବିହାର ।
ଅଣ ଅକ୍ଷର ଅଲେଖ ପୁରୁଷ ଅଟଇ
ଅନାମ ଅରୂପ ବ୍ରହ୍ମ ତାହାକୁଟି କହି ।

(ତୃତୀୟ ଅଧ୍ୟାୟ)

.....

ନିର୍ଗୁଣ ବୋଲନ୍ତେ ତାଙ୍କୁ ଗୁଣ ନ ଲାଗଇ
ରଜ ବୀଜରୁ ସେ ପ୍ରଭୁ ବାହାର ଅଟଇ ।
ଅକ୍ଷୟ ବୋଲନ୍ତେ ତାର କ୍ଷୟ ବୃଦ୍ଧି ନାହିଁ
ଅପାଲଟ ବ୍ରହ୍ମ ସେ ଯେ ପାଲଟ ନୁହଇ ।     (ତ୍ରୟୋଦଶ ଅଧ୍ୟାୟ)

ସେ ବ୍ରହ୍ମଙ୍କର ଅସୀମ ପ୍ରତାପ – କୋଟିଏ କାମକୁ ଜିଣି ସେ ପ୍ରତାପବନ୍ତ, କୋଟିଏ ଜ୍ୟୋତିକୁ ଜିଣି ଜ୍ୟୋତିବନ୍ତ, ଓ କୋଟି ବୀର୍ଯ୍ୟକୁ ଜିଣି ବୀର୍ଯ୍ୟବନ୍ତ – "କୋଟିଏ ସୂର୍ଯ୍ୟକୁ ଜିଣି ତେଜ ମହାବାହୁ । କୋଟିଏ କାଳକୁ ଜିଣି ତେଜ ମହାରାହୁ ।" ତାଙ୍କ ପାଇଁ କୌଣସି ବାହ୍ୟ ଉପକରଣର ଆବଶ୍ୟକତା ନାହିଁ, ସେ ନିଜେ ହିଁ ନିଜ ଭିତରେ ପରିପୂର୍ଣ୍ଣ :

ସେ ବ୍ରହ୍ମର ଦର୍ଶନ ଭଞ୍ଜନ ସବୁ ନାସ୍ତି
ଚିତା ପଇତା ଆବର ଗୋମୟ ବିଭୂତି ।
ଡୋର କଉପୁନୀ ଆଦି କିଛି ନାହିଁ ତହିଁ
ନିଷ୍କଳଙ୍କ ବ୍ରହ୍ମ ସେ ଯେ କଳଙ୍କ ନ ଥାଇ ।
ଜଟାଭାର ବ୍ରହ୍ମ ମୁଦ୍ରା କାହିଁ ନାହିଁ କିଛି
ନିର୍ମଳ ବ୍ରହ୍ମ ସ୍ୱରୂପ କିଛି ନ ଲାଗୁଛି ।     (ଚତୁର୍ଦ୍ଦଶ ଅଧ୍ୟାୟ)

ବ୍ରହ୍ମଙ୍କର ଆସ୍ଥାନ 'ନିଗମ ଭୁବନ', 'ନିଶବଦ ମନ୍ଦିର'; ସେ 'ଅଣରୂପ', 'ଅଜ୍ୟୋତି'; ଓ ସେ 'ନିର୍ଗୁଣ ଶରୀର' ଓ 'ଅଣାକ୍ଷର':

ମହାଶୂନ୍ୟ ସେ ଶୂନ୍ୟ ଯେ ନିର୍ଗୁଣ ଶରୀର
ଏକାକ୍ଷର ନ ବସଇ ବସେ ଅଣାକ୍ଷର ।
ଅଣାକ୍ଷର ଅଣମାତ୍ରା ଅଣ ନିଶବଦ
ଶବଦର ଭେଦ ନାହିଁ ବ୍ରହ୍ମ ନିଜପଦ ।     (ପ୍ରଥମ ଅଧ୍ୟାୟ)

କବି କଳ୍ପନାରେ ବ୍ରହ୍ମଙ୍କର ଏହି 'ମହାଶୂନ୍ୟ'ରୂପ ଗୋଟିଏ ଦିଗ । ଅନ୍ୟ ଦିଗରେ, ବ୍ରହ୍ମଙ୍କୁ ଶରୀର ସଂପର୍କରେ ମଧ୍ୟ କଳ୍ପନା କରାଯାଇଛି, ଓ ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ କବିଙ୍କର ଭାଷା ପ୍ରାୟ ରହସ୍ୟମୟ ଦ୍ୱୈତଅର୍ଥକ ଓ ବିରୋଧାତ୍ମକ । ଯେପରି, ଶରୀରରେ ବ୍ରହ୍ମଙ୍କର ସ୍ଥାନ- "ତାଲୁକା ଦୁଆର ଶିଖେ ଅଟେ ତା'ର ବାସ / ବ୍ରହ୍ମ ରନ୍ଧ୍ର ଶିଖେ ଛନ୍ତି ଅଲେଖ ପୁରୁଷ ।" ଓ "ଅସ୍ଥିର ଭିତରେ ଶିଶୁରନ୍ଧ୍ରେ ବାଟ ଅଛି / ଅଣରୂପ ପୂର୍ଣ୍ଣ ବ୍ରହ୍ମ ଗୁପତେ ଖେଳୁଛି ।" (ପ୍ରଥମ ଅଧ୍ୟାୟ) । ବା, ବ୍ରହ୍ମ ନିରୂପଣ ଭେଦର ଧାରା – "ଲୁହା ମୁଣ୍ଡା ହୀରା ହେବା ବ୍ରହ୍ମ ନିରୂପଣେ / ଖପର ହୋଇବ ସୁନା ଅନାମ ବଚନେ / ନାଗ ଗରଳ ପ୍ରତ୍ୟକ୍ଷେ ହୋଇବ ଅମୃତ / ଅଣରୂପ ବ୍ରହ୍ମ ଭେଦ ମହିମା ଏମନ୍ତ", ଓ, "ବ୍ୟାଘ୍ର ଛେଳି ହୋଇ ଏକ କୋଠାରେ ଭକ୍ଷିବେ / ସିଂହ ଯେ ଶୃଗାଳ ନୃତ୍ୟ ଗୀତ ହିଁ କରିବେ / ଶତ୍ରୁ ଭଗାରି ଏକାନ୍ତ ବସିବେ ଯେ ମିତ୍ର / ଗୁରସ୍ତ ଭାରିଯା ହୋଇଯିବେ ମାତା ପୁତ୍ର ।" (ଦ୍ୱିତୀୟ ଅଧ୍ୟାୟ) । ବା, ବ୍ରହ୍ମଭେଦ ଛନ୍ଦ – "ଆପଣେ ମହା ନିଷ୍କାମ ଆପଣେ ସକାମ / ଆପେ ଅନାମିକା ବ୍ରହ୍ମ ଆପେ ବହେ ନାମ / ଆପେ ଧର୍ମ କରୁଥାଏ ଆପଣେ ଖରାପ / ଆପେ ଦ୍ରୋହ କରୁଥାଇ ଆପେ ଦିଏ ଶାପ ।" ଓ, "ଆପଣେ, ସାକ୍ଷାତେ ବ୍ରହ୍ମ ଆପେ ହୁଏ ଶୂନ୍ୟ / ଆପେ ରୂପ କାନ୍ତି ହୋଏ ଆପଣେ ଅବର୍ଣ୍ଣ ।/ ଆପଣେ ପରମ ହୋଏ ଆପେ ହୁଏ ଜୀବ / ଆପେ ସେ ଅଲଗା ହୋଏ ଆପେ ହୋଏ ଯୋଗ ।" (ଚତୁର୍ଥ ଅଧ୍ୟାୟ) । ବା, ବ୍ରହ୍ମର ବର୍ଣ୍ଣ କାନ୍ତି – "ସଂଜ୍ୟୋତି ପରାଏ ଦିଶେ ଦଇବେ ଅଜ୍ୟୋତି / ଜ୍ୟୋତି ଲିଙ୍ଗ ପ୍ରାଏ ଦିଶେ ସ୍ୱଭାବେ ଅଜ୍ୟୋତି / ଧବଳାଙ୍ଗ ଦିଶେ ନାହିଁ ଧବଳ ମୂରତି / କାଳିଆ ଦିଶଇ ନୋହେ କାଳିଆ ସଂଜ୍ୟୋତି ।" (ଚତୁର୍ଥ ଅଧ୍ୟାୟ) । ବା, ବ୍ରହ୍ମର ଶରୀର- "ଅଙ୍ଗୁଷ୍ଠି ନୁହଇ ଅଛି ଅଙ୍ଗୁଷ୍ଠି ଆକାର / ନିରୋପି ଚାହିଁଲେ ଦିଶେ ଶୂନ୍ୟର ଆକାର / ଗଣ୍ଠି ନାହିଁ ମୁଠି ଅଛି / ଆୟ କରିବି ବୋଇଲେ ଅନ୍ତ ନ ମିଳୁଛି ।" ଓ, "ମୀନ ପ୍ରାୟେ ନାଲୁଆ ହୋଇଛି ତାଙ୍କ ଦେହ / ମୁଠା କରି ବେନି ହସ୍ତେ କେ ଧରିବ କହ / ଲହୁଣୀ ପୋଛଣୀ ପ୍ରାୟେ ହୋଇଛି ଚିକ୍‌କଣ / ପୂରି ରହିଅଛି ଅଙ୍ଗ ସର୍ବତ୍ର ସଂପୂର୍ଣ୍ଣ ।" (ପଞ୍ଚମ ଅଧ୍ୟାୟ) । ବା, ବ୍ରହ୍ମର ଆସ୍ଥାନ ବିଧାନ – "ଅଗଡ଼ାରେ ଅପୋଡ଼ାରେ ହୋଇଛି ତିଆର / ଅଣଅଠା ଅଣଚୂନ ଲାଗିଛି ତହିଁର / ଅଣଛଞ୍ଚା ଅଣପୋଛା ହୋଇଛି ଶପୋଟ / ଅଣଘସା ଅଣଲିପା ହେଉଛି ଚୌପଟ ।" ଓ, "ଶୂନ୍ୟ ହେମ ଶିଶିର ବରଷା କରୁଅଛି / ଉଷୁମ ହୋଇଛି ଘର ଶୀତ ନ କରୁଛି / ଶୂନ୍ୟ କାଷ୍ଠ ପୋଡୁଅଛି ଅଙ୍ଗାର ନୋହୁଛି / ପାଉଁଶ ନ ପଡ଼ି ରାତ୍ରଦିବସ ଜଳୁଛି ।" (ପଞ୍ଚମ ଅଧ୍ୟାୟ) । ସେହିପରି ମହାନିତ୍ୟ ମଣ୍ଡଳର ବର୍ଣ୍ଣନା – "ମହାନିତ୍ୟ ଭୂମିଠାରୁ ଉପରକୁ ଉଞ୍ଚ / ପଡ଼ି ଆସିଅଛି ତହିଁ ଦ୍ୱାଦଶ ପାବଚ୍ଛ / ଦ୍ୱାଦଶ

ପାବଛ ତଳେ ଦୁତିଆ ପୀଠରେ / ମହାନିତ୍ୟ ମଣ୍ଡଳ ରଞ୍ଜନା ସେହିଠାରେ ।" ମହାନିତ୍ୟ ମହିମା – "ଅନ୍ଧାର ଉଜ୍ଜ୍ୱଳ ନୋହେ ରାତ୍ର ଦିନ ଏକ / ଚନ୍ଦ୍ରସୂର୍ଯ୍ୟ ସେ ଠାବରେ ହୋଇଛନ୍ତି ଦୀପ / ଚାରିଯୋଗ ତହିଁ ହୋଇଅଛି ଏକ କୂଳ / ଶୁଭ ଲଗ୍ନ ନାହିଁ ତହିଁ ସର୍ବଦା ମଙ୍ଗଳ ।" (ଷଷ୍ଠ ଅଧ୍ୟାୟ) । ମହାନିତ୍ୟ ସହସ୍ର ଦଳ କୁଞ୍ଜର ବୃତ୍ତାନ୍ତ – "ମହାନିତ୍ୟ ପଦ୍ମ କୁଞ୍ଜ ସହସ୍ରେ ପାଖୁଡ଼ା / କେହି କାହାକୁ ନ ଲାଗି ହୋଇଅଛି ଛଡ଼ା / ପାଖୁଡ଼ା ଗୋଟାକେ ଅଛି ସହସ୍ରେ ବଖୁରା / ଜ୍ୟୋତିର୍ମୟ ବ୍ରହ୍ମ ତହିଁ ଛନ୍ତି ବିଜେ କରି ।" ଓ କୁଞ୍ଜ ମନ୍ଦିରର ରୀତି –" ଲକ୍ଷେ ଘଣ୍ଟ ଲକ୍ଷେ ଶଙ୍ଖ ସେଠାରେ ବାଜୁଛି / ଲକ୍ଷେ ଲକ୍ଷେ ଚାମର ଛତ୍ର ଯେ ଉଡୁଅଛି / ଲକ୍ଷେ ବୀର ଲକ୍ଷେ ତୂର ଲକ୍ଷେ ଘଣ୍ଟା ଘଣ୍ଟା / ଲକ୍ଷେ ଲକ୍ଷେ ସମ୍ଭବ ହେଉଛି ଭାଗ ବଣ୍ଟା ।" (ନବମ ଅଧ୍ୟାୟ) । ପରିଶେଷରେ 'ମହାମହିମ'ଙ୍କର ବିରାଟ ଓ ବିପୁଳ ଗର୍ଭର ସୂଚନା, ସରଳ ଚିତ୍ରକଳ୍ପ ମାଧ୍ୟମରେ :–

ଯେସନେକ ଅଗାଧ ସିନ୍ଧୁରେ ଥାଇ ମୀନ
ଜଳର ଭିତରେ ଚହଲାଇ ଘନ ଘନ ।
ସେହି ରୂପେ ଅଟେ ମହା ମହିମାଙ୍କ ଗର୍ଭ
ସାଗର ପରାଏ ଖେଳୁଛନ୍ତି ସର୍ବଜୀବ ।

(ଅଷ୍ଟମ ଅଧ୍ୟାୟ)

ଧର୍ମ, ଦର୍ଶନ ଓ ଆଧ୍ୟାତ୍ମିକତାର ବିଚାର ଓ ବିଶ୍ଳେଷଣ ଭିତରେ କବିଙ୍କର ମୁଖ୍ୟ ଆଭିମୁଖ୍ୟ ବ୍ରହ୍ମ ଭକ୍ତିରେ ବିଶ୍ୱାସ ଓ ପ୍ରତିଷ୍ଠା, ଯାହା ଲୋକ ଚରିତ୍ରରେ ଉନ୍ନତି କରି ଜୀବନରେ ପ୍ରାସଙ୍ଗିକତା ଓ ବଂଚିବାରେ ମୂଲ୍ୟ ଦେବ । ଚତୁର୍ଦ୍ଦଶ ଅଧ୍ୟାୟରେ କବି ଏ ସଂପର୍କରେ ବିସ୍ତୃତ ସୂଚନା ଦେଇଛନ୍ତି, ଓ ଏହାହିଁ 'ବ୍ରହ୍ମ ନିରୂପଣ ଗୀତା'ର ଗୋଟିଏ ବିଶିଷ୍ଟ ଦିଗ । ଅର୍ଥାତ୍ ବ୍ରହ୍ମଙ୍କୁ ଲାଭ କରିବାକୁ ହେଲେ ନିଜର ଚରିତ୍ର ଓ ମାନସିକତାର ସଂଗଠନ ମୁଖ୍ୟ, ଯେଉଁଠି ସର୍ବଜୀବ ପ୍ରତି ସହନଶୀଳତା, କରୁଣା ଓ କାର୍ଯ୍ୟ, ଧର୍ମ ଓ ବିଚାରରେ ନିରପେକ୍ଷତା ଓ ସହାନୁଭୂତି ଆବଶ୍ୟକ :

ଶାନ୍ତ ଶୀଳ ଦୟା କ୍ଷମା ହୃଦରେ ବହିବୁ
ବଚନ ଶୁଣି ପ୍ରଥମେ କୋପିତ ନୋହିବୁ ।

......

ଜଳ ଯେ ବରଷା କରେ ବ୍ରହ୍ମାଣ୍ଡ ଭିତର
ସର୍ବଠାରେ ପଡ଼ଇ ସେ ନ ଥାଇ ଅନ୍ତର ।
ଜଳର ପରାଏ ଧର୍ମ କର ତୁ ହୋ ବାବୁ ।

ଅଣରୂପ ବ୍ରହ୍ମର ଭଗତ ଯେବେ ହେବୁ । (ଚତୁର୍ଦ୍ଦଶ ଅଧ୍ୟାୟ)

କବି ଚନ୍ଦ୍ରସୂର୍ଯ୍ୟ କଥା, ପବନ କଥା ଓ ଅଗ୍ନିର ଉଦାହରଣ ଦେଇଛନ୍ତି । ସେହିମାନଙ୍କ ପରି କାର୍ଯ୍ୟରେ ସଂପୂର୍ଣ୍ଣ ସମାନତା ରକ୍ଷା କରି ପାରିଲେ ବ୍ୟକ୍ତି ମାୟାମୋହରୁ ଦୂରେଇ ଯାଇପାରିବ ଓ ଧର୍ମର ଭେଦାଭେଦ ବୁଝିପାରିବ । ଜୀବନର ଲକ୍ଷ୍ୟ ଶରୀରର ମଙ୍ଗଳ ନୁହେଁ ବା ଶରୀର ମଧ୍ୟରେ ସୀମିତ ନୁହେଁ । କିନ୍ତୁ ଶରୀରକୁ ଅବହେଳା କଲେ ଜ୍ଞାନ ମିଳି ପାରିବ ନାହିଁ ("ଏ ଦେହ ଛାଡ଼ିଲେ କିଛି ଜ୍ଞାନ ଥାଉ ନାହିଁ ।") । ତେଣୁ ବ୍ୟକ୍ତିର ଆଧ୍ୟାତ୍ମିକ ଉତ୍ତରଣରେ ଶରୀରହିଁ ମୁଖ୍ୟ ମାଧ୍ୟମ, ଏହାହିଁ କବିଙ୍କର ମତ, ଓ ଶରୀରର ଯଥାର୍ଥତା ବୁଝିଲେହିଁ ନିରାକାର, ଅଶରୀରି ବ୍ରହ୍ମର ଚେତନା ଲଭ୍ୟ ହୋଇପାରିବ :

ରୂପେ ଥାଇ ଅରୂପକୁ ଲଗାଅ ତୁ ଦୃଷ୍ଟି
ତେବେ କ୍ଷଏ ଯିବ ତୋର କଳ୍ପନା ଅରିଷ୍ଟି ।
ବେଦେ ଥାଇ ନିର୍ବେଦକୁ ଧ୍ୟାନ ତୁ କରିବୁ
ବେଦାନ୍ତ ଛାଡ଼ିଲେ ଅରୂପରେ ଲୀନ ହେବୁ (ଚତୁର୍ଦ୍ଦଶ ଅଧ୍ୟାୟ)

ଜୀବନର ଲକ୍ଷ୍ୟ ବେଦାନ୍ତ ନିର୍ଗୁଣ ଜ୍ଞାନ ଲାଭ କରିବା, ଯାହାକି ନିର୍ବେଦ ନିଷ୍କାମ ବ୍ରହ୍ମଭକ୍ତିର ବିଚାର, ଅର୍ଥାତ୍, ଜ୍ଞାନ ଓ ଭକ୍ତିର ସମନ୍ୱୟ, ଓ ଏହାହିଁ ଜୀବନର ପ୍ରଧାନ ଲକ୍ଷ୍ୟ, ଓ ସାଧକର ପରମ ପୂର୍ଣ୍ଣତା :

କହିଲା ଶୁଣିଲା କଥା ମିଥ୍ୟା ଏ ବଚନ
ତତ୍ତ୍ୱକୁ ପାଇବୁ ଆପ ଦେହେ କଲେ ଜ୍ଞାନ ।
ରାମ ରାମ ବୋଇଲେ କି କ୍ଷୟ ଯିବ ପାପ
ଭାତ ଭାତ ବୋଇଲେ କି ପଳାଇବ ଭୋକ ।
ଆହାର ଭକ୍ଷିଲେ ସିନା ଆତ୍ମା ବୋଧ ହେବ
ନାମକୁ ଭଜିଲେ ସିନା ମୁକତି ଲଭିବ ।
ଭଜିବାରେ କି ଲାଭ ଶୁଣିଲେ ଯାଇ ସିନା
ଶୁଣିବାରେ କି ଲାଭ ପଢ଼ିଲେ ଯାଏଂ ଜଣା ।
ପଢ଼ିବାରେ କି ସୁଖ ବୁଝିଲେ ସିନା ଅଛି
ବୁଝିବାରେ କିସ ପ୍ରିୟ ଭେଦ କର ବାଛି ।
ଭେଦ କଲେ କି ହେବ ଭଜିଲେ ଅଛି ସବୁ
ଭଜୁଥିଲେ କି ହେବ ତେଜିଲେ ମିଳେ ପ୍ରଭୁ ।
ତେଜ୍ୟା କଲେ କି ହୋଇବ ଧରି ନ ପାରିଲେ

ଧରିଲେ କିସ ହୋଇବ ଚିହ୍ନି ନ ପାରିଲେ ।
ଚିହ୍ନିଲେ କି ହେବ ବାନ୍ଧି ଯେମନ୍ତ ନ ପାରେ
ବାନ୍ଧିଲେ କି ହେବ ଯେବେ ଜାଗ୍ରତ ନ ଧରେ ।
ଧଇଲେ କି ହେବ ଲଭି ପାରିଲେ କି ଯାଇ
ମଜ୍ଜି ପାରିଲେ ବ୍ରହ୍ମରେ ତେବେ ଲୀନ ହୋଇ ।

(ଦ୍ୱାଦଶ ଅଧ୍ୟାୟ)

ଏହାହିଁ କବିଙ୍କର ପ୍ରତ୍ୟକ୍ଷ ଅନୁଭୂତିଲବ୍ଧ ବ୍ରହ୍ମଜ୍ଞାନ ଭକ୍ତିଯୋଗର ଚିତ୍ର, ଓ ଏହାହିଁ 'ବ୍ରହ୍ମ ନିରୂପଣ ଗୀତା' ଓ କବିଙ୍କର ଅନ୍ୟାନ୍ୟ ବିଶିଷ୍ଟ ରଚନାର ପ୍ରଧାନ ଉପଜିବ୍ୟ, ଓ ଏହାହିଁ ଓଡ଼ିଆ ସାହିତ୍ୟର ଶକ୍ତିଶାଳୀ ଭକ୍ତି ଧାରାର ମୁଖ୍ୟ ଉପାଦାନ । ଓଡ଼ିଆ ଭକ୍ତ କବିମାନେ ପ୍ରଚୁର ଜଣାଣ ଓ ଭଜନ ଲେଖିଛନ୍ତି । ପୁଣି ଯଥେଷ୍ଟ ତତ୍ତ୍ୱସାହିତ୍ୟ ମଧ୍ୟ ଲେଖିଛନ୍ତି । ଗୋଟିକରେ ଆବେଗ ଓ ଅନୁଭବର ସଂଗଠନ, ଅନ୍ୟଟିରେ ବିଚାର ଓ ବିଶ୍ଳେଷଣର ସଂଗଠନ । ଓଡ଼ିଆ ଭକ୍ତି ସାହିତ୍ୟର ଏ ଦୁଇଟି ଦିଗ ସମାନ ଭାବରେ ସମୃଦ୍ଧ, ସମାନ ଭାବରେ ଭାବବ୍ୟଞ୍ଜକ, ଓ ସମାନ ଭାବରେ ଅତୀବ ଆନନ୍ଦଦାୟକ ।

ଯତୀନ୍ଦ୍ର ମୋହନ ମହାନ୍ତି
୧.୮.୦୭

# ବ୍ରହ୍ମାଣ୍ଡ ଭୂଗୋଳ

## ପ୍ରଥମ ଅଧ୍ୟାୟ

ଅର୍ଜୁନ ବିନୟ ବଚନେ । ପୁଚ୍ଛନ୍ତି ନାଥର ଚରଣେ ।
ଭୋ ନାଥ କରୁଣା ସାଗର । ଅଶେଷ ବ୍ରହ୍ମାଣ୍ଡ ଈଶ୍ୱର ।
ହେ ଦୀନବନ୍ଧୁ ଦଇତାରି । ମୁକୁନ୍ଦ ମାଧବ ମୁରାରି ।
ପଦ୍ମ ନୟନ ଗଦାଧର । ପରମ ପୁରୁଷ ଈଶ୍ୱର ।
ହେ କଷ୍ଟ ଦ୍ରୁମ ଦଇତାରି । ପୁଣ୍ଡରୀକାକ୍ଷ ନରହରି ।
ହେ ଗିରିଧାରୀ ଗୋପୀନାଥ । ପରମ ପବିତ୍ର ବ୍ରହ୍ମତ୍ୱ ।
ଅଖିଳ ଶ୍ରେଷ୍ଠ ଚରାଚର । କରୁଣା ସିନ୍ଧୁ ଚକ୍ରଧର ।
ଅର୍ଜୁନ ସ୍ତୁତି ବଚନରେ । ମନ ଯେ କୃଷ୍ଣ ପାଦତଳେ ।
ତୁମ୍ଭର ନାମ ଅଗୋଚର । ଅନ୍ତ ନ ପାଇଲା ଶଙ୍କର ।
ପ୍ରଥମେ ଦେହ ବିଧି ତତ୍ତ୍ୱ । କି ରୂପେ କାହୁଂ ହେଲା ଜାତ ।
କି ରୂପେ ଅଙ୍କୁରିଲା ବୃକ୍ଷ । ଗୋବିନ୍ଦ କହତା ପ୍ରତକ୍ଷ ।
ଯେମନ୍ତେ ଅର୍ଜୁନ ବଚନ । ଶୁଣି ବୋଲନ୍ତି ଭଗବାନ ।

### ଶ୍ରୀଭଗବାନ ଉବାଚ

ବୋଲନ୍ତି କରୁଣା ସାଗର । ଶୁଣ ଅର୍ଜୁନ ମହାବୀର ।
ଯାହା ପୁଛିଲ ଦିବ୍ୟଗ୍ୟାଂନ । ଉଲଟ ବୃକ୍ଷର ବିଧାନ ।
ପ୍ରଥମେ ମାତା ପଦ୍ମ ଫୁଟି । ପିତା ବୀର୍ଯ୍ୟ ମଧ୍ୟେଣ ଭେଟି ।
ଏ ବେନି ସଂଯୋଗ କାଳରେ । ଶୂନ୍ୟ ବୀଜ ମଣ୍ଡଳ ଠାରେ ।
ମଣ୍ଡଳ ମଧ୍ୟେ ହେ ଅର୍ଜୁନ । ଅଲେଖ ଅଣାକାର ଶୂନ୍ୟ ।
ସେ ଶୂନ୍ୟ ମଧ୍ୟେ ସୂକ୍ଷ୍ମ ସାର । ତୁ ନାଶୁ ଯେସନ ପ୍ରକାର ।
ତୁ ନାଶୁ ମଧ୍ୟେ ଯେଉଂ ନାଦ । ପାରିଲେ ତହିଂ କାଳ ଭେଦ ।
ଯେତେବେଳରେ ପଦେ ଶ୍ରାମ । ଶୂନ୍ୟେ ଡାକିଲ ରାମ ନାମ ।
ସେ ଛଡ଼ ବିନା ବେନି ରତି । ଅଷ୍ଟ ଅବନା ମଧ୍ୟେ ସ୍ଥିତି ।

ଗର୍ଭରେ ରଜ ଗୋପ୍ୟ ହେଲା । ସେ ସର୍ବେ ବୀଜ ଯେ ଲୁଚିଲା ।
ବେନି ଅକ୍ଷର ବ୍ୟାସ ମଧ୍ୟେ । ବୃକ୍ଷ ଅଙ୍କୁରିଲା ଆନନ୍ଦେ ।
ବେନି ପାଦ ମଧ୍ୟେ ଯୁଗଳ । ବେନି ପାଦ ତହିଁ ସଞ୍ଚର ।
ସେ ବେନି ମଧ୍ୟେ ବେଦି ଦୁଇ । ଯେମନ୍ତେ ଚାରି ପ୍ରସ୍ତ ତୁହି ।
ଯେମନ୍ତେ ରଜ ତମ ଗୁଣ । ଏ ତ୍ରିଅଧାରଣା ବୃକ୍ଷେଣ ।
ଯେତେବେଳେ ବୃକ୍ଷ ଗୁମ୍ଫିଲା । ତ୍ରିଧାର ଜଳ ବୁହାଇଲା ।
ଗଙ୍ଗା ଯମୁନା ସ୍ୱରସତୀ । ଆକାଶ୍ରୁ ଝଡ଼ି ମୂଳେ ସ୍ଥିତି ।
ରକ ଶ୍ୟାମ ଯଦୁ ଅଥର୍ବ । ଚାରି ପତ୍ର ତହିଁର ପ୍ରସ୍ତାବ ।
ତହିଁରେ ପଞ୍ଚଡ଼ାଳ ହୋଇ । ପୃଥିବୀ ଆପ ତେଜ ବାଇ ।
ଆକାଶ ମିଶି ପଞ୍ଚଭୂତ । ଯେମନ୍ତେ ପଞ୍ଚଡାଳ ସ୍ଥିତ ।
ଶାଖା ଯେ ଖୁଦ୍ର ଡାଳେ ବହି । ଡାଳକେ ପଞ୍ଚ ପଞ୍ଚ ହୋଇ ।
ପଞ୍ଚ ଶଖୁଦ୍ର ଡାଳ ପାଥ । ଦୁଖ ସୁଖ ବେନି ଫରିତ ।
ବୃକ୍ଷ ଶିଖରେ ପଛି ବେନି । ଅତ୍ୟାନ୍ତ ପ୍ରୀତି ସେହୁ ବେନି ।
ସକଳ କର୍ମମାନ ଜାଣ । ଏକଇ ପଛି ତା ବୃକ୍ଷେଣ ।
ଆରକ ପକ୍ଷୀ ବିଲଗରେ । ସେ ଥାଇ ଅମନ ମନ୍ଦିରେ ।
କାଉଂରି ମଣ୍ଡଳରେ ସ୍ଥାନ । ସୁହଂସ ନାମ ନିରଞ୍ଜନ ।
ଅବ୍ୟକ୍ତ ମହାବ୍ରହ୍ମ ସେହି । ଯେ ଚିନ୍ତେ ତାର ଭୟ ନାହିଁ ।
ରୂପ ନାହିଁ ଶୂନ୍ୟ ସେ ସ୍ୱରେ । ରହିଛି ଉଲଟ ଆକାରେ ।
ସେ ସ୍ଥାନେ ଧ୍ୟାନ କର ପାଥ । ଧାରଣା ସ୍ମରଣ ପ୍ରାପତ ।
ବୋଲଇ ବଳରାମ ଦାସ । ଶେଷ ଅଂଶେ ସେ ଦଶ ଦାସ ।

ଇତି ଶ୍ରୀ ଭୋଗୋଳ ଚରିତ୍ର ଆଖ୍ୟାନେ ଉଲଟ ବୃକ୍ଷ ଅର୍ଥ
କଥନେ ବ୍ରହ୍ମାଣ୍ଡ ପୁରାଣେ ଭକତ ନାମ ପ୍ରଥମ ଅଧ୍ୟାୟ ।

## ଦ୍ୱିତୀୟ ଅଧ୍ୟାୟ

### ଅର୍ଜୁନ ଉବାଚ

ପୁଣି ପୁଚ୍ଛଇ ପଣ୍ଡୁସୁତ । କହହେ ପ୍ରଭୁ ଜଗନ୍ନାଥ ।
ବ୍ରହ୍ମାଣ୍ଡ ଭୋଗଳର ବାଣୀ । ଅର୍ଥ ପୁଚ୍ଛଇ ଚକ୍ରପାଣି ।

ଶ୍ରୀ ଭାଗବତ ଗ୍ୟାଂନ ସାର । ପୁଚ୍ଛଇ ବାରେ ଦାମୋଦର ।
କାହୁଂ ଯେ ଭାଗବତ ଜାତ । ମହୀରେ କେହ୍ନୁ କଲା ଖ୍ୟାତ ।
ପ୍ରଥମେ କହି ଭାଗବତ । ସ୍ତମ୍ଭିତ ହେଲା ଗୋପୀନାଥ ।

## ଶ୍ରୀଭଗବାନ ଉବାଚ

ଅର୍ଜ୍ଜୁନ ବଚନେ ଗୋବିନ୍ଦ । କହନ୍ତି ପରମ ସାନନ୍ଦ ।
ଶୁଣ ଅର୍ଜ୍ଜୁନ ମନ ଦେଇ । ବ୍ରହ୍ମାଣ୍ଡ ପୁରାଣ କହଇ ।
ପ୍ରଥମେ ନିଗମ ଆଚାରେ । ବୃକ୍ଷେକ ଜାତ କଳ୍ପଣାରେ ।
ତାଂ ନାମ କଳ୍ପଣାରୁ ହୋଇ । ଅପୋଢ଼ା ଭୂମିରେ ଜନ୍ମଇ ।
ସେ ବୃକ୍ଷ କେତେ ଦିନ ପାଥ । ଫଳ ଫଳିଲା କି ଅମୃତ ।
କେତେ କାଳେ ଫଳ ପାଚିଲା । ମଳୟ ପବନେ ଝଡ଼ିଲା ।
ସେ ବୃକ୍ଷ ମୂଳେ ଆଳବାଳ । ମନ୍ଦା ମୂଳରେ ମହାଜଳ ।
ସେ ମନ୍ଦା ମଧ୍ୟେ ଫଳ ପଡ଼ି । ସ୍ରିଜିଲା ଜଳ ମଧ୍ୟେ ପଡ଼ି ।
ତିନି ଶତ ଷାଠି ପ୍ରମାଣ । ଶାଖା ହିଂ ଅଛି ହୋ ଅର୍ଜ୍ଜୁନ ।
ନବମ ପତ୍ର ବୃକ୍ଷ ଜାଣ । ନିଗମୁ ବେଦ ବୃକ୍ଷ ଜନ୍ମଂ ।
ମନ୍ଦାରେ ସୁଧା ଉଛୁଳିଲା । ନଦୀ ବ୍ରହ୍ମାଣ୍ଡେ ବହିଗଲା ।
ସେ ସୁଧାନିଧି ହୋ ଅର୍ଜ୍ଜୁନ । ଅଗ୍ୟାନେ ତାପ ତୃଷା କ୍ଷୀନ ।
ଯେମନ୍ତେ ସର୍ବ ମୁନିମାନେ । ଗମିଲେ ନମିଷ୍ୟା ଅରନ୍ୟେ ।
ସୁବାଟେ ଦେଖି ସୁଧା ନଦୀ । ସନକ ସନାତନ ଆଦି ।
ସକଳ ନଦୀ ନିକଟରେ । ପ୍ରବେଶ ମନ ଆନନ୍ଦରେ ।
କେ ସୁଧା ଫୁଟାଏ ଭକ୍ଷଇ । କେ କୁଶ ଅଗ୍ରେ ଆଗଦେଇ ।
କେ କମଣ୍ଡଳ ମଧ୍ୟରେ । ପୂରୋଇ ଭକ୍ଷେ ଆନନ୍ଦରେ ।
କେ କୁମ୍ଭେ ପୂରାଇ ଆସ୍ୱାଦ । କେ ଥଣ୍ଡ ମଂଧ୍ୟେ କଲା ଭେଦ ।
ଯେମନ୍ତେ ଆସ୍ୱାଦ କରିଣ । ଗଲେ ସକଳ ମୁନିଗଣ ।
କେ କାବ୍ୟ ପୁରାଣ କରଇ । କେ ବା ବ୍ରହ୍ମାଣ୍ଡେ ପୁରାଣଇ ।
କେ ବା ନୃସିଂହ ଶାସ୍ତ୍ର କଲା । କେ କାବ୍ୟ ଶାସ୍ତ୍ର ବଖାଣିଲା ।
କନ୍ୟା ଯେ ଶିଷ ହେବ ଜାଣି । କେ ଅଷ୍ଟାଦଶ / ଅଭୁବାଣୀ ।

କେ ଷଡ ଚକ୍ରକୁ ଆଚ୍ଛନ । କେ କହେ ପୁରାଣ ଯେ ମାନ ।
କେ ନବ ବ୍ୟାକରଣ ଘୋଷି । ଅଂସ୍କନ୍ଦ ଶୁକ ମୁଖୁ ଭାଷି ।
ଯେଣୁ ଯେ ଶୁକ ମୁଖୁ ଜାତ । ଶ୍ରୀ ଭାଗବତଟି ସଯୁତ ।
କହଇ ବଳରାମ ଦାସ । ଭାଗବତ ଶୁକ ମୁଖୁ ଅଭ୍ୟାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ୍ର ରଚନେ ବ୍ରହ୍ମ ବିଦ୍ୟାୟାଂ
ଶୁପ ନିଚ୍ଛେଦେ ଶ୍ରୀ ଭାଗବତ ଜନ୍ମକଥନେ ନାମ ଦ୍ୱିତୀୟ ଅଧ୍ୟାୟ ।

## ତୃତୀୟ ଅଧ୍ୟାୟ

### ଅର୍ଜୁନ ଉବାଚ

ପୁଣି ପୁଚ୍ଛଇ କୁନ୍ତୀ ସୁତ । କହହେ ପ୍ରଭୁ ପଦ୍ମ ନେତ୍ର
ଭଗତ ବନ୍ଧୁ ମଧୁହାରି । ପଦ୍ମନୟନ ଦଇତାରି
କୃଷ୍ଣ ସେବକ କୃପାସିନ୍ଧୁ । କହିଲେ ଭକ୍ତଜନ ବନ୍ଧୁ ।
ଶ୍ୟାମ ସୁନ୍ଦର ନରହରି । ହେ ଦାମୋଦର ଚକ୍ରଧାରୀ ।
ପୁଚ୍ଛଇ ଗହନ ଭଣ୍ଡାର । ଷୋଳ ନାମ କାହୁଂ ବାହାର
କେବଣ ସ୍ଥାନେ ମନ୍ତ୍ର ଥିଲା । କେ ତାହା ମର୍ତ୍ତ୍ୟକୁ ଆଣିଲା ।
କହ ହେ ପ୍ରଭୁ ବିଶ୍ୱେଶ୍ୱର । ଯେ ମୋର ଭ୍ରମ ଯାଉ ଦୂର ।
ଶ୍ରୀ ହରି ଅର୍ଜୁନ ବଚନେ । କହନ୍ତି ମନ୍ତ୍ର ତୋଷ ମନେ ।

### ଶ୍ରୀ ଭଗବାନ ଉବାଚ

ଶୁଣ ହୋ ଗ୍ୟାଂନର ମହିମା । ଯେଣେ ଲଭିବୁ ସର୍ଗ ସୀମା ।
ପ୍ରଥମେ ମହାପୁଣ୍ୟ ସ୍ଥାନ । ତହୁଂ ଦି ପୁଣ୍ୟ ହେଲା ଜନ୍ମ ।
ସେ ଶୂନ୍ୟ ଅର୍ଦ୍ଧମାତ୍ରା ହୋଇ । ବେନି ସଂଯୋଗୁ କ୍ଲୀ ଜନ୍ମଇ ।
କ୍ଲୀ ବୀଜ ଲଅରୁ ଅ ଜନ୍ମ । ଶ୍ଳୀ ବୀଜ ହୋଇଲା ସେ ଜନ୍ମ ।
ଶ୍ଳୀ ବୀଜ ଇକାରୁ ଜନ୍ମଇ । ହ୍ଲୀ ବୀଜ ଯେଥୁ ଉପୁଜଇ ।
କ୍ଲୀ ବୀଜ ବୋଲି ଯାହା କହି । କ ଘରୁ କୃଷ୍ଣ ଜନ୍ମ ହୋଇ ।
ଶ୍ଳୀ ବୀଜ ଲ ଅରୁ ଟି ରାମ । ତ୍ରି ବୀଜଂ ହରେକୃଷ୍ଣ ଜନ୍ମ ।

ଯେମନ୍ତ ତ୍ରିୟ ନାମ ହୋଇ । ତ୍ରିୟ ମାତ୍ରାରୁ ତ୍ରିୟ ନାମଇ ।

**ହରେ ରାମ କୃଷ୍ଣ**

ଯେଥୁ ଷୋଳ ନାମ ଜନ୍ମ । ହରାଦି ଆଠ ହୋ ଅର୍ଜୁନ ।
ରାମାଦି ଚାରି କୃଷ୍ଣ ଚାରି । ଯେମନ୍ତେ ଷୋଳ ନାମ ପୂରି ।
କାମ ବୀଜରୁ ସର୍ବଜାତ । ସେ କାମ ରାଧାକୃଷ୍ଣ ତତ୍ତ୍ୱ ।
ତଥି ଉପରେ ବହ୍ମ ଶୂନ୍ୟ । ଅଲେଖ ଅଣାକାର ବର୍ଣ୍ଣ ।
ବୋଲଇ ବଳରାମ ଦାସ । ଷୋଳ ନାମ ଶୂନ୍ୟ ପ୍ରକାଶ ।
ବ୍ରହ୍ମାଣ୍ଡ ଭୋଗୋଳଟି ଯେହି । ଯେଥି ଉପରେ ତତ୍ତ୍ୱ ନାହିଁ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ୍ର ଆଖ୍ୟାନେ ବ୍ରହ୍ମ ବିଦ୍ୟାୟାଂ
ସୁପନିଷ୍ଷେବ ଶ୍ରୀ ମହାମନ୍ତ୍ର ଜନ୍ମ କଥନେ ନାମ ତୃତୀୟ ଅଧ୍ୟାୟ ।

## ଚତୁର୍ଥ ଅଧ୍ୟାୟ

### ଅର୍ଜୁନ ଉବାଚ

ପୁଣ ଅର୍ଜୁନ କୃତ କୃତ । ବୋଲଇ ଶୁଣ ଗୋପୀନାଥ ।
ବ୍ରହ୍ମାଣ୍ଡ ଭୋଗୋଳର ବାଣୀ । ପୁଛଇ ବାରେ ଚକ୍ରପାଣି ।
ଗାୟତ୍ରୀ କାହୁଂ ଜନ୍ମ ହୋଇ । କେତେ ଅକ୍ଷର ସେ ଅଟଇ ।
କେଉଂ ଅକ୍ଷର କେଉଂ ବେଦ । କେତେ ବେଦ ଅକ୍ଷରେ ଭେଦ ।
ଯେଥ ସଂଶୟ ନାହିଁ ହରି । ନମସ୍ତେ ମୁକୁନ୍ଦ ମୁରାରି ।

### ଶ୍ରୀଭଗବାନ ଉବାଚ

ପାଥର ଯେମନ୍ତ ବଚନ । କହନ୍ତି ଶ୍ରୀମଧୁସୋଦନ ।
ଶୁଣ ହୋ ଧନଞ୍ଜୟ ତୁହି । ଗାୟେତ୍ରୀ ଅର୍ଥ ଦେବାକହି ।
ଚବିଶ ଅକ୍ଷର ଟି ଯେହି । ପ୍ରଥମେ ଅଷ୍ଟାକ୍ଷର ଯେହି ।
ଯେଥରୁ ଋକ୍‌ବେଦ ଜନ୍ମ । ଦ୍ୱତୀଅ ଅଷ୍ଟାକ୍ଷର ଶୁଣ ।
ଯେଥି ଶ୍ୟାମବେଦ ଜନ୍ମଇ । ଦ୍ୱିବେଦ ଷୋଳକ୍ଷର ଯାଇ ।
ତୃତୀୟେ ଅଷ୍ଟାକ୍ଷର ସାର । ତହୁଂ ଯର୍ଜୁବେଦ ବାହାର ।

ଯେମନ୍ତେ ଚବିଶ ଅକ୍ଷର । ତ୍ରି ବେଦ ଜନ୍ମିଲା ହୋ ବୀର ।
ଓଂକାର ଉକାର ଆକାର । ଯେ ତିନିବେଦ ତିନିକ୍ଷର ।
ଗାୟେତ୍ରୀ ଛନ୍ଦଯେ ବୋଲାଇ । ବ୍ରହ୍ମାଣ୍ଡ ଭୋଗୋଳ ଯେ କହି ।
ଯେ ଶୁକ ସନେକ ସମ୍ବାଦ । ବ୍ରହ୍ମାଣ୍ଡ ପୁରାଣରେ ଭେଦ ।
ଅର୍ଜ୍ଜୁନ ଶୁଣି ହେଲା ତୋଷ । କହଇ ବଳରାମ ଦାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ୍ର ଆଖ୍ୟାନେ
ବ୍ରହ୍ମବିଦ୍ୟାୟାଂ ସୁ ଘନିର୍ଣ୍ଣେବ ଯୋଗଶାସ୍ତ୍ର ଶ୍ରୀକୃଷ୍ଣ ଅର୍ଜ୍ଜୁନ
ସମ୍ବାଦେ ଗାୟେତ୍ରୀ  ବେଦ କଥନେ ନାମ ଚତୁର୍ଥ ଅଧ୍ୟାୟ ।

## ପଞ୍ଚମ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

କାର୍ପଣ୍ୟ ଭାବେ ବେଦ ପୁଚ୍ଛି । ବୋଲଇ ଶୁଣ ଶିରୀ ବଛି ।
ତୁମ୍ଭେତ ବ୍ରହ୍ମାଣ୍ଡ ଠାକୁର । କିସ ପୁଚ୍ଛିବି ତୋ ପୟର ।
ତୁ ଅନ୍ତର୍ଯ୍ୟାମୀ ଜନାର୍ଦ୍ଦନ । ସମସ୍ତ ଜାଣୁ ଭଗବାନ ।
ହେ କଳ୍ପଦ୍ରୁମ ପଦ୍ମନାଭ । କୃଷ୍ଣ କେଶବ ବାସୁଦେବ ।
ହେ ବିଶ୍ୱେଶ୍ୱର ଦଇତାରି । ସଂଶୟ ମୋ ହୃଦେ ବିସ୍ତାରି ।

ଭାଗବତ ପଦ-

ରସଙ୍କ ମଧ୍ୟେ ଭୂମିରସ । ସର୍ବ ଶସ୍ତ୍ର ଗ୍ରହ ମୁଂ ଆକାଶ ।
ଯେ ପଦ ଅର୍ଥ କହ ହରି । ନମସ୍ତେ ଶଙ୍ଖ ଚକ୍ରଧାରୀ ।

### ଶ୍ରୀଭଗବାନ ଉବାଚ

ଅର୍ଜ୍ଜୁନ ବଚନେ ଗୋବିନ୍ଦ । କହନ୍ତି ପରମ ସାନନ୍ଦ ।
ଶୁଣ ହୋ ପାଥ ମନ ଦେଇ । ଯେ ପଦ ଅର୍ଥ ଦେବା କହି ।
ଅଷ୍ଟ ମାସ ସୂର୍ଯ୍ୟ ଆକାଶ । କିରଣେ ଜଳ କଲା ଶେଷ ।
ଭୂମିରୁ ଜଳ ସେ ନିଅଇ । ଆକାଶ ମଧ୍ୟେ ସଞ୍ଚରଇ ।

ଯେଣୁ ଯେ ଜଳ ଭୂମିରସ । ଶୁଣ ସୁମନେ ପଣ୍ଡୁ ଶିଷ ।

## ଅର୍ଜୁନ ଉବାଚ

ପୁଣି ଅର୍ଜୁନ ପଚାରଇ । ସଂଶୟ ଫେଡ଼ ଭାବଗ୍ରାହୀ ।
ନିର୍ଗୁଣ ନାମ ଅର୍ଥ ସାରା । କହ ନିଚୟ ଚକ୍ରଧର ।

## ଶ୍ରୀ ଭଗବାନ ଉବାଚ

ବୋଲନ୍ତି ପ୍ରଭୁ ବ୍ରହ୍ମରାଶି । ରଙ୍ଗା ଅଧରେ ମନ୍ଦହାସି ।
ଶୁଣ ହେ ପଣ୍ଡୁର ନନ୍ଦନ । ପ୍ରଳୟ ସଂସାର ବିଧାନ ।
ଅଶେଷ ବ୍ରହ୍ମାଣ୍ଡ ମଧ୍ୟରେ । ଜୀବ ଆତ୍ମାର ସଂଶନ ରେ ।
ପ୍ରଳୟ କାଳେ ଭାଜି ଯାଇ । ସର୍ବ ଆକାଶେ ଗୋପ୍ୟ ହୋଇ ।
ମୋହୋର ଶରୀର ଆକାଶ । ଗୋପ୍ୟ ଭୁବନ ଚତୁର୍ଦ୍ଦଶ ।
ଆବର ଅର୍ଥ ଶୁଣ ବୀର । ଭୂମି ଟି ଅଟଇ ଶରୀର ।
ଯେଥି ମଧ୍ୟରେ ରସ ମୁହିଂ । ମୋହୋର ରୂପ ରେଖ ନାହିଂ ।
ଯେଣୁ ମୁଂ ବୋଲାଇ ଆକାଶ । ମୋ ଦେହୁ ସକଳ ପ୍ରକାଶ ।
କହଇ ବଳରାମ ଦାସ । ଭୂମି ରସ ଟି ପୀତବାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତେ ବ୍ରହ୍ମାଣ୍ଡ ପୁରାଣ ଉକତେ
ଭୂମି ରସ କଥନେ ନାମ ପଞ୍ଚମୋଧ୍ୟାୟ ।

# ଷଷ୍ଠ ଅଧ୍ୟାୟ

## ଅର୍ଜୁନ ଉବାଚ

ପୁଣି ପୁଛଇ ପଣ୍ଡୁ ସୁତ । କାର୍ପନ୍ୟ ବିନୟ ବହୁତ ।
କହ ହେ ପତିତପାବନ । ଯେହୀ ସଂଶୟେ ମୋର ମନ ।
ଶ୍ରୀ ଭାଗବତ ଅର୍ଥ ସାର । କହ ହେ ଦେବ ଦାମୋଦର ।

## ଶ୍ରୀ ଭଗବାନ ଉବାଚ

ବୋଲନ୍ତି ଶ୍ରୀ ମଧୁସୋଦନ । ଶୁଣ ହୋ ପଣ୍ଡୁର ନନ୍ଦନ ।
ଜଳ ଯେ ମାତା ରଜ କହି । ପିତାର ବୀର୍ଯ୍ୟ ପାଷାଣଇ ।

ରଙ୍କରେ ବୀଜ ବନ୍ଦୀ ହେଲା । ରାଜ ପଦବି ଯେଣୁ ହେଲା ।
ସେ ଯେହ୍ନେ ବାନ୍ଧିତ ହୁଅଇ । ଅବଧୂତ ରାଜା ଆଗେ କହି ।
ମୁଁ ତେହ୍ନେ ବନ୍ଦୀ ହେବି ବୋଲି । ତ୍ରି ସଙ୍ଗ ଯେଣୁ ମୁଁ ତେଜିଲି ।
ଏମନ୍ତେ ଅବଧୂତ କହି । ଅର୍ଜୁନ ଶ୍ରୀହରି ବୁଝାଇ ।
ନିର୍ଗୁଣ ଅର୍ଥ ଯେ ବିଚାର । ଭଣେ ସମନାଥ କୁମର ।
ମୁଁ ବଡ଼ ଅଟଇ ପାମର । ସୁଜନେ ଦୋଷ ମୋ ନ ଧର ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ ଅର୍ଥ ସାଧ
କଥନେ ନାମ ଷଷ୍ଠମୋଧାୟ ।

## ସପ୍ତମ ଅଧ୍ୟାୟ

### ଅର୍ଜୁନ ଉବାଚ

ଶୁଣ ଯୁଜେଷ୍ଠି ସାନ ଭାଇ । କୃଷ୍ଣ ଚରଣେ ସମ୍ପାଦଇ ।
ନମସ୍ତେ କମଳାର ଈଶ । ନମସ୍ତେ ପ୍ରଭୁ ହୃଷୀକେଶ ।
ଆବର ପଦେ ମୁଁ ପୁଛଇ । ସଂଶୟ ଫେଡ଼ ଭାବଗ୍ରାହୀ ।
ଶ୍ରୀ ଯେକାଦଶ ସାର ବାଣୀ । ପୁଛଇ ତୋତେ ଚକ୍ରପାଣି ।
ଉଧବେ ଯାହା ବୁଝାଇଲ । ଉତ୍ତମ ଗ୍ୟାନ ଦେଖାଇଲ ।
ରତ୍ନ ପାଦୁକାର ଚରିତ୍ର । ସଂଶୟ ଅର୍ଥେ ଯେଉଂ ତତ୍ତ୍ୱ ।
ଉଦ୍ଧବ କେଉଂ ପାଦ ନେଲା । ବଦ୍ରିକା ଆଶ୍ରମେ ରହିଲା ।
ଯେ କଥା ବିସ୍ତାରି କହିବା । ତୋ ମନୁ ସଂଶୟ ଫେଡ଼ିବା ।

### ଶ୍ରୀ ଭଗବାନ ଉବାଚ

ଶୁଣସି ପଣ୍ଡୁର ନନ୍ଦନ । ଯାହା ପୁଛିଲୁ ଦିବ୍ୟଗ୍ୟାଂନ ।
ପୂର୍ବେ ସୁମନ ଦିଜବର । ଗମଇ ଭାରଥ ମଣ୍ଡଳ ।
ସୁପଥ ମାର୍ଗେଣ ଗମଇ । ଗମନ୍ତେ ଲୁହା ଖଣ୍ଡେ ପାଇ ।
ଲୋହା ଘେନିଣ କେତେ ଦୂରେ । ବାମେ ସୁମନ ବିପ୍ରବରେ ।
ଗମନ୍ତେ ସୁବର୍ଣ୍ଣକୁ ପାଇ । ତକ୍ଷଣେ ଲୋହାକୁ ତେଜଇ ।

ସୁବର୍ଣ୍ଣ ଘେନି ବିପ୍ରବର । ଗମିବ ଅମନ ମନ୍ଦିର ।
ଗମି ଅମନ ଭୁବନରେ । ହୀରାକୁ ଭେଟିଲା ଯୋଗରେ ।
ହୀରାକୁ ଯହୁଂ ଭେଟାଇଲା । ତକ୍ଷଣେ ସୁବର୍ଣ୍ଣ ତେଜିଲା ।
ହୀରା ଘେନିଣ ବେଗେ ଯାଇ । ଅବାଇ ମଣ୍ଡଳେ ମିଳଇ ।
ମଣ୍ଡଳ ମଧ୍ୟରେ ଖୋଜିଲା । ପରଶୁ ରତ୍ନ ଭେଟାଇଲା ।
ପରଶୁ ପରମର ପାଦ । ଶୂନ୍ୟ ଶବଦେ ଯେ ଅଭେଦ ।
ସେ ପାଦ ଅଣାକାର ସ୍ଥାନ । ଅବ୍ୟକ୍ତ ଶୂନ୍ୟ ମହାବ୍ରହ୍ମ ।
ତ୍ରିକୂଟ ମଧ୍ୟେ ଠାବ କଲା । କ୍ଲୀ ବୀଜ ମଧ୍ୟେ ହେତୁ ଦେଲା ।
ଉଧବ ହେତୁ ପଥେ ଧରି । ଧାରଣା ଯୋଗ ପରିକଳି ।
ଅର୍ଜ୍ଜୁନ ଶ୍ରୀକୃଷ୍ଣ ବୁଝାଇ । ପରମ ମୋର ସୂକ୍ଷ୍ମ ଯେହି ।
ଯାହାକୁ ରତ୍ନ ପାଦ କହି । ରତ୍ନଟି ସୁବର୍ଣ୍ଣ ଅଟଇ ।
ସୁବର୍ଣ୍ଣ ନୋହି ଶୂନ୍ୟ ସେହୁ । ହସି ବୋଲନ୍ତି ମହାବାହୁ ।
କହଇ ବଳରାମ ଦାସ । ରତ୍ନପାଦ ରାମ ମୁହାଂସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ରଚିତ ଆଖ୍ୟାନେ ରତ୍ନପାଦ
ଚରିତ୍ର କଥନେ ନାମ ସପ୍ତମୋଧ୍ୟାୟ ।

## ଅଷ୍ଟମ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ କୃତ କୃତ ହୋଇ । ଗୋବିନ୍ଦ ଚରଣେ ପୁଚ୍ଛଇ ।
ହେ ନାଥ ବ୍ରହ୍ମାଣ୍ଡ ଠାକୁର । କହ କଲୁଷ ଯାଉ ଦୂର ।
ମୁଁ ତୁମ୍ଭ ଚରଣେ କିଙ୍କର । ମୋତେ ଉଦ୍ଧାର ନାରାୟେଣ ।
ଶ୍ରୀ ଭାଗବତ ତତ୍ତ୍ୱଗ୍ୟାଂନ । ପୁଚ୍ଛଇ ତୁମ୍ଭର ଚରଣ ।
ଛଡ଼ ଚକ୍ର ମଧ୍ୟେ ଭେଦିଣ । ଛଡ଼ ଦ୍ୱାଦଶ ପ୍ରକାରେଣ ।
ଦ୍ୱାଦଶ ଶବଦର ନାମ । ମୋତେ କହିବା ନାରାୟେଣ ।

ଭଗବତ ପଦ–

ଯେ ଛଡ଼ ଚକ୍ର ଭେଦି ସ୍ୱରେ । ଶବଦ ଦ୍ୱାଦଶ ପ୍ରକାରେ ।

## ଶ୍ରୀ ଭଗବାନ ଉବାଚ

ଶ୍ରୀହରି ବୋଲନ୍ତି ଅର୍ଜ୍ଜୁନ । ଯାହା ପୁଚ୍ଛଇ ବ୍ରହ୍ମଗ୍ୟାନ ।
ଶୁଣ ହୋ ଦୃଷ୍ଟାନ୍ତର ଅର୍ଥ । ଗୋଧିକା ଘାଟ ପରେ ତତ୍ତ୍ୱ ।
ସେ ଭୂମି ଅଖଣ୍ଡ ମଣ୍ଡଳ । ପୁଷ୍କରଣୀ ତହିଂ ଅମୂଲ୍ୟ ।
ଇହିଂ ସପତ ତାଳ ଜଳ । ପଦ୍ମ କି ଫୁଟଇ ନିର୍ମଳ ।
ସହସ୍ରେ ପାଖୁଡ଼ା ପଦ୍ମର । ଭ୍ରସଳ କୂଳ ଅଗୋଚର ।
ପାଖୁଡ଼ା ଗୋଟିକେ ଭମର । ସହସ୍ରେ ଲେଖାଂ ଯେ ହୋ ବୀର ।
ମଧୁ ଲୁବୁଧେ ବସିଛନ୍ତି । କେଶର କେବେ ନ ତେଜନ୍ତି ।
ସେ ପଦ୍ମ ମୂଳ ଅଗୋଚର । ନ ଜାଣେ ବ୍ରହ୍ମାଦି ଶଙ୍କର ।
ପୁଷ୍କରିଣୀ ମଧ୍ୟରେ ସାର । ସ୍ତମ୍ଭେକ ଅଛଇ ହୋ ବୀର ।
ସମୀର ସ୍ତମ୍ଭ ସେ ଅଟଇ । ତଦଗ୍ରେ ହଂସ ବସିଥାଇ ।
ସେ ହଂସ ଜପଇ ମୁଖରେ । ରାମ ଶବଦ ନିରନ୍ତରେ ।
ସେ ଷଡ ପଦ୍ମରେ ଭେଦଇ । ଦ୍ୱାଦଶ ପ୍ରକାରେ ଶୁଭଇ ।
ସକଳ ବ୍ରହ୍ମଋଷିମାନେ । ସାଧନ୍ତି ଯେକାଗ୍ର ଧିଆନେ ।
ତାଙ୍କ କର୍ଣ୍ଣକୁ ହୋ ଅର୍ଜ୍ଜୁନ । କିବା ଘଟେ ନାଦ ପ୍ରମାଣ ।
କି ଅବା ରବା ବାଜୁଥାଇ । କିବା ମର୍ଦ୍ଦଳ ଶବ୍ଦ ବାଇ ।
କି ଅବା ବଂଶୀ ଯେ ପ୍ରମାଣ । କି ଅବା ମନ୍ଦ୍ର ନାଦ ଶୂନ୍ୟ ।
କଂସାଳ ପ୍ରାୟେକ ଶୁଭଇ । ଡମ୍ବୁର ନାଦ ଭେଦି ରହି ।
ଶଙ୍ଖ କାହାଳୀ କି ବାଜଣ । ମୁରଲୀ ମଞ୍ଜୁଳ ପ୍ରମାଣ ।
ଯେମନ୍ତେ ଦ୍ୱାଦଶ ଶବଦ । ଛଡ଼ ଚକ୍ରରେ ଶୂଳ ନାଦ ।
ଯେକୋଇଶ ସହସ୍ର ଜାଣ । ଶତ ଶତ ତାର ଭଜନ ।
ଆଠ ସହସ୍ର ଯେ ଆଠଶ । ଅଠାଶୀ ବେଳ ବାୟୁଭ୍ୟାସ ।
ଯେତେକ ଜୀବର ଭଜନ । ଯେ ରାମ ଶବଦ ଅର୍ଜ୍ଜୁନ ।
ଯେ ଘଟେ ସାଧନ କରିବୁ । ନିଚୟେ ଶବଦ ଶୁଣିମୁ ।
ଯେ ପଦ ଅର୍ଥ ଯେ ବିଚାର । ଶୁଣ ସୁମନ ମାହାବୀର ।
କହଇ ବଳରାମ ଦାସ । ଶବ୍ଦେ ନିତ୍ୟେ ମୋର ଆଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳେ ଦ୍ୱାଦଶ ଶବଦ ଭେଦ
କଥନେ ନାମ ଅଷ୍ଟମୋଧ୍ୟାୟ ।

# ନବମ ଅଧ୍ୟାୟ

## ଅର୍ଜ୍ଜୁନ ଉବାଚ

କିରୀଟୀ ସନ୍ତୋଷ ହୋଇଲା । ଶ୍ରୀକୃଷ୍ଣ ବଚନ ଶୁଣିଲା ।
ବୋଲଇ ଶୁଣ ବିଶ୍ୱେଶ୍ୱର । କହିଲ ଶବଦ ବିଚାର ।
ଆବର ଭଗବତ ପଦ । ପୁଛଇ ଅର୍ଥ ଯଥା ଭେଦ ।
ଭାଗବତ ପଦ-
କଶ୍ୟପ ଋଷି କେହ୍ନୁ ହୋଇ । ବାଳଖେଳା କେହ୍ନୁ ବୋଲାଇ ।
କାହ୍ନୁଂ ସେ ବାଳକ ଜନ୍ମିଲା । ବଛ ପାଦରେ ସେ ବୁଡ଼ିଲା ।
ଯେ ବାକ୍ୟେ ସଂଶୟ ମୋହୋର । ଛେଦ ହେ କମଳାର ବର ।
ଦିନେକ ଘେନି ଯେକ ଡାଳେ । ପଡ଼ିଲେ ବକ୍ଷ ପାଦ ତଳେ ।

## ଶ୍ରୀଭଗବାନ ଉବାଚ

ଶୁଣ ଅର୍ଜ୍ଜୁନ ମନ ଦେଇ । ଯେଥିର ଅର୍ଥ ଦେବା କହି ।
ପୂର୍ବେ କଶ୍ୟପ ଋଷି ଥିଲେ । ଗଙ୍ଗା କୂଳରେ ତପ କଲେ ।
ଉଭାଣୀ ସ୍ନାନ କରିଯାଇ । ଋଷି ଦେଖିଣ ମୋହ ହୋଇ ।
ତକ୍ଷଣେ ବିନ୍ଦୁ ଉଚ୍ଛୁଳିଲା । ଗଙ୍ଗା ବାଲିରେ ସେ ପଡ଼ିଲା ।
ବାଳକ ଯବ ପ୍ରମାଣରେ । ଜନ୍ମିଲେ ସେ ବିନ୍ଦୁ ରେଣୁରେ ।
ଷାଠିଯେ ସହସ୍ର ବାଳୁତ । ସମସ୍ତ ହୋଇ ଉର୍ଧରେତ ।
ଋଷି ତାହାଙ୍କୁ ମନ୍ତ ଦେଲେ । ଯଜ୍ଞକୁ କାଳ ଆଣ ବାଳେ ।
ଋଷିଙ୍କ ଆଗ୍ୟାଂରେ ବାଳୁତ । ଗମନ୍ତି ଊର୍ଦ୍ଧ୍ୱ ବନ ପଥ ।
ଯେମନ୍ତେ ତନୟେ ଗମନ୍ତି । ବନସ୍ତୁ କାଠ ସେ ବହନ୍ତି ।
ଯେକଇ ଦିନେ ବହୁ ବଳା । ଆଣନ୍ତେ ବଡ଼ କାଠ ଭେଳା ।
ଶ୍ରୀ ବଛ ନାମ ଯେ ବୋଲାଇ । ଗଙ୍ଗା ତାଙ୍କ ପାଦୁଂ ଝରଇ ।
ସେ ବଛ ଜଳରେ ବୁଡ଼ିଲେ । ଆରତେ କୃଷ୍ଣ ସ୍ମରିଲେ ।
ତକ୍ଷଣେ ଦୀବ୍ୟ ମୂର୍ତ୍ତି ଧରି । ବାଳୁତ ସଙ୍କଟୁ ଉଦ୍ଧାରି ।
ତାହାଙ୍କୁ ବର ଯାଚି ଦେଲେ । ଗୋପରେ ଗୋପୀ ହୁଅଁ ଭଲେ ।
ଆବର ପ୍ରକାରେ କହିବା । କୂର୍ମ ପୁରାଣେ ବତାଇବା ।
ଯେକେ ବଇଶାଖ ମାସରେ । ଯଜ୍ଞ କରନ୍ତି ଗଙ୍ଗାକୂଳେ ।
ଗଙ୍ଗା ରେଣୁ ତପତି ବେଳ । ଚାଲନ୍ତି ସେ ରେଣୁରେ ବାଳ ।

ସେ ବଛ ବାଳୁତ ସମସ୍ତ । ପାଦକୁ ଲାଗିଲା ତପତ ।
ସମସ୍ତେ ଯେକ ମୁଖ ହେଲେ । ଆରତେ ମତେ ସୁମରିଲେ ।
ମୋ ପାଦପଦ୍ମ ଛତ୍ରାକାର । ଛାୟା କରଇ ଆକାଶର ।
ତେବେ ସମସ୍ତେ ଶୀତଳରେ । ଗମିଲେ ସେ ଗଙ୍ଗା ବାଲିରେ ।
ଆରକ ଅର୍ଥ ଶୁଣ ବୀର । କହିବା ବ୍ରହ୍ମାଣ୍ଡ ଭୋଗୋଳ ।
କାୟା ଯେ କାଶ୍ୟପ ବୋଲାଇ । ବାଳଖିଲା ଦଶଦ୍ୱାର ରହି ।
ଯେ ଦେହ କାଠ ଯେ ବୋଲାଇ । ଦ୍ୱାର ମାନକେ ଶବ୍ଦ ବହି ।
ଯେ ଦିନ ଅନ୍ତ କାଳ ହୋଇ । ସେ ଦିନ ଯଜ୍ଞ ସେ ରହଇ ।
ସକଳ ଦ୍ୱାରକୁ ଛାଡ଼ିଲେ । ଯେକଇ ବାଟେ ବହିଗଲେ ।
ବିଶାଶଯେ ଆଙ୍ଗୁଳ ବହି । ସେ କାଠ ଯେତେ ଲମ୍ବ ହୋଇ ।
ସେ ଦିନ ଊର୍ଦ୍ଧ୍ୱେଗ୍ୟାନ କଲେ । ଶୂନ୍ୟ ବଛ ପାଦେ ଗମିଲେ ।
ତୁ ବୋଲୁ ଷାଠୀଯେ ସହସ୍ର । କେମନ୍ତେ ବାଳେକ ବିଶେଷ ।
ଦକ୍ଷିଣ ନାସା ଦ୍ୱାରେ ପାଥ । କୋଡ଼ିଯେ ସସ୍ର ଦ୍ୱାର ତତ୍ତ୍ୱ ।
ବାମ ନାସାରେ ହେ ଅର୍ଜୁନ । ଚାଳିଶ ସସ୍ର ଦ୍ୱାର ଘେନ ।
ଯେମନ୍ତେ-ଷାଠୀଯେ ସହସ୍ର । ଗମିଲେ ସର୍ବେ ଊର୍ଦ୍ଧଦେଶ ।
ସେ ଉଧେ ଦେଖ ବସ ପାଦ । ତହିଁରେ ସର୍ବେ ହେଲେ ଭେଦ ।
କହଇ ବଳରାମ ଦାସ । ସୁଜନେ ନ ଧର ମୋ ଦୋଷ ।
ଯେ କୂର୍ମ ପୁରାଣ ଚରିତ୍ର । ଅର୍ଜୁନ କହେ ପଦ୍ମନେତ୍ର ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ କଥନେ
କୂର୍ମ ପୁରାଣ ଉକ୍ତେ ନାମ ନବମୋଧ୍ୟାୟ ।

## ଦଶମ ଅଧ୍ୟାୟ

### ଅର୍ଜୁନ ଉବାଚ

ପୁଣି ଅର୍ଜୁନ ବିକଳରେ । ପୁଛେ ଶ୍ରୀହରି ପାଦତଳେ ।
କହ ହେ କମଳା ବିଳାସ । ଯେ ମୋର ତାପ ଯାଉ ନାଶ ।
ଆବର ସଂଶୟ ପୁଛଇ । କହିବା ମୋତେ ଭାଗଗ୍ରାହୀ ।
ଯେମନ୍ତେ ବିଦେହ ରାଜନ । ମନେ ବିଚାରି ତତ୍ତ୍ୱଗ୍ୟାନ ।

## ଶ୍ରୀ ଭଗବାନ ଉବାଚ

ଶ୍ରୀକୃଷ୍ଣ ବୋଇଲନ୍ତି ହେ ପାର୍ଥ । କହିବା ସାର ପଦ ଅର୍ଥ ।
ଶୁଣ ଅର୍ଜୁନ ମନ ଦେଇ । ବିଦେହ ଜୀବ ଆତ୍ମା କହି ।
ସର୍ବଦା ଯେ ଦେହ ନ ରହି । ତେଣୁଟି ବିଦେହ ବୋଲାଇ ।
ମନଟି ବିଦେହ ପ୍ରମାଣ । ରାଜା ପୁଛଇ ଚଇତନ୍ୟ ।
ମନରେ ତତ୍ତ୍ୱ ଗ୍ୟାଂନ ସାର । ପୁଚ୍ଛଇ ତ୍ରିବିଧି ପ୍ରକାର ।
ଯେ ରୂପେ ଯେ ପଦ ବିଚାର । ଅର୍ଜୁନ କହେ ଚକ୍ରଧର ।
କହଇ ସମନାଥ ସୁତ । ବ୍ରହ୍ମାଣ୍ଡ ଭୋଗୋଳର ଅର୍ଥ ।
ଯେ କୂର୍ମ ପୁରାଣର ବାଣୀ । ଅର୍ଜୁନ କହେ ଚକ୍ରପାଣି ।

ଇତିଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ କଥନେ କୂର୍ମ ପୁରାଣ
ଉକ୍ତେ ନାମ ଦଶମ ଅଁଧ୍ୟାୟ ।

# ଏକାଦଶ ଅଧ୍ୟାୟ

## ଶ୍ରୀଭଗବାନ ଉବାଚ

କହନ୍ତି ଦେବ ଦଇତାରି । ଶୁଣ ଅର୍ଜୁନ ହେତୁ କରି ।
ବିଦେହ ଚରିତ କହିବା । ତୋ ଚିତ୍ତୁ ସଂଶୟ ଫେଡ଼ିବା ।
ପୂର୍ବେ ବିଦେହ ନୃପବର । ପଶିଲା ଅଗମ୍ୟ କନ୍ଦର ।
ବହୁତ ତପ ଆଚରିଲା । ଭକ୍ତିରେ କୃଷ୍ଣ ନାମ ରସିଲା ।
ଯେମନ୍ତେ ମନୁ ଯୁଗ ଅନ୍ତେ । ଶୁଣ ଅର୍ଜୁନ ଦେଇ ଚିତ୍ତେ ।
ନିଦ୍ରା ସମୟେ ନରହରି । କହିଲେ କର୍ଣ୍ଣେ ଗୋପ୍ତ କରି ।
ବୋଇଲେ ଶୁଣ ନୃପବର । ଦେହ ଛାଡ଼ି ଦ୍ରଶନ କର ।
ତେବେ ତୁ ଦେଖିବୁ ଆମ୍ଭଙ୍କୁ । ଯୋଗେଣ ଜିଣିବୁ ଦେହଙ୍କୁ ।
ମୋର ବଚନେ ନୃପବର । ଜ୍ୟୋତିରେ ପଶି ଆସ ଖର ।
ଭ୍ରମର ଗୁମ୍ଫା ସଳଖରେ । ତେଣୁ ଡମ୍ବରୁ ଶିଖା ଘରେ ।
ଗ୍ୟାନ ପ୍ରଦୀପ ଲଗାଇଲା । ତହିଁରେ ଶ୍ୱରୀର ଧ୍ୱଂସିଲା ।
ଛାୟାମତ ହୋଇଣ ପାର୍ଥ । ଉଭା ହୋଇଲି ମୁଂ ଅଗ୍ରତ ।

ମୋତେ ଦ୍ରଶନ ଦୃଢ଼େ କଲା । ସକଳ ସଂଶୟ ଛେଦିଲା ।
ମୁଂ ତାକୁ ପ୍ରସନ ହୋଇଲି । ବିଦେହ ନାମ ତାକୁ ଦେଲି ।
ବୋଇଲା ଯେ ଦେହ ପ୍ରପଞ୍ଚ । ଯେହି ତ ସାକ୍ଷାତେ ଶ୍ରୀବଛ ।
ଯେ ଦେହ ଛାଡ଼ି ମୁ ଦ୍ରଶନ । କରିବି ପ୍ରଭୁ ଭଗବାନ ।
ଯେଣୁ ଯେ ଦେହକୁ ତେଜିଲା । ମୋ ପାଦେ ଦ୍ରଶନ ସେ କଲା ।
ଯେଣୁ ବିଦେହ ନାମ ବହି । ପାଥକୁ କହେ ଭାବଗ୍ରାହୀ ।
ଭଣଇ ବଳରାମ ଦାସ । କୃଷ୍ଣ ଚରିତେ ମୋର ଆଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ କଥନେ
ବ୍ରହ୍ମାଣ୍ଡ ପୁରାଣେ ନାମ ଏକାଦଶ ଅଧ୍ୟାୟ ।

## ଦ୍ୱାଦଶ ଅଧ୍ୟାୟ

### ଶ୍ରୀ ଭଗବାନୁବାଚ

ବୋଲନ୍ତି ଶ୍ରୀମଧୁସୋଦନ । ଶୁଣ ହୋ ପାର୍ଥ ଦେଇ ମନ ।
ଗ୍ୟାଂନର ତତ୍ତ୍ୱ କହିଦେବା । ତୋ ମନୁ ସଂଶୟ ଫେଡ଼ିବା ।
ଯେ ଅଣାକାର ଶୂନ୍ୟ ଭୂଇଂ । ତହିଂରେ ଚନ୍ଦ୍ର ସୂର୍ଯ୍ୟ ନାହିଂ ।
ଯେ ଯେତେ ଯାଗ ଯଜ୍ଞ ମାନ । ସେ ଥାନେ ନାହିଂ ହୋ ଅର୍ଜୁନ ।
ସେ ବ୍ରହ୍ମ ରୂପ ନିର୍ବିକଳ୍ପ । ଅନାଦି ପରମ ଅଗୋପ୍ୟ ।
ଉତୁଶୀ ପୁଷ୍ପ ପ୍ରାୟେ ବର୍ଣ୍ଣ । ତା ମଧ୍ୟେ ପ୍ରଭୁ ନିରଞ୍ଜନ ।
ତା ମଧ୍ୟେ ଜ୍ୟୋତି ବ୍ରହ୍ମ ରହି । ତା ମଧ୍ୟେ ବାଳୁତ ଦିଶଇ ।
ବାଳୁତ ମଧ୍ୟେ ମହାବ୍ରହ୍ମ । ସେ ବ୍ରହ୍ମ ସକଳ ଘଟଣ ।
ଯେହି ସେହି ହୋଏ ଲେଖାଇ । ଲେଖା ଲେଖନ ଯହିଂ ନାହିଂ ।
ସେ ସ୍ଥାନେ ମନ୍ତ୍ର ଯନ୍ତ୍ର ନାହିଂ । କଥନ ବେଦ ଶାସ୍ତ୍ର କହି ।
ଯେ ଯେତେ ଛତିଶ ସ୍ମୃତି । ଅଷ୍ଟାଦଶ ପୁରାଣ ସ୍ଥିତି ।
ବୋଲଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୋଗୋଳ ସାରାଂଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ୍ର କଥନେ
ବ୍ରହ୍ମାଣ୍ଡ ପୁରାଣେ ନାମ ଦ୍ୱାଦଶୋଧ୍ୟାୟଃ

# ତ୍ରୟୋଦଶ ଅଧ୍ୟାୟ

## ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ପଚାରଇ ମୁହିଂ । ସଂଶୟ ଲାଗିଲା ଗୋସାଇଂ ।
ଆରକ ପଦର ବିଚାର । ପୁଚ୍ଛଇ ତୋତେ ଦାମୋଦର ।
ଶ୍ରୀ ଭାଗବତ ପଦ ଭେଦି । ନିଗମ ବାକ୍ୟ ଯେ ପ୍ରସିଦ୍ଧି ।

**ଭାଗବତ ପଦ –**

ସୁଚନ୍ଦ୍ର କିରୀଟୀ ଅଗ୍ରତେ । ତୋ ପାଦ ରେଣୁରେ ଭୂମିତେ ।
ଯେହା ପୁଚ୍ଛଇ ତୋର ପାଦେ । କହିବା ମୋତେ ଅପ୍ରମାଦେ ।
ପାର୍ଥ ବଚନେ କମ୍ବୁପାଣି । କହନ୍ତି ତତ୍ତ୍ୱକୁ ବଖାଣି ।

## ଶ୍ରୀ ଭଗବାନ ଉବାଚ

ଶୁଣ ଅର୍ଜ୍ଜୁନ ତତ୍ତ୍ୱ ଅର୍ଥ । ସୁର ଯେ ଦେବତା ସମସ୍ତ ।
ଇନ୍ଦ୍ରାଦି ଦେବଗଣ ଯେତେ । ତୋ ପାଦେ ସ୍ତୁତି କଲେ ଚିତ୍ତେ ।
କିରୀଟୀ ମକୁଟ ଆବର । ନମସ୍ତେ ତୋହର ପୟର ।
ତୋ ପାଦ ତୋର ରେଣୁମାନ । ମକୁଟ ଦିଶେ ରେଣୁ ସମ ।
ଯେମନ୍ତେ ତୋର ପାଦ ଗତି । ଦେବେ ବୋଲିଣ କଲେ ତୁଷ୍ଟି ।
ଯେବେ ହୋ ଶୁଣ ପଣ୍ଡୁସୁତ । ମୋହର ପାଦଟି ଯେମନ୍ତ ।
ଯେ ପଦ ଯେ ଅର୍ଥ ବିଚାର । ଅର୍ଜ୍ଜୁନ କହେ ଦାମୋଦର ।
କହଇ ବଳରାମ ଦାସ । ଜନ୍ମେ ଜନ୍ମେ ମୁଂ କୃଷ୍ଣ ଦାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୌଗୋଳ ଚରିତ କଥନେ
ନାମ ତ୍ରୟୋଦଶ ଅଧ୍ୟାୟ ।

# ଚତୁର୍ଦ୍ଦଶ ଅଧ୍ୟାୟ

## ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ବୋଲଇ ଗୋସାଇଂ । ଭାଷାଯେ ପଚାରିବି ମୁହିଂ ।
ତୁମ୍ଭେ କହିଲ ଯେତେ ଅର୍ଥ । ବ୍ରହ୍ମାଣ୍ଡ ଭୌଗୋଳ ଚରିତ୍ର ।
ନ୍ୟାୟେ ସାହାସ୍ର ଅର୍ଥ ସାର । ବୁଝାଇ ମୋତେ ଦାମୋଦର ।

ଆବର ପଦ ଅର୍ଥ ତତ୍ତ୍ୱ । ପୁଛଇ ବାରେ ନନ୍ଦ ସୁତ ।
ବ୍ରହ୍ମାଣ୍ଡ ଫାଟି ବେଦ ବଳେ । ଗଙ୍ଗା ପଡ଼ିଲା ରାସାନ୍ତଳେ ।
ଶୁକ ପରୀକ୍ଷିତେ ବୁଝାଇ । ଉଧବେ କହିଛ ଗୋସାଇଂ ।
ଠିକ ଠିକ୍ ପଦ ବିଚାର । ପୁଛଇ କହ ଚକ୍ରଧର ।
କିରୀଟୀ ବଚନେ ଶ୍ରୀହରି । କହନ୍ତି ଭୋଗୋଳ ବିସ୍ତାରି ।

## ଶ୍ରୀ ଭଗବାନ ଉବାଚ

ଶୁଣ ହୋ ଅର୍ଧ ଅଙ୍ଗ ମୋର । ସେ କାଳେ ବାବନ ଶ୍ୱରୀର ।
ବଳୀ କି ପାତାଳେ ଚାପଇ । ପାଦୁଂ ଝଳକି ଗଙ୍ଗା ବହି ।
ଯେ ପାଦ ଲାଭି ପଦ୍ମ ମୋର । ଗଲାକ ଆକାଶ ମଣ୍ଡଳ ।
ବ୍ରହ୍ମା ଯେ ଗଙ୍ଗା ଗୋପ୍ତରେ । ରଖିଣ ଥିଲା କମଣ୍ଡଳେ ।
ଉଦକ ପାଇବ ବୋଲିଣ । ଢାଳିଲା ଚତୁର ଆସନ ।
ସେ ପାଦ ବଳୀ ମସ୍ତକରେ । ଦେଲି ମୁଂ ଅତି ମାୟା ବଳେ ।
ସେ ପାଦୁଂ ଗଙ୍ଗା ଝଲକିଲା । ପାତାଳ ଭୁବନ ବହିଲା ।
ଯେଣୁ ମୋ ପାଦେ ଗଙ୍ଗା ଥିଲା । ଝଳକି ପାତାଳେ ରହିଲା ।
ଯେ ରୂପେ ଯେ ପଦର ଅର୍ଥ । ଅର୍ଜ୍ଜୁନ କହେ ପଦ୍ମନେତ୍ର ।
ବୋଲଇ ବଳରାମ ଦାସ । କୃଷ୍ଣର ଭୃତ୍ୟ ପାଦେ ଆଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ କଥନେ
ନାମ ଚତୁର୍ଦ୍ଦଶ ଅଧ୍ୟାୟ ।

## ପଞ୍ଚଦଶ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ପ୍ରଣାମ କରି କୃଷ୍ଣ ପାଦ । ଅର୍ଜ୍ଜୁନ ଶୋକ ଗଦ ଗଦ ।
ବୋଲଇ ଶୁଣ ଚକ୍ରଧର । ଘୋର ସଂକଟ ଯେ ସଂସାର ।
ଯେ ଭବ ଜଳଧିର ମଧ । ତୋ ନାମ ଭଗତଙ୍କ ନାବ ।
ତୋ ବିନୁ ଅନ୍ୟ ଗତି ନାହିଁ । ନମୋ ଗୋବିନ୍ଦ ତ୍ରାହି ତ୍ରାହି ।
ଯେକଇ ପଦ ମୋ ହୃଦରେ । ପ୍ରବେଶ ତୋ ପାଦ କମଳେ ।

**ଭାଗବତ ପଦ-**

ଅଜାତ ପଛି ଘୋର ବନେ । ମାତା ଲୋଡ଼ଇ ଅନୁକ୍ଷଣେ ।

ଶ୍ରୀ ଭାଗବତ ପାଦ ଯେହି । ବୁଝାଇ କହ ଭାବଗ୍ରାହୀ ।
ଅର୍ଜ୍ଜୁନ ବିନୟ ବଚନେ । ଶୁଣି କହନ୍ତି ଭଗବାନେ ।

## ଶ୍ରୀ ଭଗବାନ ଉବାଚ

ଶୁଣ ହୋ ଯୁଦ୍ଧିଷ୍ଠିର ଭାଇ । ଯେ ପଦ ଅର୍ଥ ଦେବା କହି ।
ଅଜାତ ଶୂନ୍ୟଂ ଜନ୍ମ ହୋଇ । ଶୂନ୍ୟରେ ଡିମ୍ବେକ ପାଡ଼ଇ ।
ଡିମ୍ବ ପାଡିଣ ମାତା ଗଲା । ଅବନୀ କୋଳେ ଗୋପ୍ୟ ହେଲା ।
ଶାଖା ତାହାର କେହି ନାହିଁ । ଶାଖା ତା ପଞ୍ଚଭୂତ ହୋଇ ।
ଗାଆ ତାହାର ମାତୃ ହୋଇ । ମଅ ଶବଦ ପିତା କହି ।
ଯେ ବେନି କ୍ଷର ମଧ୍ୟେ ସାର । ଅଜାତ ଅଣାକାର ବୀର ।
ତାହାର ଜାତ ମୃତ୍ୟୁ ନାହିଁ । ଘଟେ ଛାଡ଼ି ଘଟେ ରହଇ ।
ଚର ଅଚର ଯେତେ ଜୀବ । ସେହୁ ଦେହରେ ମୋର ଠାବ ।
ଘୋର ବନସ୍ତ ଦେହ କହି । ଯେଥିରେ ମାତାକୁ ଲୋଡ଼ଇ ।
ରାମ ଯେ ବେନି ମାତା ପିତା । ତାକୁଛି ଶୂନ୍ୟେ ଉର୍ଦ୍ଧରେତା ।
ଯେମନ୍ତେ ଶୁଣି ପଣ୍ଡୁସୁତ । ବୋଲଇ ଶୁଣ ଜଗନ୍ନାଥ ।
ଦେହର ବିଚାର କହିଲ । ପରମାର୍ଥକୁ ଗୋପ୍ୟ କଲ ।
ଯେ ପରମାର୍ଥର ବିଚାର । ମୋତେ କହିବା ବିଶ୍ୱେଶ୍ୱର ।

## ଶ୍ରୀ ଭଗବାନ ଉବାଚ

ଶ୍ରୀହରି ବୋଲନ୍ତି ହୋ ପାର୍ଥ । ଯୋଗାଯୋଗରୁ ପୁତ୍ର ଜାତ ।
ଛୁଆ ସେ ଡିମ୍ବରେ ଅଛଇ । କେତେ କାଳେ ଡିମ୍ବ ଫୁଟଇ ।
ସେ ପୁତ୍ର ଗୃହରେ ଥୋଇଣ । ତା' ପିତା ବନେ ଗବନ ।
ଆଧାର ପାଇଂ ବନେ ଯାଇ । ଆଧାର ଖୋଜନ୍ତି ସେ ଦୁଇ ।
ଆସନ୍ତେ ଉଛୁର ହୋଇଲା । ତେଣୁ ପୁତ୍ରକୁ କ୍ଷୁଧା କଲା ।
ପଛି ତାଙ୍କର ଜନ୍ମି ନାହିଁ । ଗୃହରୁ ଉଡି ବେଗେ କାହିଁ ।
ତେଣା ତାଙ୍କର ଜନ୍ମି ନାହିଁ । ଯେଣୁ ଅଜାତ ନାମ ହୋଇ ।
ଯେଣୁ ମାତାଙ୍କୁ ସେ ଲୋଡନ୍ତି । କ୍ଷୁଧାରେ ଆକୁଳ ହୁଅନ୍ତି ।
ଅଜାତ ଖଗ ପକ୍ଷୀ ଯେହ୍ନେ । ମାତା ଲୋଡ଼ଇ ଅନୁକ୍ଷଣେ ।
କ୍ଷୁଧାର୍ଥୀ ହୋଇଣ ବାଛୁରୀ । ମାତା ଥନକୁ ଆଶ୍ରେ କରି ।
ସ୍ୱାମୀକି ପତିବ୍ରତା ଯେହ୍ନେ । ମୋ ମନ ତୋ ପାଦେ ତେସନେ ।

ଯେ ରୂପେ ଯେ ପଦ ବିଚାର । ଅର୍ଜ୍ଜୁନ କହେ ଚକ୍ରଧର ।
କହଇ ସମନାଥ ସୁତ । ଉଧର ମୋତେ ପଦ୍ମ ନେତ୍ର ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୌଗୋଳ ଅଜାତ ପକ୍ଷୀ ଚରିତ
କଥନେ ନାମ ପଞ୍ଚଦଶ ଅଧ୍ୟାୟ ।

## ଷୋଡଶ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ କୃଷ୍ଣ ପାଦ ଧରି । ବୋଲଇ ଆହେ ଦଇତାରି ।
ବିବିଧ ସଂଶୟ ବିଚାର । ପୁଛଇ ତୁମ୍ଭର ପୟର ।
ମୁଂ ବଡ଼ ଅଗ୍ୟାଂନ ଅଟଇ । ଗ୍ୟାଂନ ଗୋଚର ମୋର ନାହିଂ ।
କୂର୍ମ ପୁରାଣର ଭକତ । ପୁଚ୍ଛଇ ବାରେ ଯଦୁନାଥ ।
ଯେମନ୍ତେ ଅବନୀ ନଗରୀ । ସେ କନ୍ୟା ସୁବର୍ଣ୍ଣ କେଶ୍ୱରୀ ।
ସେ କନ୍ୟା ବିଧବା ହୋଇଲା । ତା ପତି ବସି ଶୋକ କଲା ।
କନ୍ୟାର ପତି ନାଶ ଯାଇ । କନ୍ୟା ତା ବିଧବା ହୁଅଇ ।
ପତି ତା ଦ୍ୱାରକାହିଂ କାନ୍ଦି । କହିବା ଯେଥିର ଯେ ସନ୍ଧି ।

### ଶ୍ରୀ ଭଗବାନ ଉବାଚ

ବୋଲନ୍ତି କମଳା ବିଳାସ । ଶୁଣ ସୁମନେ କୋନ୍ତୀ ସୁତ ।
କେତକୀ ପୁଷ୍ପ କନ୍ୟା କହି । ତାହାର ପତି ଭ୍ରମ ରହିଂ ।
ସେ ତାକୁ ଚୁମ୍ବି ନ ପାରିଲା । ତେଣୁ ସେ ଆକୁଳେ କାନ୍ଦିଲା ।
କେଶ୍ୱରେ ରେଣୁ ତା ଚକ୍ଷୁରେ । ପଡ଼ନ୍ତେ କାନ୍ଦଇ ଆକୁଳେ ।
ତେଣୁ ବିଧବା ଭାବେ କହି । ଅର୍ଜ୍ଜୁନ ଶ୍ରୀହରି ବୁଝାଇ ।
ଯେ କୂର୍ମ ପୁରାଣ ଚରିତ୍ର । ଶୁଣ ସୁମନେ କୋନ୍ତୀ ସୁତ ।
କହଇ ବଳରାମ ଦାସ । ଯେ ନିନ୍ଦେ ସେହି ପାପୀ ଅଂଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୌଗୋଳ କଥନେ ବିଧବା
କନ୍ୟା ଚରିତ୍ର କଥନେ ନାମ ଷୋଡଶୋଧ୍ୟାୟ ।

# ସପ୍ତଦଶ ଅଧ୍ୟାୟ

## ଶ୍ରୀ ଭଗବାନ ଉବାଚ

ବୋଲନ୍ତି ପ୍ରଭୁ ଚକ୍ରପାଣି । ଶୁଣ ଅର୍ଜୁନ ଗ୍ୟାଂନ ବାଣୀ ।
ଯେ ଗ୍ୟାଂନ ତହିଂ ଉପଦେଶ । ଜାଣିଲେ ତାପ ହୋଏ ନାଶ ।
ଗୃହ ଯେସନ ଅନ୍ଧକାର । ପ୍ରଦୀପ ଜାଳନ୍ତେ ନିର୍ମଳ ।
ତେମନ୍ତ ମୋହର ବଚନ । ପ୍ରଦୀପ ଅଟଇ ଅର୍ଜୁନ ।
ସଂସାରେ ମୂଢ଼ ପ୍ରାଣୀମାନେ । ଗ୍ୟାଂନ ନ ଜାଣି ଟାଣ ପଣେ ।
ମିଛେହେଂ ଟାଣି ହଉଥାନ୍ତି । ଆମ୍ଭେ ଗ୍ୟାଂନ ଜାଣୁ ବୋଲନ୍ତି ।
ସାକ୍ଷୀ ଶବଦ ଶିଖିଥାନ୍ତି । ପ୍ରାଣୀକି ଦେଖିଲେ ପଢ଼ନ୍ତି ।
ଦୁହାରେ କେ ତାହା ଶିଖିଣ । ମିଛେହେଂ କହୁଥାନ୍ତି ଟାଣ ।
କେ ଅବା ଶ୍ଳୋକ ସ୍ତୁତି କରେ । ଭଣ୍ଡାଉଥାନ୍ତି ନାନାକାରେ ।
ଗୀତା କବିତା ଯନ୍ତ ଜାଣି । ନାନା ପ୍ରକାରେ ବିଦ୍ୟା ବାଣୀ ।
କେ ଅବା ସଂସାରେ ସାଗରେ । ବୈଷ୍ଣବ ବେଶ ନିରନ୍ତରେ ।
ମାଳା ତିଳଖ ଧରିଥାନ୍ତି । ବ୍ୟଅର୍ଥେ ସଂସାରେ ଭ୍ରମନ୍ତି ।
ଜଟା ବିଭୂତି କେ ଭୂଷଣ । କେ ଫଳ ଆହାର କରିଣ ।
କେ ବ୍ରତ ବାର ନିଅମରେ । କେ ତୀର୍ଥ ସାଗରକୁ ଗଲେ ।
କେ ନାନା ତୀର୍ଥରେ ଭ୍ରମଇ । କେ ବା ନିଶୋହା ହୋଇ ରହି ।
କପିଳ ବାସ କେ କପ ସ । କେ ଉର୍ଦ୍ଧରେତା ବନବାସ ।
ଯେ ସର୍ବ ମିଥ୍ୟା ହୋ ଅର୍ଜୁନ । ମୁଇ ସତ୍ୟ ଗ୍ୟାନୀ ନିର୍ଗୁଣ ।
ଅନିତ୍ୟ ଶ୍ୱରୀର ନିର୍ଗୁଣ । ତ୍ରିକୂଟ ପରେ ଦେଖ ବୀର ।
ଭସ୍ମ ଭିତରେ ଅଗ୍ନି ଯେହ୍ନେ । ମୋ ରୂପ ତ୍ରିକୂଟରେ ତେହ୍ନେ ।
ପାଣି ଭିତରେ ଦେହ ଯେହ୍ନେ । ବ୍ରହ୍ମ ଦ୍ରୋଛନା ଦେହ ତେହ୍ନେଂ ।
ଦର୍ପଣେ ମୁଖ ଯେହ୍ନେ ଦିଶି । ଧ୍ୟାନେ ଚାହାନ୍ତେ ତେହ୍ନେଂ ଦିଶି ।
କହଇ ବଳରାମ ଦାସ । ସେ ଆତ୍ମା ଘଟରେ ପ୍ରକାଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ପୁରାଣେ ଭୋଗୋଳ ଚରିତ ଆଖ୍ୟାନେ
ବେଦ ତତ୍ତ୍ୱ ଚରିତେ ନାମ ସପ୍ତଦଶ ଅଧ୍ୟାୟ ।

# ଅଷ୍ଟାଦଶ ଅଧ୍ୟାୟ

## ଅର୍ଜ୍ଜୁନ ଉବାଚ

କୃଷ୍ଣ ବଚନେ ପାର୍ଥ ତୋଷ । ବୋଲନ୍ତି ଶୁଣ ହୃଷୀକେଶ ।
ଶ୍ରୀଭାଗବତ ବାକ୍ୟସାର । ପୁଛଇ ଜଗତ ଈଶ୍ୱର ।
ଯେକାଦଶ୍ ସ୍କନ୍ଦ ସାର ବାଣୀ । ତ୍ରିନବ ଯେକାଦଶ ଭଣି ।
ନ ଶୁଣିମା ବଚନ ଯେହି । ଯହିଁ ତୁମ୍ଭ ଶ୍ରୀଚରଣେ ପୁଛଇ ।
କହ ହେ ପ୍ରଭୁ ଦାମୋଦର । ଯେ ମୋର ଭ୍ରମ ଯାଉ ଦୂର ।
ତ୍ରିନବ ଯେକାଦଶ ଦିନେ । ନ ଶୁଣି ତୁମ୍ଭର ବଚନେ ।

## ଶ୍ରୀ ଭଗବାନ ଉବାଚ

କହନ୍ତି ପ୍ରଭୁ ପଦ୍ମ ପାଣି । ଶୁଣ ଅର୍ଜ୍ଜୁନ ତତ୍ତ୍ୱବାଣୀ ।
ଚର ଅଚର ଆଦି ଯେତେ । ଶରଣ ସଂଶୟ କିଅତେ ।
ତେତେବେଳେ ଶୁଣ ଅର୍ଜ୍ଜୁନ । ତ୍ରିଗୁଣ ଛତିଶ ନିର୍ଗୁଣ ।
ନବ ଦ୍ୱାରରୁ ଛାଡ଼ି ଯାଇ । ଯେ ଦ୍ୱାଦଶ ଇନ୍ଦ୍ରି ଛାଡ଼ଇ ।
ଯେ ଦିନ ମରଣ ପ୍ରମାଣ । ସେ ଦିନ ନ ଶୁଣିମା ଗ୍ୟାଂନ ।

## ଉଦ୍ଧବ ଉବାଚ

ଉଧବ ବୋଲଇ ଉତ୍ତର । ଶୁଣ ହେ ପ୍ରଭୁ ଦାମୋଦର ।
ଯେତେକ ଗ୍ୟାଂନ ଶୁଣୁଥାଇ । ଅନ୍ତେଣ ତାହା ନ ଜାଣଇ ।
ଯହୁଁ ସେ ହେତୁ ଜଳେ ଗଲା । ଅହେତୁ ଜଳରେ ବୁଡ଼ିଲା ।
କୂପ ତଡ଼ାଗ ପୁଷ୍କରିଣୀ । ଯେଥିରେ ଥାଇ ଅନୁକ୍ଷଣି ।
ମନ ଶରୀକୁ ଧରିଥାଇ । ଅନ୍ତେଣ ତାହାକୁ ଛାଡ଼ଇ ।
ଯେତେ ପ୍ରକାରେ ଶାସ୍ତ୍ରମାନ । ଯେମାନ ନୋହେ ହୋ ଅର୍ଜ୍ଜୁନ ।
ଅଷ୍ଟାଦଶ ଷଷ୍ଠ ପଞ୍ଚ ଦଶମ । ଚତୁର୍ଥ ଦ୍ୱାଦଶ ପ୍ରମାଣ ।
ଯେତେ ପ୍ରକାରେ ମୁନିଗଣେ । କହନ୍ତି ଶାସ୍ତ୍ର ଅନୁମାନେ ।
ସେ ଯେତେ ପ୍ରକାରେ କହନ୍ତି । ତୁମ୍ଭେ ତା କହିଲ ଶ୍ରୀପତି ।
ତ୍ରିୟ ନବ ଯେ ଯେକାଦଶ । ଯେହା ନ କହ ପୀତବାସ ।
ଯେମନ୍ତେ ଉଧବ କହଇ । ମୋହର ପାଦେ ସମ୍ପାଦଇ ।

## ଶ୍ରୀ ଭଗବାନ ଉବାଚ

ଯେବେ କହିଲୁ ଶୁଣ ପାଥ । ଯେ ବିଧି ତତ୍ତ୍ୱ ଯଥାର୍ଥ ।
ଯେତେବେଳେ ଅନ୍ତ କାଳଇ । ଏ ତିନି ମାର୍ଗ ନ ଶୁଣଇ ।
କହଇ ବଳରାମ ଦାସ । ଯାହା କହିଲେ ପୀତବାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳର ତ୍ରିନବ ଯେକାଦଶ ରହସ୍ୟ
କଥନେ ନାମ ଅଷ୍ଟାଦଶ ଅଧ୍ୟାୟ

# ଉନବିଂଶ ଅଧ୍ୟାୟ

## ଶ୍ରୀ ଭଗବାନ ଉବାଚ

ବୋଲନ୍ତି ଜଗତ ଜୀବନ । ଶୁଣ ଅର୍ଜୁନ ଦେଇ ମନ ।
ଯେଠାରେ ଦୃଷ୍ଟାନ୍ତର ଅର୍ଥ । କହିବା ଦେହ ବିଧି ମତ ।
ପଞ୍ଚଦଶ ବର୍ଣ୍ଣ ଅକ୍ଷର । ବଚନ ପବନ ମୁଖେଣ ।
ଯାହା ବଦନେ କହୁଥାଇ । ବଚନ ନିଜ ସ୍ଥାନେ ଯାଇ ।
ନାସା ପବନ ବହୁଥିଲା । ବାମ ପାଶୁଶେ ସେ ଫେରିଲା ।
ଶ୍ରୁତିରେ ସର୍ବ ଶୁଣୁଥାଇ । ସେ ଶବ୍ଦ ନିଜ ଥାନେ ଯାଇ ।
ଚକ୍ଷୁରେ ରୂପ ଦେଖୁଥିଲା । ଚକ୍ଷୁ ବୁଲାଇ ଆନେ ଗଲା ।
ଯେତେବେଳେ ପୁଣ ଚଳଇ । ତା ପଛେ ଯାଯେ ସେ ଗୋଡ଼ାଇ ।
ଦେଖ ନଦାନଦୀ ଅର୍ଜୁନ । କହିଲେ ଏକା ପ୍ରଭାବେଣ ।
ଛିଦ୍ର ନଦୀମାନେ ଗମିଲେ । ସାନ୍ଦେର ଜଳରେ ସେ ମିଳେ ।
ନଦାନଦୀ କି ତୁ ପାଶୋରି । ନାମ ବୋଲାଇଲେକ ବାରି ।
ଯେଣୁ ପ୍ରାଣ ଆତ୍ମା ଭଗବାନ । କାରୁଣ୍ୟ ସିନ୍ଧୁ ମୁଂ ପ୍ରମାଣ ।
ଯେ ରୂପେ ଦୃଷ୍ଟାନ୍ତର ପଦ । ଅର୍ଥ ଗମ୍ୟଂନଟି ଯେ ସମ୍ବାଦ ।
କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୋଗୋଳ ପ୍ରକାଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଦେହ ବିଧି
କଥନେ ନାମ ଉନବିଂଶ ଅଧ୍ୟାୟ

# ବିଂଶ ଅଧ୍ୟାୟ

## ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ କୃତ କୃତ ହୋଇ । ନାଥର ଚରଣେ ପଡ଼ଇ ।
ହେ ପଦ୍ମନାଭ ବିଶ୍ୱେଶ୍ୱର । ଜୟ ଶ୍ରୀ ପୁରୁଷ ଉତ୍ତମ ।
ଜୟ ଭଗତ ବନ୍ଧୁ ହରି । କରୁଣା ସାଗର ମୁରାରି ।
ଯୋଗ ସାଧନ କେଉଁ ମତେ । ବିଚାରି କହ ତୁ ସାକ୍ଷାତେ ।
କେମନ୍ତ ଜୋତି ଦରଶନ । ସାକ୍ଷାତେ କହି ନାରାୟେଣ ।

## ଶ୍ରୀ ନାରାୟଣ ଉବାଚ

କୃଷ୍ଣ ବୋଲନ୍ତି ଶୁଣ ପାର୍ଥ । କହିବା ସାଧନାର ତତ୍ତ୍ୱ ।
ଯେତେବେଳେ ଶୋୟନ ବେଳେ । ବସିଣ ଥିବ ଉଜାଗରେ ।
ଯେବେ ନିଦ୍ରାକୁ ଇଛା ହେବ । ବାମ କର ମାଡ଼ି ଶୁତିବ ।
ଚନ୍ଦ୍ର ଘରରେ ବହୁଥିବ । ବାମେ ନିଦ୍ରା ଦକ୍ଷିଣେ ଯିବ ।
ଯେବେ ସୂର୍ଯ୍ୟ ଘରେ ରହିବ । ସୂର୍ଯ୍ୟକର ମାଡ଼ି ଶୁତିବ ।
ଯେମନ୍ତ ଉଲଟ ପାଲଟ । ନିତ୍ୟେ ସାଧନେ ରହେ ଘଟ ।
ପବନେ ଅନ୍ୟାଅନ୍ୟି ତୋଳି । ଚନ୍ଦ୍ରକୁ ସୂର୍ଯ୍ୟ ଘରେ ଭରି ।
ନୟନ ନାସିକା ଅଗ୍ରତେ । ସ୍ଥାପିଣ ରଖିବ ନିଚଳେ ।
ଯେମନ୍ତେ ମାସକେ ସମ୍ପୂର୍ଣ୍ଣେ । ଜ୍ୟୋତିକି ଦେଖିବ ନୟନେ ।
ଯେମନ୍ତେ ନିରତେ ସାଧିବ । ଦିନକୁ ଦିନ ବଳାଇବ ।
ଯେମନ୍ତେ ସାଧ ହୋ ଅର୍ଜ୍ଜୁନ । ନିଚଳେ ରହିବ ପବନ ।
ପ୍ରଳୟେ ଯେସନେକ ହେତୁ । ବିଚାର ବ୍ରହ୍ମଗ୍ୟାଂନ ତତ୍ତ୍ୱ ।
ଅନନ୍ତ ବ୍ରହ୍ମ ନିର୍ବିକାର । ବନ୍ଧ ବାନ୍ଧିଲେ ହେଁ ସ୍ଥିର ।
ସର୍ବଦା ଜଳ ରହିଥିବ । ମୀନ କେବେହେଁ ନାଶ ନ ଯିବ ।
ଦଶଦ୍ୱାର ଗଳିଆ ହୋଇ । ଯେଥିରେ ଜଳ ମୁହି ହୋଇ ।
ଯେତେ ଗଳିଆ ବେଗେ ବାନ୍ଧ । ଅଶେଷ ଜଳ ମହାରନ୍ଧ୍ର ।
ପଞ୍ଚାଶ ପ୍ରକୃତି କାଟିବୁ । ପଞ୍ଚ ପବନ ହୃଦୁ ନେବୁ ।
ଯେ ରୂପେ ଯୋଗର ବିଚାର । ଅର୍ଜ୍ଜୁନ କହେ ଚକ୍ରଧର ।
କହଇ ବଳରାମ ଦାସ । ନନ୍ଦ ନନ୍ଦନ ନିତ୍ୟେ ଆଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତେ ନାମ ବିଂଶ ଅଧ୍ୟାୟ ।

# ଏକବିଂଶ ଅଧ୍ୟାୟ

## ଅର୍ଜ୍ଜୁନ ଉବାଚ

ପୁଣ ପୁଚ୍ଛଇ ପଣ୍ଡୁ ସୁତ । କହ ହେ ପ୍ରଭୁ ଗୋପୀନାଥ ।
ଶ୍ରୀ ଭାଗବତ ତତ୍ତ୍ୱସାର । ମୋତେ ବୁଝାଅ ଦାମୋଦର ।
ମନିଶ୍ୟ ମୁଣ୍ଡେ ମୃତ୍ୟୁ ବସେ । ଆତ୍ମାକୁ ଅନୁକ୍ଷଣେ ତ୍ରାସେ ।
ଯାବତ ମୃତ୍ୟୁ ଅଛି ଦୂରେ । ସୁନ୍ଦର ଯୁବା କଳେବରେ ।
ମୁଂ ତୁମ୍ଭ ଚରଣେ କିଙ୍କର । କଳୁଷ ଛେଦ ଚକ୍ରଧର ।

## ଶ୍ରୀ ଭଗବାନ ଉବାଚ

ବୋଲନ୍ତି ଜଗତ ଈଶ୍ୱର । ଶୁଣ ଅର୍ଜ୍ଜୁନ ମହାବୀର ।
ଯେ ବିଧି ଦୃଷ୍ଟାନ୍ତର ତତ୍ତ୍ୱ । ଶୁଣ ସୁମନେ ପଣ୍ଡୁସୁତ ।
ମନୁଷ୍ୟ ମୁଣ୍ଡେ ମୃତ୍ୟୁ କାଳ । ବସିଛି କିବା ଅନ୍ଧକାର ।
ତୋ ଆଗେ ଦୃଷ୍ଟାନ୍ତର ଦେବା । ତୋ ମନୁ ସଂଶୟ ଫେଡ଼ିବା ।
ଯେସନେ ପ୍ରଦୀପ ଜଳଇ । ଗୃହ ଅନ୍ଧକାର ଭାଜଇ ।
ପ୍ରଦୀପ ଛାୟା ଅନ୍ଧକାର । ବସିଛି ଜ୍ୟୋତି ଅଗ୍ନିଶିର ।
ପୁଣ ପ୍ରଦୀପ ଜଳୁଥାଇ । ତା ପାଶେ ଅନ୍ଧକାର ଥାଇ ।
ତେସନ ମାନୁଷ୍ୟ ମୁଣ୍ଡରେ । ମୃତ୍ୟୁ ଛାୟାଟି ସେ ଉପରେ ।
ଯେହ୍ନେଂ ପ୍ରଦୀପ ଲିଭିଗଲେ । ଅନ୍ଧକାର ଘୋଟଇ ତଳେ ।
ତେମନ୍ତ ମୃତ୍ୟୁ ପ୍ରାଣୀ ଶିରେ । ବସିଛି କିବା ଅନ୍ଧକାରେ ।
ଯେ ପଦ ଯେମନ୍ତ ବିଚାର । ଅର୍ଜ୍ଜୁନେ କହେ ଦାମୋଦର ।
କହଇ ବଳରାମ ଦାସ । କାୟା ମୃତ୍ୟୁଟି ମାୟା ଅଂଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ବଚନେ ନାମ ଏକବିଂଶ ଅଧ୍ୟାୟ ।

# ଦ୍ୱାବିଂଶ ଅଧ୍ୟାୟ

## ଶ୍ରୀ ଭଗବାନ ଉବାଚ

ବୋଲନ୍ତି କମଳା ରମଣ । ଶୁଣ ଅର୍ଜ୍ଜୁନ ଦିବ୍ୟଗ୍ୟାଂନ ।
ଶ୍ରୀ ଭାଗବତ ଅର୍ଥସାର । କହିବା ଗ୍ୟାଂନର ବିଚାର ।

ମାନୁଷ୍ୟ ମୁଣ୍ଡେ କର୍ମ ହୋଇ । କାଳ ମୃତ୍ୟୁ ସେ ବସିଥାଇ ।
ଗାବ ବାନ୍ଧିଣ ଯେହ୍ନେଂ ନର । ନିଅଇ ଆପଣା ଗୃହର ।
ଯେମନ୍ତ ପ୍ରାୟେ ମୃତ୍ୟୁ ନେଇ । ପ୍ରାଣୀକି ନିର୍ଭରେ ଭେଟାଇ ।
କି ଅବା ବ୍ୟାଘ୍ର ମୁଖେ ପଡ଼ି । ଅଗ୍ୟାଂନ କର୍ମ ମୃତ୍ୟୁ ଧାଡ଼ି ।
ଶିରରେ ମୃତ୍ୟୁ ବସିଥାଇ । ବାହ୍ୟ ମୃତୁକୁ ସେ ଭେଟାଇ ।
କର୍ମରେ ପଥେ ଯାଉଥାଇ । ନଦୀ ମଧ୍ୟରେ ପଶିଯାଇ ।
କୁମ୍ଭୀର ନଦୀ ମଧ୍ୟେ ଖାଇ । ଯୁବା ସୁନ୍ଦର ଦେହ ବହି ।
ସୁନ୍ଦର ଯୁବା ଦେହ ଗୋଟି । ମୃତୁ କର୍ମ ଥୋଇ ଥାଇ ଯେଟି ।
ଯେଣୁ ଅନିତ୍ୟ ଯେ ସଂସାର । ତ୍ରିଗୁଣ ମୃତ୍ୟୁ ଯେ ଶରୀର ।
କହଇ ବଳରାମ ଦାସ । ଦୂର ମୃତ୍ୟୁଟି ଅଛି ପାଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ବଚନେ ନାମ ଦ୍ୱାବିଂଶ ଅଧ୍ୟାୟ ।

## ତ୍ରୟୋବିଂଶ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ଶୁଣି ବଚନରେ । ପୁଚ୍ଛଇ ଶ୍ରୀହରି ପାଦରେ ।
ହେ ଜଗନ୍ନାଥ ଯୋଗେଶ୍ୱର । ଉତ୍ତମ ବଚନ ତୁମ୍ଭର ।
କହିଲେ ସର୍ବ ତତ୍ତ୍ୱ ବାଣୀ । ବେଦ ବଚନ ଗ୍ୟାଂନ ବାଣୀ ।
ଜଳ ମଧ୍ୟରେ ପଦ୍ମବନେ । ତା ପତ୍ରେ ଜଳ ରହେ ଯେହ୍ନେ ।
ସେ ଯେହ୍ନେ ଜଳଜଳ ହୋଇ । ନିଚଳ ହୋଇ ନ ରହଇ ।
ତେମନ୍ତ ପ୍ରାୟେ ମୋର ମନ । ନିଚଳ ନୋହେ ଭଗବାନ ।
ଯେକଇ ପଦ ମୋ ମନରେ । ପ୍ରକାଶ ହୋଇଲା ନିଚଳେ ।
ଶ୍ରୀ ଭାଗବତ ଗ୍ୟାଂନ ତତ୍ତ୍ୱ । ବେଦାନ୍ତ ସାର ରସ ଗୀତ ।
ଯେକାଦଶସ୍କନ୍ଦେ ଭେଦ ସାର । ପ୍ରଥମ ପାଦର ବିଚାର ।
ଭାଗବତ ପଦ –
ନମଇ ନୃସିଂହ ଚରଣ । ଅନାଦି ପରମ କାରଣ ।
ଯେହା କହିବା ନରହରି । ନମସ୍ତେ ମୁକୁନ୍ଦ ମୁରାରି ।

## ଶ୍ରୀ ଭଗବାନୁବାଚ

ଅର୍ଜ୍ଜୁନ ବଚନେ ଗୋବିନ୍ଦ । କହନ୍ତି ପରମ ସାନନ୍ଦ ।
ଶୁଣ ଅର୍ଜ୍ଜୁନ ମନ ଦେଇ । ଯେ ପଦ ଅର୍ଥ ଦେବା କହି ।
ନମଇ ନମସ୍କାର କହି । ଉତ୍ପତ୍ତି ପ୍ରଳେ ସିନା ସେହି ।
ଭଗତ ନମସ୍କାର ହୋଇ । ନମଇ ଅର୍ଥ ଦେଲି ଫେଇ ।
ମୁହିଂ ସେ ନୃସିଂହ ଶ୍ୱରୀର । ଅନାଦି ଶକ୍ତି ଲକ୍ଷ୍ମୀ ମୋର ।
ଯେ ବେନି ରୂପକୁ ଭଗତି । ନମଇ ତାଙ୍କ ପାଦ ଗତ ।
ଅନାଦି ମାୟା ଶକ୍ତି ଯେହି । ଉତ୍ପତ୍ତି ପ୍ରଳେ ସିନା ସେହି ।
ତା ଗର୍ଭୁ ଅଶେଷ ସଂସାର । ଜନ୍ମ ହୋଇଛି ମହାବୀର ।
ଯେଣୁ ପରମ କାରଣଇ । ପଥ ଛାଡ଼ିଲେ ଭକ୍ତି ଯାଇ ।
ସେ ଯେବେ ପଥ ନ ଛାଡ଼ିବ । ଭଗତ କି ରୂପେ ଗମିବ ।
ଅନାଦି ଆଦି ଯାର ନାହିଂ । ଯେଣୁ ପରମ ଆତ୍ମା ସେହି ।
କହଇ ବଳରାମ ଦାସ । ଉଧର ମୋତେ ପୀତବାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ବଚନେ ନାମ ତ୍ରୟୋବିଂଶ ଅଧ୍ୟାୟ ।

## ଚର୍ତ୍ତୁବିଂଶ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ପୁଣ ଅର୍ଜ୍ଜୁନ ପଚାରଇଂ । କହ ହେ କମଳାର ସାଇଂ ।
ଶ୍ରୀ ଭାଗବତ ଗ୍ୟାଂନ ସାର । ଯେ ଅବା ଗ୍ୟାଂନର ଭଣ୍ଡାର ।
ଶୁଣ ହେ ଜଗତ ଈଶ୍ୱର । ଯେ ମୋର ଭ୍ରମ ଯାଉ ଦୂର ।
ଅଣିମା ଆଦି ଅଷ୍ଟନିଧି । ମୁକ୍ତି ଲକ୍ଷଣ ଯେ ପ୍ରସିଦ୍ଧି ।

### ଶ୍ରୀ ଭଗବାନ ଉବାର୍ଚ

ଶ୍ରୀହରି ବୋଲନ୍ତି ଅର୍ଜ୍ଜୁନ । ଯାହା ପୁଛିଲୁ ତତ୍ତ୍ୱଗ୍ୟାଂନ ।
ଜନ୍ମ କାଳରୁ ଅଷ୍ଟନିଧି । ଆସିଛି ଯେ ଅବା ପ୍ରସିଦ୍ଧି ।
ଦେହ ବିଧିରେ ଦେବା କହି । ଶୁଣ ସୁମନେ ଧନର୍ଜଇଂ ।

ଜିହ୍ୱା ଯେ ନାମକୁ ଜପଇ । ଯେକ ନିଧିରେ ଯେ ବୋଲାଇ ।
ପୁଣ ଯେ ଜିହ୍ୱାର ଅଗ୍ରରେ । ଲାଳସ ଭୋଗ ଇଚ୍ଛା କରେ ।
ଯେଣୁ ଯେ ବେନି ନିଧି ହୋଇ । ଆବର ନିଧି ଦେବା କହି ।
ନାସା ବାସନା ଘେନୁଥାଇ । ପୁଣି ସର୍ବ ଗନ୍ଧ ଘେନଇଂ ।
ଯେମନ୍ତେ ଚାରି ନିଧି ସାର । ଶୁଣ ସୁମନେ ସାଧୁ ବୀର ।
ଚକ୍ଷୁରେ ବେନି ନିଧି ହୋ ଅର୍ଜୁନ । ଆରକ ବେନି ନିଧି ଶୁଣ ।
କର୍ଣ୍ଣରେ ମୋ ନାମ ଶୁଣଇ । ଶୁଣନ୍ତେ ନେତ୍ରରେ ସୁଖ ଥାଇଂ ।
ଯେ ବେନି ନିଧିର ବିଚାର । ଯେ ଅଷ୍ଟାନିଧି ମହାବୀର ।
ଆଦ୍ୟରୁ ଆଣିଛି ଯେ ନିଧି । ଗ୍ୟାଂନ ଅଗ୍ୟାଂନ ଯେ ପ୍ରସିଦ୍ଧି ।
ବୋଲଇ ବଳରାମ ଦାସ । ଯେହି ଅଷ୍ଟନିଧି ପ୍ରକାଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତେ ବ୍ରହ୍ମାଣ୍ଡ ପୁରାଣ ଭକତେ
ଅଷ୍ଟନିଧି ଚରିତେ ନାମ ଚର୍ତୁବିଂଶୋ ଅଧ୍ୟାୟ ।



# ଦାରୁବ୍ରହ୍ମ ଗୀତା

## ପ୍ରଥମ ଅଧ୍ୟାୟ

ଜୟ ହେ ଜୟ ନାରାୟଣ । ଯେ ନାମ ପରମ କାରଣ ।
ଅଖିଳ ବ୍ରହ୍ମାଣ୍ଡ ଠାକୁର । ଯେ ନାମ ଜପଇ ଶଙ୍କର ।
ଅସୁର ନିବାରଣ ଅର୍ଥେ । ଜନ୍ମ ଲଭିଲ ମହୀଗତେ ।
ଅବତାରଙ୍କୁ ଅବତାର । ମହିମା ଜଗତେ ପ୍ରଚାର ।
ତେଣୁ ଭକତ ସାଧୁ ଜନେ । ନାମ ଘୋଷନ୍ତି ଅନୁକ୍ଷଣେ ।
ଦୟା ସାଗର କୃପାସିନ୍ଧୁ । ଭକତ ଜନଙ୍କର ବଂଧୁ ।
ପାମର ବିପ୍ର ଜଗନ୍ନାଥ । ଏଣୁ ସେ ହୋଇଲା କୃତାର୍ଥ ।
ଦୟା ଯେ କଲେ ଦାମୋଦର । ପୁରାଣ ବନ୍ଧେ ପଦ ଧୀର ।
ଗୋବିନ୍ଦ ଗଲେ କେଉଂ ପଥେ । ମୁଂ ଏବେ ହୋଇଲି ଅନାଥେ ।
କି ଅର୍ଥେ କରିବି ଭରଷା । ରହିବ ଯେବେ ପ୍ରତି ଆଶା ।
ଗୋବିନ୍ଦ ଚରଣାର ବିନ୍ଦେ । ମୋ ଚିତ୍ତ ରହୁ ଅପ୍ରମାଦେ ।
ପାମର ବିପ୍ର ଜଗନ୍ନାଥ । ନମେ ଶ୍ରୀକୃଷ୍ଣ ପାଦଗତ ।

### ପରୀକ୍ଷିତ ଉବାଚ

ଶୁକ ସନକ ମୁଖ ଚାହିଂ । ରାଜା ଯେ ଶିରେ କର ଦେଇ ।
ଭୋ ମୁନି ତୁମ୍ଭ ପରସନ୍ନେ । କୃତାର୍ଥ କଲ ମୋ ଜୀବନେ ।
ଏବେ ପଚାରୁ ଅଛି ଯାହା । ସେ କଥା କହ ପୁଣ୍ୟ ଦେହା ।
କୃଷ୍ଣଙ୍କୁ ଶବର ବିନ୍ଧିଲା । ଅନେକ ଅପ୍ରାଧ ଅର୍ଜିଲା ।
ଶବର ଶର ବାଜି ପାଦେ । ଆକୁଳେ ହୋଇଲେ ଗୋବିନ୍ଦେ ।
ବ୍ୟାଧର ଦୋଷ କ୍ଷମା କଲେ । ଆଶ୍ୱାସି ସନ୍ନିଧେ ରାଇଲେ ।
ଗୁପତେ କହିଲେ ବିଶ୍ୱାସ । ଯାଅ ହସ୍ତିନା ନିଜ ଦେଶ ।
ଆଗ୍ୟାଂ ପ୍ରମାଣେ ବ୍ୟାଧ ଗଲା । ପାଣ୍ଡୁକୁମରଙ୍କୁ ଆଣିଲା ।

ଅର୍ଜୁନ ଶ୍ରୀ ଅଙ୍ଗ ଛୁଇଂଲା । ତହୁଂ ଚଳିଲେ ନନ୍ଦବଳା ।
କୃଷ୍ଣ ଛାଡ଼ିଲେ କଳେବର । ଆପଣେ ଗଲେ ନିଜପୁର ।
ପିଣ୍ଡ ଯେ ମର୍ତ୍ତ୍ୟପୁରେ ଥିଲା । ସେ ପୁଣ କେମନ୍ତ ହୋଇଲା ।
ଶବର ଗଲା ପୁଣ କାହିଂ । ବିସ୍ତାରି କହ ପୁଣ୍ୟ ଦେହୀ ।
ରାଜା ମୁଖରୁ ଏହା ଶୁଣି । ଆନନ୍ଦେ କହେ ବ୍ରହ୍ମ ମୁନି ।
ହେ ରାଜା ପଚାରିଲୁ ଯାହା । ପ୍ରସନ୍ନେ କହଇ ମୁଂ ତାହା ।

## ଶ୍ରୀ ଶୁକ ଉବାଚ

ଯହୁଂ ଗୋବିନ୍ଦ ସ୍ୱର୍ଗ ଗଲେ । ପାଣ୍ଡବେ ଅନାଥ ହୋଇଲେ ।
ନିରେଖ ପ୍ରାଏ ପାଞ୍ଚଭାଇ । ବସିଣ ଭାଳୁଛନ୍ତି ରହି ।
ଶବର ଶିରେ କର ଦେଇ । ବିକଳେ ବହୁତ ରୋଦଇ ।
ଆହା ଗୋବିନ୍ଦ ହେ ଗୋପାଳ । ଅନାଥ କଲ ହେ ଗୋକୁଳ ।
ମୁଂ ଯେ ଶବର ହୀନ ଜାତି । ବ୍ୟାଧ କୁଳରେ ଉତପତି ।
କେବଳ ପୂର୍ବ ଭାଗ୍ୟ ଫଳେ । ନମୋ ଗୋବିନ୍ଦ ପାଦତଳେ ।
ଏଡ଼େ ଅକର୍ମ ଅରଜିଲି । ପାଦକୁ ଶର ମୁଂ ବିନ୍ଧିଲି ।
ଯୁଗର ଶେଷ ଦେଖି କରି । ଏହି ଭିଆଣ କଲେ ହରି ।
ସେ ଜନ୍ମେ ହୋଇଥିଲା ଯାହା । ଅଗ୍ୟାଂନେ କହିଲି ମୁଂ ତାହା ।
ସେ ପାପୁଂ ଉଦ୍ଧରି ଆପଣେ । ଏବେ ଚଳିଲେ ନିଜ ଧାମେ ।
ଏବେ ମୁଂ କି ବୁଦ୍ଧି କରିବି । କାହିଂରେ କେମନ୍ତେ ବଞ୍ଚିବି ।
କେମନ୍ତେ ପାଇବି କାରଣ । ପ୍ରଭୁରେ କଲି ଦ୍ରୋହପଣ ।
ବହୁତ ବିକଳ ହୋଇଲା । ପ୍ରାଣ ଛାଡ଼ିତ ବିଚାରିଲା ।
ଗୋବିନ୍ଦ ଗଲେ ଶୂନ୍ୟପଥେ । ଆକାଶେ ଥାଇ ଉର୍ଦ୍ଧ୍ୱଗତେ ।
ଶୂନ୍ୟରେ ଶବଦ ଭାଷିଲେ । ଶବର ବିକଳ ଜାଣିଲେ ।
ବିଚାର କରି ନାରାୟଣ । ଶୂନ୍ୟରେ କହନ୍ତି ବଚନ ।
ଜାରା ନକର ମନ ଖେଦ । ତୋ ପିତା କଲି ପୂର୍ବେ ବଧ ।
ପିତାର କାର୍ଯ୍ୟ ତୁହି କଲୁ । ତେଣୁ ତୁ ଅପ୍ରାଧି ନୋହିଲୁ ।
ଏବେ ଆମ୍ଭର ସଙ୍ଗେ ଆସ । ନିଶ୍ଚିନ୍ତ ହୋଇ ସ୍ୱର୍ଗେ ବସ ।
ଏମନ୍ତେ ଆଗ୍ୟାଂ ଦେଇ ହରି । ପାଶକୁ ଶବରେ ହକାରି ।

ମାତଳି ରାଇ ନାରାୟଣ । ବୋଲନ୍ତି ଶୁଣ ମୋ ବଚନ ।
ଶବର ଅଛି ମର୍ତ୍ତ୍ୟ ପୁରେ । ଆଣ ତାହାକୁ ଧାଡିକାରେ ।
ଶ୍ରୀକୃଷ୍ଣ ଆଗ୍ୟାଂ ଘେନି ଶିରେ । ମାତଳି ରଥ ନେଇ ଖରେ ।
ଶବର ପାଶରେ ମିଳିଲା । ଶ୍ରୀକୃଷ୍ଣ ବ୍ୟବସ୍ଥା ଦେଖିଲା ।
ମୃତ୍ୟୁ ପିଣ୍ଡକୁ ଦେଖି ପୁଣି । କପାଳେ ଦେଇ ବେନି ପାଣି ।
ଏ ରୂପ ଛାଡ଼ିବା ନିମନ୍ତେ । ଉପାୟ କଲେ ଗୋପିନାଥେ ।
ମାତଳି ଦେଖି ପାଣ୍ଡବଙ୍କୁ । ଆଶ୍ୱାସି ପୁଛଇ ତାହାକୁ ।
କିମ୍ପାଇ ଭାଳୁଅଛ ବସି । ଅନାଥ ହେଲ ପାଣ୍ଡୁ ମିଶି ।
ପିଣ୍ଡକୁ ବେଗେ ଦାହ କର । ବହନ ଚଳ ନିଜପୁର ।
ଏତେକ କହିଣ ମାତଳି । ଶବର ପାଶକୁ ହକାରି ।
କୃଷ୍ଣରେ ହେଲୁ ଅପରାଧୀ । ମୋକ୍ଷ ଯେ କଲେ ଦୟାନିଧି ।
ଆସ ଶବର ମୋର ପାଶ । ଶରଣ କୃଷ୍ଣ ପାଦେ ପଶ ।
ମାତଳି ମୁଖୁଂ ଏହା ଶୁଣି । ଶବର ଯୋଡ଼େ ବେନି ପାଣି ।
ମାତଳି ଛାମୁରେ ମିଳଇ । ଭୟରେ ତନୁ ତା କମ୍ପଇ ।
ମାତଳି କହଇ ବଚନ । ଜାରା ନ ହୁଅ ଛନ୍ନ ମନ ।
ପୂର୍ବରୁ ବିଧି ଏ ହୋଇଛି । ତେଣୁ ତୋ ଦ୍ରୋହ ନାହିଂ କିଛି ।
ଏତେକ ବୁଝାଇ ମାତଳି । ଜାରା ଶବର ହସ୍ତ ଧରି ।
ରଥରେ ବସାଇଲା ନେଇ । ଶୂନ୍ୟ ମାର୍ଗରେ ଗଲା ବାହି ।
କୃଷ୍ଣ ଯେ ଶୂନ୍ୟ ମାର୍ଗେ ଥିଲେ । ମାତଳି ସେଠାରେ ମିଳିଲେ ।
ଜାରା ଶବର କୃଷ୍ଣେ ଦେଖି । ମନର ଭୟ ଯେ ଉପେକ୍ଷି ।
ମାତଳି ଚାହିଂ ଦାମୋଦର । ବୋଲନ୍ତି ବଚନ ଗଭୀର ।
ପୂର୍ବେ ଏ ଆମ୍ଭର ସେବକ । ଉତ୍ତମ ସ୍ଥାନେ ନେଇ ରଖ ।
ଶ୍ରୀକୃଷ୍ଣ ମୁଖୁଂ ଏହା ଶୁଣି । ଶବର ଯୋଡ଼େ ବେନି ପାଣି ।
ହେ କୃଷ୍ଣ ପତିତପାବନ । ପାପ ମୋ କର ବିମୋଚନ ।
ଘୋର ଅପ୍ରାଧ କ୍ଷମାକର । ଭବଭୟରୁ ଉଦ୍ଧରିର ।
ଜାତିରେ ତୁଚ୍ଛ ମୁଂ ଅଟଇ । ବ୍ୟାଧ ଜାତିରେ ଜନ୍ମ ହୋଇ ।
ଅପ୍ରାଧ ଅର୍ଜିଲି ଚରଣେ । କ୍ଷମାତ କର ନାରାୟଣେ ।

ଆଣିଲ ବୈକୁଣ୍ଠ ଭୁବନ । ପୂର୍ବେ ମୋ ନାହିଁ ଏତେ ପୁଣ୍ୟ ।
ଯେବେ ତୁମ୍ଭର ଅଛି ଦୟା । ଛାମୁରେ ଜଣାଏ ଯେ ଏହା ।
ଏହି ସ୍ୱରୂପେ ମୁହିଁ ଥିବି । ସଂସାର ଚରିତ ଦେଖିବି ।
ସଂସାରେ କଥା ରହିଥିବ । ତୁମ୍ଭ ମହିମା ବିକାଶିବ ।
ଶବର ମୁଖୁଁ ଏହା ଶୁଣି । ଦୟା ବହିଲେ ଚକ୍ରପାଣି ।
ଜାଣିଲେ ଶବରର ମନ । ବିଚାର କଲେ ଭଗବାନ ।
ଦେଖିବ ସଂସାର ଚରିତ । ଏହା ଯେ ବିଚାରୁଛି ଚିତ୍ତ ।
ଆମ୍ଭେ ନକ୍ଷତ୍ର ରୂପେ ଥାଉଂ । ନିତ୍ୟ ଶୂନ୍ୟରେ ଉଦେ ହେଉଂ ।
ଦେଖି ବିଚାରି ସର୍ବ ଭାବ । ବୁଝୁଂ ସଂସାର ହାନି ଲାଭ ।
ନକ୍ଷତ୍ର ତିନିଗୋଟି ହୋଇ । ବ୍ରହ୍ମା ବିଷ୍ଣୁ ଯେ ଶିବ ଥାଇ ।
ଆମ୍ଭର ସନ୍ନିଧିରେ ଥିବ । ସଂସାର ଚରିତ ଦେଖିବ ।
ଏତେ ବିଚାରି ଭାବଗ୍ରାହୀ । ଭାଷିଲେ ମାତଳି କି ଚାହିଁ ।
ଯାଅ ତୁ ଚଳି ଏହି କ୍ଷଣ । ଜାରାକୁ ନିଅ ସେହି ସ୍ଥାନ ।
ଆମ୍ଭେ ଯେ ନକ୍ଷତ୍ର ରୂପରେ । ଉଦୟ ହେଉଂ ନିରନ୍ତରେ ।
ସେଠାକୁ ଆମ୍ଭ ପାଶେ ନେଇ । ନକ୍ଷତ୍ର ରୂପେ ଦେହ ବହି ।
ଏହାକୁ ରଖ ସେ ଠାବରେ । ସେ ଥାଉ ଯୁଗ ଯୁଗାନ୍ତରେ ।
ଅପ୍ରାଧ କରିଅଛି ଯେତେ । ସୁଖ ସେ ଲଭି ସେହି ମତେ ।
ମାତଳି ଆଜ୍ଞାଂ ପରମାଣେ । ଶବର ଘେନି ତତ୍କ୍ଷଣେ ।
ବିଷ୍ଣୁ ନକ୍ଷତ୍ର ପାଶେ ନେଲା । ନକ୍ଷତ୍ର ରୂପ ଜାରା ହେଲା ।
ସୁଖେ ଯେ ରହିଲା ଶବର । ଗଗନେ କରଇ ବିହାର ।
ନକ୍ଷତ୍ର ରୂପେ କୃଷ୍ଣ ସଙ୍ଗେ । ସୁଖ ଭୁଞ୍ଜିଲା ଯୁଗେ ଯୁଗେ ।
ବିଷ୍ଣୁ ନକ୍ଷତ୍ର ଉଦେ ହେଲେ । ସର୍ବଦା ଥାଇ ତାଙ୍କ ତୁଲେ ।
ସଂସାର ଭଲ ମନ୍ଦ କଥା । ଜାରା ଦେଖିଣ ମନେ ବ୍ୟଥା ।
ଶୁଣ ହୋ ପରୀକ୍ଷ ରାଜନ । ଏ ରୂପେ ଶବର ବିଧାନ ।
ଦୟା ସାଗର ନରହରି । ଶବର ଦୋଷ କ୍ଷମା କରି ।
ଆରତ ଭଞ୍ଜନ ଯା ନାମ । ଅପ୍ରାଧ ନ ଘେନିଲେ ମନ ।
ଗୋବିନ୍ଦେ ପଶ ତୁ ଶରଣ । ବ୍ରହ୍ମ ଶାପରୁ ନିସ୍ତାରଣ ।

ତକ୍ଷଣେ ପଶିବେ ତୋ ଅଙ୍ଗେ । କୃତାର୍ଥ ହେବୁ ସାଧୁ ସଙ୍ଗେ ।
ଏବେ ତୁ ଏକ ଚିତ୍ତେ ଶୁଣ । ପବିତ୍ର ବିଷ୍ଣୁର ପୁରାଣ ।
ଶ୍ରୀ ଭାଗବତ କୃଷ୍ଣ କଥା । ଶୁଣି ଉପେଖ ସର୍ବ ବ୍ୟଥା ।
ଏବେ ତୁ ନିରେଖ ନୋହିବୁ । ସେକଥା ଶୁଣି ନିସ୍ତରିବୁ ।
ମୁନିଙ୍କ ମୁଖୁଂ ଏହା ଶୁଣି । ବୋଲେ ପରୀକ୍ଷ ନୃପମଣି ।
ଶବର ସ୍ୱର୍ଗପୁର ଗଲା । ଶ୍ରୀକୃଷ୍ଣ ପିଣ୍ଡ କିସ ହେଲା ।
ପାଣ୍ଡବେ ଥିଲେ ପିଣ୍ଡ ରଖି । କେବେ ହେଂ ନ ପାରି ଉପେକ୍ଷି ।
ବିକଳେ ଭାଳୁଥିବେ ବସି । ଗୋବିନ୍ଦ ଗୁଣ ହୃଦେ ଘୋଷି ।
ଅନାଥ କରିଗଲୁ କାହିଂ । ବୋଲି କାନ୍ଦିଣ ପାଞ୍ଚଭାଇ ।
ପରୀକ୍ଷ ମୁଖୁଂ ଏହା ଶୁଣି । ଆନନ୍ଦେ କହେ ବ୍ରହ୍ମ ମୁନି ।

## ଶ୍ରୀ ଶୁକ ଉବାଚ

ଯାହା ପୁଚ୍ଛିଲ ପରୀକ୍ଷିତ । କହିବି ତହିଂର ଚରିତ ।
କୃଷ୍ଣ ଯେ ଗଲେ ନିଜ ଧାମ । ଭାଳିଲେ ପାଣ୍ଡୁର ନନ୍ଦନ ।
ବିଚାର କଲେ ପାଞ୍ଚ ଭାଇ । କୃଷ୍ଣ ବିହୁନେ ସୁଖ ନାହିଂ ।
ଏବେ ତ ନିରେଖ ହୋଇଲୁଂ । ସମୁଦ୍ରେ ଭେଳା ଭସାଇଲୁ ।
କୃଷ୍ଣର ମୃତ୍ୟୁ ପିଣ୍ଡ ଘେନ । ଅଗ୍ନିରେ କରିବା ଦହନ ।
ଦହନ ସାରି ଚାଲଯିବା । ଘୋର ବନସ୍ତରେ ପଶିବା ।
ରାଜ୍ୟରେ ନାହିଂ ପ୍ରୟୋଜନ । ବୁଲିବା ନାନା ତୀର୍ଥମାନ ।
ନାନା ତୀର୍ଥରେ ସ୍ନାନ ସାରି । ଭବ ଦୁରିତ ଦୂରକରି ।
ଗୋବିନ୍ଦ ନାମେ କରି ଲୟେ । ନାନା ପାତକ କର କ୍ଷୟେ ।
ବିଚାର କରି ପାଞ୍ଚ ଜଣ । ଲୋତକ ପୂରାଇ ନୟନ ।
ଯୁଧିଷ୍ଠି ଅର୍ଜୁନଙ୍କୁ ଚାହିଂ । ବୋଲନ୍ତି ଶୁଣ ତୁ ବିଜଇ ।
କାହିଂରେ କରିବ ଦହନ । ଏଥିର କହ ହେ ବିଧାନ ।
ପାଶେ ଯେ ସହଦେବ ଥିଲା । ଆପଣା କରକୁ ଚାହିଂଲା ।
ବିଚାରି ଜାଣିଲାକ ତାହା । ଏ ସ୍ଥାନେ ନ କରିବା ଦାହା ।
ଏଥୁ ଚାରିଶ କ୍ରୋଶ ଛଡ଼ା । ପୃଥିବୀ ଅଛଇ ଅପୋଡ଼ା ।
ତା ନାମ ଜମନିକ ତୀର୍ଥ । ସବୁକ୍ଷେତ୍ରରୁ ସାରସ୍ୱତ ।

ସମୁଦ୍ର ଉତ୍ତର ଯେ ତୀରେ । ନୀଳ ଯେ ନାମ ବନସ୍ତରେ ।
କଳପ ନାମେ ଅଛି ବଟ । ସବୁ ବୃକ୍ଷରୁ ସେ ଗରିଷ୍ଠ ।
ସେ ବଟ ଶେଷ ଡ଼ାଳ ପୁଟେ । ଶୟନ ଦେବଙ୍କର ଶ୍ରେଷ୍ଠେ ।
ପର୍ବତ ନାମେ ନୀଳଗିରି । ବିଜୟେ କରିବେ ମୁରାରି ।
ବଟର ସନିଧିରେ ଯାଇ । ଦାହା କରିବା ତହିଁ ନେଇ ।
ସ୍ୱର୍ଗକୁ ସମାନ ସେ ସ୍ଥାନ । ସ୍ୱର୍ଗ ଦୁଆର ତହିଁ ନାମ ।
କଣ୍ଡୁ ଯେ ମୁନି ପୂର୍ବେ ଥିଲେ । ଆଶ୍ରମ ଗୋଟିଏ ରଚିଲେ ।
ବଟ ସାଗର ମଧ୍ୟ ସ୍ଥାନେ । ଆଶ୍ରମ ରଚିଲେ ତକ୍ଷଣେ ।
ଯମଦଣ୍ଡକୁ ନାହିଁ ଡର । ନାନା ପାପରୁ ହେଲେ ପାର ।
ମୃତ୍ୟୁ ଯେ ନ ବହିଲା ଯମ । ବସିଲେ ଅମର ଭୁବନ ।
ଅମୃତ ରସ ପାନ ଖାଇ । ନକ୍ଷତ୍ର ରୂପେ ଦେହ ବହି ।
ଏତେ ବିଚାରି ମନ୍ତ୍ରିବର । ହୃଦରେ କରଇ ବିଚାର ।
କଥା ତ ନ କହଇ ଫେଇ । ଗୁପତେ ଅଛଇ ଲୁଚାଇ ।
ଯେବେ ପଚାରିବେ ଯୁଧିଷ୍ଠି । କହିବ ଫେଡ଼ି କଥା ଗୋଟି ।
ମନରେ ହୋଇ ହସ ହସ । ଅନ୍ତରେ ହୁଅଇ ଉଲ୍ଲାସ ।
ପୁଛିଲେ ଯୁଧିଷ୍ଠିଙ୍କି ଏହା । ଅର୍ଜୁନ ଯୋଡ଼ି ବେନି ବାହା ।
ଭୋ ନାଥ କର ଅବଧାନ । କୃଷ୍ଣଙ୍କୁ କରିବ ଦହନ ।
ଅଣାଅ ଚନ୍ଦନ ଯେ ଦାରୁ । ଦାହ କରିବା ମହା ମେରୁ ।
ଭୀମ ଯେ ଖଣ୍ଡେ ଦୂରେ ଥିଲେ । ଯୁଧିଷ୍ଠି ଅନାଇଣ ଦେଲେ ।
ଭୀମର ତୁଲେ ଏହିକ୍ଷଣି । ବେଗେ ଚନ୍ଦନ ଦାରୁ ଆଣି ।
ଏଥିରେ ଜୁଇ ସଜାଡ଼ିଣ । କୃଷ୍ଣଙ୍କୁ କରିବା ଦହନ ।
ଏଯେ ଅନାଦି ନାରାୟଣ । ଯା ନାମ ପରମ କାରଣ ।
ମାୟାର ଦେହ ଛାଡ଼ି କରି । ଅନ୍ତେ ଚଳିଲେ ଦଇତାରି ।
ସମସ୍ତେ ଜାଣନ୍ତି ଜଗତେ । ପାଣ୍ଡବେ କୃଷ୍ଣର ଆଶ୍ରିତେ ।
ଦ୍ୱାରକା ପୁରେ ବନ୍ଧୁଜନ । ଅଛନ୍ତି ଉଗ୍ରସେନ ରାଜନ ।
ଆବର ନାରୀଗଣ ଛନ୍ତି । ମାତା ଯେ ନନ୍ଦ ଯଶୋବନ୍ତୀ ।
ବସୁଦେବ ଯେ ଦଇବକୀ । ଆବର ସଖା ମାନେଛନ୍ତି ।
ସୁଜାତି ଅନ୍ତ କରି ନୋହି । ଏକଥା ନ ଜାଣନ୍ତି କେହି ।

କୃଷ୍ଣର ପୁତ୍ର ନାତିମାନ । ଏ ବନେ ହୋଇଲେ ଛେଦନ ।
କୃଷ୍ଣଙ୍କୁ ଶବର ବିନ୍ଧିଲା । ଏକଥା କେହି ନ ଜାଣିଲା ।
ଦାରୁକ ଅଛି ଆମ ସଙ୍ଗ । ଦେଖିଲା କୃଷ୍ଣଙ୍କ ବିଯୋଗ ।
ଏ କଷ୍ଟ ନ ପାରୁ ଯେ କହି । କୃଷ୍ଣ କମଳ ମୁଖ ଚାହିଂ ।
ଦଇବ ଯୋଗେ ଏଡ଼େ ଭୀତି । ଭିଆଉ ଅଛି ବେଦପତି ।
ଯୁଧିଷ୍ଠି ଭୀମଙ୍କୁ ଅନାଇ । ଏତେକ କହି ତୁନି ହୋଇ ।
ସ୍ୱଭାବେ ପ୍ରଚଣ୍ଡ ତା ବୁଦ୍ଧି । କୃଷ୍ଣ ବିହୀନେ ବଳ ଛେଦି ।
ବିଚାରି ବୁଦ୍ଧି ଏ ପାଞ୍ଚିଲା । ଯୁଧିଷ୍ଠି ମୁଖକୁ ଚାହିଂଲା ।
ମନରେ ଆନ ନ ବିଚାର । ସହଦେବଙ୍କୁ ହେ ପଚାର ।
ଆମ୍ଭେ ଯେ ଭାଳୁଥାଇ ଦେଖ । ଏହାର ଉଲ୍ଲାସ ଯେ ମୁଖ ।
ମଉନେ ବସିଅଛି ଏହି । କାହାକୁ ସମସ୍ୟା ନ କହି ।
କଥା ଯେ ଅଛଇ ଏଥିରେ । ବିଚାରି ପୁଛେ ମନ୍ତ୍ରୀବରେ ।
ଭୀମ ମୁଖରୁ ଏହା ଶୁଣି । ହସିଲା ମନ୍ତ୍ରୀ ଚୂଡ଼ାମଣି ।
ସହଦେବର ମୁଖ ଚାହିଂ । ବୋଲେ ଯୁଧିଷ୍ଠି ନୃପ ସାଇଂ ।
କି କଥା ଅଛଇ ଏଥିରେ । ବିଚାରି କହ ମନ୍ତ୍ରୀବରେ ।
ଯୁଧିଷ୍ଠି ପଚାରୁଂ ଏକଥା । ହସ୍ତକୁ ଚାହିଂ ମହାଗ୍ୟାଂତା ।
ଶୁଣିବା ହଉ ସାବଧାନେ । ଗୁପତ କଥା ବିଦ୍ୱେମାନେ ।
କୃଷ୍ଣଙ୍କୁ ଘେନି ଏଥୁଂ ଯିବା । ଏଥି ଦହନ ନ କରିବା ।
ଅଛି ଗୁପତ ଦିବ୍ୟସ୍ଥାନ । ତୀର୍ଥେ ଯେ ଜମନିକ ନାମ ।
ଏଥୁଂ ଚାରିଶ କ୍ରୋଶ ଛଡ଼ା । ନାମ ତା ଅଛଇ ଅପୋଡ଼ା ।
ସହଦେବର ମୁଖୁଂ ଶୁଣି । ବୋଲେ ଯୁଧିଷ୍ଠି ନୃପମଣି ।
କହ ହେ ମୁନିବର ତୁହି । ଏଥିର ଚରିତ ଶୁଣାଇ ।
ହସିଣ ସହଦେବ ବୀର । ବୋଲଇ ଶୁଣ ନୃପବର ।
ସେ ସ୍ଥାନ ମହିମା ପ୍ରତ୍ୟକ୍ଷ । ବଚନେ କହି ନୋହେ ଶକ୍ୟ ।
ପୃଥ୍ୱୀର ସାରସ୍ୱତ ସେହି । ସେଥକୁ ଆନ ସମନାହିଂ ।
ଆପଣା ନାମ ତାକୁ ଦେଇ । ଆପଣେ ଅଛନ୍ତି ଭିଆଇ ।
ନାମ ତା ଶ୍ରୀ ପୁରୁଷୋତ୍ତମ । ସର୍ବ କ୍ଷେତ୍ରରୁ ସେ ଉତ୍ତମ ।
ଦକ୍ଷିଣ ସମୁଦ୍ରର ତୀର । ନାମ ତାହାର ସ୍ୱର୍ଗଦ୍ୱାର ।

ନୀଳ ସୁନ୍ଦର ନାମେ ବନ । ଅଛଇ ଶୁଣହେ ରାଜନ ।
ତହିଁରେ ଅଛଇ ପର୍ବତେ । ସୁନ୍ଦର ଗିରି ଯଥା ଅର୍ଥେ ।
ପ୍ରଭୁତା ଗୁପତେ ଭିଆଇ । ଜନେ ମୁକତି ଦେବା ପାଇଁ ।
ଆହୁରି ଅଛି କଥା ସାର । କହିବି ଶୁଣ ନୃପବର ।
କଳି ଯୁଗରେ ପ୍ରାଣୀମାନେ । ପାପେ ହୋଇବେ ବର୍ଦ୍ଧମାନେ ।
ଗୁରୁ ବଚନ ନମାନିବେ । ପିତାରେ ଦ୍ରୋହ ଆଚରିବେ ।
ଗୋରୁ ବ୍ରାହ୍ମଣ ହତ୍ୟା କରି । ଦେବ ଯେ ବିଦ୍ୟା ସର୍ବଛାଡ଼ି ।
ଅଗମ୍ୟ ଗମନ କରିବେ । ସାଧୁ ବଚନ ନ ମାନିବେ ।
ପାପରେ ହୋଇବେ ଗରିଷ୍ଠ । ତେଣୁ ହୋଇବେ ଗ୍ୟାଂନଭ୍ରଷ୍ଟ ।
ଏକଥା ଜାଣି ବ୍ରହ୍ମରାଶି । ତେଣୁ ଏ ତୀର୍ଥ ପରା କାଶୀ ।
ଏକଥା ଜାଣି କଣ୍ଡୁ ମୁନି । ଦେବଙ୍କ ବାକ୍ୟ ମନେ ଶୁଣି ।
ବୁଲିଣ ନାନା ତୀର୍ଥମାନ । ମିଳିଲେ ଯାଇ ସେହି ସ୍ଥାନ ।
ସମୁଦ୍ର ତୀରେ ଉଭା ହୋଇ । ଚାହିଁଣ ଚକିତେ ଅନାଇଂ ।
ଦେଖିଲେ ବଇକୁଣ୍ଠ ପୁର । ଫିଟିଛି ତହିଁ ସ୍ୱର୍ଗଦ୍ୱାର ।
ସେଠାରେ ନିତ୍ୟକର୍ମ କରି । ତପ ଯେ ପୂଜାବିଧି ସାରି ।
ଧ୍ୟାନେ ବସିଣ ମୁନିବର । ଶୁଣିଲେ ଦେବଙ୍କ ଉତ୍ତର ।
ଦୁନ୍ଦୁଭି ବାଦ୍ୟ ନାଦ ଶୁଣି । ବିଚାର କଲେ ମୁନିମଣି ।
ଏ ପୁଣ୍ୟ ଭୂମି ସମକଛ । ନାହିଁ କୋଟିଏ ତୀର୍ଥ ତୁଚ୍ଛ ।
ସ୍ୱର୍ଗରୁ ଦେବଙ୍କ ଉତ୍ତର । ଶୁଣିଲା ଶୁଭୁଛି ଏଠାର ।
ଏହାର ନାମ ଦେବି ମୁହିଁ । ସ୍ୱର୍ଗଦ୍ୱାର ଏ ପୁଣ୍ୟମହୀ ।
ସେଠାରୁ ପାଞ୍ଚକରି ଗଲେ । ନୀଳ ଯେ ବନରେ ପଶିଲେ ।
ନୀଳ ସୁନ୍ଦର ଗିରି ଶିଖେ । ବଟେ କ ଦେଖିଲେ ପ୍ରତକ୍ଷେ ।
ପର୍ବତ ଦକ୍ଷିଣ ପାରୁଶେ । ଦେଖିଲେ ବଟେ କ ପ୍ରକାଶେ ।
କଳ୍ପ କଳ୍ପାନ୍ତେ ତହିଁ ଅଛି । କଳ୍ପବଟ ନାମ ବହିଛି ।
ବଟକୁ ପ୍ରଦକ୍ଷିଣ କଲେ । ଦକ୍ଷିଣ ମୁଖରେ ଚଳିଲେ ।
ବଟ ସାଗର ମଧ ସ୍ଥାନ । ମଠେକ କଲେ ସେ ନିର୍ମାଣ ।
ବଟ ଯେ ବୃକ୍ଷ ତହିଁ ରୋପି । ସେ ବଟ ତଳେ ବସି ଯପି ।
ଆପଣା ନାମ ତାକୁ ଦେଲେ । କଣ୍ଡୁ ଯେ ଆଶ୍ରମ ବୋଇଲେ ।

ଜମ୍ବୁ ଈଶ୍ୱର ଲିଙ୍ଗ ସ୍ଥାପି । ପୂଜା କରନ୍ତି ପୁଣ୍ୟ ରୂପୀ ।
ସେ ତୀର୍ଥେ ନ ଦଣ୍ଡଇ ଯମ । ତେଣୁ ଯମ୍ବିକ ତୀର୍ଥ ନାମ ।
ଯମର କାଳଦଣ୍ଡ ଫାଶୀ । ସେ ସ୍ଥାନେ ନ ପାରଇ ପଶି ।
ଜମ୍ବିକ ତୀର୍ଥ ଗୁଣମାନ । କହିଲେ ମାଦ୍ରୀର ନନ୍ଦନ ।
ସହଦେବର ମୁଖୁଂ ଶୁଣି । ଆନନ୍ଦ ଧର୍ମରାଜା ମଣି ।
ମନରେ ଆନନ୍ଦ ହୋଇଣ । ବୋଲନ୍ତି ସହଦେବ ଶୁଣ ।
ଏକଥା କେମନ୍ତେ ଜାଣିଲୁ । ଗୁପତ କିମ୍ପା ରଖିଥିଲୁ ।
ଧନ୍ୟ ତୁ ଧନ୍ୟ ମୁନିବର । କିଅବା ଦେବା ପଟାନ୍ତର ।
ଭୀମ ତା କେମନ୍ତେ ଜାଣିଲା । ପଚାର ବୋଲିଣ ବୋଇଲା ।
ପଣ୍ଡିତ ପଣେ ଗୁଣମଣି । ଧାର୍ମିକ ପଣେ ତୋତେ ଗଣି ।
ଅର୍ଜୁନ ବିଚାର କି ମନେ । ତୀର୍ଥ ମହିମା ଶୁଣି କର୍ଣ୍ଣେ ।
ସକଳ ଚିନ୍ତା ଦୂରକରି । ଗୋବିନ୍ଦ ପାଦ ଶିରେ ଧରି ।
ଶୁଣି ପରୀକ୍ଷ ନୃପବର । ନମଇଂ ମୁନିଙ୍କ ପୟର ।
ଭୋମୁନି ତବ ଦରଶନେ । କୃତାର୍ଥ ହେଲି ବିଦ୍ୟମାନେ ।
ପାଣ୍ଡବେ ଧରି ପଦ୍ମପାଦ । ତରିଲେ ଏ ଘୋର ପ୍ରମାଦ ।
ମୁଂ ଏହା ଶ୍ରବଣେ ଶୁଣିଲି । ବ୍ରହ୍ମ ଶାପରୁ ନିସ୍ତରିଲି ।
ପାମର ବିପ୍ର ଜଗନ୍ନାଥ । ଚିନ୍ତଇ ଶଙ୍ଖଚକ୍ର ହସ୍ତ ।

ଇତିଶ୍ରୀ ଦାରୁବ୍ରହ୍ମ ଗୀତା ଶୁକ ପରୀକ୍ଷିତ ସମ୍ବାଦେ ଜାରାଶବର ବୈକୁଣ୍ଠ ଗମନେ ପାଣ୍ଡବ ତୀର୍ଥ ବିଚାରଣେ ନାମ ପ୍ରଥମୋଧ୍ୟାୟଃ ।

## ଦ୍ୱିତୀୟ ଅଧ୍ୟାୟ

### ପରୀକ୍ଷିତ ଉବାଚ

ପରୀକ୍ଷ ମୁନିଙ୍କ ଚରଣେ । ନମି ପଡ଼ଇ ତତ୍‌କ୍ଷଣେ ।
ଭୋ ମୁନି ନିସ୍ତରିଲି ମୁହିଂ । ଗୋବିନ୍ଦ କୀର୍ତ୍ତି ଦେଲ କହି ।
ମୁଂ ଯେ ଅଟଇ ଅରକ୍ଷିତ । ହୋଇଛି ବ୍ରହ୍ମ ଶାପଗ୍ରସ୍ତ ।
ସେ ପାପୁଂ ତରିବି କେମନ୍ତେ । ସୁଦୟା ଚିତ୍ତେ କହ ମୋତେ ।
ଏଥୁ ଅନ୍ତରେ କହ ମୁନି । ପାଣ୍ଡବେ କି କଲେକ ପୁଣି ।

ଏହା ବିସ୍ତାରି ମୋତେ କହ । ତେବେ ଫୁଟିବ ମୋ ସନ୍ଦେହ ।
ରାଜା ମୁଖରୁ ଏହା ଶୁଣି । ଆନନ୍ଦେ ହସି ମୁନିମଣି ।

## ଶ୍ରୀ ଶୁକ ଉବାଚ

ବୋଲନ୍ତି ଶୁଣ ତୁ ରାଜନ । କୃଷ୍ଣରେ ନିବେଶ ତୋ ମନ ।
ଏବେ ତୁ ସ୍ଥିର ମନେ ଶୁଣ । ପାଣ୍ଡବେ କଲେ କିସ ପୁଣ ।
ଶ୍ରୀ କୃଷ୍ଣ ଗଲେ ନିଜ ଧାମ । ପାଣ୍ଡବେ ହୀନ ପରାକ୍ରମ ।
ବସି ଭାଳନ୍ତି ପାଞ୍ଚ ଭାଇ । ଗୋବିନ୍ଦ ମୃତ୍ୟୁ ପିଣ୍ଡ ଥୋଇ ।
ଯୁଧିଷ୍ଠି ଭୀମ ଅରଜୁନ । ନକୁଳ ସହଦେବ ସାନ ।
ବୁଦ୍ଧି ତାହାଙ୍କୁ ନ ଦିଶଇ । ଆତ୍ମା ବିକଳ ଦହି ହୋଇ ।
ଭୀମ ଯେ ଗଦା ଭାର ଥୋଇ । କାହାକୁ କିଛି ନ ବୋଲଇ ।
ବିଚାରି ଭାଳଇ ମନର । କୃଷ୍ଣଙ୍କୁ କରିବା ସଂସ୍କାର ।
ଯିବା ବହନ ନିଜ ଦେଶ । ଏଠାରେ ପ୍ରୟୋଜନ କିସ ।
ଯୁଧିଷ୍ଠି ମୁଖକୁ ଚାହିଁଲା । ଆପଣା ଭାବେଣ ବୋଇଲା ।
କୃଷ୍ଣଙ୍କୁ ଦହନ କରିବା । ନିଜ ରାଜ୍ୟକୁ ଚଳିଯିବା ।
ଏମନ୍ତ କହନ୍ତେଣ ଭୀମ । ଯୁଧିଷ୍ଠି ମନରେ ଯେ ତମ ।
ଏମନ୍ତେ ବିଚାରନ୍ତି ଦେବ । ମନେ ହସଇ ସହଦେବ ।
ଏତ ଅନାଦି ନାରାୟଣ । କେମନ୍ତେ କରିବା ଦହନ ।
ଅଗ୍ନି ତ ନ ପାରଇ ଦହି । ପବନ ନ ପାରେ ଉଡ଼ାଇ ।
ଖଡ଼ଗେ ନ ଛିଡ଼ଇ ଜାଣ । ପୁଙ୍ଗ ନୋହିବ ଏହୁ ପୁଣ ।
ଅବ୍ୟକ୍ତ ବ୍ରହ୍ମ ନିରାକାର । ପୂରି ଅଛଇ ଜଗତର ।
ସବୁ ଘଟରେ ଅଛି ପୂରି । ମହିମା କେହୁ କହି ପାରି ।
ଦହିତ କ୍ଷମ ଏ ନୁହନ୍ତି । ଲୋକାଚାରକୁ ବିଚାରନ୍ତି ।
ଏତେ ବିଚାରି ତୁନି ହେଲା । ସଂଶୟ ଫେଡ଼ି ନ କହିଲା ।
ଆବର ଅବିଗୁଣେ ଥାଇ । ନ ପଚାରିଲେ ନ କହଇ ।
ଭୀମର ମୁଖୁଂ ଏହା ଶୁଣି । ସହଦେବଙ୍କୁ ଚାହିଁ ଭଣି ।
କହ ହେ ଏଥିର ବିଚାର । କୃଷ୍ଣର ପଡ଼ିଛି ଶରୀର ।
ଶୁଣି ବୋଲଇ ସହଦେବ । ଶୁଣିମା ହେଉ ରାଜଦେବ ।

ବିଳମ୍ବ ନ ସହଇ କ୍ଷଣେ । କହିବା ଗୁପତ ବଚନେ ।
ଜମ୍ବୀକ ତୀର୍ଥେ ଚାଲ ଯିବା । କୃଷ୍ଣର ପିଣ୍ଡକୁ ଦହିବା ।
ସେଠାରେ କୃଷ୍ଣର ଶରୀର । ପୁରୁଷୋତ୍ତମ ନାମ ତାର ।
ଦକ୍ଷିଣ ମହୋଦଧି ଜାଣ । ଏକଶ ଯୋଜନ ଦକ୍ଷିଣ ।
କୋଟିଏ ତୀର୍ଥ ତହିଁ ରୁଣ୍ଡ । ସ୍ୱର୍ଗକୁ ଫିଟିଅଛି ଦାଣ୍ଡ ।
ସେ ତୀର୍ଥେ ସ୍ନାହାନ କରନ୍ତି । ଯମ ନ ଦଣ୍ଡେ କଦାଚିତେ ।
ସ୍ୱର୍ଗଦୁଆର ନାମ କହି । ଦେବେ ଅଛନ୍ତି ନାମ ଦେଇ ।
ସ୍ୱର୍ଗ ଦ୍ୱାରକୁ ନାହିଁ ଲକ୍ଷ । ବିଷ୍ଣୁଙ୍କ ଅଙ୍ଗ ସେ ପ୍ରତ୍ୟକ୍ଷ ।
ଚାଲ କୃଷ୍ଣଙ୍କୁ ଯିବା ଘେନି । କହିଲି ଗୁପତ ଏ ବାଣୀ ।
କହିଲା ଯହୁଁ ମନ୍ତ୍ରୀବର । ଶୁଣି ଯୁଧିଷ୍ଠି ନୃପବର ।
ଆନନ୍ଦେ ଉଲ୍ଲସିତ ହୋଇ । ଅର୍ଜ୍ଜୁନ ମୁଖକୁ ଅନାଇ ।
ଯାହା କହିଲା ସହଦେବ । ଶୁଣିଲୁ ଟିକି ହୋ ପାଣ୍ଡବ ।
ଅର୍ଜ୍ଜୁନ ଯୋଡ଼ି ବେନିକର । ଯେ କଥା ଗୁପତ ବିଚାର ।
ପଞ୍ଚ ପାଣ୍ଡବ ସଙ୍ଗ ହେଲେ । ଚନ୍ଦନ ଦାରୁ ଅଣାଇଲେ ।
ଖଟ ଗୋଟିଏ ନିର୍ମା କଲେ । କୃଷ୍ଣଙ୍କୁ ତହିଁ ଶୁଆଇଲେ ।
ପାଞ୍ଚେ ହେଁ ଧରି ଆଡ଼େ ଆଡ଼େ । ହକାରି ଉଠି ଅତି ଗାଢ଼େ ।
ସୁରେଶ୍ୱର ବନକୁ ଜାଣ । ପୂର୍ବଦିଗକୁ ଦୁଇକ୍ରୁଣ ।
ଘେନିଣ ତାଙ୍କୁ ଚଳିଗଲେ । ଜମ୍ବିକ ତୀର୍ଥରେ ମିଳିଲେ ।
ଦକ୍ଷିଣ ମହୋଦଧି ତୀରେ । କଳପ ବଟ ଦକ୍ଷିଣରେ ।
ନୀଳଗିରିକି ସେହି ସ୍ଥାନ । ଛଡ଼ାରେ ଦୁଇ ପାଆ ଜାଣ ।
ସହଦେବଙ୍କୁ ପଚାରନ୍ତି । କହ ହେ ଏ ସ୍ଥାନର ଗତି ।
ଏହି ସ୍ଥାନରେ କି ରଖିବା । ଆଉ କି ଖଣ୍ଡେ ଦୂର ନେବା ।
ମନ୍ତ୍ରୀ ବୋଲଇ ଏହି ଠାରେ । କିସ କହିବି ମୁଁ ଏଥିରେ ।
ସେଠାରେ କୃଷ୍ଣଙ୍କୁ ଥୋଇଲେ । ନୀଳ ବନକୁ ଚଳିଗଲେ ।
ବୁଲିଣ ନୀଳଗିରି ବନ । ଖୋଜିଲେ କାଷ୍ଠ ଯେ ଚନ୍ଦନ ।
ବିଶେଷ କରି ଘେନିଗଲେ । ସ୍ୱର୍ଗ ଦୁଆରେ ରୁଣ୍ଡ କଲେ ।
କାଷ୍ଠକୁ କାଷ୍ଠ ଘରଷଣେ । ଭିଆଇ ଅଗ୍ନି ନବତନେ ।
ତୀର୍ଥରୁ ଜଳ ସେ ଆଣିଲେ । କୃଷ୍ଣର ଶିରରେ ସିଞ୍ଚିଲେ ।

ସ୍ନାନ କରାଇଣ ବହନ । ଶ୍ରୀ ଅଙ୍ଗ ପୋଛି ତତକ୍ଷଣ ।
ଶ୍ରୀ ଅଙ୍ଗେ ଲେପିଲେ ଚନ୍ଦନ । ପିନ୍ଧାଇ ବସ୍ତ୍ର ନବତନ ।
ସେବତୀ ଗଭା ଚୂଳେ ଦେଇ । ନାନାଦି ଅଳଙ୍କାର ଲାଇ ।
ଉତ୍ତମ ଦ୍ରବ୍ୟେ ବେଶ ଭାଲେ । ଚନ୍ଦନ କାଷ୍ଠେ ଶୁଆଇଲେ ।
ଲଗାଇ ନବତନ ଅଗ୍ନି । ସୁବାସ ଘୃତ ଢାଳି ପୁଣି ।
ଅଗ୍ନି ଜଳିଲା ପରଚଣ୍ଡ । କେଭେଂ ନ ପୋଡ଼େ କୃଷ୍ଣ ପିଣ୍ଡ ।
ପାଣ୍ଡବେ ବସି ଚାରିପାଖେ । ମନର ଅତି ଗୁରୁ ଦୁଃଖେ ।
କାନ୍ଦନ୍ତି ପାଇ ମନେ ତାପ । ଅନାଥ କଲୁ ଗୋପିନାଥ ।
ଅମ୍ଭଙ୍କୁ ଦୟା କେ କରିବ । ଭବ ସାଗରୁ ଉଦ୍ଧାରିବ ।
ଜଗତେ ଜାଣନ୍ତି ସମସ୍ତେ । ପାଣ୍ଡବେ କୃଷ୍ଣର ଆଶ୍ରିତେ ।
ବଞ୍ଚିଣ ନେଉଥିଲୁ ଦିନ । ଏବେ କେ କରିବ ରକ୍ଷଣ ।
ଏତେ ବିଚାର କରି ମନେ । ଲୋତକ ପୂରାଇ ନୟନେ ।
କୃଷ୍ଣର ପିଣ୍ଡ ଦହୁଛନ୍ତି । ଅଗ୍ୟାଂନେ କିଛି ନ ଜାଣନ୍ତି ।
ଶୁଣ ପରୀକ୍ଷ ମନସ୍ଥିରେ । କହିବା ଏଥିର ବିଚାରେ ।
ସତ୍ୟ କଳିର ଏହୁ ଭାବ । ଶୁଣ ସୁମନେ ରାଜଦେବ ।
ଏମନ୍ତେ ଦୁଇଦିନ ଗଲା । ଅଗ୍ନି ତା ଦହି ନ ପାରିଲା ।
ଅଗ୍ନି ଜଳିଲା ଦାଉ ଦାଉ । ଲେଶେ ହେଂ ନ ପୋଡ଼ିଲା ଆଉ ।
ପାଣ୍ଡବେ ତାଟକା ହୋଇଲେ । ବିସ୍ମୟ ହୋଇଣ ବସିଲେ ।
ସୁବର୍ଣ୍ଣେ ଅଗ୍ନିରେ ଦହନ୍ତେ । ଶୋଭା ଦିଶଇ ସେ ଯେମନ୍ତେ ।
ଦିଶେ ସେପରି କୃଷ୍ଣ ଅଙ୍ଗ । ପାଣ୍ଡବେ ମନେ ଉଦ୍‌ବେଗ ।
ଏବେ କରିବା କିସ ବୁଦ୍ଧି । ନାମ ଯା କରୁଣା ବାରିଧି ।
ଆମ୍ଭେ ଅଗ୍ୟାଂନ ମୂଢ଼ଜନ । ନ ଜାଣୁ କୃଷ୍ଣ ବର୍ଣ୍ଣେ ଚିହ୍ନ ।
ତେସନେ କୃଷ୍ଣଙ୍କ ଶରୀର । ପାଣ୍ଡବେ ଚାହିଂ ଚମତ୍କାର ।
ପାଞ୍ଚ ଦିବସ ବହିଗଲା । ରାତ୍ର ଯେ ପାଞ୍ଚ ଶେଷ ହେଲା ।
ରୋମେ ହେଂ ନ ପୋଡ଼ିଲା ଅଙ୍ଗ । ପାଣ୍ଡବେ ମନରେ ବିଭଙ୍ଗ ।
ଷଷ୍ଠ ଦିବସ ଅନ୍ତରେଣ । ପାଦ ପାଣି ଯେ ହେଲା କ୍ଷୀଣ ।
ବଉଦ୍ଧ ରୂପ ହେବା ପାଇଂ । ପାଦ ପାଣି ଛାଡ଼ିଲେ ତହିଂ ।
କଳି ଯୁଗରେ ନାରାୟଣ । ନ ବହି ପାଦ ପାଣି ପୁଣ ।

ଶ୍ରୀ ମୁଖ କରିବେ ଗୋପନ । ନ ବହି ଜିହ୍ୱା ଯେ ବଦନ ।
ଡାକିଲେ ଶ୍ରବଣେ ଶୁଣିବେ । ଭୃତ୍ୟ ଆରତ ନିବାରିବେ ।
ଏମନ୍ତ ଶୁଣି ପରୀକ୍ଷିତ । ନୟନେ ଅଶ୍ରୁଜଳ ଯୁତ ।
ଏଥି ଉତ୍ତାରେ କିସ କଲେ । କହିବା ହେଉ ଦେବ ଭଲେ ।

## ଶ୍ରୀ ଶୁକ ଉବାଚ

ଆନନ୍ଦ ହୋଇ ମୁନିବର । ବୋଲନ୍ତି ଶୁଣ ନୃପବର ।
ସପତ ଦିବସ ଅନ୍ତରେ । ପାଣ୍ଡବେ ଚାହିଁଲେ ସତ୍ୱରେ ।
ଦେଖିଲେ ପାଦ ପାଣି ନାହିଁ । ଶ୍ରୀମୁଖ ଗଲା ହାଦେ କାହିଁ ।
ଏକା ରହିଛି ପିଣ୍ଡ ଗୋଟି । ପାଣ୍ଡବେ ମନରେ ଯେ କଷ୍ଟି ।
ଚନ୍ଦନ କାଠ ପୁଣ ଆଣି । ଅଗ୍ନିରେ ପକାନ୍ତି ଯେ ହାଣି ।
ପୁଣି ନିହୁଡ଼ି ଘୃତ ଧାର । ଅଗ୍ନି ଜଳଇ ଘୋରତର ।
ଯାହାର ବର୍ଣ୍ଣ ଚିହ୍ନ ନାହିଁ । ସଚ୍ଚିଦାନନ୍ଦ ପୁଣ୍ୟ ଦେହୀ ।
ଅଗ୍ନି ତେଜରୁ ତା ଶରୀର । ଅଗ୍ନି ଯା ଗର୍ଭରୁ ବାହାର ।
ଏମନ୍ତେ କେତେ ଦିନ ଅନ୍ତେ । ପାଣ୍ଡବେ ବିଚାରନ୍ତି ଚିତ୍ତେ ।
ଏତ ଅନାଦି ନାରାୟଣ । ନାମ ଯାହାର ପରଂବ୍ରହ୍ମ ।
ମହିମା ଯାର ଅଗୋଚର । ଆମ୍ଭେ ଅଗ୍ୟାଂନ ମୂଢ଼ ନର ।
ନ ଜାଣି ଗୋବିନ୍ଦର ଗତି । ଅଗ୍ୟାଂନ ଭ୍ରମ ହେଲା ମତି ।
ଏମନ୍ତେ ବିଚାରିଣ ମନେ । ବସି ଭାଳନ୍ତି ପାଞ୍ଚଜଣେ ।
ଏମନ୍ତେ କିଛିଦିନ ଅନ୍ତେ । ଦେବ ବିଚାର କଲେ ଚିତ୍ତେ ।
ପାଣ୍ଡବେ ହୋଇଲେ ଅଗ୍ୟାଂନ । ନ ଜାଣି ଗୋବିନ୍ଦର ମନ ।
ଅଧ ସ୍ୱର୍ଗରେ ବିଜେ କଲେ । ଶୂନ୍ୟେଣ ବଚନ ଭାଷିଲେ ।
ପଞ୍ଚ ପାଣ୍ଡବ ମୁଖ ଚାହିଁ । ଦେବେ ବୋଲନ୍ତି ଶୂନ୍ୟେ ରହି ।
ନ ଜାଣି ଶ୍ରୀକୃଷ୍ଣର ମାୟା । ଦହନ କରୁଅଛ କାୟା ।
ସମୁଦ୍ରେ ପିଣ୍ଡ ମେଲି ଦେଇ । ରାଜ୍ୟକୁ ଯାଅ ପାଞ୍ଚଭାଇ ।
ଶୂନ୍ୟରୁ ଶବଦ ଶୁଭନ୍ତେ । ପାଣ୍ଡବେ ଶୁଣି କର୍ଣ୍ଣ ପଥେ ।
ଅଗ୍ୟାଂନ ମତି ଦୂର କଲେ । ପରମ ବୁଦ୍ଧି ବିଚାରିଲେ ।
ସହଦେବଙ୍କୁ ଚାହିଁ ରାଏ । ଶୁଣ ହେ ମାଦ୍ରୀର ତନଏ ।

ସ୍ୱର୍ଗରେ ଶବଦ ଶୁଭିଲା । ଶ୍ରବଣେ ଶୁଣନ୍ତେ ନୋହିଲା ।
ଶ୍ରୀକୃଷ୍ଣ ପିଣ୍ଡ କୁ ଦହନ୍ତେ । ଦହନ ନୁହେଁ କଦାଚିତେ ।
ଆମ୍ଭେ ଅଗ୍ୟାଂନ ମୂଢ଼ ନର । ଦହନ୍ତେ ଶ୍ରୀକୃଷ୍ଣ ଶରୀର ।
ଆପଣେ ନ ଜାଣିବା ପଣେ । ବିଚାର କଲେ ଦେବଗଣେ ।
ଶୂନ୍ୟରେ ଥାଇ ଡାକ ଦେଲେ । ନ ଦହ ବୋଲିଣ ବୋଇଲେ ।
ବିଚାରି କହ ମନ୍ତ୍ରୀବର । ରହିଲା ଗୋବିନ୍ଦ ଶରୀର ।
ଦେବେ ଡାକନ୍ତି ସ୍ୱର୍ଗେ ଥାଇ । ସମୁଦ୍ରେ ମେଲି ଦେବା ପାଇଂ ।
କରକୁ ଚାହିଂ ମନ୍ତ୍ରୀବର । କହଇ ସମସ୍ତ ବିଚାର ।
ଅବଲୋକନେ ବିଚାରିଲା । ମନରେ ଅଳପ ହସିଲା ।
ସହଦେବର ହସ ଦେଖି । ବୋଲୁ ଅଛନ୍ତି ଧର୍ମଶିଷି ।
କି କି ଜାଣିଲୁ ମନ୍ତ୍ରୀବର । ଗୁପତେ ରଖିଛୁ ହୃଦର ।
ସମସ୍ତ କଥା ଜାଣିଥାଉ । ସ୍ଥକିତ ମନ କିମ୍ପା ହେଉ ।
ଯୁଧିଷ୍ଠି କହନ୍ତେ ଏମନ୍ତ । ହସି ବୋଇଲେ ମାଦ୍ରୀ ସୁତ ।
ଶୁଣିମା ହେଉ ଧର୍ମ ଶିଷ୍ୟ । ଏବେ ହୋ ଏଥିର ସନ୍ଦେଶ ।
ଦ୍ୱାପର ଯୁଗ ଏବେ ଗଲା । କଳି ଯେ ପ୍ରବେଶ ହୋଇଲା ।
ଚାରିଲକ୍ଷ ବତିଶ ସହସ୍ର । କଳିର ଜନ୍ମ ଯେ ପ୍ରବେଶ ।
ଭୋଗ ହେଲେ ଏତେ ବରଷ । ହୋଇବ କଳି ଯୁଗ ଶେଷ ।
ତେଣୁ ଏ ଜଗତର ନାଥେ । ଛାଡ଼ିଲେ ପାଦ ବେନି ହାତେ ।
ବଉଦ୍ଧ ରୂପେ ଦିଶୁଥିବେ । ସମସ୍ୟା କାହାକୁ ନ ଦେବେ ।
ମଉନ ରୂପେ ବସିଥାଇ । ସଂସାର ମାୟା ପ୍ରଶଂସଇ ।
କଳିଯୁଗରେ ନର ଲୋକେ । ହିଂସା ବହିବେ ଏକେ ଏକେ ।
ବେଦ ବଚନ ନ ମାନିବେ । ମୂଢ଼ ପଣରେ ଦିନ ନେବେ ।
ନିନ୍ଦିବେ ଶାସ୍ତ୍ର ଗୁରୁବାଣୀ । ପିତାମାତାଙ୍କୁ ହିଂ ନ ଗଣି ।
ଧର୍ମରେ ନ କରି ବିଚାର । ଅଧର୍ମେ ନେଉଥିବେ କାଳ
ତେଣୁ ଅଳପ ଆୟୁ ହୋଇ । ପାପ ଶରୀର ଥିବେ ବହି ।
କଳିଯୁଗରେ ପ୍ରାଣୀଙ୍କର । ତିନି ହାତ ଅଧେ ଶରୀର ।
ଯହୁଂ ନିନ୍ଦିବେ ଗୁରୁଜନ । ଆୟୁ ହୋଇବ ତହୁଂ କ୍ଷୀଣ ।
ବିଧାତା ଭିଆଇଛି ଏହା । ଶୁଣିମା ହେଉ ନର ନାହା ।

ଷାଠିଏ ସମ୍ୱତ୍ସର ଜାଣ । ବିଧାତା ଲେଖିଛି ପ୍ରମାଣ ।
ଏଥୁଂ ଅଧିକ ନ ଲେଖିଲା । ପାପରେ ସବୁ ଗୋପ୍ୟ କଲା ।
ଏତେକ ଭିତରେ ଯେ ନର । ଧର୍ମରେ ହେବ ତତପର ।
ଦେବ ଦୟାରେ ଧର୍ମ ବହି । ଜନ୍ତୁରେ ବିଦ୍ରୋହୀ ନ ହୋଇ ।
ଜନ୍ତୁଙ୍କ ଠାର ଦୟାଭାବ । ଯେ ପୁଣି ହୃଦରେ ଚିନ୍ତିବ ।
ଗୋବିନ୍ଦ ପାଦେ ନିତ୍ୟେ ଧ୍ୟାନ । ସେ ଜୀବ ଦେବତା ବ୍ରାହ୍ମଣ ।
ଗୁରୁ ବୈଷ୍ଣବଙ୍କର ପାଦେ । ଯେ ସେବୁଥିବ ଅପ୍ରମାଦେ ।
ସୁଜନ ଜନେ ନ ନିନ୍ଦିବ । ପିତା ମାତାଙ୍କୁ ଆରାଧିବ ।
ତାର ଆୟୁଷ ବୃଦ୍ଧି ହେବ । ସେ ପ୍ରାଣୀ ସଂସାରୁ ତରିବ ।
ଯେତେ ଜନ୍ମରୁ ଅଳ୍ପାୟୁଷ । ଶୁଣ କୋଇନ୍ତା ଦେବୀ ଶିଷ୍ୟ ।
ଦିନକୁ ଦିନ ଘୋର କଳି । ପାପରେ ହେବେ ସର୍ବେ ମେଳି ।
ଦିନକୁ ଦିନ ଧର୍ମ ହୀନ । ହେବ ଏ ନିଗମ ବଚନ ।
ପାପରେ ହୋଇ ସର୍ବେମତା । ଧର୍ମକୁ ନ କରିବେ ଚିନ୍ତା ।
ଜନ୍ତୁଙ୍କଠାରେ ଦୟା ଭାବ । ଯେ ପ୍ରାଣୀ ହୃଦେ ନ ଚିନ୍ତିବ ।
କେବେ ହେଂ ନ କହିବ ସତ । ମିଥ୍ୟାରେ ହୋଇ ଉପଗତ ।
ମୋହର ମୋହର ବୋଲିବ । କେହି କାହାକୁ ନ ମାନିବ ।
ସହଦେବର ମୁଖୁଂଶୁଣି । ଯୁଧିଷ୍ଠ ଭୟ ଚିତ୍ତେ ମାନି ।
କଳିଯୁଗର ଏତେ ଗୁଣ । ଶୁଣିଣ ମୋର ବେନି କର୍ଣ୍ଣ ।
ଶରୀର ହେଉଛି ଆକୁଳ । ଭୋ ଧର୍ମ କର ପ୍ରତିକାର ।
ଗୋବିନ୍ଦ ନାମ ସୁମରିଲେ । ବେନି କର୍ଣ୍ଣରେ ହସ୍ତ ଦେଲେ ।
ବୋଲନ୍ତି ଶୁଣ ମନ୍ତ୍ରୀବର । କଳିର ଏମନ୍ତ ବେଭାର ।
ଦ୍ୱାପର ଯୁଗର ଅନ୍ତେଣ । କଳି ପ୍ରବେଶ ଯେଉଂଦିନ ।
କହ ହୋ ଏଥିର ବିଚାର । ଶୁଣିବି ଶରଧା ମୋହର ।
ଯୁଧିଷ୍ଠି ପଚାରନ୍ତେ ପୁଣି । କହନ୍ତି ମନ୍ତ୍ରୀ ଚୂଡ଼ାମଣି ।
ଯାହା ତୁ ପଚାରିଲୁ ରାଏ । ଦ୍ୱାପର ଅନ୍ତେ କଳି ହୁଏ ।
ମାନ ଗୋବିନ୍ଦ ସଂହାରଣ । ସଂଗ୍ରାମେ ପଡ଼ିଲେ ଯେ ଦିନ ।
କଳିଯୁଗରେ ନୃପବର । ହୋଇଛି ଧର୍ମର କୁମର ।
ଦଶ ସହସ୍ର ଯେ ବରଷ । କଳିର ହେଲାଣି ଆୟୁଷ ।

ଯୁଧିଷ୍ଠି ସ୍ତମ୍ଭୀଭୂତ ହୋଇ । ମୁଖରୁ ବାକ୍ୟ ନ ସ୍ଫୁରଇ ।
ମନରେ ବଡ଼ ଭୟ କଲେ । ଅଧର୍ମ କଥାକୁ ଡରିଲେ ।
ପୁଣି ବୋଲନ୍ତି ଧର୍ମ ରାଏ । ଶୁଣ ହୋ ମାଦ୍ରୀର ତନଏ ।
କଥାଏ ପଚାରୁଛି ମୁହିଂ । କହ ତୁ ତୋଷ ମନ ହୋଇ ।
କଳିଯୁଗରେ ମୁଂ ରାଜନ । ଧିକ ମୋ ହୋଇଲା ଜୀବନ ।
କଳିଯୁଗରେ ନୃପବରେ । ଧର୍ମ ନ କରିବେ ବିଚାରେ ।
ଅଧର୍ମେ ନେଉଥିବେ ଦିନ । ଧର୍ମେ ନୋହିବେ ବର୍ତ୍ତମାନ ।
ପରଜା ପୁତ୍ରର ସମାନେ । ତାଙ୍କୁ ନ କରି ଆରାଧନେ ।
କରରେ ପୀଡ଼ିତ କରିବେ । ପରଜା ଆୟ ଧରିନେବେ ।
ତେବେ ନୋହିବେ ଶାନ୍ତମନ । ଦଗଧୁଥିବେ ପ୍ରଜାଜନ ।
ରାଜାର ଅଧର୍ମରେ ଜାଣ । ପୃଥ୍ୱୀ ହୋଇବ ଶସ୍ୟହୀନ ।
ସେ ରାଜା ଜଗତର ପତି । ତା ବାହୁତୁଲେ ସର୍ବସ୍ଥିତି ।
କଳିଯୁଗର କଷ୍ଟଶୁଣି । ହୃଦୟ ହେଉଅଛି ହାଣି ।
ମୋତେ ତା ନ କହିଲୁ ଜାଣି । ତୁ ମୂଢ଼ ଅଟୁ ଯେ ଅଗ୍ୟାଂନୀ ।
ଧର୍ମ ନନ୍ଦନ କ୍ରୋଧ ଶୁଣି । କହନ୍ତି ମନ୍ତ୍ରୀ ଚୂଡ଼ା ମଣି ।
ଦଶ ସହସ୍ର ଯେ ବରଷ । ସତ୍ୟରେ କଳି ପରବେଶ ।
ସତ୍ୟରେ ହେଉଅଛି ଜାତ । ଭୟ ନ କର କୁନ୍ତୀ ସୁତ ।
ଯେତେକ ଦିନ ପୃଥ୍ୱୀ ମଧ୍ୟେ । ତୁମ୍ଭେ ନୃପତି ହେବ ହାଦେ ।
କଳି ଯେ ନ ପଶିବ ଏଥେ । ଶୁଣିବା ହେଉ ଧର୍ମ ସୁତେ ।
ସହଦେବର ମୁଖୁଂ ଶୁଣି । ବୋଲେ ଅର୍ଜ୍ଜୁନ ବୀରମଣି ।
ଦେବଙ୍କ ବାକ୍ୟ ତ ଶୁଣିଲ । ଉଠ ବହନ ଯିବା ଚାଲ ।
ସମୁଦ୍ରୁ ଆଣେ ବେଗେ ଜଳ । ଅଗ୍ନିକି କରିବା ଶୀତଳ ।
ଏମନ୍ତେ ଚାରି ଭାଇ ଗଲେ । ଜଳ ସମୁଦ୍ରରୁ ଆଣିଲେ ।
ଅଗ୍ନିକି କରିଣ ଶୀତଳ । କୃଷ୍ଣର ଧରିଣ ଶରୀର ।
ନିର୍ଦ୍ଧୁମ ଅଗ୍ନି ପ୍ରାୟେ ଦେହୀ । କୋଟିଏ ସୂର୍ଯ୍ୟଙ୍କୁ ନିନ୍ଦଇ ।
କୋଟିଏ ଚନ୍ଦ୍ରରୁ ଶୀତଳ । କୃଷ୍ଣର ଧରିଣ ଶରୀର ।
ପାଣ୍ଡବ ମାନେ ଘେନିଗଲେ । ସମୁଦ୍ର କୂଳରେ ଥୋଇଲେ ।
ସମୁଦ୍ର ଭିତରେ ପଶିଲେ । କୃଷ୍ଣର ପିଣ୍ଡ ମେଳିଦେଲେ ।

ସମୁଦ୍ରେ ସାରି ନିତ୍ୟକର୍ମ । ପାଣ୍ଡବେ ହେଲେ ମତିଭ୍ରମ ।
ନୟନୁ ଲୋତକ ବହଇ । ହାହା ଗୋବନ୍ଦ ଗଲୁ କାହିଁ ।
ଯୁଧିଷ୍ଠି ଘେନି ଚାରିଭାଇ । ହସ୍ତିନା ନଗରକୁ ଯାଇ ।
ଅର୍ଜୁନ ଶ୍ରୀହରି ବଚନେ । ଗଲାକ ଦ୍ୱାରକା ଭୁବନେ ।
ସମସ୍ତ ଚରିତ କହିଲେ । ତା ଶୁଣି ଅଗ୍ନି ଅରୋପିଲେ ।
ସକଳ ପ୍ରେତକ୍ରିୟା ସାରି । ବନ୍ଧୁ ବାନ୍ଧବ ଅପସରି ।
କହଇ ବିପ୍ର ଜଗନ୍ନାଥ । ଏବେ ସେ ହୋଇଲା ଅନାଥ ।

ଇତି ଦାରୁ ବ୍ରହ୍ମ ଗୀତା ଶ୍ରୀକୃଷ୍ଣ ପିଣ୍ଡ ଦହନେ ଦେବବାଣୀ
ଶ୍ରବଣେ ପିଣ୍ଡ ସମୁଦ୍ରେ ମେଲି ପାଣ୍ଡବେ ନିଜରାଜ୍ୟ ଗମନେ
ନାମ ଦ୍ୱିତୀୟ ଅଧ୍ୟାୟ ।

## ତୃତୀୟ ଅଧ୍ୟାୟ

### ପରୀକ୍ଷିତ ଉବାଚ

ପାଣ୍ଡବେ ଗଲେ ନିଜସ୍ଥାନ । ଭୋ ମୁନି ଶୁଣ ସାବଧାନ ।
ସମୁଦ୍ରେ କୃଷ୍ଣ ପିଣ୍ଡ ମେଲି । ପାଣ୍ଡବେ ନିଜସ୍ଥାନେ ଚଳି ।
ଗୋବିନ୍ଦ ପିଣ୍ଡ କିସ ହେଲା । ଏ ମୋତେ ସଂଶୟ ଲାଗିଲା ।
ସମୁଦ୍ର ମଧ୍ୟେ ପିଣ୍ଡ ଥିଲା । କୂଳରେ କିପରି ଲାଗିଲା ।
ଶୁଣି ହସିଲେ ମହାମୁନି । ଆନନ୍ଦେ କହେ ବ୍ରହ୍ମଗ୍ୟାଂନୀ ।

### ଶ୍ରୀ ଶୁକ ଉବାଚ

ତୁ ରାଜା ପରମ ପଣ୍ଡିତ । ଶ୍ରୀ ଭାଗବତେ ତୋର ଚିତ୍ତ ।
ନିମଗ୍ନେ ମଜ୍ଜିଲା ତୋ ମନ । ତେଣୁ ତେଜିଲୁ ଭୟ ମାନ ।
ଯାହା ତୁ ପଚାରିଲୁ ମୋତେ । କହିବି ତୋହର ଅଗ୍ରତେ ।
ଶୁଣ ତୁ ଏକମନ ହୋଇ । ଗୋବିନ୍ଦ ପାଦେ ଚିତ୍ତ ଦେଇ ।
ପିଣ୍ଡ ସମୁଦ୍ରେ ଭାସୁଥିଲା । ବରୁଣ ରାଜା ତା ଜାଣିଲା ।
ଆନନ୍ଦ ହୋଇଲା ମନେଣ । ଏବେ ମୁଂ ପାଇବି କାରଣ ।
ମୁଂ ଏବେ ପବିତ୍ର ହୋଇଲି । ଚିନ୍ତା ସାଗରୁ ଉଦ୍ଧରିଲି ।

ବ୍ରହ୍ମାଦି ମୁନିଗଣ ମାନେ । ଭେଟ ନ ପାନ୍ତି ଯାକୁ କ୍ଷଣେ ।
ଏ ରୂପ ନ ଦେଖିଲେ କେହି । ଏତ ଅନାଦି ପୂର୍ଣ୍ଣ ଦେହୀ ।
ମାୟା ଶରୀର ତ୍ୟାଗ କଲେ । ନିଜ ଶରୀର ସେ ରଖିଲେ ।
ସହସ୍ରେ ଯୁଗ ପ୍ରଳୟରେ । ଏ ରୂପ କ୍ଷୟ ନୋହେ ଭଲେ ।
ଅନନ୍ତ ନାମଟି ଯାହାର । ଅନ୍ତ ନ ପାଇ ବେଦବର ।
ଏମନ୍ତ ବିଚାରି ବରୁଣ । ଲୋଭରେ ହୋଇ ହତଗ୍ୟାଂନ ।
ମୋର ପୁରକୁ ଘେନିଯିବି । ରଖି ନୟନେ ଦେଖୁଥିବି ।
ଏମନ୍ତେ ବିଚାରନ୍ତେ ମନେ । ମାୟା ଯେ କଲେ ଭଗବାନେ ।
ବରୁଣ ପିଛାଡ଼ନ୍ତେ ଆଖି । ଅନ୍ତର ହେଲେ ସର୍ବସାକ୍ଷୀ ।
ନ ଦେଖି ପ୍ରଭୁ ବ୍ରହ୍ମରାଶି । ବରୁଣ ହେଲା ମନେ ତ୍ରାସି ।
ଗୋବିନ୍ଦ ଅନ୍ତର୍ଦ୍ଧାନ ହେଲେ । ସେଠାରୁ ବହନ ଚଳିଲେ ।
ଲାଗିଲା ଯାଇଂ କୂଳଶିରେ । ବରୁଣ ଗଲା ନିଜପୁରେ ।
ପିଣ୍ଡ ରହିଲା କୂଳେ ଲାଗି । ଜଗତ ପରା ପରିତ୍ୟାଗି ।
କୂଳେ ରହିଲେ ଯେତେ ଦିନ । କେହି ନ ଦେଖିଲେ ନୟନ ।
ଏମନ୍ତେ କେତେ ଦିନ ଗଲା । ଶୁଣ ହୋ ଅଭିମନ୍ୟୁ ବଳା ।
ମୁନିଙ୍କ ମୁଖୁଂ ଏହାଶୁଣି । ବୋଲେ ପରୀକ୍ଷ ନୃପମଣି ।

## ପରୀକ୍ଷିତ ଉବାଚ

ପିଣ୍ଡ କୂଳରେ ଥିଲା ରହି । ତାହା କି କଲେ ନରସାଇଂ ।
ସେ ପିଣ୍ଡ କିସ ଯେ ହୋଇଲା । ଶୁଣ ହୋ ବ୍ୟାସ ରଷିବଳା ।
ପରୀକ୍ଷ ପଚାରନ୍ତେ ବାଣୀ । ଶୁକ କହନ୍ତି ପରିମାଣି ।

## ଶ୍ରୀ ଶୁକ ଉବାଚ

ଥୋକାଏ ଦିନେକ ଅନ୍ତରେ । ବସୁ ଯେ ନାମେଣ ଶବରେ ।
ଧନୁ କମାଣ କରେ ଧରି । ମୃଗୟା ବିନୋଦେ ବିହରି ।
ଶରଧା ଭାବରେ ସେ ଦିନ । ଆନନ୍ଦେ ଗମଇ ଅରଣ୍ୟ ।
ନୀଳ ବନକୁ ସେ ଚଳଇ । ମୃଗୟା କରିବାର ପାଇଂ ।
ନୀଳ କନ୍ଦର ଯାକୁ ବୋଲି । ବାଙ୍କି ମୁହାଁଣେ ଯାଇ ମିଳି ।
ଗୋବିନ୍ଦେ ମାୟା ତାକୁ କଲେ । ନିଶ୍ଚଳ କରି ନ ରଖିଲେ ।
ମନେ ତା କରାଇଣ ଭ୍ରମ । ଉର୍ଦ୍ଧବେଗରେ ଦମ ଦମ ।

ଶବର ବିଚାରଇ ପୁଣ । ଆଜ ତ ଉତ୍ସୁକ ମୋ ମନ ।
ଏ ମନ୍ତ ଭାଳଇ ଶବର । ଚଳଇ ସମୁଦ୍ରର ତୀର ।
ମୃଗ ଯେ ଶୂକର ହରିଣ । କିଛି ନ ଭେଟିଲା ସେ ଦିନ ।
ଏମନ୍ତ ମନର ଉଦ୍‌ବେଗେ । ବୁଲି ଚାହିଁଇ ଚାରିଦିଗେ ।
ପୂର୍ବର ଭାଗ୍ୟ ତପ ଫଳେ । ପିଣ୍ଡ ଦେଖିଲା ଚର୍ମ ଡୋଳେ ।
ନିର୍ଧୂମ ଅଗ୍ନି ପ୍ରାଏ ତେଜ । ଜିଣିପାରେ ସେ କୋଟି ସୂର୍ଯ୍ୟ ।
କୋଟିଏ କାମ ପ୍ରାଏ ଅଙ୍ଗ । ଶ୍ରୀ ଅଙ୍ଗେ ବାଜୁଛି ତରଙ୍ଗ ।
ସ୍ୱର୍ଗକୁ ଅନାଇଣ ଦେଲା । ଲୋଚନେ ଘୂମ ଯେ ଲାଗିଲା ।
ଲାଗିଲେ ଯେହ୍ନେ ସୂର୍ଯ୍ୟ ତେଜ । ଚକ୍ଷୁ ବୁଜନ୍ତେ ବିଶେ ରାଜ ।
କ୍ଷଣେ ନୟନ ବୁଜି ଦେଲା । କ୍ଷଣେ ହେଂ ଅନାଇଣ ଦେଲା ।
ଦେଖିଲା ଶଙ୍ଖଚକ୍ର ଚିହ୍ନ । ଶବର ମନେ ବଡ଼ ଦୀନ ।
ପୂର୍ବ ତପରୁ ତା ନୟନ । ଦେଖିଲା ଶଙ୍ଖଚକ୍ର ଚିହ୍ନ ।
ଭୟରେ ଖଣ୍ଡେ ଦୂରେ ରହି । ନିରେଖି ନିରେଖି ଦେଖଇ ।
ଘର୍ମ ଶରୀରେ ଶୀଘ୍ରେ ଯାଇ । ପିଣ୍ଡର ସନ୍ନିଧେ ମିଳଇ ।
ଭୟରେ କମ୍ପଇ ଶରୀର । ବିଚାର କରଇ ମନର ।
ଏତ ପରମ ବ୍ରହ୍ମ ରାଶି । ଦେଖିଲି ଚର୍ମନେତ୍ରେ ଆସି ।
ଏ ପ୍ରଭୁ ଜଗତ ଈଶ୍ୱର । ଭାସୁଛି ସମୁଦ୍ରର ତୀର ।
ଏ କଥା ଅଦ୍ଭୁତ କାରଣ । ଶବର ଜାତି ମୁହିଁ ହୀନ ।
ଶିରେ ଯୋଡ଼ିଣ ବେନି କର । ନମଇଂ ଗୋବିନ୍ଦ ପୟର ।
ଭୋ ନାଥ ତୁ ଆରତ ତ୍ରାଣ । ଭୃତ୍ୟ ଆରତ ନିବାରଣ ।
ଜଗତ ଜନଙ୍କର ବନ୍ଧୁ । ନାମ କରୁଣାମୟ ସିନ୍ଧୁ ।
ଅନେକ ସ୍ତୁତି ବଖାଣିଲା । ସହସ୍ରେ ଦଣ୍ଡବତ କଲା ।
ମୁଂ ମୂଢ଼ କିଛି ନ ଜାଣଇ । ତୁମ୍ଭେ ଦୟାଳୁ ଭାବଗ୍ରାହୀ ।
ଅନାଥ ଜନ ପ୍ରାଏ ହୋଇ । ଜଳେ ଭାସୁଛି କାହିଁପାଇଂ ।
ତେବେ ତ ଜଗତ ମୋହୁଛ । ବ୍ରହ୍ମାଣ୍ଡେ କାୟାତ ଘୋଟିଛ ।
ବ୍ରହ୍ମା ଶଙ୍କର ଅଗୋଚର । ମୁଂ ଯେ ଦେଖିଲି ମୂଢ଼ ନର ।
ଏମନ୍ତ ବିଚାର ସେ କଲା । ସେଠାରୁ ଚଳି ନ ପାରିଲା ।
ରହିଲା ସ୍ତମ୍ଭୀଭୂତ ହୋଇ । ଦଶଦିଗକୁ ସେ ଅନାଇ ।

ଚକିତେ ଭାଳଇ ମନର । କି ବୁଦ୍ଧି କରିବି ଏଠାର ।
ପ୍ରଭୁଙ୍କୁ ଘେନି ମୁହିଁ ଯିବି । କେଉଁଣ ଭୁବନେ ରଖିବି ।
ଜାତିରେ ଅଟଇ ଶବର । ଚାରି ଜାତିରୁ ମୁଁ ବାହାର ।
ଏତ ଅନାଦି ନାରାୟଣ । ମୁହିଂ ତ ନୁହଇ ଭାଜନ ।
ହୀନ ଅଜାତି ମୁଁ ଅଟଇ । ମୁହିଂ ତ ଭାଜନ ନୁହଇ ।
ଆତଙ୍କେ ମନେ ମନେ ଭଏ । କରି ଚିନ୍ତଇ ଦେବରାଏ ।
ଏମନ୍ତେ କିଛି ବେଳ ଅନ୍ତେ । ଦେବେ ବିଚାର କଲେ ଚିତ୍ତେ ।
ଶବର ଦେଖିଣ ଏ ରୂପ । ଭଏଣ କମ୍ପୁଛି ସ୍ୱରୂପ ।
ଜାତିରେ ଅଟଇ ଶବର । ବନଜନ୍ତୁ ସଙ୍ଗେ ବେଭାର ।
ସେ ତାହା କେମନ୍ତେ ଜାଣିବ । କି ରୂପେ ବିଷ୍ଣୁଙ୍କୁ ପୂଜିବ ।
ପୂର୍ବେ ସେ ପୁଣ୍ୟ କରିଅଛି । ତେଣୁ ପୂଜିବ ବ୍ରହ୍ମରାଶି ।
ଏହାଙ୍କୁ ସଦବୁଦ୍ଧି ଦେବା । ତା ଅଙ୍ଗେ ଗ୍ୟାଂନ ପ୍ରସାରିବା ।
ତେବେ ସେ ଗ୍ୟାଂନ ହେତୁ ପାଇ । ପ୍ରଭୁଙ୍କୁ ଘେନି ଯାଉ ସେହି ।
ନୀଳଗିରିକି ଘେନିଯାଉ । ବଟମୂଳରେ ଥୋଇ ଥାଉ ।
ଆହାର କନ୍ଦମୂଳ ଦେଇ । ଶିରରେ ବେଲପତ୍ର ଥୋଇ ।
ଏ ରୂପେ ନିତ୍ୟେ କରି ପୂଜା । କହିଣ ଦିଅ ଦେବରାଜା ।
ଦେବେ ଏମନ୍ତ ବିଚାରିଲେ । ଜମ୍ବୁକ ତୀର୍ଥରେ ମିଳିଲେ ।
ସ୍ୱର୍ଗରୁ ଅଇଲେ ଓହ୍ଲାଇ । ଖଣ୍ଡେ ଦୂରରେ ଯାଇଂ ରହି ।
ଭୂମିକି ଛାଡ଼ି ଦୁଇହାତ । ଦେବଙ୍କୁ ଘେନି ବଉମାଥ ।
ଶବର ମୁଖକୁ ଚାହିଁଲେ । କୋମଳ ବଚନ ଭାଷିଲେ ।
ବୋଲନ୍ତି ଶୁଣ ହେ ଶବର । ଭୟ ତୁ ମନରେ ନ କର ।
ପୂର୍ବରେ ଭାଗ୍ୟ ଅଛୁ କରି । ଏଥେଂ ଦେଖିଲୁ ନରହରି ।
ଆମ୍ଭ ବଚନ ଏବେ କର । ପିଣ୍ଡକୁ ଘେନିଣ ତୁ ଚଳ ।
ଯାଅ ତୁ ନୀଳଗିରି ବନ । ତହିଂରେ ଅଛି ପୁଣ୍ୟସ୍ଥାନ ।
ଅପୋଡ଼ା ପୃଥୀ ନାମ ତାର । ସବୁ ସ୍ଥାନରୁ ସେ ସୁନ୍ଦର ।
କଳ୍ପବଟ ଅଛି ତହିଂ । ସେ ବଟ ଚାରିଯୁଗେ ଥାଇ ।
ଦେବେ ନ ପାନ୍ତି ଯାହା ଇଛି । ବହ୍ମ ପ୍ରଳୟ ନୋହେ କିଛି ।
ସେ ବଟ ପୁଟେ ନାରାୟଣ । ପ୍ରତ୍ୟକ୍ଷ କରନ୍ତି ଶୟନ ।

 

ନିକଟେ ବସି ବ୍ରହ୍ମରାଶି । ତହିଁ ନଲାଗେ ଜଳରାଶି ।
ରୋହିଣୀ ନାମେ କୁଣ୍ଡ ଅଛି । ତାକୁ ଉପମା ନାହିଁ କିଛି ।
କଳ୍ପବଟ ଅଛି ତହିଁ । ସେ ବଟ ଚାରିଯୁଗେ ଥାଇ ।
ସେ କୁଣ୍ଡ ନିକଟରେ ଜାଣ । ଚନ୍ଦନ ବୃକ୍ଷେକ ନିର୍ମାଣ ।
ଦେବଙ୍କ ଠାରୁ ଏ ବଚନ । ଶବର ଶୁଣି ବେନିକର୍ଣ୍ଣ ।
ଆକାଶ ମାର୍ଗକୁ ଚାହିଁଲା । ଶିରରେ ବେନିକର ଦେଲା ।
ବୋଲଇ ଶୁଣ ଦେବଗଣ । ମୁଁ ଯେ ଅଟଇ ହୀନଜନ ।
ଶବର ଜାତି ମୁଁ ବୋଲାଇ । ସବୁ ଜାତିରୁ ତୁଚ୍ଛ ହୋଇ ।
କେମନ୍ତେ ଶ୍ରୀଅଙ୍ଗ ଛୁଇଁବି । ଅଗ୍ନିରେ ପୋଡ଼ିଣ ମରିବି ।
କୋଟିଏ ଅଗ୍ନି ପ୍ରାଏ ତେଜ । ସହସ୍ର ସୂର୍ଯ୍ୟ ପ୍ରାଏ ଉଜ ।
କେମନ୍ତେ ଛୁଇଁବିଟି ମୁହିଁ । ଛୁଇଁଲେ ଜଳିଯିବ ଦେହୀ ।
ଏମନ୍ତେ ଭୟମନେ କଲା । ଦେବଙ୍କ ବାକ୍ୟ ନ ମାନିଲା ।
ଦେବେ ଜାଣିଲେ ତାର ମନ । ପୂଜିଲେ ଯାଇ ନାରାୟଣ ।
ସମସ୍ତ ଦେବେ ଯୋଡ଼ିକର । ନମନ୍ତି ଗୋବିନ୍ଦ ପୟର ।
ସ୍ତୁତି ଯେ କରନ୍ତି କାତରେ । ଗୋବିନ୍ଦ ସୁମରି ମନରେ ।
ହେ ଦେବ ଦେବ ଭଗବାନ । ମହିମା କେ କରେ ବଖାଣ ।
ଅନନ୍ତ ମହିମା ତୋହର । କେ ତାହା କରିବ ଗୋଚର ।
ଦେବଙ୍କ ସ୍ତୁତି ମନେ ଜାଣି । ଦୟା ବହିଲେ ଚକ୍ରପାଣି ।
ଶବର କଣ୍ଠେ ବିଜେ କଲେ । ସୁବୁଦ୍ଧି ଗ୍ୟାନ ତାକୁ ଦେଲେ ।
ଶବର ଦୟାଭାବ ଜାଣି । ଧୀରେ କହଇ ମୃଦୁବାଣୀ ।
ଦେବତା ଗଣେ ତୁମ୍ଭେ ସାକ୍ଷୀ । ଯାହା କହିଲ ଉପଲକ୍ଷି ।
ଏଥେ ମୋହର ଦୋଷ ନାହିଁ । ତୁମ୍ଭ ବାକ୍ୟରୁ ମୁଁ ନ ଯାଇ ।
ତୁମ୍ଭର ବଚନ ପ୍ରମାଣେ । ନେବି ଅନାଦି ନାରାୟଣେ ।
ଥୋଇବି ବଟତଳେ ନେଇ । ପୂଜିବି କନ୍ଦମୂଳେ ଦେଇ ।
ଏମନ୍ତ କହନ୍ତେ ଶବର । ଦେବେ ଯେ ହୋଇଲା ଅନ୍ତର ।
ତକ୍ଷଣେ ସ୍ୱର୍ଗପୁରେ ଗଲେ । ଶବର ଭାବେଣ ଧଇଲେ ।
ଧନୁ କମାଣ କାଖେ ଜାକି । ହୃଦ ମଧ୍ୟରେ ଡରେ ଶଙ୍କି ।
ଅନେକ ସ୍ତୁତି ବଖାଣିଲା । କୋଟିଏ ଦଣ୍ଡବତ କଲା ।

ପ୍ରଭୁଙ୍କୁ ଆକ୍ରୋଶି ଧରିଣ । କାନ୍ଧ ଉପରେ ବସାଇଣ ।
ଘେନି କୃଷ୍ଣଙ୍କୁ ଚଳିଗଲା । ନୀଳ କନ୍ଦରେ ପ୍ରବେଶିଲା ।
ଦେବଙ୍କ ବାକ୍ୟ ମନେ ଗୁଣି । ସଙ୍କେତ ସ୍ଥାନ ପରିମାଣି ।
ପ୍ରଭୁଙ୍କୁ କନ୍ଦରେ ବସାଇ । ଶବର ଗଲା ବେଗ ହୋଇ ।
ଖୋଳିଣ କନ୍ଦମୂଳ ଆଣି । ଯତନେ ସଜାଡ଼ିଲା ପୁଣି ।
ଦୋନା ଯେ ଦୁଇଗୋଟି'କଲା । କନ୍ଦମୂଳଙ୍କୁ ପୂରାଇଲା ।
ଥୋଇଣ ପ୍ରଭୁଙ୍କ ଛାମୁର । ବୋଲଇ ଶୁଣ ଚକ୍ରଧର ।
ମନ୍ତ୍ର ବିଦ୍ୟା ମୁଁ ନ ଜାଣଇ । ଶବର ଜାତି ମୁଁ ଅଟଇ ।
ମୁଖେ ଭୁଞ୍ଜ ହେ ଜନାର୍ଦ୍ଦନ । ମୋହର ଅପ୍ରାଧ ନ ଘେନ ।
ପଛକୁ କିଛି ଘୁଞ୍ଚିଗଲା । ଶିରରେ ବେନିକର ଦେଲା ।
ଗୋବିନ୍ଦ କର ବଢ଼ାଇଲେ । କନ୍ଦମୂଳଙ୍କୁ ଗ୍ରାସକଲେ ।
ସନ୍ତୋଷ ହୋଇ ଭାବଗ୍ରାହୀ । ଶବର କନ୍ଦମୂଳ ଖାଇ ।
ଆପଣା ହସ୍ତ ଠାରିଦେଲେ । ଆଶ୍ରମେ ଯାଅ ଯା ବୋଇଲେ ।
ଶବର ଆଗ୍ୟାଂ ପରମାଣେ । ଗଲା ଯେ ସୁରେଶ୍ୱର ବନେ ।
ଆପଣା ଗୃହରେ ପ୍ରବେଶ । ଗୋବିନ୍ଦ ଚରଣେ ବିଶ୍ୱାସ ।
ଗୃହରେ ଖାଦ୍ୟ ଯାହା ଥିଲା । ଖାଇଣ ଉଦର ପୋଷିଲା ।
ପୁତ୍ର ଭାରିଯା ଆଗେ କିଛି । ଏ କଥା ନ କହିଲା ବାଛି ।
ଏମନ୍ତେ ରଜନୀ ପାହିଲା । ଶବର ନିଦ୍ରାରୁ ଉଠିଲା ।
ତକ୍ଷଣେ ସାରି ନିତ୍ୟକର୍ମ । କରେ ଧରି ଧନୁକମାଣ ।
ଅଇଲା ନୀଳଗିରି ସ୍ଥାନ । ମିଳେ ଗୋବିନ୍ଦ ସନ୍ନିଧାନ ।
ଦେଖିଲା ପ୍ରଭୁ ବ୍ରହ୍ମରାଶି । ଏକ ମୂରତି ଦୁଇ ଦିଶି ।
ଦେଖି ତା ଶବର ଚକିତ । ଚିତ୍ତେ ଚିନ୍ତଇ ଜଗନ୍ନାଥ ।
ଅନେକ ସ୍ତୁତି ,ବଖାଣିଲା । ଶିରରେ ବେନିକର ଦେଲା ।
ଶିଆଳି ପତ୍ର ଦୋନା ଶିଇଂ । କୁଣ୍ଡରୁ ଜଳ ଯେ ଆଣଇ ।
ପ୍ରଭୁଙ୍କ ଆଗରେ ଢାଳିଲା । ଶିରରେ ବେନିକର ଦେଲା ।
ଘୋରି ଚନ୍ଦନ ବେଗେ ଦେଲା । ବେଲ ପତ୍ରିକା ଚଢ଼ାଇଲା ।
କନ୍ଦମୂଳ ଖୋଳିଣ ଆଣି । ବିଧି ପ୍ରମାଣେ ଯେ ନିର୍ମାଣି ।
ଦୋନା ଯେ ବେନି ଗୋଟା କଲା । କନ୍ଦମୂଳଙ୍କୁ ପୂରାଇଲା ।

ପ୍ରଭୁଙ୍କ ଛାମୁରେ ଥୋଇଲା । ଶବର ପଛକୁ ଘୁଞ୍ଚିଲା ।
ପତିତ ଜାତି ମୁଁ ଅଟଇ । ଭୁଞ୍ଜ ଗୋବିନ୍ଦ ତୋଷ ହୋଇ ।
ପ୍ରଭୁ ଯେ ହସ୍ତ ବଢ଼ାଇଲେ । ଯାହା ଯେ ଦେଲା ତା ଖାଇଲେ ।
ଭକ୍ଷିଲେ କମଣ୍ଡଳୁ ପାଣି । ସନ୍ତୋଷ ହେଲେ ଚକ୍ରପାଣି ।
ଆହେ ପରୀକ୍ଷ ମହୀପାଳ । ଶୁଣ ତୁ ଏଥିର ବିଚାର ।
ଏପରି ପ୍ରତିଦିନ ଆସି । ଶବର ପୂଜେ ବ୍ରହ୍ମରାଶି ।
ତୁ ଯେ ପୁଛିଲୁ ପିଣ୍ଡକଥା । ଶୁଣି ଛାଡ଼ିଲା ମନୁ ବ୍ୟଥା ।
ପରୀକ୍ଷ ବୋଲେ ମୁନିବର । ଆହୁରି ପୁଛିବି ଛାମୁର ।
ଆହୁରି କେତେଦିନ ଯାଏଁ । ଶବର ପୂଜେ ଦେବରାଏ ।

## ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ମନସ୍ଥିରେ । କହିବା ତହିଂର ବିଚାରେ ।
ସହସ୍ରେ ବରଷ ଶବର । ପୂଜିଲା ଦେବ ଦାମୋଦର ।
ଏମନ୍ତ କହି ମୁନିବରେ । ମେଲାଣି ମାଗିଲେ ରାଜାରେ ।
ଶୁଣିଲୁ ଭାଗବତ ବାଣୀ । ମେଲାଣି କର ବୀରମଣି ।
ମୁନିଙ୍କ ବଚନେ ରାଜନ । କରେ ଧରି ବେନି ଚରଣ ।
ତୁମ୍ଭେ ଯେ ମୋତେ ଦୟାକଲ । ବ୍ରହ୍ମଶାପରୁ ଉଦ୍ଧାରିଲ ।
ଏବେ ମୁଁ ପଚାରୁଛି ଯାହା । ସୁହୃଦେ କହ ମୋତେ ତାହା ।
ସହସ୍ର ବରଷ ଶବର । ପୂଜିଲା ବ୍ରହ୍ମ ନିରାକାର ।
ଏଥି ଉତ୍ତାରୁ କିସ ହେବ । ସନ୍ତୋଷ କହ ମୁନିଦେବ ।

## ଶ୍ରୀ ଶୁକ ଉବାଚ

ଶୁଣି ରାଜନ ପରୀକ୍ଷିତ । ତୁହିଂ ଯେ ପଚାରୁ ତଦନ୍ତ ।
ଏଥି ଉତ୍ତାରେ କିସ ରୀତି । ଶୁଣ ତୁ ଭକତ ନୃପତି ।
ନୀଳ ଯେ ବନ ଭାଜିଯିବ । ଲତା ବୃକ୍ଷହିଂ କ୍ଷୟ ହେବ ।
ପର୍ବତ ଦିଶିବ ସୁନ୍ଦର । ନୀଳଗିରି ଯେ ନାମ ତାର ।
ଏଥିରେ ରାଜା ଯେ ହୋଇବ । ବିଷ୍ଣୁ କୀର୍ତ୍ତିରେ ମନ ଦେବ ।
ପଣ୍ଡିତ ଗୁଣେ ଗୁଣବନ୍ତ । ଦେବତା ବ୍ରାହ୍ମଣେ ଭକତ ।
ନିତ୍ୟ ବ୍ରାହ୍ମଣଗଣ ଘେନି । ବିଚାରିବ ସେ ନୃପମଣି ।

ବିଷ୍ଣୁର ତେଜେ କୀର୍ତ୍ତିମାନ । ସମସ୍ତ କରିବ ଭିଆଣି ।
ନିତ୍ୟେଣ ବିଷ୍ଣୁପାଦେ ସେବି । ଦ୍ରଶନ କରିବ ସେ ଭାବି ।
ଏମନ୍ତ ବିଚାରି ରାଜନ । ବିପ୍ରଙ୍କୁ କହିବ ବଚନ ।
ଅନେକ ଧନରତ୍ନ ଦେଇ । ବିପ୍ରେ କହିବ ଚାହୁଁଥାଇ ।
ଖୋଜ ହେ ବିଷ୍ଣୁ କୀର୍ତ୍ତିମାନ । ସନ୍ତୋଷକର ମୋର ମନ ।
ଚାରିଦିଗଙ୍କୁ ଦୂତ ଯିବେ । ତୀର୍ଥମାନଙ୍କ ଯେ ଖୋଜିବେ ।
ସମସ୍ତ ସ୍ଥାନ ଖୋଜିଯିବେ । ଏ ରୂପେ ଏ ସ୍ଥାନ ଦେଖିବେ ।
ଦକ୍ଷିଣେ ଯିବ ଯେଉଁ ଚାର । ଖୋଜିବ ବିଷ୍ଣୁର ମଣ୍ଡଳ ।
ଖୋଜିଣ ଅନ୍ତ ନ ପାଇବ । ନିରାଶ ହୋଇଣ ଆସିବ ।
ଦିନେ ବ୍ୟାକୁଳ ଚିତ୍ତ ହେବ । ସେ ଚାର ବନକୁ ଚଳିବ ।
ସେ ବନ ଖୋଜିଣ ବୁଲିବ । ତହିଁରେ କାହିଁ ନ ଦେଖିବ ।
ମନରେ ହୋଇ ମହାଦୁଃଖ । ଭାଳିବ ଅତି ଗୁରୁଶୋକ ।
ତହୁଁ ଥୋକାଏ ଦୂରଯିବ । ଶବର ପଲ୍ଲୀଏ ଦେଖିବ ।
ଗୃହରେ ନ ଥିବ ଶବର । ଯାଇଣ ଥିବ ମୃଗୟାର ।
ବ୍ରାହ୍ମଣ ଶବର ଦୁଆରେ । ବସିବ ଅତିଥି ଭାବରେ ।
ଏ ଅନ୍ତେ ଆସିବ ଶବର । ଅତିଥି ବସିଥିବ ଦ୍ୱାର ।
ଦେଖିବ ବସିଛି ବ୍ରାହ୍ମଣ । ପୁଛିବ ତାର ସନ୍ନିଧାନ ।
ଅତିଥି ପ୍ରକାରେ ପୂଜିବ । ଅନେକ କରି ଗଉରବ ।
ଏମନ୍ତେ କେତେଦିନ ଅନ୍ତେ । ବ୍ରାହ୍ମଣ ଜାଣିବ ସଙ୍କେତେ ।
କର୍ପୂର ଚୁଆ ଯେ ଚନ୍ଦନ । ବାସିବ ଶବର ଅଙ୍ଗେଣ ।
ଏମନ୍ତେ ଶବର ଆସିବ । ଆପଣା ଗୃହରେ ପଶିବ ।
ମିତ୍ରତା ହେବ ତାର ତୁଲେ । ଦିନ ହରିବ କୁତୂହଳେ ।
ଦିନେକ ପ୍ରୀତିଭାବ ପଣେ । ବ୍ରାହ୍ମଣ ପୁଛିବ ଆପଣେ ।
କଥାଏ ପଚାରିବି ମୁହିଁ । ଦୁଃଖ ନହୋଇ ଦେବ କହି ।
ପ୍ରଭାତ କାଲୁ ତୁମ୍ଭେ ଯାଅ । ସନ୍ଧ୍ୟା ପର୍ଯ୍ୟନ୍ତ କିମ୍ପା ରହ ।
ଚୁଆ ଚନ୍ଦନ ବାସୁଥାଇ । ବିଷ୍ଣୁ ପୂଜିଲା ପ୍ରାଏ ଦେହୀ ।
ଏ କଥା ଶୁଣିଣ ଶବର । ମନେ ହୋଇବ ଚମତ୍କାର ।
ବିପ୍ରଙ୍କୁ ବୋଲିବ ବଚନ । କେମନ୍ତେ ଜାଣିଲ ଏମାନ ।
ଏ କଥା ନ କହିବୁ କାହିଁ । ମୋ ଗୃହେ କେହି ନ ଜାଣଇ ।

ଏମନ୍ତେ କିଛିଦିନ ଅନ୍ତେ । ବ୍ରାହ୍ମଣ କହିବ ଗୁପତେ ।
ବିଷ୍ଣୁଙ୍କୁ ମୋତେ ଦେଖାଇବୁ । ଜଗତେ କୀରତି ରଖିବୁ ।
ବ୍ରାହ୍ମଣ ବିନୟ ବଚନେ । ଶବର ଶୁଣି ଖେଦମନେ ।
ମନରେ ଦୁଃଖ ସେ ପାଞ୍ଚିବ । ବିପ୍ରଙ୍କୁ ସଙ୍ଗେ ଘେନିଯିବ ।
ନୀଳ ବନକୁ ଯିବ ନେଇ । ସମୁଦ୍ରେ ସ୍ନାହନ କରାଇ ।
ବିଷ୍ଣୁଙ୍କୁ ଦେଖାଇବ ନେଇ । ସଚ୍ଚିଦାନନ୍ଦ ପୁଣ୍ୟ ଦେହୀ ।
ବ୍ରାହ୍ମଣ ହେବ ହରି ହରି । ଶିରରେ ବେନିକର ଯୋଡ଼ି ।
ବ୍ରାହ୍ମଣ ଶ୍ରୀ ମୁଖ ଦେଖିବ । ଅନେକ ସ୍ତୁତି ବଖାଣିବ ।
ଏ ଦାରୁ ବ୍ରହ୍ମ ରୂପ ଦେଖି । ସକଳ ଦୁରିତ ଉପେକ୍ଷି ।
ଶବର ବେଗେ ଚଳିଯିବ । ଦୋନା ଯେ ଗୋଟିଏ ଶିଇଂବ ।
ରୋହିଣୀ କୁଣ୍ଡରୁ ଯେ ଜଳ । ଘେନି ଆସିବ ତତକାଳ ।
ପ୍ରଭୁଙ୍କ ଶ୍ରୀଅଙ୍ଗେ ଢାଳିବ । ଶ୍ରୀ ଅଙ୍ଗ ମାର୍ଜନା କରିବ ।
ଅଗୁରୁ ଚନ୍ଦନ ଗୋଳିବ । ପ୍ରଭୁଙ୍କ ଶ୍ରୀ ଅଙ୍ଗେ ବୋଳିବ ।
ବେଲ ପତ୍ରିକା ଶିରେ ଦେବ । କନ୍ଦମୂଳକୁ ଖୋଳିଯିବ ।
ଯୋଡ଼ିଏ ଦୋନା ହସ୍ତେ ଶିଇଂ । ତହିଂରେ କନ୍ଦମୂଳ ଦେଇ ।
ପ୍ରଭୁଙ୍କ ଛାମୁରେ ଥୋଇବ । ଭୁଞ୍ଜ ହୋ ବୋଲିଣ ବୋଲିବ ।
ସମସ୍ତ ଦିନ ବ୍ରହ୍ମ ଜ୍ୟୋତି । ହସ୍ତ ବଢ଼ାଇଣ ଭୁଞ୍ଜନ୍ତି ।
ସେ ଦିନ ନ ବଢ଼ାଇ ହସ୍ତ । ମଉନ ହେବେ ଜଗନ୍ନାଥ ।
ଶବର ବୋଲିବ ଗୋ ସାଇଂ । ଏ ପରି ଆଜ କାହିଂପାଇଂ ।
ଶବର ଏମନ୍ତେ ବୋଲନ୍ତେ । ଶୂନ୍ୟେ କହିବେ ଜଗନ୍ନାଥ ।
ଭୋଗକୁ ହୋଇଲା ମୋ ବାଞ୍ଛା । କନ୍ଦମୂଳରେ ନାହିଂ ଇଚ୍ଛା ।
ଶବର ନ କର ତୁ ଶୋକ । ସର୍ବଦା ତୁ ମୋର ସେବକ ।
ଏମନ୍ତ ଆଗ୍ୟାଂ ପ୍ରଭୁ ଦେବେ । ଶବର ମନରେ ଜାଣିବେ ।
ବିକଳେ ଗିରିସ୍ଥାନ ବୁଲି । ବ୍ରାହ୍ମଣ ସର୍ବଠାବ କରି ।
ବଟ ଉପରେ କାକ ଥିବ । ଘୁମାଇ କୁଣ୍ଡରେ ପଡ଼ିବ ।
ଚତୁର ଭୁଜ ସେ ହୋଇବ । ବୈକୁଣ୍ଠ ପୁରକୁ ଗମିବ ।
ଶବର ଯିବ ନିଜପୁର । ବ୍ରାହ୍ମଣ ହୋଇବ ଅନ୍ତର ।
ବାରତା ବେଗେ ଘେନିଯିବ । ରାଜାଙ୍କୁ ସମସ୍ତ କହିବ ।

ଶୁଣି ହରଷ ନରପତି । ସଙ୍ଗତେ ଘେନି ପାତ୍ରମନ୍ତ୍ରୀ ।
ନୀଳଗିରିକି ସେ ଆସିବ । ବୁଲି କରିବ ସ୍ଥାନ ଠାବ ।
ଅଷ୍ଟରତନର ଦେଉଳ । ଘେନାଇ ନୃପତି ସକଳ ।
ଦେବତା ପାଇଂକି ଚିନ୍ତିବ । ବେଗେ ଗୋବିନ୍ଦ ଆଗ୍ୟାଂ ହେବ ।
ବାଙ୍କି ମୁହାଣକୁ ତୁ ଯିବୁ । ସେଠାରେ ଯାହା ତୁ ପାଇବୁ ।
ପ୍ରାସାଦେ ପୂରାଇବୁ ନେଇ । ଚତୁର୍ଦ୍ଧାରୂପ ହେବି ମୁହିଂ ।
ବସିବି ଚତୁର୍ଦ୍ଧାରୂପରେ । ଚିନ୍ତା ନ କର ନୃପବରେ ।
ଏମନ୍ତ ଆଗ୍ୟାଂ ସେ ପାଇବ । ପ୍ରଭାତୁ ଉଠି ବେଗେ ଯିବ ।
ଦେଖିବ ଦାରୁରୂପେ ହରି । ବିଜୟ ପ୍ରଭୁ ଦଇତାରି ।
ରାଜା ତା ଘେନାଇ ଆସିବ । ପ୍ରାସାଦ ଭିତରେ ରଖିବ ।
ଏମନ୍ତେ ଷୋଳ ଦିନ ଅନ୍ତେ । ଦେଖିବ ଯାଇ ନରନାଥେ ।
ଧରିଣ ଚତୁର୍ଦ୍ଧା ମୂରତି । କପଟେ ଦାରୁ ବ୍ରହ୍ମ ଜ୍ୟୋତି ।
ଦେଖିବ ନୃପତି ଶେଖର । ମନରେ ହୋଇବ କାତର ।
ଭୋଗ ନିମନ୍ତେ ବିଚାରିବ । ଛତିଶ ନିଯୋଗ ଖଞ୍ଜିବ ।
ତିନି ଧୂପକୁ ଆରମ୍ଭିବ । ପଞ୍ଚ ଅବକାଶ କରିବ ।
ସମସ୍ତ କରିଣ ଭିଆଇ । ପୂଜା ଯେ ସମସ୍ତ କରାଇ ।
ଏ ରୂପେ ପ୍ରଭୁ ପ୍ରକାଶିବେ । ନୀଳାଚଳରେ ବିଜେ ହେବେ ।
ଯୁଗକୁ ଯୁଗ ଏହି ମତେ । ପରମାନନ୍ଦ ଏ ଜଗତେ ।
ଶୁଣିଲ ଟିକି ହେ ରାଜନ । ଏ ରୂପେ କଳିରେ ଭିଆଣ ।
ଶୁଣିଣ ପରୀକ୍ଷ ରାଜନ । ନମଇଂ ମୁନିଙ୍କ ଚରଣ ।

## ପରୀକ୍ଷିତ ଉବାଚ

ସେ ରାଜା କାହାକୋଳେ ଜାତ । କାହାର ହେବ ସେହୁ ସୁତ ।
ତାହାର ନାମ କିସ ହୋଇ । ସେ କଥା କହ ହେ ବୁଝାଇ ।

## ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ତୋଷ ଚିତ୍ତେ । ଯାହା ତୁ ପଚାରିଲୁ ମୋତେ ।
ଇନ୍ଦ୍ରଦ୍ୟୁମନ ନୃପବର । ସତ୍ୟ ଯୁଗରେ ଜନ୍ମ ତାର ।
ସେ ପୁଣି ତ୍ରେତୟା ଯୁଗରେ । ବ୍ରହ୍ମଲୋକରେ ସେ ରହିଲେ ।

ତାହାର କୁଳ ମୂଳ ନାହିଁ । ତା ନାମ ଧରି ରାଜା ହୋଇ ।
ଦ୍ୱାପର ଯୁଗ ପ୍ରକାଶିଲା । ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ହେଲା ।
କଳିର ଆଦ୍ୟେ ଆବିର୍ଭାବ । ତୃତୀୟ ଇନ୍ଦ୍ରଦ୍ୟୁମ୍ନ ହେବ ।
ଆନ ଯେ ନୃପତି ହୋଇବ । ଗଂଗ ବଂଶୀୟ ବୋଲାଇବ ।
ଶୁଣ ପରୀକ୍ଷ ମହୀପତି । ଶୁଣି ତୋ ମନକର ଶାନ୍ତି ।

## ପରୀକ୍ଷିତ ଉବାଚ

ବୋଲଇ ଶୁଣିମା ଗୋସାଇଂ । ଆହୁରି ପଚାରିବି ମୁହିଂ ।
ତୁମ୍ଭେ ଯେ ମହା ଭାଗ୍ୟବନ୍ତ । ଗୁପତେ ରଖିଲ କଥାତ ।
ଯେ ଦାରୁବ୍ରହ୍ମ ରୂପହରି । ଶରୀରେ କେହ୍ନୁ କହିପାରି ।
ଦୀର୍ଘ ହୋଇବ କେତେ ପୁଣ । ପ୍ରତି ହୋଇବ କେତେ ଜାଣ ।
ଏଥିର କହିବା ବୃତ୍ତାନ୍ତ । ଶୁଣିବି ଶରଧା ବହୁତ ।

## ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନରନାଥ । ତୁ ଯାହା ପଚାରିଲୁ ତଥ୍ୟ ।
କହିବା ଶୁଣ ମନଦେଇ । ତୁ ରାଜା ଅଟୁ ପୁଣ୍ୟ ଦେହୀ ।
ଦ୍ୱାଦଶ ଆଙ୍ଗୁଳ ଯେ ଜାଣ । ପ୍ରଭୁଙ୍କ ଶ୍ରୀ ଅଙ୍ଗ ଘଟଣ ।
ପ୍ରତି ହୋଇବ ଏହିରୂପେ । କହିଲୁ ଶୁଣ ତୁ ସ୍ୱରୂପେ ।
ଏ ପୁଣି ଦେବ ଆଙ୍ଗୁଳରେ । ପୂର୍ବର ଯେ ବିଧି ପ୍ରକାରେ ।
ଶୁଣ ରାଜନ ପରୀକ୍ଷିତ । ମୁନି କହିଲେ ଆଚମ୍ବିତ ।

## ଶ୍ରୀ ଶୁକ ଉବାଚ

ମୁନି ବୋଲନ୍ତି ଶୁଣ ରାଏ । ଏଥିରେ ଶୁଣ ତୁ ସଂଶୟେ ।
ଭୋ ରାଜା ପଚାରିଲୁ ଯେତେ । ଏ କଳିଯୁଗ ଘୋର ଏତେ ।
ତୋହର ପୁତ୍ର ନାତି ଗଣେ । ଦୁଷ୍ଟ ହୋଇବେ ଜଣେ ଜଣେ ।
ବୋଲିବେ ଦେଉଳ ଆମ୍ଭର । ବୋଲନ୍ତେ ଧର୍ମ ହେବ ଦୂର ।
ଏ ଧର୍ମ ନ ପାଳିବି ମୁହିଂ । ଅଧର୍ମ ଉପୁଜିବ ତହିଂ ।
ବିଷ୍ଣୁ ଯାଚନ୍ତେ ତାଙ୍କ ବର । ମାଗନ୍ତେ ବ୍ରହ୍ମାଙ୍କ ଛାମୁର ।
ବର ଯାଚିଲେ ମୋତେ ହାଦେ । ଯାହା ମାଗିବି ତୁମ୍ଭ ପାଦେ ।
ତାହାକୁ ଦୋଷ ନ ଘେନିବ । କ୍ଷମା ତାହାକୁ ବେଗେ ଦେବ ।

ଆହୁରି କହିବି କଥାଏ । ସନ୍ତୋଷେ କହ ଦେବରାଏ ।
ମୋହର ବଂଶ ନ ରହିବ । ଏ କଥା ଯୁଗେ ଯୁଗେ ଥିବ ।
ଜାଣିଲେ ରାଜାର ଯେ ମନ । ହେଉ ବୋଇଲେ ଭଗବାନ ।
ଏ ରୂପେ ପ୍ରଭୁଙ୍କୁ ମାଗିଲା । ଏଠାରୁ ନିର୍ବଂଶ ହୋଇଲା ।
ଏ କୀର୍ତ୍ତି ତୋ ବଂଶେ ରହିବ । ପୂର୍ବେ ଘଟାଇଛି ଦଇବ ।
ତୋ ବଂଶେ ବିଷ୍ଣୁର ଆଶ୍ରିତେ । ଶୁଣିଲୁ ହେ ଶ୍ରୀ ଭାଗବତେ ।
ଏ କୀର୍ତ୍ତି ନ କରିବେ କେହି । ତୋ ବିନୁ ଅନ୍ୟ କେହି ନାହିଁ ।
ଶ୍ରୀ ଭାଗବତର ମହିମା । ସବୁ ଭାଗବତ ଉପମା ।
ଏହା ଯେ ନିତ୍ୟେ ଶୁଣୁଥିବ । ଯମ ଭୟକୁ ନ ଡ଼ରିବ ।
ଅମୃତ ଭକତ ରକ୍ଷଣ । ଶ୍ରୀ ଭାଗବତ ରସଗୁଣ ।
ଶୁଣନ୍ତେ ଶରୀର ତୋଷଣ । କହଇ ଶୁଣ ହେ ରାଜନ ।
ପାମର ବିପ୍ର ଜଗନ୍ନାଥ । ଏବେ ସେ ହୋଇଲା କୃତାର୍ଥ ।

ଇତି-ଶ୍ରୀ ଦାରୁବ୍ରହ୍ମ ଗୀତା ଶୁକ ପରୀକ୍ଷିତ ସମ୍ବାଦେ
ଶ୍ରୀକୃଷ୍ଣ ନୀଳଗିରି ପ୍ରବେଶୋ ନାମ ତୃତୀୟ ଅଧ୍ୟାୟ ।



# ଚାରିଖାନି ବା ଶବ୍ଦ ବ୍ରହ୍ମ ସଂହିତା

## ପ୍ରଥମ ଖାନି

ଓଁ ଶ୍ରୀଗୁରୁଭ୍ୟୋ ନମଃ ଓଁ ପରମ ଗୁରୁଭ୍ୟୋ ନମଃ ।

ଶ୍ରୀଗୁରୁ ବଚନ ଅତି ଅମୂଲ୍ୟ । ଶ୍ରବଣ ପଥେ ଭଲକରି ତୁଳ ॥
ସକଳ ବେଦ ପୁରାଣର ସାର । ବିଷମ ସନ୍ଧି ବିବେକ ବିଚାର ॥
ଯହିଂ ରମିଲେ ନ ରୁଚଇ ଆନ । ଅମୃତ ସଙ୍ଗେ ବିଷ କାହିଂ ପାନ ॥
ତାହା ଗୁଣ ଜାଣି ଯେ ତହିଂ ରତ । କୋଟି ଇନ୍ଦ୍ରପଦ ଭିକ୍ଷୁକ ମତ ॥
ଅନଳ ଜଳ ଖଡ୍‌ଗେ ନିଶଙ୍କ । ବ୍ରହ୍ମାଣ୍ଡେ ଗଲେ ରୋମ ନୁହେ ବାଙ୍କ ॥
ନାନା ଦେହ ବହି ଯେ ତହିଂ ମଜ୍ଜି । ମୃତ୍ୟୁଦେବତା ନ ପାରଇ ଗଞ୍ଜି ॥
ରସିଲେ ମୁକତି ମିଶିଲେ ସଙ୍ଗ । ଜାଣି ପାରିଲେ ଅଜ୍ରାମ୍ବର ଅଙ୍ଗ ॥
କୀଟୁଂ ବ୍ରହ୍ମଯାଏ ଜୀବେ ଅଜୀବେ । ଅଛିଦ୍ର ହୋଇ ଅଛି ସର୍ବ ଗର୍ଭେ ॥
ଜଗତ ଭିତରେ ଯେତେ ରଚନା । ତହିଂ କି ସବୁ ଉପାଳମ୍ୟ ସିନା ॥
ସ୍ଥାବର ଜଙ୍ଗମ କୀଟ ପତଙ୍ଗ । ଚାରିଖାନି ସବୁ ତୋହରି ଅଙ୍ଗ ॥
ଉତ୍ପତ୍ତି ସ୍ଥିତି ଯେ ପ୍ରଳୟ ତିନି । ଆବୋରି ଅଛି ଏହି ଦେହ ଘେନି ॥
ଏହାର ତହୁଂ ଜଗତ ପ୍ରକାଶ । ତହିଂ ଉପୁଜି ତହିଂ ହୋଏ ନାଶ ॥
ସୁଖ ଦୁଃଖ ସଙ୍ଗୀ ନାହିଂ ତାହାର । ବଚନେ ନୁହଇ ମନୁ ବାହାର ॥
ନୁହଁଇ ରୂପ ନାହିଂ ତାର ନାମ । ସେ ଜ୍ୟୋତି ବନ୍ଦିଯେ ଅତି ଉପାମ ॥
ଦ୍ୱାଦଶ ମାତ୍ରା ପଞ୍ଚାଶ ଅକ୍ଷର । ଜପ ହରି ଗୁଣ ଏଥି ଭିତର ॥
ବ୍ରହ୍ମ ଆଦି କରି କୀଟର ଯାଏ । ଅକ୍ଷର ଭିତରେ ସମସ୍ତେ ହୋଯେ ॥
ଅକ୍ଷର ଭିତରେ ଜଗତ ଲେଖା । ଅକ୍ଷର ବାହାର ସେ ରୂପ ଯେକା ॥
ସୂର୍ଯ୍ୟକିରଣ ଯହିଂ ପରକାଶେ । ଲୋଚନ ମନ ଯହିଂ ଯାଇ ପଶେ ॥
ଯେତେକ ବେଦ ପୁରାଣ ବଖାଣି । ତହୁଂ ଅଧିକ ତ କେହି ନ ଜାଣି ॥
ଅନେକ ତପୀ ବ୍ରହ୍ମଲୋକେ ଥିଲେ । ଈଶ୍ୱର ଆଦି କେହି ନ ଜାଣିଲେ ॥

କାହୁଁ ଜାଣିବେ ସେ ନୁହଂଇ କିଛି । କେବଳ ତାହା ତହିଂ ଭାବ ଅଛି ॥
ତାହାକୁ ଆନ ପଟାନ୍ତର ନାହିଂ । ତାହା ପଟାନ୍ତର ତାହାରି ତହିଂ ॥
ଅବ୍ୟଗତ ବ୍ରହ୍ମ ଯେବଣ ଗ୍ୟାଂନ । ବିଷ୍ଣୁମାୟା ତହୁଂ ନ ଜାଣନ୍ତି ଆନ ॥
ବ୍ୟାସ ମହାମୁନି କବି ପ୍ରଚଣ୍ଡ । ପୁରାଣ କଲେ ଅଷ୍ଟାଦଶ ଖଣ୍ଡ ॥
ଷାଠିଏ ଲକ୍ଷ ବଖାଣିଲେ ଗ୍ରନ୍ଥ । ସେହି ନ ଜାଣିଲେ ତଥି ତଦନ୍ତ ॥
ତପବଳେ ଅବା ହୋଇଲେ ତେଡ଼େ । ସେ କାହିଂ ଜାଣିମେ ସମ୍ଭବ ତେଡ଼େ ॥
ବ୍ରହ୍ମା ଯେ ବେଦ ବଖାଣିଲା ମୁଖେ । ବ୍ରହ୍ମାଣ୍ଡମାନ ଭିଆଇଲା ସୁଖେ ॥
ସଂସାର ଅବା କଲାକ ରଚନା । ସେ ପୁଣି ପ୍ରଭୁଙ୍କ ସେବକ ସିନା ॥
ନାଭିକମଳରୁ ଭ୍ରସଳ ଗୋଟି । ଥୋକାଏ ଦିନର ଏକଥା ସେଟି ॥
ପଦ ପରଚେ ଆଚରିଲି ଯହୁଂ । ବେଦେ ଅଧିକାରୀ ହୋଇଲେ ତହୁଂ ॥
ପରମଧାମ ସେ ଜାଣିମ କାହିଂ । ସେ କଥା ବ୍ରହ୍ମାକୁ ଗୋଚର ନାହିଂ ॥
ବେଦ ଭିତରେଣ ସୃଷ୍ଟିପାତନା । ନିର୍ବାଣ ଜ୍ୟୋତି ବେଦ ଯହିଂ ବଣା ॥
ବ୍ରହ୍ମା ସେ ସର୍ଜିଲା ସକଳ ଜୀବ । ପାଳଇ ବିଷ୍ଣୁ ସଂହାରଇ ଶିବ ॥
ନିଶବଦଘରେ ଶବଦ ଭେଦ । ଶବଦ ଘରୁ ସଞ୍ଚରିଲା ବେଦ ॥
ବେଦ ହୋଇଲା ସେ ମୋ ତହୁଂ ଆଗ । ବେଦାନ୍ତ କହେ ଉପେଦେଶ ଭାଗ ॥
ଏମାନେ ଯହୁଂ ଜାଣି ନ ପାରିଲେ । ନିରଞ୍ଜନ ବୋଲି ନାମ ଧଇଲେ ॥
ବେଦ ଆଦି ହୋଇ ତହିଂକି ନାହିଂ । ତହିଂକି ଆନ ପଟାନ୍ତର କାହିଂ ॥
ଆବର ଯେତେକ ଗ୍ରନ୍ଥ ପଢ଼ିବା । କବିକୃତ୍ୟ ବୋଲି ତାହା ଛାଡ଼ିବା ॥
ବିଦ୍ୟା ପଢ଼ିବା ଧନ ଲୋଭେ ସେଟି । ବିଦ୍ୟାହୁଂ ଭିନ୍ନେ ଗ୍ୟାଂନ ବୋଲି ଯେଟି ॥
ଘଟ କୂଟ ବୀଜ ସ୍ଥମ୍ଭ ପ୍ରସିଦ୍ଧି । ପ୍ରପଞ୍ଚ ରୂପ ଘେନି ଜଗତ୍ରାଧି ॥
ଭୂତପ୍ରାଣ ଧନ ବୁଦ୍ଧି ଜୀବନ । ସବୁନ୍ତି ସବୁ କରିଅଛି ମନ ॥
ଅଶେଷ କୋଟି ଚରାଚର ଜିଣି । ବିଶ୍ୱ ମହାଭାରା ମନ କାରେଣୀ ॥
ଏକାମନ ଘେନି ସୃଷ୍ଟି ପାତନା । ମନକୁ ମନ ମୂଢ଼ପଣେ ବଣା ॥
ସଂସାର ମାୟା ଅତି ବଡ଼ ଧନ୍ଦା । ଦିଶନ୍ତାକୁ ଚାହିଂ ଦେଖନ୍ତା ଅନ୍ଧ ॥
ମଣିତ ନ ଯାଇ ବିଷ୍ଣୁର ମାୟା । କେତେ ପୃଥିବୀ କେତେ କାହିଂ କାୟା ॥
କାହୁଂ ସଞ୍ଚରଇ ଲୁଚଇ କାହିଂ । ଅନ୍ତକରି ତାହା ଜାଣନ୍ତି ନାହିଂ ॥
ଜଗତ ଭିତରେ ଜନ୍ତୁ ଅପାର । ମାନବ ଜନ୍ମ ସବୁ ତହୁଂ ସାର ॥
ଗଜ ଆଦିକରି କୀଟ ସହିତେ । କେତେ ଜନ୍ତୁ ନାହିଂ ସର୍ବ ଜଗତେ ॥
ଅନ୍ୟ ଜନ୍ତୁମାନେ ଅଛନ୍ତି ଯେହୁ । ସୃଷ୍ଟି ପାତନା ନ ଜାଣନ୍ତି ସେହୁ ॥

ନୀତି ଅନୀତି ଦୁଃଖ ସୁଖ ନାନା । ସବୁ ରଚନା ମାନବର ସିନା ॥
ଭୂତ ଭବିଷ୍ୟ ବର୍ତ୍ତମାନ ବିଧି । ଏହି ମାନେବ କରିଅଛି ସିଦ୍ଧି ॥
ଯାବତ ପ୍ରକାରେ ଯେତେ ମେଦିନୀ । ସର୍ବ ବିଦ୍ୟମାନେ ମାନେବ ଘେନି ॥
ସୁଜନମାନେ ସାବଧାନେ ଶୁଣ । ଶୁଦ୍ଧ ଚଇତନ ବିବେକ ଗୁଣ ॥
କେତେକେ ଗଢ଼ିଲା ମାନବ ଦେହି । ଆପଣା କାର୍ଯ୍ୟେ ନ ପଶିଲେ କେହି ॥
ଏ ଜନ୍ମ ବହି ଅକାରଣ ନୁହ । ଗ୍ୟାଂନଖଡ଼ଗେ ଛେଦ ମାୟାମୋହ ॥
ଅଚ୍ୟୁତ ଦାସ ବିଚାରଇ ଯେତେ । ଏ ଦେହ ଲଭିଲି କାରଣ ମୋତେ ॥
ଅନେକ ପୁଣ୍ୟ କରିଥିଲି ଯହୁଁ । ମାନ୍‌ବ ଶରୀର ଲଭିଲି ତହୁଁ ॥
ଏହାହୁଁ ଯେବେ ଆନଜନ୍ମ ହୋନ୍ତି । ଏତେମାନ ହେତୁ କାହୁଁ ଜାଣନ୍ତି ॥
ନାନା କଉତୁକ ବିଷୟ ଭାବ । ଏତେବେଳକୁ ଯେହି ମୋତେ ଲାଭ ॥
ମୁହିଂ ଯେ ଜଣେ ହୋଇଅଛି ଲେଖା । ଭିନ୍ନେ ଆୟତନ ମୋହରି ଯେକା ॥
କୁମାର ଯୁବା ଯେ ଜ୍ୱରା ଅବସ୍ଥା । ଏହି ଦେହ ମୋର ତିନି ଅବସ୍ଥା ॥
ଯିସ ହୋଇଥିଲି ବାଳୁତ ଭାବେ । ସେକଥା ମାନ ପାଶୋରିଲି ଯେବେ ॥
ସମୟେ ଶିଶୁ ପୁଅଙ୍କର ସଙ୍ଗେ । ଦିନ ବଞ୍ଚିଲି କଥାଖେଳ ରଙ୍ଗେ ॥
ତଦଅନ୍ତରେ ମୁଂ ପଢ଼ିଲି ପାଠ । ଥୋକାୟେ ଜାଣିଲି ବିଦ୍ୟାର ବାଟ ॥
ବିଦ୍ୟାର ବିବେକେ ବୁଦ୍ଧି ବଢ଼ିଲା । ଅବିବେକ ପଣ କିଛି ଛାଡ଼ିଲା ॥
କେବଳ ବିବେକ ଯହୁଁ ଜାଣିଲି । ମୋହ କଥାକୁ ମୁଂ ପରି ମଣିଲି ॥
ଏମନ୍ତ ବିଚାର କଲି ମନକୁ । ସଂସାର ଭଳଛି ଧନ ଜନକୁ ॥
ମୁହିଂ ସଂସାର ସଙ୍ଗେ ଅଛି ପଡ଼ି । ମତେ ଅବା ନନ୍ଦ ପାରଇ ଲୋଡ଼ି ॥
ମୁଇଂ ଅବା ନନ୍ଦ ଲୋଡ଼ଇ ଛାଡ଼ି । ସେ ମୋହର ସଙ୍ଗେ ହୋଇଛି ଜଡ଼ି ॥
ଜନ୍ମ ମରଣ ଯେହା ଘେନି ଲେଖା । ଯେହାର ନଥିଲେ ମୁ କାହିଂ ଲେଖା ॥
ମୃଗତୃଷ୍ଣା ଜଳେ ମୀନ ଲୋଡ଼ିଲି । ସ୍ୱପନ ଧନକୁ କୁଣ୍ଢିଆଇଲି ॥
ହସ୍ତ ପାତିଲେ କି ଚନ୍ଦ୍ରମା ପାଇ । ନିଶୁଣି ବାନ୍ଧି କି ସ୍ୱର୍ଗକୁ ଯାଇ ॥
ମୋତେ ଅଗୋଚର ମୋହରି ଦେହ । ଉପେଖି ଯିବା ଏଡ଼େ ମାୟାମୋହ ॥
ଏଦେହ ଛାଡ଼ିଲେ ଯହିଂକି ଗଲା । ଏବେ ଯହିଂ ଅଛି ଯହୁଁ ଅଇଲା ॥
ଯଦି ପାଇବ ସଦଗୁରୁ ଦୀକ୍ଷା । ଯେତେକ ମାତ୍ର ଜାଣିବାକୁ ଇଚ୍ଛା ॥
ଚିନ୍ତା ପାଉଅଛି ଶରୀର ଦେଖି । ନପୁଣ ଦେହ ନ ପାରଇ ରଖି ॥
ସୁଗତି କୁଗତି ମୋହର ମୂଳ । ମୋହୋ କଲାକର୍ମ ମୋତେ ହେଂ ଶୂଳ ॥
ମୁହିଂ ଆବୋରିଲି ବିଷୟ ଦ୍ୱନ୍ଦ୍ୱ । ମୋହର ମୋତେ ହୋଇଲାକ ମନ୍ଦ ॥

ଆବର ପ୍ରତ୍ୟକ୍ଷେ ଦେଖିଲା ଯାହା । ଚିତ୍ତ ଚମକଇ କହିଲେ ତାହା ॥
ମୋହର ଦେଖୁ ଦେଖୁ ଯେତେ ଗଲେ । ଜଣେ ହେଁ କେହି ବାହୁଡ଼ି ନଇଲେ ॥
ଯେତେ ମାୟା ମୋହ କ୍ଷଣକେ ଛାଡ଼ି । ଯେତେକ ମଲେ ନଇଲେ ବାହୁଡ଼ି ॥
ଯେତେ ହୋଇବ ତେତେ ହୋଉ କିନା । ସବୁ ଜାଣିଲି ଏହି ମତି ସିନା ॥
ଏହି କଥାମାନ ମନରେ ଗୁଣି । ଶରୀରବ୍ୟଥା ପାଉଅଛି ପୁଣି ॥
ଯେତେ ମାନ ଦେହ ପାଇ କେତେକେ । ଏଥକୁ ଶଙ୍କା ନକରିବା କି କେ ॥
ବିଦ୍ୟା ସଂପତ୍ତି ଯଉବନ ଧନ । ଦେହଥିଲେ ସିନା ଥିବ ଏମାନ ॥
ସବୁ ହଜିଲେ ଦେହ ଥିଲେ ପାଇ । ଦେହ ହଜିଲେଟି ସଂସାରୁ ଯାଇ ॥
ବ୍ରତ ଉପାସନା ତୀର୍ଥ ଗମନ । ଶରୀର କଦର୍ଥି ନାନା ବିଧିମାନ ॥
ବେଦପୁରଣ ଏହା ଘେନି ମଣ୍ଡି । ପୁଣ୍ୟ ପର ଯେବେ ମୃତ୍ୟୁ ନ ଖଣ୍ଡି ॥
ଜନ୍ମ ଜନ୍ମାନ୍ତର ବାସନା ଥାଇ । କଳପଣା ସୁଖେ ପୁଣ୍ୟ ଦେହ ପାଇ ॥
ଜନ୍ମ ମରଣ ଏ ଦେହର ବିଧି । ଆତ୍ମା ଅବିନାଶ ସର୍ବଦା ସିଦ୍ଧି ॥
ଆତ୍ମାକୁ ପରତେ ଯେବଣ ବୁଧୀ । ଚନ୍ଦ୍ରଜାଲ ମାୟା ଦେହ ଦୁଗୁଧୀ ॥
ବୀଜପତଳେ ମନଭେଦ ଯହୁଁ । ବେତାଳ ରୂପେ ପ୍ରକାଶିଲା ତହୁଁ ॥
ଦେହ ଅନ୍ତେ ଜୀବ ଯହିଁକି ଗଲା । ସେକଥା ଜାଣିଲେ ନବୋଲି ମଲା ॥
ଏତେ ମାତ୍ରକ ବିଚାରଇ ଆଉ । ଏ ଦେହ ଯେମନ୍ତେ ନାଶ ନଯାଉ ॥
ଚଣ୍ଡମହାଖଳା ଗାରେଡ଼ି ମନ୍ତ୍ର । ଔଷଧ ମୂଳିକା କୁଟୁଣୀ ଯନ୍ତ୍ର ॥
ନବ ନାଟକ ଜଉତିଷ ଆଦି । ଓଦର ପୋଷନ୍ତେ ଏମାନ ସାଧି ॥
ପାଉଂଶ ବିଲୋପନ ଦର୍ଶନଧାରୀ । ଗୃହ ଉପେକ୍ଷି ହୋନ୍ତି ବନଚାରୀ ॥
ଥୋକାଏ ଦମ୍ଭେ ଦେଶାନ୍ତର ଯାନ୍ତି । ସାଖି ଶବଦରେ ଥୋକାଏ ଥାନ୍ତି ॥
କଷ କଉପୁନୀ ଶଙ୍ଖ ଚକ୍ର କାଟି । କେହୁ ଦିଗାମ୍ବର ପିନ୍ଧେ କର୍ପଟି ॥
କେବା ସହସ୍ରେ ନାମ ଉଚାରନ୍ତି । ଅନ୍ନ ଛାଡ଼ି କେବା ଦୁଧ ପିଅନ୍ତି ॥
ଅନେକ ମତେ କଦର୍ଥନ୍ତି କାୟେ । ମୃତ୍ୟୁ ବଞ୍ଚିବାକୁ ନାହିଁ ଉପାୟେ ॥
ଏକାମାତ୍ର ଅଛି ପରମାନନ୍ଦ । ଗ୍ୟାଂନ ଜାଣିଲେ ଅକାମ୍ବର କନ୍ଧ ॥
ଆବର ସବୁ ଉପାଳମ୍ଭ ସିନା । ନିର୍ବାଣ ମୁକ୍ତି ଜ୍ଞାନର ଭାବନା ॥
ତେଣୁ ମୋ ମନ ନରଚଇ କାହିଁ । ରାତ୍ର ଦିବସେ ଲୋଡୁଥାଇ ତାହି ॥
ସିଦ୍ଧିର ସାଧନେ ଗୁଣ ପ୍ରସାଦେ । ସଞ୍ଚେପି ଜାଣିଲି ଆତ୍ମାର ଭେଦେ ॥
ସୁଜନମାନଙ୍କ ସଙ୍ଗ ପ୍ରସାଦେ । ସନ୍ଦେହ ଛେଦିଲି ବୁଦ୍ଧି ବିବାଦେ ॥
ଅନେକ ଦୁଃଖେ ଲୋଡୁଥିଲି ଯାହା । ଅତି ନିକଟରେ ପାଇଲି ତାହା ॥

ଆପଣା ବିବେକ ହୃଦରେ ଆଞ୍ଚି । ବିଚାରକରି ମନେ ମନେ ପାଞ୍ଚି ॥
ଆବର ବିଶେଷେ ଗୁରୁ କହିଲେ । ଏହି ଦେହ ଘେନିଥିବୁ ବୋଇଲେ ॥
ସନ୍ଦେହ ଫିଟିଲା ହୋଇଲି ଶାନ୍ତି । ଯେଣେ ସେ ଗଞ୍ଜି ମାରୁଥିଲା ଭ୍ରାନ୍ତି ॥
ଏତେ ପରତେ ଉପୁଜିଲା ମନେ । ମରଣ ଜିଣିଲି ଏହି ବଚନେ ॥
ପରମପଦ ଗହନ ଗୁପତ । ମୋହ ବିଚାରେ ମୁଂ ପାଇଲି ତତ୍ତ୍ୱ ॥
ଅପାର କାରଣ ହୋଇଲା ନିନା । ଏକା ଅବିଗୁଣେ କହଇ କିନା ॥
ପ୍ରକୃତି ଲମ୍ପଟେ ଶରୀର ଜଡ଼ି । କୁବାସନା ଘେନି ଗୃହରେ ପଡ଼ି ॥
ଯେ ଜଡ଼ ଯହୁଁ ଆବୋରିଲା ଆସି । ତେଣୁ ତହିଁକି ନ ପାରିଲି ପଶି ॥
ଯେ ମହାଜଡ଼ ଛେଦିବାର ପାଇଁ । ମୋହୋ ମନକୁ ତିଆରଇ ମୁହିଁ ॥
ସୁଜନମାନେ ସାବଧାନେ ଶୁଣ । ଶୁଦ୍ଧ ଚଇତନ୍ୟ ବିବେକ ଗୁଣ ॥
ଶବଦବ୍ରହ୍ମ ସଂହିତା ବଚନ । ମନର ଆଗେ କହଇ ଚଇତନ ॥
ସୂର୍ଯ୍ୟବଂଶେଣ ମହୀପତି ସାର । କପିଳ ଋଦ୍ର ନୃପତି କୁମାର ॥
ଶ୍ରୀପୁରୁଷୋତ୍ତମ ନୃପ ତନୁଜା । ପ୍ରତାପରୁଦ୍ର ଦେବ ମହାରାଜା ॥
ରବିତଳେ ଆନ ନାହିଁ ଉପମା । ସପତଦ୍ୱୀପ ପୃଥି ଯାର ସୀମା ॥
କେବଣ ଗୁଣ କହିବା ତାହାର । ଜପ ତପ ଗ୍ୟାଂନ ଯହୁଁ ବାହାର ॥
ବଳେ ଅକଳିତ କୁଳେ ପବିତ୍ର । ଅଇରି କୃତାନ୍ତ କରେ ଆଶ୍ରିତ ॥
ସେ ମହାରାଜାଙ୍କ ପଚିଶ ଅଙ୍କେ । ଶବଦ ବ୍ରହ୍ମ ମୁଂ କଲି ନିଶଙ୍କେ ॥
ସିଦ୍ଧି ଶତେକ ପଟାନ୍ତର ନାହିଁ । ଜନ୍ମ ମରଣ ବିବର୍ଜିତ ଯହିଁ ॥
ମନ ଚଇତନ୍ୟ ଯାହା ସଂପାଦି । ଅଷ୍ଟାଙ୍ଗ ଯୋଗ ସାଧନାର ଆଦି ॥
ଗୁରୁବଚନ ଅଷ୍ଟରତ୍ନ ଧୂପ । ଭ୍ରାନ୍ତି ଅନ୍ଧକାରେ ବୋଧ ପ୍ରଦୀପ ॥
ଯେବଣ ଜନେ ଅନୁଭବେ ଗତ । ସେହି ସେ ଜାଣଇ ତଥି ତଦନ୍ତ ॥
କମଳାପତି ନୀଳଗିରି ବାସ । ପରମଜ୍ୟୋତି ସହଜେ ପ୍ରକାଶ ॥
ସେ ଯଉଂ କିଞ୍ଚିତେ କଲେ କରୁଣା । ତେଣୁ କରି ମୋତେ ପଦଫୁରୁଣା ॥
ଶବଦବ୍ରହ୍ମ ସଂହିତାର ବାଣୀ । ଆଗମ୍ୟ ଯୋଗେ ଭେଟାଇଲେ ଆଣି ॥
ଇତିଶ୍ରୀ ମନ ଚୈତନ୍ୟ ସଂବାଦେ । ଶବଦବ୍ରହ୍ମ ସଂହିତା ପ୍ରବୋଧେ ॥
ତତ୍ତ୍ୱବ୍ରହ୍ମ ଯେଥେଂ ମନଚେତନା । ଅଚ୍ୟୁତ ଦାସେ କଲେ ରଚନା ॥

ଇତିଶ୍ରୀ ମନଚୈତନ୍ୟ ସଂବାଦେ ଶବଦବ୍ରହ୍ମ
ସଂହିତାୟାଂ ନାମ ପ୍ରଥମ ଖାନି

# ଦ୍ୱିତୀୟ ଖାନି

ଚୈତନ୍ୟ କହଇ ମନ ଆଗର । ଆହୋ ମନ ତୁ ଯେ କେହ୍ନେ ନାଗର ॥
ଆପଣା ଭଲ ନ ବୁଝିଲୁ ଆପେ । ଭୁଲିଲୁ ମାୟାମୋହ ପରିତାପେ ॥
ଯେଉଂ ଦେହ ଘେନି ସଂସାରେ ଅଛୁ । ଜାଣୁ ଜାଣୁ କିମ୍ପା ଦେହକୁ ଲେଛୁ ॥
ଯେହାକୁ ଲେଛି କାହିଁ କିସ ପାଉ । ଏଡ଼େ ମହାସୁଖ ଉପେଖି ଯାଉ ॥
ତୋମନେ ତେତେ ନ ଚିନ୍ତୁ କାହିଁକି । ଅକ୍ରାମ୍ବର ପଦ ଲେଛୁ କାହିଁକି ॥
କାହା ହୋଇନାହୁଁ ଦେହ ନିମନ୍ତେ । ଏତେ ମାନ ଦେହ ଲେଛୁ କେମନ୍ତେ ॥
ଦେହ ନାଶକେ ତୁ ରହିବୁ କାହିଁ । ସର୍ବୁ ହୋଇଥିବୁ ଦେହରେ ଥାଇ ॥
ଯେ ଦେହ ଗଲେ ତୁ କାହିଁକି ଲେଖା । ଦେହ ଜୀବନ ଏ ତୋହର ସାଖା ॥
ତୁ ମନ ତିନି ଜଗତକୁ ରାଜା । ତୋହୋ ନ ଥାପିଲେ ଦେବେ ଅପୂଜ ॥
ତୁ ଯହୁଁ ତୋତେ ପରତେ ନଯାଉ । ଜନ୍ମ ମରଣ ତେଣୁ କରି ପାଉ ॥
ପରକୁ ଆପି ପରସିଦ୍ଧ କରୁ । ମୋହକଳେ ବୁଡ଼ି ଆପଣେ ମରୁ ॥
ତୁହି ଆତଯାତ କରୁ ସଂସାର । ତୋ ବିନା ଆନ ନାହିଁ ତିନିପୁର ॥
ଅସିଦ୍ଧ ରୂପ ସିଦ୍ଧ କରି ପାରୁ । ସିଦ୍ଧକୁ କିଂପା ସଦଭାବେ ମାରୁ ॥
ଯାତବ ଚନ୍ଦ୍ର ଦିବାକର ଥିବ । ତୋହୋ ରଖିଲେ ଦେହ କିମ୍ପା ଯିବ ॥
କହିଲେ ପରତେ ନ କରୁ ଅବା । ଏଥକୁ ତୋତେ ଦୃଷ୍ଟାନ୍ତର ଦେବା ॥
କଞ୍ଚା ମାଟି ଘଟ କୁମ୍ଭାର ଗଢ଼େ । ଅନଳ ଜାଳି ଦୃଢ଼କରି ପୋଡ଼େ ॥
ଏ ଦେହ ସ୍ରିଜି ପରକୁ କରଇ । ସେ ହାଣ୍ଡିଥାଉ ଆପଣେ ମରଇ ॥
ତୁ ମନ ଯହୁଁ ଆବୋରିଲୁ ମୋହୋ । ମୁହାଂସ ବଶେ ନାଶ କରୁ ଦେହ ॥
ଦେହ ଆବୋରି ଦେହ ସଙ୍ଗେ ଥିଲୁ । ଦେହ ନାଶ ଗଲେ ତୁହିତ ମଲୁ ॥
ଦେହ ଆଦିକର ସକଳ ମର୍ମ । ଦେହ ଘେନିକରି ସକଳ ଧର୍ମ ॥
ଦେହ ଥିବାଯାଏ ସବୁ ଆବୋରଇ । ଦେହ ଗଲେ ସବୁ ସେଠାରୁ ସରଇ ॥
କାହାରି ଆୟତ ନୁହଇ ଦେବ । ମିଛକୁ ଯେଡ଼େ ଆବୋରିଛୁ ମୋହ ॥
ବିଚାରି ଲୋଡ଼ିଲେ ଦେହ ପାତନା । ବ୍ରହ୍ମା ଭଳି ଲୋକ ହୋଇଲେ ବଣା ॥
ଦେହ ଭିତରେ ଯେ ଜୀବନ ଅଛି । ସେ ପୁଣି ଦେହର ନୁହଇ କିଛି ॥
ହେନ ବିପରୀତ ଗତି ତାହାର । ଅରୂପ ନୁହଇ ରୂପୁ ବାହାର ॥
ଦୁଃଖର ତହିଁ ଦୁଃଖ ସହିଥାଉ । ସୁଖ ଉପେଖି ସୁଖ ତହିଁ ପାଉ ॥

ଉପାୟେ କରି ରୁହାଇଂ ଲୋଡ଼ିବା । ଲକ୍ଷେ ପୁର କରି ବାଡ଼ ଯେ ଦେବା ।।
ସବୁରି ସଙ୍ଗେ ସଙ୍ଗ ହୋଇ ଥାଇ । ଜାଣି ନ ପାରି କେଉଂ କତି ଯାଇ ।।
ଯଦି ଏ ଶରୀରୁ ଜୀବନ ଛାଡ଼େ । ପୁଣି ନପଶଇ ନିରାଶ ଏଡ଼େ ।।
ଅନେକ ପ୍ରକାରେ କରିବା ସେବା । ମେରୁ ସମ କରି ସୁବର୍ଣ୍ଣ ଦେବା ।।
ହରଷେ ଯାଉକି ବିରସେ ଯାଉ । ସ୍ଥାନ ଛାଡ଼ିଲେ ନ ଆସଇ ଆଉ ।।
ଅଥବା ବିଷ୍ଣୁ ବେଦବର ଶିବ । ତେଡ଼େମାନ ଦେହ ଛାଡଇ ଜୀବ ।।
ଆସିବା ନ ଦେଖି ଯିବା ନ ଜାଣି । ଗଲେ ସେ ଅସାଧ୍ୟ ନୁହଇ ଆଣି ।।
ଶୁଣସି ହୋ ମନ ଯେହୁ ସିଦ୍ଧାନ୍ତ । ଘଟଯୋଗ ଭାଣ୍ଡ ଦେହ ବୃତ୍ତାନ୍ତ ।।
ଆଦିଯେ ଦେହ ଯହୁଁ ହୋଇଅଛି । ବିଚାରି ଲୋଡ଼ିଲେ ନୁହଇ କିଛି ।।
ଖଙ୍କାର ସିଂଘାଣି ଛେପ ଯେମନ୍ତ । ପ୍ରଥମ ବିମରି ଗଢ଼େ ତେମନ୍ତ ।।
ପ୍ରଥମେ ରେଣୁ ପ୍ରମାଣ ରହିଲା । ଜଠରେ ଯେମନ୍ତ ରୂପ ଧଇଲା ।।
ଆଲେଖ ପ୍ରତିମା ଲାଗି ଅଲଗ । ଯେ ଯାହା କଥା ତାହାକୁ ବିଲଗ ।।
କାହିଁ ଥାଇ କାହିଁ ଆସି ହୋଇଲା । କି କି ହୋଇ କେଣେ କାହିଁକି ଗଲା ।।
ମଝିରେ ରୂପେ ପ୍ରକାଶିଲା ଆସି । ବିଜୁଳି ପ୍ରାୟେ କେଣେ ଗଲା ଖସି ।।
ଯେତେ ଗଞ୍ଜିହୋଇ ମଲି ମିଛକୁ । ଆଉ କଥାମାନ ଥାଉ ପଛକୁ ।।
ଯେତେ ଲୋକସଙ୍ଗେ ଗୋଷ୍ଠୀ କରିଛି । ସେମାନେ ଏହାର ନୁହଇ କିଛି ।।
ଜନ୍ମ ହିଂ ଏକା ମରଣ ହିଂ ଏକା । ବନ୍ଧୁ ବାନ୍ଧେବ ଯେ କାହା ସାଖା ।।
ଅର୍ଥ ଲୁବୁଧେ କଥାଭାବେ ସଙ୍ଗ । ଯେ ଯାହା କରମ ତାହାରି ଅଙ୍ଗ ।।
ଅନେକ ଦୁଃଖେ ଅରଜଇ ଧନ । ତାହିତ ପଥେ ଭୋଗ କରେ ଆନ ।।
ଏହାର ଯହୁଁ ମିଛକୁ ମୁହାଂସ । ମୁହାଂସ ବଶେ ଦେହଯାଇ ନାଶ ।।
ବୁଝସି ହୋ ମନ ଏଥର ରୀତି । ଅତି ଅସାଧନ ଦେହ ପ୍ରକୃତି ।।
ତୁ ଅବା ବୋଲୁ ଦେହମୋର ମାୟା । ଉପାଧି ଭେଦେ ବହି ଅଛି କାୟା ।।
ଯେଥକୁ ମନ ଦୃଷ୍ଟାନ୍ତର ଶୁଣ । ତୋତେ ବୁଝାଇବା ତୋହରି ଗୁଣ ।।
ଏ ଆଦି ଦେହ ଉପୁଜିଲା ଯହୁଁ । ବିଷମ ସନ୍ଦେହ ସେ କଥା କହୁଁ ।।
ଯେଉଂ କମିଲା ସେ ଶସ୍ତ୍ର କାଢ଼ିଲା । ଏତେ ତୁଲେ କମ କାହୁଁ ଗଢ଼ିଲା ।।
କେତେମତେ ତାହା କାହୁଁ ଆଣିଲା । ଦୁର୍ଲଭକର୍ମ କେମନ୍ତେ ଜାଣିଲା ।।
ଏକୁଂ ପ୍ରକାଶଇ ଅନେକ ଚିହ୍ନ । ଗୋଟି ଗୋଟିକେ ବହୁରୂପ ଭିନ୍ନ ।।
କେତେ ବିନ୍ଧାଣିଯେ ସଂସାରେ ନାହିଁ । ଯେମନ୍ତ ପ୍ରତିମା ଗଢ଼ିବେ କାହିଁ ।।
ବାହାର ପ୍ରକାରେ ଦେଖି ଗଢ଼ିବେ । ଭିତର କାହୁଁ ନିବାଡ଼ି ପାରିବେ ।।

ଭିତର କମହିଁ ଯଦି ଜାଣିବେ । ବିଷ୍ୟ ଅଗୋଚର କାହୁଁ ଆସିବେ ॥
ଭଲାବିଦ୍ଧାଣି ଯେ ପରମାନନ୍ଦ । ଦିଶନ୍ତା କମ ଦେଖନ୍ତାକୁ ଅନ୍ଧ ॥
ହେନ ଜାଳନ୍ଧର ମାୟା ରଞ୍ଚିଲା । ପାଣିଫୋଟକା ଯେତେ ମାନକଲା ॥
ଅତି ଅଗୋଚର ହେତୁ ତାହାର । କାହୁଁ କେତେ ରୂପ କଲା ବାହାର ॥
ଆବର ବିଶେଷ ନାହିଁ ବାହାରେ । କେମନ୍ତେ ଗଢ଼ିଲା ଗର୍ଭ ଭିତରେ ॥
ହାଡ଼ ଗୋଡ଼ମୁଣ୍ଡ କାହୁଁ ପାଇଲା । କେତେଗୁଣ ଆଣି କାହୁଁ ଲାଇଲା ॥
ଅତିଗୁପତ କୁମ୍ଭି ପାକ ସ୍ଥାନେ । ତହିଁ ଲୁଚିଥିଲେ ଇନ୍ଦ୍ରିୟମାନେ ॥
ଅନେକ ବିଦ୍ୟା ଯେହୁଥିବ ପଢ଼ି । ଯେମନ୍ତ ରୂପ ନ ପାରିବ ଗଢ଼ି ॥
ପାତାଳେ ବାସୁକୀ ସ୍ୱର୍ଗେ ବିଡ଼ୋଜା । ମଞ୍ଚଭୁବନେ ଯେତେ ମହାରାଜା ॥
ଅସୁର ଆଦି ଦେବତା କୋଟିଏ । ଗଢ଼ି ପାରିବେ କି ଯେଥୁ ଗୋଟିଏ ॥
ଅନାଦିକନ୍ଦ ଯେମନ୍ତ ବିନ୍ଧାଣି । କାହୁଁ କେତେକ ସଂପାଦିଲା ଆଣି ॥
ଏକା ନିଶ୍ୱାସେ କୋଟିଏ ମରଇ । କୋଟିଏ କୋଟି ଭିନ୍ନ ରୂପ ଧରଇ ॥
ଏକାଜଣେକ ସଂପାଦୁଛି କେତେ । ଗୋଟିକେ ବେଗ ନଦେଖିବା ଯେତେ ॥
ଯେତେକ କହୁଛି ଯେହି ମନକୁ । ଦୁର୍ଲଭ କଥା ତିନିଭୁବନକୁ ॥
ବୁଝସି ହୋ ମନ ଯେଥର ମାୟା । ସହଜେ କର୍ମ ଅବିବେକ କାୟା ॥
ଯେତେବେଳେ ମାତା ପିତାହିଁ ନାହିଁ । ତେତେବେଳେ ପୁଣ ଥିଲାଟି କାହିଁ ॥
ନଥିଲା ଯେବେ ସେ କାହୁଁ ଅଇଲା । ଥିଲା ଯେବେ କିମ୍ପା ଆଗୁ ନୋହିଲା ॥
ଥିଲା ନୁହଇ ନଥିଲା ନ ଜାଣି । ବିବେକ ଜନେ ବୁଝି ପରିମାଣି ॥
ପୁଇରକତ ମୁତୁପୁଡ଼ା ନାଡ଼ି । ଏହି ଶରୀର ହୋଇଥିଲା ଜଡ଼ି ॥
କୁତ୍ସିତ ଭୂମି ଜନନୀ ଜଠରେ । ଦଶମାସ ଥିଲା ଯୋନି କୂପରେ ॥
ଯଦ୍ୟପି କରିବ ମନ ବିକାର । ତେବେ ବେଳ କଥା ଯେବେ ଧିକାର ॥
ଜନନୀ ଜଠର କୃମି ଆମଳ । ତା ତୁଲେ ଲୁଠୁଥିଲା ଭୂମିସ୍ଥଳ ॥
ବାଲ୍ୟତ କାଳର ଯିସ ଭାବନା । ସେମାନେ ଏବେ ଉପାଳମ୍ଭ ସିନା ॥
ହେନ ବିଡ଼ମ୍ବଣ ଯେବଣ ଦେହି । ସମୟେ ଭୋଗ୍ୟ ନ କରିବେ କେହି ॥
ଦିନ ଗଣୁ ଗଣୁ ଶରୀର ବଢ଼େ । ବୟସ୍କ କହନ୍ତେ ଆୟୁଷ ଛିଡ଼େ ॥
ଦିବସ ମାସ ବରଷକେ ଲେଖୁ । ଦେହ ପତନ ହୋୟେ ଦେଖୁଂ ଦେଖୁଂ ॥
ଶତେ ବରଷ ଆୟୁଷ ଲେଖିଲେ । ଏତେ କହିଁ ଭୋଗ ନୁହଇ ଭଲେ ॥
କୋଟିଯେ ଅରଷ୍ଟି ଯେହିଦେହକୁ । ଶରୀର ବହି ଶଙ୍କା ଜୀବନକୁ ॥
ବସନ ଭୋଗ ପଦଧରି ଆସେ । ଦୁଃଖେ ଧରିଥାଇ ରାତ୍ର ଦିବସେ ॥

ଜଳବିମ୍ବୁହୀନ ଜୀବନ କେତେ । ଏହାକୁ ଆବୋରି ଅବୋଧ ଏତେ ।।
ସବୁ ମୁହାଂସ ଏହି ଦେହକୁ । ଏହାରେ କାହା ନକରେ କାହାକୁ ।।
କଳାକରମ ଚିରକାଳ ଥାଇ । କାରେଣୀ ଲୋକ କହୁଂ କହୁଂ ଯାଇ ।।
ସକଳ ଦେହେଂ ସମତୁଲ ବଥା । ଏକ ନଜାଣଇ ଆରେକ କଥା ।।
ଆବର ମନ ବଚନେକ କହୁ । ଏ ଦେହ ଆଦି ଉପୁଜିଲା ଯହୁଂ ।।
ଲିଙ୍ଗ କମଳ ଷଡ଼ଦଳ ଶୋଭା । ଅରୁଣ କୋଟି ଉର୍ଦ୍ଧ୍ୱମୁଖେ ପ୍ରଭା ।।
ଶିବ ଶକତି ସମଯୋଗ ଘେନି । ତଥି ପତନ ରଜବୀର୍ଯ୍ୟ ବେନି ।।
କର୍ମ କମଳ ବୁଦ୍‌ବୁଦା ଫେଣ । ତହିଂକି ଲାଗିଲା ପ୍ରାଣ ପବନ ।।
ପ୍ରାଣ ପବନ ଜୀବ ବେନି ଆଦି । ଜୀବ ଘେନି ମନ ବୁଦ୍ଧି ଆଚ୍ଛାଦି ।।
ଜୀବ ମନବୁଦ୍ଧି ଏକତ୍ର ଯହିଂ । ଦେହାଦି ବିଶ୍ରାମ କରଇ ତହିଂ ।।
ଶୁଭାଶୁଭ ମୂଳେ ଯେତେ ରଂଚନା । ଧାତୁ ମାତୁ ଯେତେ ରଙ୍ଗ ରଂଚନା ।।
ଭୂତ ପ୍ରକୃତି ଚେତନା ସହିତେ । ସ୍ଥାନ ଆବୋରିଲେ ଯେ ଯାହା ମତେ ।।
ସ୍ଥାନ ଘେନି ବୀଜ ଶରୀରେ ଗଛି । ସ୍ଥାନ ଅଭ୍ୟାନ୍ତରେ ନୁହଇ କିଛି ।।
ସ୍ଥାନ ଜାଣି ବୀଜ କଲେ ସଂଯୋଗ । ଅବଶ୍ୟ କିଛି ହୋଯେ ଫଳ ଭୋଗ ।।
ଯେହ୍ନେ କୃଷିକାରୀ ମଞ୍ଜି ବିହୁଳେ । ବାହୁଡ଼ି ସେହି ମଞ୍ଜି ତହିଂ ଫଳେ ।।
କେବଳ ଭୂମି କରଷଇ ଚାଷୀ । ଇଚ୍ଛା ସୁଖେ ଫଳ ଫଳଇ ଆସି ।।
ସହଜେ ଯେ ଯାହା ଗୁଣ ବିକାରେ । ବୀଜ ଭିତରୁ ନିଜ ରୂପ ଧରେ ।।
ସେହି ବୀଜ ଅନ୍ୟ ଠାବେ ଥୋଇବା । ଅନେକ ପ୍ରକାରେ ଧ୍ୱଂସୀ ହୋଇବା ।।
ଆଗମ ମତ ମଉସଧି ଶିଖି । ଏମନ୍ତ ରୂପ ଚାହୁଂ କିନା ଦେଖି ।।
ହେନ ବିଚାରନ୍ତେ ପରମ ତତ୍ତ୍ୱ । ପିଅର ମାତା କୃଷିକାରୀ ମତ ।।
ରଜବୀର୍ଯ୍ୟ ଥିଲା ତାହାଙ୍କ ତହିଂ । ଏମନ୍ତ ରୂପେ ସେ ଗଢ଼ିବେ କାହିଂ ।।
ଅସ୍ଥି ରକତ ମଳମୂତ୍ର ଦେହ । ଏଥି ଭିତରେ ଏତେ ମାନ ମୋହ ।।
ପ୍ରକୃତି ପୁରୁଷ କାଳେ ବ୍ୟକତ । ଏହାଙ୍କ ମୂଳେ ଚଉବିଂଶ ତତ୍ତ୍ୱ ।।
ହସ୍ତ ମସ୍ତକ ଚକ୍ଷୁ ନାସା କର୍ଣ୍ଣ । ପାଦ ଜଠର ନାନା ବସ୍ତୁ ବର୍ଣ୍ଣ ।।
ଆୟତେ ନୁହଇଂ କେହି କାହାରି । ଭ୍ରମନ୍ତି ଇଚ୍ଛାସୁଖେ ଯେ ଯାହାରି ।।
ବିବିଧ ପ୍ରକାରେ ଯେତେ ରଂଚନା । ମନ ଆଦି କରି ଇନ୍ଦ୍ରିୟ ନାନା ।।
ପୃଥ୍ୱି ଆପ ତେଜ ବାୟୁ ଆକାଶ । ଏ ପଞ୍ଚଭୂତେ ତତ୍ତ୍ୱ ପରକାଶ ।।
ପଞ୍ଚମହାଭୂତ ପଞ୍ଚ ଭୂଷଣ । ଏହାନ୍ତ ଆବୋରି ଗୁଣ କାରଣ ।।
ଚାରିଖାନି ଚାରି ବାଣୀ ଜଗତ । ରଜବୀର୍ଯ୍ୟ ଗୁଣେ ଯେ ଯାହା ମତ ।।

ଏକଇ ଆତ୍ମା ଅନେକ ପ୍ରକାରେ । ସବୁ ହୋଇ ଅଛି ମନ ବିକାରେ ।।
ଯହୁଂ ନ ଜାଣଇ ଗ୍ୟାଂନ ବିବେକ । ତେଣୁକରି ହୋଯେ ଯେକୁ ଅନେକ ।।
ଏକୁଂ ଅନେକ ପ୍ରକାଶଇ ଗୁଣ । ଫେଡ଼ି କହିବା ଦୃଷ୍ଟାନ୍ତର ଶୁଣ ।।
ଯେହ୍ନେ ଝକମକ ପଥର ଥୋଇ । ରୁଖ ଠୁକାଇଂ ତଳେ ତୁଳା ଦେଇ ।।
ତହୁଂ ଉପୁଜେ ଯେବଣ ବହନି । ସଂସାର ଦହିପାରେ ତାହା ଘେନି ।।
ଦୀପ ଦିହୁଡ଼ି ଲଗାଇବା ଯେତେ । ଅଧିକୁ ଅଧିକ ହୋଇବ ତେତେ ।।
ତେସନ ଆତ୍ମା ସର୍ବଗର୍ଭେ ନିତି । ପ୍ରକୃତି ମତି ଭେଦ ରୂପେ ଭିତି ।।
ଭୂତ ପ୍ରକୃତି ଯହୁଂ ସମଂନୋହେ । ବାସନାରୂପେ ଭିନ୍ନ ଭିନ୍ନ ବହେ ।।
ସର୍ବଶରୀରେ ନିରଞ୍ଜନ ଯେକ । ଶଶୀ ଜଳଘଟେ ପ୍ରକାଶ ଦେଖ ।।
ଉପାଙ୍ଗ ବଇଂଶୀ ଭେରି ଦୋସରି । ଯନ୍ତ୍ର ଅଳାବେଣୀ ଶଙ୍ଖ ମହୁରୀ ।।
ସେହି ପବନ ସର୍ବଠାରେ ସାଜେ । ମୂର୍ତ୍ତି ବିକାରେ ଭିନ୍ନ ଭିନ୍ନ ବାଜେ ।।
ତୁହି ମନ ଯେହା ଆପଣେ ଜାଣୁ । ଆବର ବେଦ ପୁରାଣ ହିଂ ଶୁଣୁ ।।
କହୁଂ କହୁଂ ହୁତୁ ଯେଡ଼େ ନାଗର । ସବୁ ହାନି ଲାଭ ତୋହୋ ଆଗର ।।
ସ୍ୱରୂପ ଦେଖି ଶାନ୍ତି ନ ବିଚାରୁ । କ୍ଷଣକ ସୁଖେ ଯାହା ପାରୁ କରୁ ।।
ଅଇରି ଛଡ଼ ଯେ ତୋ ତୁଳେ ଥାନ୍ତି । ଅନୀତି କରାଇ କାଳେ ସେ ଯାନ୍ତି ।।
ପରମ ପଦ ମହାସୁଖ ଛାଡ଼ି । ଅକାରଣେ ମର ଅମଡ଼ା ମାଡ଼ି ।।
ସେହି ନକ୍ଷତ୍ର ସେହି ବାର ତିଥି । ସେହି ଦିବସ ସେହି ସନ୍ଧ୍ୟା ରାତି ।।
ସଂସାରଯାକ ସେହି ମତେ ଥାଇ । ସବୁ ଛାଡ଼ି ଯେଥୁଂ ଜୀବନ ଯାଇ ।।
ଯେବଣ ଦେହକୁ ଦଗଧ ଏତେ । ଅନ୍ତେ ଅପରାଧ ତାହାକୁ କେତେ ।।
ଏବେ ହୋ ମନ ତୁହି ତୋତେ ଚିହ୍ନ । ସଂସାର ଦେହୁଂ ତୁ ନୋହୁନା ଭିନ୍ନ ।।
ତୋହୋ ନ ଥିଲେ ତ ସଂସାର ନାହିଂ । ସଂସାର ନଥିଲେ ତୁ ଥିବୁ କାହିଂ ।।
ଏଣୁକରି ଦେହ ମନର ସାଖୀ । ସଂସାର ମନ ଦେହ ଘେନି ଲେଖା ।।
ତୁ ଅବା ବୋଲୁ ଏ ସଂସାର ଥାଇ । ଦେଖ ଉପେଖି ମନ କିଂପା ଯାଇ ।।
ମନର ଦେହକୁ ଆଶା ନାହିଂକି । ଯେଡ଼େ ମମତା ଛାଡ଼ିଲା କାହିଂକି ।।
ହେନ ବିଚାରି ନକରସି ଭ୍ରାନ୍ତି । ବିବେକ ବୁଦ୍ଧି ଗୁଣି ହୁଅ ଶାନ୍ତି ।।
ବେଭାରେ ମନ ଦୃଷ୍ଟିଭେଦ ସିନା । ସୁଗତି କୁଗତି ବେନି ବାସନା ।।
ଯଦି ଏ ମନ ସୁଗତିକି ଯାଇ । ବନ୍ଧ ବିନାଶି ମୋକ୍ଷଗତି ପାଇ ।।
ଅଥବା ଯେବେ କୁଗତି ଆଚରି । ଜନ୍ମ ମରଣ ଦୁଃଖେ ଅଧିକାରୀ ।।
ଯାବତ ବିଷୟ ସଙ୍ଗ ନ ତୁଟି । ଦେହ ଗମନ ସମତୁଲ ସେଟି ।।

ଜୀଇଂଲା ଲୋକତ ମରଇ ନାହିଁ । ମଲା ଲୋକ ଆଉ ଜୀଇଂବ କାହିଁ ॥
ବୁଝସି ହୋ ମନ ଗ୍ୟାଂନ ପ୍ରସିଦ୍ଧି । ଦ୍ୱିତୀୟ ଖାନି ଘଟ ଯୋଗ ବିଧି ॥
ଗୁରୁ ଗୁପତ ଯେ ଯେବଣ ବାଣୀ । ମୁଂ ତାହା ଫେଡ଼ି ଦେଖାଇଲି ଆଣି ॥
ଶ୍ରୀଜଗନ୍ନାଥଙ୍କ ସୁଦୟା ଯହୁଂ । ହିତ ବଚନ ବଖାଣିଲୁ ଯହୁଂ ॥
ଜଳାଧିପତି ଯୋଗାରୂଢ଼ ସ୍ୱାମୀ । ଯହୁଂ ଜଗତ ଭୂତେ ଅନ୍ତର୍ଯ୍ୟାମୀ ॥
ପରମ ଜ୍ୟୋତି ପୁରୁଷ ଉଦାସ । ନୀଳ ମହୀଧର ଶିଖରେ ବାସ ॥
କଟପବ୍ରହ୍ମ ଦାରୁମୟେ ଅଙ୍ଗ । ଲୋଚନ ମନ ବଚନର ଆଗ ॥
ଯାହା ଦର୍ଶନେ ମହାଦୁଃଖ ଖଣ୍ଡି । ଯମ ଦେବତା ନ ପାରଇ ଦଣ୍ଡି ॥
ସେ ଦେବ ଅଭୟ ପାଦକମଳେ । ରୁଦ୍ର ଗଜପତି ଭଜେ ଭୂତଳେ ॥
ଶ୍ରୁତି ସୁଖକର ଗହନ ବାଣୀ । ସୁଜନ ହିତେ ବଖାଣିଲି ଆଣି ॥
ଅନନ୍ତ ସିଦ୍ଧ ବିବେକ ବିଚାର । ପ୍ରତକ୍ଷେ ବିଦ୍ୟା ଉଚିତ୍ ଆଚାର ॥
ଯେ ପୁଣି ଜାଣଇ ଯେଥିର ଭାବ । ଅମରଲୋକେ ଯେହି ଦେହେ ଠାବ ॥
ସୁଜନ ଜନଙ୍କ ଚରଣେ ସେବା । ଅଚ୍ୟୁତ ଦାସକୁ ମୁକତି ଦେବା ॥

ଇତିଶ୍ରୀ ମନ ଚୈତନ୍ୟ ସଂବାଦେ ଶବଦବ୍ରହ୍ମ
ସଂହିତାୟାଂ ନାମ ଦ୍ୱିତୀୟଖାନି

## ତୃତୀୟ ଖାନି

ଆବର ମନ କହିବା ସ୍ୱରୂପ । ତୋହରି କଥା ତୋତେ ବହୁରୂପ ॥
ଅଶେଷ ବ୍ରହ୍ମାଣ୍ଡେ ଯେତେକ ଯହିଁ । ତୋହୋ ନ ଥାପିଲେ ଥିବ ସେ କାହିଁ ॥
କାଷ୍ଠ ପାଷାଣ ଅଷ୍ଟଲୋହ ମାଟି । ପିତୁଳି ଲେଖନ ଚିତ୍ର ପ୍ରକଟି ॥
ଏହି ମନ ରୂପ କରି ଥାପଇ । ଏ ପୁଣି ତା ନାମ ଧରି ଜପଇ ॥
ପୁଷ୍ପ ନୈବେଦ୍ୟ ଗନ୍ଧ ଚନ୍ଦନ । ଉପନ ବିଧି ଉପହାର ମାନ ॥
କେବଳ ଛାମୁରେ ବାଢ଼ଇ ନେଇ । ଆପଣେ ଭୁଞ୍ଜଇ ପାଣି ଛଡ଼ାଇ ॥
ଏତେ ସମ୍ପଦ ଯେହାଙ୍କୁ କରଇ । ତାହା ବରଦେଲେ ପୁଣ ତରଇ ॥
ସଜୀବ ଦେବତା ଆପେ ନ ବୁଝଇ । ଅଜାଣ ପଣେ ଅଜୀବ ପୂଜଇ ॥
ଏ ଯେବେ ସଂପ୍ରତେ ଯିବ ଯେହାକୁ । ଆପଣେ ଶମ୍ଭୁ ପୂଜିବ କାହାକୁ ॥
ନିବିଡ଼ ଜଡ଼େ ଯହୁଂ ନାହିଁ ଫନ୍ଦ । ଅନ୍ଧ ସଙ୍ଗେ ଚକ୍ଷୁ ଥିଲାର ଅନ୍ଧ ॥

ଯେବଣ କାରଣ ନ ଜାଣଇ ଭଲେ । ଆପଣା କାନ୍ଦଇ ପରର ମଲେ ॥
ଏହି ଦେହକୁ ମହାଦୁଃଖ ଦେଇ । କାହା ହୋଇ ନାହୁଁ ଦେହର ପାଇଁ ॥
ରାଜ ନିଯୋଗ ମରଣର ଡ଼ରେ । ବିକଳେ ଲୁଚନ୍ତି ଗିରି କନ୍ଦରେ ॥
ଦେହ ନିମନ୍ତେ ବଳ ଗୋପ୍ୟ ଧରଇ । ଦେହ ନିମନ୍ତେ ବ୍ରହ୍ମ ବଧ କରଇ ॥
ଏତେ ସେନେହ କରିଛି ଯାହାକୁ । କହୁଁ କହୁଁ ଛାଡ଼ିଯିବ ତାହାକୁ ॥
ଯେତେବେଳେ ଦେହ ଯିବ ବିନାଶ । ତହିଁ ଉତ୍ତାରେ କେ କାହାର କିସ ॥
ଅମର ମଣି ଇନ୍ଦ୍ରଲୋକେ ପୂଜା । ସପତ ଦ୍ୱୀପେ ଯଦି ମହାରାଜା ॥
ବିଷ୍ଣୁ ଦେବବର ଶଙ୍କର ଯେତି । ସବୁ ମରଣ ସମତୁଲ ସେତି ॥
ଜୀବ ଥିବା ଯାକ ଦେହ ବରଣି । ଜୀବ ନଥିଲେ ଦେହ କାହିଁ ଗଣି ॥
ଛାଗଳ ଛେଦ ଭୋଜନକୁ ନିତ୍ୟ । ବ୍ରାହ୍ମଣ ମଡ଼ା ଛୁଇଁଲେ ପତିତ ॥
ବେଦମନ୍ତ୍ର ପଢ଼ି ଏ ମଡ଼ା ଯେଢ଼େ । ଦୂବ ତୃଣ ଭକ୍ଷି ସେ ମଡ଼ା ତେଢ଼େ ॥
ଏହିମନ ଯେହୁ ଜାଣଇ ଦୃଢ଼ । ପରକୁ ତିଆରି ଆପଣେ ମୂଢ଼ ॥
ବଚନମୁଖେ କହୁଁ ଥାଇ ଯାହା । କୁଡି ମନଭେଦି ନପାରେ ତାହା ॥
ଧନ ସଂପଦେ କିଛୁ ବିଦ୍ୟା ଜାଣି । ବଡ଼ିମା ରୂପେ କହୁଥାଇ ଟାଣି ॥
ମଦ ମଛର ଅଭିମାନ ଘେନି । ଦୁର୍ଗନ୍ଧ ପଙ୍କେ ହେଉଥାଇ ଛିନ୍ନି ॥
ଏମନ ଯେବେ ଦେହକୁ ରଖିବ । ଏହାକୁ କିମ୍ପା ଦେହ ଉପେଖିବ ॥
ବିଶ୍ୱ ଭାରାଭାର ଏହାର ଗତି । କେହୁଣି ମତେ ନୁହଇ ନିବୃତ୍ତି ॥
ଅନଳ ଭିତରେ ଧୂମ୍ର ଯେମନ୍ତ । ଆତ୍ମାର ଭିତରେ ମନ ତେମନ୍ତ ॥
ବିଞ୍ଚଣି ଭିତରେ ପବନ ଯେହ୍ନେ । ଶରୀର ଭିତରେ ଜୀବନ ତେହ୍ନେ ॥
ଆଦିତ୍ୟ ଆୟେତ ଯେସନେ ଛାୟା । କର୍ମର ଆୟେତ ତେସନ ମାୟା ॥
ଯାବତ ଜୀବନ ମନ ଜାଣିଲା । ପବନ ବୋଲିବ ଗ୍ୟାଂନ ମଣିଲା ॥
ଶୁଣସି ହୋ ମନ ଏଥିର ବାଣୀ । କର୍ମ ଆତ୍ମା ସେ ବ୍ରହ୍ମଗ୍ୟାଂନ ଜାଣି ॥
ଫୁଲକୁ ଲାଗି ଫଳ ଯେହ୍ନେ ବଢ଼େ । ଫଳ ବଢ଼ିଲେ ଫୁଲ ଝଡ଼ି ପଡ଼େ ॥
ତେସନ କର୍ମରୁ ଗ୍ୟାଂନ ପ୍ରକାଶ । ଗ୍ୟାଂନ ପ୍ରକାଶି କର୍ମ ଯାଇ ନାଶ ॥
ଗୁରୁ ଉପଦେଶ ଏ ପଦ ବନ୍ଧ । କର୍ମ ଅଭ୍ୟାସେ ନତୁଟଇ ବନ୍ଧ ॥
କର୍ମ ଅଭ୍ୟାସର ବିଧି ଯେମନ୍ତ । ଦୀପ ଦିହୁଡ଼ି ଜାଳିବା ଯେମନ୍ତ ॥
ସର୍ବ ସଂଯୋଗେଣ ଦୀପ ଜାଳିବା । ନିର୍ବାତ ମନ୍ଦିରେ ପ୍ରତିପାଳିବା ॥
ତଇଳବଳିତା ଅବଶେଷ ବୁଝି । ପୁଣ ପୂରାଇ ପୁଣ ଦେବା ତେଜି ॥
ଯତନ କଲେ ଅବରୋଧେ ଥାଇ । ତାବତ ସେ ଦୀପ ନାଶ ନ ଯାଇ ॥

ତୁଅବା ବୋଲୁ ଗ୍ୟାଂନୀ ନିକଳଙ୍କା । ଆବର କାହିଂ ମରଣକୁ ଶଙ୍କା ॥
ଏମନ ଭାଳି ଭ୍ରାନ୍ତି କରୁ ଅବା । ଏଥକୁ ଶୁଣ ଦୃଷ୍ଟାନ୍ତର ଦେବା ॥
ଗ୍ୟାଂନର ସଙ୍ଗେ କାଳଯହୁଂ ଅଛି । ଜନ୍ମ ମରଣ ତେଣୁ କରି ଗଛି ॥
ବିବେକ ବଳେ କାଳ ଯେବେ ଖଣ୍ଡି । ଏହି ଶରୀର ଗ୍ୟାଂନଘେନି ମଣ୍ଡି ॥
ଧନଲୁବ୍‌ଧେ ବଣିଜାର କଷ୍ଟି । କିଣିଲା ଦ୍ରବ୍ୟ ବିକଇ ପାଲଟି ॥
ତଥାପି ତାର ମୂଳ ପଣେ ଥାଇ । ପସରା ସୁଖେ ଲାଭ ତହୁଂପାଇ ॥
ଆନବଣିଜ ଧନଘେନି ଲାଭ । ଜ୍ଞାନବଣିଜ ନିଜ ଦେହେଂ ଭାବ ॥
ତୁମନ ଯହୁଂ ଦେହକୁ ନଚାହୁଂ । ଦେହର ସଙ୍ଗେ ତୁହି ନାଶଯାଉ ॥
ଯେସନ ବହନି କମାର ଶାଳେ । ମାତ୍ର ଖାଉଥାଇ ତବତ ଫାଳେ ॥
ତେସନ ମନ ଦେହ ସଙ୍ଗେ ଥାଇ । ସବୁ ମୁହିଂଅଛି ନାମେକ ବହି ॥
ସୁଖ ଦୁଃଖେ ସଙ୍ଗନାହିଂ ଯାହାର । ଏହା ତୁଲେ କାହିଂ ଗୋଷ୍ଠୀ ତାହାର ॥
ପବନ ଯେହ୍ନେ ଅନ୍ତରୀକ୍ଷେ ଭ୍ରମେ । ରେଣୁ ତିରଣ ଘେନି ଉତ୍‌କର୍ମେ ॥
ଆକୃତିବନ୍ତେ ନିରାକୁଳେ ଉଡ଼େ । ଥୋକାୟେ ଦୂରେ ଯେ ଯାହାର ପଡ଼େ ॥
ଯେସନେ ପୁରୁଷ ସଙ୍ଗେ ପ୍ରକୃତି । ଜୀବବିକାରେ ହୋଇଅଛି ପ୍ରୀତି ॥
ପୁଷ୍ପର ଭିତରେ ବାସ ଯେମନ୍ତ । ଶରୀର ଭିତରେ ମନ ତେମନ୍ତ ॥
ଇକ୍ଷୁ ଭିତରେ ଗୁଡ଼ ଯେହ୍ନେ ଅଛି । ଦୁଗ୍‌ଧ ମଧରେ ଘୃତ ଯେହ୍ନେ ଲେଛି ॥
ସମୁଦ୍ର ମଧେ ଲବଣ ଯେମନ୍ତ । ମନର ଭିତରେ ଗ୍ୟାଂନ ତେମନ୍ତ ॥
ସଂଯୋଗେ ଜଗତେ ଯେ ଯେଣେ ବିଧି ।ବିନା ଅନୁଭବେ ନୁହଇ ସାଧି ॥
ଅନୁଭବ ଗୁଣ ଜାଣି ଯେତେକ । ଯେହ୍ନେ ଝିଂଟିକା ଜଳାନ୍ଧର ପୋକ ॥
ଆକ୍ରେଷି ଧରି ମୃତ୍ୟୁ ଶବ କରେ । ଦ୍ୱାର ନିରୋଧି ନିଜଘରେ ଭରେ ॥
ଗୃହ ଭିତରେ କିଛୁଦିନ ଥାଇ । ତଳୟେ ବଳେ ଭିନ୍ନ ଦେହ ପାଇ ॥
ଗୁରୁ ଉପଦେଶ ପଥ ବାହାର । କୁମ୍ଭାରିୟା ପୋକ ନାମ ତାହାର ॥
ଶୁଣସି ହୋ ମନ ସ୍ଥିର କାହାଣୀ । ପ୍ରବୋଧ ଜ୍ଞାନ ଉପଦେଶ ଜାଣି ॥
ଏବେ ହୋ ମନ ତୁ ନବୁଝି ଅବା । ଆବର ବଚନ ଫେଡ଼ି କହିବା ॥
ତୁ ଯେ ବିଚାରିଲୁ ଦେହ ତୋହର । ଏଥେ ଥାଇବୋଲୁ ସବୁ ମୋହର ॥
ଆବର ସନ୍ଦେଶ କହଇ କିନା । ତୋହୋ ଦେହକୁ ତୁହି ଦେଖି ଅନା ॥
ଏ ଦେହ ଅନ୍ତେ ତୁ ହେଉ ଯେମନ୍ତ । ପରତେ ଗ୍ୟାଂନ ମଣିଲେ ତେମନ୍ତ ॥
ଜୀବ ମନ ବୁଦ୍ଧି କଲେ ଭାବନା । ଆତ୍ମାର ଦେହ ବସ୍ତୁଭେଦ ସିନା ॥
ଯେବେ ନମଣୁ ଏଡ଼େ ଦେହ ଯାଏ । ଏହାହୁଂ ଅପୂର୍ବ ଶୁଣ କଥାଏ ॥

ଏ ତୋର ଶରୀରେ ଯେତେ ପାତନା । ତୋହ ଭିତରେ ତୁହି ତୋତେ ବଣା ॥
ଥିଲାର ତୋତେ ଅଗୋଚର ଯହିଁ । ନଥିଲା ଗୋଚର କରିବୁ କାହିଁ ॥
ତୋହର ଶିର ତୋର ତହିଁ ଶୋଭା । ସେ କିମ୍ପା ତୋତେ ନ ଦିଶଇ ଅବା ॥
ପିଠି ଆଦିକରି ଏ କଟୀବନ୍ଧ । ସ୍ଥାନ ନ ଦିଶଇ ବିଷମ ଧନ୍ଦ ॥
ଏହିଠାରେ ଥାଇ ଏତେକ ବଣା । ଆଖି ଥାଉଂ ଥାଉଂ ହୋଇଛି କଣା ॥
ଜୀବପରମ ଏସନେକ ଗୁଣ । ଆଦର ଏହାଙ୍କୁ ଅପୂର୍ବ ଶୁଣ ॥
ଯେଉଂ ଆଖି ଘେନି ଜଗତ ଦେଖେ । ଆଖିର ରୂପ ଆଖିକି ନ ଦିଶେ ॥
ଅଧର ନାସିକା ତାଲୁ କପାଳ । ଡୋଳାରେ ଲାଗିଛି ପିଛଡ଼ା ବାଳ ॥
ନୁହଇ ଦୂର ଦେଳା ନାହିଁ ବାଡ଼ । ଏତେ ନିକଟକୁ ଏତେ ଉହାଡ଼ ॥
ଯେବଣ ଚକ୍ଷୁ ମହା ଜ୍ୟୋତିମୟେ । ଦୂରକୁ ଦିଶେ ତାରାଗଣ ପ୍ରାୟେ ॥
ସଂସାର ପାତନା ଯେତକ ଯହିଁ । ସକଳ ଦେଖେ ଅବହେଳେ ଚାହିଁ ॥
ପରସୁନ୍ଦରକୁ ପରିମାଣଇ । ଆପ ସୁନ୍ଦର ଆପେ ନ ଜାଣଇ ॥
ଗୁରୁବଚନ ଯେସନେକ ସୁଖ । ପଟାଧି ବସ୍ତ୍ରରେ ପ୍ରକାଶେ ମୁଖ ॥
ଦର୍ପଣ ଭିତରେ ଜ୍ୟୋତି ପ୍ରକାଶଇ । ଶରୀର ଯାକ ସମତୁଲ ଦିଶଇ ॥
ଦିଶିଲା ଅବା ସେ ନୁହଇ ସତ । ବସ୍ତୁର ସ୍ୱଭାବ ଯହିଁ ଯେମନ୍ତ ॥
ଅଥବା ରୂପ ଜ୍ୟୋତି ଅବଧାରି । ସେ ବେଶ ସୁବେଶ କରି ନ ପାରି ॥
ତାମ୍ବୁଲଚନ୍ଦନ ବସନ ଗଭା । ଯେ ରୂପମଣ୍ଡିଲେ ସେ ରୂପଶୋଭା ॥
ସେ ବେଶ ସୁବେଶ ନୁହଇ ଯେହ୍ନେ । ଶରୀର ମଧ୍ୟରେ ଆତ୍ମାହିଁ ତେହ୍ନେ ॥
ଯାବତ ଜୀବ ମନବୁଦ୍ଧି ଗମେ । ଉପାଧି ଭେଦେ ଆତ୍ମା ତହିଁ ରମେ ॥
ସୁଗ୍ରୀଂ ପ୍ରମାଣେ ଶୁଦ୍ଧମଣି ଥୋଇ । ପାରୁଶେ ଭେଟ କରାଇବା ନେଇ ॥
ଶତେ ଯୋଜନ ପର୍ବତହିଁ ଦିଶେ । ଉପଜଇ ଜ୍ୟୋତି ହୋଇବକି ସେ ॥
ଆତ୍ମା ଅନ୍ତରୀକ୍ଷ ଯେତେ ବିକାରି । କାହିଁ କେତେ ଅଛି ଜାଣି ନ ପାରି ॥
ଶୁଣସି ହୋ ମନ ହେନ ବିଚାର । ଶାନ୍ତି ଗୁଣ ଘେନି ତତ୍ତ୍ୱ ବିଚାର ॥
ନିଶ୍ଚୟେ ପଶି ପାରିଲେ ତହିଁକି । ଜନ୍ମ ମରଣକୁ ଭୟେ କାହିଁକି ॥
ଲିଙ୍ଗ ଯାତନା ଭୁଲ ଦେହ ଘେନି । ପରାଲବ୍ଧ ବୀଜକୁଟ ଯେ ବେନି ॥
ଅନିତି ଦେହକୁ ତିନି ଅବସ୍ଥା । ନିଶ୍ଚୟତି ଜାଗ୍ରତ ନିଦ୍ରା ବେବସ୍ଥା ॥
ଯେବଣ ଦେହେ ଯେଉଂ ଭୋଗପାଇ । ଏକର ବଳେ ଆରେକ ନଆଇ ॥
ଜାଗ୍ରତ ଭାବେ ଯହିଁ ଯାହା କରି । ସ୍ୱପନଭାବେ ତା ତହିଁ ପାଶୋରି ॥
ନିଚେଷ୍ଟା ନିଦ୍ରା ଯେତେବେଳେ ଯାଇ । କଷଣା ସୁଖେ ଭିନ୍ନ ଦେହ ପାଇ ॥

ସ୍ୱପନଭାବେ ଯହିଁ ଯାହା ଅଛି । ନିଦ୍ରା ଭାଜିଲେ ସେ ନୁହଇ କିଛି ॥
ଅଚେତନକୁ ସତ ହୋଇଥାଇ । ଚେତନା ହୋଇଲେ କେଉଂ କତି ଯାଇ ॥
ଏହି ମନକୁ ଏହିକ୍ଷଣି ବଣା । ଏକ ନିମିଷକେ ତିନିପାତନା ॥
ଜାଗ୍ରତ ଭାବୟେ ବ୍ରହ୍ମାର ସୃଷ୍ଟି । ବିଷ୍ଣୁର ସଂସାର ସ୍ୱପନ ଯେଟି ॥
ବେନି ଅଭ୍ୟନ୍ତରେ ଯେବଣ ଦେହୀ । ଈଶ୍ୱର ସୃଷ୍ଟ ଗ୍ୟାଂନଗୁଣ ସେହି ॥
ଏ ତିନି ଦେହ ଯଦିଥିବ ଜାଣି । ସେହି ସେ ଜାଣଇ ଶ୍ରୀଗୁରୁ ବାଣୀ ॥
ମନ ପବନ ବିବର୍ଜିତ ଯହିଁ । ଗୁରୁ ବଚନ ତହିଁଯାଏ କହିଁ ॥
କେବଳ କର୍ମ ଗୁରୁ ମୁଖେ ଜାଣି । ବିବେକ ଗ୍ୟାଂନ ଆପେ ପରିମାଣି ॥
ଯଦ୍ୟପି ବୀଜକୁଟ ବେନି ଅଛି । ପ୍ରାଲବ୍ଧ ବିହିନେ ନୁହଇଂ କିଛି ॥
ଶୁଣସି ହୋ ପୁନ ବଚନ ସାର । ଗ୍ୟାଂନର ମତ ଅପାରୁଂ ଅପାର ॥
ବିନା ଅନୁଭବେ ନ ଜାଣି ତତ୍ତ୍ୱ । ଗୁରୁ ପଟାନ୍ତର ପଥୁକୀ ମତ ॥
ପଥୁକୀ ପଥ ଦେଖାଇଣ ଦେଇ । କହିଲା ଲୋକକି ସଙ୍ଗତେ ଯାଇ ॥
ବାଟ ଦେଖାଇ ସେ ରହିବ ଯେହ୍ନେ । ଗୁରୁ ବଚନ ଶିଷ୍ୟ କରି ତେହ୍ନେ ॥
ଶାନ୍ତି ଖଡ଼୍ଗେ ଭ୍ରାନ୍ତିକି ହାଣିବ । ଆତ୍ମା ନାରାୟଣ ବୋଲି ଜାଣିବ ॥
ସ୍ନାନୁ ଅପ୍ରମୟ ସୁଖାନି ରହ । ଓମତି ଅକ୍ଷରେ ପ୍ରକାଶ ଦେହ ॥
ପଦପରତେ ଯେ ମୋକ୍ଷ ମାଗିବ । ଝଡ଼ିଲା ପତ୍ର ପାଲଟି ଲାଗିବ ॥
ଅସିଦ୍ଧ ତନୁସିଦ୍ଧ କରି ନ ପାରଇ । ଯେହି କର୍ମବୋଧ ଆବୋରି ମରଇ ॥
କର୍ମବିଧିର ଯେ ବିଧି ଯେସନ । କୁମ୍ଭାରିଆ ପୋକ ଗୃହଯେସନ ॥
ଯେଉଂ ବହନି ଯେଉଂ କାଠୁଂ କାଢ଼ି । ସେହି ନିଆଂ ଘେନି ସେ କାଠପୋଡ଼ି ॥
ଯଦ୍ୟପି ସେ କାଠ ଅନଳେ ଦହିବା । ପାଉଂଶ ହେଲେକି ତାହା ପାଇବା ॥
ଗ୍ୟାଂନ ଅନଳେ କର୍ମଯେବେ ଦହି । ମୃତ୍ୟୁ ବିନାଶି ଯେହି ଦେହ ରହି ॥
ଯାବତ ଦହନ ନୁହଇ କର୍ମ । ଦେହଜୀବ ଘେନି ଦେହ ଜନମ ॥
ଜଳେବୁଡ଼ି ଯେହ୍ନେ ନେଉଟି ଉଠି । ଜନ୍ମ ମରଣ ସେହିମତି ସେଟି ॥
ନିଦ୍ରାଗଲେ ଯେହ୍ନେ ସବୁ ପାଶୋରି । ପୁଣି ଚିଆଂଇଲେ ସବୁ ଆବୋରି ॥
ଗୃହଛାଡ଼ି ଯେହ୍ନେ ପ୍ରବାସ ଯାଇ । ଆନ ଗ୍ରାମରେ ଆନ ଗୃହ ପାଇ ॥
ବୁଝିସି ହୋ ମନ ପଦ ଅମୂଲ୍ୟ । ଆତ୍ମାଘରୁ ହୋ ଦେହ ଘରତୁଲ ॥
ମନ ମୁଖ୍ୟ କରି ଇନ୍ଦ୍ରିୟ ନାନା । ଆତ୍ମାର ସବୁ ପରିବାରୀ ସିନା ॥
ଏଥୁ ଅନନ୍ତରେ ନୋହଇ କିଛି । ଆତ୍ମା ଥିଲେ ଦେହ ସ୍ୱଭାବେ ଅଛି ॥
ଆତ୍ମାପରତେ ନୋହିଲେ ସାଧେକି । ଗ୍ୟାଂନ ଜାଣିଲା ବୋଲି ତାକୁ ଲେଖି ॥

ଶ୍ରୀଗୁଣ ଧାରଣ ଯେବଣ ବୁଧା । ଘେନ ପଦବୋଧ ଛେଦ ଦୁଗୁଧା ॥
ଲବଣ ଜଳଧି ଉତ୍ତର ତଟେ । ଅକ୍ଷୟେ କଳପବଟ ନିକଟେ ॥
ସ୍ୱଦେହଂ ବିଜେ ପ୍ରଭୁ ଭଗବାନ । ନୟନ ଗୋଚରେ ନିଷ୍ଟୟେଂ ଗ୍ୟାଂନ ॥
ବିବେକ ଦମ୍ଭ ଅବିବେକ ପକ୍ଷ । ସ୍ଥୂଳ ବଚନ ବିଚାରନ୍ତେ ସୂକ୍ଷ୍ମ ॥
ଉଜ୍ୱଳ ଶ୍ରୀମୁଖ ରାଜୀବ ଡୋଳା । ଭବ ଜଳଧି ଅକାରଣେ ଭେଳା ॥
ଭଗତ ଜନମାନଙ୍କର ପାଇଂ । ରୂପ ହୋଇଅଛି ଅରୂପ ହୋଇ ॥
ସେ ଦେବ ଚରଣ କମଳେ ନିତି । ଭଜେ ପ୍ରତାପରୁଦ୍ର ଗଜପତି ॥
ପଦ ଦୁର୍ଲଭ ସଂହିତା ସୁସାର । ତୃତୀୟ ବୋଧ ପରତେ ବିଚାର ॥
ପରଚେ ଯୋଗ ଲକ୍ଷଣ କଥନେ । ଅଚ୍ୟୁତ ଦାସ ସାଧୁହିତେ ଭଣେ ॥

ଇତିଶ୍ରୀ ମନଚୈତନ୍ୟ ସଂବାଦେ ଶବ୍ଦବ୍ରହ୍ମ
ସଂହିତାୟାଂ ନାମ ତୃତୀୟ ଖାନି ।

## ଚତୁର୍ଥ ଖାନି

ବୋଲେ ଚଇତନ ଶୁଣ ସୁମନ । ନିସ୍ୱତି ଯୋଗର ବିଦିତ ଗୁଣ ॥
ବୀଜ ପତିତ ପ୍ରତିପକ୍ଷ ଅଙ୍ଗ । ଜୀବ ସାଧନେ ମନ ବୁଦ୍ଧିଅଙ୍ଗ ॥
ତୁ ଅବା ବୋଲୁଯେ ମନ ପବନ । ଦେହ ଭିତରେ ନୁହନ୍ତି ସାଧନ ॥
ଏହା ରଖିବାକୁ ଉପାୟେ ନାହିଂ । ଆବର ଗ୍ୟାଂନ ଅଛାଦିବ କାହିଂ ॥
ଆତ୍ମା ଭାଙ୍ଗି ନିଜେ ଦୁରାଧି...ରି । ଶୁଣ କହିବା ଭ୍ରାନ୍ତି ଦୂରକରି ॥
ମନପବନ ବେଢାରେ ଠୁଳ । ଦୃଷ୍ଟି ଶବଦ ଏହାଙ୍କର ମୂଳ ॥
ଦେଖନ୍ତି ଯେତେକ ଶୁଣନ୍ତି ଯାହା । ଜୀବ ବିକାରେ ଆବୋରନ୍ତି ଯାହା ॥
ଦିଶିବା ସୁଙ୍ଘିବା ଯହିଂକି ନାହିଂ । ମନପବନ ତହିଂ ଆଉ କାହିଂ ॥
ଏଣୁ ସେ ଏହାନ୍ତ ଠୁଳ ବୋଲିବା । ଏଥକୁ ଶୁଣ ଦୃଷ୍ଟାନ୍ତର ଦେବା ॥
ପବନ ଠୁଳ ନିରାକାର ବହେ । ଫୁଙ୍କି ରଖିଲେ ଚର୍ମପୁଟେ ରହେ ॥
ମନଠୁଳ ବୋଲି ଏତେକେ ଲେଖି । ଅଗମ୍ୟ ଭୂମିକି ନ ପାରେ ଦେଖି ॥
ଅଦୃଷ୍ଟି କଥାନ୍ତ ଶୁଣଇ ସିନା । ପ୍ରକାଶେ ଭେଦ ନ ଜାଣଇ ନିନା ॥
ତଥିକେଉ ଠୁଳ ମନପବନ । ଏଥୁ ନିରନ୍ତରେ ଅନ୍ତରେ ଗ୍ୟାଂନ ॥
ଆବର ମନ ଶୁଣ ପ୍ରତିବୋଧ । ସାଧନା ଯୋଗ ଅଜାମ୍ବର କନ୍ଧ ॥

ଶରୀର ପଙ୍କୁ ଗଳିତ ଅଥବା । ବୃଦ୍ଧା ପାଲଟି ଯେଣେ ହୋଏ ଯୁବା ॥
ତହିଁକି ହେତୁ କରିବଇଂ ସଜ୍ଜା । ନିସ୍ୱତିଯୋଗ ସିଦ୍ଧାମ୍ବର ବାଞ୍ଛା ॥
ଆହାର ନିଦ୍ରାମଇଥୁନ ଆଦି । କାଳ ଖଡ଼୍‌ଗ ଏ ଗ୍ୟାଂନର ବାଦି ॥
ପ୍ରଥମ ଯୋଗ ଯହୁଁ ପରକାଶ । ବାହୁଡ଼ି ଏହି ଯୋଗେ ଯାଇ ନାଶ ॥
ଯେବଣ ଯୋଗୀ ଜାଣିବୟେ ତିନି । ସଂସାର ସଙ୍ଗେ ଥିବ ଦେହଘେନି ॥
ଏଥୁ ସଂଯୋଗ କାଳବେଳ-ସତ । ଏଥି ଭିତରେ ଉତପତି ଅନ୍ତ ॥
ବେଳ ଜାଣି ଯେବେ ଦେବ ଆହାର । କାଳକୁ ଜଗିଣ ନିଦ୍ରା ଅଧାର ॥
ସଂଯୋଗେ ଯେବେ ମଇଥୁନ ଜାଗି । ତାବତ ମୃତ୍ୟୁ ନ ପାରଇ ଲଘି ॥
ସାଧନା ଯୋଗର ଏସନ ବିଧି । ଶରୀର ଭେଦ କହୁଅଛି ସନ୍ଧି ॥
ରେଚକ କୁମ୍ଭକ ପୂରକ ଅଟ । ପବନ ବିଜେ ଏହି ଚଉବାଟ ॥
ଏଥୁଂ ବାସ୍ତରୀ ସହସ୍ର ନାଡ଼ି । ଶରୀର ଯାକ ହୋଇଅଛି ଜଡ଼ି ॥
ସାତଶ ବାଷଠି ହାଡ଼ ଗଣ୍ଠି ତା । ଏହା ବାନ୍ଧିବାକୁ ଯେହି ସେ ସୂତା ॥
ଏ ଗଣ୍ଠିଭିଡ଼ି ଅନନ୍ତ ବିନ୍ଧାଣି । ଅନେକ ଖଣ୍ଡି ଯୋଡ଼ିଅଛି ଆଣି ॥
ରଯୁ ପଟାନ୍ତର ହେନ ସାକାର । ଭଗନ କଦଳୀ ମଞ୍ଜା ଆକାର ॥
ଗଣ୍ଠି ଫିଟିଲେ ଖଣ୍ଡ ଖଣ୍ଡ ବାଟ । ଗଣ୍ଠି ଦୃଢ଼ପଣେ ଶରୀର ଆଣ୍ଟ ॥
ବାତପିତ୍ତ କଫ ଦ୍ୱନ୍ଦ୍ୱ ବିଯୋଗେ । ଯେ ଗଣ୍ଠି ଛେଦନ ବ୍ୟାଧି ସଂଯୋଗେ ॥
ବୁଝସି ହୋ ମନ ଶରୀର ଗୁଣ । ଯେମନ୍ତ ଗଣ୍ଠି ନଫିଟଇ ପୁଣ ॥
ଇଅଂଳା ପିଅଂଳା ଶିଶୁମ୍ନାକୁ । ତ୍ରିବେଣି ସଙ୍ଗମ ଖଟେ ଯାହାକୁ ॥
ପ୍ରାଣ ପବନ ଯହୁଁ ପରକାଶି । ଗୃହ ଧାରଣା ବୋଲି ତାହା ଭାଷି ॥
ନିଶିଦିବସେ ବେନିଗଣ୍ଠି ଛିଡ଼େ । ଗଣ୍ଠି ଫିଟିଲେ ଗୃହଝଡ଼ି ପଡ଼େ ॥
ପୁରୁଣା ଘର ପରାଭବେ ନାଶେ । ଗୃହସ୍ଥ ଯାଇ ଆନଘରେ ପଶେ ॥
ଅଯତନ ଘର ନିକଟେ ଯାଇ । ଯତନ କଲେ ସମୟେକ ଥାଇ ॥
ଶୁଣସି ହୋ ମନ ସାଧନାଗ୍ୟାଂନ । ଏହା ଉଂ ନିକଟ କହିବା ଆନ ॥
ପଦପରଚେ ମୂର୍ଚ୍ଛା ଏକ କର । ଜୀଅନ୍ତା ତୁମ୍ଭେ ରହ ନିଜଘର ॥
ଗୃହସ୍ଥ ଥିଲେ ଗୃହ ଥାଇ କିନା । ଛନ୍ଦ ଅଛନ୍ଦ ସାନ ବଡ଼ ସିନା ॥
ଏହା ଯେ ନରଖି ଯେବଣ ଯୋଗୀ । ତାହା ଜାଣିବା ସେ କାଳର ଭୋଗୀ ॥
ଏହା ରଖିବାରେ ଯେଉଂ କାରଣ । ସେ କଥାମାନ ସାବଧାନେ ଶୁଣ ॥
ମନ୍ତ୍ର ମଉଷଧି ସାଧନା ଧର୍ମ । ଚାରିପ୍ରକାରେ ସିଦ୍ଧକରି କର୍ମ ॥
ଏଥୁଂ ବାହାରେ ଆନନାହିଂ କିଛି । ଏ ଚଉମନେ ସକଳହିଂ ଅଛି ॥

ସାଧନ ଯୋଗରେ ପ୍ରକାଶ ଯେତେ । ତାହିହୋ ମନ ବୁଝାଇବା ତୋତେ ।।
ମୂଳକମଳ ଚତୁର୍ଦ୍ଦଳ ରୂପୀ । ମନ ମରୁତ ଅନ୍ତର୍ଗତେ କ୍ଷେପୀ ।।
ରସନା ରୁନ୍ଧିବ କଣ୍ଠ କପାଟେ । ଉଜାଣି ଦେବ ଅଷ୍ଟଗିରି ବାଟେ ।।
ଷୋଳ ଡମ୍ବରୁ ମେରୁ ଦଣ୍ଡେ ଭିଡ଼ି । ଇମ୍ଥି ତା ତଳେ ବଜ୍ରଓଡ଼ି ମାଡି ।।
ଷଟ କମଳ ପଞ୍ଚାଶ ପାଖୁଡ଼ା । ବଙ୍କୁନାଳ ଜିଣି ଉର୍ଦ୍ଧ୍ୱ ତୁହୁଡ଼ା ।।
ପ୍ରାଣ ପଞ୍ଜରିର ବତିଶ ହାଡ଼ । ହଂସ ପଞ୍ଜରିକି ଏଗୁଡ଼ା ବାଡ଼ ।।
ଏଥିର ଉପରେ ଚର୍ମ ଘୋଡ଼ାଇ । ଭିନ୍ନ ଭିନ୍ନ କରି ଅଛି ଛଡ଼ାଇ ।।
ତଳେ ତଳିପା ଉପରେଣ କେଶ । ଏତେକ ଘେନି ହୋଇଅଛି ବେଶ ।।
ଆଣ୍ଠୁଗଣ୍ଠି କଟି ନାଭି ମୂଳକୁ । ଏତେ ଶରୀର ପାତାଳ ତଳକୁ ।।
ଜଠର ଠାରୁ କଟୀତଟ ଯାଏ । ମଞ୍ଚଭୁବନ ଯେ ମଧମ କାଯେ ।।
କବନ୍ଧଠାରୁ ବ୍ରହ୍ମରନ୍ଧ୍ର ଯାଏ । ଏହି ଶରୀର ବଇକୁଣ୍ଠ ହୋଯେ ।।
ଏଥୁଂ ବାହାରେ ଯେ ପରମ ଶୂନ୍ୟ । ସେ ପୁଣି ଯେଥେ ହୋଇଅଛି ଲୀନ ।।
ମହାଶୂନ୍ୟ ଭେଦି ପବନ ବହେ । ପବନ ଆଶ୍ରିତେ ବହନି ହୋଯେ ।।
ବହନି ବହନ୍ତେ ଜଳ ପ୍ରକାଶ । ଜଳ ଉପରେ ବ୍ରହ୍ମାଣ୍ଡ ଆକାଶ ।।
ବ୍ରହ୍ମାଣ୍ଡ ଉପରେ ସର୍ବରଚନା । ଅଶେଷ ଜନ୍ତୁ ଚରାଚର ନାନା ।।
ପଞ୍ଚମହାଭୂତେ ଶରୀର ଗୋଟି । ଜଣକେ ପାଞ୍ଚ ଯେ ପଚିଶ ଗୋଟି ।।
ଉର୍ମ ଧୂର୍ମ ଆଦି ଯେ ଜ୍ୟୋତିକଳା । ବିନ୍ଦୁ ଆଦିକରି ଯେ ପଞ୍ଚକଳା ।।
ପାଞ୍ଚକଳାକୁ ଯେ ଦଶ ଦୁଆର । ସବୁବାଟେ ମନହୁଏ ବାହାର ।।
ଯେବଣ ବାଟେ ଯେଉଂ ଯୋଗସିଦ୍ଧି । ଯେକ ନଜାଣଇ ଆରେକ ସନ୍ଧି ।।
ଯେତେ ଭୋଗ ସବୁ ଯେହି ଦେହକୁ । ବିକାର କରି ଅଛି ଯେ ଯାହାକୁ ।।
ଏହି ପବନ ବହୁଅଛି ମୁଖେ । ଗନ୍ଧ ଆମୋଦ ନଜାଣଇ କିକେ ।।
ନାସିକା ବାଟେ ପିବନ୍ତେଣ ପାଣି । ତୃଷା ନଖଣ୍ଡଇ ସ୍ୱାଦ ନଜାଣି ।।
ଦେହରେ ଗୁଡ଼ ଯେ ଲେପି ହୋଇବା । ଜିଭେ ନ ଦେଲେ କି ସ୍ୱାଦ ପାଇବା ।।
ଏହି ଦେହକୁ ସର୍ବହୋଇ ଅଛି । ବିଷୟ ସୁଖେ ନ ଜାଣଇ କିଛି ।।
ହେନ ବିଚାର ବୋଧଜନେ ଦେହି । ଗତ ଗମ୍ୟପଥ ନଜାଣେ କେହି ।।
ସମାଗମ ପଥ ଛାଡ଼ି ଯେ ଯାଇ । ବଣା ହୋଇଲେ ଗରୁବ୍ୟଥା ପାଇ ।।
ଶବଦବ୍ରହ୍ମ ସଂହିତାର ବାଣୀ । ସ୍ୱରୂପ କରି ଭେଟାଇଲି ଆଣି ।।
ବିବେକଗୁଣେ ଜ୍ୟୋତି ରୂପେ ଭେଟି । ଜ୍ୟୋତିରୁ ଭିନ୍ନେ ଗ୍ୟାଂନବୋଲି ଯେଟି ।।
ଯଦି ପ୍ରଭବ ନିର୍ବିବେକ ବଳେ । କର୍ମ ତତ୍ତ୍ୱ ଯେ ରହଇ ବିଫଳେ ।।

ସମଦମ ଘେନି ରମିବ ରସେ । ରମି ରହିବ ହିମକର ପାଶେ ॥
ଚାହିଁଲେ ବୁଝିଲେ ଯାହା ନ ଦେଖି । ଅଛି ନାହିଁ ବୋଲି ତାହା ନ ଦେଖି ॥
ମଚ ମହାଭୂତ ତହୁଁ ସେ ଝରେ । ସେ ପଞ୍ଚଭୂତ ପଞ୍ଚ ପରକାରେ ॥
ସେ ଝର ଯେବେ ଆଚରି ଗୁହାଇ । ପୂର୍ବର ନଦୀ ପଶ୍ଚିମେ ବୁହାଇ ॥
ଝର ରହନ୍ତେ ଉଚ୍ଛୁଳଇ ଜଳ । ଜଳେ ଲହରୀ ଅନ୍ତରୀକ୍ଷେ ମାଳ ॥
ଯଦି ସରୋବର ପୂରିବ କର୍ମେ । ପରମ ହଂସ ମହାସୁଖେ ଭ୍ରମେ ॥
ଗ୍ୟାଂନ ଅମୃତ ଭୋଜନ ତାହାକୁ । ଯୋଗୀ ଜନମାନେ ଚିନ୍ତେ ଯାହାକୁ ॥
ସହସ ଦଳ କମଳ ଉପରେ । ଭ୍ରସଳ ଜଡ଼ି ଚୁମ୍ବେ ମତ୍ତଭରେ ॥
ତହିଁ ଉପରେ ନିରାକୁଳ ଭୂମି । ଅଲେଖ ବିଜେ ନିରଞ୍ଜନ ସ୍ୱାମୀ ॥
ଯେବଣ ଜ୍ୟୋତି ଅନ୍ତରୀକ୍ଷ ମଧ୍ୟେ । ଶିଶୁବେଦ ପୂରି ଗ୍ୟାଂନ ଉଦୟେ ॥
ମନ ପବନ ନାହିଁ ଯେଉଁ ସ୍ଥାନେ । ଅଲେଖ ଭୂମି ଅତିଅନ୍ତ ଗ୍ୟାଂନେ ॥
ଏହି ସଂହିତା ବ୍ରହ୍ମମଧ୍ୟେ ବାଚା । ଏ ସେ ଅନୁଭବ ବିବେକ ସଚା ॥
ଅମର ବିଦ୍ୟା ଉପଦେଶ ବର୍ଗ । ଜୀବନ ମୁକତ ସଙ୍ଗ ଅସଙ୍ଗ ॥
ଅନନ୍ତ ସିଦ୍ଧେ ଆଚରିଲେ ଯାହା । ଶାସ୍ତ୍ରବିଧି ଘେନି କହିଲୁ ତାହା ॥
ଶାସ୍ତ୍ର ବିବର୍ଜିତ ଯେବଣ ପ୍ରାଣୀ । ପାମର ପଶୁତୁଲେ ତାହା ଗଣି ॥
କେବଳ ମନୁଷ୍ୟ ହୋଇଲା ଅବା । ନୋହିଲେ ଇତର ଜନବୋଲିବା ॥
ସଙ୍ଗ ବିବର୍ଜିତ ସେ ମହାପାପୀ । ଜୀବନ୍ତେ ନରକ ଗତି ଅଦ୍ୟାପି ॥
ପଟା ଆରମ୍ଭେ ଦମ୍ଭପଣେ ଚୋଟ । ବାହାରେ କାଛେଣି ଭିତରେ ଭୋଟ ॥
ମୂଢ଼ ପଣେ ଯେତେ କରେ ସିଦ୍ଧାନ୍ତ । ଉଦର ପୋଷନ୍ତେ ନଟବୃତ୍ତାନ୍ତ ॥
ସୁଜନମାନେ ସମ୍ପାଦିଲେ ଯାହା । ଗମି ନ ପାରି ନସ୍ଥାପିଲେ ତାହା ॥
ଆପଣେ ନଜାଣି ପରେ ନପୁଚ୍ଛେ । ମିଥ୍ୟା ଆରମ୍ଭେ ପଦଧନ ଗଛେ ॥
ଯିସ ତିସ ମିଛ କଥାଯେ ଜାଣି । ବଡ଼ିମା ପଣେ ହେଉ ଥାଇ ଟାଣି ॥
ଦେବତୀର୍ଥ ଗୁରୁ କାହିଁ ନଗଣେ । ଆପଣା ଗୁଣ ଆପଣେ ବଖାଣେ ॥
ଜନ ସମ୍ମୁଖେ ଝିଙ୍ଗାସି ଯାହାକୁ । ଦୂଷିତ ଲୋକେ ଲେଖିବା ତାହାକୁ ॥
ବରାବିଧବ ଅକାରଣେ ଯେହ୍ନେ । ଇହ ପରଲୋକେ ସେ ଲୋକ ତେହ୍ନେ ॥
ବୋଲେ ଚଇତନ ସୁମନ ଶୁଣ । ଅଦୃଷ୍ଟି ଅଶ୍ରୁତି ଜ୍ଞାନ ଗହନ ॥
ଯେତେ କହିବା ସେ ଶବଦ ସିନା । ନିଶବଦ ଭେଦେ ଜ୍ଞାନ ଭାବନା ॥
କେ ତାହା କହିବ ଶୁଣିବ କେସେ । ଦ୍ୱିତୀୟ ନାହିଁ ଯେକ ସବୁ ସେସେ ॥
କେବଳ ଶିବେ ଜୀବ ଭେଦ ଯହୁଁ । ବିଶ୍ୱ ଭାରାଭାର ପ୍ରକାଶ ତହୁଁ ॥

ତୁହି ଅବା ବୋଲୁ ଗ୍ୟାଂନ ପ୍ରକାଶ । ଅଗମ୍ୟ ଜ୍ୟୋତି ଅନ୍ତରେ ଉଦାସ ॥
ଆଦିଅନ୍ତ ମଧ ନାହିଂ ଯହିଂକି । ସେ ଅବା ସଂସାରେ ହେବ କାହିଂକି ॥
ଅରୂପ ହୋଇ ରୂପ କିମ୍ପା ଧରଇ । ରୂପ ଧଇଲେ ଅବଶ୍ୟ ମରଇ ॥
ଏତେ ପ୍ରମାଣ ତ ମିଛକୁ ଗଲା । ଯେସେ ଅଜ୍ରାମ୍ବର କେମନ୍ତେ ମଲା ॥
ଏଥକୁ ଭ୍ରାନ୍ତି ନକରସି କିଛି । ଶୁଣ ସନ୍ଦେଶ ଯେଣେ ଛିଡ଼ିଅଛି ॥
ଯହୁଂ ହୁଅଇ ସବୁଙ୍କର ଅଙ୍ଗ । ସେ ପୁଣି ସବୁହୁଂ ଥାଇ ବିସଙ୍ଗ ॥
ଗଗନ ଯେହ୍ନେ ଜଳଘଟ ମତ । ତେସନ ମତ ସେହୁ ସଙ୍ଗବନ୍ତ ॥
ଯହୁଂ ସେ ପାଣିରେ ସବୁ ବିକାଶେ । ଚନ୍ଦ୍ରମା ଜିଣି ତାରାଗଣ ଦିଶେ ॥
ସେ ପାଣି ଭିତରେ ଯେତକ ଥାଇ । ପାଣି ଉଠିଲେ କାହିଂକି ଯାଇ ॥
ଉଦକେ ଉଦକେ ଯେସନେ ପାଣି । ଗ୍ୟାଂନ ସଂଚାର ସେହିମତି ଜାଣି ॥
ଏଥକୁ ଯେବେ ଦୃଷ୍ଟାନ୍ତର ଦେବା । କ୍ଷେତ୍ର ବିହୁନେ କି କ୍ଷେତ୍ରକ ଶୋଭା ॥
ଯଦ୍ୟପି ଗ୍ୟାଂନଯେ ଦ୍ବତୀୟ ଯେକା । ସଂସାର ନାସ୍ତିବେ ସେ କାହିଂ ଲେଖା ॥
ତପନ ତେଜ ନୋହିଲେ ପ୍ରକାଶ । ନୟନ ଥାଇ ସେ କରିବ କିସ ॥
ବିନା ସଂଯୋଗେ କି ରହେ ନହନି । ଗ୍ୟାଂନ ବିଦ୍ୟାମାନ ସଂସାରେ ଘେନି ॥
ଅକ୍ଷର ବିହୁନେ ପୁସ୍ତକ ଯେହ୍ନେ । ସଂସାର ବିହୁନେ ଗ୍ୟାନହିଂ ତେହ୍ନେ ॥
ଅନେକ ମତେ ଅନେକ ପ୍ରକାଶ । ସେ ପୁଣି ସବୁହୁଂ ଥାଇ ଉଦାସ ॥
ତାହାକୁ ସେହି ଚରଚିବା ପାଇଂ । ସବୁ ହୋଇଅଛି ସବୁରି ଠହିଂ ॥
କେବଳ ଯହୁଂ ଆଣିବା ଏ ଅଛି । ତେଣୁ କରି ସେହୁ ସଂସାରେ ଗଛି ॥
ସେ ଯେହ୍ନେ ଆପଣେ ବସ୍ତୁ ନୋହିବ । କେ ତାହା ପ୍ରକାଶ କାହୁଂ ଜାଣିବ ॥
ଯେବଣ ପ୍ରାଣୀର ଲୋଚନ ନାହିଂ । ସେ କିସ କରିବ ଦର୍ପଣେ ଚାହିଂ ॥
ଶୁଣିସି ହୋ ମନ ପଦ ଉଚିତ । ଶବଦ ଦୂର ପରରେ ସେ ଚିତ୍ତ ॥
ଆମ୍ଭର ଘଟ ପରଚେ ନିସ୍ମୃତି । ଆତ୍ମା ଉପଦେଶେ ଯେ ଚାରିପ୍ରତି ॥
ବିଚାରି ହେଳା ନ କରିବ ପୁଣ । ସାଧନାବିଧି ଗୁରୁମୁଖେ ଶୁଣ ॥
ବିନା ସାଧନେ ସିଦ୍ଧପଣ ନାହିଂ । ବିନା ଉଦିଯୋଗେ କର୍ମ ହିଂ କାହିଂ ॥
ଏସନପଥେ ଅନୁଭବ କଲେ । ଦେହ ଘେନିଥିବୁ ସଂସାର ତୁଲେ ॥
ଯହୁଂ ଏ ମନର ଅନନ୍ତ ମାୟା । ତେଣୁ ସେ ନାଶ କରୁଅଛି କାୟା ॥
ମାନବ ଜନ୍ମେ କହିଲଇଂ ତାହା । ବିବେକ ଜନମାନେ ବୁଝ ଯେହା ॥
ଏତେମାନ ହେତୁ ମୋହର କାହିଂ । ଯେତେ କହିଲି ପୂର୍ବପକ୍ଷ ଯହିଂ ॥

ସେ ଯେ ବୋଧଜନ ବିବେକବନ୍ତ । ସେହି ସେ ଜାଣଇ ତଥି ତଦନ୍ତ ॥
ପରହିତ ଉପଦେଶ ବାଟ । ପରମ ଗୁମ୍ଫା ଫିଟିବ କବାଟ ॥
ସୁଜନମାନେ କରହୋ ସେନେହା । ପଦେ ପଦେ କରି ବିଚାର ଯେହା ॥
ଲେଖକର ପାଠ-ଶୁଣ ଶ୍ରବଣେ । ଅପାର କାରଣ ପାଇବ ଯେଣେ ॥
ଯେବଣ ଗ୍ୟାଂନ ନିରଞ୍ଜନ ମଧ୍ୟେ । ଅଛିଦ୍ର ହୋଇ ଅଛି ସର୍ବଠାୟେ ॥
ଯଦ୍ୟପି ଜାଣିବ ତହିଁର ବିଧି । ତାହାରି ମତେ ତାହା ତହିଁ ସାଧି ॥
ମନ ମହାପ୍ରଭୁ ଯେସନେ ଭାବେ । ତେସନଗତି ସେହି ଦେହେ ପାବେ ॥
ଜନ୍ମାନ୍ତରେ ହେତୁ ବାସନାବଳ । କର୍ମ ବୀଜ ଉଦି ଯୋଗର ଫଳ ॥
ଅବିଧି ବଚନ କହିଲି ଯିସ । ଏତ ବର୍ତ୍ତମାନ ଭୂତ ଭବିଷ୍ୟ ॥
ଯହୁ ସଦଗୁରୁ କଲେ କରୁଣା । ତେଣୁ କରି ମୋତେ ପଦ ଫୁରୁଣା ॥
ବଚନ ଗ୍ୟାଂନ ଅନୁଭବେ ଜାଣି । ଲୋଚନେ ଗ୍ୟାଂନ ଦେଖାଇଲେ ଆଣି ॥
ନିର୍ମଳ ରୂପ ନୀଳଗିରି ବାସ । ଯେବଣ ଗ୍ୟାଂନ ଗୁଣ ପରକାଶ ॥
ଲବଣ ଜଳଧି ଉତ୍ତର ତଟେ । ରତ୍ନ ସିଂହାସନ ବଟ ନିକଟେ ॥
ଚିତ୍ରକଳେବର ଚତୁର୍ଦ୍ଧା ଅଙ୍ଗ । ମନବୁଦ୍ଧି ଅହଂକାରେ ନିସଙ୍ଗ ॥
ଅନାଦି ଅଚଳ ଜ୍ୟୋତି ଯାହାର । ସ୍ଥୁଳହିଂ ନୁହଇ ଶୂନ୍ୟ ବାହାର ॥
ଦେବାଧିଦେବ ଦେବଙ୍କର ରାଜା । ପାଦେ ବେଦରେ ଶଙ୍କର ପୂଜା ॥
ବିକାର ନାହିଂ ଅବିକାର ବ୍ରହ୍ମ । ଯହୁଂ ଉତପତି ସକଳ କର୍ମ ॥
ଚତୁର୍ଦ୍ଧା ମୂରତି ତହୁଂ ବିଲୋହା । ଶ୍ରୁତି ସ୍ମୃତି ବିଲୋପନ୍ତି ଯାହା ॥
ଅଶେଷ ମହିଂମା କରୁଣାସିନ୍ଧୁ । ଆରତ ଜନମାନଙ୍କର ବନ୍ଧୁ ॥
ଆବର ଗ୍ୟାଂନ ଅନୁଭବେ ଲେଖ । ଜଗନ୍ନାଥ ଗ୍ୟାଂନ ନୟନେ ଦେଖ ॥
ଏତେ ନିକଟେ ମହାସୁଖ ଛାଡ଼ି । କିମ୍ପା ମୁଢ଼େ ମର ଅମଡ଼ାମାଡ଼ି ॥
ଋଦ୍ଧି ସିଦ୍ଧି ବୁଦ୍ଧି ଯାହାର ଦତ୍ତ । ଏ ସେ ଜଗବନ୍ଧୁ ପରମ ତତ୍ତ୍ୱ ॥
ଏହା ମହିମା କେ କହି ପାରଇ । ଦ୍ରୁବେ ବାହିଲେ କି ସମୁଦ୍ର ସରଇ ॥
ଦିଗୁଣ ସମୁଦ୍ର ଚତୁର ଯୁଗ । ବ୍ରହ୍ମାଙ୍କୁ ଯେକା ଦିବାରାତ୍ରେ ଭୋଗ ॥
ବ୍ରହ୍ମ ଦିବସେ କେ ମନୁ ମରଇ । ବ୍ରହ୍ମାଣ୍ଡ ଯାକ ମହାଜଳ ପୂରଇ ॥
ସଚରାଚର ସବୁ ଯାଇ ନାଶ । କେବଳ ଗ୍ୟାଂନ ଜ୍ୟୋତି ପରକାଶ ॥
ଚତୁର୍ଦ୍ଦଶ ଲୋକେ ହୋନ୍ତି ନିପାତ । ଏହି ଜଗନ୍ନାଥ ସେହି ସଂଜାତ ॥
କେହୁଣି ମତେ ଅନ୍ତ ଯହୁଂ ନୋହେ । ଅନନ୍ତ ନାମ ତେଣୁ କରି ବହେ ॥

କେବଳ କିଞ୍ଚିତ ଭଗତି ଚିତ୍ତେ । ବିବେକ ଗ୍ୟାଂନ ବିଚିଲଇଂ ଗୀତେ ।
ଶ୍ରୀଗୁରୁ ଭଣ୍ଡାର ଗୁପତ ସାର । ଏଥିର ବିଧି ଅପାରୁ ଅପାର ॥
ଶୁଣି ସୁଗ୍ୟାଂଜନେ ଗୁଣବନ୍ତେ ଦୃଷ୍ଟି । ଯେ ଯେତେ ଭାଜନ ଯେତେ ପ୍ରତିଷ୍ଠ ।
ମଣିବା ଦୁର୍ଲ୍ଲଭ ଶୁଣିବା ସୁଖ । ଦୁଃଖୀ ସେ ଜାଣଇ ଦୁଃଖୀର ଦୁଃଖ ।
ଅଚ୍ୟୁତଦାସ ସିଦ୍ଧ ଜନେ ସଙ୍ଗ । ଅଖିଳ ଜଗତ ଅଖିଳ ଅଙ୍ଗ ॥
ଏଥୁଂ ତରିବାକୁ ଯାହାର ଇଚ୍ଛା । ଶାନ୍ତିଗୁଣ ଘେନି ଶ୍ରୀଗୁରୁ ବାଞ୍ଛା ॥

ଇତିଶ୍ରୀମନ ଚୈତନ୍ୟ ସଂବାଦେ ଶବଦବ୍ରହ୍ମ
ସଂହିତାୟାଂ ନାମ ଚତୁର୍ଥଖାନି ।



 

# ଶୂନ୍ୟ ସଂହିତା

## ଶ୍ରୀ ଶୂନ୍ୟ ସଂହିତା ଲେଖ୍ୟ

ଓଂକାର ସର୍ବଶାସ୍ତ୍ରଞ୍ଚ ଧର୍ମ ଭାଗବତଂ ତଥା ।
ଗୀତାତତ୍ତ୍ୱ ପ୍ରକାଶିତଂ ପ୍ରତତି ପରେ ପରମୋରସ ।

## ପ୍ରଥମ ଅଧ୍ୟାୟ

ନିଶି ଅବକାଶେ ବନ୍ଦାପନା ହୋନ୍ତି ଦେବାଧିଦେବଙ୍କ ରାଜା ।
ପରିଛା ବେତ ଧରିଣ ଆଗେ ଉଭା ବିଜେ କଲେ ମହାରାଜା ।
ଦେଉଳ ସୋଧ ଗହଣ ଭାଜିଗଲା ପ୍ରତାପ ଦେବ ରାଜନ ।
ଦକ୍ଷିଣ ଦୁଆରେ ଯାଇ ବିଜେକଲେ କଳପବଟ ମୂଳେଣ ।
ବଷ୍ଣବ ମଣ୍ଡଳୀ ଖୋଳ କରତାଳ ବଜାଇ ବୋଲନ୍ତି ହରି ।
ଚୈତନ୍ୟ ଠାକୁର ମଧ୍ୟେ ନୃତ୍ୟକାର ଦଣ୍ଡ କମଣ୍ଡଳ ଧାରୀ ।
ରୂପ ସନାତନ ଆଦି ଅଭିରାମ ଶ୍ରୀଜୀବ ଗୋପାଳ ଭଟ୍ଟ ।
କୀର୍ତ୍ତନିଆ ବେଶ ହୋଇ ଶ୍ରୀନିବାସ ହରିନାମ କରି ନାଟ ।
ପ୍ରତାପ ରାଜନ ଆନନ୍ଦିତ ମନ ପ୍ରଭୁଙ୍କ ଦ୍ରଶନ ସାରି ।
ବେଢ଼ା ପ୍ରତିକ୍ଷଣ କରିଣ ରାଜନ ବଟମୂଳେ ବିଜେ କରି ।
ନୃସିଂଘ ଦ୍ରଶନ କରିଣ ରାଜନ ନବରକୁ ବିଜେକଲେ ।
ଧୂପ ସାରି ତୋଟା ଗୋପୀନାଥଙ୍କର ଠାବକୁ ଚୈତନ୍ୟ ଗଲେ ।
ଅନନ୍ତ ଅଚ୍ୟୁତ ଘେନି ଯଶୋବନ୍ତ ବଳରାମ ଜଗନ୍ନାଥ ।
ଏ ପାଞ୍ଚ ସଖାହିଂ ନୃତ୍ୟକାରୀ ହେଲେ ଗୌରାଙ୍ଗ ଚନ୍ଦ୍ର ସଙ୍ଗତ ।
ଅଚ୍ୟୁତ ଦାସ ଯେ ନାମ ପରକାଶ ଶ୍ରୀହରି କରୁଣା ଯେଣୁଂ ।
ମଞ୍ଚର ଲୀଳା ବଖାଣ କରିବାକୁ ଜନମ ଯେହି ପ୍ରମାଣୁଂ ।
ରାମଚନ୍ଦ୍ର ଦାସ ନିର୍ମଳ ପ୍ରକାଶ ପଚାରେ ଭଗତି ଭାବେ ।
ତୁମ୍ଭ ଜନ୍ମକଥା ପୂର୍ବର ବେବସ୍ଥା ଆଗ୍ୟାଂ ହେବ ପ୍ରଭୁ ଯେବେ ।

ଯେ ଯୋଗ ଭୋଗ ଯେ କାହିଂ ସମ୍ଭାଇବ କେ କେତେ ଦିନର ଅନ୍ତ ।
ନାମ ଧାମ ତିଥି ସବୁ ବୁଝାଇବ ସୁଦୟା କରିଣ ଚିତ୍ତ ।
ଶିଷ୍ୟର ଭଗତି ଦେଖି ସଦଗତି ବୋଲନ୍ତି ଶ୍ରୀଗୁରୁ ଚିତ୍ତେ ।
ଯାହା ପଚାରିଲୁଂ ସର୍ବ ବୁଝାଇବା ସୁଦୟା କରିଣ ତୋତେ ।
ତୋ ଆଗେ କହିବା ହେତୁ ଫିଟାଇବା ତୁ ଆମ୍ଭ ଭଗତ ଯେଣୁ ।
ପୂରୁବ ପ୍ରାମାଣି ଆମ୍ଭ ଜନ୍ମବାଣୀ ଆଗତ କହିବା ଯେଣୁ ।
ଶୂନ୍ୟରୁ ଖସିଲା ପବନେ ମିଶିଲା ନିରାକାରେ ହେଲା ଠୂଳ ।
ଠୂଳରୁ ଶୂନ୍ୟ ଶୂନ୍ୟରୁ ପରମ ଅଣାକାର ହେଲା ମୂଳ ।
ଯେମନ୍ତେ ଯେ କାୟା ଗୋଟି ପ୍ରକାଶିଲା ନାମ ସେ ହୋଇଲା ଜାତ ।
ଠୂଳ ଭାଜିଗଲେ ଅଠୁଳେ ମିଶିବ ରହିଯିବ ଅନହତ ।
ଯେମନ୍ତ ଅରୂପ ପ୍ରଭୁ ଯେ ଅଟଇଂ ନାମ ଅନାଦି ଅଚ୍ୟୁତ ।
ମୋହୋର ନାମ ଗୋଟି ଯେ ଅଗମ୍ୟଂ ହେଲା ଦୀନ ପାମର ଅଚ୍ୟୁତ ।
ପୂରୁବେ ଶ୍ରୀହରି ଲୀଳାଯେ ଆଚରି ଗୋପରେ ଜନମ ଆସି ।
ଗୋପୀନାଥ ନାମ ବୋଲାବନ୍ତି ତହିଂ ନାମ ପୁଣି ହୃଷିକେଶୀ ।
ଅଷ୍ଟମଲ୍ଲଙ୍କୁ ନାଶକରି ହରି ଗୋପେ ଲୀଳା କଲେ ଯେତେ ।
କୁରୁବଳ ଧ୍ୱଂସୀ ପାଣ୍ଡବେ ଆଶ୍ୱାସି ମେଦିନୀ ମଣ୍ଡଳ ଯେତେ ।
ବେତ ଧରି ଆଗେ ଖୁଣ୍ଟିଣ ହୋଇଲେ ଭଗତ ଭାବକୁ ହରି ।
କୋଟି ବସ୍ତ୍ର ଦେଇ ଦ୍ରୌପଦୀ ତାରିଲେ ଲଜ୍ଜାଭାର ଦୂରକରି ।
ଗୋପ ବୃନ୍ଦାବନେ ନାନା ଖେଡ଼ କଲେ ଗୋପାଳ ପୋଅଙ୍କ ମେଳେ ।
ସୁଦାମ ନାମଟି ମୋହୋର ଅଟଇଂ ଜନମ ଗୋପାଳ କୁଳେ ।
ଅଗମ୍ୟଂ ଦିଲେ ମୋତେ ଶ୍ରୀରାଧାମୋହନ କଳିରେ ଜନମ ହୋଅ ।
ବ୍ରଜକୁଳ ତାରି ଆପଣେ ଉଧ୍ଧରିଂ ପୂର୍ବ ହେତୁମାନ ପାଅ ।
ଶ୍ରୀକୃଷ୍ଣ ଜନମ ହୋଇଲେ ଭଗତ ଜନମ ହୋଅନ୍ତି ଆସି ।
ନବଦ୍ୱୀପରେ ସେ ଜନମ ହୋଇଲେ କୋଟି ବଇକୁଣ୍ଠବାସୀ ।
ଯଶୋଦାଙ୍କ ସୁତ ଶଚୀ ଗର୍ଭୁଂ ଜାତ ଦଣ୍ଡ କମଣ୍ଡଳ ଧାରୀ ।
ଗୋପାଳ ତନଇଂ ଜନମ ହୋଇଲେ ଯେଞ୍ଚା ଅନରୂପ କରି ।
ଯେ ଜନ୍ମ ବୃତାନ୍ତ କହୁଂ ତୋ ଅଗ୍ରତ ସିନ୍ଦୁରାନନ୍ଦ ମୋ ନାମ ।
ନୀଳାଞ୍ଚଳେଂ ନୀଳା ଦଖି ମତି ଭୋଳା ଭୋଗଗଲା କେତେ ଦିନ ।
କ୍ଷେତ୍ରବରଠାରେ ସେ ଅଙ୍ଗ ହଜିଲା ପଶିଲି ଅଚ୍ୟୁତ ଅଙ୍ଗ ।

ପୂର୍ବ ଅଗ୍ୟାଂ ମୋତେ ଯାହା ଅବା ଦିଲେ ଶ୍ରୀମୁଖେ ପ୍ରଭୁ ଶ୍ରୀରଙ୍ଗ ।
ମାଗିଥିଲା ବର ଯାହା ସେ ସୁନନ୍ଦ ପ୍ରିୟବର ଅଗ୍ୟାଂକାରୀ ।
ଦୁଆପର ଅନ୍ତେଂ କଳି ପ୍ରବିଶନ୍ତେ ପୁତ୍ର ଲଭ ଯୋଗ୍ୟ ହରି ।
ଆପଣେ ଶ୍ରୀହରି ଆଗ୍ୟାଂ ଦିଲେ କରି ସୁନନ୍ଦ ମୁଖକୁ ଚାହିଂ ।
ବାଂଛିବାର ବର ଲଭ ତୁ ତୁରିତ କଳିଯୁଗରେଣ ଯାଇ ।
ଶୂଦ୍ର କୁଳେ ଜାତ ହୋଇଣ ତୁରିତ ବାଂଛିଲା ଫଳକୁ ପାଅ ।
ଆମ୍ଭ ଅଗ୍ୟାଂ ଘେନି ନିଜ କଳାରେଣ ସୁଦାମ ଜନମ ହୋଅ ।
ଦୀନବନ୍ଧୁଂ ନାମ ଖୁଣ୍ଟିଆ ଶୂଦ୍ରିମା କୁଳରେ ହୋଇବ ଜାତ ।
ବାଂଛିଲାର ଫଳ ନୋହିବ ବିଫଳ ପ୍ରତି ଅଂଶେ ଲଭ ପୁତ୍ର ।
ଯେମନ୍ତ ନିଅତ ପୂର୍ବର ବୃତ୍ତାନ୍ତ ଆଗ୍ୟାଂ ଦେଲେ ଭଗବାନ ।
ଜନମ ଲଭିଣ କେତେକ ଦିନେଣ ନୋହିଲା ସୁତା ନନ୍ଦନ ।
ଏମନ୍ତେ କେତେ ଦିନେ ସେ ଆଗ୍ୟାଂକଲେ କରୁଣାନିଧାନ ରାଶି ।
ଆମ୍ଭ ଅଂଶେ ଭକ୍ତ ଲଭ ତୁ ହୋ ସୁତ ସପନେ କହିଲେ ଆସି ।
ଲଭ ତୁ ନାଳେକ କିଛୁଂ ସେ କାଳେକ ମନର କଳ୍ପଣା ପାଅ ।
କାଲି ପ୍ରଭାତରେ ପହଡ଼ ଧୂପରେ ଗରୁଡ଼ ପଛକୁ ଚାହଂ ।
ଦେଖିବୁଂ ଯେ ସୁତ ତୋତେ ସେ ପ୍ରାପତ ଯେମନ୍ତେ ଆଗ୍ୟାଂ ହୋଇଲା ।
ସପନ ଚେତି ସେହି ଅଙ୍ଗ ଘେନିଣ ଖୁଣ୍ଟିଆ ବେଗେ ଧାଇଂଲା ।
ଗରୁଡ଼ ଆଗରେ ପ୍ରଭାତ ଧୂପରେ ଲୋକ ଗହଳ ହୋଇଛି ।
ଦିବ୍ୟ କଳେବର ଏକଇଂ କୁମର ପ୍ରଭୁଙ୍କ ଅଙ୍ଗେ ଖେଳୁଛି ।
ଦେଖନ୍ତେ ବାଳେକ ହୋଇଗଲା ଗୋପ୍ୟ ଆଗ୍ୟାଂ ହୋଇଥିଲା ଯାହା ।
ଶ୍ରୀକୃଷ୍ଣ ନିର୍ଭାଣ ପଦବୀ କେ ଅବା ମେଣ୍ଟିଣ ପାରିବ ତାହା ।
କାଳ ବେଳରେଣ ଗର୍ଭେ ଉପଗତ କଲେ ମୋତେ ନେଇ ହରି ।
ତ୍ରିପୁର ଗ୍ରାମ ମଧରେ ନିବାସ ଶୂଦ୍ର କୁଳରେ ପ୍ରଚରି ।
ଖୁଣ୍ଟିଆ ଦୀନବନ୍ଧୁଂ ବୋଲି ନାମ ତା ପଦ୍ମାବତୀ ବୋଲି ନାରୀ ।
ପ୍ରଭୁ ଆଗ୍ୟାଂ ଘେନି ପ୍ରବେଶ ହୋଇଲି ଗର୍ଭେଣ ମୁହିଂ ତାହାରି ।
ପୁରାତନ ବେଶ ବୟେସ ଅତ୍ୟନ୍ତ ପଦ୍ମା ବୋଲିଣ ତା ନାମ ।
ଗର୍ଭେ ଉପଗତ ବିନ୍ଦୁରେ ସଂଯୁକ୍ତ କଲେ ନେଇ ଭଗବାନ ।
ଦଶ ମାସ ଦଶ ଦିବସ ମଧରେ ଶୁକ୍ଳ ମାଘ ଯେକାଦଶୀ ।
ଜନମ ଲଭନ୍ତେ ପିତା ମୋ ଦେଖନ୍ତେ ଅପୁତ୍ରିକ ଦୋଷ ଧ୍ୱଂସୀ ।

ଜାତ କର୍ମମାନ ପିତା ମାତା କଲେ ଷଠୀ ଉଠିଆରୀ ତୁଲେ ।
ଅଗଣା ଅପୋଛା କରିଣ ମୋ ନାମ ଅନେକ ପ୍ରକାରେ ଦେଲେ ।
କେ ବୋଲେ ଅନାମ ଅଗଣି ତ ନାମ କେ ବୋଲେ ଅନନ୍ତ ହରି ।
ପିତାମାତା ଶେଷେ ଡାକିଲେକ ମୋତେ ଅଚ୍ୟୁତ ନାମଟି ଧରି ।
ପାଞ୍ଚ ବରଷକେ ବିଦ୍ୟାକର୍ମ କରିଣ ବିଦ୍ୟାପଠନକୁ ମୋତେ ।
ତର୍ଜନା କରିଣ ବିଦ୍ୟା ପଢ଼ିବାକୁ ପିତା ବୋଲୁଥାଇଂ କେତେ ।
ବିଦ୍ୟାଇଂ ପଠନ କିଛୁ ଦିନେ ପୁଣ ଖେଡ଼ରେ ମନ ଜଡ଼ିଲା ।
କର୍ମର ବାସନା ପୂର୍ବର ଲେଖନ ସଙ୍ଗେଣ ମନ ଉଡ଼ିଲା ।
ଉଦାସ ମତ ଯେ ଦେଖି ମୋର ମାତ ନାନା ଆଶ୍ୱାସନା କରି ।
ଗୃହର ବେଭାର କରେ ନିରନ୍ତର ମୋଠାରେ ସିନିହ ଭରି ।
ଥୋକେ ଗ୍ୟାଂତି ଲୋକ ବାନ୍ଧେବ ସହିତେ ବୋଲନ୍ତି କଟୁ ବାକ୍ୟକୁ ।
ପୂର୍ବର ଚରିତ କର୍ମର ନିଅତ ଉଦାସ ହେଲା ମନକୁ ।
ସୁଗତି ଦିଶିଲା ବାସନା ବାସିଲା ଶ୍ରୀକୃଷ୍ଣେ ମନ ନିବେଶି ।
ଚୈତନ୍ୟ ଗୋସାଇଂ ବିଜେ କରିଛନ୍ତି ବଡ଼ଦାଣ୍ଡ ପରେ ଆସି ।
ପିତାଙ୍କ ସଙ୍ଗତେ ଦ୍ରଶନ କଲଇଂ ଚରଣେ ଚରଣେ ପଡ଼ିଲି ଯାଇଂ ।
ବାସନା ହେତୁ ମୋ ଅଙ୍ଗେ ଯେତେ ଗ୍ୟାଂନ ପ୍ରକାଶିଲା ଆସି ତହିଂ ।
ନାମକରଣ କରିବାକୁ ମୋତେ ଯେ ପ୍ରଭୁଙ୍କ ଆଗ୍ୟାଂ ହୋଇଲା ।
ଶ୍ରୀଚରଣେଂ ପଡ଼ି ପିତା ମୋର ମୋହସଞ୍ଜା ଗୋଟିଏ ଥୋଇଲା ।
ଶ୍ରୀ ସନାତନ ଗୋସାଇଂଙ୍କି ଚାହିଂଣ ଆଗ୍ୟାଂ ଦେଲେ ଶଚୀସୁତ ।
ଅଚ୍ୟୁତାନନ୍ଦକୁ ଉପଦେଶ ତୁମ୍ଭେ କର ହୋଇ ଯାଇଂ ସୁଚିତ ।
ଆଗ୍ୟାଂ ପାଇଂଣ ସନାତନ ଗୋସାଇଂ ସଙ୍ଗେ ସୁଖେ ଘେନିଗଲେ ।
ଦକ୍ଷିଣ ପାରୁଶ ବଟ ମୂଳେ ବସି କର୍ଣ୍ଣ ଉପଦେଶ ଦିଲେ ।
ଲଲାଟେ ତିଳେକ ହରି ମନ୍ଦିର ଯେ ନାମ ପ୍ରାପତ ବତାଇଂ ।
ବାହୁ ଯୁଗଳରେ ହୃଦୟ ମଧରେ ପଞ୍ଚ ତିଳେକ ବତାଇଂ ।
ଶାମ ପଞ୍ଚାକ୍ଷର ମନ୍ତ୍ର ଯେ ପ୍ରଚାର ମୋହାମନ୍ତ ଦେଖାଦେଲେ ।
ଶ୍ୟାମାଂଜନ ଗଙ୍ଗା ମୃର୍ତ୍ତିକା ଲଗାଇଂ କଣ୍ଠିଂ ଗଳାରେ ବାନ୍ଧିଲେ ।
ଆମ୍ଭେ ତୋହୋ ଗୁରୁ ଆମ୍ଭ ଗୁରୁ କେହୁ ସ୍ମର ଗୁରୁ କୃଷ୍ଣ ରାମ ।
ତାଙ୍କ ଗୁରୁ ଶ୍ୟାମ ଘୋଷ ସାରଙ୍ଗ ଯେ ଘୋଷ ତାଙ୍କ ଗୁରୁ ବ୍ରହ୍ମଂ ।
ସାରଙ୍ଗ ଗୋସାଇଂ ପରିବାର ଶାରୀ ଚୈତନ୍ୟ ଚରଣେ ମିଳି ।

ମାଧବାଚାର୍ଯ୍ୟ ସମ୍ପ୍ରଦାରେ ମିଶାଇଂ ମଠକୁ ଯେ ଗଲେ ଚଳି ।
ଶିଷ୍ୟଙ୍କୁ ମେଲାଣି ଦେଇଂ ଗୁରୁବ୍ରହ୍ମଂ ମଠକୁ ବିଜଏ କଲେ ।
ଉପଦେଶ ପାଇ ପାମର ଅଚ୍ୟୁତ ହରେ ରାମ କୃଷ୍ଣ ବୋଲେ ।
ପୂର୍ବ ଅନୁଭବ ପ୍ରଭୁଙ୍କ ସଂଯୋଗ ବାସନା ଲାଗିଲା ଯେଣୁ ।
ଅନ୍ଧକାର ନାଶ ପୂର୍ଣ୍ଣ ହେତୁ ଦୃଶ ଅନୁଭବ ହେଲା ତେଣୁ ।
ମେଲାଣି ମାଗିଣ ପିତା ମୋତେ ଘେନି ନିଜ ମନ୍ଦିରକୁ ଗଲେ ।
ଗୃହ ବେପାରେଣ ମନ ନିବେଶିଣ ଦିବସ ନିଶି ବଂଚିଲେ ।
ବେନି ଭ୍ରାତା ମୋହ ଏକଇଂ ଭଏଣୀ ସବଂହେ ଏକତ୍ର ବାସ ।
ଯେମନ୍ତେ ମୋ ମାତା ପିଅର ବଂଚନ୍ତି ଗ୍ରାମରେ କରି ନିବାସ ।
ମୋ ମନ ଉଦାସ ଦେଖି ମୋର ପିତା ମୋଠାବେ କଲା ଯେ ହେଳା ।
ଯହିଂ ଗଲେ ଗଲି ଯହିଂ ଥିଲେ ଥିଲି ନକଲା ମୋତେ ଶୃଙ୍ଖଳା ।
ଯେମନ୍ତେ ଶ୍ରୀକୃଷ୍ଣ ଚରଣେ ନିରତେ କରିଥାଇଂ ମୁହିଂ ଧ୍ୟାନ ।
କର୍ମର କଷଣ କି ଅବା କହିବି କେ ଅବା କରିବ ଆନ ।
ଅନ୍ନ ବସ୍ତ୍ର ଛାଡ଼ି ଯେତେ ଆଉ ସୁଖ ଖଟିଥାନ୍ତି ସର୍ବେ ଆସି ।
କର୍ମ କଷଣ ମୁଂ କାହା ଆଗେ କହିବି ବଞ୍ଚୁ ଥାଇଂ ଦିବା ନିଶି ।
ଦଶ ବର୍ଷ ଦଶ ମାସର ଅନ୍ତରେ ହୋଇଲା ଯେମନ୍ତେ ପୁଣ ।
କର୍ମ କଷଣ ବନ୍ଧନ ଫିଟିଗଲା ପ୍ରବେଶ ହେଲା ନିର୍ଗୁଣ ।
ଚଞ୍ଚଳ ଚିତ୍ତ ମୋ ନିଚଳ ହୋଇଲା ରସିଲା ନିରତେ ମନ ।
ସୁଦୟା କଲେ ସେ ବ୍ରହ୍ମାଣ୍ଡ ଠାକୁର ବିଜେ କଲେ ଗୁରୁ ବ୍ରହ୍ମଂ ।
ତ୍ରିପୁର ଗ୍ରାମରେ ପାଟଣା କୂଳରେ ପଶ୍ଚିମ ବଟ ମୂଳରେ ।
ଅପୂର୍ବ ବେଶ ସେ ଧରି ଗୁରୁ ବ୍ରହ୍ମ ବିଜେ କଲେ ମଙ୍ଗଳରେ ।
କୁଶ ଡୋର କବନ୍ଧେଂ ପଇତା କୌପୁନୀ ସୋଅର୍ଣ୍ଣ କଠାଉ ପାଦେ ।
କରେ କମଣ୍ଡଳ ଲଲାଟେ ତିଳେକ ତୁଳସୀ ମାଳା ଯେ ସାଜେ ।
ନଖ ମୁଖ ନାସା ଅଖଣ୍ଡିତ ବେଶା ହୋଇଣ ଶ୍ରୀଗୁରୁ ବ୍ରହ୍ମଂ ।
ରେତା ବେଶ ଧରି ଦିଗମ୍ବର ହୋଇଂ ପ୍ରକାଶ ଅରୁଣ ସମ ।
ଯେମନ୍ତ ଅବ୍ୟଗତ ରୂପ ଦେଖି ମୁଂ ଚରଣ ତଳେ ପଡ଼ିଲି ।
ଉଠି ଉଭାହୋଇଂ ଶ୍ରୀମୁଖକୁ ଚାହିଂ କରି ଯୁଗଳ ଯୋଡ଼ିଲି ।
କାହୁଂ ବିଜେକଲ ଯୁଗାଧି ପୁରୁଷ ଦେଖିଲା ନାହିଂ ଯେ ମୋର ।
ସଦୟା କରି କିଛୁ ତୋତେ କହିବା ତୁ ଏବେ ତଲଯେ କର ।

ଅନାଦି ପୁରୁଷ ଆମ୍ଭେ ତୋର ଗୁରୁ ଚିହ୍ନିଂ ନ ପାରିଲୁଂ ଯେଣୁ ।
ମନୁନନ୍ଦ ଆମ୍ଭ ନାମ ସେ ଅଟଇଂ ମନୁ ଜାତ ହେଲୁଂ ତେଣୁ ।
ଆମ୍ଭ ଗୁରୁ ନାମ କହିବା କୁମର ପରମାନନ୍ଦ ଅଟନ୍ତିଂ ।
ପରମାନନ୍ଦଙ୍କ ଗୁରୁ ନାମ ତହିଂ ବ୍ରହ୍ମାନନ୍ଦ ପ୍ରକଟନ୍ତି ।
ବ୍ରହ୍ମାନନ୍ଦ ଯେହୁ ଅଦିବ୍ୟ ଅବ୍ୟକ୍ତ ଦିବ୍ୟାନନ୍ଦ ତହୁଂ ଜାଣ ।
ତାଙ୍କ ଗୁରୁ ନାମ ସଚ୍ଚିଦାନନ୍ଦଟି ସୋଯେଂ ଅନାଦି ନିର୍ବାଣ ।
ଷଡ଼ ପୁରୁଷ ଭେଦ ତୋତେ କହିଲୁଂ ନାମଟି ଯେହି ନିକର ।
ଗୁପତ ପ୍ରଘଟ କହିଲୁଂ ତୋହୋ ଆଗ ନୀଳକନ୍ଦରେଣ ଘର ।
ଯେଣୁଂ ତୋତେ ଆମ୍ଭେ ନିର୍ଭା କରାଇଲୁଂ ତେଣୁ ଅଇଲୁଂ ତୋ ପାଶ ।
ତଳେ କରିଥା ଯେ ସତ୍ୟ ତତ୍ତ୍ୱ ଭେଦ ଆଚାର୍ଯ୍ୟ ସଂମ୍ପ୍ରଦା ଘୋଷ ।
ଧାମ ପଦ୍ମଂ ଜାଣ କ୍ଷେତ୍ର ବୃନ୍ଦାବନ ନୀପବଟରେ ନିବାସ ।
ଷୋଡ଼ଶ ବୟେସ ସଖା ଅଙ୍ଗ ଦାସ ଗୋପେ ସେ ସୁଖ ବିଳାସ ।
ଆତ୍ମା ଇଏ ମଠ ଚୈତନ୍ୟ ସ୍ତ୍ରାହାନ ଯମୁନା ଜଳରେ କର ।
ମଣ୍ଡଳୀ ମଧରେ ନୃତ୍ୟ ଅ-କେଶରେ ଅମନେ ମନ ସଂହର ।
ଯେମନ୍ତ କହିଣ ବ୍ରହ୍ମାଣ୍ଡ ଠାକୁର ଅନୁଭବ କହିଗଲେ ।
ଆଗ୍ୟାଂ ହୋଇଅଛି ପୂର୍ବରେ ଯେ ତୋତେ କହିବା ବୋଲି ବୋଇଲେ ।
ଦ୍ୱାପର ଯୁଗରେ ଖେଡ଼ରଙ୍ଗ କଲୁଂ ଦ୍ୱାଦଶ ସଖାଙ୍କ ମେଳେ ।
ଲୀଳା ଶେଷରେ ସେ ସୁଖକୁ ପାଇବ ଆଗ୍ୟାଂ ଦେଲୁଂ ତେତେବେଳେ ।
ଦାମ ସୁଦାମ ସ୍ତୋକକୃଷ ଉଦ୍ଧବ ଅକ୍ରୁର ସାତ୍ୱକୀ ଘେନି ।
ସଉନନ୍ଦ ବୃନ୍ଦ ନନ୍ଦ ଯେ ଶ୍ରୀବଚ୍ଛ ଉପନନ୍ଦ ନନ୍ଦ ବେନି ।
ଦ୍ୱାଦଶ ଗୋପାଳ ତହୁଂ ଜାତ କଲୁଂ ଲୀଳା କଲୁଂ ସଙ୍ଗେ ଘେନି ।
ଯୁଗ ଯୁଗ ଶେଷେ ସୁଖକୁ ଲଭିବ ଜାତ ହୋଇବ ମେଦିନୀ ।
ସୁଦାମ ଆଦି କଳିରେ ଜାତ ହେବେ ଯେବଣ ଅଛି ବେଭାର ।
ସେ କଳିଯୁଗରେ ଆମରି ସଙ୍ଗତେ ଜନ୍ମି ଦୀନବନ୍ଧୁ ଘର ।
ସୁଦାମଂ ସିନ୍ଧୁରା ନାମକୁ ବହିଣ ନୀଳାଞ୍ଚଳରେଇଂ ଥିତି ।
ତଦନ୍ତେ ଅଚ୍ୟୁତ ତନୁରେ ପଶିବି ବ୍ରଜ କୁଳେ ଯେହୁ ଖ୍ୟାତି ।
ମୂଢ଼ ଗୋପାଳଙ୍କୁ ଉଦ୍ଧାର କରିବ କିଛି ଲୀଳା ସୁଖପାଅ ।
ସେ କଳିଯୁଗରେ ନା ମରୁଂ ହୋଇଣ ଅତେ ଗୋଲକେ ସମ୍ଭାଅ ।

ଯେଣୁକରି ସିନା ତୋତେ ଜାତ କଲୁଂ ସୋରି ଅଇଲୁଂ ତୋ ପାଶ ।
ତତ୍ତ୍ୱ ଉପଦେଶ ତୋତେ କିଛୁ ଦେବା ତମ ଭ୍ରମ ଯିବ ନାଶ ।
ଶ୍ରୀମୁଖ ବାଣୀ ମୁଂ ଶୁଣିଣ ଚରଣେ ପଡ଼ିଣ ଉଭା ହୋଇଲି ।
ଅପ୍ରାଧ ମୋ କ୍ଷମା କରିବା ଗ୍ରୋସାଇଂ ବୋଲି ପଛ ଘୁଞ୍ଚିଗଲି ।
ପ୍ରସନ୍ନ ହୋଇଣ ପରମବ୍ରହ୍ମଂ ଯେ ଅଣାକ୍ଷର ମନ୍ତ୍ର ଦିଲେ ।
ଉପଦେଶ ଦେଇ ବ୍ରହ୍ମାଣ୍ଡ ଠାକୁର ଅନ୍ତର୍ଧାନ ହୋଇଗଲେ ।
ସପନ ଚେତିଣ ତକ୍ଷଣେ ଉଠିଣ ଚାହିଂଲି ଯେ ଦଶଦିଗ ।
କେଣେ ଗଲେ ପ୍ରଭୁ କୃପାଜଳନିଧି ମନ ହେଲା ଉଦ୍‌ବେଗ ।
ପଶ୍ଚିମ ବଟ ମୂଳରେଣ ବସି ମୁଂ ସପନ କଥାରେ ଥିଲି ।
ସେ ରୂପକୁ ଧ୍ୟାନ କରିଣ ମୁହିଂ ସେ ସାକ୍ଷାନ୍ତ ପ୍ରାଏ ମଣିଲି ।
ସୁରିଲା ପଦ ସେ ଗ୍ୟାଂନର ଭେଦ ଯେ ଗୀତା ଭାଗବତ ଆଦି ।
ସିଧାନ୍ତ ଯୋଗାନ୍ତ ସର୍ବ ବିଧିମତ ମନ୍ତ୍ର ତନ୍ତ୍ର ହିଂ ଇତ୍ୟାଦି ।
ମନ ମୋର ମିଶି ମନକୁ ବିଧ୍ୱଂସୀ ହେତୁପାଟଣାରେ ବସି ।
ହାନିଲାଭ କିଣାବିକା ମୋ ଲାଗିଲା ସକଳ ମିଳିଲା ଆସି ।
ବାଞ୍ଛିତ ଫଳ ତରୁବର ଫଳିଲା ଦିଶିଲା ଗ୍ୟାଂନର ବାଟ ।
ତେଣୁକରି ଶ୍ରମ ସ୍ଥାନ ଗ୍ରାମ ଚିହ୍ନି ପାଇଲି ତୁମ୍ଭରି ଭେଟ ।
ରାମ ଧରମ୍ମଂ ଯେ ଭରଥ ଯାଦବ ବନ୍ଧୁକୁ ଘେନିଣ ସଂଗେ ।
ଲୀଳାଞ୍ଚଳେ ଯାଇଂ ଗହଳେ ଖଟିଲି ଭଗତ ଭାବର ଅଂଗେ ।
ପୁଣ ଦୟାକରି ନବଦ୍ୱୀପଶ୍ୱର ଖୋଳ କରତାଳ ଦେଲେ ।
ସଙ୍କୀର୍ତନ କରି ରାହାସ ଲୀଳା ଯେ ସଂସାରେ ରଞ୍ଚ ବୋଇଲେ ।
ତାନମାନ ଯେତେ ମୁର୍ଛନା ପାତ ଯେ ଶିଖାଇଲେ ଜଗନ୍ନାଥ ।
ମନ୍ତ୍ରଂ ଉପଦେଶ ଦେଇ କରତାଳ ଯୋଡ଼ିଯେ ଦେଲେ ସେ ହାଥ ।
ବୈରାଗ୍ୟ ଭାବ କିଛୁ ମନେ ଧରିଣ ତୀର୍ଥ କରି ପ୍ରଯଟନ ।
ସଂସାର ଭୋଗ ଥୋକାଏ ବିଳାସିଣ ଅନ୍ତେ ପଶ ଗୋଲକେଣ ।
ଚୈତନ୍ୟ ଠାକୁର ଶ୍ରୀମୁଖ ଆଗ୍ୟାଂରେ ଡୋର କଉପୁନୀ ନେଲି ।
ସିଂହାସନେ ପ୍ରଭୁ ଦ୍ରଶନ କରିଣ ତୀର୍ଥ ପ୍ରଯଟନେ ଗଲି ।
ରାମେଶ୍ୱର ଚିତ୍ରକୂଟ ହିଂ ଦେଖିଲି ଅଯୁଧ୍ୟା ଦ୍ୱାରିକା ଆଦି ।
କାଶୀ ବାଣରାସୀ ପ୍ରୟାଗ ସହିତେ ଗୋପ ମଥୁରା ଯେ ଭେଦି ।

ବୃନ୍ଦାବନେ ବେନି ଚତୁର୍ମାସ୍ୟା ରହି ଯମୁନା ସ୍ନାହାନ ସାରି ।
ଗଙ୍ଗା ଗଉତମୀ ତୀର୍ଥ ଆଦି ଭ୍ରମି ଅଇଲି ଯେ ନୀଳଗିରି ।
ରଥରେ ଦ୍ରଶନ କରି ଜଗ୍ରନାଥ ବଳଭଦ୍ର ଯେ ଭଜିଲି ।
ସୁଭଦ୍ରା ସୁଦ୍ରଶେନ ଆଦି କରିଣ ରଥ ପ୍ରତିକ୍ଷଣ କଲି ।
ଗୌରାଙ୍ଗ ଚନ୍ଦ୍ରମା କରୁଣାସାଗର ବିଜଏ ବଦ୍ଦାଣ୍ଡରେ
ବଷ୍ଣବ ମଣ୍ଡଳୀ ବେଢ଼ି ଶୋଭା ତହିଂ କି ଉପମା ଦେବା ତାରେ ।
ଶ୍ରୀଛାମୁରେ ଯାଇଂ ଶତେ ଦଣ୍ଡବତ କରିଣ ଉଭା ହୋଇଲି ।
ଦେଖିଣ ଆନନ୍ଦ ନବଦ୍ୱୀପ ଚନ୍ଦ୍ର ପ୍ରସାଦ ଫୁଲ ପାଇଲି ।
ଯେମନ୍ତେ କିଛୁଦିନ ତହିଂ ବଞ୍ଚିଲି ସାଧୁଙ୍କ ମେଳରେ ରସି ।
ଅନନ୍ତ ଯେ ଯଶୋବନ୍ତ ବଳରାମ ସହିତେ ମିଳିଲି ଆସି ।
ଜଗନ୍ନାଥ ଦାସ ଘେନି ପଞ୍ଚସଖା ଉଦିଅ ହୋଇଲେ ତହିଂ ।
ଘରେ ଘରେ ହରିଧ୍ୱନି ଉପୁଜିଲା ଚୈତନ୍ୟ ଆଗ୍ୟାଂରେ ଯହିଂ ।
ଚାଣ୍ଡାଳ ବ୍ରାହ୍ମଣ ହରିଧ୍ୱନି ଦେଇଂ ଶବଦେ ହୁଅନ୍ତି ମତ ।
ପ୍ରେମେ ଗଡ଼ାଗଡ଼ି ହରି ନାମ ଜୁରି ପୂରି ରହିଛି ଜଗତ ।
ଗୀତା ଭାଗବତ ପୁରାଣ ସଂହିତା କାବ୍ୟ ନାଟକାଦି ମାନ ।
ଯେ ଯହିଂର ଅର୍ଥ ପଠନ କରନ୍ତି ବିଗ୍ୟଂ ପଣ୍ଡିତ ମିଶିଣ ।
ମହାନ ପଣ୍ଡିତ ଚୈତନ୍ୟ ଗୋସାଇଂ ବେଦ ବେଦାନ୍ତରେ ସାର ।
ଯେ ଯେମନ୍ତ ବିଧି ସଙ୍ଖ୍ୟା କରନ୍ତି ଗାବନ୍ତି ସେହି ପ୍ରକାର ।
ପଣ୍ଡିତ ବ୍ରାହ୍ମଣ କେତେହେଂ ମିଳିଣ ମୁକ୍ତି ମଣ୍ଡପରେ ବସି ।
ପୁରାଣ ଶାହାସ୍ତ୍ର ଅର୍ଥ ଯେ କରନ୍ତି ଆପଣେ ଶ୍ରୀମୁଖେ ହସି ।
ପୁରାଣ ପଠନ ସାରିଣ ଗୋସାଇଂ ବସାକୁ ବିଜେ କରନ୍ତି ।
ରାଧା ରାଧା ବୋଲି ନବଦ୍ୱୀପଚନ୍ଦ୍ର ହେତୁ ବୁଦ୍ଧି ପାସୋରନ୍ତି ।
ଯେମନ୍ତେ କେତେହେଂ ଦିନ ବହିଗଲା ଶୁଣିମା ଅପୂର୍ବ ରସ ।
ପ୍ରତାପରୁଦ୍ର ରାଜନ ବିଜେ କଲେ କଳା ରାଉତର ପାଶ ।
ଯେମନ୍ତ ସମୟେ ଗଉରଚନ୍ଦ୍ରମା ବେଢ଼ା ପ୍ରତିକ୍ଷଣ ସାରି ।
ଦେଉଳେ ପଶିଲେ ସଖାଗଣ ସଙ୍ଗେ ଦଣ୍ଡ କମୋଣ୍ଡଳ ଧାରୀ ।
ମହା ପ୍ରତାପୀ ପ୍ରତାପଦେବ ରାଜା ଘେନି ପାତ୍ର ମନ୍ତ୍ରୀ ସଙ୍ଗେ ।
ହରି ଧ୍ୱନିରେ ଦେଉଳ ଉଛୁଳଇଂ ଶ୍ରୀମୁଖ ଦ୍ରଶନ ରଙ୍ଗେ ।

ଚୈତନ୍ୟ ଠାକୁର ମାହାନୃତ୍ୟ କରି ରାଧା ରାଧା ଧ୍ୱନିକଲେ ।
ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଅଙ୍ଗେ ବିନ୍ଦୁପ୍ରାୟେ ମିଶିଗଲେ ।
ଶୂନ୍ୟରୁ ଶୂନ୍ୟ ପ୍ରକାଶିଥିଲେ ବ୍ରହ୍ମଂ ମଞ୍ଚେ କରିବାକୁ ଲୀଳା ।
ତମ ବିଧଂସୀ ତତ୍ତ୍ୱଗ୍ୟାଂନ ବୁଝାଇ ମିଶିଗଲା ଆସି କଳା ।
ଅଗ୍ନିରେ ଅଗ୍ନି ମିଶିଲେ ଯେସନେକ ବାରଣ ନୋହଇ ଜାଣି ।
କଳାରେ କଳା ସେହି ରୂପେ ମିଶିଲା ଦେଖି ନ ଦେଖିଲେ ପ୍ରାଣୀ ।
ଦେଖି ନୃପତି ହା ହାକାର ହୋଇଲେ ପଡ଼ିଲା ଜଗତେ ହୁରି ।
ସେବକଗଣେ ଯେ ଯାହା ଅନରୂପେ ନିଜ ସ୍ଥାନେ ଗଲେ ଚଳି ।
ମାର୍ଜନା ମଣୋହିଂ କଲେ ପଣ୍ଡା ମିଳି ପ୍ରଭୁଙ୍କ ସେବା ସାରିଲେ ।
ପଲଙ୍କ ସୁପାତି ଶେଯାଇଂ ଶୟନେ ଦ୍ୱାରେ କବାଟ ପାଡ଼ିଲେ ।
ଲକ୍ଷ୍ମୀଙ୍କି ଘେନି ପହୁଡ଼ିଲେ ଜଗତକରତା ଜଗୁ ନିବାସ ।
ନିଶି ଶେଷେ ପୁଣି ବ୍ରହ୍ମାଣ୍ଡ ଠାକୁର ପାହାନ୍ତିଆ ଅବକାଶ ।
କାର୍ତ୍ତିକ ଶୁକଳ ପଞ୍ଚମୀ ଦିନ ଠାବୁଂ ମହୋଛବ ରାଜା କଲେ ।
ମାସକ ସଂପୂର୍ଣ୍ଣେ ମୋଛବ ବଢ଼ାଇ ଯେଝାରେ ବଷ୍ଣବ ଗଲେ ।
ଯେମନ୍ତେ କେତେହେଂକ ଦିବସ ତହିଂ ସେବା ଖଟିଣ ଯେ ଥାଇ ।
ପ୍ରତି ଦିବସେଣ ଶ୍ରୀମୁଖ ଦ୍ରଶନ ଗରୁଡ଼ ପଛେ କରଇଂ ।
ରାଜନ ଆଗରେ ଯେକ ଦିନକରେ କହନ୍ତି ମେଳି ବ୍ରାହ୍ମଣ ।
ଶୂଦ୍ର ବଇଷ୍ଣବମାନେ ଯେ ସିଧ୍ୱାନ୍ତ କରିଣ ଅଛନ୍ତି ପୁଣ ।
ବଳରାମ ଦାସ ବୋଲି ଶୂଦ୍ର ଯେକ କହେ ସେ ବେଦାନ୍ତ ସାର ।
ଶ୍ରୀଛାମୁ ହକାରି ତାହାକୁ ଭୋ ଦେବ ଅର୍ଥହିଂ କିଛି ପଚାର ।
ପାଞ୍ଚ ସାତ ଜଣ ବଷ୍ଣବ ମିଳିଣ ଗତ ଆଗତ କହନ୍ତି ।
ସହି ନ ପାରିଣ ବ୍ରାହ୍ମଣ କୁଳିୟା ରାଜାଙ୍କୁ ସେ ଚାଳି ଥାନ୍ତି ।
ଏକ ଦିନ ସୋଧା କରନ୍ତି ରାଜନ ପଞ୍ଚସଖାଙ୍କୁ ସେ ଆଣି ।
ଯେମନ୍ତେ ସମୟେ ମିଳିଗଲେ ଆସି ବୀରସିଂହ ହିଂ ସେ ପୁଣି ।
ପରୀକ୍ଷା ପଡ଼ିଲା ରାଜନ ଜାଣିଲା ବିପ୍ରଙ୍କ ଭାଜିଲା ଟାଣ ।
ପାମର ଅଚ୍ୟୁତ ପାଦପଦ୍ମେ ସେବା ପ୍ରଭୁଙ୍କ ଆଗ୍ୟାଂ ପ୍ରମାଣ ।

ଇତିଶ୍ରୀ ଶୂନ୍ୟ ସଂହିତା ପ୍ରଥମ ଅଧ୍ୟାୟ ଚୈତନ୍ୟ ଦେବ
ଆଗ୍ୟାଂ ଅଙ୍ଗ ସମ୍ଭାରଣେ ନାମଃ ପ୍ରଥୋମଧ୍ୟାୟଃ ।

## ଦ୍ୱିତୀୟ ଅଧ୍ୟାୟ

ଶୁଣ ହୋ ମୁକୁନ୍ଦ ଦାସ ଉଥାନ ପବନ ।
ରାମ ଧର୍ମୁ ଆଦିକରି ପଞ୍ଚ ମହାଜନ ।
ପୁଚ୍ଛାକଲ ଯାହା ତୁମ୍ଭେ ନାମର ବୃତାନ୍ତ ।
ସୁବୁଧି ସୁଗ୍ୟାଂନୀ ତାହା ଜାଣନ୍ତି ଯେ ସନ୍ଥ ।
ନାମକୁ ଭଜିଲେ ସିନା ଗତି ମୁକ୍ତି ହୋଇଂ ।
ପିଣ୍ଡକୁ କାରଣ ନାମ ବିନୁ ଅନ୍ୟ ନାହିଂ ।
ସଂସାର ଯେ ମହାଘୋର ଯାତନା ଜଞ୍ଜାଳ ।
ସଦ୍‌ଗୁରୁ ସେବାକଲେ ନାଶ ହୋଏ କାଳ ।
ନାମକୁ ଚିହ୍ନିଲେ ଜୀବ ପରମେ ମିଶଇଂ ।
ସୋଲ ଭେଳା ପ୍ରାୟେ ଭବସିନ୍ଧୁରେ ଭାସଇଂ ।
ନାମ ଗୋଟି ଥିଲାକୁ ସେ କାୟା ହେଲା ଠୁଳ ।
ସଂସାର ରଞ୍ଜନା କରି ସମ୍ପତ୍ତିରେ ଭୋଳ ।
ନାମ ଗଲେ ରୂପ କେହି ନ ଛୁଇଂବେ ଆଉ ।
ନାମ ନ ଚିହ୍ନିଣ ଯେଣେତେଣେ ବଣା ହେଉ ।
ସଦଗୁରୁ ସେବାକଲେ ଫିଟିଯାଏ ଦ୍ୱନ୍ଦ୍ୱ ।
ବହନ୍ତା ଜଳରେ ଯେହ୍ନେ ପଡ଼ିଯାଏ ବନ୍ଧ ।
ଯାହା ପଚାରିଲ ଯେବେ ବୁଝାଇ କହିବା ।
ଅବ୍ୟଗତ ଭଣ୍ଡାରରୁ କିଛି ଯେ କହିବା ।
ସଞ୍ଚା ଏକଗୋଟି ତୁମ୍ଭେ ଆଣିଣ ଯେ ରଖ ।
ନାମ ଯନ୍ତ୍ର ମନ୍ତ୍ର ଦେବା ତୁଲକରି ଦେଖ ।
ଆଗ୍ୟାଂ ପରିମାଣି ସଞ୍ଚା ଗୋଟିଏ ରଖିଲେ ।
ନବତନ ବସ୍ତ୍ର ନଟିକାଳ ଯେ ଥୋଇଲେ ।
ସୁପକ୍ୱ ପଦାର୍ଥମାନ ବାଢ଼ିଲେ ଯେ ଆଣି ।
ପୁଷ୍ପ ଚନ୍ଦନ ଯେ ପାନ ପୂଜା ଫଳ ପୁଣି ।
ତିନି ମାଢ଼ ସୁବର୍ଣ୍ଣ ରଖିଲେ ମଣ୍ଡଳରେ ।
କର୍ପୂର ଯୁଆଦି ଆଣି ଦେଲେ ଯେ ଧୂପରେ ।
ପୂଜାକଲେ ଧୂପ ଦୀପ ଦେଇଣ ଯେ ପୁଣି ।

ଶୁଣ ହୋ ମୁକୁନ୍ଦ ଦାସ ନାମ ତତ୍ତ୍ୱବାଣୀ ।
ମହାମନ୍ତ ଭଜିଲେ ଯେ ପାପ ହୋଇଯେ କ୍ଷୟେ ।
ନା ଜାଣି ଭଜିଲେ ନାମ ନିଷ୍ଫଳକୁ ଯାଏ ।
ବୀଜକୁ ଭଜିଲେ ସିନା ହେତୁ ଗତି ପାଇ ।
ଅବୀଜ ଭୂମିରେ ଶସ୍ୟ ଉପୁଜିବ କାହିଁ ।
କର୍ଣ୍ଣଗୁରୁ କଥା ଯେବେ କହିବା ଯେ ଶୁଣ ।
ଉପଦେଶ ଦେଇଂ ପିଣ୍ଡ କଲେ ଯେ କାରଣ ।
ହେତୁ ନ ପାଇଣ ବଣା ହୋଇଂ ସେ ଭ୍ରମିଲା ।
ହେତୁ ଦେଲା ଗୁରୁ ମାୟା ମୋହରୁ ତାରିଲା ।
ହେତୁ ଦେଇଂ ଶୁଣ ତୁମ୍ଭେ ପଞ୍ଚ ମହାଜନ ।
ନାମତତ୍ତ୍ୱ ଭଜିଲେ ଯେ ନାଶ ଯାଇ ତମ ।
ଯନ୍ତ୍ର ମନ୍ତ୍ର ତନ୍ତ୍ରରେ ଯେ ବୁଝାଇଣ ଦେବା ।
ଶ୍ରୀଗୁରୁ ଭଣ୍ଡାରୁ ଆଣି ଥୋକାଯେ ବୋଲିବା ।
ମୋତେ ଜାତ କଲେ ପ୍ରଭୁ କରୁଣାସାଗର ।
ଜନମ ହୋଇଲେ ପୁଣି ନବ ଯେ ଦ୍ୱୀପର ।
ଶ୍ରୀ ଚୈତନ୍ୟ ଗୋସାଇଂ ଯେ ବ୍ରହ୍ମାଣ୍ଡର ପତି ।
ନିତ୍ୟାନନ୍ଦ ସଙ୍ଗେ ଘେନି ଜନ୍ମହେଲେ କ୍ଷିତି ।
ତାହାଙ୍କ ସଙ୍ଗତେ ମୋତେ ଜନମ ଯେ ଦେଲେ ।
ବୈରାଗ୍ୟ ବେଶରେ ଦେଶ ଭ୍ରମିଣ ଯେ ଗଲେ ।
ଭ୍ରମି ନୀଳାଞ୍ଚଳକୁ ସେ କଲେକ ଗମନ ।
ସଙ୍ଗତେ ଘେନିଣ ସେ ଯେ ପଞ୍ଚ ମହାଜନ ।
ରୂପ ସନାତନ ସଙ୍ଗେ ଶ୍ରୀଜୀବ ଗୋସାଇଂ ।
ଗୋପାଳ ଭଟ୍ଟ ଯେ ରଘୁନାଥ ଦାସ ତହିଁ ।
ସଙ୍ଗେ ଘେନି ବିଜେ ପ୍ରଭୁ ସଖାବୃନ୍ଦ ଯେତେ ।
ଶ୍ରୀମୁଖରେ ଆଜ୍ଞା ଦିଲେ ତାହିଂଣ ସେ ମୋତେ ।
ଓଡ଼ିଶା ଦେଶରେ ତୁମ୍ଭେ ରାହାସ ରଞ୍ଚିବ ।
ଗୋପାଳ କୁଳକୁ ତାରି ଆପଣେ ତରିବ ।
ଯେ ଅଙ୍ଗକୁ ଗୋପ୍ୟକରି ଶୂଦ୍ରକୁଳେ ଜାତ ।
ରାହାସ ରଞ୍ଚିବ ବେଗେ ଯାଅ ହୋ ଅଚ୍ୟୁତ ।

ଶ୍ରୀମୁଖରୁ ଆଜ୍ଞାଂ ପାଇ ଗହଣରେ ଥିଲି ।
ପୂର୍ବ ହେତୁ ପାଇ ଶୂଦ୍ରକୁଳେ ଜନମିଲି ।
ବ୍ରହ୍ମ ଗୋପାଳର ବେଶ ଧଇଲୁ ଯେ ଆମ୍ଭେ ।
ପଇତା ଗୋଟି ପିନ୍ଧିଲୁ ଦକ୍ଷିଣର କନ୍ଧେ ।
ରାହାସ ରଚିବା ରଙ୍ଗେ ନିତ୍ୟଲୀଳା କରି ।
ଯେମନ୍ତେ ଦିନ ବଞ୍ଚିଲୁ ଆଜ୍ଞାଂ ଦେଲେ ହରି ।
ସିନ୍ଧୁରାନନ୍ଦ ଯେ ନାମ ଗୁପତେଣ ଗଲା ।
ଦୀନ ପାମର ଅଚ୍ୟୁତ ନାମ ତେଣୁ ହେଲା ।
ପଦ ପଦ୍ୟାବଳୀମାନ ଦିଶିଗଲା ଆସି ।
ହରିନାମେ ମନ ମୋର ତେଣୁ ସିନା ରସି ।
ନାମ କହିଦେବା ଯେବେ ହେତୁଦେଇ ଶୁଣ ।
ପ୍ରଣବ ଅକ୍ଷର ଗୋଟି କଲେ ଯେ ବସାଣ ।
ଓଂକାର ଉପରେ ଅର୍ଦ୍ଧମାତ୍ରା ଦେଲେ ନେଇ ।
ତଥିପରେ ନେଇ ଶୂନ୍ୟ ମଣ୍ଡଳେକ ଥୋଇ ।
ଯେମନ୍ତେ ଓଂକାର ବୋଲି ନାମ ଯେ ବୋଲାଇଂ ।
ପଞ୍ଚଭୂତ ପଞ୍ଚୁ ବୀଜ ପଞ୍ଚୁ ଆତ୍ମା କହି ।
ପଞ୍ଚ ଗୋଟି ମାତ୍ରାକୁ ଯେ ଚିହ୍ନି ତଲେ କର ।
ବ୍ରହ୍ମାଣ୍ଡ ପାତନା ସିନା ଏଥିର ଭିତର ।
ଆଗ ପଞ୍ଚଭୂତକୁ ଯେ ବୁଝାଇଣ ଦେବା ।
ପଞ୍ଚୁ ଆତ୍ମା ପଞ୍ଚତତ୍ତ୍ୱ ତଦନ୍ତେ କହିବା ।
ଶୁଣସି ହୋ ରାମଦାସ ପଞ୍ଚଭୂତ କଥା ।
ପୃଥିବୀ ଉକାର ମାତ୍ରା ଆପ ଦଣ୍ଡ ଲେଖା ।
ତେଜ ଗୁଣ ଘେନି ରୁଦ୍ର ତଥିପରେ ଛନ୍ତି ।
ବାୟୁ ସେ ଆକାଶ ଅର୍ଦ୍ଧମାତ୍ରା ବିନ୍ଦୁ ଜ୍ୟୋତି ।
ପ୍ରଥମେ ବ୍ରହ୍ମାଣ୍ଡ ଗୋଟି ପାତିଲେ ଯେ ବ୍ରହ୍ମା ।
ପୃଥିବୀର ବୀଜ ଗୋଟି ଅଟଇ ଯେ ଋମା ।
ତଥିପରେ ଦଣ୍ଡକ ଯେ ଦୀର୍ଘ ସସ୍ରେ ହାତ ।
ମକାର ଅକ୍ଷର ମାତ୍ରା ଆପ ଭୂତ ଖ୍ୟାତ ।
ତଥିପରେ ଆକାର ମାତ୍ରା ତେଜ ରୁଦ୍ର ହରେ ।

ତଥିପରେ ଅର୍ଦ୍ଧମାତ୍ରା ବିନ୍ଦୁ ତଥିପରେ ।
ବାଇବ୍ୟ ଆକାଶ ଅଲଗେଣ ଛନ୍ତି ରହି ।
ଯେମନ୍ତେଇ ପ୍ରଣବ ବୋଲିଣ ବେଦ କହି ।
ପ୍ରଣବେ ପ୍ରଥମ ପୁତ୍ରା ଶ୍ୱରୀରେ ଉଂକାର ।
ତାରା ବୋଲି ନାମ ତାର ବ୍ରହ୍ମାଙ୍କର ଘର ।
ପଞ୍ଚାଶ କୋଟି ସେ ପୃଥ୍ୱୀ ବ୍ୟାପିଣ ଅଛଇ ।
ସ୍ଥାବର ଜଙ୍ଗମ କୀଟ ଯେଥି ସିନା ରହି ।
ତଥିପରେ ଦଣ୍ଡକ ଯେ ବିଷ୍ଣୁ ସେ ମକାର ।
ତାପରେ କୁଣ୍ଡଳୀ ରୂପ ଚନ୍ଦ୍ର ଯେ ଶିଖର ।
ବଳଦେବ ଶେଷ ସେହି ରେବତୀର ପତି ।
ଆକାର ସେ ହରେ ନାମ ଯେହିଠାରେ ଥିତି ।
କଣ୍ଠର ଭିତରେ ଦେଖ ଘଣ୍ଟିକାର ସ୍ଥାନ ।
ହକାର ଅକ୍ଷର ସେହି ସୋରୂପେ ଈଶାନ ।
ରେ କାର ଯେ ରସନାର ଅଗ୍ରକୁ ଧରିଛି ।
କୃ ଅକ୍ଷର ଯେ ଜିଭ୍ୟା ମଧରେ ଭାସୁଛି ।
ଷ୍ଣଂ ଯେ ଅକ୍ଷର ତନ୍ତୁ ମଧରେ ତା ବାସ ।
ପ୍ରଣବେ ଦଣ୍ଡକ ସେହି କୃଷ୍ଣ ନାମ ଘୋଷ ।
ରାମ ନାମ ବେନିକ୍ଷର ତହିଂ ତଳେ ଛନ୍ତି ।
ଜିଭ୍ୟା ଅଗ୍ରୁଂ ଖସିଣ ବସଇ ଓଷ୍ଠ ପନ୍ତି ।
ପ୍ରଣବର ତଳପୁତ୍ରା ନାମ ଅଟେ ତାର ।
ରାମ ନାମ ବେନିକ୍ଷର ସହିଠାବେ ଘର ।
ତନ୍ତରେ ଭେଦିଲେ ଫିଟିଯାଏ ମନଭ୍ରାନ୍ତି ।
ଯେମନ୍ତେଣ ହୋଇ ରାମ ନାମ ଉତପତି ।
ତିନିଯେକ ହୋଇଣ ଯେ ଓଂକାର ବୋଲାଇ ।
ଶେଷ ଯେ ମହେଶ ପରେ ଅର୍ଦ୍ଧମାତ୍ରା ରହି ।
ମହାମନ୍ତ୍ର ମଧ୍ୟେ ଶ୍ୟାମ ନାମ ଗୋଟି ଜାଣ ।
ଅର୍ଦ୍ଧମାତ୍ରା ପରେ ପରଂବ୍ରହ୍ମ ନିରଞ୍ଜନ ।
ଶୁଣ ହୋ ମୁକୁନ୍ଦ ରାମଦାସ ହେତୁ ଦେଇ ।
ମହାମନ୍ତ୍ର ବୀଜବ୍ରହ୍ମ ସ୍ଥାନ ଦେବା କହି ।

ଅର୍ଦ୍ଧମାତ୍ରା ତଳେ ଦେଖ ଓଁକାରର ଶିର ।
ହ୍ଲୀଂ ବୀଜ ବୋଲିଣ ସେ ରେବତୀର ବର ।
ତହିଂ ତଳେ ଦଣ୍ଡ ପ୍ରାୟେ ଥାଇ କ୍ଲୀଂବୀଜ ।
ବେନି ତନ୍ତୁ ମଧ୍ୟେ ଦେଖ ବିଜେ ଦେବରାଜ ।
ତହିଂତଳେ ତାର ଶ୍ରୀୟଂ ବୀଜ ଯେ ସୁଭଦ୍ରା ।
ଧ୍ରାଂ ବୀଜକୁ ଚିହ୍ନଣ ଶାମ ନାମ ସଦା ।
ନନ୍ଦ ବେନିକ୍ଷର ରଖ କୁଣ୍ଡଳୀ ଠାବରେ ।
ଦିନ ବେନିକ୍ଷର ଧର ଦଣ୍ଡକ ଭିତରେ ।
କନ୍ଦ ବେନି ତାର ମଧ୍ୟୁଂ ହୋୟେ ଉତପତି ।
ଧର୍ମ ବେନି ଅର୍ଦ୍ଧମାତ୍ରା ଠାବରେ ଯେ ଥିତି ।
ସାଧୁ ବେନିକ୍ଷର ଦେଖ କୁଣ୍ଡଳୀ ଠାବରେ ।
ଆକାର ମାତ୍ରାଟି ସେହି ସିଧ୍ୟଂ କଳେବରେ ।
ତହିଂ ମଧ୍ୟେ ନାମ ଦେଖ ମଧ୍ୟ ତଥିତଳ ।
ଅର୍ଦ୍ଧମାତ୍ରାଠାରେ ବ୍ରହ୍ମ ବ୍ରହ୍ମଂର ଯେ ମୂଳ ।
ଯେମନ୍ତ ଯେ ଷୋଳ ନାମ ବତିଶ ଅକ୍ଷର ।
ଚାରି ଚାରି ହୋଇବ ସେ ଚତୁର୍ଦ୍ଧା ରୂପର ।
ତିନି ବୀଜ ମଧରେ ଯେ ହୋଇବ ପ୍ରକାଶ ।
ଆବର ବେନି ବୀଜ ତହିଂ ହେଲେ ଅପ୍ରକାଶ ।
ବୀଜ ଗୋପ୍ୟକରି ଚାରି ନାମ ହେଲେ ଉଭା ।
ଚତୁର୍ଦ୍ଧା ମୂର୍ତ୍ତିକି ତେଣୁ ଦିଶିଲା ଯେ ଶୋଭା ।
ପଞ୍ଚବୀଜ ମିଶି ସିନା ପଞ୍ଚାତ୍ମିକ ହେବ ।
ନାମ କହିଦେବା ଯେଣେ କରିଥାଅ ଠାବ ।
ସୁଦର୍ଶନ ଧ୍ରୀୟଂ ବୀଜ ଫ୍ଲୀୟଂ ଯେ ପରମ ।
ପଞ୍ଚବୀଜ ପଞ୍ଚଆତ୍ମା ଧ୍ରୀୟଂ ଶାମ ଦାମ ।
ଫ୍ଲୀଂ ବୀଜ ଅଟେ ଧର୍ମ ବ୍ରହ୍ମ ବୋଲି ଜାଣ ।
ପଞ୍ଚବୀଜ ମଧ୍ୟେଂ ନାମ ଷୋଡ଼ଶ ପ୍ରାମାଣ ।
ବତିଶ ଅକ୍ଷର ନାମ ନିରନ୍ତରେ ଘୋଷ ।
ଆଉ ଯେତେ ମନ୍ତ୍ରମାନ ଏଥୁଂ ପରକାଶ ।
ଯେ ନାମ ଗୁପତକରି ତିନି ନାମ କଲେ ।

ହରେ ରାମ କୃଷ୍ଣ ବୋଲି ପ୍ରଭୁ ଆଗ୍ୟାଂ ଦେଲେ ।
ହରେ ହରେ ଅଷ୍ଟନାମ ରାମ ନାମ ଚାରି ।
କୃଷ୍ଣ ନାମ ଚାରିଗୋଟି ଷୋଳ ନାମ ସରି ।
ଯେହ୍ନୁ ନାମ ଧରିଲେ ଯେ ସେହ୍ନୁ ନାମ ସରି ।
ସେହ୍ନୁ ନାମ ଖଣ୍ଡା ଜାଣ ଏହ୍ନୁ ଖାପ ପରି ।
ଯେକ ହରେ ବୋଇଲେ ବଳଭଦ୍ର ଜାଣ ।
ଦୁଇ ହରେ ହ୍ରୀଂ ଜାଣ ତିନି ନନ୍ଦ ପୁଣ ।
ଚତୁର୍ଥି ହରେ ଯେ ସାଧୁ ପଞ୍ଚ ହରେ ଶାମ ।
ଛଡ଼ ହରେ ଦାମ ବୋଲି ସପ୍ତ ହରେ ଧର୍ମ ।
ଅଷ୍ଟ ହରେ ବ୍ରହ୍ମ ଦେଖ ହରିନାମ ତୁଲ ।
ହରେ ହରେ ଅଷ୍ଟନାମ ନୋହେ ଯାର ମୂଲ ।
ହରେ ଅଷ୍ଟନାମରେ ଯେ ଅଷ୍ଟ ଗୋଟି ନାମ ।
କୃଷ୍ଣ ଚାରିନାମ ଯେବେ ବୁଝ ତୁ ହେ ସମ ।
ମହାମନ୍ତ୍ରେ କୃଷ୍ଣ ଯେହ୍ନୁ ଜଗନ୍ନାଥ ସେହି ।
ଦୁତୀଅ କୃଷ୍ଣର ନାମ କାମବୀଜ କହି ।
ତୃତୀୟ କୃଷ୍ଣଙ୍କୁ ଦୀନ ନାମ ବୋଲି ଧର ।
ଚତୁର୍ଥି କୃଷ୍ଣର ନାମ କାମ ଯେ ବିଚାର ।
ଯେମନ୍ତେ କୃଷ୍ଣର ନାମ ଯେକ ଯେକ ସାର ।
କାମବୀଜ ବୋଲି ଯାହା କ୍ଲୀୟଂ ଅକ୍ଷର ।
କୃଷ୍ଣ କୃଷ୍ଣ ଚାରିନାମ କହିଦେଲୁଂ ବାବୁ ।
ରାମ ଚାରି ନାମ ଶୁଣି ସୁଗତି ପାଇବୁ ।
ପ୍ରଥମେଣ ରାମ ନାମ ସୁଭଦ୍ରାଙ୍କୁ ଜାଣ ।
ଦୁତୀୟ ରାମକୁ ରମା ବୋଲିକରି ଗୁଣ ।
ତୃତୀୟ ରାମ ଯେ ଶ୍ରୀଂବୀଜ ବୋଲି ଲେଖ ।
ଚତୁର୍ଥି ରାମଟି କନ୍ଦ ମଧୁ ଚାରି ଦେଖ ।
ଯେମନ୍ତ ହୋଇଣ ଚାରି ରାମ ନାମ କହି ।
ଷୋଳ ନାମ ବୋଲି ସାଧୁସୁଗ୍ୟଂ ଜନ ଧ୍ୟାଇ ।
ଯେ ଭେଦ ନ ଜାଣି ନାମ ଭଜିବା ନିଷ୍ଫଳ ।
ଦାମ୍ଭିକ ଭାବରେ ସିନା ଲମ୍ଭିଥାଇଂ ମାଳ ।

ଅସଂଖ୍ୟ ଜପିଲେ ନାମ ନିଫଳ ଯେ ହୋଏ ।
ମେରୁ ଲଙ୍ଘିଗଲେ ମହାପାତେକ ଯେ ପାଏ ।
ନାମକୁ ନଚିହ୍ନି ମୂଢ଼େ ନାମ ଜପୁଥାନ୍ତି ।
ଗ୍ୟାଂଢ଼େ ମୁଂକାର ବହିଣ ବେଶ ହେଉଥାନ୍ତି ।
ମୋକ୍ଷ ହୋଇଲଇଂ ବୋଲି ବୋଲୁଥାନ୍ତି କେହୁ ।
ସୁଗ୍ୟାଂନୀ ନୁହନ୍ତି ମୂଢ଼ ଅଗ୍ୟାଂନଟି ସେହୁ ।
ନାମକୁ ଭେଦିଣ ମନ ଅମନେ ମିଶାଇଂ ।
ଦଣ୍ଡେ କ୍ଷଣେ ନିମିଷେଣ ଚିତ୍ତକୁ ରସାଇ ।
ପଞ୍ଚ ମହାପାତେକ ଯେ ଭସ୍ମଂ ହୋଇଯାଉ ।
ଶ୍ରୀକୃଷ୍ଣ ଚରଣେ ଭକ୍ତି ଗତିମୁକ୍ତି ହେଉ ।
ସୁମନ ସଂଗରେ ଯେକା ପ୍ରବେ ହୋଇଥିବ ।
ପ୍ରଣବ ମଧରେ ସିନା ସବୁଙ୍କରି ଠାବ ।
ମନଟି ମହେଶ ହରେ ପ୍ରଣବେ କୁଣ୍ଡଳୀ ।
ମହାମନ୍ତ୍ର ମଧେ ହରେ ରୂପ ଦେଖ ହଳୀ ।
ସୁମନ ଶ୍ରୀକୃଷ୍ଣ ଦଣ୍ଡ ପ୍ରଣବେ ମକାର ।
ଜଗନ୍ନାଥ କାମବୀଜ ଜ୍ୟୋତିବ୍ରହ୍ମ ଘର ।
ବିମନ ଉଂକାର ରାମ ନାମ ଭଦ୍ରା ଦେଖ ।
ପ୍ରଣବ ଅକ୍ଷର ତଳେ ବେଢ଼ି ନେଇ ରଖ ।
କୁମନ କର୍ଣ୍ଣ ସଂପୁଟ ଯୋଗମାୟା ଘର ।
ଅମନ ପ୍ରଣବେ ବିନ୍ଦୁ ବ୍ରହ୍ମ ଠାବ କର ।
ମହାମନ୍ତ୍ର ଗୋଟି ବାବୁ ଅତି ଯେ ଗହନ ।
ପଞ୍ଚଭୂତ ପଞ୍ଚନାମ ପଞ୍ଚବୀଜ ବ୍ରହ୍ମ ।
ପରାବୀଜ ହ୍ରୀଂ ହରେ କାମ କ୍ଲୀଂ କୃଷ୍ଣ ।
ରମା ବୋଲି ଶ୍ରୀଂ ବୀଜ ରାମନାମ ଜିଷ୍ଣ ।
ଶ୍ୟାମ ନାମ ସୁଦର୍ଶନ ବୀଜଟି ପ୍ରମାଣ ।
ଚତୁର୍ଦ୍ଧା ରୂପରେ ଆହାଲାଦ ଧର୍ମ ବ୍ରହ୍ମଂ ।
ପ୍ରଣବରେ ଅର୍ଦ୍ଧମାତ୍ରା ପରେ ବିନ୍ଦୁ ଯେହୁ ।
ପୂର୍ଣ୍ଣ ଧର୍ମବ୍ରହ୍ମଂ ପ୍ଲୀଂ ବୀଜ ବୋଲି ସେହୁ ।
ରାଧକୃଷ୍ଣ ବେନି ଯେକଆତ୍ମା ଗୋଟି ଦେଖ ।

ପ୍ରଣବେ ପଞ୍ଚଧା ରୂପ ବୀଜଯେ ଅଲେଖ ।
କାମବୀଜ ମଧ୍ୟେ ପଞ୍ଚବୀଜ ଠାବକର ।
ପଞ୍ଚବୀଜ ଚିହ୍ନିଣ ଯେ ମନ ଭ୍ରମ ହର ।
ଲ କାର ଯେ ପୃଥିବୀଟି ରାମ ଶ୍ରୀଂବୀଜ ।
ସୁଭଦ୍ରା ସେ ରମା କନ୍ଦ ମଧୁ କାମ ହେଜ ।
ଚାରିଗୋଟି ରାମ ନାମ ଯେହି ମନ୍ତ୍ର ହୋଇଂ ।
କକାରଟି ଜଗନ୍ନାଥ କାମବୀଜ ସେହି ।
ଦୀନ କାମ ନାମ ବୋଲି ମହାମନ୍ତ୍ରଂ ଯେହି ।
ଦଣ୍ଡକ ଯେ କ୍ଲୀଂବୀଜ ଆପ ବୋଲି କହି ।
କାମବୀଜେ ଏକାର ଯେ ତେଜ ସେହି ଦେଖ ।
ବଳଦେବ ପରା ନନ୍ଦ ସାଧୁ ଶାମ ଲେଖ ।
ଦାମ ଆଦିକରି ଧର୍ମବ୍ରହ୍ମଂ ଅଷ୍ଟନାମ ।
ମହାମନ୍ତ୍ର ହରେ ନାମ ଅଷ୍ଟଗୋଟି ବିହ୍ନ ।
ଶାମ ଦାମ ଅର୍ଦ୍ଧମାତ୍ରା ସୁଦ୍ରଶେନ ସେହୁ ।
ବିନ୍ଦୁଗୋଟି ପ୍ଲୀଂବୀଜ ଧର୍ମ ବ୍ରହ୍ମ ଯେହୁ ।
ପଞ୍ଚବୀଜ ପଞ୍ଚୁଭୂତ ମହାମନ୍ତ୍ର ଆଦି ।
କାମବୀଜ ଦେହରେ ବିଜଯେ ଯନ୍ତ୍ର ଭେଦି ।
ରମା ବୀଜ ଦେହରେ ସକାର ଯେହୁ ଦେଖ ।
ମହାମନ୍ତ୍ର ରାମ ନାମ ସୁଭଦ୍ରା ପ୍ରତ୍ୟକ୍ଷ ।
ରମା ବୀଜେ ରକାର ଯେ ରୂପ ଜଗନ୍ନାଥ ।
ମହାମନ୍ତ୍ରେ ଦୀନକାମ ନାମ ଗୋଟି ଥିତ ।
ରମା ବୀଜେ ଇକାର ଯେ ରୂପ ବଳଦେବ ।
ମହାମନ୍ତ୍ରେ ହରେ ହ୍ଲୀଂ ନନ୍ଦ ସାଧୁ ଭାବ ।
ଅର୍ଦ୍ଧମାତ୍ରା ଶାମ ଦାମ ବିନ୍ଦୁ ଧର୍ମ ବ୍ରହ୍ମ ।
ରମା ବୀଜ ପଞ୍ଚମାତ୍ରା ପଞ୍ଚଆତ୍ମା ଶୁଣ ।
ସକାର ଯେ ରମା ବୀଜ ଗୋପୀନାଥ ଦେଖ ।
ତଥିପାଶେ ରମା ବୀଜ ପୁନରପି ଲେଖ ।
ସକାର ତଳେ ଉଂକାର ମାତ୍ରା କାମବୀଜ ।
ବଲ୍ଲଭାୟ ପାଶେ କାମବୀଜ ତେଜ ପୁଞ୍ଜ ।

ରମା ବୀଜେ ଇକାର ମାତ୍ରା ଯେ ପରାବୀଜ ।
ଜନ ବେନିକ୍ଷର ଠାବେ ନେଇ ପରା ସ୍ରିଜ ।
ସ୍ୱାହା ଶିର ପରେ ଶିଖିପୁଚ୍ଛ ଚୂଡ଼ା ଜାଣ ।
ମନ୍ତ୍ରରାଜ ଷୋଳକ୍ଷର କହିଦେଲୁଂ ଶୁଣ ।
ସୁଦର୍ଶନ ବୀଜ ମଧ୍ୟେ ଧକାର ସେ ଯେହୁ ।
ରାମନାମ ରମାବୀଜ ମଧୁକନ୍ଦ ସେହୁ ।
ରକାର ମାତ୍ରା ଯେ କୃଷ୍ଣ କାମବୀଜ ଜାଣ ।
ଦୀନକାମ ବୋଲିଣ ସେ ନାମଟି ବଖାଣ ।
ଇକାର ମାତ୍ରାଟି ହରେ ହ୍ଲୀଂ ନନ୍ଦ ସାଧୁ ।
ନାଦ ବିନ୍ଦୁ ଶାମ ଦାମ ଧର୍ମ ବ୍ରହ୍ମ ବିନ୍ଦୁ ।
ଧକାର ଯେ ଶ୍ଲୀଂ ଗୋପୀ ପାଶେ ରମାବୀଜ ।
ରକାର ଅନଙ୍ଗ ବୀଜ କଲ୍ୟା ପ୍ରାୟ ହେଜ ।
ଇକାର ଯେ ହ୍ଲୀ ବୀଜ ଜନ ମଧ୍ୟେ ଲେଖ ।
ନାଦବିନ୍ଦୁ ସ୍ୱାହା ଚୂଡ଼ା ମନ୍ତ୍ରରାଜ ଦେଖ ।
ମହାମନ୍ତ୍ର ମନ୍ତ୍ରରାଜ ଧ୍ଲୀଂ ବୀଜ ଦେହେ ।
ବୁଝାଇ କହିଲୁ ତୁମ୍ଭ ଭକ୍ତିଭାବ ସ୍ନେହେ ।
ପ୍ରଣବେ ତାରକ ଚୂଡ଼ା ସାକାର ଫ୍ଲୀଂ ବୀଜେ ।
ରମାବୀଜ ଅଟେ ସେହୁ ରାମ ନାମ ସାଜେ ।
କନ୍ଦମଧୁ ସୁଭଦ୍ରାଟି ବୋଲି ତାକୁ ଜାଣ ।
ପ୍ରଣବେ ଦଣ୍ଡକ କୃଷ୍ଣ ଦୀନକାମ ପୁଣ ।
ପରମ ବୀଜେ ରକାର ବୋଲି ଯାକୁ ଲେଖ ।
ଯେଥୁ ଅନ୍ତେରେଣ ଶୁଣ କହିଦେବା ଦେଖ ।
ପ୍ରଣବେ କୁଣ୍ଡଳୀ ହରେ ବଳଦେବ ନନ୍ଦ ।
କନ୍ଦ ବୋଲିଣ ଯେ ତାକୁ ମହାମନ୍ତ୍ର ଛନ୍ଦ ।
ପରମ ବୀଜରେଟି ଇକାର ମାତ୍ରା ହରେ ।
ବଳଦେବ ନନ୍ଦ କନ୍ଦ ମହାମନ୍ତ୍ରେ ଧରେ ।
ନାଦବିନ୍ଦୁ ଶାମ ଦାମ ଧର୍ମ ବ୍ରହ୍ମ ଘେନି ।
ମନ୍ତ୍ରରାଜ କହିଦେବା ରଖ ମନେ ଗୁଣି ।
ପକାର ଅକ୍ଷର ରମାବୀଜ ବେନି ମଧ୍ୟେ ।

ଗୋପୀ ବେନିକ୍ଷର ଛନ୍ତି ନିରାକାର ବନ୍ଧେ ।
ପ୍ରଣବେ ପ୍ରଥମ ତଳପୁଡ଼ା ନାମ ତାର ।
ମହାମନ୍ତ୍ର ମନ୍ତ୍ରରାଜ ସେହୁ ଠାବ କର ।
ପ୍ରଣବେ ଦଣ୍ଡକ ପରଂ ବୀଜରେ ରକାର ।
କାମବୀଜ ବେନି ମଧ୍ୟେ ବିଜେ ଚାରିକ୍ଷର ।
ବଲ୍ଲଭାୟ ଧ୍ୟାନ ଆତ୍ମା ଧରିଣ ମୁରାରି ।
ପରମବୀଜରେ ବିଜେ ରାଧା କୋଳେ ଧରି ।
ପ୍ରଣବେ କୁଣ୍ଡଳୀ ସ୍ଲୀଂ ବୀଜରେ ଇକାର ।
ପରାବୀଜ ବେନି ମଧ୍ୟେ ଜନ ନାମ ସାର ।
ଯେହି ବୀଜେ ଅର୍ଦ୍ଧମାତ୍ରା ବିନ୍ଦୁ ତଥିପର ।
ମହାମନ୍ତ୍ର ମନ୍ତ୍ରରାଜ ରୂପ କଳେବର ।
ସ୍ୱାହା ବେନିକ୍ଷର ବେନିଠାବେ ଠାବକର ।
ମୟୂର ପୁଚ୍ଛ ଚୂଡ଼ାଶିରେ ସ୍ୱୟେଂ ବେଣୁଧର ।
ଜୀବଆତ୍ମା ପରମଆତ୍ମା ସେହି ଭଗବାନ ।
ବୀଜରେ ବିଜୟେ କରିଛନ୍ତି ଜନାର୍ଦ୍ଦନ ।
ଅକ୍ଷର ସ୍ୱରୂପେ ଅଙ୍ଗ ମଧ୍ୟେ ଛନ୍ତି ପୂରି ।
ବୀଜବ୍ରହ୍ମ ଏକତ୍ୱ ସେ ନୁହନ୍ତି ଯେ ବାରି ।
ବୀଜକୁ ଚିହ୍ନିଲେ କୃଷ୍ଣ ଭକ୍ତିଭାବ ଦିଶେ ।
ପ୍ରେମ ସୁଧାନିଧି କେତେ ଯୁଗରେ ପ୍ରକାଶେ ।
ଜନ୍ମର ସୁଫଳ ଧନ୍ୟ ଧନ୍ୟ ତାକୁ ବୋଲି ।
ପୂର୍ବ ଜନ୍ମ ପୁଣ୍ୟ ସିନା ଏହା ମୁଁ ପାଇଲି ।
ଯେହିରୂପେ ବୀଜ ଚିହ୍ନ ହେତୁରେ ଧରିବ ।
ରାହାସେ ପଶିଣ ରାସଲୀଳା ଆରମ୍ଭିବ ।
ଜ୍ୟୋତିବ୍ରହ୍ମଂ ଯେକାକ୍ଷର ମହାମନ୍ତ୍ରଘର ।
ପରାବୀଜ ଶେଷଦେବ ପାର୍ବତୀର ବର ।
ଯତ୍ନେ ବୋଲି ପରାବୀଜ ବୋଲି ତାହା ଜାଣ ।
କଉଂ ମାତ୍ରା ବର୍ଗ ଯେକାକ୍ଷର ଯେ ପ୍ରମାଣ ।
ହରିନାମ ଅଷ୍ଟଗୋଟି ଯେହୁ ଜାତ କଲେ ।
ହରିନାମ ବୋଲି ତେଣୁ ଅଷ୍ଟନାମ ହେଲେ ।

ହରିନାମ ସୁମରିଲେ ହରିବ କଲ୍ମଷ ।
ହେତୁମାର୍ଗେ ଧର ରାମ ମୁକୁନ୍ଦ ଯେ ଦାସ ।
ଏକାକ୍ଷର ବ୍ରହ୍ମରେ ଯେ ମହାମନ୍ତ୍ର ବାସ ।
ଗୁରୁ ସେବା କଲେ ସିନା ବୁଝିପାରେ ଶିଷ ।
ହରି ନାମ ବିନୁଂ ଯହୁଂ ଅନ୍ୟ ଯେ ନ ଦିଶେ ।
ରାମ କୃଷ୍ଣ ବେନି ନାମ କେଉଂଠାବେ ବସେ ।
ବତିଶ ଅକ୍ଷର ମହାମନ୍ତ୍ର ବୁଝିଥିଲେ ।
ସୁଗ୍ୟାଂନୀ ବିବେକୀ ଭକ୍ତ ବୋଲିବେଟି ଭଲେ ।
ଯେହି କ୍ଷର ସାକ୍ଷାନ୍ତରେ ଅଟଇ ଓଂକାର ।
ଏହି କ୍ଷର ଅଟନ୍ତି ଯେ ଉମା ମହେଶ୍ୱର ।
ଅଷ୍ଟଧାତୁ ଅଷ୍ଟନାମ ଧାରଣେ ଏ ମୋକ୍ଷ ।
କଣ୍ଠରେ ଘଣ୍ଟିକା ସ୍ଥାନ ଆକାର ପ୍ରତକ୍ଷ ।
ଦଣ୍ଡକ ମକାର ପରେ ମହାଦେବ ନାମ ।
ବର୍ଣ୍ଣକ କହନ୍ତି ସେହି ଅମ୍ବିକା ମୂଳେଶ ।
ସ୍ୱାଦୁ ଗରୁ ଥାଇ ସେହି ଝରୁଥାଇଂ ଝର ।
ଶୁଖିଗଲେ ଟଳେ ଚନ୍ଦ୍ର ଯେ ଶେଖର ।
ଫୁଲ ବାସନାରେ ଯେ ଭ୍ରମରା ମହାମତ ।
ପଞ୍ଚବର୍ଣ୍ଣ ଧରିଣ ଯେ ପୁଷ୍ପଗୋଟି ଜାତ ।
ଏ ପୁଷ୍ପ ଚିହ୍ନିଲେ ସିନା ବାସନା ଫୁଟିବ ।
ନାମବ୍ରହ୍ମ ଜ୍ୟୋତିବ୍ରହ୍ମ ରୂପ ପ୍ରକାଶିବ ।
ଯେକାକ୍ଷର ବ୍ରହ୍ମ ଯେହି ଜ୍ୟୋତି ବ୍ରହ୍ମରୂପ ।
ଯେଥିପରେ ଆଲୋକିତ ଅଲେଖ ସୋରୂପ ।
ଅନାମୟ ବ୍ରହ୍ମ ମାହାଶୂନ୍ୟ ଅଣାକାର ।
ଶବଦ ଶୁଭଇ ଯହିଂ ଦ୍ୱାଦଶ ପ୍ରକାର ।
ସର୍ବ ବିଶ୍ରମିଲା ସ୍ଥାନ ସନାତନ ବଟ ।
ସେ ବଟ ଚିହ୍ନିଲେ ହତ ହେବଟି ସଙ୍କଟ ।
ପଛେ ଯେ କହିବା ସେହୁ ସ୍ଥାନର ମହିମା ।
ଯେବେ ଯେ କହିବା ଗୀତା ଭାଗବତ ସୀମା ।
ଷୋଳନାମ ବତିଶ ଅକ୍ଷର ତହିଂ ଘର ।

ଯାହାକୁ ଜନମ କଲେ ଅନାଦି ଈଶ୍ୱର ।
ଜ୍ୟୋତିରାନନ୍ଦଟି ସେହି ବ୍ରହ୍ମ ଯେକାକ୍ଷର ।
ଯୋଗସିଦ୍ଧ ଜନଙ୍କର ଧ୍ୟାନ ସେ ଠାବର ।
ସେଠାରୁ ଜନମ ହେଲା ଓଁକାର ଅକ୍ଷର ।
ଚଉଦ ବ୍ରହ୍ମାଣ୍ଡ ମଧ୍ୟେ ଅଟଇଟି ସାର ।
ଆଠ ଛତ୍ର ଥାନେ ହର ଡମ୍ବରୁ ବାଜଇ ।
ହରେ ବୋଲି ନାମବ୍ରହ୍ମଂ ଯେକାକ୍ଷର କହିଁ ।
ରାମକୃଷ୍ଣ ବେନି ନାମ ନିଲେପ ସେଠାରେ ।
ପଶଇ ମିଶଇ ନାମ ପ୍ରକାଶଇ ହରେ ।
କହିବା ତୁମ୍ଭକୁ ଫେଇ ଗୁପତେ ରଖିବ ।
ସୁସ୍ୱାଦ ଅମୃତ ପାନ ଆପଣେ ଭକ୍ଷିବ ।
ଦାମ୍ଭିକ ନାସ୍ତିକ ଲୋକ କପଟୀର ଆଗେ ।
ଫେଡ଼ି ନ କହିବ ଯେହ୍ନୁ ବ୍ରହ୍ମବିଦ୍ୟା ଭୋଗେ ।
ପଣ୍ଡିତ ଲୋକକୁ ଯେହା କେଭେଂ ନ କହିବ ।
ପଣ୍ଡିତାଇ ଅର୍ଥମାନ ତାକୁ ବୁଝାଇବ ।
ଗୀତାତତ୍ତ୍ୱ ବ୍ରହ୍ମଗ୍ୟାଂନ ଅଟଇ ଗୁପତ ।
ପଣ୍ଡିତ ନ ବୁଝେ ଏହା ବୁଝେ ଅନ୍ୟମତ ।
ଶବ୍ଦ ଅର୍ଥ ଜାଣେ ସେହ୍ନୁ ନ ଜାଣେ ଭଗତି ।
ତେଣୁ ଗୁପ୍ତକରି ତାକୁ ଗ୍ୟାଂନୀ ନ ବୋଲନ୍ତି ।
ବାଦ ବିଦ୍ୟା ଦମ୍ଭ ଗର୍ଭ ପୂରିଥାଇଂ ଦେହେ ।
ମୁଂକାର ଯେ ଅହଂକାର ପ୍ରେମଭକ୍ତି ନୋହେ ।
ଯେଣୁକରି ପଣ୍ଡିତକୁ କେଭେଂ ନ କହିବ ।
ସିଦ୍ଧ ଅର୍ଥ ଅନ୍ୟମତ କହି ବୁଝାଇବ ।
କହିଲେ ଶାପ ପାଇବ ନଷ୍ଟ ଭ୍ରଷ୍ଟ ହେବ ।
ଅଚ୍ୟୁତ ବଚନ ବାର ଜଣ ଘେନିଥିବ ।
ସିଂହାସନ ପରେ ଦେଖ ବଳଭଦ୍ର ଯେହ୍ନୁ ।
ମହାମନ୍ତ୍ର ମଧରେଟି ଆଦ୍ୟ ହରେ ସେହ୍ନୁ ।
ପରାବୀଜ ବୋଲି ତାକୁ ପ୍ରଚରେ ସେ ଯେଣୁ ।
ଯେଉଂ ପରା ହ୍ଲୁଂ ବୋଲି ବୀଜ ସେଟି ତେଣୁ ।

ବିରାଟ ରୂପଟି ସେହୁ ଅର୍ଦ୍ଧମାତ୍ରା ତଳ ।
ବିନ୍ଦୁରୂପ ଅକାରଣେ ଆପେ ମହେଶ୍ୱର ।
ହରେ ବୋଲନ୍ତେଣ ଯେ ହରଇ କୋଟି ତମ ।
ଉତ୍ପତି ହୋଇଣ ସ୍ଥିତି ହରେ ଅଷ୍ଟନାମ ।
ପଞ୍ଚ ବୀଜ ମଧ୍ୟରେ ଆକାରମାତ୍ରା ଯେହୁ ।
ବଳଭଦ୍ର ପରାବୀଜ ହରେ ନାମ ସେହୁ ।
ହ କାର ମ କାର ଯେ କ କାର ଆଦି ଦେଖ ।
ଧକାର ପକାର ରମାବୀଜ ଅଙ୍ଗ ଲେଖ ।
କ୍ଲିଂ ବୀଜ ରାମନାମ ସୁଭଦ୍ରା ଯେ ସେହି ।
ନନ୍ଦ ସାଧୁ ବୋଲି ନାମ ଗୋଡ଼ଶରେ ଯେହି ।
ପ୍ରଣବରେ ଦଣ୍ଡକ ଯେ ପଞ୍ଚବୀଜ ମଧ୍ୟ ।
ର କାର ସେ କାମବୀଜ କୃଷ୍ଣ ସେ ପ୍ରସିଦ୍ଧ ।
ଜଗନ୍ନାଥ ବୀନକାମ ସେହିଠାରେ ସ୍ଥିତି ।
କୃଷ୍ଣ ବୋଲି ଚାରି ବୀଜ ପଞ୍ଚବୀଜେ ମୂର୍ତ୍ତି ।
ପ୍ରଣବକୁ ଆଦି କର ପଞ୍ଚବୀଜ ଘେନି ।
ଅର୍ଦ୍ଧମାତ୍ରା ବିନ୍ଦୁ ବ୍ରହ୍ମଂ ଜୀବ ପର୍ମ ବେନି ।
ଶାମ ବାମ ଧର୍ମ ବ୍ରହ୍ମଂ ସ୍ୱାହା ନାଦବିନ୍ଦୁ ।
ନମ ଯେହୁ ନମସ୍କାର ବେନି ବୀଜେ ଛନ୍ଦୁ ।
ଛନ୍ଦାଛନ୍ଦି ହୋଇଣ ଯେ ରାଧାକୃଷ୍ଣ ବେନି ।
ଜାଣନ୍ତି ସୁଗ୍ୟଂବିବେକ ସନକାଦି ମୁନି ।
ବ୍ରହ୍ମ ଯେକାକ୍ଷର ଜ୍ୟୋତି ବ୍ରହ୍ମର ଯେ ଘର ।
ଶ୍ୱେତ ପୀତ ଲୋହିତ ଯେ ଶାମ ଠାବକର ।
ନୟନ ମଧ୍ୟରେ ଜ୍ୟୋତି ହୋଇଛି ପ୍ରକାଶ ।
ଜ୍ୟୋତିର ଦ୍ରଶନେ ନାଶ ହୋଇବ କଲ୍ମଷ ।
ଦଣ୍ଡେ କ୍ଷଣେ ବସାଇଣ ଲୟେ ସୂତ୍ର ଧରି ।
ଦୂରିତ ବିନାଶ ଜ୍ୟୋତି ଦ୍ରଶନ ଯେ ହରି ।
ଶୁଣି ରାମଦାସ ଉଠି ଗଡ଼ଘାଲି ଶୋଇଂ ।
ବିନୟ ହୋଇଣ ପୁଣ ପୁଣ ପଚାରଇ ।
ଏକାକ୍ଷର ଅଣାକ୍ଷର ଧୁନି ଅନହତ ।

ଆଗ୍ୟାଂ ଯେ କରିଣ ଫେଡ଼ ଯେଥିର ତଦନ୍ତ ।
ଶୁଣରେ ମୁକୁନ୍ଦ ଦାସ କହିଦେଲୁଂ ଯେତେ ।
ଗୁପତ କରିଣ ବାବୁ ରଖ ଦୃଢ଼ଚିତ୍ତେ ।
ମହାମନ୍ତ୍ର ମନ୍ତ୍ରରାଜ ପଞ୍ଚଭୂତ୍ର ଘେନି ।
ତ୍ରିଗୁଣ ସହିତେ ପଞ୍ଚଜୀବ ପର୍ମ ବେନି ।
ବୀଜକୁ ଭେଦିଲେ ବ୍ରହ୍ମଦରଶୀଟି କହି ।
ଜ୍ୟୋତିକି ଚିହ୍ନିଲେ ତତ୍ୱଗ୍ୟାଂନୀଟି ବୋଲାଇ ।
ଧ୍ୱନିକି ଚିହ୍ନିଲେ ସର୍ବ ପାପ ହୋଯେ ନାଶ ।
ଶବଦ ଭେଦିଲେ ନାଶ ହୁଅଇ କଲୁଷ ।
ନିଶବଦେ ମିଶିଲେ ଯେ ନିରାଳମ୍ୱ ହୋଯେ ।
ଭକ୍ତ ବା ନଭକ୍ତ ଭବଭୟ କ୍ଷୟ ଯାଏ ।
ପୂରିଲା କୁମ୍ଭର ପ୍ରାୟେ ବିଗ୍ରହ ଅଟଇ ।
ବାଞ୍ଛାକଲେ ବାଞ୍ଛାଫଳ ଚରଣେ ଖଟାଇ ।
ଅନାମିକା ଭଜିଲେ ଯେ ଅନହତ ବାଜେ ।
ଯିବା ଆସିବା ପଥରେ ଅମଙ୍ଗଳ ସାଜେ ।
ସ୍ୱର୍ଗ ଯେ ନରକ ବେନି ନାହିଂ ତାର ଇଚ୍ଛା ।
ଯହିଂ ଥିଲେ ଥାୟେ କାହିଂ ନକରଇ ବାଞ୍ଛା ।
ମଳା ଜୀଇଲା ଯେକତ ମନେ ନାହିଂ ଭ୍ରାନ୍ତି ।
ମଦନମୋହନ ରୂପ ଆଗେ ଦିଶୁଥାନ୍ତି ।
ନାମତତ୍ୱ ଚିହ୍ନିଲେ ଯେ ଚିତ୍ତହେବ ସ୍ଥିର ।
ପୂରିଲା କୁମ୍ଭର ପ୍ରାୟେ ମନ ବୁଦ୍ଧି ଧୀର ।
ବଙ୍କନାଳ ଭିତରେ ଚିତ୍ତକୁ ନେଇ ରଖ ।
ବାଇଶି ଧ୍ୱନିକି ଭେଦ ବିଜୟେ ଅଲେଖ ।
ଭଗାରି ପଞ୍ଚଶ ମାର ମନ ଥିର ହେଉ ।
ଅନାଦିକି ଇୟେକର ବାଞ୍ଛା ଫଳ ହେଉ ।
ଶୁଣ ହେ ଗୋପାଳ ସୁତ ହେତୁଦେଇ ଶୁଣ ।
ପଞ୍ଚଭୂତ ପଞ୍ଚତତ୍ୱ ପଞ୍ଚବୀଜ ପୁଣ ।
ବୁଝାଇ କହିଲୁ ହେତୁକରି ଥାଅ ଧରି ।
ପାଇଲେ ପରମ ତତ୍ୱ ପୂର୍ବଭାଗ୍ୟ ସ୍ମରି ।

ଯେବେ ଯେ କହିବା ପଞ୍ଚ ଆତ୍ମାତତ୍ତ୍ୱ ଗତି ।
ଆତ୍ମାକୁ ଚିହ୍ନିଲେ ସିନା ଲଭିବୁ ସୁଗତି ।
ଆତ୍ମାକୁ ନଚିହ୍ନି ତୀର୍ଥ ବ୍ରତ ଯେ ନିଷ୍ଫଳ ।
ପୁରାଣ ଶାସ୍ତ୍ର ଯେ କାବ୍ୟ ପଢ଼ିବା ବିଫଳ ।
ଅନାବୃଷ୍ଟି କଲେ ଯେହ୍ନେ କୃଷି ନାଶ ଯାଏ ।
ଆତ୍ମା ନଚିହ୍ନିଲେ ଗ୍ୟାଂନ ଧ୍ୟାନ କ୍ଷୟ ହୋଏ ।
ଦୟା କ୍ଷମା ହେଲେ ଯେ ଜଞ୍ଜାଳ ନାଶ ହେବ ।
ଜନ୍ମେ ଜନ୍ମେ ଶ୍ରୀକୃଷ୍ଣ ଚରଣେ ଚିତ୍ତଥିବ ।
ପଞ୍ଚଆତ୍ମା ମହାମନ୍ତ୍ର ମଧ୍ୟେ ଠାବକର ।
ପ୍ରଣବ ଅକ୍ଷର ସିନା ସବୁଙ୍କରି ଘର ।
ଅଷ୍ଟ ଧାତୁରେ ପିଣ୍ଡ ଗୋଟି ଯେ ସୁନ୍ଦର ।
ପରଚେ ହୋଇଲେ ପୂରି ଉଛୁଳିବ ନୀର ।
ସରୋବର ମଧ୍ୟେ ବାରିଥିଲେ ସମସରି ।
ବିକଶିବ ପଦ୍ମବନ ବସିବ ଭ୍ରମରୀ ।
ମଧୁପାନେ ହୋଇ ମତ ଉଚ୍ଚାରିବ ଧ୍ୱନି ।
ସେ ଧ୍ୱନିକି ଭାବିଣ ଯେ ତରିଗଲେ ମୁନି ।
ସେ ଧ୍ୱନିରେ ମନଗୋଟି ବୁଡ଼ାଇଣ ରଖ ।
ଶରଣ ପଶଇ ଦୀନ ଅଚ୍ୟୁତ ନିରେଖ ।

ଇତିଶ୍ରୀ ଶୂନ୍ୟ ସଂହିତାୟାଂ ଗୁରୁଶିଷ୍ୟ ବୋଧନେ ମହାମନ୍ତ୍ରଂ
ପ୍ରଚ୍ଛନ୍ନଂ କଥନେ ପଞ୍ଚବୀଜ ପଞ୍ଚାତ୍ମିକ ପ୍ରଭେଦ
ନାମ ଦ୍ୱିତୀୟୋ ଅଧ୍ୟାୟ ।

## ତୃତୀୟ ଅଧ୍ୟାୟ

ପୁଣି ପଚାରିଲେ ରାମ ମୁକୁନ୍ଦ ମୁରାରି ।
କେମନ୍ତେ ସୃଷ୍ଟି ଭିଆଣ କଲେ ଦେବ ହରି ।
ମହାମନ୍ତ୍ର ମଧ୍ୟେ ଏହା କହିବା ଗୋସାଇଂ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ କାହୁଁ ହୋଇ ।

ଶୁଣସି ହୋ ବ୍ରଜସୁତ ଅପୂର୍ବ କାହାଣୀ ।
କୋଟିକେ ଗୋଟିଏ ସିନା ଜାଣେ ଏହା ପୁଣି ।
ପୂର୍ବଜନ୍ମେ କୃଷ୍ଣ ସଙ୍ଗେ ରାସେ ଯେଣୁ ଥିଲ ।
ଏ ଜନ୍ମରେ ଯେଣୁ ସିନା ଏକଥା ପୁଚ୍ଛାକଲ ।
କହିବା ପୂର୍ବ କାହାଣୀ ଶ୍ରୀକୃଷ୍ଣ ଚରିତ ।
ନାଭିରୁ ଜନମକଲେ କମଳେ ଅଚ୍ୟୁତ ।
ତଥିମଧ୍ୟେ ବ୍ରହ୍ମାଙ୍କୁ ଯେ ଜାତକଲେ ହରି ।
ତେଣୁକରି ହରିନାମ ଜଗତରେ ପୂରି ।
ଜଳର ଭିତରେ ଥଳ ଭିଆଇବା ପାଇଂ ।
ବେନି କର୍ଣ୍ଣ ଗୁହାରୁ ଦଇତ ଜାତ ହୋଇ ।
ମାରିଣ ତାହାଙ୍କୁ ମେଦାମେଦି ନାମ ଦେଲେ ।
ଯେଥିପରେ ଚାରିଖାନି ଭିଆଅ ବୋଇଲେ ।
ଟଳଟଳ ହୁଅନ୍ତେ ଅଷ୍ଟଦିଗ ସଙ୍କକରି ।
ଆପଣା ନାମରେ ଅଷ୍ଟକିଳା ପୋତି ହରି ।
ହରେ ଅଷ୍ଟନାମ ତେଣୁ ହୋଇଲେକ ସାର ।
ସେ ପୁଣ ଜନମ ହେଲେ ଶୂନ୍ୟ ନିରାକାର ।
ଓଂକାର ସୋରୂପେ ତହିଂ ବିଜେ କଲେ ହରି ।
ବ୍ରହ୍ମାଙ୍କୁ ଥାପିଲେ ଅଧୋଭୁବନର ପୁରୀ ।
ତେବେହେଂ ସେ ଟଳଟଳ ହୋଇଲାକ ଯେଣୁ ।
ରାମକୃଷ୍ଣ ଚାରି ଚାରି ନାମ କଲେ ତେଣୁ ।
ଅର୍ଦ୍ଧମାତ୍ରା ସୁଦ୍ରଶନେ ବିନ୍ଦୁ ବ୍ରହ୍ମ ହେଲେ ।
ଯେମନ୍ତେ ପ୍ରଣବ ରୂପେ ଆପେ ବିଜେକଲେ ।
ଋକ୍ ସାମ ଯଜୁ ଅଥର୍ବ ଚାରି ବେଦ କାଢ଼ି ।
ବ୍ରହ୍ମା କରେ ଦେଲେ ପୃଥିକର ଯେହା ପଢ଼ି ।
ଷୋଳନାମ ବତିଶ ଅକ୍ଷର ଦେଲେ କହି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଯହିଂ ।
ଓଂକାର ବାଣ୍ଟିଲେ ହରି ପାଞ୍ଚଭାଗ କରି ।
ତାରକ ଦଣ୍ଡକ ଯେ କୁଣ୍ଡଳୀ ତିନିସରି ।
ଅକ୍ଷର ସ୍ୱରୂପେ ଥାନ ଧରିଣ ସେ ହରି ।

ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଆବୋରି ।
ହରେ ଅଷ୍ଟନାମ ବୃକ୍ଷ ପତଙ୍ଗ ସୋରୂପ ।
ଯେଣୁ ବୃକ୍ଷ ପର୍ବତ ଧରଣେ ବଳଦକ୍ଷ ।
ରାମନାମ ଚାରି କୀଟ ଧରିବାକୁ ଲକ୍ଷ ।
କୃଷ୍ଣ ଚାରି ନାମ ଜଳ କଲ୍ଲୋଳ ପ୍ରତକ୍ଷ ।
ଭାରାଭାର ଉଶ୍ୱାସ ନିମନ୍ତେ ନାମ ରୂପ ।
ନାରାୟେଣ ନରହରି ଅନନ୍ତ ଯେ ଲେଖ ।
କୋଟି କୋଟି ଯୁଗ ଗଲେ ନଟଳଇ ବଳ ।
କେତେ କେତେ ଜନ୍ମଲୀଳା ଯେହୁ ଭୂମି ଥଳ ।
ମଚ୍ଛ କଚ୍ଛ ବାରାହ ଯେ ନରସିଂଘ ଘେନି ।
ବାମନ ଯେ ପର୍ଶୁରାମ ରାମକୃଷ୍ଣ ପୁଣି ।
ଯେମନ୍ତେଣ ଅବତାର ଲୀଳାମାନ ରଂଚି ।
ସତ୍ୟ ଯେ ତ୍ରିତ୍ରେୟା ଦ୍ୱାପର କଳିହିଁଂଚି ।
ଚଇତନ ସ୍ୱରୂପେ ପୁଣ ହୋଇଲେ ପ୍ରକାଶ ।
କଳି ତମ ବିନାଶନେ ସଙ୍ଗେ ଶ୍ରୀନିବାସ ।
ମହାମନ୍ତ୍ରଂ ସଂସାରକୁ ଯାଚିଣ ଯେ ଦେଲେ ।
ଅଧମ ଉଧାର କରି ଲଗାଇଲେ କୂଳେ ।
ଚାରିଖାନି ମହାମନ୍ତ୍ରେ ବୁଝାଇ କହିଲୁ ।
ଶ୍ରୀଗୁରୁ ଭଣ୍ଡାରୁ ଆଣି ଯେତେକ ବଇଲୁଂ ।
ମହାମନ୍ତ୍ର ମଧ୍ୟେ ପଞ୍ଚୁ ଆତ୍ମା ଧାତୁ ଆଦି ।
ସୁଗ୍ୟାଂନୀ ବିବେକ ସନ୍ଥ ପାରନ୍ତି ସେ ଭେଦି ।
ଯେହି ପଞ୍ଚୁ ଆତ୍ମା ମହାମନ୍ତ୍ରେ ଚିହ୍ନ ଭଜ ।
ଭଜିଲେ ସୁଗତି ହେବ ଦମ୍ଭ ଭ୍ରାନ୍ତି ତେଜ ।
ଗ୍ୟାଂନଆତ୍ମା ଧ୍ୟାନଆତ୍ମା ତତ୍ତ୍ୱଆତ୍ମା ଯେହୁ ।
ଜୀବଆତ୍ମା ପରମାତ୍ମା ବୋଲାବନ୍ତି ଯେହୁ ।
କଉଂ ନାମ ଗ୍ୟାଂନଆତ୍ମା ଧ୍ୟାନଆତ୍ମା ତତ୍ତ୍ୱ ।
ଜୀବଆତ୍ମା ପରମାତ୍ମାରେ କେହୁ ଥିତ ।
ଓଂକାରକୁ ଆଦି ପଞ୍ଚତତ୍ତ୍ୱରେ ମିଶିବ ।
ତେବେ ସିନା ଅଂଗୁ ପାପ କଲ୍ମଷ ଖସିବ ।

ତତ୍ତ୍ୱନାମ ଶିଷ୍ୟ ଭକ୍ତି ହେବ ସମତୁଲ ।
ବାର ମାତ୍ର ସୁନା ପ୍ରାୟେ ହୋଇବ ଯେ ମୂଲ ।
ମହାମନ୍ତ୍ର ଚିହ୍ନିଲେ ଯେ ଜନମ ସୁଫଳ ।
ଲୋହ ସଙ୍ଗେ ଭସ୍ମ ହୋୟେ ଯେସନେ ଜମ୍ୱାଳ ।
ସେହିମତି ଅଙ୍ଗୁ ପାପ ଭସ୍ମଂ ହୋଇ ଯାୟେ ।
ଇହଲୋକେ ପୁଣ୍ୟ ଗତି ମଲେ ସ୍ୱର୍ଗ ପାୟେ ।
ଯେକଥା ଅଟଇ ଧ୍ରୁବ କେ କରିବ ଆନ ।
ଶ୍ରୀମୁଖରେ ଆଗ୍ୟାଂ ମୋତେ ଦିଲେ ଭଗବାନ ।
ଶୁଣ ହୋ ମୁକୁନ୍ଦ ଦାସ ପଞ୍ଚ ଆତ୍ମା ଯେହୁ ।
ନାରାୟେଣ ସୋୟଂ ବ୍ରହ୍ମା ବୋଲାବନ୍ତି ସେହୁ ।
ଗ୍ୟାଂନଆତ୍ମା ଧ୍ୟାନଆତ୍ମା ତତ୍ତ୍ୱଆତ୍ମା ତିନି ।
ଜୀବଆତ୍ମା ପରମାତ୍ମା ଯେହୁ ପଞ୍ଚ ଘେନି ।
ଯେମନ୍ତେ ଯେ ପଞ୍ଚଆତ୍ମା ଘଟ ମଧ୍ୟେ ବାସ ।
ପଞ୍ଚବୀଜ ମଧ୍ୟେରେକ ଏହାଙ୍କରି ବାସ ।
ଯେଣୁକରି ବୀଜବ୍ରହ୍ମ ବୋଲାବନ୍ତି ହରି ।
ଜୀବଆତ୍ମା ରାଧେ ପରାମାତ୍ମାଟି ମୁରାରି ।
ଅଧେ ରାଧା ଅଧେ କୃଷ୍ଣ ଅର୍ଦ୍ଧ ଆତ୍ମା ଯେକ ।
ଅର୍ଦ୍ଧ ଅର୍ଦ୍ଧ ବୋଲି ଯେହା ଜାଣନ୍ତି ବିବେକ ।
ଯୁଗ୍ମ ହୋଇ ଯୁଗଳ ସେ ବୋଲାବନ୍ତି ଯେଣୁ ।
ଦିଅର୍ଦ୍ଧେ ପରମବ୍ରହ୍ମ ସ୍ୱୟଂ ବ୍ରହ୍ମ ତେଣୁ ।
ବୀଜ ଯେହ୍ନେ ବେନିଫାଳ ମଧ୍ୟେ ଶସ୍ୟ ଥାଇଂ ।
ବେନି ଫାଳ ମଧ୍ୟରୁ ଯେ ଅଙ୍କୁର ଆସଇ ।
ଯୁଗଳ ସେ ରାଧାକୃଷ୍ଣ ଯେକ ଅଙ୍ଗ ଯେଣୁ ।
ଯୁଗଳ ମନ୍ତ୍ର ଭଜନ କରିବାକ ତେଣୁ ।
ବୀଜ ଯେହ୍ନୁ ଆତ୍ମା ସେହ୍ନୁ ରୂପ ବର୍ଣ୍ଣ ଚିହ୍ନ ।
ପଞ୍ଚବୀଜ ଦେହରେ ସେ ହୋଇଛନ୍ତି ଲୀନ ।
ଓଁକାର ଠାବରୁ ପଞ୍ଚବୀଜ ଆଦିକରି ।
ବଳଦେବ ସୁଭଦ୍ରା ସେ ଜଗନ୍ନାଥ ସରି ।
ସୁଦର୍ଶନ ପରମ ଯେ ପଞ୍ଚବୀଜ ହୋଇ ।

ପଞ୍ଚଆତ୍ମା ଯେହି ସିନା ଚିହ୍ନ ହେତୁଦେଇ ।
ର-କାର ହ-କାର ଯେ ଲ-କାର ଶ-କାରକୁ ।
କ କାର ପ କାର ଶ୍ୱରୀ ହରିଦ୍ରା ବର୍ଣ୍ଣକୁ ।
ଗ୍ୟାଂନଆତ୍ମା ବୋଲି ଯେବେ ଧ୍ୟାନଆତ୍ମା ଯାହା ।
ଦେଖାଇ ବୁଝଇଦେବା ଠାବକର ତାହା ।
ଦଣ୍ଡକ ରକାର ଚିହ୍ନ ପରମ ଆତ୍ମାରେ ।
କ କାର ର କାର ବେନି ତିନି ବୀଜ ଧରେ ।
ଗ୍ୟାଂନଆତ୍ମା ଯେହି ନୀଳମଣିର ସୋରୂପ ।
କୁଣ୍ଡଳୀ ଆକାର ପଞ୍ଚବୀଜେ ଉପଲଖ୍ୟ ।
ତତ୍ତ୍ୱଆତ୍ମା ଯେହି ଶେତବର୍ଣ୍ଣ ଖୀର ପ୍ରାଏ ।
ଖୀର ନୀର ଦୁଇ ମିଶି ବାରଣ ଯେ ନୋହେ ।
ଧ୍ୟାନକୁ ଧାରିଲେ ଗ୍ୟାଂନ ପ୍ରକାଶର ଆସି ।
ତେଣୁକରି ଧ୍ୟାନଆତ୍ମା ଶ୍ୱେତବର୍ଣ୍ଣ ଦିଶି ।
ଜୀବଆତ୍ମା କଥା ଗୋଟି ବୋଇଲେ ନସରେ ।
ନାନାରୂପ ପରେ ଜୀବ ଆତ୍ମାଧ୍ୟାନ ଧରେ ।
ଓଂକାରକୁ ଆଦିକରି ପଞ୍ଚବୀଜ ଦେଖ ।
ଅର୍ଦ୍ଧଚନ୍ଦ୍ର ଉଇଂଳା ପ୍ରାଯେକ ଉପଲକ୍ଷ ।
ଜୀବଆତ୍ମା ଗୋଟି ଏହି ଅରୁଣ ସ୍ୱରୂପ ।
ରକତଟି ଯେହି ଆତ୍ମା ଅଙ୍ଗରେ ଯେ ଲୋପ୍ୟ ।
ଶୋଣିତ ଶୁଖିଲେ ଅଙ୍ଗୁ ଶୋଭା ପଳାଇବ ।
ଭାଙ୍ଗିଯିବ ଖେଡ଼ଘର ଗେଲ ଯେ ଗରବ ।
ପରମ ଆତ୍ମା ଯେ ବିନ୍ଦୁ ଥାଏ ତଥିପରେ ।
ଓଂକାରକୁ ଆଦି କରି ଯେ ପଞ୍ଚବୀଜରେ ।
ପଞ୍ଚବୀଜ ମିଶିଣ ଯେ ପରଂବ୍ରହ୍ମ ନାମ ।
ପଞ୍ଚଆତ୍ମା ଯେହେର୍ଣ୍ଣେକ ଥିତି ସର୍ବ ଧାମ ।
ପିଣ୍ଡ ମଧ୍ୟେ ଜୀବ ବର୍ଣ୍ଣ ଆତ୍ମାକୁ ଚିହ୍ନିଲେ ।
ସଦ୍‌ଗୁରୁ ସଙ୍ଗୀ ସୁଗ୍ୟାଂ ବୋଲି ବାକି ଭଲେ ।
ଯେ ଭେଦ ନଜାଣି ଗୁରୁ ଶିଷ୍ୟ ଯେବେ କରେ ।
ଗୁରୁ ଶିଷ୍ୟ ବସନ୍ତି ଯେ ପଥର ନାବରେ ।

ପୂର୍ବଜନ୍ମେ ତୁମ୍ଭ ଆମ୍ଭ ଗୁରୁ ଶିଷ୍ୟ ଯେଣୁ ।
ଫୁରିଲା ପରମପଦ କହିଦେଲୁଂ ତେଣୁ ।
ତୁମ୍ଭେ ଆମ୍ଭର ଯେ ଆତ୍ମା ଦ୍ୱାଦଶ ଗୋପାଳ ।
ଯେହି ଦେହ ଧରି ତୁମ୍ଭେ ହୋଇଥିବ ମେଳ ।
କରତାଳି ବଜାଇଣ କୃଷ୍ଣଲୀଳା କର ।
ଅଚ୍ୟୁତ ବଚନ ତୁମ୍ଭେ ବାରଜଣ ଧର ।
ହରେ ରାମକୃଷ୍ଣ ମନ୍ତ୍ର ନିରବଧି ଘୋଷ ।
ଶ୍ରୀକୃଷ୍ଣ ଚରଣ ବିନୁ ଆନ ନାହିଁ ଆଶ ।
ବାଇ ପ୍ରାୟେ ହୋଇଣ ଯେ ମୁହିଁ ଲେଖିଗଲି ।
ଅନ୍ତର୍ଯ୍ୟାମୀ ନାଥ ଆଜ୍ଞାଂ ଯେଣୁ ପାଇଥିଲି ।
ଶ୍ରୀକୃଷ୍ଣ ଚରଣେ ମୋର ନିରବଧି ଆଶ ।
ଶରଣ ମାଗଇଂ ମୂଢ଼ ଅଚ୍ୟୁତ ଯେ ଦାସ ।

ଇତିଶ୍ରୀ ଶୂନ୍ୟ ସଂହିତାୟା ଗୁରୁଶିଷ୍ୟ ବୋଧନେ ନାମତତ୍ତ୍ୱ କଥନେ
ପଞ୍ଚତତ୍ତ୍ୱ ପଞ୍ଚଅତ୍ମା ଭେଦ ପ୍ରକାଶନେ ନାମ ତୃତୀୟୋ ଅଧ୍ୟାୟଃ ॥

## ଚତୁର୍ଥ ଅଧ୍ୟାୟ

ଅଷ୍ଟାଙ୍ଗ ଯୋଗ ବିଚାର କହିଦେବା ଶୁଣ ।
ଆଠଗୋଟି ସ୍ଥାନ ଏହୁ ଶରୀରେ ସନ୍ଧାନ ।
ମୁଖ ନାସା ଚକ୍ଷୁ କର୍ଣ୍ଣ ଯେହି ଚାରି ଦ୍ୱାର ।
ବେନି ବେନି ହୋଇ ଆଠ ଅଟେ ନିରାଧାର ।
ଏହି ଥାନମାନଙ୍କୁ ଅଷ୍ଟାଙ୍ଗ ସେ କହି ।
ସିଧିରସ୍ତୁ ଚାରିଅକ୍ଷର ସେହି ଥାନେ ରହି ।
ଚାରି ବେଦ ବେଦମାତ ଗାଇତ୍ରୀକି ଘେନି ।
ପରରଙ୍କ ଶଣ ଶବଦ ଅଷ୍ଟାକ୍ଷର ପୁଣି ।
ଯପ ତପ ତର ରହ ଯେହୁ ଅଷ୍ଟାକ୍ଷର ।
ଅଜପା ଅବନା ମିଶି ବସେ ଅଷ୍ଟାଙ୍ଗର ।
ତଚ୍ଛବିତୁ ବରେଣୀୟଂ ଭର୍ଗୋଦେବ କହି ।
ସ୍ୟଧିମହୀ ବୋଲି ପୁଣ ତହିଁ ପାଶେ ଥାଇ ।

ଧିୟେ ୟେନ ବୋଲି ପୁଣ ପ୍ରଚୋଦୟାତରେ ।
ଚବିଶକ୍ଷର ଗାଇତ୍ରୀ ଅପାଦେଶ ଚରେ ।
ପର ରଜ ଶଶ ବଦ ମିଶିଣ ବତିଶ ।
ଚାରି ପାଦ ଧରି ଗାଈ ଅଷ୍ଟାଙ୍ଗରେ ବାସ ।
ଋକ୍ ଯଜୁ ସାମ ଅଥର୍ବ ଚାରିବେଦ ଘେନି ।
ଅଷ୍ଟସ୍ଥାନେ ବସିଛନ୍ତି ଅକ୍ଷର ଯେ ପୁଣି ।
ପର ଚକ୍ଷୁ ରଜ ନାସା ଶଶ ମୁଖରେଣ ।
ବଦ ବେନି ବସିଛଇ ବେନି ଯେ ଶ୍ରବଣ ।
ଅରରଅ ତଛବିତୁ ବାମ ଯେ ଚକ୍ଷୁରେ ।
ଆଦିଦିଆ ବରଣୀୟ ବାମ କର୍ଣ୍ଣଠାରେ ।
ଇଶଶଇ ଭର୍ଗୋଦେବ ଉପର ଯେ ଓଷ୍ଠ ।
ଉରରଉ ସ୍ୱଧିମହୀ ଦକ୍ଷ ନାସାପୁଟ ।
ଏବବଏ ଧିୟୋୟେନ ଦକ୍ଷ ଶ୍ରବଣରେ ।
ଓଢଢଓ ପ୍ରଚୋ ଘେନି ବାମ ନାସାଠାରେ ।
ଅଂଶଶଅ ଦୟୋ ଦେଖ ତଳର ଯେ ଓଷ୍ଠ ।
ଅପପଅ ଦକ୍ଷିଣ ଚକ୍ଷୁର ମଧ୍ୟ ତଟ ।
ତ୍ରିପଦ ଚବିଶକ୍ଷର ଅବନା ଯେ ଆଠ ।
ମିଶିଣ ବତିଶକ୍ଷର ଚତୁପାଦେ ଭେଟ ।
ପୁଚ୍ଛବାଟେ ଗାଈ ଝାମ୍ପି ଆହାର ଯେ ଖାଇ ।
ମୁଖବାଟେ ଆହାର ନେଇଣ ବଳକଇ ।
ଯେ ଗାବକୁ ଚେତନା ଯେ ରଖିଣ ଅଛଇ ।
ଯେହି ମନ ସିନା ଗାବ ରୂପ ବୋଲି କହି ।
ଜ୍ୟୋତି ପଘାରେ ବନ୍ଧନ ହୋଇଥାଇଂ ଧୀରେ ।
ଆହାର ଭଖଇ ଗାଈ ଛଡ଼ ଯେ ମୁଖରେ ।
ଛଡ଼ ଗୋଟି ଚକ୍ର ଛଡ଼ ମୁଖ ବୋଲି ଜାଣ ।
ସମୀର ସୋରୂପେ ଗାଈ ଯାଏ ଆସେ ପୁଣ ।
ଆଗମେ ନିଗମେ ଗାଈ ଝସାଇଣ ପଶେ ।
ବେଦମାତା ଗାଇତ୍ରିରୀ ନିଗମ ଯେ ଘୋଷେ ।
ଦାର ଆଙ୍ଗୁଳ ଯେ ବାର ଯୁଗ ବୋଲି ଜାଣ ।

ଭିତରେ ଫେରିଣ ପଶେ ସେହି ବାର ଯୁଣ ।
ବାର ଯୁଣ ବଳିଗଲେ ପଳାଇବ ଗାଈ ।
ଭାଙ୍ଗିବ ଗୋହାଳ ଗୋଟି ଖୋଜିଲେ ନ ପାଇ ।
ଯେ ଭେଦ ଜାଣିମେ ସିନା ବଇଷ୍ଣବ ଜନ ।
ଦକ୍ଷିଣ କନ୍ଧେ ପଇତା ଧରିବେ ସେ ଗୁଣ ।
ଅଷ୍ଟାଙ୍ଗକୁ ଧରିଣ ଯେ ଅଜପାକୁ ଜପ ।
ଦାରୁଣ ନିଷ୍ଠୁର ଯମ ନ ଲାଗିବ ଧାପ ।
ଯେଣୁକରି ତୁମ୍ଭ ଆଗେ ଫିଟାଇ କହିଲୁଂ ।
ଶ୍ରୀଗୁରୁ ଭଣ୍ଡାର ଧନ ଯେତେକ ବଇଲୁ ।
ଯେବେ ଯେ କହିବା ଶୁଣ ପଞ୍ଚବୀଜ ଗୁଣ ।
ହ୍ରୀଂ ଶ୍ରୀଂ କ୍ଲୀଂ ଧ୍ଲୀଂ ପ୍ଲୀଂ ପଞ୍ଚଗୁଣ ।
ଯେ ପଞ୍ଚବୀଜଙ୍କ ନାମ ଶୁଣ ହୋ ଚିତୋଇ ।
ହ୍ରୀଂ ବୀଜର ଯେ ଶକ୍ତି ଶୁଣ ମନଦେଇ ।
ହ୍ରୀଂ ବୀଜ ଦେହରେ ଯେ ଚନ୍ଦ୍ରାବଳୀ ପରା ।
ପ୍ରେମରୂପା ମାୟା ସେହି ବଳଭଦ୍ର ହରା ।
ସହଚରୀ ଦୂତୀ ସେହି ମୂରତୀ ସେ ଜାଣ ।
ଆକାର ଯେ ଶେଷଦେବ ଯେତେ ଅଂଶ ପୁଣ ।
ଶ୍ଲୀଂ ବୀଜଶକ୍ତି ବଛ ମନଦେଇ ଶୁଣ ।
ସୁଭଦ୍ରା ସେ ଲକ୍ଷ୍ମୀ ବୋଲି ଲ କାରଟି ଘେନ ।
ପୃଥିବୀ ଯେ ରାମ ନାମ ଲଯାବୀଜ ସେହି ।
ଆତ୍ମାରାମ ଗ୍ୟାଂନଆତ୍ମା ଶକ୍ତି ବୋଲି କହି ।
କାମବୀଜର ଯେ ଯେକୁ ଆରେକ ମହିମା ।
କ୍ଲୀଂ ବୀଜ ବୋଲିଣ ସେ ଶୁଦ୍ଧଭକ୍ତି ସୀମା ।
କିଶୋର ବୟେସେ କୃଷ୍ଣ ଜଗନ୍ନାଥ ସେହି ।
ରସାନନ୍ଦ ସୋରୂପ ସେ ଆପେ ଭାବଗ୍ରାହୀ ।
ଧ୍ଲୀ ସୁଦର୍ଶନ, ଶାମ ମହାବିଷ୍ଣୁ ନାମ ।
ଧକାର ଯେ ପ୍ରେମଭକ୍ତି ଚିଦାନନ୍ଦ ନାମ ।
ଅର୍ଦ୍ଧମାତ୍ରା ପରାତ୍ମନ ବୋଲିଟି ତାହାକୁ ।
ଧର୍ମବୀଜ ବୋଲି ଧ୍ଲୀଂ ବୋଲନ୍ତି ଯାହାକୁ ।

ହ୍ଲୀଂ ବୀଜ ମହିମା ଯେ କହିଦେବା ଶୁଣ ।
ବ୍ରହ୍ମ ବୋଲି ବିନ୍ଦୁ ବ୍ରହ୍ମ ପ୍ରକାରଟି ନାମ ।
ପରମାନନ୍ଦ ସେ ପରାପରରେ ନିବାସ ।
ସିଂହାସନ ସେହି ଅଟେ ଆପେ ଶ୍ରୀନିବାସ ।
ଯେମନ୍ତେ ଯେ ପଞ୍ଚବୀଜ ନାମ ଯେକେ ଯେକ ।
ବୀଜବ୍ରହ୍ମଂ ବୋଲି ତେଣୁ ବୋଲି ଗ୍ୟାଂନୀଲୋକ ।
ଯେବେ ଯେ କହିବା ଏକାକ୍ଷର ବ୍ରହ୍ମ କଥା ।
ଯାହାର ଶ୍ରବଣେ ଯେ ଖଣ୍ଡଇ ସର୍ବବ୍ୟଥା ।
ହ କାର ଅକ୍ଷର ବେଢ଼ି ଷଟମାତ୍ରା ଲେଖ ।
ମଧରେ ବିଜଏ ଜ୍ୟୋତିବ୍ରହ୍ମ ଯେ ପ୍ରତ୍ୟକ୍ଷ ।
ଶ୍ୱେତ ପୀତ ବର୍ଣ୍ଣ ଯେ ଲୋହିତ କୁଙ୍କୁମହିଂ ।
ମଧରେ ହକାର ରୂପେ ବିଜେ ଭାବଗ୍ରାହୀ ।
ଯାହା ନାମ ସୁମରିଲେ କୋଟି ପାପ କ୍ଷୟେ ।
ଜୋତିରାନନ୍ଦ ବୋଲି ନାମ ସେ ବୋଲାଏ ।
ବିଶାଶୟେ କୋଟି କାନ୍ତି ଯାର ଅଙ୍ଗେ ଥିତି ।
କାନ୍ତିର ମଧରେ ବିଷ୍ଣୁ ଯେକ ଯେକ ଛନ୍ତି ।
କୋଟି କୋଟି ବ୍ରହ୍ମାଣ୍ଡ ଯା ଲୋମମୂଳେ ଛନ୍ତି ।
ପରଂବ୍ରହ୍ମ ଯେକାକ୍ଷର ଯେଣୁ ବୋଲାବନ୍ତି ।
ରାଧା ପ୍ରେମ ଲମଟେ ଶ୍ରୀକୃଷ୍ଣ ହରେ ରୂପ ।
ରେହରୂପ କାରଣେ ଆପେଟି ସ୍ୱରୂପ ।
ସପ୍ତ ଗୋଟି ମାତ୍ରା ବେଢ଼ି ହକାରକୁ ଘେନି ।
ଅଷ୍ଟଗୋଟି ମାତ୍ରା ହୋୟେ ରକାରରେ ପୁଣି ।
ହରିନାମ ବିନା ତହିଂ ରାମକୃଷ୍ଣ ବେନି ।
ନ ଦିଶନ୍ତି ହରିନାମ ମଧେ ନାମ ଘେନି ।
ଅଷ୍ଟଗୋଟି ହରେ ତହିଂ ବଳଦେବ ପ୍ରଭା ।
ର କାର ମିଳିତ ହୋଇଂ ଜ୍ୟୋତିମଧେ ଉଭା ।
ହର ହରେ ବୋଲି ନାମ ଶୁଭୁଥାଉ ଯେଣୁ ।
ରାମକୃଷ୍ଣ କହଂଠାବେ ନ ଦିଶନ୍ତି ତେଣୁ ।
ହର ଶବଦରୁ ହୋଏ ନାମ ପରକାଶ ।

ହ କାର ଭିତରେ ମିଶି ନୋହିଲେ ଯେ ଦୃଶ ।
ହ କାର ବର୍ଣ୍ଣରେ ଯେ ରକାର ମିଶିଗଲା ।
ହର ନାମ ତହୁଂ ହରା ନାମ ବୋଲାଇଲା ।
ହରା ବୋଲନ୍ତେଣ ସର୍ବ ପାପମାନ ହରେ ।
ତେଣୁକରି ହରା ନାମ ଗୋଟିକ ଯେ ଧରେ ।
ହରେ ବୋଲନ୍ତେଣ ଯେ କଳୁଷ ନାଶ ହୋୟେ ।
ହରେ ବୋଲନ୍ତେଣ ସର୍ବ ଦୁର୍ଗତି ଯେ କ୍ଷୟେ ।
ହରି ହର ବୋଲନ୍ତେ ଯେ ହରେ ସର୍ବ କ୍ଳେଶ ।
ମନ୍ତ୍ର ମାତ୍ରା ମିଶାଇଣ ଯେକାକ୍ଷର ଘୋଷ ।
ଜ୍ୟୋତିବ୍ରହ୍ମ ଉଦୟେ ହୋଅଇ ଦୃଷ୍ଟି ଆଗେ ।
ଦୁରିତ ଧଂସନ ହୋଇ ନିର୍ମଳ ଦଶଦିଗେ ।
ମହାମନ୍ତ୍ର ମନ୍ତ୍ରରାଜ ଚିହ୍ନି କରି ଭଜ ।
ଶ୍ରୀଗୁରୁଙ୍କ ଉପଦେଶ ମନ ମଧ୍ୟେ ମଜ ।
ଯେମନ୍ତେ ସାଧନା କୋଟି ମଧ୍ୟେ ଯେକ ଦେଖ ।
ଅଷ୍ଟ ଧାତୁ ମଧ୍ୟେ ତାକୁ ସୁବର୍ଣ୍ଣରେ ଲେଖ ।
ଏବେ ଯେ କହିବା ମହାମନ୍ତ୍ରଂ ମନ୍ତ୍ରରାଜ ।
ପ୍ରଣବକୁ ମିଶାଇଣ ଯେକାକ୍ଷରେ ବୁଝ ।
ହରେ ବେନିକ୍ଷର ଯେହ୍ନୁ ପ୍ରଣବେ କୁଣ୍ଡଳୀ
ଯେକାକ୍ଷରେ ହରେ ଦେଖ ସିଂଘାସନେ ହଳୀ ।
ମହାମନ୍ତ୍ରେ ନନ୍ଦସାଧୁ ବୋଲିଣଇଂ ନାମ ।
ମନ୍ତ୍ରରାଜେ ଇନ ବେନି ପରାବୀଜେ ସମ ।
ପଞ୍ଚଭୂତେ ତେଜ ସେହି ପଞ୍ଚଆତ୍ମା ତତ୍ତ୍ୱ ।
ଯେକାକ୍ଷରେ କୃଷ୍ଣ ଯେହ୍ନୁ ପ୍ରଣବେ ଦଣ୍ଡକ ।
ନୀଳାଞ୍ଚଳେ ଜଗନ୍ନାଥ ମହାମନ୍ତ୍ରେ ବିନ ।
ଧ୍ୟାନଆତ୍ମା ସେହି ମନ୍ତ୍ରଂ ମନ୍ତ୍ରରେ ଯେ ଚିହ୍ନ ।
ବଳଭାୟ କାମବୀଜ ବେନି ତତ୍ତ୍ୱ ଦେଖ ।
ହରେ ବୋଲନ୍ତେଣ ଯେକାକ୍ଷରେ ଉପଲକ୍ଷ ।
ପ୍ରଣବେ ତାରକ ଯେହ୍ନୁ ଯେକାକ୍ଷରେ ହରି ।
ସୁଭଦ୍ରା ରୂପ ସେ ରାମ କନ୍ଦ ମଧୁକ୍ଷରୀ ।

ଗ୍ୟାଂନଆତ୍ମା ସେହି ଦେଖ ଗୋପୀ ବେନି କ୍ଷର ।
ରମାବୀଜ ବେନିଗୋଟି ସେହିଠାରେ ଘର ।
ହରି ହର ବୋଲନ୍ତେ ପ୍ରଣବେ ନାଦବିନ୍ଦୁ ।
ମହାମନ୍ତ୍ରେ ଶାମ ଦାମ ଧର୍ମ ବ୍ରହ୍ମଂ ଛନ୍ଦୁ ।
କାମ ବ୍ରହ୍ମଂ ଜୀବଆତ୍ମା ପରମଆତ୍ମା ସେହି ।
ମନ୍ତ୍ରରାଜେ ସ୍ୱାହା ବେନି କ୍ଷର ବୋଲି କହି ।
ଶିଖିପୁଚ୍ଛ ଚୂଡ଼ା ସେହି ଯେକାକ୍ଷରେ ଲେଖ ।
ନାମବ୍ରହ୍ମଂ ଜ୍ୟୋତିବ୍ରହ୍ମଂ ବୋଲି ପ୍ରତଛ ।
ଅଷହିଂ ମାତ୍ରାରେ ଯେକାକ୍ଷରକୁ ଭଜିବ ।
ଜ୍ୟୋତିବ୍ରହ୍ମ ଦ୍ରଶନରେ ଦୁରିତ ହରିବ ।
ମହାମନ୍ତ୍ର ମନ୍ତ୍ରରାଜ ସର୍ବଗ୍ୟାଂନ ମୂଳ ।
ନାମବ୍ରହ୍ମ ଭଜିଲେ ଯେ ନାଶହୋଏ କାଳ ।
ମନ୍ତ୍ରରାଜ ବିନୁଂ ଆନଗତି ଯେ ନୋହଇ ।
ମହାମନ୍ତ୍ର ଭଜିଲେ ଯେ ପାପ କ୍ଷୟେ ହୋଇଂ ।
ମନ୍ତ୍ରରାଜ ଭଜ ଆଦ୍ୟେ ରମାବୀଜେ ଦେଇ ।
ମଧ୍ୟେ ଦଶାକ୍ଷର ମନ୍ତ୍ର ବସାଇବ ନେଇ ।
ତଦପରେ ତ୍ରୟ ବୀଜ ସ୍ୱାହାଠାବେ ରଖ ।
ଯେମନ୍ତେ ଷୋଡ଼ଶାକ୍ଷର ମନ୍ତ୍ରରାଜ ଲେଖ ।
ଶୁଣିଣ ବ୍ରଜବାଳକେ ଚରଣେ ଶୁତିଲେ ।
ନିସ୍ତରିଲୁ ନିସ୍ତରିଲୁ ବୋଲିଣ ବୋଇଲେ ।
ପୁଣ ପଚାରିଲେ ପଞ୍ଚ ବରଜ ତନଇ ।
ସନ୍ଧିକଥା ଫେଡ଼ ପ୍ରଭୁ ତତ୍ତ୍ୱଗ୍ୟାଂନ ଫେଇ ।
ଶତଅଷ୍ଟୋତ୍ତର ନାମ ସହସ୍ରେକ ଅଛି ।
ସହସ୍ର ବଦନେ ଶେଷ ନପାଇଲେ ଲେଖି ।
ନନ୍ଦ କନ୍ଦ ଆଦି କରି କିମ୍ପା ହେଲେ ସାର ।
କେମନ୍ତେ ଜନ୍ମିଲେ ନାମ କେବଣ ଠାବର ।
ବୁଝାଇ କହିଲେ ମନୁ ଧନ୍ଦ ଫିଟିଯିବ ।
ତୁମ୍ଭ ଶ୍ରୀଚରଣେ ମନ ନିରବଧି ଥିବ ।

ଶିଷ୍ୟବାଣୀ ଶୁଣି ଗୁରୁ ବୋଲନ୍ତି ବଚନ ।
ଯାହା ପଚାରିଲ ବାବୁ ଗୁପତ ଗହନ ।
ସ୍ୱର୍ଗ ମଞ୍ଚ ପାତାଳରେ ନାମଗୋଟି ସାର ।
ଗୋପୀ ବୋଲି ବେନି ଗୋଟି ମନ୍ତ୍ରରାଜ ଧର ।
ଗୋପୀଙ୍କି ଶ୍ରୀଂ ନାମ ବୋଲି ରମା ବୋଲି ବୀଜ ।
ଗୋପୀନାମ ଗୋଟି ଯେ ଅଟଇ ମହାତେଜ ।
ଗୋପୀ ନାମ ଲକ୍ଷ୍ମୀଙ୍କର ଗୋପୀ ନାଗେଶ୍ୱର ।
ଗୋପୀ ନାମ ଚମ୍ପା ଗୋପୀ ସ୍ଥାବର କନ୍ଦର୍ପ ।
ଗୋପୀ ଶିରୀରମା ପ୍ରେମା ରୁକ୍ମଣୀ ସାବିତ୍ରୀ ।
ଗୋପୀ ଯେ ସୁବର୍ଣ୍ଣ ମଧ୍ୟେ ସାରାସାର ପତ୍ନି ।
ଗୋପୀ ଯେ ଧାନ୍ୟାଦି ଫଳ ଗ୍ୟାଂନଆତ୍ମା ଜାଣ ।
ଗୋପୀ ଯେ ପାତାଳପୁର ତ୍ରିଦଶ ନିର୍ଭାଣ ।
ସର୍ବନାମ ତୁଳକରି ବାଛିଲେ ଶ୍ରୀହରି ।
ତୁଳନ୍ତେ ସକଳ ନାମ ଗୋପୀ ସଙ୍ଗେ ସର୍ତି ।
ନୋହିଲା ସେ ଯେଣୁ ଗୋପୀ ନାମକୁ ଯେ ସରି ।
ବାଛି ଗୋପୀ ବେନିକ୍ଷର ଥାପିଲେ ଶ୍ରୀହର୍ରି ।
ଗୋପୀନାମ ସପ୍ତସ୍ୱରେ ପୀତାମ୍ବର ନାମ ।
ଗୋପୀ ନାମ ଗୋଟି ସର୍ବ ଦିଗେ ସରିସମ ।
ଏଣୁକରି ଗୋପୀନାମ ହୋଇଲା ଯେ ସାର ।
ଜନ ବେନିକ୍ଷର ନାମ ମନ୍ତ୍ରରାଜ ଘର ।
ଜନ ନାମ ହ୍ଲୀଂ ବୀଜ ପରା ତେଜ ଜନ ।
ଜନ ବୈଶ୍ୟ ଜନ ଧାତୁ ଶ୍ୱେତବର୍ଣ୍ଣ ପୁଣ ।
ଜନ ରୁଦ୍ର ଜନ ଦିଗ ଜନ ପ୍ରଣମ୍ୟାରି ।
ଜନ ନାମ ହରେ ଜନ ନାମ ଗାୟତିରୀ ।
ଜନ ଯେ ସାବିତ୍ରୀ ଜନ ମଳୟ ଚନ୍ଦନ ।
ଜନ ସ୍ୱର୍ଗ ଜନ ଗାବ ସମ୍ବର୍ତ୍ତ ମେଘ ପୁଣ ।
ଜନ ସର୍ବ ଦିଗେ ପୂର୍ଣ୍ଣ ଜନ ଯୋଗେଶ୍ୱର ।
ଜନ ଯେ ଶ୍ରୀରାମ ଭ୍ରଥ ଜନ ସିନ୍ଧୁ କ୍ଷୀର ।

ଜନ ସେ ଖଡ୍‌ଗାଦି ଶସ୍ତ୍ର ଜନ ସର୍ବଠାରେ ।
ଯେଣୁକରି ଜନ ନାମ ମୁକୁନ୍ଦ ମୁରାରେ ।
ଯେଣୁ ଜନ ବେନିକ୍ଷର ବାନ୍ଧିଣ ଯେ ହରି ।
ମନ୍ତ୍ରରାଜ ମଧରେ ଥୋଇଲେ ଯତ୍ନକରି ।
ବଲ୍ଲଭାୟ ଚାରିକ୍ଷର ମହିମା ଯେ ଶୁଣ ।
କୃଷ୍ଣ ଶ୍ୟାମ ଜଗନ୍ନାଥ ନୀଳମଣି ଗଣ ।
ବାରାନିଧି ମଧରେ ଯେ ଜଳନିଧି ସେହି ।
ନିଶିଦିବା ମଧରେ ଯେ ଦିବସ ବୋଲାଇ ।
ବଲ୍ଲଭାୟ ଆପେ କୃଷ୍ଣ ଭୃଗୁ ବଲ୍ଲଭାୟ ।
ବଲ୍ଲଭାୟ ବ୍ରହ୍ମ କୀଟ ପ୍ରଭା ବଲ୍ଲଭାୟ ।
ସଦାଚାର କର୍ମ ବଲ୍ଲଭାୟ ବୋଲି ଜାଣ ।
ବଲ୍ଲଭାୟ ବଂଶୀ ଧ୍ୱନି ସର୍ବ ବଲ୍ଲଭାୟେଣ ।
ବଲ୍ଲଭାୟ ନାମକୁ ତୁଳିଲେ ସମକରି
ତେଣୁ କରି ଶ୍ୟାମଳ ବର୍ଣ୍ଣ ସେ ହେଲେ ହରି ।
ମନ୍ତ୍ରରାଜ ମଧରେ ଯେ ଗୁପତେ ରଖିଲେ ।
ବଲ୍ଲଭାୟ ତେଣୁକରି ନାମ ବୋଲାଇଲେ ।
ସ୍ୱାହା ବେନିକ୍ଷର ବେନି ଜନଙ୍କ ଅଧର ।
କୃଷ୍ଣର ମସ୍ତକେ ଶିଖିପୁଚ୍ଛ ଚୂଡ଼ାସାର ।
ବୀଜରୁ କ୍ଷଣେହେଂ କୃଷ୍ଣ ନୋହଂନ୍ତି ବାହାର ।
ଦଶାକ୍ଷର ପରେ ତେଣୁ ତିନି ବୀଜ ଧର ।
ମଧେ ଦଶାକ୍ଷର ରଖି ବଜାବନ୍ତି ବେଣୁ ।
ପ୍ରେମ ପୁଲକିତେ ସୁଧା ଉଛୁଳଇ ତେଣୁ ।
ରାଧିକା ଅଧରେ କୃଷ୍ଣ ଅଧର ମିଶାଇ ।
ଶ୍ରୀକୃଷ୍ଣ ଚରଣେ ରାଧା ବୀଜ ମଧେ ଥାଇଂ ।
ତେଣୁକରି ଅଧରରୁ ସୁଧାରସ ଜାଣ ।
ପାଦପଦ୍ମୁଂ ସୁଧାଶ୍ରବେ ଭକ୍ତ କରେ ପାନ ।
ନନ୍ଦ କନ୍ଦ ଦୀନଧର୍ମ ନାମ ମନ୍ତ୍ରରାଜ ।
ତୁଳଣା ଯେଥିକି କେହି ହୋଇବ ପହିଜ ।
ଶ୍ରୀ ଚୈତନ୍ୟ ପ୍ରଭୁ ଆପେ ଜଗତ ଠାକୁର ।

ମନେ ନିମଜ୍ଜିଣ ମନ୍ତ୍ର କଲେ ସେ ପ୍ରଚାର ।
ଜଗନ୍ନାଥ ବଳଭଦ୍ର ଭଦ୍ରା ସୁଭଦ୍ରସେନ ।
ମହାମନ୍ତ୍ରଂ ମନ୍ତ୍ରରାଜ ଆପେ ଦାରୁବ୍ରହ୍ମଂ ।
ଅଇଶ୍ଵର୍ଯ୍ୟ ମାଧୁର୍ଯ୍ୟ ଘେନି ସିଂହାସନ ପରେ ।
ବିଜୟେ କରିଣ ଛତିଚତୁର୍ଥା ରୂପରେ ।
କଳ୍ପବଟ ମୂଳେ ନୀଳସୁନ୍ଦର ଗିରିରେ ।
ଦାରୁରୂପରେ ବିଜୟେ ଶଙ୍ଖଚକ୍ର କରେ ।
ଚିହ୍ନିଲେ ଚୈତନ୍ୟ ଯେ ବ୍ରହ୍ମାଣ୍ଡ କର୍ତ୍ତାହରି
ଦାରୁ ବ୍ରହ୍ମ ରୂପେଣ ଅଛନ୍ତି ବିଜେ କରି ।
ହରିନାମ ଚେତାବଣ ମୂଢ଼ଜନେ ତାରି ।
କଳାରେ କଳା ମିଶିଲା ନୋହିଲା ଯେ ବାରି ।
ଶୁଣହେ ମୁକୁନ୍ଦ ରାମ ଗ୍ୟାଂନ ଭୂମି କଥା ।
ବିନ୍ଦୁ ବ୍ରହ୍ମ ନାମବ୍ରହ୍ମ ଅନାମ ବେବସ୍ଥା ।
ରତିପ୍ରୀତି ଶ୍ରୁତି ଘେନି ସମକରି ଚିହ୍ନ ।
ତେଣୁକରି ବୋଲାବନ୍ତି ତତ୍ତ୍ଵ ବ୍ରହ୍ମଂଗ୍ୟାଂନ ।
ବିନ୍ଦୁବ୍ରହ୍ମ କାମବୀଜ ନାମବ୍ରହ୍ମଂ ଜ୍ୟୋତି ।
ଅନାମ ବ୍ରହ୍ମଟି ସର୍ବ ଗୀତା ମଧ୍ୟେ ଥିଟି ।
ଓଂକାର ଦେହରେ ସର୍ବ ଉତ୍ପତ୍ତି ଯେ ସ୍ଥିତି ।
ପଞ୍ଚଧା ରୂପରେ ଆତଯାତ ହେଉଥାନ୍ତି ।
ପ୍ରବଣକୁ ଚିହ୍ନିଲେ ଯେ କଞ୍ଜାଳ ହରଇ ।
କୁଣ୍ଡଳୀ ଦଣ୍ଡକପରେ ଅର୍ଦ୍ଧବିନ୍ଦୁ ସେହି ।
ଆକାର ମକାର ଯେ ତକାର ତିନି ଲେଖ ।
ରୁଦ୍ର ବିଷ୍ଣୁ ବ୍ରହ୍ମା ନାଦ ବିନ୍ଦୁ ଯେ ପ୍ରତକ୍ଷ ।
ନିତ୍ୟ ନିତ୍ୟ ମାହାନିତ୍ୟ ତିନି ନିତ୍ୟ କହି ।
ଥାନେ ଥାନେ ରାଧାକୃଷ୍ଣ ନିମଗନେ ରହି ।
ଯେକାକ୍ଷର ବୋଲି ଯାହା ପରଂବ୍ରହ୍ମ ଜାଣ ।
ଜ୍ୟୋତିବ୍ରହ୍ମ ବୋଲି ସେହି ଯେହି ସେ ନିର୍ଭାଣ ।
ଶ୍ଵେତ ପୀତ ଲୋହିତ କୁଙ୍କୁମ ଚାରିକଳା ।
ଶ୍ୟାମ କଳା ମିଶିଣ ଯେ ଜ୍ୟୋତିବ୍ରହ୍ମେ ମେଳା ।

ମଧ୍ୟରେ ବିଜୟେ ଯେ ହକାର ରୂପେ ହରି ।
ରକାର ରୂପରେ ରାଧା ପାଦ ଛନ୍ଦି କରି ।
ବାହୁରେ ବାହୁ ଲମ୍ପଟ ହକାର ଯେ ରାଧା ।
ରକାର ଯେ ଶ୍ରୀକୃଷ୍ଣ ଦିଶନ୍ତି ଦିବ୍ୟ ଶୋଭା ।
ବେଢ଼ିଣ ଯେ ସପ୍ତମାତ୍ରା ରକାରକୁ ଘେନି ।
ଲଲାଟ ଚକ୍ର ମଧ୍ୟରେ ବିଜେ ବ୍ରହ୍ମ ମୁନି ।
ହକାର ଅକ୍ଷରେ ଯେ ରକାର ମିଳିଅଛି ।
ହଂ ବୋଲି ନାମ ତେଣୁ ହର ଆଭାସୁଛି ।
ସୋଅର୍ଣ୍ଣକୁ ଆଉଟିଲେ ଯେମନ୍ତ ପ୍ରକାର ।
ତେମନ୍ତ ପ୍ରକାର ମାତ୍ରା ଫେରି ପଶେ ଘରେ ।
ହରେ ହର ବିନ୍ଦୁ ରାମ କୃଷ୍ଣ ନ ଦିଶନ୍ତି ।
ଶଙ୍କର୍ଷଣ ଈଶାନରେ ପ୍ରଭା ଦିଶୁଥାନ୍ତି ।
ଚିହ୍ନିଲେ ଯେ ମହାମନ୍ତ୍ର ମନ୍ତ୍ରରାଜ ଦିଶୁ ।
ଜାଣନ୍ତି ସୁଗ୍ୟାଂନୀଜନେ ନ ଜାଣନ୍ତି ପଶୁ ।
ସଦଗୁରୁ ସେବାକରି ହେତୁ ଦେବ ତହିଂ ।
ଗୁରୁ ନ କହିଲେ ଶିଷ୍ୟ ଜାଣିପାରେ କାହିଂ ।
ଲକ୍ଷେକ ମଧ୍ୟରେ ଯେକ ଜାଣନ୍ତି ନା ଏହା ।
ନଜାଣି ଭ୍ରମନ୍ତି ଥୋକେ ଭକ୍ତିରେ ଶୋରେହା ।
ଗୁପତ କରିବ ଯେହା କେଭେଂ ନକହିବ ।
ବାହିକରେ ଅର୍ଥ କହି ମନକୁ ମୋହିବ ।
ଯେ ଭେଦ ଜାଣିମା ଲୋକ ସହଜେ ନିର୍ମଳ ।
ସେ ଯଉଂ ଦିଗରେ ଯାଯେ ସହଜେ ମଙ୍ଗଳ ।
କହିବା ଥୋକାୟେ ଚିତ୍ତେ ଥିବ ଦୃଢ଼େ ଧରି ।
ଜ୍ୟୋତିବ୍ରହ୍ମ ଯେକାକ୍ଷର ବ୍ରହ୍ମନାମ ଶିରି ।
ହକାର ଅକ୍ଷରେ ନେଇ ରକାର ମିଶାଅ ।
ଆକାର ପାରୁଶେ ଦେଇ ତଳେ ଚାରି ଥୁଅ ।
ସାତଅଙ୍କ ବାମେ ଦେଇଂ ପରେ ଆଠ ଲେଖ ।
ତା ମଧ୍ୟେ ମଣ୍ଡଳା ଦେଇ ନାମ ମଧ୍ୟେ ଯୋଖ ।
ସାତଗୋଟି ମାତ୍ରାରେ ଯେ ଚଉଦ ଅକ୍ଷର ।

ଯେମନ୍ତେ ଭଜିଣ ଭବିସିନ୍ଧୁ ହୋଅ ପାର ।
ସନକାଦି ମୁନିଜନେ ଯେହିଠାରୁ ଜାତ ।
ଜ୍ୟୋତି ମଣ୍ଡଳର ମଧ୍ୟେ ରାଧାକୃଷ୍ଣ ଥିତ ।
ଧ୍ୟାନକରି ମୁନି ଏକ ଆତ୍ମାରେଣ ଉଭା ।
କୋଟି ସୂର୍ଯ୍ୟ ଜିଣି ଯଉଂ ମଣ୍ଡଳର ପ୍ରଭା ।
ଶ୍ୱେତ ପୀତ ନୀଳ ଆଦି ଲୋହିତ କୁଙ୍କୁମ ।
ରାଧାକୃଷ୍ଣ ବେନିଜନ ଲମ୍ପଟରେ ମଗ୍ନ ।
ଅଦୃଶ ରୂପ ସେ ଜ୍ୟୋତି ରୂପେ ଦୃଶ୍ୟହୋଇ ।
ମୁରଲୀ ବାଆନ୍ତି ଆନ ନଜାଣନ୍ତି କେହି ।
ଭଗତ ଜାଣଇ ସେ ଯେ ବଜାବନ୍ତି ହରି ।
ଗୋପୀମାନେ ବେଢ଼ିଣ ଅଛନ୍ତି ସେବାକରି ।
ରମା ପ୍ରେମା ଶ୍ୟାମଳା ବିଶାଖା ଆଦିକରି ।
ମଦନା କରୁଣା କୁନ୍ଦ ନାନା ଯନ୍ତ୍ରଂ ଧରି ।
ସପ୍ତ ରନ୍ଧ୍ରେ, ସପ୍ତସ୍ୱର ଧରିଣ ଶ୍ରୀହରି ।
ମହାମନ୍ତ୍ର ମନ୍ତ୍ରରାଜ ତହୁଂ ଜାତକରି ।
ସଙ୍କର୍ଷଣ ରୂପ କୃଷ୍ଣ ସପ୍ତସ୍ୱରେ ପୂରି ।
ହରହରେ ବିନୁ ରାମ କୃଷ୍ଣ ନୋହେ ବାରି ।
ନନ୍ଦକନ୍ଦ କାମବ୍ରହ୍ମ କେଉଣ ଚିହ୍ନିବ ।
ମନ୍ତ୍ରରାଜ କଉଂଠାବେ ମନରେ ମଂଜିବ ।
ଶୁଣ ରାମଚନ୍ଦ୍ର ଦାସ ସେବକ ମହିଂମା ।
ବିନା ଗୁରୁ ନ ସେବିଲେ ନ ପାଅଇ ସୀମା ।
ବ୍ରହ୍ମ ଯେକାକ୍ଷର ସେ ଯେ ଆପେ ନିରଞ୍ଜନ ।
ରେହ ରୂପୀ ଜଗନ୍ନାଥ ଆପେ ଦାରୁବ୍ରହ୍ମ ।
ଭଗତ ଭାବରେ ବିଜେ ଦାରୁ ବ୍ରହ୍ମ ରାଶି ।
ଅଲେଖ ଭୁବନୁଂ ଖସି ଜ୍ୟୋତିରୂପେ ଦୃଶି ।
ଅକ୍ଷର ସୋରୂପ ମାତ୍ରା ସପ୍ତଦଳେ ଦେଖ ।
ର କାର କେବଳ ରାଧା କୃଷ୍ଣ ନାମ ଲେଖ ।
ହ କାର ରାଧିକା କୃଷ୍ଣ ରକାର ଅକ୍ଷର ।
ମଣ୍ଡଳ ବେଢ଼ିଣ ନାମ ସପତ ସ୍ୱରୀର ।

ଗୁପତ ପ୍ରକଟକରି କହିଦେବା ଫେଇ ।
ଆମ୍ଭ ପାଦ ଛୁଇଂଥାଅ ନ ବୋଲିବ କାହିଂ ।
କହିଲେ ଶାପ୍ୟ ପାଇବ ନଷ୍ଟଭ୍ରଷ୍ଟ ହେବ ।
ଶ୍ରୀଗୁରୁ ବଚନ ବାରଜଣ ଧରିଥିବ ।
ଶିଷ୍ୟର ଭଗତି ଦେଖି ଅଚ୍ୟୁତ ଭାର୍ଜନ ।
ବୋଲନ୍ତି କହିବା ବାବୁ ଶୁଣ ଦେଇ ମନ ।
ହକାରକୁ ଘେନିଣ ଅଂକାର ଶୂନ୍ୟଂ ଖସି ।
ହକାର ଅକ୍ଷରେ ନାମ ବିଶ୍ରମିଲା ଆସି ।
ଆକାରକୁ ଘେନିଣ ଉକାରେ ମିଶିଗଲା ।
ଏକାର ଇକାର ମିଶି କେମନ୍ତ ଦିଶିଲା ।
ହକାର ସବୁରି ମୂଳ ହେତୁ ମନେ ଘେନ ।
ଚତୁର୍ଦ୍ଦଶାକ୍ଷର ନାମ ଯେକାକ୍ଷର ବ୍ରହ୍ମଂ ।
ପ୍ରେମାନନ୍ଦ ଗୂପଧରି ପରଂବ୍ରହ୍ମ ହରି ।
ରାଧା ସଙ୍ଗେ ଲୀଳାରଙ୍ଗେ ନିର୍ଲେପ ମୁରାରି ।
ଯେମନ୍ତେ ଯେ ଚତୁର୍ଦ୍ଦଶ ଅକ୍ଷର ଭଜନ ।
ଯେହୁକରେ ଧନ୍ୟ ଧନ୍ୟ ତାହାର ଜୀବନ ।
ମାତାପିତା ଧନ୍ୟ ତାର ଜୀବନହିଂ ଧନ୍ୟ ।
ଶୁଣିଲା ହୋ ବ୍ରଜସୁତେ ଜନ୍ମ ତୁମ୍ଭ ଧନ୍ୟ ।
ଶୁଣିଣ ଗୋପାଳ ସୁତେ ଚରଣେ ପଡ଼ିଲେ ।
ନିସ୍ତରିଲୁ ନିସ୍ତରିଲୁ ବୋଲିଣ ବୋଇଲେ ।
ପୁଷ୍ପ୍ୟ ଚନ୍ଦନ ଘେନିଣ ଗୁରୁ ଅଙ୍ଗେ ଲେପି ।
ପରିଧାନ ଉପରାଣ ସୁବିଧାନେ ଥାପି ।
ଦ୍ୱାଦଶ ମାତ୍ରରେ ସୁନାସୂତା ମୁଦି ଦେଇ ।
ତୁଷ୍ଟିକରି ଯେକେ ଯେକେ ବୋଲନ୍ତି ଗୋସାଇଂ ।
ଏ ଅନ୍ଧ କୂପରୁ ପ୍ରଭୁ ଉଦ୍ଧାର ଯେ କଲ ।
ଏକାକ୍ଷର ବ୍ରହ୍ମଯନ୍ତ୍ରଂ ବୁଝାଇଣ ଦେଲ ।
ଅଧମ ଗୁଆଂର ଆମ୍ଭେ କି ଦେବାକୁ ସରି ।
ଯାହାର କରୁଣା ହେଲେ ସବୁ ଦୁଖ ହରି ।
ତୁମ୍ଭର କୃପାରୁ ସିନା ଆମ୍ଭ ପିତା ମାତ ।

ସମ୍ପୂର୍ଣ୍ଣେଣ ପୂରିଅଛି ଗୋରୁ ଧନ ବିତ୍ତ ।
ତୁମ୍ଭ ପାଦସେବାକୁ ଯେ କେ ହେବ ଭାଜନ ।
କେବଳ କରୁଣା କର ଗୁରୁ ପରଂବ୍ରହ୍ମ ।
ଶିଷ୍ୟର ଭଗତି ଦେଖି ପାମର ଅତ୍ଭୁତ ।
ଜ୍ୟୋତିମଣ୍ଡଳରେ ନେଇ ଲଗାଇଲେ ଚିତ୍ତ ।
ଦିଶିଲା ପରମପଦ ବୋଇଲେ ରେ ବାବୁ ।
କହିବା ବିଷମ ସନ୍ଧି ତଲେ କରିଥିବୁ ।
ବାର ବ୍ରଜବାଳେ ତୁମ୍ଭେ ହେତୁ ଦେଇ ଶୁଣ ।
ଯେବେ ଯେ କହିବା ଅଣ ଅକ୍ଷରର ଗୁଣ ।
ନାମକୁ ଭଜିଲେ ସର୍ବ ପାପ ହୋୟେ ନାଶ ।
ଜରାଦି ମରଣ ପୁଣ ନ ପଶଇ ପାଶ ।
ଅବ୍ୟଗତ ଆଚମ୍ବିତ ଅନାମୟ ଶବ୍ଦ ।
ସେଠାବକୁ ପଶିବାକୁ କାହା ସକ୍ୟ ଭେଦ ।
ଚାରିବେଦ ଯଉଂଠାକୁ ନପାରନ୍ତି ପଶି ।
ତୁଷ୍ଟି ଯେ ଭାଷନ୍ତି ଜ୍ୟୋତି ମଣ୍ଡଳେ ଥାଆସି ।
ଯଉଂଠାକୁ ଯିବାକୁ ପାବନ୍ତ ଗାୟତିରୀ ।
ଗାବରୂପ ଧରିଣ ସେ ଘରକୁ ଆବୋରି ।
କାଳାନଳ ତେଜ ଜ୍ୟୋତି ଧରି ବେଦମାତ ।
ସେ ଦ୍ୱାର ନିରୋଧି ଥାଇଂ ପଥ ନିରୋଧିତ ।
ତାଙ୍କ କୃପାକଲେ ଶବ୍ଦ ଶ୍ରବଣରେ ପଶେ ।
ଅକୃପାରେ ଗ୍ୟାଂନଭୂମି ଅନ୍ଧକାର ଦିଶେ ।
ଯେଣୁ ତତ୍ତ୍ୱ ଧ୍ୟାନକର ଗାବରୂପେ ରଖ ।
ଗାଇତ୍ରୀ ଅଜପା ମନ୍ତ୍ର ନ୍ୟାସକରି ଘୋଷ ।
ମୁଖ ଚକ୍ଷୁ ନାସା କର୍ଣ୍ଣ ଶୃଙ୍ଗ ଚୂଳ ସ୍ତନ ।
ପାଦରୋମ ଚର୍ମ ଅସ୍ଥି ପୁଚ୍ଛକୁ ଘେନିଣ ।
ଦ୍ୱାଦଶ ସ୍ଥାନରେ ନେଇ ମନ୍ତ୍ର ନ୍ୟାସକରି ।
ଅବନା ଅଜପା ଆଦି ବ୍ୟାହୃତି କି ଧରି ।
ହେତୁ ଦେଇଥାଅ ବାବୁ କହିଦେବା ତାହା ।
ଶଣ ତଛ ନେଇ ରଖି ମୁଖ ମଧ ଠାଆ ।

ରଜ ବିନ୍ଦୁ ନାସିକାରେ ନେଇଣ ଯେ ଆପ ।
ପରରବ ବେନି ଚକ୍ଷୁ ମଧ୍ୟରେ ଯେ ଲେଖ ।
ବରଣୀୟଂ ବେନି କର୍ଣ୍ଣପୁଟରେ ବସାଇ ।
ଭର୍ଗୋଦେବ ଶୃଙ୍ଗ ଦୁଇ ଚୂଳରେଣ ଦେଇ ।
ସ୍ୱଧୀମହୀ ଥନ ପାଦ ବେନିରେ ବସାଅ ।
ଧିୟୋୟେନ ରୋମ ଚମ ଉପରେ ରସାଅ ।
ପ୍ରଚୋଦୟାତ୍ ଚାରିକ୍ଷର ଅସ୍ଥି ଯେ ପୁଚ୍ଛରେ ।
ର୍ଭୂ ର୍ଭୁବ ନେଇ ପୁଣ ଥୁଅସି ମୁଖରେ ।
ସ୍ୱହ ମହ ନାସିକାରେ ନେଇଣ ଯେ ରଖ ।
ଜନ ତପ ଚକ୍ଷୁ ବେନି ଠାବରେଣ ଦେଖ ।
ସତ୍ୟ ଆପ ବେନି ନେଇ କର୍ଣ୍ଣରେ ବସାଅ ।
ଜ୍ୟୋତି ବେନିକ୍ଷର ନେଇ ଶୃଙ୍ଗରେ ରୁହାଅ ।
ରର୍ସ ବେନିକ୍ଷର ନେଇ ଚୂଳରେ ରଖିବ ।
ମୃତ ବ୍ରହ୍ମ ଚାରିକ୍ଷର ଥନରେ ଥାପିବ ।
ସ୍ୱହଂହଂସ ଚାରି ନେଇ ପାଦରେ ବସାଇ ।
ର୍ଭୂ ଅକ୍ଷରକୁ ନେଇ ରୋମଠାବେ ଥୋଇ ।
ପୁନରପି ର୍ଭୁବ ଚର୍ମଦେଶରେ ଯେ ରଖ ।
ସ୍ୱରୋ ବେନିକ୍ଷର ଅସ୍ଥି ପୁଚ୍ଛରେ ଅଲେଖ ।
ପ୍ରଣବ ଦଶ ଯେ ନେଇ ମିଶାଇବ ପୁଣ ।
ଯେକ ପ୍ରଣବକୁ ଥାପି ପୁଚ୍ଛ ମୂଳରେଣ ।
ଯେମନ୍ତେ ଅଜପା ନାମ ଗାୟନ୍ତ୍ରୀ ଯେ ମନ୍ତ୍ର ।
ପ୍ରଣବ ଦଶ ମିଶାଇ ଭଜିବ ସୁଚିତ୍ତ ।
କୋଟି ଅଗ୍ନିସମ ତେଜ ଯେବଣ ସୋରୂପ ।
କେ ଲଙ୍ଘିପାରଇ ଅଛି ଯେତେ କେବା ଲୋକ ।
ମନ ମଧ୍ୟେ ମନ୍ତ୍ର ସ୍ମରି ରୂପକୁ ଚିନ୍ତିବ ।
କୃପାକଲେ ବେଦମାତା ସୁପଥ ଦିଶିବ ।
କୃପା ଯେ କରିବେ ବେଦମାତା ଗାୟତିରୀ ।
ମାୟା କପାଟ ଫିଟିବ ଶବଦୟେ ସ୍ଫୁରି ।
ଶବଦବ୍ରହ୍ମ ଯେଣୁ ପ୍ରକାଶ ହୋଇ ଆସେ ।

ଦଶଦଶ ତେଣୁକରି ନିର୍ମଳ ପ୍ରକାଶେ ।
ଚକ୍ଷୁ ନାସା ମୁଖ କର୍ଣ୍ଣ ଶିଷ୍ଟମୁନା ଘେନି ।
ଛନ୍ଦମାନେ ବସିଛନ୍ତି ଜଗି ଶବ୍ଦ ଧ୍ୱନୀ ।
ଠାବମାନ କହିଦେବା ଶୁଣ ରାମଦାସ ।
ସାମବେଦ ଚକ୍ଷୁ ବେନି ମଧ୍ୟରେ ନିବାସ ।
ଯଜୁ ଛନ୍ଦ ନାସାରେ ଯେ ଜଗିଣ ରହିଛି ।
ଋକବେଦ ମୁଖଦ୍ୱାରେ ଅଭ୍ୟାସୁଣ ଅଛି ।
ଅଥର୍ବ ବେନି ଶ୍ରବଣେ ଶିଶୁମୁନା ଭେଦ ।
ତୁଷ୍ଟି ଯେ କରନ୍ତି ଯେଣୁ ଶୁଭଇ ଶବଦ ।
ତ୍ରିକୂଟ ସନ୍ଧିରେ ହଂସ ଯେକପାଦେ ରହି ।
ଶବଦବ୍ରହ୍ମକୁ ସେହି ଧ୍ୟାନ କରୁଥାଇଂ ।
କ୍ଷଣେ କ୍ଷଣେ ପାଦଚାଳି ଶବଦ କରଇ ।
ଆଠସସ୍ର ଅଠାଇଶ ବେଳ ସଞ୍ଚରଇ ।
ଶବଦବ୍ରହ୍ମକୁ ସେହି କରୁଥାଇଂ ଆଶ ।
ମାହାମନ୍ତ୍ର ମନ୍ତ୍ରରାଜ ଯହିଁରେ ନିବାସ ।
ଓଁକାର ବିରାଟରୂପ ପ୍ରଣବଟି ଯେହୁ ।
ଶତକୋଟି ପ୍ରଣବ ଶବ୍ଦକୁ କରେ ସେହୁ ।
ତେଣୁକରି ପ୍ରଣବ ନାମ ସେ ବୋଲାଇ ।
ଶବଦ ବ୍ରହ୍ମର ମୂଳ ଧ୍ୟାନକର୍ତ୍ତା ସେହି ।
ଯେଣୁକରି ସବୁଠାରେ ଅଟଇ ପ୍ରଧାନ ।
ଜାଣନ୍ତି ସୁଗ୍ୟାଂନୀ ନ ଜାଣନ୍ତି ମୂଢ଼ଜନ ।
ଚନ୍ଦ୍ରସୂର୍ଯ୍ୟ ବେନି ନେତ୍ରେ ହୋଅନ୍ତି ପ୍ରକାଶ ।
ଦର୍ପଣ ଧରିଣ ଶଶି ସୂର୍ଯ୍ୟ ଜ୍ୟୋତି ଦୃଶ ।
ପଞ୍ଚାଶ ମାତ୍ରା ଅକ୍ଷର ଦିଗ ଆଦି କରି ।
ମାସ ସମ୍ବତ୍ସର ଆଦି ତିଥି ଦିନ ସରି ।
ଋତୁ ଯେ ଅୟନ ଯୁଗ ଅବଦ ସହିତେ ।
ସୋମଦ୍ର ଶଇଳ ଇନ୍ଦ୍ର କୁବେରାଦି ଯେତେ ।
ସବିହେଂ ଶବଦବ୍ରହ୍ମ ଆଶ୍ରିତେ ଅଛନ୍ତି ।
ନିଶବଦ ହୋଇଣ ଯେ କେହି ନ ଦିଶନ୍ତି ।

ମାଟିରେ ମାଟି ମିଶଇ ଜଳରେ ଯେ ଜଳ ।
ଅନଳେ ଅନଳ ମିଶେ ଶୂନ୍ୟରେ ସମୀର ।
ବନ୍ଧୁ ବର୍ଗମାନେ ଯେ ନ ପଶନ୍ତି ପାଶ ।
ସର୍ବେ ସମ୍ପୂର୍ଣ୍ଣେ ଥାନ୍ତି ଯେଣୁ ଶବ୍ଦ ଆଶ ।
ଶବ୍ଦ ବ୍ରହ୍ମରେ ସେଉଣ କରିଥାଇ ବାସ ।
ଭାବରେ ଭଣିଲା ଦିନ ଅଚ୍ୟୁତ ଯେ ଦାସ ।

ଇତିଶ୍ରୀ ଶୂନ୍ୟ ସଂହିତାୟା ଶ୍ରୀଗୁରୁ ଶିଷ୍ୟ ବୋଧନେ ଏକାକ୍ଷର ବର୍ଣ୍ଣନେ ଗାୟତ୍ରୀ ନ୍ୟାସ ପ୍ରଭେଦ କଥନେ ନାମ ଚତୁର୍ଥୋ ଅଧ୍ୟାୟଃ ।

## ପଞ୍ଚମ ଅଧ୍ୟାୟ

ରାମ ଭୂଥ ବକ୍ର ଗୁରୁ ବେନିପାଦ ଧରି ।
ପୁଣ ପୁଣ ପଚାରନ୍ତି ବିନୟ ଯେ କରି ।
ମନରେ କଥାୟେ ପୁଣି ଲାଗିଲା ସଂଶୟେ ।
ପିଣ୍ଡ ଯେ ବ୍ରହ୍ମାଣ୍ଡ କେହ୍ନେ ସମସରି ହୋୟେ ।
ସର୍ବ ହେତୁ କଥା କିଛି ଫିଟାଇ କହିବା ।
ମନର ସଂଶୟମାନ ହେଲେଣ ଦହିବା ।
ତୁମ୍ଭେ କୃପାକଲେ ହେତୁ ଗ୍ୟାଂନଭେଦ ହେବ ।
ସମ ଜଞ୍ଜାଳକୁ କିଛୁ ଭଏ ଯେ ନଥିବ ।
ଶିଷ୍ୟ ଭକ୍ତି ଦେଖିଣ ଶ୍ରୀକୃଷ୍ଣ ପାଦେ ଆଶ ।
ପାମର ଅଚ୍ୟୁତ କହେ ଶୁଣ ବ୍ରଜଶିଷ ।
ଯେତେବେଳେ ନଥିଲା ଯେ ଜଳସ୍ଥଳ କିଛି ।
ପିଣ୍ଡକୁ ଆରମ୍ଭକଲେ ଆପେ ନନ୍ଦବଛି ।
ଶ୍ରବଣେ ଶୁଣନ୍ତେ ପ୍ରୀତି ବଢ଼ିଲାକ ଯେଣୁ ।
ରତି ସଂଯୋଗରେ ବିନ୍ଦୁ ଉଛୁଳିଲା ତେଣୁ ।
ରଜ ବୀଜ ମିଶିଣ ଯେ ଏକତ୍ୱ ହୋଇଲା ।
ବିନ୍ଦୁ ବ୍ରହ୍ମ ନୀର ରଜ ନାମ ଖୀର କଲା ।
ନୀର ଖୀର ବେନି ମିଶି ଅଣ୍ଡ ପ୍ରକାଶିଲା ।

ବିନ୍ଦୁ ତିନି ରତି ରଜ ଛଚିନା ମିଶିଲା ।
ପ୍ରଥମ ଦିବସେ ରଜ ବୀଜ ଗୋଲା ଦିଶି ।
ଦ୍ୱିତୀୟ ଦିନରେ ବୀଜ ଫେନ ପରକାଶି ।
ବଦରି ପୁଷ୍ପର ପ୍ରାୟେ ବିନ୍ଦୁ ମଧ୍ୟେ ଦିଶେ ।
ଚତୁର୍ଥ ଦିନରେ ପାଦ ଅଗ୍ର ଯେ ପ୍ରକାଶେ ।
ଯେମନ୍ତେ ଦିନକୁ ଦିନ ଆନୁଆନ ଭାବ ।
ମାସ ପୂର୍ଣ୍ଣେ ଅଷ୍ଟଧାତୁ ପିଣ୍ଡୋଳି ସଂଯୋଗ ।
ବିନ୍ଦୁ ଅସ୍ଥି ଲଖ ଲୋମ ଆଦିକରି ଦେଖ ।
ନାଳ ମଳ ମୂତ୍ର ମଧ୍ୟେ ପଡ଼ି ମହାଦୁଃଖ ।
ମନ ବୁଦ୍ଧି ଅହଙ୍କାର ଅଣ ଯେ ଆୟତ ।
ଯେଥୁଅନ୍ତେ ଅଗ୍ୟାଂନ ସେ ସୁଗ୍ୟାଂନ ସଂଯୁତ ।
ବାଳ ଯେ ତରୁଣ ଆଦି ବୃଦ୍ଧ ପରିଯନ୍ତେ ।
ଦାରା ପୁତ୍ର ଘେନି ଭୋଗ ବିଳସଇଂ ଯେତେ ।
ଯେହି ମାର୍ଗେ ରସିଣ ରଂଚନା କରୁଥାଇଂ ।
ଆତ୍ମାକୁ ନଚିହ୍ନି ପୁଣ ଯେଣେତେଣେ ଯାଇଂ ।
ଯେମନ୍ତେ ପ୍ରକାରେ ପିଣ୍ଡବ୍ରହ୍ମାଣ୍ଡ ଯେକଦ୍ଧ ।
ତିନି ଖଣ୍ଡ ମଧ୍ୟେ ଏକବିଂଶ ପୁର ଥିତ ।
ତଳାତଳ ସୁତଳ ନିତଳ ଆଦିକରି ।
ବିତଳ ଯେ ରସାତଳ ତଳ ସପ୍ତସରି ।
ମଞ୍ଚର ଯେ ସପ୍ତପୁର କହିବାକ ଶୁଣ ।
ଅଯୁଧା ଦ୍ୱାରିକା କାଶୀ ସୌରାଷ୍ଟ୍ର ପ୍ରମାଣ ।
ଗୋପ ଯେ ମଥୁରା ଯାଜନଗ୍ର ସପ୍ତପୁର ।
ବିଜଏ ସେ ଜଗନ୍ନାଥ ବ୍ରହ୍ମାଣ୍ଡ ଠାକୁର ।
ବେନି ବାହୁ ହୃଦ ନାଭି ଉଦରକୁ ଘେନି ।
ପୃଷ୍ଠଦେଶ କଟି ସ୍ତନ ସପତ ଯେ ପୁଣି ।
ଆକାଶ ସପତ ପୁର ଇନ୍ଦ୍ର ଯେ କୋବେର ।
ଶଙ୍କର ସୁର କିନ୍ନର ବ୍ରହ୍ମା ଯେ ସମୀର ।
ପିଣ୍ଡ ମଧ୍ୟେ ଶିର ଚକ୍ଷୁ କର୍ଣ୍ଣ ନାସା ଘେନି ।
କପୋଳ ଯେ ଗଣ୍ଡସ୍ଥଳ ମୁଖ ଆଦି ପୁଣି ।

ପାତାଳପୁର ଯେ ଯେହି ଦେହ ମଧ୍ୟେ ଦେଖ ।
ପାଦ ଅଗ୍ର ତଳକୁ ଯେ ତଳପୁର ଲେଖ ।
ତହୁଁ ଆର ଅର୍ଧକୁ ଯେ ତଳାତଳ ଜାଣ ।
ସୁତଳ ବୋଲିଣ ଗୁପ୍ତ ଦେଶ ଯେ ପ୍ରମାଣ ।
ତହିଁ ଉପରକୁ ନଳୀଦଣ୍ଡ ନିତଳ ଯେ ପୁର ।
ବିତଳ ଆଣ୍ଠୁରେ ବସେ ଜାନୁ ତଳାତଳ ।
ଜଘନ ଭାଗ ଯେ ରସାତଳ ବୋଲି କହି ।
ପାତାଳ ଯେ ସପ୍ତ ପୁର ଦେହ ମଧ୍ୟେ ରହି ।
ଏକୋଇଶ ପୁର ପିଣ୍ଡ ବ୍ରହ୍ମାଣ୍ଡ ଯେ ସରି ।
ଜ୍ୟୋତି ମଣ୍ଡଳରେ ବିଜେ କରିଛନ୍ତି ହରି ।
ଯେକାକ୍ଷର ପରଂବ୍ରହ୍ମ ସପ୍ତମାତ୍ରା ଯେହୁ ।
ସହସ୍ରଦଳ ପଦ୍ମ ସପ୍ତ ପାଖୁଡ଼ାଟି ସେହୁ ।
ସେ ପଦ୍ମ ପ୍ରକାଶ ନେତ୍ର ମଧ୍ୟେ ପ୍ରକାଶୁଛି ।
ପଦ୍ମ ପୀଠ ମଧରେ ରାହାସ ଲାଗିଅଛି ।
କଂସ କେଶୀ ମାରିବାକୁ ରୂପଧରି ହରି ।
ସପତ ଦଳରେ ସେ ରଙ୍ଗଖେଳା କରି ।
ମହାଗୁହ୍ୟ କଳା ଯେବେ କହିଦେବା ଶୁଣ ।
ଷୋଡ଼ଶ ଯେ ଉପବନ ବସିଛି ବେଢ଼ିଣ ।
ଦ୍ୱାଦଶ ଦଳରେ ତହିଁ ଷୋଳ ଗୋପୀଛନ୍ତି ।
ମଣ୍ଡଳକୁ ବେଢ଼ିଣ ଯେ ନୃତ୍ୟେଛନ୍ତି ମାତି ।
ଏକାର ମାତ୍ରା ଯେ କୃଷ୍ଣ ଆକାର ବଳରାମ ।
ମଧରେ ଯେ ବଂଶୀବଟ ହକାର ପ୍ରମାଣ ।
କାଳିନ୍ଦୀ ଯମୁନା ଯେ ମଣ୍ଡୋଳ ବେଢ଼ିଛନ୍ତି ।
ଉକାର ଅକ୍ଷର ମାତ୍ରା ରୂପରେ ଚଳନ୍ତି ।
ମାହାମନ୍ତ ମନ୍ତରାଜ ବେନିଙ୍କର ଘର ।
ତଥିପରେ ଶବ୍ଦବ୍ରହ୍ମ ଅଣ ଯେ ଅକ୍ଷର ।
ସୁର ଯେ ସମୀର ବ୍ରହ୍ମା ନାରଦାଦି ମୁନି ।
ପୁରନ୍ଦର ଶଙ୍କର ଯେ କିନ୍ନରାଦି ଘେନି ।
ସନକ ଯେ ସନାତନ କପିଳ ଆସୁରୀ ।

ଗୋଧୁ ପଞ୍ଚଶିକ ଜଣୁଘେନି ସପ୍ତସରି ।
ମରୀଚି କୃତି ଅତ୍ରିୟ ଅଙ୍ଗିରା ପୁଲସ୍ତି ।
ପୁଲହ କ୍ରତୁ ପ୍ରଚେତା ବଶିଷ୍ଠ ଭୃଗୁ ଯତି ।
ସର୍ବେ ଶବ୍ଦବ୍ରହ୍ମକୁ ଯେ କରିଥାନ୍ତି ଧ୍ୟାନ ।
ସର୍ବ ମୂଳମନ୍ତ୍ର ଗ୍ରନ୍ଥ ଆଗମ ନିଗମ ।
ଆସନ କୀଳକ ନ୍ୟାସ ଦେବତାଦି ଛନ୍ଦ ।
ଯେମାନ ସେଠାବେ ନାହିଂ ଶୂନ୍ୟ ଅଛି ବନ୍ଧ ।
ଅନେକ ପ୍ରକାରେ ତାକୁ ଭଜନ ଇଛନ୍ତି ।
ଅପ୍ରମାଣ ନୋହେ ସର୍ବ ଘଟନା ହୁଅନ୍ତି ।
ସାରସ୍ୱତ ନିରାକାର ଶୂନ୍ୟ ଯେ ଭଜନ ।
ସଦଗୁରୁ କୃପାକଲେ ଚିହ୍ନିପାରେ ମନ ।
ଅଣାକାର ଅକ୍ଷରକୁ ଯେ ସାଧୁ ଚିହ୍ନିଲେ ।
ଯଦ୍‌ଂନାମ ଧରି ସନକାଦି ତରିଗଲେ ।
ସେ ନାମକୁ ପାଇଲେ ଯେ ନାଶହେବ ଧନ୍ଦ ।
ଅନାଦିକି ଚିହ୍ନିଲେ ଯେ ପଡ଼ିଯିବ ବନ୍ଧ ।
ସଦଗୁରୁ ସେବିଥିଲେ ମନହେବ ଥିର ।
ପାଇବ ପରମ ଗତି ଗ୍ୟାଂନୀ ମଧେ ସାର ।
ଯେମନ୍ତ ଶୁଣିଣ ପୁଣି ରାମଦାସ ଉଠି ।
ମୁକୁନ୍ଦ ଯାଦବ ବକ୍ର କରି ଏକଦୃଷ୍ଟି ।
ଉଠି ଜଣାଇଲେ ଗୁରୁ ଚରଣରେ ପଡ଼ି ।
ସକଳ କହିଲ ଯନ୍ତ୍ର ମନ୍ତ୍ରମାନ ଫେଡ଼ି ।
ପାଇଲୁଂ ସୁଗତି ତୁମ୍ଭ କୃପା ହେଲା ଯେଣୁ ।
ଅଧମ ଉଧାର ନାଥ କେବା ତୁମ୍ଭ ବିନୁ ।
ଆମ୍ଭେ ମୂଢ଼ମତି କିସ ସେବାକୁ ଯେ କ୍ଷମ ।
ସାକ୍ଷାତ୍ତରେ ଅଟ ପ୍ରଭୁ ପତିତପାବନ ।
ଆଗ୍ୟାଂଦିଲେ ଯାଅ ବାବୁ ତୁମ୍ଭ ମନ୍ଦିରକୁ ।
କାଲି ସେ ଦ୍ରଶନ ଆସି କରିବ ଆମ୍ଭକୁ ।
ଆମ୍ଭ ଚରଣରେ ଚିତ୍ତ ବୃତ୍ତି ରଖିଥିବ ।
ନିତ୍ୟକର୍ମ ସାରି କାଲି ଦ୍ରଶନ କରିବ ।

ଆଗ୍ୟାଂପାଇ ବ୍ରଜସୁତ ନିଜପୁର ଗଲେ ।
ଦୀନ ଅଚ୍ୟୁତ ଯେ ଧ୍ୟାନେ ହରିହରି ବୋଲେ ।
ଯେମନ୍ତେଣ ସୁଧାନିଧି ନାମ ଅଛି ଶୁଣି ।
ପାମର ଅଚ୍ୟୁତ କୃଷ୍ଣ ନାମ ତେଣୁ ଭଣି ।

ଇତିଶ୍ରୀ ଶୂନ୍ୟ ସଂହିତାୟା ଗୁରୁଶିଷ୍ୟ ବୋଧନେ ଏକବିଂଶ ପୁର
ନିର୍ଣ୍ଣୟ କଥନେ ପରମ ରାହାସ ମଣ୍ଡଳ ନିର୍ଣ୍ଣୟେ ନାମ ପଞ୍ଚମୋ ଅଧ୍ୟାୟଃ ।

## ଷଷ୍ଠ ଅଧ୍ୟାୟ

ନିତ୍ୟକର୍ମ ସାରିଣ ପ୍ରଭାତୁଂ ବ୍ରଜବାଳ ।
ପୂଜାବିଧି ସାରିଗଲେ ଲମ୍ଭାଇଣ ମାଳ ।
ହରେ ରାମ କୃଷ୍ଣ ମନ୍ତ୍ର ଭଜନ ଯେ କଲେ ।
ଯେକାକ୍ଷର ଅଣାକ୍ଷର ଆଦି ସୁମ୍ବରିଲେ ।
ରାମ ଯେ ମୁକୁନ୍ଦ ମୂଳେ-ଆତ୍ମା ପୂଜାସାରି ।
ନବତନ ବସ୍ତ୍ର ନବତନ ଯେ ଉତୁରୀ ।
ଶତେଗୋଟି ଗୁଆପାନ ଶ୍ରୀହସ୍ତରେ ଆଣି ।
ନଡ଼ିଆ ଯେ ପକ୍ୱରମ୍ଭା ଫଳମାନ ପୁଣି ।
କଉଡ଼ି ବସନ ଯେ ଦକ୍ଷିଣା ଘେନି କରେ ।
ମିଳିଲେ ସେ ଯାଇଣ ଯେ ଶ୍ରୀଗୁରୁ ଛାମୁରେ ।
ପ୍ରଦକ୍ଷିଣ କରିଣ ଓଳଗି ମେଳାଇଲେ ।
ପ୍ରତି ପ୍ରତି କରି ପୂଜା ବିଧାନ ଥୋଇଲେ ।
ନମୋ ନମୋ ଗୁରୁବୋଲି ଯୋଡ଼ି ବେନି କର ।
ଯେ ମୋହ ସଂସାରୁ ବେଗେ ଉଧରିଣ ଧର ।
ବଇଲ ସକଳ ହେତୁ ପାଇଲୁଂ ଚେତନା ।
ହୋଇଲା ନିର୍ମଳ ଗତି ଫିଟିଲା ବାସନା ।
ଆଗ୍ୟାଂ ହେଲା ନିରାଲମ୍ବ ନିରାକାର ହେତୁ ।
ନିର୍ଣ୍ଣୟ କରିଣ କହ ପଡ଼ି ବନ୍ଧ ସେତୁ ।
ଦୀନ ଅଚ୍ୟୁତ ଯେ ପ୍ରଭୁପାଦେ ଦେଇ ଚିତ୍ତ ।

ଧନ୍ୟ ହୋ ଭଗତ ଧନ୍ୟ ତୁମ୍ଭ ପିତାମାତ ।
ଯାହା ପୁଚ୍ଛାକଲ ଅସମ୍ଭବ ଆଲୋକିତ ।
ଅପାର ସେ ବ୍ରହ୍ମବିଦ୍ୟା ସାଧୁଙ୍କର ଚିତ୍ତ ।
ଯେହାନ୍ତ କହିବା ଫେଡ଼ି ଚିତ୍ତେଥିବ ଧରି ।
ତୁମ୍ଭେ ଯେ ତରିବ ପୁଣି ମୁହିଂ ଯିବି ତରି ।
ତୁମ୍ଭ ହେତୁ ସିନା ମୋର କୃଷ୍ଣପାଦେ ଚିତ୍ତ ।
ଶ୍ରୀକୃଷ୍ଣ ଭଣ୍ଡାର ଧନ କରିବା ବ୍ୟକତ ।
ଶ୍ରୀକୃଷ୍ଣ ନାମ ସୋମଦ୍ର କହୁଂ ନ ସରଇ ।
ଯେସନେ ସୋମଦ୍ର ଜଳ କଳନା ନଯାଇଂ ।
ତରଂଗ ଲହରୀ ପ୍ରାୟେ ନ ପଶଇ କହୁଂ ।
ତାରକା ମଣ୍ଡଳ ତାରା ଜାଣିପାରେ କେହୁ ।
ସମୋଦ୍ରର ବାଲି କେହୁ ଗଣି ବା ପାରିବ ।
ଶ୍ରୀକୃଷ୍ଣର ନାମ କେହୁ କଳନା କରିବ ।
କହିବା ମହିଂମା କିଛୁ ଶୁଣ ମନ ଦେଇଂ ।
ରାହାସ ମଣ୍ଡଳ କଥା ଶୁଣ ବାଳପୋଇ ।
ବୃନ୍ଦାବନ ନିତ୍ୟଧାମ ରାଧାକୃଷ୍ଣ ଲୀଳା ।
ମହାନିତ୍ୟ ଜନ୍ମିଆସି ରଞ୍ଜୁ ଯୁଗଖେଳା ।
ଶିଶୁମାର ଚକ୍ରପରେ ଅନେକ ଅନ୍ତରେ ।
ଅଛନ୍ତି ରାହାସେ ମିଶି ଅନାମ ଅକ୍ଷରେ ।
ଚୌରାଶି ସହସ୍ର କୋଶ ଭୂମି ଆୟତନ ।
ସେ ଭୂମିରେ ଲୀଳା କରୁଛନ୍ତି ବେନି ଜନ ।
ଗୋପିକା ମଣ୍ଡଳ ମଧ୍ୟେ ତ୍ରିଭଂଗୀ ଛନ୍ଦରେ ।
ଦିଶନ୍ତି ସେ ନ ଦିଶନ୍ତି ଭୁଜ ବନ୍ଧନରେ ।
କୋଟି ଯୁଗ ଗଲେ ତାଙ୍କ ନ ତୁଟଇ ଲୀଳା ।
ନୟନେ ନୟନେ ତାଙ୍କ ଭୁଜେ ଭୁଜ ମେଳା ।
ବ୍ରହ୍ମା ଜଣାଇଲା ଯାଇଂ ଅସୁରଙ୍କ ଭୟେ ।
ଧ୍ୟାନରେ ଜାଣିଲେ ଏହା ଦେବାଧିଦେବ ରାୟେ ।
ମଞ୍ଚପୁରେ ଜନମକୁ ନିଷ୍ଠା ହୋଇ ଚିନ୍ତି ।
ବୃନ୍ଦାବନେ ରାସଲୀଳା ମାନସେ ବାଛନ୍ତି ।

ଯଉଂସ୍ଥାନେ ଯଉଂଲୀଳା ଯାହାର ମନ୍ଦିର ।
ସର୍ବ ସଙ୍ଗେ ଘେନି ବିଜେ କଦମ୍ବ ମୂଳର ।
କଉତୁକ ଲୀଳାକଲେ ରାଧାସଙ୍ଗେ ହରି ।
ଅଷ୍ଟ ପାଟବଂଶୀ ଯେ ରୁକ୍ମିଣୀ ଆଦିକରି ।
ରାହାସ ରଞ୍ଜିଲେ କୃଷ୍ଣ ବୃନ୍ଦାବନେ ପଶି ।
ମଞ୍ଚ ମଧ୍ୟେ ବିଜୟ ଯେ ବଇକୁଣ୍ଠ ବାସୀ ।
ରାଧିକା ସଙ୍ଗରେ ଗୋପୀଗଣଙ୍କର ମେଳେ ।
ବଇଂଶୀ ବଜାଇ କୃଷ୍ଣ କଦମ୍ବର ତଳେ ।
କଂସ କେଶୀ ବିନାଶ ଯେ କଲେ ଦେବ ହରି ।
କହିବା ଗୁପତ କଥା ରଖ ମନେ ଧରି ।
ଚଉରାଶି କୋଶେ ନିତ୍ୟ ଲୀଳାକରେ ହରି ।
ବୃନ୍ଦାବନେ ବୁଲିଣ ଯେ ଚରାନ୍ତି ବାଛୁରୀ ।
ଯେତେ ଲୀଳା କଲେ ଯେକାକ୍ଷର ଅଷ୍ଟଦଳେ ।
ବିଜୟେ କରିଣ ଥାନ୍ତି କଦମ୍ବର ତଳେ ।
ଯମୁନା ପୁଲିନ ବନ କାଳେନ୍ଦୀ ଯେ ହ୍ରଦ ।
ଅଷ୍ଟଦଳ ପୀଠ ଦେଖ କଦମ୍ବର ମଧ୍ୟ ।
ଉକାର ପାଖୁଡ଼ା ଯେ ସେ ବିରହିଣୀ ସ୍ଥାନ ।
ଯେହି ଦଳ ମଧ୍ୟେ ବ୍ୟୋମାସୁର ଯେ ନିଧନ ।
ଷଣ୍ଢାସୁର ବଧ ବିପ୍ରଲବ୍ଧା ସ୍ଥାନ ଯେହି ।
ଏକାର ପାଖୁଡ଼ା ଦଳ ଶୁଣ ଯେବେ କହି ।
ଯଜ୍ଞ ଅନ୍ନ ଭୋଜନଟି ଯେହି ଯେ ଦଳରେ ।
ଖଣ୍ଡିତା ଲକ୍ଷଣ କୃଷ୍ଣ ରାଧିକା ସଙ୍ଗରେ ।
ଇ କାର ମାତ୍ରାକୁ ଦେଖ ଅର୍ଦ୍ଧମାତ୍ରା ସେହି ।
ଉତ୍କଣ୍ଠିତା ଲକ୍ଷଣଟି ଏହି ଦଳେ ହୋଇ ।
କିଶୋରୀ ବାସକଶଯ୍ୟା ଯେହି ଦଳେ ଥିତି ।
ଏହି ଦଳେ ଗୋପୀ କୃଷ୍ଣ ଲଭିଲେ ଭଗତି ।
ଯେହି ଦଳେ ଗୋପୀଙ୍କର ବସ୍ତ୍ର ଯେ ହରଣ ।
କଳହନ୍ତରିତା ଦେଖ ଯେହି ସେ ଦଳେଣ ।
ଅକାର ଦଳରେ ସିନା କେଶୀକି ଯେ ବଧ ।

ସ୍ୱାଧୀନଭର୍ତ୍ତୃକା ଯେହି ଦଳେରେ ଯେ ସିଦ୍ଧ ।
ମଧ୍ୟଦଳ ନିକୁଞ୍ଜ ଯେ କୁଟୀର ମଧ୍ୟରେ ।
ଅଭିସାରିକା ଲକ୍ଷଣ ଯେହି ଯେ ଠାବରେ ।
ଠାବେ ଠାବେ ବାସୁଦେବ ରୁକ୍ମିଣୀ ଆଦି ।
ରାମ କାମ ଅନିରୁଦ୍ଧ ଯେହିଠାରେ ଭେଦି ।
ଅଯୋଧ୍ୟ ଦ୍ୱାରିକା ଆଦି ସକଳ ଯେ ମୂଳ ।
ଏକା ଈଶ୍ୱର ଠାବରେ ସକଳ ଯେ ଠୁଳ ।
ଯେମନ୍ତ ବୀଜ ମଧ୍ୟରେ ଚିହ୍ନିଲେଟି ବାବୁ ।
ସକଳ ଗ୍ୟାଂନରେ ଭାବ ପାଇପାରେ ସଂବୁ ।
କହିଦେଲୁଂ ଫିଟାଇଣ ଗୁପତ ଏ କଥା ।
ଜ୍ୟୋତିବ୍ରହ୍ମ ଯେକାକ୍ଷର ଯେତେକ ବେବସ୍ଥା ।
ଶୁଣିଣ ଆନନ୍ଦ ହେଲେ ବରଜନନ୍ଦନ ।
ଗୁରୁପାଦ ଧରିଣ ଯେ କଲେକ ବନ୍ଦନ ।
ଯେକାକ୍ଷର ପରେ ଅଣକ୍ଷର ଅନହତ ।
ନିରାକାର ଭଜନ ସେ କେବଣହିଂ ମତ ।
ଛାୟା ଜୋତି ଅବାଡ଼ ସେ ଶବଦ କେମନ୍ତ ।
କହିବା ବୁଝାଇ ପ୍ରଭୁ ଯେଥିର ତଦନ୍ତ ।
ତୁମ୍ଭ ଆଗ୍ୟାଂହେଲେ ମନୁଂ ସଂଶୟ ବିନାଶ ।
ଆଗ୍ୟାଂକର ଗୁରୁବ୍ରହ୍ମ ପରମ ଉପଦେଶ ।
ଶିଷ୍ୟର ଭଗତି ଦେଖି ଅଚ୍ୟୁତ ବଚନ ।
ହେତୁକରି ଥିବ ବାବୁ ତୁମ୍ଭେ ବାରଜଣ ।
ଗୁପତେ ରଖିବ ମୂଳ ଉଧାର କରିବ ।
ଉତ୍ତମ ଶିଷ୍ୟେ ବୁଝାଇ ଆପଣେ ତରିବ ।
ଅଭଗତ ଲୋକଙ୍କୁ ଯେ କେଭେଂ ନ କହିବ ।
ଦାମ୍ଭିକ କପଟୀ ନଷ୍ଟ ପାଶେ ନ ବସିବ ।
ପଣ୍ଡିତ ଆଗରେ ଏହା ନକରି ପ୍ରକାଶ ।
ନିନ୍ଦାବିନ୍ଦା କଣେ ଉପୁଜିବ ବଡ଼ ଦୋଷ ।
ପଣ୍ଡିତ ପାଇବ କାହୁଂ ଏଥର ତଦନ୍ତ ।
କାବ୍ୟ ଶାସ୍ତ୍ର ପଢ଼ି ଗର୍ବ ଧରିଥାଇଂ ଚିତ୍ତ ।

ସରୁଆ ମନ ହୋଇଲେ ଭକ୍ତିମାର୍ଗ ଦିଶେ ।
ଶ୍ରୀକୃଷ୍ଣ ଚରଣେ ଭକ୍ତି ଚିତ୍ତରେ ପ୍ରକାଶେ ।
କହିଲେ ଶାପ୍ୟ ପାଇବ କହିଦେଲୁଁ ବାବୁ ।
ନୟନେ ଦେଖିଲେ ସିନା ସଂପ୍ରତେ ପାଇବୁ ।
ଯେଣୁକରି ସାଧନାର ମାର୍ଗ କହିଦେବା ।
ଶ୍ରୀକୃଷ୍ଣ ଭଣ୍ଡାର ଧନ ଥୋକାଯେ ବଇବା ।
ଶୁଣି ରାମ ମୁକୁନ୍ଦ ଯେ ଚରଣରେ ପଡ଼ି ।
ଉଠି ଉଭା ହାଇଣ ସେ ବେନିକର ଯୋଡ଼ି ।
ଆଗ୍ୟାଂକର ଗୁରୁବ୍ରହ୍ମା ଅଣାକ୍ଷର କଥା ।
ଯଉଂ ହେତୁ ପାଇଲେ ଖଣ୍ଡିବ ସର୍ବ ବ୍ୟଥା ।
ଅଚ୍ୟୁତ ବଚନ ଯେବେ ବାରଜଣ ଶୁଣ ।
ଅନାଦିକି ଚିହ୍ନିଲେ ଯେ ଯିବ ମନଭ୍ରମ ।
ଶୁଣ ହୋ ମୁକୁନ୍ଦ ରାମ ଅନାଦିର କଥା ।
ଶବଦ ବ୍ରହ୍ମର ସିନା ୟେ ସର୍ବ ବେବସ୍ଥା ।
ଦ୍ୱାଦଶ ପ୍ରକାରେ ଶବ୍ଦ ହୋଅଇ ପ୍ରକାଶ ।
ଅନାଦି ଦେହରେ ସିନା ଶବଦ ନିବାସ ।
ଯେ ଶବଦ ଚିହ୍ନିଲେ ଯେ ଭ୍ରମଯିବ ନାଶ ।
ତାହି କହିଦେବା ତଲେକର ରାମ ଦାସ ।
ଭ୍ରମର ଝିଙ୍କାରି ସାରୀ ପାରା ଯେ କପୋତ ।
କୁକୁଟ ମୟର ଶଙ୍ଖ କାଂସ ତୁରୀମତ ।
ବାଦ୍ୟ ଘଣ୍ଟା ଘେନିଣ ଯେ ଦ୍ୱାଦଶ ଶବଦ ।
ମହାଶୂନ୍ୟ ମଧରୁ ସେ ଶୁଭୁଅଛି ନାଦ ।
ଘୁଉଂ ଘୁଉଂ ବୋଲିଣ ଭ୍ରମର ଧ୍ୱନିକରେ ।
ଘ୍ରିଂ ଘ୍ରିଂ ବୋଲିଣ ଯେ ଝିଙ୍କାରି ଶୁଣରେ ।
ଘଅଂ ଘଅଂ ଶବଦ ସାରୀ ସୁସ୍ୱରେଣ ଧରି ।
ଘୁଂଘୁ ଶବଦ ପାରା କପୋତ ଉଚ୍ଚାରି ।
କେ କେ ବୋଲି ନାଦକରେ କୁକୁଟ ମୟର ।
ଭଂ ଭଂ ବୋଲି ନାଦ ଶଙ୍ଖ ଯେ କାଂସର ।
ତୁ ତୁ ବୋଲିଣ ଯେ ଧ୍ୱନି ତୁରୀ ପୁଣ ଭାଷେ ।

ଘୋ ଘୋ ଘ୍ରାଙ୍ଗ ଘ୍ରାଙ୍ଗ ବାଦ୍ୟ ଘଣ୍ଟାରୁ ପ୍ରକାଶେ ।
ଭୃଙ୍ଗ କାଂସ ଶବଦ ଅଂକାରୁ ଖସି ଆସେ ।
ପାରା ସାରୀ ବେନି ନାଦ ଅକାରୁ ପ୍ରକାଶେ ।
ଘଣ୍ଟା ଧ୍ୱନି ଗୋଟି ଯେ ଆକାରଠାରେ ଦେଖ ।
ଝିଙ୍କାରିର ସ୍ୱନ ନେଇ ଇକାରରେ ଲେଖ ।
କୁକୁଟ ମୟର ନାଦ ଏକାରରୁ ଆସେ ।
ଓକାର ସ୍ୱରରୁ ବାଦ୍ୟ ଧ୍ୱନି ପରକାଶେ ।
ଯେମନ୍ତ ଦ୍ୱାଦଶ ମାତ୍ରା ଅଣାକ୍ଷରଠାରୁ ।
ଦ୍ୱାଦଶ ପ୍ରକାରେ ଶବ୍ଦ ଶୁଭଇ ତହିଂରୁ ।
ମିଶିଣ ଶୁଭୁଛି ସିନ୍ଧୁ ଲହରୀର ପ୍ରାଏ ।
ନ ଜାଣନ୍ତି ମୂଢ଼ଜନ ସୁଗ୍ୟାଂଜନ ଧ୍ୟାଏ ।
ଯେମନ୍ତେ ହୋଇଣ ଧ୍ୱନି ପ୍ରକାଶୁଣ ଅଛି ।
ଏଥିର ଉପରେ ଶବ୍ଦବ୍ରହ୍ମ ଅଭ୍ୟାସୁଛି ।
ମହାଶୂନ୍ୟ ଘରେ ଶବ୍ଦବ୍ରହ୍ମର ଯେ ଠଣା ।
ଜାଣନ୍ତି ସୁଗ୍ୟାଂନୀ ଜନ ଅଗ୍ୟାଂନୀ କି ବଣା ।
ସାରସ୍ୱତ ମନ୍ତ୍ର ଏହି ଅଟଇ ଗୁପତ ।
କଳିଙ୍କୀ ବେଳକୁ ଯେଯେ ହୋଇବ ବ୍ୟକତ ।
ଗୁପତେଣ ରଖିଛନ୍ତି କମଳାରମଣ ।
ନିରାକାର ମନ୍ତ୍ରଂ ସାରସ୍ୱତ ଯେ ଭଜନ ।
କଳି ଶେଷ ବେଳେ ଘୋର ତମ ଆଚ୍ଛାଦିବ ।
କୃଷ୍ଣ ଭଜିବାକୁ କେହି ଜଣେ ଯେ ନଥିବ ।
ଯେମନ୍ତ ଦେଖିଣ ସେ ଯେ ଆଁପେ ଜଗନ୍ନାଥ ।
ବେନିହସ୍ତେ ଧରି ଖଣ୍ଡା ନାଶିବେ ଦଇତ ।
ମାୟାରେ ସମଳ ନଗ୍ରେ ବିଷ୍ଣୁ ଶର୍ମା ଘର ।
ଜନମି ତପସ୍ୟା ଯେ କରିବେ ଚକ୍ରଧର ।
ଅନ୍ଧକାର ନାଶି ଭକ୍ତ ଉଦୟ କରିବେ ।
ନିରାକାର ମନ୍ତ୍ରଦେଇଂ କଲୁଷ ହରିବେ ।
ସାରସ୍ୱତ ମନ୍ତ୍ର ପାଇ ଗ୍ୟାଂନ ଉଦେହେବ ।
କିଛୁଦିନ ଏହି ପୁଣ ଗୁପତେ ରହିବ ।

ବେଳକୁ ଏହୁ ଅଚ୍ୟୁତ ହୋଇବ ବାହାର ।
ଦ୍ୱାଦଶ ଶାଖା ଯେ ଥିବେ ମୋର ସଙ୍ଗତର ।
ତେଣୁକରି ତୁମ୍ଭକୁ କହିଲୁ ହେତୁକର ।
ବେଳକୁ ଜନମ ହେବ ସମଳ ଦେଶର ।
ଯେହି ହେତୁ ଧରି ମନ୍ତ୍ର କରିବ ପ୍ରକାଶ ।
ଯେବେ ଯେ କହିବା ତୁମ୍ଭେ ଶୁଣ ବାରଶିଷ ।
ନର୍ଣ୍ଣୟ ବଚନ ତୁମ୍ଭ ଆଗରେ କହିବା ।
ମନର ସଂଶୟମାନ ସକଳ ଦହିବା ।
କଥାଯେ କହିବା ତୁମ୍ଭେ ଶୁଣ ହେତୁଦେଇଂ ।
ନାମକୁ ଚିହ୍ନିଲେ ସିନା ସବୁଫଳ ପାଇ ।
ମାଳ ପକାଇଲେ ନୋହେ ବଇଷ୍ଣମ ପଣ ।
ହିଂସା ଦମ୍ଭ ଅହଂକାର ମୁଂକାର ତେଜିଣ ।
ପଞ୍ଚାତ୍ମିକ ବୁଝିଥିବ ନାମ ମଧେ ପୁଣ ।
ତାହାକୁ ବୋଲିବା ସୁଗ୍ୟଂ ବଇଷବ ଜନ ।
ପଞ୍ଚାତ୍ମିକ ବୁଝିଥିଲେ ପରମ ସୁଗତି ।
ଜ୍ୟୋତିରେ ଜ୍ୟୋତି ମିଶାଇ ବଇକୁଣ୍ଠ ପାନ୍ତି ।
ପଞ୍ଚଭୂତ ପଞ୍ଚବାଇ ପଞ୍ଚଆତ୍ମା ମନ ।
ପଞ୍ଚବୀଜ ପଞ୍ଚତତ୍ତ୍ୱ ପଞ୍ଚମାତ୍ରା ପୁଣ ।
ଯେମନ୍ତେ ଏ ସପ୍ତ ପଞ୍ଚାତ୍ମିକ ମହାମନ୍ତ୍ର ।
ମନ୍ତ୍ରରାଜ ମଧରେ ଯେ ହୋଇବ ସଂଯୁତ ।
ଓଂକାରକୁ ଆଦିକରି ପଞ୍ଚବୀଜେ ଦେଖ ।
ଯେକାକ୍ଷର ଅଣାକ୍ଷର ମନ୍ତ୍ର ମଧେ ଲେଖ ।
ମହାମନ୍ତ୍ର ମନ୍ତ୍ରରାଜ ପଞ୍ଚାତ୍ମିକ ହେବ ।
ପ୍ରଣବ ଦେହରେ ମାତ୍ରା ତୁଲ୍ୟ ଥାଇଥିବ ।
ଏ ତତ୍ତ୍ୱ ଚିହ୍ନିଲେ ହୋଏ ଭଜନ ସୁଫଳ ।
ଯେ ଭେଦ ନଜାଣି ଗଲେ ଭ୍ରମ୍ୟନ୍ତି ଯେ ମାଳ ।
ବିଷୟାରେ ମନଥୋଇ ମୁଖେ ବୋଲେ ହରି ।
ଯେମନ୍ତ ଭଜନେ ମାଳ ଲକ୍ଷେ ସଂଖ୍ୟା କରି ।
ଯେମନ୍ତ ଭଜନେ କୃଷ୍ଣ ନୋହନ୍ତି ଯେ ବଶ ।

ଯେଇ ଅନ୍ତର୍ଗତରେ ଯେ ନାହିଂ ନା ବିଶ୍ୱାସ ।
ଲୟସୂତ୍ର ଧରିଣ ଯେ ନିଶ୍ଚଳ ଆସନେ ।
ବସିଣ ଜପିବ ମନ୍ତଂ ପଞ୍ଚମାତ୍ମା ଧ୍ୟାନେ ।
ଶ୍ରୀକୃଷ୍ଣ ଚରଣେ ଚିତ୍ତ ନିବେଶିବ୍‌ ଯେବେ ।
ମନର ନିଶ୍ଚଳ ଭକ୍ତି ପ୍ରକାଶିବ ତେବେ ।
ଦଣ୍ଡେ କ୍ଷଣେ ବସିଣ ଶ୍ରୀକୃଷ୍ଣ ନାମ ଘୋଷ ।
ପାଇବ ପରଂମ ଗତି ଭଗତି ବିଶ୍ୱାସ ।
ଗୁରୁ ଗ୍ୟାଂନ ଉପଦେଶ ଯେହାକୁ ଯେ ବୋଲି ।
ସୁଗ୍ୟାଂନ ନିର୍ମଳ ଦେହ ସୁପଥେଣ ଚଳି ।
ଯେମନ୍ତ ସାଧନ ଯେ ପବିତ୍ର ଗଙ୍ଗାଜଳ ।
ଦ୍ରର୍ଶନେ ପରମ ଗତି ସ୍ପର୍ଶନେ ସୁଫଳ ।
ସପ୍ତ ପଞ୍ଚାତ୍ମିକ କଥା କହିବା ହୋ ଶୁଣ ।
ଗୁରୁ ସେବିଥିଲେ ସିନା ଜାଣିପାରେ ପୁଣ ।
ମୁଂକାର ବହିଲେ ଯେଣେ ନ ପାରିବ ପଶି ।
ନିଗୂଢ଼ ପରମ ସନ୍ଧି ଶୁଣ ବାଳଶିଷି ।
ଯେହେର୍ଣେ ଛନ୍ଦରେ ଜଗନ୍ନାଥ ଛନ୍ତି ବସି ।
ଭଗତ ଭାବରେ ଭୋଗ ବିଳାସନ୍ତି ଆସି ।
ବାଞ୍ଛାଫଳ ଦିଅନ୍ତି ଭଗତି ବଢ଼ ଦୂର ।
ଜାଣୁ ବା ନଜାଣୁ କୃଷ୍ଣ ନାମ ଭଜିବାର ।
ଗୋବିନ୍ଦ ଗୋପାଳ ନାମ ଭଜିଲେ ମୁକତି ।
ଭଗତି କରିବା ସିନା ଅଟଇ ଦୁର୍ଗତି ।
ବାଞ୍ଛାଫଳ ତହିଂକି ଯେ ଅଟଇ ଅନ୍ତର ।
ତତ୍ତ୍ୱ ଭକ୍ତମାନଙ୍କର ଆଶ୍ରୟ ସେଠାର ।
କୋଟିକେ ଗୋଟିଏ ସାରସ୍ୱତ ବୋଲି ଲେଖ ।
ଯେମନ୍ତେ ଯେ କୋଟି କୋଟି ମହୀ ମଧ୍ୟେ ଦେଖ ।
ଶ୍ରୀକୃଷ୍ଣ କରୁଣାସିନ୍ଧୁ ଭକ୍ତବନ୍ଧୁ ହରି ।
ଇଷିତ ମାତ୍ରେ କରନ୍ତି ଭବସିନ୍ଧୁ ପାରି ।
ଏବେ କହିବାନା ତତ୍ତ୍ୱ ଗୁପତ ଚରିତଂ ।
ପଞ୍ଚାତ୍ମିକ ଭେଦ ମହାମନ୍ତ୍ରାଦି ସପତ ।

ପ୍ରଣବେ କୁଣ୍ଡଳୀ ଯେ ଆକାର ସେହୁ ହରା ।
ନନ୍ଦ ସାଧୁ ବେନି ନାମ ମହାମନ୍ତ୍ରେ ପରା ।
ମନ୍ତ୍ରରାଜ ମଧ୍ୟେ ଜନ ହ୍ରୀଂଟି ବୀଜରେ ।
ପ୍ରଣବ ଅକ୍ଷରେ ଚିହ୍ନ କୁଣ୍ଡଳୀ ଠାବରେ ।
ଭୂତ ମଧ୍ୟେ ତେଜ ବାଇ ମଧ୍ୟେ ପ୍ୟାନ ସେହି ।
ଆତ୍ମା ମଧ୍ୟେ ତତ୍ତ୍ୱମନ ମଧ୍ୟେ ମନ ସେହି ।
ତତ୍ତ୍ୱ ମଧ୍ୟେ ବୁଦ୍ଧି ସେହି ବୀଜ ମଧ୍ୟେ ପରା ।
ଶ୍ୱରୀରେ ଆକାର ଯେକାକ୍ଷର ବ୍ରହ୍ମେଂ ହରା ।
ପ୍ରଣବେ ଦଣ୍ଡକ କୃଷ୍ଣ ଦୀନକାମ ଜାଣ ।
ବଲ୍ଲଭାୟ କାମବୀଜ ମନ୍ତ୍ରରାଜ ପୁଣ ।
ପଞ୍ଚଭୂତେ ଆପ ସେହି ବାଇବରେ ପ୍ରାଣ ।
ଆତ୍ମା ମଧ୍ୟେ ଧ୍ୟାନଆତ୍ମା ମନରେ ସୁମନ ।
ତତ୍ତ୍ୱରେ ସେ ନାମ ପଞ୍ଚବୀଜେ ନାମ ଦେଖ ।
ଶ୍ୱରୀରେ ଏକାର ମାତ୍ରା ପ୍ରଣବରେ ଲେଖ ।
ଯେକାକ୍ଷର ବ୍ରହ୍ମରେ ଯେ ହରେ ନାମ ଦେଖ ।
ସପ୍ତ ପଞ୍ଚାତ୍ମିକରେ ଯେ ଯେହୁ ଉପଲକ୍ଷ ।
ପ୍ରଣବେ ତାରକ ରାମ କନ୍ଦ ମଧୁ ନାମ ।
ମନ୍ତ୍ରରାଜ ମଧ୍ୟେ ଗୋପୀ ରମାବୀଜ ପୁଣ ।
ଭୂତ ମଧ୍ୟେ ମହୀ ଦେଖ ବାଇରେ ସମାନ ।
ଆତ୍ମା ମଧ୍ୟେ ଗ୍ୟାଂନଆତ୍ମା ମନରେ କୁମନ ।
ତତ୍ତ୍ୱରେ ସେ ନିଜ ରୂପ ବୀଜ ମଧ୍ୟେ ରମା ।
ଶ୍ୱରୀରେ ଉକାର ମାତ୍ରା ହରୁ ବ୍ରହ୍ମ ନାମା ।
ପ୍ରଣବରେ ଅର୍ଦ୍ଧମାତ୍ରା ଶ୍ୟାମ ନାମ ବୋଲି ।
ମନ୍ତ୍ରରାଜେ ସ୍ୱାହାକ୍ଷର ଭୂତେ ବାଇ କଲି ।
ପବନେ ଉଦାନ ଜୀବ ଆତ୍ମା ବୋଲି ଲେଖ ।
ମନ ମଧ୍ୟେ ବିମନ ଯେ ତତ୍ତ୍ୱରେ ବିବେକ ।
ବୀଜ ମଧ୍ୟେ ଧ୍ୟାନ ସେହୁ ମାତ୍ରାରେ ଇକାର ।
ଯେକାକ୍ଷର ବ୍ରହ୍ମରେ ଯେ ହରିନାମ ଧର ।

ପ୍ରଣବରେ ବିନ୍ଦୁ କାମ ବ୍ରହ୍ମ ବୋଲି ନାମ ।
ମନ୍ତ୍ରରାଜ ମଧ୍ୟେ ହକ୍ଷର ବୋଲି ଜାଣ ।
ଭୂତ ମଧ୍ୟେ ଆକାଶ ବାଇ ମଧ୍ୟେ ବ୍ୟାନ ।
ଆତ୍ମା ମଧ୍ୟେ ପରମ ହେତୁକର ରାମ ।
ମନ ମଧ୍ୟେ ଅମନ ତତ୍ତ୍ୱରେ ଆଶ୍ରୟ ସେ ।
ବୀଜ ମଧ୍ୟେ ପରମବ୍ରହ୍ମ ଅକାର ମାତ୍ରା ସେ ।
ସପ୍ତ ପଞ୍ଚାତ୍ମିକ ଯେହି ମହାଶୂନ୍ୟ ଘର ।
ଜାଣନ୍ତି ସଗ୍ୟାଂନୀ ଜନେ ନଜାଣେ ପାମର ।
ଭକ୍ତି ମୂଳ ହେତୁ ଯେହି ସୁଜ୍ଞ ଭକ୍ତ ବୋଲି ।
ଶ୍ରୀକୃଷ୍ଣ ଚରଣ ଭକ୍ତି ତୁମ୍ଭକୁ କହିଲି ।
ଜନ୍ମେ ଜନ୍ମେ ତୁମ୍ଭେ ଆମ୍ଭ ଆତ୍ମାର ଭଗତ ।
ତେଣୁକରି କହିଦେଲୁଂ ଭକ୍ତି ସାରସ୍ୱତ ।
ଶ୍ରୀକୃଷ୍ଣ ଜନମ ହେଲେ ସଙ୍ଗେ ସଙ୍ଗେ ଥାଉଂ ।
ଶ୍ରୀକୃଷ୍ଣ ମହିମା ଗୀମ କରିଣ ଯେ ଗାଉଂ ।
ନୋହିଲା ଠାବରେ କହି ଦେଉଥାନ୍ତି ହରି ।
ପାମରି ଅଚ୍ୟୁତ ତେଣୁ ବୋଲେ ହରି ହରି ।

ଇତିଶ୍ରୀ ଶୂନ୍ୟ ସଂହିତାୟା ଗୁରୁଶିଷ୍ୟ ବୋଧନେ ସପ୍ତପଞ୍ଚାତ୍ମିକ
କଥନେ ନାମ ଷଷ୍ଠ ଅଧ୍ୟାୟଃ ।

## ସପ୍ତମ ଅଧ୍ୟାୟ

ରାମ ଯେ ମୁକୁନ୍ଦ ଗୁରୁପାଦେ ପ୍ରଣମିତ ।
ବିନୟେ ଭାବରେ ଉଠି କଲେ ଦଣ୍ଡବତ ।
ତୁମ୍ଭେ ପରଂବ୍ରହ୍ମ ଗୁରୁ ହେତୁ ଗ୍ୟାଂନ ଦେଲ ।
ପଞ୍ଚଭୂତ ପଞ୍ଚତତ୍ତ୍ୱ ସକଳ ବଇଲ ।
ମହାମନ୍ତ୍ର ମନ୍ତ୍ରରାଜ ବୀଜବ୍ରହ୍ମ କଥା ।
ମାତୃଗର୍ଭେ ହେତୁ ଆଦି ସକଳ ବେବସ୍ଥା ।

ପ୍ରଣବଠାବରୁ ଅଣାକ୍ଷର ଯାଏ ନେଲ ।
ନିତ୍ୟ ନିତ୍ୟ ମହାନିତ୍ୟ ଯନ୍ତ ବୁଝାଇଲ ।
ଛଡ଼ଚକ୍ର ବିନ୍ଦୁ ବ୍ରହ୍ମ ନାମବ୍ରହ୍ମ ଆଦି ।
ଜ୍ୟୋତିବ୍ରହ୍ମ ଶବ୍ଦବ୍ରହ୍ମ ଆଦି ବ୍ରହ୍ମବିଧି ।
ରେଚକ ପୂରେକ ଯେ ତାରେକ ଆଦି ଯଥା ।
ଯେ ଯେମନ୍ତେ ହେଲେ ଜାତ ଯେମନ୍ତ ବେବସ୍ଥା ।
ଗୁପତ ପ୍ରକଟକରି ସକଳ ବଇଲ ।
ସଂସାର ସମୋଦ୍ର ମଧ୍ୟୁଂ ଉଧରି ଧଇଲ ।
କରୁଣା ନାବରେ ନେଇ ବସାଇଲ ଧରି ।
କାଣ୍ଡାରି ହୋଇଣ ଭବସିନ୍ଧୁ କଲ ପାରି ।
କୋଟି ଜନ୍ମ ପୁଣ୍ୟ ଆମ୍ଭ ବାସନା ବାସିଲା ।
ତତ୍ତ୍ୱ ଉପଦେଶ ହେତୁ ଗ୍ୟାଂନ ଯେ ଦିଶିଲା ।
ନମୋ' ନମୋ' ଗୁରୁଦେବ କୃପାମୟରାଶି ।
ତୁମ୍ଭ ହେତୁ କୃପାରୁ ଅଗ୍ୟାଂନ ଗଲା ଧ୍ୱଂସି ।
ସଦଗୁରୁ କୃପାହେଲା ତୁଟିଲା ଅନ୍ଧାର ।
ଆମ୍ଭ ଛାର କି ବର୍ଣ୍ଣିବୁ ଚରଣେ ତୁମ୍ଭର ।
ଆଗ୍ୟାଂ ହୋଇଅଛି ଶୂନ୍ୟ ଭଜ ନିରାକାର ।
ଯେ ଦେହ ମଧରେ କଉଂ ସାଧନ ପ୍ରକାର ।
ଆଗ୍ୟାଂ ହେଲେ ମନର ସଂଶୟ ଯିବ ନାଶ ।
ଚରଣେ ପଡ଼ିଣ ଆଗ୍ୟାଂ ମାଗେ ରାମଦାସ ।
କଉଡ଼ି ବର୍ତ୍ତନଦେଇ ଓଢ଼ଣୀ ଘୋଡ଼ାଇ ।
ଚରଣେ ପଡ଼ିଣ ଆଗେ ଉଠି ଉଭାହୋଇ ।
ଶିଷ୍ୟର ଭକତି ଦେଖି ଅଚ୍ୟୁତ ଯେ ଦାସ ।
ଶ୍ରୀକୃଷ୍ଣ ଚରଣେ ନେଇ ଲଗାଇଣ ଆଶ ।
ଅନାଦି ପାଦରେ ନେଇ ଚିତ୍ତ ଲଗାଇଲେ ।
ଶବଦ ବ୍ରହ୍ମରେ ପଶି ପୁଣି ପାଲଟିଲେ ।
ଗାୟତିରୀ ମନ୍ତ୍ର ଗୋଟି ମନ ମଧ୍ୟେ ଘୋଷି ।
ଫୁଟିଲା ଶବଦ ବ୍ରହ୍ମ ଅବ୍ୟଗତ ଦିଶି ।
ଶୁଣ ତୁମ୍ଭେ ବ୍ରଜସୁତ ରାମଚନ୍ଦ୍ର ମୂଳେ ।

ଅଚ୍ୟୁତ ବଚନ ଧରି ଥିବ କାଳେ କାଳେ ।
ଅଚ୍ୟୁତ ଦାସର ବଟପୁଟରେ ନିବାସ ।
ବଟପୁଟିଆକୁ ମୁଁ ଯେ କରିଥାଇ ଆଶ ।
ସେ ଯାହା କହନ୍ତି ତାହା କହୁଥାଇଂ ଘୋଷି ।
କହିବାନା ଲଏକର ବାର ଗୋପ ଶିଷି ।
ବାରଣ ବେଳକୁ ତୁମ୍ଭେ ବାରଜଣ ଥିବ ।
ଅଚ୍ୟୁତ ସଙ୍ଗରେ କଳି ଦ୍ରଶନ କରିବ ।
ନିରାକାର ଭଜନ ହେତୁ ଜନ୍ମଂ ହୋଉଥିବ ।
ଯେବେ ଯେ କହିବା ତତ୍ତ୍ୱ ମନେ ବିସୋରିବ ।
ଛାୟା ଜ୍ୟୋତି ଅବାଡ଼ୁ ବିନ୍ଦୁର ବିଚାର ।
ଯେ ଅନ୍ତେ କହିବା ଶୂନ୍ୟ ମନ୍ତ୍ର ନିରାକାର ।
କଥାଯେ କହିବା ତୁମ୍ଭେ ଶୁଣ ମନ ଦେଇ ।
ଗହନ ଗୁପତ ସନ୍ଧି ନ କହିବ କାହିଂ ।
ଆମ୍ଭ ପାଦେ ହସ୍ତ ଦେଇଥାଅ ବାରଜଣ ।
ଦାମ୍ଭିକ ନାସ୍ତିକ କପଟୀ ଜନ ଆଗେଣ ।
ପଣ୍ଡିତ ଆଗରେ ଏହା କେଭେଂ ନ କହିବ ।
ପଣ୍ଡିତାଇ ଅର୍ଥମାନ ତା ଆଗେ କହିବ ।
ସୁବ୍ରହ୍ମାଣ୍ଡ ସୁପଣ୍ଡିତ ସୁବୈଷ୍ଣବ ଦେଖି ।
ସୁଜନ ସୁଗୋଷ୍ଠୀ ସଙ୍ଗେ ଭକ୍ତି ଅଙ୍ଗେ ଲେଖି ।
ଯେମନ୍ତେ ବସିଣ ଭକ୍ତ ବିଚାର କରିବ ।
ଭକତି ଭାବରେ ଦିନକାଳ ହରୁଥିବ ।
ଏହା ନ ମାନିଲେ ନଷ୍ଟଭ୍ରଷ୍ଟ ଯେ ହୋଇବ ।
ଅଙ୍ଗରେ କ୍ଳେଶ ପାଇବ ଦୁଃଖରେ ମଜ୍ଜିବ ।
ଶୁଣିଣ ବାର ଗୋପାଳ ପାଦତଳେ ପଡ଼ି ।
ଶ୍ରୀମୁଖ ବଚନ କେହୁ ପାରିବଇଂ ଏଡ଼ି ।
ଯେ ଯେହା ଲଘିବ ଆପଣେ ଯିବ ନାଶ ।
ହୋଇବ ବଧୀର ଅନ୍ଧ ହେବ ମହାଦୋଷ ।
ଆଗ୍ୟାଂ ହେଉ ତୁମ୍ଭ ପାଦେ ଚିତ୍ତ ଦୃଢ଼େ ରହୁ ।
ଶ୍ରୀକୃଷ୍ଣ ଚରଣ ବିନୁଂ ଆନ ଭକ୍ତି ନୋହୁ ।

ଶିଷ୍ୟ ଭକ୍ତି ଦେଖିଣ ଅଚ୍ୟୁତ ଦାସ ଭଣି ।
କହିବା ସିଦ୍ଧାନ୍ତ ଭକ୍ତି ସାଧନ ଯେ ପୁଣି ।
ଛାୟା ମନ୍ତ୍ର କହିବା ଦର୍ଶନେ ପାପ ହରୁ ।
ଛାୟାର ଦର୍ଶନେ ସର୍ବ କଲ୍ମଷରୁ ତାରୁ ।
ସୁରଲୋକ ଦେହରେ ଛାୟାର ନାହିଁ ବାସ ।
ନରଲୋକ ଅଙ୍ଗେ ଛାୟା ହୋଇଛି ପ୍ରକାଶ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି କରି ।
ଛାୟାବ୍ରହ୍ମ ରୂପେ ପୂରି ଅଛନ୍ତି ଯେ ହରି ।
ସେ ଛାୟା ଦ୍ରର୍ଶନେ ଯେ ପାପମାନ ହତ ହୋଏ ।
କ୍ଷଣେ ଦଣ୍ଡେ ବସି ଏକା କରୁଥିବ ଲୟେ ।
ଛାଇ ଯଉଂ ଦିଗେ ଥିବ ସେ ଦିଗକୁ ମୁଖ ।
ଅଗ୍ରେ ଛାୟା ଦେହ ଗୋଟି ଚିହ୍ନିଣ ନିରେଖ ।
କଣ୍ଠମୂଳେ ନେତ୍ର ରଖି ମନେ ମନ୍ତ୍ର ସ୍ମର ।
ଓଂ ବ୍ରହ୍ମଣ୍ୟ ବୋଲିଣ ମୁଖରେ ଉଚାର ।
॥ ଓଂ ଛାୟା ବ୍ରହ୍ମ ଦର୍ଶନେ ନମଃ ॥
ମନ ଦେଇ ଷଡ଼ାକ୍ଷର ମନ୍ତ୍ରକୁ ଜପିବ ।
ଆଡ଼ବାଙ୍କ ନୋହିଣ ଅଲଗେ ରହିଥିବ ।
ନେତ୍ରକୁ ନିଚଳ ରଖି ଆକାଶ ନିରେଖ ।
ଆପଣା ସ୍ୱରୂପ ପ୍ରାୟେ ଛାୟାବ୍ରହ୍ମ ଦେଖ ।
ଶେତବର୍ଣ୍ଣ ରଙ୍ଗବର୍ଣ୍ଣ ଯେବେଣ ଦିଶନ୍ତି ।
ସୁପୁଣ୍ୟ ଉଦୟେ ଲାଭ ସମ୍ପୂର୍ଣ୍ଣ ଦିଅନ୍ତି ।
ମଳିନ ଦିଶନ୍ତି ଯେବେ ଛାୟାବ୍ରହ୍ମ ଅଙ୍ଗ ।
ସେଦିନ ନିଶ୍ଚୟ ଯେ ହୋଇବ ମାନଭଙ୍ଗ ।
ମାନହାନି ଦ୍ରବ୍ୟହାନି ସେଦିନ ହୋଇବ ।
ଅଷ୍ଟାଙ୍ଗରେ ଅବନା ଅଜପା ବସାଇବ ।
ଅଣାକ୍ଷର ମନ୍ତ୍ର ଗୋଟି ସୁମ୍ଭରଣା କଲେ ।
ଶ୍ୱେତବର୍ଣ୍ଣ ଛାୟା ଅଙ୍ଗ ଦିଶିଯାଇଂ ଭଲେ ।
ପାତେକ ଅଙ୍ଗରେ ଥିଲେ ବିରୂପ ଦିଶନ୍ତି ।
ଶୁଣହୋ ଗୋପାଳ ପୋଅ ଛାୟାବ୍ରହ୍ମ ରୀତି ।

ପ୍ରତିଦିନ ଛାୟାଅଙ୍ଗ ଦ୍ରୁଶନ କରିବ ।
ଅଙ୍ଗ ଶୁଦ୍ଧ ହେବ ସର୍ବ କଳୁଷ ହରିବ ।
ମସ୍ତକ ନ ଦିଶେ ଯେବେ ପିତାର ଯେ ମୃତ୍ୟୁ ।
ଜରାରୋଗ ଦିନୁଂଦିନ ଉପସ୍ଥିତ ଶତ୍ରୁ ।
ବାହୁ ନ ଦିଶିଲେ ଭ୍ରାଥ କିମ୍ବା ପତ୍ନୀ ନାଶ ।
ଜାନୁଚ୍ଛେଦେ ହୋଇଲେ ଯେ ପୁତ୍ରର ବିନାଶ ।
ଶ୍ୱେତବର୍ଣ୍ଣ ହୋଇଥିଲେ ଭକ୍ତିଭାବେ ଚିତ୍ତ ।
ଛାୟାକୁ ଦ୍ରୁଶନକରି ବିନାଶ ଦୂରିତ ।
ଛାୟାସିଦ୍ଧ ହୋଇଲେ ଯେ ଅଙ୍ଗ ସିଦ୍ଧ ହୋଇ ।
ଆପଣା ମୃତ୍ୟୁ ଦେଖିଲେ ଛାୟା ନ ଦିଶଇ ।
କମଳ ଆସନେ ବସି ବେନି ଭୁଜ ଛନ୍ଦି ।
ଛାୟା ଅଙ୍ଗେ ମନକୁ କରିବ ନେଇ ବନ୍ଦୀ ।
ସୂର୍ଯ୍ୟାୟଣ ସାଧିବ ଯେ ପ୍ରହରେକ ବସି ।
ଚାନ୍ଦ୍ରାୟଣେ ସାଧି ବେନି ପ୍ରହର ସେ ନିଶି ।
ନବତଳ ହାଣ୍ଡିରେ ଅରୁଆ ଅନ୍ନ ବେଳେ ।
ଭୋଜନ କରିବ ଦିବା ମଧ୍ୟାହ୍ନର କାଳେ ।
ଦ୍ୱାଦଶ ବରଷେ ମନ୍ତ୍ର ସମାପତ ହେବ ।
ଛାଇ ସଙ୍ଗେ ପଶି ମିଶି ପାଲଟି ଆସିବ ।
ଛାୟାଗୋଟି ସର୍ବଜୀବ ପାପପୁଣ୍ୟ ଜାଣେ ।
ଛାୟା କହୁଥାଇଂ ଶୂନ୍ୟ ମୃତ୍ୟୁ ଯେ ଶ୍ରବଣେ ।
ମଲେ ଯେ ଯାଇଣ ଜୀବ ଛାୟାରେ ମିଶଇ ।
ଛାୟା ପୁଣ ଯାଇ ଶୂନ୍ୟ ରୂପରେ ପଶଇ ।
ଯେ ରୂପେ ଛାୟାର ଭେଦ ଗୁରୁ ଦ୍ୟନ୍ତି କହି ।
ଗୁରୁ ନ କହିଲେ ଶିଷ୍ୟ ଜାଣିପାରେ କାହିଁ ।
ତଣ୍ଡୁଳ ଶ୍ରୀଫଳ କଞ୍ଚାଦୁଧ କନ୍ଦମାନ ।
ମଣୋହି କରିବ ରମ୍ଭାଫଳ ସଙ୍ଗତେଣ ।
ଦ୍ରୁଶନେଣ ପାପମାନ ଅଙ୍ଗୁ ଛାଡ଼ି ଯାଇ ।
ସଦ୍‌ଗୁରୁ ସେବାକଲେ ଛାୟାଭେଦ ପାଇ ।
ଅଭଗତ ଶିଷ୍ୟକୁ ଯେ କେଭେଂ ନ କହିବ ।

ଗୁରୁଶିଷ୍ୟ ବେନିଜନେ ଅପ୍ରାଧ ପାଇବ ।
ରାମଚନ୍ଦ୍ର ମୂଳେ ବାରଜଣ ଗୋପ ବାଳ ।
ଚରଣେ ପଡ଼ିଣ ଉଠି ଯୋଡ଼ି ବେନିକର ।
ବିନ୍ଦୁ ବ୍ରହ୍ମ ଜ୍ୟୋତି ବ୍ରହ୍ମ ଅବାଡ଼ ଅନହତ ।
ଆଗ୍ୟାଂ ହେବ ସଂଶୟେ ସେ ନ ରହିବ ଚିତ୍ତ ।
ଶିଷ୍ୟ କର୍ପୁନ୍ୟ ଦେଖିଣ ଆଗ୍ୟାଂ କଲେ ଗୁରୁ ।
ପୂଜାବିଧି ବିଧାନ ଘେନିଲେ ଶିଷ୍ୟଠାରୁ ।
ସନ୍ତୋଷ ହୋଇଣ ଗୁରୁ ବୋଲନ୍ତି ବଚନ ।
ସଦଗୁରୁ ସେବାକଲେ ଶିଷ୍ୟ ଜାଣେ ପୁଣ ।
ଗୁରୁ ନିନ୍ଦାକଲେ କଳପକ ପାପ ପାଇ ।
ଶିଷ୍ୟ ନାଶଯାଇଂ ଗୁରୁ ଅତି କ୍ଲେଶ ହୋଇ ।
ସୁସନ୍ତୁ ଚିହ୍ନିଣ ମନ୍ତ୍ର ଉପଦେଶ ଦେବ ।
ଗୁରୁଶିଷ୍ୟ ବେନିଜନେ ଉଧାର ପାଇବ ।
ଯେଣୁକରି କହିଲୁ ମୁକୁନ୍ଦ ଦାସ ଶୁଣ ।
ମହାମୂଢ଼ ହୋଇବ ଗୋପାଳକୁଳ ପୁଣ ।
ମାଛ ମାଂଏସ ଖାଇଣ ନାନା ଭ୍ରଷ୍ଟ ହେବେ ।
କୋଟିକେ ଗୋଟିଏ ମାତ୍ର ସନ୍ମତି ଥିବେ ।
ଯେମାନ ଭେଦ ସେଠାବେ ପ୍ରକାଶ ନ କର ।
ଅଚ୍ୟୁତ ବଚନ ବାରଜଣ ତୁମ୍ଭେ ଧର ।
ଜ୍ୟୋତିବ୍ରହ୍ମ କଥା ଯେବେ ଶୁଣ ମନଦେଇଂ ।
ଯେକାକ୍ଷର ବ୍ରହ୍ମ ବୋଲି ଯାହାକୁଇ କହି ।
ଶ୍ୱେତ ପୀତ ନୀଳ ଯେ ଲୋହିତ ଚାରିକଳା ।
ଚାରିକଳା ମିଶିଣ କୁଙ୍କୁମ ସଙ୍ଗେ ମେଳା ।
ପାଞ୍ଚ ଳା ଡୋଳା ମଧ୍ୟେ ଚିହ୍ନି ଠାବକର ।
କହିଦେବାଟି ଉପାୟେ ସେ ମନ୍ତ୍ର ଅକ୍ଷର ।
ପିଠ । ଟେକିଣ ଯେ ଲଲାଟ ପରେ ରଖ ।
ନୟନକୁ ଥିର କରି ଶୂନ୍ୟକୁ ନିରେଖ ।
ମଣ୍ଡୋଳ ସ୍ୱରୂପ ଜୋତି ପ୍ରକାଶ ହୋଇବ ।
ମନ ନୟନକୁ ତହିଂ ନିଶ୍ଚଳେ ଥୋଇବ ।

ଅଭ୍ୟାସ କରନ୍ତେ ଜ୍ୟୋତି ପ୍ରକାଶିବ ଯେବେ ।
ପାଇବ ପରମ ଗତି ଭ୍ରାନ୍ତି ଯିବ ତେବେ ।
ବାତ୍ର ଦ୍ରଶନେ ଯେ ଅନେକ ପାପ କ୍ଷୟେ ।
ବିଜୁଳି ମାଳିକା ପ୍ରାୟେ ଯେଣୁ ଅଗ୍ରେ ରହେ ।
ଜାଲ ମାଳା ପ୍ରାୟେ ଯେ ନୟନ ଅଗ୍ରେ ଦେଖ ।
ହଂସର ସେ ରୂପ ସେହି ନୟନେ ନିରେଖ ।
ରେହ ରୂପ ତଥି ଅଗ୍ରେ ବିନ୍ଦୁ ରୂପ ଦେଖ ।
ନୟନର ଅଗ୍ରେ ଲୀଳା କରନ୍ତି ଅଲେଖ ।
ଯେମାନ ଚିହ୍ନିଲେ ଜନ୍ମ ସୁଫଳ ହୋଅଇ ।
ଅନହତ ଧ୍ୱନିରେ ଯେ ଚିତ୍ତକୁ ଗୁହାଇ ।
ସୂକ୍ଷ୍ମରେ ବସିଣ ମନ ନୟେନ ମିଶାଇ ।
ସଦ୍‌ଗୁରୁ ଆଗ୍ୟାଂ ଘେନି ମନ ମଧ୍ୟେ ଥୋଇ ।
ନୟନେ ଦେଖିବ କର୍ଣ୍ଣେ ଶୁଣିବ ଶବଦ ।
ଯିବା ଆସିବାକୁ ଆଉ ନଥିବ ଯେ ଖେଦ ।
ଅନେକ ସାହାସ୍ର ବିଦ୍ୟା ପଠନ ଯେ କରି ।
ପଣ୍ଡିତ ପଣ ହୋଇଲେ ନ ପାରଇ ତରି ।
ସଂସାରେ ଭ୍ରମିଣ ପଣ୍ଡିତାଇ ପଣେ ଆଶା ।
ଶ୍ରୀକୃଷ୍ଣ ଚରଣ ବିନା ବିଷୟ ବେବସ୍ଥା ।
ଅନ୍ତକାଳେ ପୁଣି ତହିଂ ପଡ଼େ ତାରତମ ।
ପଣ୍ଡିତ ବୋଲିଣ କିକି ନ ଦଣ୍ଡଇ ଯମ ।
କେବଳ ଶ୍ରୀକୃଷ୍ଣ ବିନା ମୁକ୍ତି କାହିଂ ନାହିଂ ।
ଶ୍ରୀକୃଷ୍ଣ ନାମକୁ ଯେ ପଣ୍ଡିତ ସମ କାହିଂ ।
ସଂସ୍କୃତ ପରାକୃତ ଯେ ଦୁଇ ସମସରି
କେବଳ ଶ୍ରୀକୃଷ୍ଣ ନାମ ଅମୃତ ମାଧୁରୀ ।
ବାଙ୍କକରି ବୋଲୁ କିନା ରାମକୃଷ୍ଣ ହରି ।
ଅନାଦି ଅବ୍ୟକ୍ତ ବ୍ରହ୍ମ ମୁକୁନ୍ଦ ମୁରାରି ।
ସଦଗୁରୁ ସେବାକର ନକର ଅନ୍ୟଥା
ଯଉଂ ନାମ ଧରି ଆଦି ମୁଣ୍ଡାଇଲେ ମଥା ।
ଶୂନ୍ୟକୁ ଚିହ୍ନିଲେ ନିରାକାର ଭେଦହେବ ।

ସଦଗୁରୁ ସେବାକଲେ ସଂଶୟ ତୁଟିବ ।
ସଚ୍ଛଙ୍ଗ କରିଣ ଅବିକାର ପୁରେ ପଶ ।
ସାନ ବଡ଼ ନାହିଂ ଯେ ଭୂମିରେ ନିଜ ବାସ ।
ଗୁରୁ ସେବାକରେ ତହିଂ ଶିଷ୍ୟର ଚରଣ ।
ଶିଷ୍ୟଠାରେ ଭବେ ହୋଯେ ଯହିଂ ଶବ୍ଦବ୍ରହ୍ମ ।
ନିରାକାର ଭଜନରେ ନିର୍ମଳର ଗତି ।
ଥରେ ଉଚ୍ଚାରିଲେ କୋଟି ଯଜ୍ଞ ଫଳ ପାନ୍ତି ।
କୋଟି ଦାନ କୋଟି ପୁଣ୍ୟ କୋଟି ତୀର୍ଥ ଫଳ ।
କୋଟି ଅଶ୍ୱମେଧ ଯହିଂ ନୋହେ ସମତୁଲ ।
କୋଟିକେ ଗୋଟିଏ ଜାଣେ ମେଦିନୀ ଧାରଣା ।
ନିରାକାର ଭଜନରେ ନିର୍ଲେପ କଳ୍ପଣା ।
କଳଙ୍କି ଉଦୟେ ସ୍ୱର୍ଗ୍ୟଂ ଭକ୍ତ ଉଦେହେବେ ।
ନିରାକାର ଭଜନ ଯେ ନିଷ୍କଳଙ୍କି ତେବେ ।
ତୁମ୍ଭଙ୍କୁ କହିବା ବାରଜଣ ଶୁଣ ଏବେ ।
ହେତୁ ଜନ୍ମ ହୋଉଥିବ ଭଜନ ପ୍ରସ୍ଥାବେ ।
ବେଳକେ ଉଦୟେ ହେବ ଆମ୍ଭ ସଙ୍ଗତରେ ।
ଗୟାରେ ସମ୍ବଳ ନଗ୍ରେ ଶର୍ମାଦ୍ୱିଜ ଘରେ ।
ଆପଣେ ଜନମ ହେବେ ଦେବ ଜଗନ୍ନାଥ ।
ଦ୍ୱାଦଶ ହସ୍ତ ଯେ ଖଣ୍ଡାଧରି ବେନିହାଥ ।
ଭକ୍ତ ଉଦେ ହେବେ କଳି ତମ ହେବ ନାଶ ।
ଅଚ୍ୟୁତ କହଇ ନିରାକାର ଉପଦେଶ ।
ଶୁଣି ବ୍ରଜବାଳେ ଉଠି ହରି ହରି ବୋଲେ ।
ଅନନ୍ତ ବାଳ ଗୋପାଳ ନାମ ତେଣୁ ଦେଲେ ।
ଆମ୍ଭ ନାମ ଅଚ୍ୟୁତ ଅନନ୍ତବାଳ ବୋଲି ।
ଗୋପାଳ କୁଳକୁ ତେଣୁ ଉଧାର ଯେ କରି ।
ଅନନ୍ତ କୁଳ ଉଧାରି ଅଚ୍ୟୁତ ନାମ ତେଣୁ ।
ଆଦି ନାରାୟଣ କୃପା ହୋଇଲା ସେ ଯେଣୁ ।
ଅର୍ନ୍ତଯ୍ୟାମୀ ଆଗ୍ୟାଂରେ ଗୋପାଳ ଦଣ୍ଡପାଟ ।
ଆଗ୍ୟାଂ ଭ୍ରଷ୍ଟହେଲେ ଯେ ହୋଇବ ମୁଣ୍ଡକାଟ ।

ନୀଳଚକ୍ର ସନ୍ତକ ଯେ ତାଳପତ୍ର ଲେଖ ।
ଦେଖିଣ ଗୋପାଳ କୁଳ ଉପେଖିବେ ଦୁଃଖ ।
ନାନା ଦୁରୁଗତି ପାପ ଖଣ୍ଡଣ ହୋଇବ ।
ଅଭଗତି କଲେ ନଷ୍ଟଭ୍ରଷ୍ଟ ହୋଇଯିବ ।
ଶୁଣ ହୋ ମୁକୁନ୍ଦ ରାମ ଗୁପ୍ତ ମନ୍ତକଥା
ନିରାକାର ଭଜନ ଯେ ଅବ୍ୟକ୍ତ ବେବସ୍ଥା ।
ଗୁପତେ ରଖିବ ବାରଜଣ ଯେକମନେ ।
ଗୋଲକେ ପଶିବ ଯଉଂ ମନ୍ତ୍ର ଉପାସନେ ।
ଦୃଢ଼ ମନ୍ତ୍ରଂ ଦୃଢ଼ ଚିତ୍ତ ଅସମ୍ଭବ ବାଣୀ ।
ଅନନ୍ତ ଅବ୍ୟକ୍ତ ବିଷ୍ଣୁ ସମ୍ଭୂତ ଯେ ପୁଣି ।
ଅକ୍ଷରରେ ମିଶିଣ ଯେ ହରି କରେ ବାସ ।
ପ୍ରଣବ କହି ଟାଣେ ଅଲେଖଠାକୁ ଆଶ ।
ହିନ୍ଦୁ ବୋଲି ଅଲେଖ ତୁରୁକ ଅଲେଫ ଯେ ।
ଏଣୁ ଅଲେଫ ତେଜି ହିନ୍ଦୁ ଅଲେଖ ହିଂ ଭଜେ ।
ଆକାର ଧରିଣ ବର୍ଗ ପଞ୍ଚ ହେଲେ ମୂଳ ।
ତିନି ଯେ ଅକ୍ଷର ମାତ୍ରା ଚାରି ହେଲେ ଠୁଳ ।
ଯେମନ୍ତେ ହୋଇଣ ନାମ ଉଦୟେ ଦିଶିଲେ ।
ଚତୁବର୍ଗେ ମାତ୍ରା ଚାରି ତ୍ରିକ୍ଷରେ ମିଶିଲେ ।
ମାତ୍ରା ବେନି ପଞ୍ଚ ମିଶି ହେଲେ ଏକମେଳ ।
ଛଡ଼ବର୍ଗ ପଞ୍ଚାକ୍ଷର ତିନିମାତ୍ରା ଠୁଳ ।
ବେନିବର୍ଗ ପଞ୍ଚାକ୍ଷର ଷଡ଼ବର୍ଗଠାରେ ।
ଚାରିକ୍ଷର ବେନିକ୍ଷର ସପ୍ତମ ବର୍ଗରେ ।
ସପ୍ତମ ପ୍ରଥମ ବର୍ଗେ ତ୍ରିଅ ଏକକ୍ଷର ।
ଯେହି ଚାରିକ୍ଷର ଧରି ଶେଷ ବେନିକ୍ଷର ।
ନିରାକାର ଚାରିବର୍ଗ ତିନିକ୍ଷର ଧର ।
ଶୂନ୍ୟକୁ ବସାଅ ନେଇ ମସ୍ତକ ଉପର ।
ପ୍ରଥମ ଶ୍ୱରୀରେ ଯେହ୍ନୁ ବିଶ୍ରାମିଲେ ଆସି ।
ନିରାକାର ଭଜନ ଯେ ନିର୍ମଳେ ପ୍ରକାଶି ।
ପଢ଼ିଲେ ଯେମନ୍ତ ହେବ ଗୁପତ ଯେ କର ।

ନିରାକାର ମନ୍ତ୍ର ଭଜି ଦୁର୍ଗତି ଯେ ହର ।
ଯେ ଭେଦ ଜାଣିଲେ ହେବ ନିର୍ମଳ ଭଗତି ।
ଜନ୍ମ ମୃତ୍ୟୁ ସରିସମ ନ ଥିବ ଯେ ଭୀତି ।
ବେଳକୁ ଯେ ଭଜନ ଯେ ହୋଇବ ପ୍ରକାଶ ।
ସଦଗୁରୁ ସେବାକଲେ ଫିଟିବ ସନ୍ଦେଶ ।
ଭାଗବତ ପୁରାଣ ଯେ ନାଟକ ସଙ୍ଗୀତ ।
ସଁନ୍ଧି ଯେ ଶବଦ ବାକ୍ୟ ବିବାଦ ଯେତେକ ।
ଯେଥିରେ ଯେମାନେ କେହି ନ ପାରନ୍ତି ପଶି ।
ଗୁରୁ ଶିଷ୍ୟ ଗୁପ୍ତ ସନ୍ଧି ଭକ୍ତି ସୁଧାରାଶି ।
ଏ ଭେଦ ଜାଣିଲେ ଶାସ୍ତ୍ର ପଢ଼ୁ ବା ନ ପଢ଼ୁ ।
ପାଇବ ପରମ ଗତି ଭକ୍ତି ସ୍ନେହ ବଢ଼ୁ ।
କହିଲୁଂ ତୁମ୍ଭଙ୍କୁ ଫେଡ଼ି ଦୃଢ଼େ ରସ ଚିତ୍ତ ।
ଅଗ୍ୟାଂନ ଆଗରେ ଯେହା ନ କରି ବ୍ୟକତ ।
ମୁକୁନ୍ଦ ଉଥାନ ରାମ ମୂଳେ କରଯୋଡ଼ି ।
ଉଠି ଜଣାଇଲେ ଯେ ଚରଣ ତଳେ ପଡ଼ି ।
ଅତି ଯେ ଗହନ କଥା ବୁଝାଇ କହିଲୁ ।
ପାତେକ ପର୍ବତ ତୁଳା ଅନଳେ ଦହିଲୁଂ ।
ନମୋ ନମ ଗୁରୁଦେବ ପରମ କାରଣ ।
ମୂଢ଼ଜନ ତାରିବାକୁ ହେଲୁକିନା ଜନ୍ମ ।
ଯେବେ ଜଣାଇଲୁ ପୁଣ ତୁମ୍ଭର ଚରଣ ।
କହିବା ବୁଝାଇ ନିରାକାର ଯେ ଭଜନ ।
ଅଣାକାର ଭଜନ ଯେ ଶୂନ୍ୟ ନିରାକାର
ଶୁଣିଲେ ଦୁର୍ଗତି ନାଶ ଗୁଣିଲେ ହୋଇଯେ ପାର ।
ଗଣ୍ଠି ସୁନା ଫିଟାଇ ଗୁଆଂର ହାଥେ ଦେଲ ।
କଷଟି ନ ଦେଇ ପୁଣ ନ କହିଲ ମୂଲ ।
ଅକାଞ୍ଚନ କାଞ୍ଚନ କେ ନୋହିଲା ଯେ ଜଣା ।
କଷଟି ନ ଥିବା ଯୋଗେ ସବୁ ହେଲା ଦଣା ।
ଦେଖାଇଲ କାଞ୍ଚନ ଯେ ନ ପାଇଲୁ ବାରି ।
ତେଣୁକରି ମୂଲ ତୁଲ ନୋହିଲା ଯେ ସରି ।
କେତେ ଅବା ଆନକୁ କଷାଇ ଚିହ୍ନାଇବ

ମନ ନିକିତିରେ ତୁଳି ସଂଶୟେ ଦହିବ ।
ବିନତି କରିଣ ଆପେ ହୋଇଲେ ଯେ ଉଭା ।
ନାନା ବିଧି ମତେଣ ଯେ ପାଦେକଲେ ସେବା ।
ଦେଖିଣ ଶିଷ ଭଗତି ଆନନ୍ଦେ ଦ୍ରୁହସି ।
ଦୀନ ଅଚ୍ୟୁତ ବୋଲଇ ଶୁଣ ବାଳ ଶିଷି ।
ଜାଣିଲୁଂ ତୁମ୍ଭର ମନ ଅସମ୍ଭବ ବାଣୀ ।
କହିବା ଫିଟାଇ ଦୃଢ଼େ ଗୁପ୍ତେ ରଖ ପୁଣି ।
ଆକାର ଉକାର ତହିଂ ହୋଇଣ ଯେକତ୍ର ।
ଶୂନ୍ୟକୁ ଚିହ୍ନିଲେ ପୁଣି ବରହକ ତତ୍ତ୍ୱ ।
ନିରାକାର ବଟଶିବଂ ଅକାରକୁ ଘେନି ।
ହକାରେ ମିଶିଣ ଗଲେ କରିଣ ଭ୍ରମଣି ।
ଯେମନ୍ତେଣ ମନ୍ତ୍ର ଗୋଟି ପାତନା ଯେ ହେଲେ ।
ପଢ଼ିଲେ ଯେମନ୍ତ ହେବ ନିରାକାର ତୁଲେ ।
କହିଲୁଂ ଫିଟାଇ ମନ୍ତ୍ର ଭଜନ ବୃତ୍ତାନ୍ତ ।
ଶୁଣିଣ ସନ୍ତୋଷ ହେଲେ ବାର ଗୋପସୁତ ।
ଗୁରୁ ଆଗ୍ୟାଂ ତେଜିଲେ ନିଶ୍ଚୟେ ଯିବ ନାଶ ।
ନଷ୍ଟଭ୍ରଷ୍ଟ ହୋଇ ଅନ୍ତେ ହେବ ନର୍କବାସ ।
ସଦ୍‌ଗୁରୁ ଆଗ୍ୟାଂ ଶିଷ୍ୟ ମେଣ୍ଟିଲେ ଯେ ପୁଣ ।
ସମ୍ପତି ସନ୍ତତି ନାଶ ବଢୁଥାଇ ରଣ ।
ଦ୍ୱାଦଶ ଗୋପାଳ ତୁମ୍ଭେ ଶୁଣ ମନଦେଇ ।
ନିନ୍ଦା ବିଦ୍ୟା ମୂଢ଼ ଆଗେ ନ ବୋଲିବ ଫେଇ ।
ଶ୍ରୀକୃଷ୍ଣ ଚରଣ ଅରବିନ୍ଦକୁ ଯେ ଆଶ ।
ଚୁମ୍ବଇ ରସମାଧୁରୀ ଅଚ୍ୟୁତ ଯେ ଦାସ ।
ଶ୍ରୀକୃଷ୍ଣ ଚରଣ ବିନୁଂ ନ ଜାଣଇ ଆନ ।
ପାମର ଅଚ୍ୟୁତ ଦାସ ନିରବଧି ଧ୍ୟାନ ।
ଶ୍ରୀକୃଷ୍ଣ ଚରଣେ ଜନ୍ମେ ଜନ୍ମେ ମୋର ଆଶ ।
ଶରଣ ମାଗୁଛି ଦୀନ ଅଚ୍ୟୁତ ଯେ ଦାସ ।

ଇତିଶ୍ରୀ ଶୂନ୍ୟସଂହିତାୟା ଗୁରୁଶିଷ୍ୟ ବୋଧନେ ନୈରାକାର
ଗୂଢ଼ ମନ୍ତ୍ରଂ ଉପଦେଶ କଥନେ ନାମ ସପ୍ତମୋ ଅଧ୍ୟାୟଃ ।

# ଅଷ୍ଟମ ଅଧ୍ୟାୟ

ଶ୍ରୀଗୁରୁ ବଚନେ ତୁଟିଗଲା ମନ ଧନ୍ଦ ।
ଫିଟାଇ କହିଲେ ନିରାକାର ମନ୍ତ୍ର ଛନ୍ଦ ।
ଫିଟିଲା ଜନ୍ମ ଅନ୍ଧାର ପୂର୍ଣ୍ଣ ହେତୁ ଦିଶି ।
ପାଇଲୁଂ ସୁଗତି ବୁଦ୍ଧି ବିବେକ ପ୍ରକାଶି ।
ପୁଣି ପଚାରିଲେ ରାମଚନ୍ଦ୍ର ବ୍ରଜବାଳ ।
ପାଇଲୁଂ ପରମ ଗତି ହୋଇଲୁଂ ସୁଫଳ ।
ସପ୍ତ ପଞ୍ଚାତ୍ମିକ କଥା ଯେବେ ବୁଝାଇବା ।
ଦୁର୍ଗତି ପଥରୁ ନେଇ ଉଧରି ଥୋଇବା ।
ଶିଷ୍ୟ ବାକ୍ୟ ଶୁଣି ଦୀନ ଅଚ୍ୟୁତ ବଚନ ।
ହେତୁଦେଇ ଥାଅ ତୁମ୍ଭେ ବୀର ମହାଜନ ।
ପଞ୍ଚଭୂତ ପଞ୍ଚପ୍ରାଣ ପଞ୍ଚଆତ୍ମା ମାନ ।
ପଞ୍ଚବୀଜ ପଞ୍ଚତତ୍ତ୍ୱ ପଞ୍ଚସ୍ୱର ପୁଣ ।
ମହାମନ୍ତ୍ର ମନ୍ତ୍ରରାଜ ମଧ୍ୟରେ କହିବା ।
ସପ୍ତ ପଞ୍ଚାତ୍ମିକ କହି ସଂଶୟ ଦହିବା ।
ମହତ ବିବେକ ପ୍ରିୟ ଭକ୍ତ ବୋଲି ଜାଣ ।
ପଞ୍ଚାତ୍ମିକ ବୁଝିଥିଲେ ବଇଷ୍ଣବ ଜନ ।
ମହାମନ୍ତ୍ରରେ ସେ ଯେବା ହରେ ସାଧୁ ନାମ ।
ମନ୍ତ୍ରରାଜେ ଜନପରା ବୀଜ ମନେ ଘେନ ।
କୃଷ୍ଣ ନାମ ଦୀନକାମ ମହାମନ୍ତ୍ରେ ଦେଖ ।
କାମବୀଜ ବଲ୍ଲଭାୟ ମନ୍ତ୍ରରାଜେ ଲେଖ ।
ମହାମନ୍ତ୍ରେ ରାମ ନାମ କନ୍ଦମଧୁ କହି ।
ମନ୍ତ୍ରରାଜେ ଗୋପୀ ରମାବୀଜ ବୋଲି ଲିହି ।
ସ୍ୱାହା ବେନି ଅକ୍ଷର ଯେ ଧର୍ମ ବ୍ରହ୍ମ ବୀଜ ।
ଉଲଟି ପାଲଟି ତିନି ବୀଜ ନେଇ ଖଞ୍ଜ ।
ମହାମନ୍ତ୍ରେ ହରେ ପରାବୀଜରେ ଆକାର ।
କାମବୀଜ ରମାବୀଜ ଧର୍ମ ବ୍ରହ୍ମ ସାର ।

ଇକାର ମାତ୍ରା ଯେକ ଆତ୍ମା ଯେ ଅଟନ୍ତି ।
ସପ୍ତ ପଞ୍ଚାତ୍ମିକେ ଯେଥେ ଫିଟାଇବା ଭ୍ରାନ୍ତି ।
କହିବା ଯେ ଭକ୍ତି ତତ୍ତ୍ୱ ମନଦେଇ ଶୁଣ ।
ପଞ୍ଚଭୂତ ମଧ୍ୟେ ତେଜ ବୋଲି ତାକୁ ଜାଣ ।
ସମୀର ସମାକୋଇ ଆତ୍ମା ମଧ୍ୟେ ତତ୍ୱ ।
ମନ ମଧ୍ୟେ କୁମନ ଯେ ବୀଜରେ ପରାଧିପ ।
ତତ୍ୱ ମଧ୍ୟେ ବୁଦ୍ଧି ସେହୁ ସ୍ୱରରେ ବିକାର ।
ସପ୍ତ ପଞ୍ଚାତ୍ମିକ ବୀଜ ମଧ୍ୟେ ଠାବକର ।
ପ୍ରଣବ ଦଣ୍ଡକ କୃଷ୍ଣ ବୀଜକାମ ଜାଣ ।
ପରାବୀଜ ମଧ୍ୟରେ ଲକାର ମାତ୍ରା ପୁଣ ।
ରମାଧାମ ପରମ ବୀଜରେ ମାତ୍ରା ଯେହି ।
କାମବୀଜ ମଧ୍ୟରେ ମକାର ବୋଲି କହି ।
ସପ୍ତ ପଞ୍ଚାତ୍ମିକ ମଧ୍ୟେ କହୁଁ ଶୁଣ ଯେବେ ।
ପଞ୍ଚଭୂତ ମଧ୍ୟେ ଆପ ଗ୍ୟାଂନ ଯେ ଲଭିବେ ।
ଆତ୍ମା ମଧ୍ୟେ ଧ୍ୟାନଆତ୍ମା ମନରେ ସୁମନ ।
ବୀଜ ମଧ୍ୟରେ ଯେ ସେହୁ କାମ ବୋଲି ଜାଣ ।
ତହିଂ ମଧ୍ୟେ ବୀଜନାମ ଶ୍ୱରୀରେ ଏକାର ।
ସପ୍ତମ ପଞ୍ଚାତ୍ମିକ ମଧ୍ୟେ ଯେମନ୍ତ ବିଚାର ।
ପ୍ରଣବେ କୁଣ୍ଡଳୀ ହରେ ନନ୍ଦସାଧୁ ଲେଖ ।
ସପ୍ତ ପଞ୍ଚାତ୍ମିକ ମଧ୍ୟେ ତେଜ ଏ ପ୍ରତକ୍ଷ ।
ପଞ୍ଚପ୍ରାଣେ ସମାନ ଯେ ବାଇ ବୋଲି କହି ।
ତତ୍ତ୍ୱଆତ୍ମାକୁ ମନ ପରାବୀଜ ବୁଦ୍ଧି ସେହି ।
ମାତ୍ରା ମଧ୍ୟେ ଆକାର ସ୍ୱରୂପେ ଭଗବାନ ।
ସପ୍ତ ପଞ୍ଚାତ୍ମିକ ରୂପେ ବୀଜ ପରଂବ୍ରହ୍ମ ।
ପଞ୍ଚ ବୀଜ ମଧ୍ୟେ ଏହି ମାତ୍ରା ସମକର ।
ପଞ୍ଚବୀଜେ ଅର୍ଦ୍ଧମାତ୍ରା ପ୍ରଣବାଦି ଧର ।
ଶ୍ୟାମ ଦାମ ନାମ ଏହିରୂପେ ପଞ୍ଚବୀଜେ ।
ପ୍ରଣବ ଠାବରେ ଦେଖ ପଞ୍ଚବୀଜ ରାଜେ ।
ପଞ୍ଚଭୂତେ ବାଇ ସେହି ଉଦାନ ଜୀବଆତ୍ମା ।

ବିମନ ଯେ ଧାମବୀଜ ବିବେକ ତତ୍ତ୍ୱ ସୀମା ।
ପଞ୍ଚମାତ୍ରା ମଧରେ ଇକାର ବୋଲି ଲେଖ ।
ସପ୍ତ ପଞ୍ଚାତ୍ମିକ ଯେହି ନିରିଗୁଣ ଦେଖ ।
ପ୍ରଣବରେ ବିନ୍ଦୁ ଅର୍ଦ୍ଧମାତ୍ରା ପରେ ଯେହୁ ।
ପଞ୍ଚବୀଜ ଶିରେ ଶୋଭା ଧର୍ମବ୍ରହ୍ମ କହୁ ।
ଭୂତ ମଧ୍ୟେ ଆକାଶ ସେ ବ୍ୟାନବାଇ ସେହି ।
ଆତ୍ମା ମଧ୍ୟେ ପରମଆତ୍ମା ଅମନ ଯେ କହି ।
ବୀଜ ମଧ୍ୟେ ପରମ ବୀଜ ତାକୁ ବୋଲି ।
ତତ୍ତ୍ୱ ମଧ୍ୟେ ଆଶ୍ରୟ ଅକାର ସ୍ୱରେ ଚଳି ।
ପ୍ରଣବକୁ ଆଦିକରି ଷଟବୀଜେ ଦେଖ ।
ସପ୍ତ ପଞ୍ଚାତ୍ମିକ ଭେଦି ବଇଷ୍ଣବ ଭେକ ।
ମହାମନ୍ତ୍ର-ମନ୍ତ୍ରରାଜ ଜଗନ୍ନାଥ ଅଙ୍ଗ ।
ଲକ୍ଷ୍ମୀକି ଘେନିଣ ବିଜେ ସୁଭଦ୍ରାଙ୍କ ସଙ୍ଗ ।
ସପ୍ତ ପଞ୍ଚାତ୍ମିକ ବୁଝି ଭଜନ ଯେ କଲେ ।
ପରମ ଗତିକି ପ୍ରାଣୀ ଲଭିପାରେ ଭଳେ ।
ହରି ନାମ ଗୋଟି ସପ୍ତ ପଞ୍ଚାତ୍ମିକେ ରେଖ ।
ନଦସାଧୁ ତେଜ ଯେ ସମାନ ବାଇ ଦେଖ ।
ଆତ୍ମା ମଧ୍ୟେ ତତ୍ତ୍ୱବୀଜ କୁମନ ପରାବୀଜ ।
ତତ୍ତ୍ୱ ମଧ୍ୟେ ବୁଦ୍ଧି ସ୍ୱର ଆକାର ଯେ ହେଜ ।
କୃଷ୍ଣ ନାମ କଥାୟେ ଯେ ଶୁଣ ମନ ଦେଇ ।
ଦୀନକାମ ବୋଲି ମହାମନ୍ତ୍ର ସେ ବୋଲାଇ ।
ଭୂତ ମଧ୍ୟେ ଆପଣେହି ପ୍ୟାନ ବାଇ ବୋଲି ।
ଆତ୍ମା ମଧ୍ୟେ ଧ୍ୟାନ ଆତ୍ମା ସୁମନ ବଇଲି ।
ବୀଜ ମଧ୍ୟେ କାମବୀଜ ତତ୍ତ୍ୱେ ନିଜ ନାମ ।
ସ୍ୱର ମଧ୍ୟେ ଏକାର ସପ୍ତ ପଞ୍ଚାତ୍ମିକେ ସମ ।
ରାମ ନାମ କନ୍ଦ ମଧୁ ପୃଥୀ ପ୍ରାଣ ବାଇ ।
ଗ୍ୟାଂନଆତ୍ମା ବୋଲି ତାକୁ ମନ ବୋଲି କହି ।
ରମାବୀଜ ନିଦରୂପ ଲକାର ସ୍ୱର ସେହି ।
ରାମନାମ ମହାମନ୍ତ୍ର ପଞ୍ଚାତ୍ମିକ ଯେହି ।

ଶାମ ଦାମ ବୋଲିଣ ଚତୁର୍ଥା ରୂପ ଘର ।
ବିଜଏ କରିଣଛନ୍ତି ସିଂହାସନ ପର ।
ପଞ୍ଚଭୂତ ମଧ୍ୟେ ବାଇ ଉଦାନ ସମୀରେ ।
ଜୀବ ଆତ୍ମା ବିମନ ସେ ଧାମବୀଜ ହରେ ।
ତତ୍ତ୍ୱରେ ଚିବେକ ସ୍ୱରେ ଇକାର ମାତ୍ରା ଦେଖ ।
ସପ୍ତ ପଞ୍ଚାତ୍ମିକ ମଧ୍ୟେ ମହାମନ୍ତ୍ର ଲେଖ ।
ଧର୍ମବ୍ରହ୍ମ ପଞ୍ଚଭୂତେ ପ୍ରତକ୍ଷେ ଆକାର ।
ପଞ୍ଚ ପବନରେ ବ୍ୟାନ ପରମାତ୍ମା ଧାନ ।
ମନମଧ୍ୟେ ଅମନ ସେ ବୀଜରେ ପରମ ।
ତତ୍ତ୍ୱ ମଧ୍ୟେ ଆଶ୍ରୟ ସେ ଅଂକାର ସ୍ୱରନାମ ।
ସପ୍ତ ପଞ୍ଚାତ୍ମିକେ ମହାମନ୍ତ୍ରେ ଯେହ୍ନୁ ସରି ।
ମନ୍ତ୍ରରାଜ ମଧ୍ୟେ ବିଜେ କରିଛନ୍ତି ହରି ।
ଷୋଡ଼ଶ ଅକ୍ଷରେ ରମା ଗୋପୀ ବୋଲି ନାମ ।
ପୃଥିବୀ ଅଟନ୍ତି ସେହ୍ନୁ ଗ୍ୟାଂନଆତ୍ମା ମନ ।
ବୀଜ ମଧ୍ୟେ ରମା ବୋଲି ତତ୍ତ୍ୱେ ନିଜ ରୂପ ।
ସ୍ୱର ମଧ୍ୟେ ତେଜ ବୋଲି ଯେ ମନ୍ତ୍ରେ ପଞ୍ଚାତ୍ମିକ ।
ଜନ ବେନିକ୍ଷର ଠାବେ ପଞ୍ଚାତ୍ମିକ ଦେଖ ।
ଭୂତ ମଧ୍ୟେ ତେଜ ବୋଲି ସମାନ ବାଇ ଲେଖ ।
ତତ୍ତ୍ୱ ଆତ୍ମା ବୋଲିଣ ଯେ ମନରେ କୁମନ ।
ବୀଜ ମଧ୍ୟେ ପରାବୀଜ ତତ୍ତ୍ୱେ ବୁଦ୍ଧି ଘେନ ।
ମାତ୍ରା ମଧ୍ୟେ ଆକାର ସେ ନାମ ବଳରାମ ।
ସପ୍ତ ପଞ୍ଚାତ୍ମିକେ ଏହା ତତ୍ତ୍ୱକରି ଚିହ୍ନ ।
ବଲ୍ଲଭାୟ ଚାରିକ୍ଷର ପଞ୍ଚାତ୍ମିକେ ଦେଖ ।
ଅପଧ୍ୟାନ ଧାନ ଆତ୍ମା ସୁମନ ପ୍ରତ୍ୟକ୍ଷ ।
କାମବୀଜ ନନ୍ଦନାମ ଶ୍ୱରୀରେ ଯେକାର ।
ସପ୍ତ ପଞ୍ଚାତ୍ମିକ ଯେହ୍ନୁ ମନ୍ତ୍ରରାଜ ଘର ।
ସ୍ୱାହା ବେନିକ୍ଷର ଅର୍ଦ୍ଧମାତ୍ରା ବିନ୍ଦୁ ହୋଇ ।
ଯେକ ଯେକାକ୍ଷର ଠାବେ ଶୁଣ ଯେବେ କହି ।
ସ୍ୱାହାକ୍ଷର ଅର୍ଦ୍ଧମାତ୍ରା ବାଇବ୍ୟ ଉଦାନ ।

ଜୀବଆତ୍ମା ବୋଲି ତାକୁ ବିମନ ବୀଜଧାମ ।
ବିବେକ ଇକାର ସ୍ୱର ସପ୍ତ ପଞ୍ଚାତ୍ମିକ ।
ସ୍ୱାହା ଯେ ଅକ୍ଷର ଯେବେ ଶୁଣସି ବିବେକ ।
ଭୂତ ମଧ୍ୟେ ଆକାଶ ସେ ବ୍ୟାନ ବାୟୁ ବୋଲି ।
ପରମ ଆତ୍ମା ଯେ ସେହି ଅମନର ସ୍ଥଳୀ ।
ବୀଜରେ ପରମ ବୀଜ ତତ୍ତ୍ୱରେ ଆଶ୍ରୟେ ।
ଶ୍ରୀରେ ଆକାର ସେହି ପଞ୍ଚାତ୍ମିକେ ଧାଏ ।
ଉଲଟ କରିଣ ତିନି ବୀଜ ବସାଇବ ।
ଷୋଡ଼ଶ ଅକ୍ଷର ମନ୍ତ୍ରରାଜ ଯେ ଲେଖିବ ।
ଯେମନ୍ତ ସ୍ୱରୂପେ ଜଗନ୍ନାଥ ବସିଛନ୍ତି ।
ସୁଅଙ୍ଗ ଭଜନ ଯେହି ଜନମ ସୁଗତି ।
ଜଗନ୍ନାଥ ବଳଦେବ ଭଦ୍ରା ସୁଦ୍ରସେନ ।
ଚତୁର୍ଦ୍ଧ, ମୂରତି ପଞ୍ଚରତ୍ନ ସିଂହାସନ ।
ଯେକାନ୍ତେ ବସିଣ ଧ୍ୟାନ ନେଇ ଲଗାଇବ ।
କ୍ଷଣେ ଦଣ୍ଡେ ବସିଣ ଯେ ଭଜନ କରିବ ।
ଜନମ ସୁଫଳ ଗତି ଯେହ୍ନେ ସିନା ପାଇ ।
ବିଷୟା ରସରେ ଥାଇ ମନସୂତ୍ର ଦେଇ ।
ପଦ୍ମପତ୍ରେ ଯେସନେକ ନ ଲାଗଇ ଜଳ ।
କର୍ଦ୍ଦମ ମଧରେ କଲିକତିରା ପ୍ରକାର ।
ନିର୍ମଳ ଭଗତି ଦିନୁଂଦିନ ପ୍ରକାଶିବ ।
ପାମର ଅଚ୍ୟୁତ ବୋଲେ ପାତକ ଧଂସିବ ।
ତୁମ୍ଭେ ବାରଜଣ ଏକ ମନରେ ଧରିବ ।
ବିବେକ ସନ୍ଥ ଦେଖିଣ ସୁଗୋଷ୍ଠୀ କରିବ ।
ଦାମ୍ଭିକ କପଟୀ ଆଗେ ଗୁପତେଣ ରଖ ।
ଶବଦ ବ୍ରହ୍ମରେ ପଶି ସଙ୍ଗହିଂ ଉପେଖ ।
ସରୁଆ ମନ କରିଣ ଆତ୍ମା ଭାବେ ରସ ।
କହିଲୁଂ ଗୁପତ ସନ୍ଧି ନକର ପ୍ରକାଶ ।
ଶୁଣିଣ ବାରଣ ଗୋପାଳ ଉଠି କରଯୋଡ଼ି ।
ପ୍ରଦକ୍ଷିଣ କରି ପୁଣ ଚରଣରେ ପଡ଼ି ।

ଉଠି ଜଣାଇଲେ ପୁଣ ବାର ମହାଜନ ।
ଅନେକ ଉପାଏ କଲେ ବିନତି ବନ୍ଦନ ।
ଶିଷ୍ୟ ଭକ୍ତି ଦେଖି ଗୁରୁ ବୋଲନ୍ତି ବଚନ ।
ଶୁଣ ହୋ ଗୋପାଳ ପୋଏ ଭଜନ ବିଧାନ ।
ନାମ ଘୋଷୁଥିଲେ ସର୍ବ ଦୂରିତ ଯେ ନାଶେ ।
ଶରୀରଂ ମଳି ନାଶଇ ଭଗତି ପ୍ରକାଶେ ।
ନିରତେ ଭଜିବ ନାମ ଦୃଢ଼େ ଶିକ୍ଷାକରି ।
ନାମ ଭଜନକୁ ବାବୁ କେହି ନୋହେ ସରି ।
ନାମକୁ ଚିହ୍ନିଣ ଭଜ ନିଶ୍ଚଳେ ଯେ ବସି ।
ଭଜନର କଥା ଶୁଣ କହିବା ବିଶେଷି ।
ଉଦ୍‌ବେଗ ଭୟ ତେଜି ନିଶ୍ଚଳ ଚିତ୍ତ କର ।
ଜିହ୍ୱା ଅଗ୍ରେ ନାମ ଗୋଟି ନିଶ୍ଚଳେଣ ଧର ।
ତୁଳସୀ କାଠର ମାଳା ଶତେ ଅଷ୍ଟଗୋଟି ।
ଗୁନ୍ଥିବ ଶୁଭରେ ମାଳ ମେରୁ ଯେ ପ୍ରକଟି ।
ଅନାମିକା ମଧ ପବେ ମାଳାକୁ ରଖିବ ।
ବୃଦ୍ଧାଙ୍ଗୁଳି ମଧ୍ୟାଙ୍ଗୁଳି ଦେଇଣ ଭଜିବ ।
ସମ୍ପୂର୍ଣ୍ଣେ ଭଜିବ ଷୋଳନାମ ତୁଳକରି ।
ଛାଡ଼ିବ ଏକଇ ମାଳି ମାଳକୁ ଯେ ଧରି ।
ମେରୁ ଯାଏ ବୁଲିଗଲେ ସତର ଅଠାଇଶ ।
ଫେରକରେ ଶିକ୍ଷା ଏ ଶୁଣ ବାରଶିଷ୍ୟ ।
ମେରୁଠାବୁଂ ଫେରି ପୁଣ ପାଲଟି ଆସିବ ।
ବୃଦ୍ଧ ଅଙ୍ଗୁଷ୍ଠିରେ ମେରୁ ପ୍ରଦକ୍ଷିଣ ଦେବ ।
ତ୍ର ଅ ବୀଜ ସୁମ୍ରୁରିଲେ ସର୍ବ ପାପ କ୍ଷୟେ ।
ତ୍ରି ଅବାର ଭଜିଲେ ଯେତେକ ସରି ହୋୟେ ।
କହିବା କ୍ରମର ମନ ଦେଇ ଯେବେ ଶୁଣ ।
ଛଡ଼ ସସ୍ର ନବଶତ ଆବର ବାର ପୁଣ ।
ଗ୍ରନ୍ଥେକ ଭଜିଲେ ମାଳ ଏତେ ସଂଖ୍ୟା ହୋଏ ।
ଷୋଳ ଗ୍ରନ୍ଥ ଭଜନରେ ଲକ୍ଷେ ସଂଖ୍ୟା ପାୟେ ।
ଲକ୍ଷେ ଦଶ ସହସ୍ର ପାଞ୍ଚଶ ବୟାଶୋଇ ।

ଷୋଳ ଗ୍ରନ୍ଥ ଭଜନରେ ଯେତେକ ସମ୍ଭାଇ ।
ଷୋଳ ଲକ୍ଷ ନାମ ଯେବେ ମାଳରେ ଭଜନ ।
ମୁଦ୍ରାୟେ ବୋଲିଣ ତାକୁ ବୋଲେ ମହାଜନ ।
ସେହିରୂପେ ଦଶମୁଦ୍ରା ଜପିଲେ ମାଳରେ ।
ଯେକ ଅଂଶ ବୋଲିଣ ବୋଲନ୍ତି ସୁଜ୍ଞ ନରେ ।
ଦଶ ଅଂଶ ଭଜନରେ କୋଟି ସଂଖ୍ୟା ଜାଣ ।
ଦଶକୋଟି ଭଜିଲେ ଯେ ବ୍ୟାପକ ବୋଲିଣ ।
ପ୍ରଚଣ୍ଡ ଅନଳ ମଧ୍ୟେ ପକାଇଲେ ନେଇ ।
ସେହିରୂପେ ମାଳଗୋଟି ନିର୍ମଳେଣ ଥାଇଂ ।
ନାମସିଦ୍ଧ କଥା ଯେବେ ଶୁଣ ପାରମାର୍ଥି ।
ସେ ମାଳା ଗୋଟିକର ଯେ ଅପ୍ରମେୟ ପୁଣି ।
ଯେକ ଏ ଭଜନେ ସକଳ ମନୋରଥ ।
ଶ୍ରୀକୃଷ୍ଣ ସ୍ୱରୂପ ଯେ ଦିଶନ୍ତି ନେତ୍ରପଥ ।
ଭଜନ କରିବ ମନ ଲୟେ ସୂତ୍ର ଧରି ।
ଦଣ୍ଡେ କ୍ଷଣେ ହେଉ ଅବା ନିମିଷକେ ସରି ।
କରେ ମାଳଧରି ଜିଭ୍ୟା ବୋଲୁଥିବ ହରେ ।
ମନ ବୁଲୁଥିବ ଯେବେ ଯାଇଂ ବିଷୟାରେ ।
ଯେ ଭଜନ ପ୍ରମାଣ ଯେ ଯେଥିକି ନୋହଇ ।
ମନ ବୁଡ଼ାଇଣ ଥିବ ପଦ୍ମପାଦ ଦୁଇ ।
ଯେମନ୍ତ ଭଜନେ ନାମ ଏକବାର ଧରି ।
କୋଟିୟେ ଭଜନ ତହିଂ ନୋହେ ସମସରି ।
ଯେମନ୍ତେ ଭଜନ ଦଣ୍ଡେ କ୍ଷଣେ କର ବସି ।
ସଂସାର ଜନଙ୍କୁ ଭଣ୍ଡିବାକୁ ମାଳ ଘୋଷି ।
ନିରାକାର ଧ୍ୟାନରେ ନିର୍ମଳ ଗତି ଦିଶି ।
ଥରେ ଉଚ୍ଚାରିଲେ କୋଟି ପାପ ଭସ୍ମଂରାଶି ।
ଭାବ ନ ବହିଣ ଭ୍ରମି ନ ଯିବ ଯେ ଦେଶ ।
ବସିଲା ଠାବରେ ଭାସିଯାଏ ସୁଧାରସ
ଯେହି ରସ ପାନକର ବାର ମହାଜନ ।
ପାମର ଅଚ୍ୟୁତ ବୋଲେ ବରଜ ନନ୍ଦନ ।

ଯେତେ ନାମ ଭଜିବ ତା ଚାରି ଭାଗକର ।
ବେନି ଭାଗ ପିତାମାତା ଭାଗେ ଗୁରୁଙ୍କର ।
ଯେକ ଭାଗ ଆପଣାର ବୋଲିଣ ଲେଖଇ ।
ନାମରତ୍ନ ମନ ସୂତ୍ର ଗୁନ୍ଥିଣ ଦେଖଇ ।
ସଖୀ ଅଂଶ ଧରି ନିଜ ସଖୀ ପାଦ ସ୍ମର ।
ସଖୀ କରେ ଦେଇ କୃଷ୍ଣ ସମର୍ପଣ କର ।
ଶ୍ରୀକୃଷ୍ଣ ଚରଣ ଅରବିନ୍ଦେ ଦେଇ ଚିତ୍ତ ।
ପାମର ଅଚ୍ୟୁତ କହେ ଭଜନ ବୃତାନ୍ତ ।

ଇତିଶ୍ରୀ ଶୂନ୍ୟ ସଂହିତାୟାଂ ଶ୍ରୀଗୁରୁ ଶିଷ୍ୟ ବୋଧନେ ପଞ୍ଚବୀଜ ପଞ୍ଚାଦ୍ଭିକ ବର୍ଣ୍ଣନେ ମାଳା ନିୟମ ନିରୂପଣେ ନାମ ଅଷ୍ଟମ ଆଧ୍ୟାୟଃ ।

## ନବମ ଅଧ୍ୟାୟ

ରାମଚନ୍ଦ୍ର ଦାସ ଚରଣେ ପଡ଼ି । ବିନୟ ହୋଇ କହେ କରଯୋଡ଼ି ॥
କହିଲ ପ୍ରଭୁ ମନ୍ତ୍ର ଯନ୍ତ୍ର ମାନ । ଶୂନ୍ୟ ଭଜନ ନିରାକାର ଧ୍ୟାନ ॥
ଧ୍ୟାୟେ ଧାରଣା ଆଦିମାନ ଯେତେ । ନ କହିଣ ରଖିଅଛ ଗୁପତେ ॥
କିରୂପେ ଶୂନ୍ୟ ଭଜନ କରିବି । କେଉଂ ଛନ୍ଦେ ବସି ଧ୍ୟାନ ଧରିବି ॥
ନ କହିଲ ପ୍ରଭୁ ଗୁପତ କଲ । ଦୟା ବହି ପୁଣ ଦାରୁଣ ହେଲ ॥
ତୁମ୍ଭେ ଯେ ପ୍ରଭୁଙ୍କ ଶ୍ରୀଅଙ୍ଗ ସଙ୍ଗ । ବୃନ୍ଦାବନବାସୀ ବ୍ରଜେନ୍ଦ୍ର ଚନ୍ଦ୍ର ॥
ଅତି ଗୁପତିଆ ଅଟ ହୋ ଦେବ । ଭଜନ ତତ୍ତ୍ୱମାନ ବୁଝାଇବ ॥
ଦାନୀ ପଣରେ ଦୟାଳୁ ହୋଅଇ । ଦାରୁଣ ପଣ କୃପଣୁଂ ସରଇ ॥
ଦୟାରେ କୃପଣ ଅଟ ଯେ ପ୍ରଭୁ । ଦୁଃଖୀ ଜନଙ୍କ ଦୟା ପରା ସିନ୍ଧୁ ॥
ଅଶରଣ ଜନେ ଶରଣ ରଖ । ରଖି ଶରଣ ଦୁର୍ଗତି ଉପେଖ ॥
ମୁଂ ହୀନ ପାମର ସେବକ ଜନ । ଦୟାରଖ ପ୍ରଭୁ ତୋହ ହୃଦେଣ ॥
ଭୃତ୍ୟ ଅପରାଧ ଯେବେ ହୋଅଇ । ସାମନ୍ତ କ୍ଷମାସାଗର ଗୋସାଇଂ ॥
ସ୍ତିରୀ ଅପରାଧ ପୁରୁଷ କ୍ଷମା । ଭୃତ୍ୟ ଅପରାଧ ସାମନ୍ତ ସିନା ॥
ପୁତ୍ର ଅପରାଧ ପିତା ଖଣ୍ଡଣ । ଯେଥିପରେ ଦେବ ନାହିଂ ଯେ ଆନ ॥
ତୁମ୍ଭେ ଯେ ପ୍ରଭୁ କ୍ଷମାଶୀଳ ଘଟ । ଅଧମ ଉଦ୍ଧାରେ ତୁମ୍ଭ ପ୍ରକଟ ॥
ପତିତ ଉଧାରେ ପତିତ ବାନା । ପତିତପାବନ ନାମଟି ସିନା ॥

ବେଳେବେଳେ ମୁହିଂ ବଡ଼ି କହଇ । କହିଲେ ମୋତେ ସଙ୍କଟ ପଡ଼ଇ ॥
ଡରଇ ପ୍ରହୁ କ୍ରୋଧକୁ ତୋହର । ଦୟାରଖ ପ୍ରଭୁ ତୋହ ହୃଦର ॥
ମୁହିଂ ପାମର ମୂଢ଼ଜନ ହୋଇ । ତୁମ୍ଭ ଚରଣେ ଶରଣ ମାଗଇ ॥
ବେଳେବେଳେ ମୁହିଂ ପଶେ ଶରଣ । ଶରଣ ରକ୍ଷଣେ ନୋହ ଦାରୁଣ ॥
ତୁମ୍ଭ କୃପାରୁ ପାଇଲି ସୁଧନ । ପୂର୍ବ ହେତୁରୁ ସୁପଥେ ଗମନ ॥
ପୂର୍ବ ହେତୁରୁ ସୁପଥ ପାଇଲି । ଅବିଦ୍ୟା ଅଣସାଧନା ଧ୍ୟାଇଲି ॥
ଅଣହେତୁଆ ମୁଂ ପାଇଲି ହେତୁ । ଅକର୍ମା ଦାନୀ ମିଳିଲ ଭାଗ୍ୟକୁ ॥
ଧନ୍ୟ ମୋ ମାତା ପିତା ପିତଜନ । ଧନ୍ୟ ସୁସଙ୍ଗ ଧନ୍ୟ ମୋ ଜୀବନ ॥
ଅସାଧନ ବିଦ୍ୟା ମିଳିଲା ଯେଣୁ । ଅକର୍ମେ ବସ୍ତୁ ଦେବ ଦୟା ତେଣୁ ॥
ଅମୂଲ୍ୟ ପଦାର୍ଥ ଅଜଏ ଧନ । ଶ୍ରୀଗୁରୁଙ୍କ କୋଠ ସଙ୍ଖାଳି ପୁଣ ॥
ଅକାରଣେ ଜନ୍ମ ମୋ ଯାଉଥିଲା । ପୂର୍ବ ହେତୁ ଆସି ଉଦେ ହୋଇଲା ॥
ପଡ଼ିଣ ସଂସାରେ ମୁଂ ଭ୍ରମୁଥିଲି । କୃପାଳୁ କର୍ଣ୍ଣଧାର ମୁଂ ପାଇଲି ॥
ସଂସାର ସାଗରୁ ମୋତେ ଉଦ୍ଧାର । କର୍ଣ୍ଣଧାର ହୋଇ କରିବା ପାର ॥
ଯେ ଜୀବକୁ ପ୍ରଭୁ କାରଣ କାହିଂ । ଭ୍ରମୁଥିଲି ପଥେ ମୁଂ ବଣାହୋଇ ॥
ପାଇଲି ସୁପଥ ଶୂନ୍ୟ କାୟାକୁ । ଶୂନ୍ୟ ପଦାର୍ଥ ମିଳିଲା ପୁଣ୍ୟକୁ ॥
ଗଗନକୁ ଫାନ୍ଦ ପାତି ପାଇଲି । ଗଗନର ଚାନ୍ଦ ହସ୍ତେ ଧଇଲି ॥
ପଞ୍ଚାମୃତ ପାନେ ହରିଲା ତୃଷା । ଶାଳୀଅର୍ଣ୍ଣ ଖାଇ ହରିଲା କ୍ଷୁଧା ॥
କ୍ଷୁଧା ପିପାସା ଦିହିଂକି ହରିଲି । ଦୁରିତ ନାଶି ଦିହୁଡ଼ି ଜାଳିଲି ॥
ଦିଶିଲା ତହୁଂ ପୂର୍ବହେତୁ ମୋରେ । ସାକ୍ଷାତେ ଧନ ପାଇଲି ମୁଂ କରେ ॥
ସଙ୍ଖାଳିକରି ରଖିଲି ହୃଦେଣ । କଇତେ ମୋର ନବଳଇ ମନ ॥
ତୁମ୍ଭ କୃପା ପ୍ରଭୁ ଯାହାକୁ ହେବ । ତୁମ୍ଭ କୋଠଧନ ସେହୁ ବହିବ ॥
ବେଳେବେଳେ ପ୍ରଭୁ ସୁଦୟାକର । ଫେଡ଼ିଣ ସଂଶୟ କର ମୋ ଦୂର ॥
ଧ୍ୟାୟେ ଧାରଣା ଆଦିମାନ ଯେତେ । କହ ମହାପ୍ରଭୁ ସୁଦୟା ଚିତ୍ତେ ॥
ଯେତେ କହି ପଦ୍ମପାଦେ ପଡ଼ିଲା । ଶୋକ ଗଦଗଦେ ବୁଡ଼ି ରହିଲା ॥
ଶୁଣ ରାମ ଦାସ କହଇ ତୋରେ । ମୋର ଚରଣ ଛୁଅଂ ଆଉ ବାରେ ॥
ଅତି ଗୁପତ ପ୍ରଘଟ ନ କର । ମନୁ ସଂଶୟ କରିବା ତୋ ଦୂର ॥
ଯେଣୁ ତୁ ସୁକର୍ମେ ହୋଇଲୁ ଜାତ । ତେଣୁ ସୁପଥ ତୋତେ ପରାପତ ॥
ତୋହଠାରେ ମୋହ ନଥାଇ ମାୟା । ଅର୍ଦ୍ଧଆତ୍ମା ମୋର ତୋଠାରେ ଦୟା ॥
ଭଲା ପଚାରିଲୁ ଗୁପତ ସନ୍ଧି । ଶୂନ୍ୟପୁରୁଷ ଶୂନ୍ୟଘରେ ବନ୍ଧୀ ॥

ଶୂନ୍ୟପୁରୁଷ ଉଦାସରେ ରହେ । ଶୂନ୍ୟପୁରୁଷ ସବୁମାୟା ଭ୍ୟାୟେ ॥
ଶୂନ୍ୟପୁରୁଷ ଦୟାଳୁ ଅଟଇଂ । ଶୂନ୍ୟପୁରୁଷ ସର୍ବଘଟେ ରହି ॥
ଶୂନ୍ୟପୁରୁଷ କରେ ନଟଘଟ । ଶୂନ୍ୟପୁରୁଷ ଜାଣେ ଛନ୍ଦକୂଟ ॥
ଶୂନ୍ୟପୁରୁଷ ଶୂନ୍ୟରେ ମାରଇ । ମାରି ଶୂନ୍ୟ ପୁଣ୍ୟ ଗତି କରଇ ॥
ଶୂନ୍ୟ ମନ୍ତ୍ରେ ଶୂନ୍ୟପୁରୁଷ ଧରା । ଦଣ୍ଡୁଥାଇ ରାଜା ହୋଇଣ ତୋରା ॥
ଶୂନ୍ୟପୁରୁଷ ଆପେ ଦଣ୍ଡି ହୋୟେ । ସର୍ବ ଦୋଷମାନ ଯାଇ ତା କ୍ଷୟେ ॥
ଶୂନ୍ୟପୁରୁଷକୁ କେତେ ଭଗାରି । ମାରନ୍ତା ଇଚ୍ଛା ନବଳେ କାହାରି ॥
ଶୂନ୍ୟପୁରୁଷ ପଡ଼ିଛି ବେଷରେ । ସତଶାନ୍ତି ଦୟାକ୍ଷମା ପାଶରେ ॥
ଯେକାଦଶ ଇନ୍ଦ୍ରିବେଢ଼ି ଅଛନ୍ତି । କାମ କ୍ରୋଧ ମୋହ ଦ୍ୱାରି ଜଗନ୍ତି ॥
ଦ୍ୱାଦଶ ଦଳାଇ ଗଡ଼ନାୟକ । ପଚିଶ ପ୍ରକୃତି ପଞ୍ଚମନକ ॥
ଛଡ଼ଚକ୍ରରେ ପଞ୍ଚାଶ ଅକ୍ଷର । ବାଆସ୍ତରି ନାଡ଼ି ଗଡ଼ ପାଶର ॥
ଗଡ଼ ଚାରିପାଶେ ଯେମାନେ ଦ୍ୱାରି । ଶୂନ୍ୟପୁରୁଷକୁ ଥାନ୍ତି ଆବୋରି ॥
ଶୂନ୍ୟପୁରୁଷରେ ଏହାଙ୍କ ତେଜ । ସୁଖ ବଇଭୋଗ କରଇ ରାଜ୍ୟ ॥
ଶୂନ୍ୟପୁରୁଷ ଅଲଗେ ରହିଛି । ଶୂନ୍ୟପୁରେ ରହି ଲୀଳା କରୁଛି ॥
ନ ଛୁଅଂନ୍ତି ତାକୁ ପଞ୍ଚାଶ ଜନ । ଅଲଗେ ରହି କରେ ଭିନ୍ନାଭିନ୍ନ ॥
ଶୂନ୍ୟପୁରେ ଶୂନ୍ୟପୁରୁଷ ରହେ । ଶୂନ୍ୟଭଜନେ ନିରାକାର ଧାଏ ॥
ଦ୍ୱାତ୍ରିଂଶ ଅକ୍ଷର କରେ ଭଜନ । ଶୂନ୍ୟପୁରୁଷ ନିରାକାର ଧ୍ୟାନ ॥
ଦେଖ ବାବୁ ରାମ ତୋହୋ ଦେହେଣ । ନାସିକା ଦୁଆରେ ହଂସ ଗମନ ॥
ବାର ଆଙ୍ଗୁଳ ପ୍ରମାଣେ ଚଳଇ । ଅଣଚାଶ ଖଣ୍ଡ ତନୁ ଧରଇ ॥
ଚକ୍ଷୁ ଦୁଆରେ ଛାଇ ତାର ଦିଶେ । ଅଲେଖ ରୂପ ଜଗତେ ପ୍ରକାଶେ ॥
ଦେଖୁଅଛି ସେହି ଜଗତ ଜନ । ତାକୁ ନ ଦେଖନ୍ତି ମୂଢ଼ ଅଗ୍ୟାଂନ ॥
ଗ୍ୟାଂନୀ ଜନମାନେ ଯେ ଅନୁସରି । ଦେଖନ୍ତି ଶୂନ୍ୟରୂପ ଧାୟେ କରି ॥
ସୁଗ୍ୟାଂନୀ ପଣ୍ଡିତ ଯେ ଅନୁସରେ । ଯମ ଜଞ୍ଜାଳକୁ କାଟଇ ଧୀରେ ॥
ଚଉଦ ବ୍ରହ୍ମାଣ୍ଡ ଉପରେ ଗଛି । ଶୂନ୍ୟ ଶୂନ୍ୟ ମହାଶୂନ୍ୟରେ ଅଛି ॥
ନିରାକାର ଭଜି ମା ଦୁର୍ଗାଦେବୀ । ଯେଣୁ ନିର୍ଲେପକୁ ଥାଆନ୍ତି ସେବି ॥
ପୂର୍ବ ହେତୁରୁ ଯେ ମୁହିଂ ପାଇଲି । ନିରାକାର ଭଜି ଭବୁଂ ତରିଲି ॥
ବତିଶ ଅକ୍ଷର କର ଭଜନ । ଶବଦ ବାର କର ଅନୁଆନ ॥
ତୋର ମୋର ବାବୁ ଶୂନ୍ୟକାୟାଟି । ଜଗତ ଶୂନ୍ୟରୂପେ ଉଦେଟି ॥
ଯେ ଦେହକୁ ବାବୁ ପରତେ ନ ଯା । ନିରାକାର ଭଜି ମନକୁ ମଜା ॥

ଶୂନ୍ୟପୁରୁଷ ଶୂନ୍ୟରେ ଗମନ । ନିରାକାର ମନ୍ତ୍ର କର ତୁ ଧ୍ୟାନ ॥
ଊର୍ଦ୍ଧ୍ୱମୁଖ କରି ଚିତାକୁ ଚାହଁ । ତ୍ରିକୂଟ ସନ୍ଧି ଅଲେଖକୁ ଧ୍ୟାଅ ॥
ନିରାକାର ମନ୍ତ୍ର କଣ୍ଠଚକ୍ରରେ । ବୋଲି ବାବୁ ସ୍ୱର ଅର୍ଦ୍ଧମୁଖରେ ॥
ଦ୍ୱାତ୍ରିଂଶ ଅକ୍ଷର ଉଚ୍ଚାର କର । ନୟନ ନ ଟଳୁ ଚିତାଚକ୍ରର ॥
ଯେସନରେ ବାବୁ ବୋଇତ କାଜ । ନଚଳେ ନଟଳେ ତିଳମାତ୍ରକ ॥
ସୂତ୍ରରେ ଯେସନେ ପାଷାଣ ଗୁନ୍ଥି । ସୂତ୍ରେ ଯେସନେ ଦଧିଭାଣ୍ଡ ମନ୍ଥି ॥
ଅଟଳେ ଯେସନେ ମନ୍ଦର ରହେ । ଅଚଳେ ଯେସନେ ଯୋଗୀନ୍ଦ୍ରଧ୍ୟାୟେ ॥
ଅଚଳେ ନିଶ୍ଚଳେ ସୁଜନେ ଧର । ଶୂନ୍ୟପୁରୁଷକୁ ତଳଏ କର ॥
ଦିଶିବ ଶୂନ୍ୟେ ଦିବ୍ୟ ନୀଳକାୟା । ନିରାକାର ରୂପ ଆରୂପ ଦେହା ॥
ଚତୁର୍ଦ୍ଧା ରୂପେ ବିଜେ ନିରାକାର । ପଦ୍ମ ଫୁଟିବ କେଶର ଭିତର ॥
ନିରାକାର ରୂପ ତାହାକୁ ମଣି । ନିର୍ଲେପ ନିରାକାର ଯେହୁ ପୁଣି ॥
ପୂର୍ବ ଭାଗ୍ୟରୁ ଦିଶିବ କେଶରୀ । ଫୁଟିବ ପଦ୍ମ ବିଜେ ଦେବ ହରି ॥
ପାଇବୁ ଭେଟ ନିର୍ଲେପ ରୂପକୁ । ଚାହିଁବୁ ନିଶ୍ଚଳ ହୋଇଣ ତାଙ୍କୁ ॥
ସୁମନରେ ମନ ଲଗାଅ ନେଇ । ଶୂନ୍ୟପୁରୁଷ ସାକ୍ଷ୍ୟାତେ ଦିଶଇ ॥
ମାଘମାସେ ବାବୁ ଏହାକୁ ସାଧି । ବିଧି ପୂର୍ବକଲେ ହୋଅଇ ସିଧି ॥
ଦ୍ୱାଦଶକ୍ଷର ବୋଲି ଊର୍ଦ୍ଧ୍ୱଭାବେ । ଦିବ୍ୟ ରୂପ ପ୍ରକାଶିବ ତୋ ଆଗେ ॥
କହିଲୁଂଟି ବାବୁ ସଂଶୟ ଫେଇ । ପାଇବୁ ନିଶ୍ଚେ ଚିତ୍ତରେ ସନ୍ଧାଇ ॥
ଶୁଣି କୁମର ହରିଗୋଳ କଲା । ଭୋଳେ କାନ୍ଦି ଗଡ଼ି ଶୋକେ କହିଲା ॥
ନମୋ ଗୁରୁଦେବ ଅପ୍ରାଧ କ୍ଷମା । ତୁମ୍ଭ ଦୟା ପ୍ରଭୁ ଭୃତ୍ୟକୁ ସିନା ॥
ସେବାକୁ କିଛି ଯୋଗ୍ୟ ମୁଂ ନୋହିବି । ଚରଣେ ତୋହ ନିତ୍ୟେ ଖଟିଥିବ ॥
ଯେତେ ବୋଲି ତହୁଁ ଚଳିଣ ଗଲେ । ହରି ହରି ବୋଲି ସର୍ବେ ବୋଇଲେ ॥
ରାମଚନ୍ଦ୍ର ଦାସ ନିଗମେ ରସ । ନିରାକାର ମନ୍ତ୍ର ନିରତେ ଘୋଷ ॥
ଶୂନ୍ୟପୁରୁଷରେ ପରଚେ ହୁଅ । ଶୂନ୍ୟକୁ ନେଇ ଶୂନ୍ୟରେ ମିଶାଅ ॥
ଶୂନ୍ୟ ଭଜେ ମୁଂ ଯେ ଅଚ୍ୟୁତ ଦାସ । ପାଦପଦ୍ମରେ ନିରନ୍ତରେ ଆଶ ॥
ବାଇ ପ୍ରାୟେ ହୋଇ ମୁହିଂ କହଇ । ପାମର ଅଚ୍ୟୁତ ଦାସ ଭାବଇ ॥

ଇତିଶ୍ରୀ ଶୂନ୍ୟ ସଂହିତାୟାଂ ଶ୍ରୀ ଗୁରୁଶିଷ୍ୟ ବୋଧନେ
ନିରାକାର ଧାରଣା ଧ୍ୟାନ କଥନେ ନାମ ନବମ ଅଧ୍ୟାୟଃ ।

# ଦଶମ ଅଧ୍ୟାୟ

ଶୁଣ ରାମଚନ୍ଦ୍ର ବ୍ରଜ ନନ୍ଦନ । କହିବା କିଛୁ ଗୁପତ ଭଜନ ॥
ଯଉଂ ଭଜନ ସର୍ବକାର୍ଯ୍ୟ ହୋଇ । ଚତୁର୍ବର୍ଗ ଫଳ ପ୍ରାପତ ହୋଇ ॥
ମାହା ବିପଦ ନାଶେ ଯଉଂ ନାମ । ଅନ୍ତକାଳେ କାଳ ନ ଦଣ୍ଡେ ପୁଣ ॥
ଖଣ୍ଡ ବିପଦ ହୋୟେ ଯଉଂ କ୍ଷଣ । କ୍ଷଣେ ଚିନ୍ତାକଲେ ହୋୟେ ଦହନ ॥
ବିପଦ ନାଶେ ଯାହାକୁ ଧ୍ୟାଇଲେ । ଅଷ୍ଟଯୋଗ ସିଧି କିଞ୍ଛୁତେ ମିଳେ ॥
ଯଉଂ ଭଜନେ କାୟା ଶୁଦ୍ଧି ନାହିଁ । ଆସନ ଶୁଦ୍ଧି ଅଙ୍ଗନ୍ୟାସ କାହିଁ ॥
ମେଧ ଅମେଧ ଭକ୍ଷଣ ବା କରି । ସତ୍ୟ ମିଥ୍ୟା ବାକ୍ୟ କିବା ଉଚାରି ॥
କ୍ଷଣେ ଦଣ୍ଡେ ଅବା କିଛୁ ନିମିଷା । ସୁମରି ମନେ ଚିନ୍ତେ ଦିବା ନିଶା ॥
ଜନ୍ମ ତାହାର ସୁଫଳ ଅଟଇ । କୋଟିକେ ଗୋଟି ଗଣନା ଯେ ସେହି ॥
ବାବୁ ରାମଦାସ ଶୁଣ ଅପୂର୍ବ । ଯଉଂ ଭଜନେ ମିଳେ ଚତୁର୍ବର୍ଗ ॥
ଅମୃତ ଆପ୍ୟାନ ଯେହୁ କରଇ । ଦଧି ଘୃତ ସ୍ୱାଦ ସେ କି ଗଣଇ ॥
ଇକ୍ଷୁ ରସ ସ୍ୱାଦ ଯେବଣ ସୁଖ । ପାକେ ସିଦ୍ଧକଲେ ଯେବଣ ଲେଖ ॥
ପୁନରପି ପାକେ ସିଦ୍ଧ କରିଲେ । ଅମୃତ ପଦାର୍ଥ ଲଭଇ ଭଲେ ॥
ସେଠାରୁ ମୂଳ ବଢ଼ଇ ତାହାର । ଦେଢ଼ି ପ୍ରମାଣେ କରେ କାରବାର ॥
ଇକ୍ଷୁ ରସର ମୂଲ ତୁଲ ନାହିଁ । କେତେ ଅନ୍ତର ହୋଇ ଯତନଇଂ ॥
ପାଇଥିବୁ ଯେବେ ଲୁହା କଷଟି । ପିତଳ ପାଇଲେ ଲୁହା ଛାଡ଼ିଟି ॥
ରୌପ୍ୟ ପାଇଲେ ପିତଳେ କି କାମ । କାଞ୍ଚନ ପାଇଲେ ରୌପ୍ୟ ତେଜିଣ ॥
କାଞ୍ଚନେ ଅନେକ କାମ ଅଛଇ । କଷଟିରେ କଷିଲେ ଚିହ୍ନାଯାଇଂ ॥
ପଡ଼ିଆ ଉଠିଆ ସେ ଦୁଇ ମତ । ମନ କଷଟିରେ କଷ ହୋ ସନ୍ତୁ ॥
ଯଉଂ ପଦାର୍ଥକୁ ତୋହୋର ବାଞ୍ଛା । ନିର୍ଭାଣେ କରି କର ମନବାଞ୍ଛା ॥
ପାଇଥିଲେ ଧନ ରଖେ ଯେମନ୍ତ । ବିପଦ ନାଶଇ କିଞ୍ଚିତ ମାତ୍ର ॥
ସେହି ପରକାରେ ଯେହି ଭଜନ । ଚତୁର୍ବର୍ଗ ବୋଲି ମନେ ତୁ ଘେନ ॥
ଅଣିମା ଆଦି ଅଷ୍ଟସିଦ୍ଧି ଯେତେ । ଅଛଇ ଯେହି ଭଜନ ସାକ୍ଷାତେ ॥
ପୂର୍ବ ହେତୁ ଥିଲେ ଯେହାକୁ ପାଇ । ଉତ୍ତମ ଗୁରୁଟି ଯେହା ଜାଣଇ ॥
ଦ୍ୱାତ୍ରିଂଶକ୍ଷର ଭଜନେ ତୁ ରସ । ରାମଦାସ ଶୁଣ ଅତି ରହସ ॥
ପ୍ରତାପରୁଦ୍ର ଦେବ କଟାଳିଲା । ଦେଉଳେ ବହୁତ ଆକଟ ହେଲା ॥
ବୋଇଲା ଦାସେ ଶୁଣ ମୋହଠାରୁ । ଭଜନ ମନ୍ତ୍ର କଉଂ ତତ୍ତ୍ୱ କରୁ ॥

ଅନାମ ନାମ କାମବୀଜମାନ । ଗାୟତ୍ରୀ ଚବିଶୀଅକ୍ଷର ଭଜନ ॥
କଉଂ ମନ୍ତ୍ର ଗୋଟି ଇଷ୍ଟ ତୁମ୍ଭର । କହ ଦାସେ ଦେଖି ତତ୍ତ୍ୱ ବିଚାର ॥
ବ୍ରାହ୍ମଣେ ଅତି ଚଳାଇ କହିଲେ । ରାଜନ ମନକୁ ଚଞ୍ଚଳ କଲେ ॥
ଥୋକେ ବ୍ରାହ୍ମଣ ମନ୍ତ୍ରରେ ପ୍ରସିଦ୍ଧି । ଜାଣନ୍ତି ବ୍ରହ୍ମଗ୍ୟାଂନ ମନ୍ତ୍ରବିଧି ॥
ବହୁତ କଟାଳ କଲେ ମୋଠାରେ । ଅଚ୍ୟୁତ ଦାସ କହ ସତ୍ତ୍ୱରେ ॥
ରାଜନ ପୁଣି ହିଂ କଟାଳ କଲା । କହ ଦାସ ଦେଖି ଶୁଣିମା ଭଲା ॥
ସେଠାରୁ ମହା ସଙ୍କଟେ ପଡ଼ିଲି । ମନ କଷ୍ଟିତେ ବହୁତ ଧ୍ୟାଇଲି ॥
ପାଦପଦ୍ମରେ ଚିତ୍ତ ବୁଡ଼ାଇଲି । ମକରନ୍ଦ ରସ ଆପ୍ୟାନ କଲି ॥
କୃପା ଜଳଧି ଦୟା ଗୁଣଗ୍ରାହୀ । ବିପଦ କାଳେ ସାହା ହୋନ୍ତି ସେହି ॥
ସାକ୍ଷାତ ପ୍ରାୟେ ମୋତେ କହିଦେଲେ । ଶୂନ୍ୟ ଭଜନ କହ ତୁ ବୋଇଲେ ॥
ସେଠାରେ ମୋତେ ଦୃଶ୍ୟହେଲେ ଯେଣୁ । ଦ୍ୱାତ୍ରିଂଶ ଅକ୍ଷର ସ୍ଥାପିଲି ତେଣୁ ॥
ଅନାମ ଚକ୍ରେ ନାମକୁ ଦେଇଣ । କାମବୀଜ ଓଂମତିକି ଲେଖିଣ ॥
ପଞ୍ଚବର୍ଗେ ବାର ମାତ୍ର ମୁଂ ଦେଲି । ଯନ୍ତ୍ରରେ ଲେଖି ମୁଂ ଥାପନା କଲି ॥
ଦେଖି ବ୍ରାହ୍ମଣେ ହେଲେ ଆଚମ୍ଭିତ । ବୋଇଲେ ଦାସ ଜାଣେ ତତ୍ତ୍ୱ ଅର୍ଥ ॥
ବେଳେବେଳେ ଦାସ କହଇ ତତ୍ତ୍ୱ । ତତ୍ତ୍ୱବୋଧ ଦାସ ଅତି ଗୁପତ ॥
ଗହନ କଥା ଥାପିଲତ ତୁମ୍ଭେ । କହ ଦେଖି ଦାସେ ଶୁଣିମା ଆମ୍ଭେ ॥
ଅନାମ ନାମ କାମ ବୀଜମାନ । ଓଂକାର ଥାପିଲ ତଥି କାରଣ ॥
ଯେତ ଅସମ୍ଭବ ଅଲୋକ୍ୟ କଥା । ପୁରାଣ ଶାସ୍ତ୍ରେ ଶୁଣିନାହୁଂ ଯଥା ॥
କାହୁଂ ଜାଣିଲ ଦାସେ ଏହା ପୁଣି । ଯେହାକୁ କଉଂ ଭଜନରେ ଗଣି ॥
କିସ ନାମ ଅଟେ ଏ ଭଜନର । ତତ୍ତ୍ୱବୋଧ ଦାସ କହ ନିକର ॥
ବହୁତ କଟାଳ ବ୍ରାହ୍ମଣ କଲେ । ରାଜନ ଛାମୁରେ ଯାଇଂ କହିଲେ ॥
ରାଜନ ବୋଇଲେ ଶୁଣ ହୋ ଦାସେ । ଯନ୍ତ୍ର ଥାପିଲ ମନ୍ତ୍ର କହ ତୋଷେ ॥
କେମନ୍ତେ ଯେ ମନ୍ତ୍ରେ ଭଜନ କର । କହ ଦାସେ ଦେଖି ଏଥି ବିଚାର ॥
ପୁଣି ପୁଣି ରାଜା କଟାଳ କଲା । ଶୁଣି ମୋ ମନେ ସଙ୍କଟ ପଡ଼ିଲା ॥
ମୁଂ ବୋଇଲି ଆହୋ ଶୁଣ ରାଜନ । ମନ୍ତ୍ର ନିରାକାର ଶୂନ୍ୟ ଭଜନ ॥
ଆସନ ଶୁଦ୍ଧ ଅଙ୍ଗନ୍ୟାସ ନାହିଂ । ସ୍ଥାନ ବନ୍ଧ ଦିଗ ବନ୍ଧନ ନାହିଂ ॥
ଶୂନ୍ୟରେ ବସି ଭଜନ କରିବ । କାଳକୁ ଜିଣି ଗୋଲୋକର ଠାବ ॥
ଏ ଭଜନ ନାମ ଅଟଇ ଯେହି । ଯେଥୁ ଅଧିକ ଆଉ ପୁଣ ନାହିଂ ॥
ବ୍ରାହ୍ମଣେ ଶୁଣି ଚଳିଣ ଉଠିଲେ । ଦାସ କି କହ ବୋଲିଣ ବୋଇଲେ ॥

ବୋଇଲେ ହୋ ଦାସେ ଶୂନ୍ୟ ଭଜନ । କିରୂପେ ଯନ୍ତ୍ରକୁ କଲ ଥାପନ ॥
ଯେମନ୍ତେ କହନ୍ତେ ଧନ୍ଦୋଳ ହେଲା । ମନ୍ତ୍ର ଛାଡ଼ି ରାଜା ପରିକ୍ଷେ ଭୋଳା ॥
ଗୋଳ ଧନ୍ଦୋଳ ଏମନ୍ତ ହେଲା । କୃପା ଜଳଧିର କରୁଣା ହେଲା ॥
ଗୋଳରେ ବ୍ରାହ୍ମଣେ ମାତି ରହିଲେ । ମନ୍ତ୍ର ପ୍ରଚ୍ଛିନ୍ନ କେହି ନ କରିଲେ ॥
ସେଠାରୁ ମୋ ମନ ହେଲା ଉଷତ । ଜାଣିଲି ପ୍ରଭୁ କଲେକ ଗୁପତ ॥
ରାଜନ ଯେବେ ପ୍ରଚ୍ଛିନ୍ନ କରନ୍ତା । ବିପଦେ ଆପଦ ମାଡ଼ିପଡ଼ନ୍ତା ॥
ମୋହ ପ୍ରଭୁ ସେ ଆରତଭଞ୍ଜନ । ଜାଣି ଧନ୍ଦୋଳ ଲଗାଇଲେ ପୁଣ ॥
ଯେମନ୍ତେ ପ୍ରହରେ ଗୋଳ ଲାଗିଲା । ରାଜନ ମୋତେ ଧରି ଘେତିଗଲା ॥
ବଡ଼ ଦାଣ୍ଡରେଣ ଲାଗିଲା ଗୋଳ । ପେଲାପେଲି ଲୋକେ ଅତି ଗହଳ ॥
ବାଙ୍କି ମୁହାଣି ଶୂନ୍ୟ ବାମ୍ଣୀଠାରେ । କର ଭଜନ ଦାସ କ୍ଷେଥିପରେ ॥
ଦେଖନ୍ତୁ ଯେତେକ ଯେ ଦ୍ୱିଜବର । ପ୍ରଚ୍ଛିନ୍ନେ ପରୀକ୍ଷା ଆମ୍ଭ ଛାମୁର ॥
ଶୁଣି ମୋ ମନରେ ଲାଗିଲା ଭୟେ । ଅନନ୍ତ ମୂରତି କଲି ମୁଂ ଲୟେ ॥
ଦ୍ୱାତ୍ରିଂଶ ଅକ୍ଷର ହୃଦେ ଥାପିଲି । ନାଭିପରେ ବସି ଧ୍ୟାନ ମୁଂ କଲି ॥
ଉର୍ଦ୍ଧ ମୁଖକରି କଲି ମୁଂ ଲୟେ । ନିରାକାର ରୂପ କଲି ମୁଂ ଧ୍ୟାଏ ॥
ପାଣି ଉର୍ଦ୍ଧେ କରି ଶୂନ୍ୟେ ରହିଲି । ପରମହଂସେ ଚିତ୍ତ ବୁଡ଼ାଇଲି ॥
ଦେଖିଣ ରାଜନ ହେଲେ ଚକିତ । ବ୍ରାହ୍ମଣେ ଦେଖି ହେଲେ ଆଚମ୍ଭିତ ॥
ଥୋକେ ଆଚମ୍ଭିତ ହୋଇ ରହିଲେ । ଗୁପତ ପ୍ରକଟ କେ ଅବା କଲେ ॥
ରାଜନ ଦେଖି ସେ ପରତେ ଗଲା । ଦାସେ ଆସ ବୋଲି ବାଟୁ କହିଲା ॥
କୋଳେ ଧରିଣ ରାଜା ଆଲିଙ୍ଗନ । କହେ ପ୍ରତିଛ ଆଶ୍ୱାସ ବଚନ ॥
ଶୁଣ ଆମ୍ଭ ବାଣୀ ଅଚ୍ୟୁତ ଦାସ । ବାଙ୍କି ମୁହାଣେ କର ଯା ନିବାସ ॥
ଅଚ୍ୟୁତ ଦାସ ଚ୍ୟୁତ ନାହିଂ ଯେଣୁ । ନିରାକାର ଶୂନ ଭଜନ ତେଣୁ ॥
ଅତି ଗୁପତିଆ ଅଚ୍ୟୁତ ଦାସ । ଅତିଗହନ ତତ୍ତ୍ୱ ବୋଧା ଦାସ ॥
ସେଠାରୁ ରାଜନ ଚଳାଇ ଗଲେ । ଲାଜେ ବ୍ରାହ୍ମଣେ କିଛୁ ନ ବୋଇଲେ ॥
ସେହି ପରକାରେ ପାଞ୍ଚଜଣକୁ । କଟାଳି ପରୀକ୍ଷାକଲା ଯେ ତାଙ୍କୁ ॥
ପ୍ରଚ୍ଛିନ୍ନେ ପରତେ ଥାନ ପାଇଲୁ । ନିରାଲମ୍ବ ସ୍ଥାନ ନିମନ୍ତେ ନେଲୁ ॥
ଶୁଣ ରାମଦାସ ଗୋପ କୁମର । ଶୂନ୍ୟସଂହିତା ଏ ହେଜ ସତ୍ୱର ॥
ଶୂନ୍ୟ ସଂହିତାକୁ ଜାଣିଲେ ବାବୁ । ସକଳ ମନ୍ତ୍ର ଯନ୍ତ୍ର ତୁ ଲଭିବୁ ॥
ଶୂନ୍ୟ ଭଜନରେ ଯେବଣ ସୁଖ । କିଛି ମୁଂ ଜାଣଇ ବ୍ରଜ ବାଳେକ ॥
ଯଉଂ କାର୍ଯ୍ୟକୁ ଇଛା ମନ ତୋର । ପାଇବା ସୁଗତି ବ୍ରଜକୁମର ॥

ଉତ୍ତମ ଗୁରୁ ପାରୁଶରେ ରହ । ନିରାକାର ବ୍ରହ୍ମଂ ପରତେ ହୁଅ ॥
ଯନ୍ତ୍ରରେ ଥାପି ମନ୍ତ୍ର ଉଚ୍ଚାରିଲେ । ଯଉବନ ଭାଷା ଫେରେ କି ବୋଲେ ॥
ପଢ଼ି ପରତେ ଯେବେ ହୋଇପାରୁ । ଯମ ଜଞ୍ଜାଳ କାଟଇ ସଂସାରୁ ॥
ମହା ଭଗତେ ହୋ ଜାଣନ୍ତି ଯେହା । ଶୁଣ ରାମ ଦାସ ବ୍ରଜ ସେନେହା ॥
ଅତି ଆରତେ ଦୁଃଖୀଜନ ହୋଇ । କହନ୍ତି ମୋର ଭଗତ ଯେ ତହିଁ ॥
ପିଚାରିଲେ ବାଇ ପ୍ରାୟେ ବଦନ୍ତି । ତରକ ମଣି ତେଜି ପୁଣ ଥାନ୍ତି ॥
ଅତି ଗହନ ହୋ ବ୍ରଜତନଇ । ଯନ୍ତ୍ରପରେ ମନ୍ତ୍ର ବସାଣ ଯେହି ॥
ପଢ଼ିଲେ କୋଟିଯେ ସୁବର୍ଣ୍ଣଦାନ । ସରି ନୋହେଟି ହୋ ବ୍ରଜନନ୍ଦନ ॥
କୋଟିଯେ ଅଶ୍ୱମେଧ ଯାଇ ଫଳ । ପ୍ରାପତ ହୋଅଇ ହେ ବ୍ରଜବାଳ ॥
ହେଳା ଶ୍ରଧାରେ କ୍ଷଣେକ ବୋଇଲେ । ଯମ ଜଞ୍ଜାଳ କାଟଇ ସେ ଭଲେ ॥
ମହା ଗୁପତ ଯେ ଭଜନ ନାମ । ପୂର୍ବହେତୁ ଥିଲେ ମିଳେ ଏମାନ ॥
କୋଟିଯେ ଯଜ୍ଞ ପୂର୍ବେ ଯେ କରିଥାଇ । କୋଟି ଅଶ୍ୱମେଧ ଦାନ ଦିଅଇ ॥
କୋଟି ଦୁଃଖୀକି କିବା ଅନ୍ନଦାନ । ଦେଇଥାଇ ଯେହୁ ବ୍ରଜନନ୍ଦନ ॥
ପୂର୍ବହେତୁରୁ ଯେ ସୁକର୍ମେ ଜାତ । ତେଣୁ ପ୍ରାପତ ହୁଅଇ ଗୁପତ ॥
ତୋହୋଠାରେ ମୋର ନଥାଇ ମାୟା । ଭ୍ରଥ ଯାଦବ ଧର୍ମୁ ଅର୍ଦ୍ଧକାୟା ॥
ଗୁପତ ଅତି ଗହନ ଅଟଇ । ଯେଠାବେ ମାୟାନାହିଁ ହୋ ତନଇ ॥
ଶୂନ୍ୟ ଭଜନ କର ତୁ ନିକର । ଶୂନ୍ୟପୁରୁଷକୁ ପରତେ କର ॥
ଯେବେ ହୋଇବୁ ତୁହି ଅଜ୍ରାମର । କାଳକୁ କାଟି କମ୍ଭୁ ପାଦଧର ॥
ମୋ ଭକ୍ତକୁ ଥୋକେ ନିନ୍ଦା କରନ୍ତି । ମଲା ବୋଲି ଛଳି କରି କହନ୍ତି ॥
ଯେକାଦିଶୀ ତିର୍ଥ ବ୍ରତ ନ କଲା । ଦିନକାଳ ଜାଣି ପ୍ରାଣ ନଗଲା ॥
ଥୋକେ ଜନମାନ ଏମନ୍ତେ ନିନ୍ଦି । କହନ୍ତି ଉପହାସ୍ୟ କଥା ବାନ୍ଧି ॥
ଯେ କଥାକୁ ବାବୁ ପରତେ ନଯା । ବାଇ ପ୍ରାୟେ ହୋଇ ଟିଉକୁ ମର୍ଜା ॥
ସର୍ପକାତି ଛାଡ଼ିଯାଏ ଯେମନ୍ତେ । ଜନ୍ମେ ଜନ୍ମେ ଅଜ୍ରାମର ତେମନ୍ତେ ॥
ଚତୁବର୍ଗ ତାର ପାରୁଶେ ଥାଇଂ । ମନେ ଯାହା ଭାବେ ତାହା ମିଳଇ ॥
କମଳା ତା ପାଶେ ନିରତେ ରହେ । ଅଷ୍ଟନିଧି ଜାଣି କୁବେର ଆୟେ ॥
କୃଷ୍ଣ ମନ ହରେ ସେହି ଭଜନ । କମଳାକୁ ତେଜି ତା ପାଶେ ମନ ॥
ଧେନୁ ସଙ୍ଗେ ବଛା ଯେମନ୍ତେ ଥାଇ । ପ୍ରଭୁ କହନ୍ତି ହୋ ବ୍ରଜତନଇ ॥
ଅନାମ ନାମ କାମବୀଜ ଘେନି । ଓଂମତି ତ୍ରିଅବର୍ଗ ତିନି ତିନି ॥
ଦ୍ୱାତ୍ରିଂଶ ଅକ୍ଷରର ମାତ୍ରା ସହିତେ । ଉଚ୍ଚାରିଲେ ମନ୍ତ୍ର ହେବ ଯେମନ୍ତେ ॥

ବାରୁଂବାର ତୋତେ ବୋଲୁ ବାରି । ବାରି ପାରିଲେ ଭବୁ ହେବୁଂ ପାରି ॥
ତୁହି ଦେଖୁଥିବୁ ସକଳମାନ । ତୋତେ ନଦେଖିବେ ମୂଢ଼ ଅଗ୍ୟାଂନ ॥
ଶୁଣି କୁମର ଚରଣେ ପଡ଼ିଲା । ବାଇ ପ୍ରାୟେ ହୋଇ ଭୂମେ ଗଡ଼ିଲା ॥
ବୋଲଇ ହେ ପ୍ରଭୁ ମୁଂ ତୁମ୍ଭ ଜନ । ଦୟାରଖ ପ୍ରଭୁ ତୁମ୍ଭ ହୃଦେଣ ॥
ରାମଚନ୍ଦ୍ର ଦାସ ବିନତି କରି । କହ ଶୂନ୍ୟ ମନ୍ତ୍ର ମୋତେ ବିଚାରି ॥
ଶୂନ୍ୟ ଭଜନ ମନ୍ତ୍ରଂ କି ରୂପରେ । କଉଂ ଛନ୍ଦ ବସେ କଉଂ ଯନ୍ତ୍ରରେ ॥
କାହାପାଶେ କଉଂ ମନ୍ତ୍ର ବସିବ । ତ୍ରିବର୍ଗ ଦ୍ୱାତ୍ରିଂଶାକ୍ଷର ହୋଇବ ॥
କହିଲ ପ୍ରଭୁ ଅସମ୍ଭବ ବାଣୀ । ଶୁଣି ମୋ ମନ ହେଉଅଛି ହାଣି ॥
ସୁବର୍ଣ୍ଣ ଥାଉ ପିତଳେ କି କାର୍ଯ୍ୟ । ମୋ ମନ ଦହେ ପ୍ରଭୁ ବ୍ରଜରାଜ ॥
ହେ ମହାପ୍ରଭୁ ମୋତେ ନିକର । କହି ସଂଶୟ କର ମୋର ଦୂର ॥
ଶୁଣ ରାମଦାସ ମୋ ପଞ୍ଚଭୂତ । ସଞ୍ଜା ଗୋଟିଏ ଥୁଅ ଶୁଦ୍ଧ ଚିତ୍ତ ॥
ସୁବର୍ଣ୍ଣ ମାଢ଼େ ରୋପ୍ୟ ଚାରିମାଢ଼ । ନବତନ ବସ୍ତ୍ର ଯେ ନଟୀକାଳ ॥
ଉଆ ଚାଉଳ ଗୁଡ଼ ଦଧି ସର । ଘୃତ ଦୀପ ଜ୍ୱାଳ ସଞ୍ଜ ପାଶର ॥
ଶୁଣି କୁମର ବେଗେ ଚଳିଗଲା । ସଞ୍ଜା ଆଣିକରି ପାଶେ ଥୋଇଲା ॥
ବୋଇଲା ଭୋ ପ୍ରଭୁ ସଂଶୟ ଯାଉ । ବଂଶ କଳଙ୍କ ମୋର କ୍ଷୟ ହେଉ ॥
ପୂର୍ବ ହେତୁରୁ ତୁମ୍ଭପାଦେ ଆଶ । ମୋଠାରେ ମାୟା ନ କର ବିଶେଷ ॥
ଶୁଣ ରାମଦାସ କହିବା ତୋରେ । ମୋର ଚରଣ ଛୁଅଂ ଆଉ ବାରେ ॥
ଅତି ଗହନ ଅତି ଅସମ୍ଭବ । ଅପୂର୍ବ ପଦାର୍ଥ କେହୁ ସେ ଦେବ ॥
ଦେଇଥାବୁଂ ଆଉ ନେବାକୁ ନାହିଂ । ଉତ୍ତମ ଶିଷ୍ୟେ ଚିହ୍ନି ଦେବି ମୁହିଂ ॥
ବାରଣ ବେଳେ ବାରଣ ପଡ଼ଇ । ଧାନ୍ୟରୁ ଯେହ୍ନେ ଅଗାଡ଼ି ଝଡ଼ଇ ॥
ସେହି ମତି ସିନା ମୋହୋ ଭଗତ । ଦାମ୍ଭିକ ନାସ୍ତିକ କପଟୀ ଲୋକ ॥
ଯେ ଲୋକମାନେ ବାରଣ ପଡ଼ିବେ । ବାରଣ ବେଳେ ଦେବୀଆଳେ ଯିବେ ॥
ଥୋକେ ମୋହୋ ଭକ୍ତ ଏହା ଭଜିବେ । ଦିନକାଳ ଅତି କଷ୍ଟେ ସେ ନେବେ ॥
ପ୍ରଭୁ ସଙ୍ଗକୁ ଚାହିଂଥିବେ ବାଟ । ଗୋଲକ ମଣ୍ଡଳେ ତାହାଙ୍କ ଭେଟ ॥
ବାରଣ ବେଳେ ବାର ସସ୍ତ୍ରଜଣ । ବଛାହେବେ ଆହେ ବ୍ରଜନନ୍ଦନ ॥
କହିଲୁଂ ଭବିଷ୍ୟ ପୁରାଣ ବାଣୀ । ନିରାକାର ଭଜି ଭବତରଙ୍ଗିଣୀ ॥
ମୋହ ଶପଥ ତୋତେ ଆରେ ବାବୁ । ଯେ ଭଜନ୍ ସୂତା ସୁତେ ନ ଦେବୁ ॥
କିଏ କାହାର ମିଂଥ୍ୟା ଏ ସଂସାର । ଆପେ ତରିଲେ ଭବସିନ୍ଧୁ ପାର ॥
ଆପକୁ ଆପେ ଚିହ୍ନିଲେ ରେ ବାବୁ । କାଳେ କାଳେ ଅଜ୍ରାମର ହୋଇବୁ ॥

ସୁଖେ ପାର ହେବୁ ଭବସାଗର । ବୁଲିଗଲା ପ୍ରାୟେ ଜୀବ ଶରୀର ॥
କେହି ନ କହିବେ ମରିଲା ବାଣୀ । ମଲାକୁ କେ ଅବା ଦେଖିଛ ପୁଣି ॥
ବହୁ ପୁଣ୍ୟକଲେ ପ୍ରକାଶ ହୋଇ । ଦୀପେ ଘୃତ ଦେଲେ ଯେହ୍ନେ ଜଳଇ ॥
ଲିଭିଲେ ବାବୁ ଜଳିବାକି ଆଉ । ଦିହୁଡ଼ି ଲଗା ସଂଶଏ ତୋ ଯାଉ ॥
ଲିଭିଯାଉ ପଛେ ଫୁଙ୍କିଣ ଜ୍ୱାଳ । ଜ୍ୱାଳି ତିମିର ନାଶ ତତକାଳ ॥
ଦିହୁଡ଼ି ହୁଳାଟି ଯେହ୍ନୁ ଭଜନ । ଯନ୍ତ୍ର ଥାପି ମନ୍ତ୍ର ମନରେ ଘେନ ॥
ଆନ ଭଜନ ଦୀପର ପରାଏ । ଲଭିଲେ ଆଉ ଲଗାଟି ନଯାଏ ॥
ଶୂନ୍ୟ ଭଜନ ଦିହୁଡ଼ି ହୁଳାଟି । ପଢ଼ିଲେ ଭସ୍ମହୋଏ କୋଟି କୋଟି ॥
ଅତି ଗହନ ଏ ଶୂନ୍ୟ ଭଜନ । ବୁଝ ରାମଦାସ ଅତି ଗୋପ୍ୟାନ ॥
ପ୍ରଥମେ ଅନାମ ଥାପରେ ବାବୁ । ତା ତଳେ ଏକାକ୍ଷର ବ୍ରହ୍ମ ଦେବୁ ॥
କାମବୀଜକୁ ତହିଁର ଯେ ତଳେ । ତା ତଳେ ଓଂକାର ଥାପ ନିଶ୍ଚଳେ ॥
କେମନ୍ତେ ହେଲା ଯେ କର ବିଚାର । ଚିହ୍ନ ବାବୁ ସବୁ ଯେଥି ଭିତର ॥
ଦ୍ୱାତ୍ରିଂଶ ଅକ୍ଷର ଏଥି ସମିଛି । ଉଚ୍ଚାରି ପାରିଲେ ମୂଢ଼ ତରୁଛି ॥
ଆଉ ଆଧାରେ ଭେଦାଇ କହିବା । ଯନ୍ତରେ ବସାଇ ମନ୍ତ୍ର କହିବା ॥
ତ୍ରିତାପ ନାଶ ହେଉ ଯେ ତୋହର । ଧ୍ୟାନରେ ମନ ନୟନେ ଧର ॥
କେମନ୍ତେ ଭଜନ କେମନ୍ତେ ପଥ । ବିଚିତ୍ର ଗତି ଭଣଇ ଅଚ୍ୟୁତ ॥

ଇତିଶ୍ରୀ ଶୂନ୍ୟ ସଂହିତାୟାଂ ଗୁରୁ ଶିଷ୍ୟ ବୋଧନେ ରାଜପ୍ରଚ୍ଛିନ୍ନ ତଥା
ଶୂନ୍ୟ ଭଜନ କଥନେ ନାମ ଦଶମ ଅଧ୍ୟାୟଃ ।॥

## ଏକାଦଶ ଅଧ୍ୟାୟ

ଶୁଣ ରାମଚନ୍ଦ୍ର ଦାସ ହୋଇଣ ହରଷ ।
ତୁ ଯେଣୁ ଆମ୍ଭର ଅଟୁ ଅତି ବିଶ୍ୱାସ ।
ତୁ ଯେ ପୁଚ୍ଛାକଲୁ ତତ୍ତ୍ୱ ଗୁପତ ସନ୍ଧି ।
ଧ୍ୟାୟେ ଧାରଣା ବେଭାର ଆଦିମାନ ବିଧି ।
କହିଦେଲୁଂ ତୋତେ ସବୁନ୍ତି ସଂଶୟ ଫେଡ଼ି ।
ପାରିଲେ ଚିତ୍ତରେ ରଖ ଦୃଢ଼େଣ ମନାଇଂ ।
ତୁ ଯେଣୁ ଜଗନ୍ନାଥର ସେବକ ଜନ ।

ଜାଣିଣ ସୁଦୟା କଲେ ଜଗଜ୍ଜୀବନ ।
ଶ୍ରୀକୃଷ୍ଣ ଆନ୍ତର କଣ୍ଠେ ସଦା ବସନ୍ତି ।
ଗ୍ୟାଂନ ଉପଦେଶମାନ କହିଣ ଦିଅନ୍ତି ।
ଆଗ୍ୟାଂ ହୋଇଛି ଯେଉଂଣ ଶୁଣ ରାମଦାସ ।
ଗୁପତ କଥା ତୋଠାରେ ହୋଇବ ପ୍ରକାଶ ।
ତେଣୁକରି ମୁଇଂ ତୋତେ କହିଲଟି ଯେହା ।
ଶୁଣ ରାମଚନ୍ଦ୍ର ଦାସ ଭକତି ଶୋଭେହା ।
ବିଶ୍ୱାସ ସେବକ ତୁ ଯେଣୁ ଅଟୁରେ ମୋର ।
ବିଶ୍ୱାସ କଥାମାନନ୍ତ କହେ ତୋ ଆଗର ।
ଗୁରୁ ଯେହୁ ସେହୁ ବାବୁ ସୂର୍ଯ୍ୟ ତେଜ ଜାଣି ।
ଶିଷ୍ୟ ଚନ୍ଦ୍ରମା କିରଣ୍ଣୁଂ ଶୀତଳଟି ପୁଣି ।
ଶିଷ୍ୟର ବାକ୍ୟ ହୋଅଇ ଶୀତଳୁଂ ଶୀତଳ ।
ଗୁରୁଙ୍କ ବାକ୍ୟ ହୋଅଇ ମହା ଦାବାନଳ ।
ଶାନ୍ତି ଚିତ୍ତରେଣ ବାବୁ ନିମଗନେ ରହି ।
ନୀର ଖୀର ମିଶିଲେ ଯେ ବାରଣ ନ ଯାଇ ।
ସୁଗୁରୁ ସୁଶିଷ୍ୟ ସିନା ଜାଣେ ପରିଛନ୍ଦ ।
ଅବିବେକ ଗୁରୁଠାରେ ପ୍ରକାଶଇ ଦ୍ୱନ୍ଦ ।
ଗୁରୁ ନାଶଯାଇ ଶିଷ୍ୟ ତରିବଟି କାହିଂ ।
ଶିଷ୍ୟ ଭକ୍ତି ସୋଲଭେଲା ପ୍ରାୟେକ ଭାସଇ ।
ସୁଗୁରୁ ସୁପଥ ଦେଲେ ଭବୁଂ ହୋଏ ପାର ।
ସମୋଦ୍ର ତରଣେ ଯେହ୍ନେ ନାବିକ ବାହାର ।
ତୋଠାରେ ମୋହର ବାବୁ ନ ଥାଇଟି ମାୟା ।
ଭରଥ ଯାଦବ ଧର୍ମୁ ମୋର ଅର୍ଦ୍ଧକାୟା ।
ଯେଣୁ ତୁମ୍ଭଠାରେ ମୋର ଥାଇଟି ବିଶ୍ୱାସ ।
ତେଣୁ ବେଳେବେଳେ କହେ ତତ୍ତ୍ୱ ଉପଦେଶ ।
ଜାଣିଥାଅ ଯେହା ବାବୁ ତୁହୋ ଦୃଢ଼କରି ।
ଉତ୍ତମ ଶିଷ୍ୟରେ ବାଛି ଦେବୁ ସେ ବିଚାରି ।
ଉତ୍ତମ ଶିଷ୍ୟରେ ଗୁପ୍ତ ସନ୍ଧି ଫେଇହୁଏ ।
ପୋତା ଥିଲା ଗଣ୍ଠି ପ୍ରାୟେ ବାରଣ ନ ଯାୟେ ।

ଦରଫୁଟା ପୁଷ୍ପ ଯେହ୍ନେ ବାସ ନ ପ୍ରକଟି ।
ଫୁଟିଲେ ମଳିଣ ବାବୁ ବାସ ତାର ତୁଟି ।
ସେହିମତି ସିନା ବାବୁ ମୋର ଭକ୍ତଜନ ।
ଚୋରମତ ଦିନକାଳ ହରିନିଏ ଦିନ ।
ଦମ୍ଭ ମୋହ ଅହଂକାର ନଥାଇଂ ଦେହେଣ ।
ପଚାରିଲେ ବାଇପ୍ରାଏ କହେ କଥାମାନ ।
ଗଭୀର ସମୋହ୍ର ପ୍ରାୟେ ଯେ ଗଭୀର ହୋୟେ ।
ପୁଣି ସେ ହୃଦୟ ବାବୁ ପାଷାଣ ପରାୟେ ।
ରଙ୍କ ଯେହ୍ନେ ପାୟେ ଧନ ରଖେ ଦୃଢ଼କରି ।
ମାତା ଯେହ୍ନେ ପୁତ୍ରକୁ ନ ଛାଡ଼େ ସ୍ନେହକରି ।
ସେହିମତି ଘେନ ବାବୁ ତୋହୋର ହୃଦେଣ ।
ମୋହୋ ଶପଥଟି ତୋତେ ନକର ବ୍ୟାଖ୍ୟାନ ।
ସାତ ପାଞ୍ଚ ପଞ୍ଚଶକି ଶୟେ ବା ହୋଇଲେ ।
କୋଟିକେ ଗୋଟିୟେ ଯେହା ଜାଣିପାରେ ଭଲେ ।
ବିଷ୍ଣୁଦେହୀ ବିଷ୍ଣୁସ୍ନେହୀ ବିଷ୍ଣୁ ଭକ୍ତଜନ ।
ବିଷ୍ଣୁ କଳା ଯେକ ଅଙ୍ଗ ନିରାକାରେ ଧ୍ୟାନ ।
ଅଷ୍ଟ ଅଇଶ୍ବର୍ଯ୍ୟ ଦାନୀ ଶତେ ସୂର୍ଯ୍ୟ ପରି ।
ଅଛନ୍ତି ଯେ ନିରାକାର ପ୍ରଭୁଙ୍କୁ ଆବୋରି ।
ଉଚ୍ଚ ନୀଚ ବାରଣ ଯେ ତାଙ୍କଠାବେ ନାହିଂ ।
କୋଟି ସୂର୍ଯ୍ୟ ତେଜ ପ୍ରଭା ଜ୍ୟୋତି ବିରାଜଇ ।
ଆଦି ଅନ୍ତ ଗୁପ୍ତ ବାବୁ ପ୍ରକଟ ନକର ।
କହିଲୁଂ ନିଗୂଢ଼ ଯାହା ରଖ ତା ହୃଦର ।
ଦ୍ୱାତ୍ରିଂଶ ଅକ୍ଷରେ ବାବୁ ନିରାକାର ଘର ।
ନିରାକାର ଛାଡ଼ିଲେ ତୁ ହେବୁ ନାରଖାର ।
ବହିବଟି ଅଣଚାଶ ଦିଶିବ ଅନ୍ଧାର ।
ଘୋର ଅନ୍ଧକାରେ ପଡ଼ି ହେବୁ ନାରଖାର ।
ବୋଲିବୁ ପ୍ରଦୀପ ଜଳୁ ତୁଟିବ ଅନ୍ଧାର ।
ଅଣଚାଶ ବାଇ ବାବୁ ଭଗାରି ତୋହୋର ।
ବହିବ ପ୍ରଳୟ ବାତ ଅଣଚାଶ ଖଣ୍ଡ ।

ଲିଭିବ ପ୍ରଦୀପ ବାବୁ ହେବୁ ଲଣ୍ଡଭଣ୍ଡ ।
ବେଲୁ ଜାଣିଥାଅ ବାବୁ ବିହୁଡ଼ି ହୁଳାଟି ।
ଅଣଚାଶ ବାଇମନ କି କରି ପାରେଟି ।
ଲିଭିଗଲେ ଯାଉ ବାବୁ ଫୁଙ୍କିଣ ତୁ ଜାଳ ।
ଜାଳିଣ ତିମିର ତୁହି ନାଶ ତତକାଳ ।
ବିହୁଡ଼ି ହୁଳାକୁ ବାବୁ ଶତେ ଭାଗକର ।
କେଡ଼େଟି ଜଳଇ ବାବୁ କେଡ଼େ ସେ ଉଜ୍ୱଳ ।
ପୁଣି ଯେକଠାବ କଲେ କେଡ଼େ ଶିଖା ହୋଇ ।
ଅଣଚାଶ ବାଇ ତାର କିକରି ପାରଇ ।।
ଲିଭିଗଲେ ଯାଉ ବାବୁ ଫୁଙ୍କି ଦେଲେ ଜଳେ ।
ଘୋର ଅନ୍ଧକାର ତାକୁ କି କରିବ ବଳେ ।
ଯେମନ୍ତ ପ୍ରଦୀପ ପୂର୍ବ ଭାଗ୍ୟ ଥିଲେ ପାଇ ।
ପ୍ରମହଂସ ନିରକାର ସାକ୍ଷାତେ ଦେଖଇ ।
ନିରାକାର ମନ୍ତ୍ରଂକୁ ତୁ ବୁଝିଣ ଯେ ଭଜ ।
ଗୁପତୁଂ ଗୁପତ ଗୁପ୍ତ ମହାଗୁପ୍ତ ହେଜ ।
ନକର ପ୍ରକାଶ ବାବୁ ନକର ପ୍ରକାଶ ।
ବେଳକେ ଉଦୀଅ ହେବ ମହାଗୁପ୍ତ ଭ୍ୟାସ ।
ମହାଘୋର ଅନ୍ଧକାର ତମ ଆଚ୍ଛାଦିବ ।
ଅଚାନିକେ ଅଣଚାଶ ବାଇ ଯେ ବହିବ ।
ବେଢ଼ିବେ ବେତାଳୀ କାଳୀ ଚଣ୍ଡୀଯେ କପାଳୀ ।
ଅଚାନିକେ ନଷ୍ଟଭ୍ରଷ୍ଟ ପକାଇବେ ଦଳି ।
ପ୍ରବଳ ହୋଇବେ ଯୋଗ୍ନୀ ଅଗ୍ନିଶିଖା ଜାଳି ।
ଦହିଜ୍ୟ କରିବେ ଗ୍ରାମ ପଡ଼େ ହାଲହୋଳି ।
ଦାମ୍ଭିକ କପଟୀ ଜନ ଅନେକ ପଡ଼ିବେ ।
ସେବେଳେ କାଳୀ କଙ୍କାଳୀ ବାରି ନ ପାରିବେ ।
ଯେ ଜାଣେ ଗୁପତ ଭକ୍ତି ବହିନେବେ କାଳ ।
ନିରାକାର ଭଜନିୟା ଭକ୍ତ ସେହି ମୂଳ ।
ବାରଣ ବେଳକୁ ସିନା ବାରଣ ପଡ଼ଇ ।
ଉତ୍ତମ କେ କନେଷ୍ଟ କେ ବାରଣ ହୋଅଇ ।

କହିବା ଅପୂର୍ବ କଥା ଶୁଣ ରାମ ଦାସ ।
ମଥୁରାରେ କୃଷ୍ଣଚନ୍ଦ୍ର ପାଟବଂଶୀ ପାଶ ।
ରାଜସି କନ୍ୟାଏ ପାଶେ ବେଢ଼ିଣ ଅଛନ୍ତି ।
ରୁକ୍ମଣୀ ଯେ ସତ୍ୟଭାମା ପାରୁଶେ ଖଟନ୍ତି ।
ମନଜାଣି କୃଷ୍ଣ ସେବା କରୁଥାନ୍ତି ପାଶ ।
କ୍ଷଣେ ଅଲଗ ନୋହନ୍ତି ତୁଳସୀଙ୍କ ପାଶ ।
ନିଯୋଜିତ ସେବାରେ ସେ ଖଟିଣଥାଆନ୍ତି ।
ଅଇଶ୍ୱର୍ଯ୍ୟ ଭୋଗେ ପ୍ରଭୁ ତହିଁ ବିଳସନ୍ତି ।
ହାସ୍ୟରସେ ପରିହାସେ ଦିନକାଳ ଗଲା ।
ଯୋଗ ଲୟେ ଯୋଗମାୟା ମନେ ପ୍ରକଟିଲା ।
ଚିନ୍ତାରେ ବିଛେଦ ପ୍ରଭୁ ଦିନୁଦିନ ଖୀନ ।
ଖୀନ ହେଲା ଶୀରିଅଙ୍ଗ ଦିଶିଲା ମଳିଣ ।
ବିଚାରନ୍ତି ଅଷ୍ଟକନ୍ୟା ଅଷ୍ଟ ପାଟବଂଶୀ ।
ପ୍ରଭୁଙ୍କ ଶ୍ରୀଅଙ୍ଗ ଖୀନ ନିଯୋଗ ନ ଅଣ୍ଟି ।
କି ଅବାଟି ମାତା ପିତା ପଡ଼ିଲେ ମନର ।
ହୀନ ହେଲା ଶିରୀଅଙ୍ଗ ଦିଶେ ଅସୁନ୍ଦର ।
ବିଚାରନ୍ତି ତୁଳସୀ ତୁ ପଚାର କୃଷ୍ଣଙ୍କୁ ।
କ୍ଷମ ନୋହୁ ଆମ୍ଭେମାନେ ପୁଛିବୁଂ ତାହାଙ୍କୁ ।
ଯେମନ୍ତେ ସେ କେତେଦିନ ବହିଗଲା ପୁଣ ।
ପଚାରିଲେ ରାଜକନ୍ୟା ପ୍ରଭୁଙ୍କ ପାଶେଣ ।
ଖଣ୍ଡେ ଦୂରେ ଉଭାହୋଇ ନିଯୋଗର ବେଳେ ।
ପୁଛାକଲେ ଅଷ୍ଟସଖୀ ତୁଳସୀଙ୍କ ମେଳେ ।
ପଚାରିବୁ କଥାଯେ ଯେ ଶୁଣ ମହାବାହୁ ।
ଭ୍ରାନ୍ତି ଲାଗୁଅଛି ପ୍ରଭୁ ଦୋଷ କ୍ଷମା ହେଉ ।
ଶୁଣିଣ ଶ୍ରୀକୃଷ୍ଣଚନ୍ଦ୍ର ଅଳପ ହସିଲେ ।
କି କଥା ହୋ ସତ୍ୟଭାମା କହସି ବୋଇଲେ ।
ଆଗଭର ହୋଇକରି ତୁଳସୀ ବୋଲନ୍ତି ।
ଶ୍ରୀଅଙ୍ଗ ଆଳସ୍ୟ ପ୍ରଭୁ ବିରୂପ ଦିଶନ୍ତି ।
ମଣୋହିକି ନିଯୋଗ ଯେ ନ ରୁଚଇ ଅବା ।

ମନରେ ସଂଶଏ ପ୍ରଭୁ ଆମ୍ଭକୁ ଲାଗିଲା ।
ଶୁଣିଣ ଶ୍ରୀକୃଷ୍ଣଚନ୍ଦ୍ର ଅଶ୍ରୁଜଳେ ପୂରି ।
ନ କହିଲେ ମନତତ୍ତ୍ୱ ମନରେ ବିଚାରି ।
ପଚାରିଲେ ରାଜସିକେ ପୁଣି ପଡ଼ି ପାୟେ ।
କହ ମହାପ୍ରଭୁ ମନେ ଯେ ଅବା ସଂଶୟେ ।
ଶୁଣସି ଗୋ ରାଜସିକେ ମନୁରାଜା ସୁତା ।
ଆମ୍ଭ ଅର୍ଦ୍ଧ ଅଙ୍ଗ ତୁମ୍ଭେ ଆତ୍ମାରୁ ଅଧିକା ।
ନ କହିଲେ ମନକୁ ସଂଶୟେ ନ ଛୁଡ଼ିବ ।
କହିଲେ ଯେ ଉପହାସ୍ୟ ପରାୟେ ବୁଝିବ ।
ଗୋପପୁର ଗୋପକନ୍ୟା ଛାଡ଼ିଣ ଅଇଲୁଂ ।
ରାଜସିକ ସମ୍ପତ୍ତିରେ ଦିନମାନ ନେଲୁଂ ।
ନୋହିଲା ରାହାସ ରଙ୍ଗ ଉପାହାସ୍ୟ ରସ ।
କ୍ଷଣେ ମୁହିଂ ରାଧିକାକୁ ନ ଛାଡ଼ଇ ପାଶ ।
ଆଗେ ରାଧା ପଛେ ମୁହିଂ ଲମ୍ପଟ ଭାବରେ ।
ଯେକ ବୀଜ ବେନିଫାଳ ଆପଣା ଅଙ୍ଗରେ ।
କୋଟି ସୂର୍ଯ୍ୟ ପ୍ରଭା ତାର ଛଟକ ଅଟଇଂ ।
ନଖମଣି କୋଟିପ୍ରଭା ସୂର୍ଯ୍ୟକୁ ଗଞ୍ଜଇ ।
ନବଧା ଭକ୍ତି ସେ ଷଡ଼ୈଶ୍ୱର୍ଯ୍ୟ ଅଛି ତହିଂ ।
ମୋର ମନ ହରେ ରାଧା ପ୍ରୀତିରସ ଦେଇ ।
ତାର ବିନୁ ଖୀନ ହେଲା ଶ୍ୱରୀତି ଆମ୍ଭର ।
କ୍ଷଣେ ନ ତେଜୁ ଯେ ଆମ୍ଭେ ରାଧା ପ୍ରେମ ଆର ।
ଶୁଣସି ଗୋ ପାଟବଂଶୀ ସେରୂପ ମହିମା ।
ଶତେ ଚନ୍ଦ୍ର ନିନ୍ଦାକରେ ମୁଖଜ୍ୟୋତି ସୀମା ।
ଦହିଲା କନକ ପ୍ରାୟେ ଅଙ୍ଗ ତାର ଦିଶି ।
କୋଟି ପ୍ରଭା ତେଜ ଜିଣି ତା ନଖ ପ୍ରକାଶି ।
ତାହାକୁ ଯେ ଖଟିଛନ୍ତି ଅଷ୍ଟ ସଖୀମାନେ ।
ଯୋଗଲୟେ କରିଥାନ୍ତି ଯୋଗୀଜନ ଧ୍ୟାନେ ।
ନିତ୍ୟରାଧା ମହାନିତ୍ୟ ପରଣେ ନିବାସ ।
ଗୋଲେକେ ଶ୍ରୀକୃଷ୍ଣ ତାଙ୍କ ପ୍ରୀତିରସେ ବଶ ।

କ୍ଷଣେ ନିମିଷେ ଯେ ତାଙ୍କ ନ ଛାଡ଼ନ୍ତି ସାଙ୍ଗ ।
ବହିଣ ଅବଧି ଗଲା ତେଣୁ ଖୀନ ଅଙ୍ଗ ।
ଶୁଣି ଅଷ୍ଟ ପାଟବଂଶୀ ଦ୍ରହସିତ ହୋଇ ।
ଆଚମ୍ବିତେ ବସିଲେକ ଶିରେ ହାଥ ଦେଇ ।
ନ ସୁରଇ ବାକ୍ୟ ତାଙ୍କ ନ ସୁରଇ କଥା ।
ଲାଜେ ରାଜକନ୍ୟା ଆଉ ନ ଦେଲେ ସମସ୍ୟା ।
ବଳିଣ ତୁଳସୀ ଦେବୀ ବଳେ ବଳେ କହେ ।
ସତ୍ୟ ମିଥ୍ୟା ଜାଣିବାନା ଦେଖିଲେ ନିଶ୍ଚଏ ।
ଦେଖାଅନି ମହାପ୍ରଭୁ ରାଧା ଅଙ୍ଗ ଗୋଟି ।
କେମନ୍ତ ସୋରୂପ ପ୍ରଭୁ ମନକୁ ଯେ ଖଟି ।
ଗୋପର ଯେ ଗଉଡୁଣୀ ଗୋରସର ଅଙ୍ଗ ।
ପ୍ରଭୁଙ୍କ ମନକୁ କେହ୍ନେ ଯୋଗାଇ ସେ ଅଙ୍ଗ ।
ବୋଇଲେକ ମହାପ୍ରଭୁ ଗୋଲୋକ ନିବାସ ।
ରାଧାଛନ୍ତି ଅଷ୍ଟସଖୀ ବେଢ଼ି ତାଙ୍କ ପାଶ ।
ତୁମ୍ଭେ କେହ୍ନେ ତାଙ୍କ ସଙ୍ଗ ଛାଡ଼ିଣ ଅଇଲ ।
ଏମନ୍ତ ସୋରୂପ ରାଧା କେମନ୍ତେ ତେଜିଲ ।
ବଡ଼ଲୋକମାନେ ବହୁ ମିଥ୍ୟା ଯେ ବଦନ୍ତି ।
ଆମ୍ଭେ ସ୍ତିରୀମାନେ ସିନା ଗୁଆଂର ଯୁବତୀ ।
ରାଜସୁଖ ରାଜକନ୍ୟା ପଲଙ୍କ ତେଜିଲ ।
ଗୋପପୁର ଗଉଡୁଣୀ ମନରେ ହେଜିଲ ।
ଯେ ବଡ଼ ଅପୂର୍ବ କଥା ବଇଲ ହେ ପ୍ରଭୁ ।
ପ୍ରତେ ଯାଉନାହିଂ ମନ ପ୍ରତକ୍ଷେ ଦେଖିଂବୁ ।
ଶୁଣିଣ ଶ୍ରୀକୃଷ୍ଣଚନ୍ଦ୍ର ହରଷେ ବଦନ୍ତି ।
ବେନି ତନୁ ମଧ୍ୟେ ରାଧା ନିବାସ ରଚନ୍ତି ।
ବେନି ତନୁ ମଧ୍ୟେ ରାଧାକୃଷ୍ଣ ଛନ୍ତି ପୂରି ।
ଅଲଗ ନୁହଂନ୍ତି ଏକ ଅଙ୍ଗ ନୋହେ ବାରି ।
ଥାବର ଜଙ୍ଗମ କୀଟ ପତଙ୍ଗ ସହିତେ ।
ପୂରିଛନ୍ତି ରାଧାକୃଷ୍ଣ ସବୁଙ୍କରି ଘଟେ ।
ତୁମ୍ଭେ ରାଜସିକ ସିନା କିବା ଭକ୍ତି ଜାଣ ।

ନବଧା ଭକ୍ତିରେ ମଗ୍ନ ଗୋପ କନ୍ୟାଗଣ ।
ଶୁଣି ଅଷ୍ଟ ପାଟବଂଶୀ ଆଚୁମ୍ବିତ ହେଲେ ।
ମନେ ଅଭିମାନ ପାଇ ସେବାରେ ଖଟିଲେ ।
ଯେମନ୍ତେଣ କେତେ ଦିନ ତହିଂ ବହିଗଲା ।
ମାନଭରେ ପାଟବଂଶୀ ସେବା ବିଘ୍ନହେଲା ।
ଶ୍ରୀକୃଷ୍ଣ ବିଚାରକଲେ ପାଟବଂଶୀମାନେ ।
ମାନଭର କରି ସତ୍ୟ ମିଥ୍ୟାପରି ମଣେ ।
କେମନ୍ତେ ଯେ ରାଜସିକ କନ୍ୟା ପ୍ରତେ ଯିବେ ।
ରାଧିକା ଅଙ୍ଗକୁ କେହି ଭାର୍ଜନ ନୋହିବେ ।
ନ ଦେଖିଲେ ପ୍ରତେ ଯେ ନଯିବେ ରାଜସିକ ।
ରାଧାଠାକୁ ଅଗମ୍ୟ ସେ ପଥ ଯେ ଅନେକ ।
ବିଚାର କରନ୍ତେ ନିଶି ଅର୍ଧମାନ ହେଲେ ।
ଗରୁଡ଼କୁ ସୁମ୍ବରଣା ପ୍ରଭୁ ମନେକଲେ ।
ବୋଇଲେ ସୁଦାମ ଶୁଣ ଆମ୍ଭର ତୁ ବାଣୀ ।
ରାଜୁସି କନ୍ୟାକୁ ଘେନି ଚଳ ଯେହିକ୍ଷଣି ।
ସେବା ଛାଡ଼ି ଆଗେ ଉଭାହେଲା କରଯୋଡ଼ି ।
କି ଆଗ୍ୟାଂ ହେଉଛି ଅକର୍ମାକୁ କୁହ ଫେଡ଼ି ।
ଗରୁଡ଼ ପ୍ରଣମ୍ୟ କଲା ପ୍ରଭୁଙ୍କ ଚରଣ ।
ଚାଲ ଖଗବର ଯିବା ଗୋଲୋକ ଭୁବନ ।
ନିତ୍ୟରାଧା ପ୍ରେମରାଧା ରାଧାଙ୍କ ଶ୍ରୀଅଙ୍ଗ ।
ରାଧାକୃଷ୍ଣ ପ୍ରେମଭକ୍ତି ଅତିହିଂ ସୁରଙ୍ଗ ।
ରାଜସିକ କନ୍ୟାମାନେ ଅଛନ୍ତି ଯେ ବସି ।
ଦେଖିବେ ସେ ରାଧା ଅଙ୍ଗ କେଡ଼େ ଅଭିଳାଷୀ ।
ଗୋପ ଗଉଡୁଣୀ ବୋଲି ପରତେ ନଗଲେ ।
ଦେଖିବେ ସେ ରାଜକନ୍ୟା ମନେ ବିଚାରିଲେ ।
କେମନ୍ତେ ଯେ ଯେ ଦୁର୍ଗମ ପଥଯିବା ଘେନି ।
ମହଧାନିତ୍ୟ କୃଷ୍ଣକୁ ଡରଇ ମୁହିଂ ପୁଣି ।
ଗଲେ ଯେ ଆକଟ ହେବ ବାରଣ ପଡ଼ିବ ।
ନୀରଖୀର ସୁଧାସିନ୍ଧୁ ଲହଡ଼ି ମାରିବ ।

ଯେତେ କହି ମାନଭରେ ବସିଲେ ଯେ ପ୍ରଭୁ ।
କ୍ଷମ ନୋହେ ଆନ କେହି ବିଡ଼ି କହିବାକୁ ।
ଗରୁଡ଼ ବୋଇଲେ ପ୍ରଭୁ କି ଆଗ୍ୟାଂ ହୁଅଇ ।
ଘେନିଯିବି ଅଷ୍ଟ ପାଟବଂଶୀ କନ୍ଧେ ମୁହିଂ ।
ଆଜ ମୋ ଜନମ ପ୍ରଭୁ ସୁଫଳ ହୋଇବ ।
ଶ୍ରୀଚରଣେ ଅଙ୍ଗେ ଲାଗି ଅନ୍ତ୍ରାମ୍ବର ହେବ ।
ଯେମନ୍ତ ସମଏ ମୁହିଂ ଚରଣେ ପଡ଼ିଲି ।
ଉଠିକରି କରଯୋଡ଼ି ପୁଣ ଜଣାଇଲି ।
ମୁଂ ବୋଇଲି ମହାପ୍ରଭୁ କହିଲ ଅପୂର୍ବ ।
ଚିନ୍ତାଭରେ କିମ୍ପା ତୁମ୍ଭ ଦେହ ଖୀନହେବ ।
କାରଣ ବାରଣ କର୍ତ୍ତା ବୋଲାଅ ଗୋସାଇଂ ।
କରିଲେ କି କରି ନାହିଂ ଭକ୍ତବନ୍ଧୁ ହୋଇ ।
ବୋଇଲ ଯେ ନିତ୍ୟରାଧା ପ୍ରେମରାଧା ଅଙ୍ଗ ।
ରାଧା ଅଙ୍ଗ ଗୋଲୋକରେ କିଶୋରଙ୍କ ସଙ୍ଗ ।
ଦେଖ ଯେ ଶ୍ରୀଅଙ୍ଗେ ମଧ୍ୟେ ରହିଅଛି ନିତ୍ୟ ।
ମହାନିତ୍ୟ ପ୍ରେମରାଧା କୃଷ୍ଣଠାବେ ମତ ।
ତୁମ୍ଭଠାରେ ସର୍ବ ପୂରିଅଛି ମହାବାହୁ ।
ଅନିତ୍ୟ କିମ୍ପାଇଂ ପ୍ରଭୁ ମୋତେ ବାରି କହୁ ।
ଆମ୍ଭେ ସିନା ଅରକ୍ଷ ଗୁଆଂର ଇନପରି ।
କେତେ ମାୟାକରି କହ ହୃଦେ ଦଇତାରି ।
ଦେଖାଇଲେ ରାଧାଅଙ୍ଗ ଯେଠାବେ ଦେଖାଅ ।
ରାକ୍ଷସି କନ୍ୟାନ୍ତ ଚିତ୍ତେ ମନରେ ମଜାଅ ।
ଦେଖି ଆଚମ୍ଭିତ ହେବେ ରାଜସିକ କନ୍ୟା ।
କୋଟି ସୂର୍ଯ୍ୟ ତେଜ ଜାଣି ରାଧା ତୁମ୍ଭେ ସିନା ।
ଯେକ ବୀଜ ବେନି ଫାଳ ଯେସନେ ହୁଅଇ ।
ରାଧାକୃଷ୍ଣ ବେନି ଅଙ୍ଗ ବାରଣ ନ ଯାଇ ।
ଯେତେ ବୋଲି ଚରଣେ ମୁଂ ଗଡ଼ଘାଲି ଶୋଇ ।
ଧରିଣ କୋଳରେ ମୋତେ ବସାଇଲେ ନେଇ ।
ବୋଇଲେ ସୁଦାମ ଶୁଣ ଆମ୍ଭର ଯେ ବାଣୀ ।

ଚିନ୍ତାରେ ନିମଗ୍ନ ହେଲୁ ତୁମ୍ଭପାଇଁ ପୁଣି ।
ତୁମ୍ଭ ଅଙ୍ଗ ସଙ୍ଗ ବାବୁ ଅନ୍ତର ନୋହିବି ।
କଳିଯୁଗେ ବଉଧ ରୂପରେ ଉଦେ ହେବି ।
ତୁମ୍ଭେ ପଞ୍ଚଶାଖା ଥିବ ଆମ୍ଭ ସଙ୍ଗତରେ ।
ତହିଁ ତୁମ୍ଭ ଆମ୍ଭ ଭେଟ କଳପବଟରେ ।
ପ୍ରତାପଦେବ ନୃପତି ଭାର୍ଜନ ହୋଇବ ।
ପଞ୍ଚଶାଖା ପ୍ରଚ୍ଛିନ୍ନେ ପରଚେ ଜାଗାଦେବ ।
ଅନ୍ତର ହେଲାରୁ ମୋତେ ନ ରୁଚଇ କିଛି ।
କେତେ ଦିନ ହେଲାଣି ବୈକୁଣ୍ଠ ତୁଚ୍ଛା ଅଛି ।
ଦେଖିବି ମୁଂ ନିତ୍ୟକୃଷ୍ଣ ପ୍ରେମରାଧା ଅଙ୍ଗ ।
ରାଜକନ୍ୟା ମନ ମୋହି ହେବ ଅଙ୍ଗ ସଙ୍ଗ ।
ରାଜସିକ ଭଗତିଟି ବାହିଯ୍ୟ ପ୍ରକାର ।
ମାୟା ମୋହ ଦମ୍ଭ ରାଗ ସମ୍ପଦ ସଙ୍ଗର ।
ପ୍ରେମରାଧା ପ୍ରେମକୃଷ୍ଣ ପ୍ରେମଭକ୍ତି ଜନ ।
ପ୍ରେମଭକ୍ତି ନିରାକାର ଷଡ଼ୈଶ୍ୱର୍ଯ୍ୟ ପୂର୍ଣ୍ଣ ।
ଗୋପରେ ଗୋପୀମାନେ ନବଧା ଭଗତି ।
ପ୍ରେମେ ପରିପୂର୍ଣ୍ଣ ଦୂତୀ ରାଧାକୃଷ୍ଣ ମୂର୍ତ୍ତି ।
ଦେଖିବେ ଯେ ରାଜସିକ ଅଷ୍ଟପାଟବଂଶୀ ।
ତୁଳିଲେ କେ କେତେ ଗରୁ ଜାଣିବା ତା କଷି ।
ଚାଲହୋ ଗରୁଡ଼ ଘେନି ପାଟବଂଶୀମାନ ।
ପ୍ରଭୁ ଆଗ୍ୟାଂ ପାଇ ଖଗ ଉଠିଲା ବହନ ।
ଆଗ୍ୟାଂଦେଲେ ପାଟବଂଶୀ ଚାଲଯିବା ବେଗେ ।
ରାଜସି କନ୍ୟାଯେ ଶୁଣି ଆନନ୍ଦ ସରାଗେ ।
ପ୍ରଭୁ ବିଜେକଲେ ଅଷ୍ଟପାଟବଂଶୀ ଘେନି ।
ମୁହିଂଥିଲି ଦାସପଣେ ଗହଳରେ ଶମି ।
ଆସନ୍ତେଣ ଶତେ ଯୁଣ ପଥ ବାହିଗଲୁ ।
ହେଲାଣି ନିକଟ ବୋଲି ପ୍ରଭୁରେ ଶୁଣିଲୁଂ ।
ଚାରିଯୁଣ ଛଡ଼ାଅଛି ପ୍ରେମରାଧା ସ୍ଥାନ ।
ସେ ତେଜ ତାଙ୍କରି ଶତେ ସୂର୍ଯ୍ୟର କରିଣ ।

ପ୍ରଥମ ଦୁଆରେ ରାଜସିକ କନ୍ୟାଗଣ ।
ତହିଁ ରାଧାକୃଷ୍ଣ ପୁଣ ନିଯୋଗୀ ଯୋଗେଣ ।
ଦେଖିଲେ ସେ ରାଜକନ୍ୟା କନ୍ୟାଗଣମାନ ।
ଯେକେ ଯେକେ କୋଟି ସୂର୍ଯ୍ୟ କିରଣ ଜିଣିଣ ।
ପୁଚ୍ଛାକଲେ କନ୍ୟାଗଣ ଅଇଲ ଗୋ କାହୁଂ ।
କିମ୍ପାଇ ଅଇଲ ତୁମ୍ଭେ ମାନବଙ୍କ ଦେହୁ ।
ଆମ୍ଭେ ଦେବକନ୍ୟା ତୁମ୍ଭେ ମାନବ ଶ୍ୱରୀର ।
କିମ୍ପାଇ ଅଇଲ ତୁମ୍ଭେ ଯେତେକ ଯେ ଦୂର ।
ଆମ୍ଭର ଯେ ପ୍ରଭୁଛନ୍ତି ଗୋଲେଖ ବିହାରୀ ।
ଗିରିବୁହା ବାମକରେ ପାରନ୍ତି ସେ ଧରି ।
ଚତୁର୍ଭୁଜ କୃଷ୍ଣଚନ୍ଦ୍ର ଘରେ ଘରେ ଦେଖି ।
ରାଜକନ୍ୟା ବଇଭୋଗ ସେଠାବରେ ଲେଖି ।
କାହିଁ ସେ ସୁବର୍ଣ୍ଣ ଖଟ କାହିଁ ରୂପାତୁଳୀ ।
ତହିଁ ଚତୁର୍ଭୁଜ କୃଷ୍ଣ ଖେଡୁଛନ୍ତି ଦୋଳି ।
ବେନିଭୁଜ କୃଷ୍ଣଚନ୍ଦ୍ର କାହିଁ ଲୀଳାକରେ ।
ରାଜସୁଖ ସମ୍ପଦଟି ସେଠାବରେ ସ୍ୱଂଯେ ।
ରାଜକନ୍ୟା ଷୋଳସସ୍ର ସୂର୍ଯ୍ୟ ତେଜ ଜାଣି ।
ଦେଖିଣ ଯେ ସତ୍ୟଭାମା ଆଚମ୍ଭିତ ପୁଣି ।
ସେଠାରୁ ଚଳାଇଗଲେ ଦୁଜ ଦ୍ୱାରଠାରେ ।
ଦେବକନ୍ୟାମାନେ ଛନ୍ତି ଆନନ୍ଦ ଭାବରେ ।
ଛଡ଼ଭୁଜ କୃଷ୍ଣଚନ୍ଦ୍ର ଦେବକନ୍ୟା ଘେନି ।
ପୁରେ ପୁରେ ପଶିଣ ଦେଖିଲୁଂ ତାହା ପୁଣି ।
ସେ ବୋଇଲେ କାହୁଂ ତୁମ୍ଭେ ଅଇଲ ଗୋ ସହି ।
କୃଷ୍ଣଚନ୍ଦ୍ର ଆମ୍ଭର ଅଛନ୍ତି ନିଦ୍ରାଯାଇ ।
ହୀରା ନୀଳା ମୋତି ଯେ ମାଣିକ୍ୟ ଦୀପଜଳେ ।
ଛଡ଼ଭୁଜ କୃଷ୍ଣଚନ୍ଦ୍ର ପ୍ରେମରସ ଭୋଳେ ।
ଦେଖି ଆଚମ୍ଭିତ ହେଲେ ପାଟବଂଶୀମାନେ ।
କୃଷ୍ଣଚନ୍ଦ୍ର ପ୍ରତିବାକ୍ୟ ନ ବୋଲନ୍ତି କ୍ଷଣେ ।
ଚାଲ ଚାଲ ପ୍ରିୟସଖୀ ଦେଖିବା ରାଧାକୁ ।

ନିରେଖି ଚାହିଁ ପାରିବ କି ତାହା ମୁଖକୁ ।
ଚଳାଇଣ ପୁଣ ତହୁଂ କିଛି ଦୂର ଗଲେ ।
ତୃତୀୟ ଦୁଆରେ ଋଷିକନ୍ୟାଏ ଦେଖିଲେ ।
କାହିଁ ଫଳମୂଳ କାହିଁ ପରଷନ୍ତି ଜଳ ।
କାହିଁ କୃଷ୍ଣଚନ୍ଦ୍ର ପ୍ରେମରସରେ କଲ୍ଲୋଳ ।
ସୋଅର୍ଣ୍ଣ ପାତ୍ରରେ ଫଳ ଗୁଡ଼ାଯେକ ଦେଇ ।
ଭୁଞ୍ଜୁଛନ୍ତି କୃଷ୍ଣଚନ୍ଦ୍ର ଆନନ୍ଦିତ ହୋଇ ।
ଶତେକ ଚନ୍ଦ୍ରମା ରୂପ ନିନ୍ଦେ ଯାହା ପୁଣି ।
ଛଟକେ ଚାହିଁଲେ ଢଳି ପଡ଼ିବେ କାମେନୀ ।
ଯାଉଥାନ୍ତି ପୁରେ ପୁରେ ଦେଖୁଥାନ୍ତି ବସି ।
ଯେକପୁରେ ପ୍ରବେଶ ହୋଇଲେ ପାଟବଂଶୀ ।
ସେଠାବେ ଦେଖିଲେ କୃଷ୍ଣ ପଲଙ୍କ ଉପରେ ।
ବିଜେ କରିଛନ୍ତି ସତ୍ୟଭାମା ସଙ୍ଗତରେ ।
ହାସରସ ପରିହାସ ମାନ ବୋଲୁଛନ୍ତି ।
ଉପାଳମ୍ଭ ପ୍ରିୟଭାବ ଦେଖିଲେ ମୃଗାକ୍ଷି ।
ତାହା ଦେଖି ସତ୍ୟଭାମା ମୂର୍ଚ୍ଛାଗତ ଯାଇ ।
ଶ୍ରୀକୃଷ୍ଣ ମୁଖକୁ ଚାହିଁ ନ ପାରଇ କହି ।
ଚାଲ ଚାଲ ସଖୀ ଯିବା ରାଧାଙ୍କୁ ଦେଖିବା ।
କେ କେଡ଼େ ଗୋ ପ୍ରିୟଭାବ ପ୍ରୀତିରୁ ଜାଣିବା ।
ତହୁଂ କୃଷ୍ଣଚନ୍ଦ୍ର ପୁଣ ଚଳାଇଣ ଗଲେ ।
ଗୋପକନ୍ୟାମାନଙ୍କୁ ଦେଖିଣ ପ୍ରଶଂସିଲେ ।
କାହିଁ କୃଷ୍ଣଚନ୍ଦ୍ର ଗୋରୁ ଦୁହନ କରନ୍ତି ।
କାହିଁ ବଛାବୃନ୍ଦ ଘେନି ବନସ୍ତେ ବୁଲନ୍ତି ।
ଦଧି ଦୁଧ ବିକି ଯାନ୍ତି କୃଷ୍ଣ ନାମ ଗାଇ ।
କୃଷ୍ଣ ବିନୁଂ ନ ଜାଣନ୍ତି ଆନ ପୁଣ କେହି ।
ଯହିଁ ଗୋପୀ ତହିଁ କୃଷ୍ଣ ଅର୍ଦ୍ଧେ ଅର୍ଦ୍ଧଅଙ୍ଗ ।
ରାହାସେ ଦେଖିବା କୃଷ୍ଣ ପ୍ରୀତି ଅନୁଛନ୍ଦ ।
ନବଧା ଭଗତି ସେ ଯେ ଗୋପୀଙ୍କ ଅଙ୍ଗରେ ।
ଗୋପୀନଥ ନାମ ପ୍ରଭୁ ବହିଲେ ଭାବରେ ।

ଗୋପୀ ଯହିଁ କୃଷ୍ଣ ତହିଁ ଦୂତୀ ସହଚରୀ ।
ଆଚମ୍ବିତ ହେଲେ ଦେଖି କୃଷ୍ଣ ସଙ୍ଗ ନାରୀ ।
ଦୁଇ ଯୁଣ ଛଡ଼ା ଅଛି ରାହାସ ମଣ୍ଡଳ ।
କୋଟି କୋଟି ସୂର୍ଯ୍ୟତେଜ ମହା ଦାବାନଳ ।
ଯିବାକୁ ଚଳାଇ କୃଷ୍ଣ ଡାକୁଛନ୍ତି ଆସ ।
ନ ଶୁଣନ୍ତି ପାଟବଂଶୀ ମହାଶ୍ରମେ ପ୍ରାସ ।
ଉଭା ହୋଇଛନ୍ତି ଦୂରେ ଅଷ୍ଟ ପାଟବଂଶୀ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଚାଲ ଗୋ ପ୍ରେୟସୀ ।
ଦୁଇ ଯୁଣ ଛଡ଼ା ରାଧା ଯେଠାକୁ ଅନ୍ତର ।
ତାହାଂସିଗୋ ପ୍ରିୟସଖୀ ଦିଶେ କି ସୁନ୍ଦର ।
ତାହାକ୍ଷଣେ ଅଷ୍ଟସଖୀ ପଡ଼ିଗଲେ ମୂର୍ଚ୍ଛା ।
ଗୁରୁଦେହିଁ ପଡ଼ିଲେ ଶ୍ରୀକୃଷ୍ଣ ପଛଘୁଞ୍ଚା ।
ପ୍ରଳୟ କାଳକି ପୁଣ ବୁଡ଼ାଇଣ ଦେଲା ।
ରେଣୁଲାଗି ମୋର ଅଙ୍ଗ ଥକିତେ ରହିଲା ।
ସଚେତ କରାନ୍ତି କୃଷ୍ଣ ଅଷ୍ଟ ପାଟବଂଶୀ ।
ଆଶ୍ୱାସନା କରିଣ ଯେ ବୋଇଲେ ତୁଳସୀ ।
ସତ୍ୟଭାମା ଆଦିକରି ସେମାନେ ବୋଇଲେ ।
ଚାଲ ସଖୀ ଯିବା ଆମ୍ଭ ପ୍ରାଣ ସମତୁଲେ ।
ଆମ୍ଭେକି ଭର୍ଜନା ସଖୀ ଗୋପୀ ମଣ୍ଡଳକୁ ।
ପ୍ରେମରାଧା ଦେଖି ପ୍ରାଣ ଅଗ୍ୟାଂନ ଭାବକୁ ।
ସଦାକାଳେ କୃଷ୍ଣଚନ୍ଦ୍ର ଗରବ ଗଞ୍ଜନ ।
ଆମ୍ଭଙ୍କୁ ଗଞ୍ଜିଲେ ପ୍ରଭୁ କେମନ୍ତ ଭାବେଣ ।
ଯେତେ କୃଷ୍ଣ କାହିଁ ପୁଣ ଥିଲେ ଆଗୋ ସହି ।
ଚାହିଂଦେଲେ କୃଷ୍ଣମୟେ ସମସ୍ତ ଦିଶଇ ।
ଗରବ ଗଞ୍ଜନ ବାନା ଅଟଇ ତାଙ୍କର ।
ଗଞ୍ଜି ସାରିଲେ ଗୋ ସହୀ ଗରବ ଆମ୍ଭର ।
ପୁଣ କୃଷ୍ଣଚନ୍ଦ୍ର ଯେ ବୋଇଲେ ଆଗୋ ସଖୀ ।
ତୁଳିବା ମନକୁ ତୁମ୍ଭ କେତେ ଗୁରୁ ଅଛି ।
ମନ ନିକିତିରେ ତୁଳି କହିବାନା ସରୁ ।

ତୁଳନ୍ତେ ସମାନ ନୋହେ ଭାଗେ ହେଲା ଗରୁ ।
ଜାଣିଲେ ଏ ଅଷ୍ଟ ପାଟବଂଶୀ ରାଜସିକ ।
ରାଜସିକ ଭଗତି ଯେ ଗରୁ ଅବିବେକ ।
ପ୍ରେମରାଧା ଦେଖନ୍ତେ ଯେ ନୋହନ୍ତି ଭାର୍ଜନ ।
ପୁଣ ନିକିତିରେ ତୁଳ ତୁଳସୀକୁ ପୁଣ ।
ତୁଳନ୍ତେ ତୁଳସୀ ଦେବୀ ସମସରି ହେଲେ ।
ମନ ନିକିତିରେ ତୁଳି ସମାନ ହୋଇଲେ ।
ତୁଳିଣ ଯେ କୃଷ୍ଣଚନ୍ଦ୍ର ଗଲେ ଯେବେ ପୁଣ ।
ରହିଲେ ପାଟବଂଶୀ କି ଗରୁଡ଼ କଗିଣ ।
ତହିଂ ପଛେ ଗୋଡ଼ାଇଣ ମୁହିଂ ପୁଣି ଗଲି ।
ପ୍ରେମ ଗଦଗଦେ ମୁଂ ଚିତ୍ତ ହରାଇଲି ।
ପ୍ରବେଶନ୍ତେ ଏକ ଯୁଣ ଛଡ଼ା ଅଛି ତହିଂ ।
ରାହାସେ ନିମଗ୍ନ ପ୍ରେମ ରାଧାକୃଷ୍ଣ ଯହିଂ ।
ଶତେ ଚନ୍ଦ୍ର ସେଠାରେ ଯେ ଉଦୟେ ହୋଇଛି ।
ଦିବାନିଶି ନାହିଂ ତହିଂ ବାରିବାକୁ କିଛି ।
ମୁରଲୀ ଅଧରୁ ଧରି ଅଛନ୍ତି ହସ୍ତରେ ।
ଶ୍ୱେତ ପୀତ ଲୋହିତ କୁଙ୍କୁମ କଳାଠାରେ ।
ଅଷ୍ଟସଖୀ ଚାରିପାଶେ ବେଢ଼ିଣ ଅଛନ୍ତି ।
ଷୋଳସସ୍ର ଗୋପକନ୍ୟା ରାହାସ ରଚନ୍ତି ।
ତାଳମାନ ଗାୟନ କରନ୍ତି କନ୍ୟାମାନେ ।
ରାହାସେ ନିମଗ୍ନେଛନ୍ତି ଗୋପକନ୍ୟାଗଣେ ।
ଦିବାନିଶି ନାହିଂ ତହିଂ ବିଜେ ନାରାୟଣ ।
ସର୍ବେ ନିଜରୂପ ତହିଂ କଦମ୍ବ ମୂଳେଣ ।
ଏମନ୍ତ ସ୍ୱରୂପ ତୁଳସୀକୁ ଦେଖାଇଲେ ।
ତୁଳି ମନ ସନ୍ତୁକରି ଗୋଲୋକେ ରଖିଲେ ।
ଯେମନ୍ତ ସମୟେ ଏକ ସଖୀ ତହୁଂ ଆସି ।
ବୋଇଲା ରେ ବାଳପୋଇ କାହ୍ନୁଂଅଛି ଆସି ।
ନିରାକାର ମଣ୍ଡଳୟେ ଗୋଲୋକ ରାହାସ ।
ନିରାକାର ଭଜନ ଯେ ତାହାଙ୍କର ଆଶ ।

ନିରାକାର ଭଜିଥିଲେ ଯେ ଭୂମିରେ ବସି ।
ନିମଗ୍ନ ଚିତ୍ତରେ ଯେଥେ ପ୍ରବେଶଇ ଆସି ।
ମହାମାୟା ଅଷ୍ଟଦୁର୍ଗା ଅଷ୍ଟସଖୀ ଆମ୍ଭେ ।
ନିରାକାର ଭଜନୀ ସର୍ବଦା ଯୁଗେ ଯୁଗେ ।
କୋଟି କୋଟି ଯୁଗେ ଯେ ପ୍ରଳଏ ଯେବେ ହୋଇ ।
ନିରାକାର ମଣ୍ଡଳରେ ସବୁ ସମ୍ଭବଇ ।
ତୁ ପୁଣି ଅଇଲୁ ବଳା ଯେଠାକୁ କେମନ୍ତେ ।
କି ଅବା ସୁଦୟା ତୋତେ କଲେ ଜଗନ୍ନାଥେ ।
ଜାଣିଲି ରେ ବଳା ତୋର ପୂର୍ବଭାଗ୍ୟ ଅଛି ।
ବଇକୁଣ୍ଠ ମଣ୍ଡଳ ତୋ ପାଇଂ ତୁଛା ଅଛି ।
ଜାଣିଲି ମୁଂ ଦୁତୀକୃଷ୍ଣ କୃଷ୍ଣ କି ଅଇଲେ ।
ରାହାସ ମଣ୍ଡଳ ଯେ କିଞ୍ଚିତେ ଦେଖାଇଲେ ।
ଜନ୍ମେ ଜନ୍ମେ ଶ୍ରୀକୃଷ୍ଣର ଆତ୍ମା ତୁହି ଯେଣୁ ।
ତୁମ୍ଭଠାରେ ସୁଦୟା କରନ୍ତି ପ୍ରଭୁ ତେଣୁ ।
ଦୟାକରି ତୋତେ ମୁହିଂ ସୁଦୟା ଚିତ୍ତେଣ ।
ନିରାକାର ମନ୍ତ୍ର ଘେନ ପୂର୍ବଭାଗ୍ୟ ପୁଣ ।
ତାହା ଶୁଣି ତାହାର ମୁଂ ଚରଣେ ପଡ଼ିଲି ।
ବହୁତ ବିନୋଇ ହୋଇ ପୟରେ ଲୋଟିଲି ।
ଦୟାକଲେ ବୃଦ୍ଧମାତା ନିରାକାର ମନ୍ତ୍ର ।
ଦ୍ୱାତ୍ରିଂଶ ଅକ୍ଷର ଦେଖାଇଲେ ଯନ୍ତ୍ରମନ୍ତ୍ର ।
ଓଂ ଅହକ ବୋଲିବାରେ ବୋଲ ତୁରେ ବାବୁ ।
ପଞ୍ଚତତ୍ତ୍ୱେ ଚିହ୍ନିମାକୁ ଆକାର ଯେ ସବୁ ।
ଘଟଟି ଆକାର ସିନା ଅଅ ଜାତ ହେଲା ।
ନିରାକାର ମନ୍ତ୍ର ସର୍ବ ଉପରେ ରହିଲା ।
ଅଲେଖ ବୋଲନ୍ତି ତାକୁ ନ ଦିଶନ୍ତି ଯେଣୁ ।
ନିରାକାର ମଣ୍ଡଳ ଆକାର ନାହିଂ ତେଣୁ ।
ଅବିଦ୍ୟା ବୋଲିଣ ଯଉଂ ଚତୁମାତ୍ରା ଅଛି ।
ନାମ ଥିଲେ ରୂପ ସିନା ଚିହ୍ନିପାରେ କିଛି ।
ଶୂନ୍ୟ ବରହକ ବୋଲି ବୋଲନ୍ତି ତାହାକୁ ।

ବାରି କହିଦେଲୁଂ ଧ୍ୟାୟ ତୁ ନିରାକାରକୁ ।
ତତ୍ତ୍ୱ ନିରାକାର ବାବୁ ଶୂନ୍ୟକୁ ତୁ ଘେନ ।
କହିଦେଲି ବାଳପୋଇ ନ ରହ ତୁ କ୍ଷଣ ।
ବରଶିବଂ ଅଥ ବାବୁ ମାତ୍ରାକୁ ଘେନିଅଛି ।
ଅକ୍ଷରରେ ମାତ୍ରାସ୍ୱର ବାରଣ ନୋହୁଛି ।
ଯେହି ନିରାକାର ମନ୍ତ୍ର ଅଟେ ନିରାଧାର ।
ଯେ ମଧ୍ୟେ ଅଛଇ ବାବୁ ଦ୍ୱାତ୍ରିଂଶ ଅକ୍ଷର ।
ବୋଇଲେ ରେ ବାଳପୋଇ ଯେହି ନିରାକାର ।
ନିରାକାର ଭଜି ଭବୁ ହୋଇଯିବୁ ପାର ।
ଶ୍ରୀକୃଷ୍ଣ ଚରଣେ ଭକ୍ତି କାଳେ କାଳେ ଥିବ ।
ଇହ ପରଲୋକେ ବାବୁ କାରଣ ପାଇବ ।
ଯେତେ ଦୂର ପରାକ୍ରମ ଅଗମ୍ୟ ଦୁର୍ଗମ ।
ଅଇଲୁ ତୁ ଯେଣୁ ବାବୁ ଅଦୃଷ୍ଟ ଅଂଶେଣ ।
ଶ୍ରୀକୃଷ୍ଣ ତୁଳସୀ ଦେବୀ ବାହୁଡ଼ି ଆସନ୍ତେ ।
ଗଲେ ବୃନ୍ଦାମାତା ନିତ୍ୟ ରାହାସ ମଣ୍ଡପେ ।
ଶ୍ରୀକୃଷ୍ଣ ତୁଳସୀ ଦେବୀ ଅଷ୍ଟ ପାଟବଂଶୀ ।
ବାହୁଡ଼ି ଅଇଲେ ଯେ ଦ୍ୱାରକା ପୁରବାସୀ ।
ଯେଝାରେ ନିମଗ୍ନ ଯେଝା ଭାବରେ ରହିଲେ ।
ନିଯୋଗ ମେଳାଇ ପ୍ରଭୁ ନିଯୋଗ ଖଟିଲେ ।
ବୋଇଲେ ହୋ ଶୁଣ ବାବୁ ସୁଦାମ ତୁ ପୁଣ ।
କି କହିଲେ ବୃନ୍ଦମାତା ତୁମ୍ଭର ଆଗେଣ ।
କରପତ୍ର ଯୋଡ଼ି ମୁଂ ଛାମୁରେ ଜଣାଇଲି ।
ବୃନ୍ଦମାତା ଦୟାକଲେ ତୁମ୍ଭ କୃପା ବୋଲି ।
ବୋଇଲେ ରେ ବାଳପୋଇ ଏ ଦୁର୍ଗମ ପଥ ।
ଅଇଲୁ ତୁ ଯେଣୁ ନିତ୍ୟ ଗୋଲୋକ ସୁପଥ ।
ଦୟାକଲି ଘେନ ବାବୁ ନିରାକାର ମନ୍ତ୍ର ।
ନିର୍ମଳ ଭଗତି ନିତ୍ୟ ନିରାଲମ୍ବ ପଥ ।
ଶ୍ରୀକୃଷ୍ଣ ନିର୍ମଳଭକ୍ତି ସଦାକାଳେ ରହେ ।
ଥରେ ଉଚାରିଲେ କୋଟି ଯଗ୍ୟଂଫଳ ପାଏ ।

ତୁମ୍ଭ କୃପାଥିବାକୁ ସକଳ ପ୍ରାପ୍ତ ହୋଇ ।
ଦେଖିଲି ଅଗମ୍ୟ ପଥ ନ ପାରଇ କହି ।
ଶୁଣିଣ ଶ୍ରୀକୃଷ୍ଣଚନ୍ଦ୍ର ଅଳପ ହସି କହି ।
କଳିଯୁଗେ ପ୍ରଛିନ୍ନେ ପରତେ ଦେବ ଯାଇ ।
ଗୁପତୁଂ ଗୁପତ ଯେ ପ୍ରଘଟ ନକରିବ ।
ମୂଢ଼ ଗୁଆଂରଙ୍କୁ ତାରି ଆପଣେ ତରିବ ।
ଆଗ୍ୟାଂହେଲା ବୃନ୍ଦମାତା ଦେଲେ ତୋତେ କହି ।
ଅମୂଲ୍ୟ ପଦାର୍ଥ ବାବୁ ଅଟଇଟି ଯେହି ।
ତୁମ୍ଭେ ଯେଣୁ ଅର୍ଦ୍ଧଆତ୍ମା ଅଟ ହୋ ସୁଦାମ ।
ସମୟ ପଡ଼ିଲେ ସହଚରୀ କରେ ପୁଣ ।
ତୁମ୍ଭ ପାଞ୍ଚ ସଖାଙ୍କୁ ମୋ ଜନ୍ମେ ଜନ୍ମେ ଆଶ ।
ତୁମ୍ଭପାଇଂ ଅବତାର ଲୀଳା ଅଭିଳାଷ ।
ଶୁଣିଣ ଚରଣ ତଳେ ପଡ଼ିଲି ମୁଂ ଯାଇ ।
ହରି ହରି ବୋଲିଣ ଯେ ଗଡ଼ିଗଲି ଧୋଇ ।
ପ୍ରଭୁଙ୍କର ଆଗ୍ୟାଂ ହେଲା ଯାଅ ହୋ ସୁଦାମ ।
ତୁମ୍ଭ ଆମ୍ଭ ଭେଟ ଯାଇଂ କଳିଯୁଂଗେ ପୁଣ ।
ବଉଧ ରୂପରେ ଆମ୍ଭେ ହୋଇବୁ ପ୍ରକାଶ ।
ସିନ୍ଧୁରାନନ୍ଦ ଯେ ନାମ ହୋଇବ ଅବଶ୍ୟ ।
ଆମ୍ଭ କଳା ଯାଇ ପୁଣି ନଦିଆ ଦ୍ୱୀପରେ ।
ଚଇତନ ରୂପେ ଆମ୍ଭେ ପ୍ରକାଶିବୁ ଥରେ ।
ଜଗତ ପ୍ରକଟ ଆମ୍ଭେ ପତିତ ଉଦ୍ଧାରି ।
ହରିନାମ ଦୀକ୍ଷାଦେବୁଂ ଘରେ ଘରେ ଫେରି ।
ସେ ବେଳରେ ତୁମ୍ଭେ ଆମ୍ଭ ସଙ୍ଗତରେ ଥିବ ।
ଅଚ୍ୟୁତ ନାମ ବହିଣ ଗୋକୁଳ ତାରିବ ।
ପୁଣ ଆମ୍ଭ ନିଜ କଳା ବଉଧ ରୂପରେ ।
ଲୀନ ହେବ ଚଇତନ ଚତୁର୍ଦ୍ଧା ମୂର୍ତ୍ତିରେ ।
ଆଗ୍ୟାଂଦେଲୁଂ ଗୋକୁଳଙ୍କୁ ତାର ତୁମ୍ଭେ ଯାଇ ।
ତେଣୁ ରାମଚନ୍ଦ୍ର ତୋତେ କହିଲୁଂ ବୁଝାଇ ।
ଗୂଢ଼ ମନ୍ତ୍ର ଦୃଢ଼ ବନ୍ଧ ଅସମ୍ଭବ ବାଣୀ ।
ଶୁଣିଲେ ପାତକରାଶି ଅଗ୍ନିଦହ୍ୟ ପୁଣି ।

କହିଲି ମୁଁ ରାମ ତୋତେ ରଖ ଦୃଢ଼କରି ।
ନିରାକାର ମନ୍ତ୍ରଭଜି ମୁନି ଗଲେ ତରି ।
ଦୁର୍ଗମ ଯେ ମାୟା ମୋହ ସଂସାର ସମୋଦ୍ର ।
ତରଣେ ନଉକା କରି ତରିଗଲେ ସର୍ବ ।
ଶୁଣିଣ ଯେ ରାମଦାସ ବୋଲେ ହରି ହରି ।
ଯେ ଭବ ସମୋଦ୍ର ମୋତେ ପ୍ରଭୁ କର ପାରି ।
ପତିତ ଉଦ୍ଧାର ପ୍ରଭୁ ପତିତପାବନ ।
ବାନା ଉଡ଼ାଉଛ ପ୍ରଭୁ ଏ ତିନି ଭୁବନ ।
ବାଇପ୍ରାୟେ ହୋଇ ତୋତେ କହିଦେଲି ମୁହିଂ ।
ଦୀନ ପାମର ଅଚ୍ୟୁତ ଭାବରେ ଭଣଇ ।

ଇତିଶ୍ରୀ ଶୂନ୍ୟସଂହିତାୟାଂ ଗୁରୁଶିଷ୍ୟ ବୋଧନେ ନିରକାର
ଗୋଲୋକେ ଅଷ୍ଟ ପାଟବଂଶୀ ବିଦ୍ୟାରାଧା ଦର୍ଶନେ
ନାମ ଏକାଦଶୋ ଅଧ୍ୟାୟଃ ।

## ଦ୍ୱାଦଶ ଅଧ୍ୟାୟ

ଶୁଣ ହୋ ମୁକୁନ୍ଦ ରାମ ଗୁପ୍ତମନ୍ତ୍ର କଥା ।
ନିରାକାର ଭଜନେ ଯେ ଅବ୍ୟକ୍ତ ବେବସ୍ଥା ।
ଆଚମ୍ଭିତ ଆଲୋକିତ ଅସମ୍ଭବ ବାଣୀ
କଉତୁକ କୁତୂହଳ ପ୍ରେମ ତରଙ୍ଗିଣୀ ।
ଗଂଗାମ୍ବୁଧି ଯମୁନାଦି ସରସ୍ୱତୀ ଘେନି ।
ସଙ୍ଗମ ସମୋଦ୍ର ନିରାକାର ପ୍ରଭୁ ପୁଣି ।
ପାତେକ ପର୍ବତରାଶି ଦହିବା ନିମନ୍ତେ ।
ବିଜେ ନିରାକାର ଆଦି ଶୂନ୍ୟମୟ ଗ୍ରନ୍ଥେ ।
ସଂସାର ସମୋଦ୍ର ମହା ଅଗାଧ ଜଳଧି ।
ତରଣେ ନଉକା ପ୍ରଭୁ ହେଲେ ଦୟାନିଧି ।
ମହାମୂଢ଼ ଅଗ୍ୟାଂନ ନିର୍ଦ୍ଦୟ ପଣ ଯେଣୁ ।
ମହାଗାଢ଼େ ଗ୍ରାସିଲା ଅକାଳେ କାଳ ତେଣୁ ।
ବଢ଼ିଲେ ପ୍ରବଳ ମାୟା ନିର୍ବଳ ଯେ କାୟା ।

ହୋଇଲା ଚଞ୍ଚଳ ଚିତ୍ତ ନୋହିଲା ଯେ ଦୟା ।
ତତ୍କରେ ଦେଖିଣ ପାପ ଦ୍ରବ୍ୟକୁ ଇଛଇ ।
ଯେଣୁ କୋଟି ପାପ ଅଙ୍ଗେ ତାହାର ଯେ ହୋଇ ।
ଶ୍ରୁତିରେ ଶୁଣିଲା ଯେଣୁ ଖଳ ଦୁଷ୍ଟବାଣୀ ।
ଦୁଇସସ୍ର ପାପ ଯେ ଅର୍ଜିଲା ତହୁଂ ପୁଣି ।
ମୁଖଦ୍ୱାରେ ଶ୍ରୀକୃଷ୍ଣ ମହିମା ମୂର୍ଖେ ଛାଡ଼ି ।
ମିଥ୍ୟାମାୟା କହିଣ ବଢ଼ାଉ ଥାଇ ବେନ୍ତୁ ।
କରରେ ଅର୍ଜିଲା ପାପ ତିନି ସସ୍ର ଜାଣ ।
ଚରଣେ ଲାଗିଲା ଜୀବ ଅସଂଖ୍ୟ ପ୍ରମାଣ ।
ଯେଣୁ ଦୁଇସସ୍ର ପାପରାଶି ହେଲେ ମେଳ ।
ମନ ଯେ ଅର୍ଜିଲା ପାପ ଅସଂଖ୍ୟ ପ୍ରବଳ ।
ଯେଣୁ ଏହି କଳେବର ନାଶକୁ ଭଜଇ ।
ଯେସନେ ଲୁହାକୁ ବାବୁ କଳଙ୍କି ଲାଗଇ ।
ନୋହିଲା କଳନା ଭବସିନ୍ଧୁ ହେବାପାର ।
ନ ପାଇଲେ ଥଳକୂଳ ଅସଂଖ୍ୟ ଗୋଚର ।
ଯେଣୁ ଆଗ୍ୟାଂଦେଲେ ଆଦି ଅନାଦି ହେ ଶୁଣ ।
ପୃଥ୍ୱୀର ପାତକରାଶି କର ଯା ଖଣ୍ଡଣ ।
ଆଗ୍ୟାଂପାଇ ଅନାଦି ହୋଇଲେ ଅବତୀର୍ଣ୍ଣ ।
ଯେକଅଂଶ କଳା ଘେନି ହୋଇଲେ ଜନମ ।
ନାମ ଶ୍ରୀଚୈତନ୍ୟ ପ୍ରଭୁ ଅଧମ ଉଦ୍ଧାର ।
ପ୍ରକଟ କରିଲେ ନାମ କଳିଯୁଗେ ସାର ।
ହରେ ନାମ ମହାମନ୍ତ୍ର ପ୍ରକାଶ କରିଲେ ।
ମୂଢ଼ ଗ୍ୟାଂନି ଅଗ୍ୟାଂନୀ ସମସ୍ତେ ତରିଲେ ।
ପ୍ରଘଟ ହୋଇଲା ନାମ ଉଦେହେଲେ ଭକ୍ତ ।
ଆମ୍ଭେ ପଞ୍ଚସଖା ଅଟୁ ସଂସାରେ ଉଦିତ ।
ଦିଶିଲା ଯେମନ୍ତ ମୂର୍ତ୍ତି ଶ୍ରୁତି ଗୀତା ଆଦି ।
ଯେ ଯେଉଂ ଶ୍ରୁତିରେ ମୂର୍ତ୍ତି ମନ୍ତ୍ର ଯେ ସମ୍ପାଦି ।
ଯେ ଯଉଂ ପାତକରାଶି ଦହିବ ଯେ ନାମ ।
ଯଉଂ ପାପ ଯଉଂ ନାମ କରଇ ଦହନ ।

ଚିହ୍ନ ନାମ ପୁଣ୍ୟକାମ ପାପ ବିମୋଚନ ।
ଭିଆଇଲେ ମନ୍ତ୍ର ମୂର୍ତ୍ତି ଯନ୍ତ୍ର ତନ୍ତ୍ର ଧ୍ୟାନ ।
ମହାମନ୍ତ୍ର ମନ୍ତ୍ରରାଜ ପ୍ରଣବାଦି ଯେତେ ।
କାମବୀଜ ମନ୍ତ୍ର ମୂର୍ତ୍ତି ଅସଂଖ୍ୟ ସମ୍ଭବେ ।
ତାରଣ ମାରଣ ନାଗାନ୍ତକ ଯୋଗାନ୍ତକ ।
ବେଦାନ୍ତକ ସିଦ୍ଧମନ୍ତ୍ର ପ୍ରଛିନ୍ନ ଯେତେକ ।
ଆଗମ ନିଗମ ଶାସ୍ତ୍ର ଆଦି ଯେତେ ଧ୍ୟାନ ।
ଭିଆଇଲେ ଯେମାନ ଯେ ପଞ୍ଚ ମହାଜନ ।
ଯେକକୁ ଯେକ ବଳିଣ ତେଜ ଯେ ପ୍ରଚଣ୍ଡ ।
କୋଟି ଅଗ୍ନି ତେଜ ଜାଣି ଦହେ କି ବ୍ରହ୍ମାଣ୍ଡ ।
ଗାୟତ୍ରୀ ଚବିଶାକ୍ଷର ଅବନା ଯେ ଆଠ ।
ଅଜପା ମିଶିଣ ଚୂଡ଼ା ଚତୁଃଷଷ୍ଟୀ ଭେଟ ।
ପ୍ରଣବ ଦିଶ ମିଶାଇ ଯୁଗ ଷୋଳ ଲେଖ ।
ଯେକୁ ଯେକ କୋଟି ଅଗ୍ନି ଜଳଇଂ ପ୍ରତକ୍ଷ ।
ମାଇଲେ ମରଇ ପୁଣି ଜିଆଇଂଲେ ଜୀଏ ।
ଦେଖିଲେ ଦେଖଇ ପୁଣି ନ ଥାଇ ଯେ ଉଏଂ ।
ଯିବା ଆସବାକୁ ତହିଂ ନାହିଂ ତାରତମ୍ୟ ।
ଫିଟିଛି ମହା ଅର୍ଗଳି କି କରିବ ଯମ ।
ପଞ୍ଚ ମାହାଜନ ଯେ ପଛନ୍ତେ ପଚେ ହେଉ ।
ପରାପରେ ଅପ୍ରଚୟେ ଅବିନାଶୀ ହୋନ୍ତୁ ।
ରାଜି ନାହିଂ ଅନ୍ୟାୟେ ହେ ନାହିଂ ତାର ମନ ।
ସତ୍ୟ ବାଚା କହେ ସତ୍ୟଶୀଳହିଂ ରାଜନ ।
ସତ୍ୟରେ ଯେ ପୁଣ ତହିଂ କିଛୁ ଦିନ ଗଲା ।
ଉଦେ ଅସ୍ତ ମହାଦୁଃଖ ଶ୍ରୀକୃଷ୍ଣର ଲୀଳା ।
ଆମ୍ଭେ ପଞ୍ଚସଖା ବାରସସ ଭକ୍ତ ଘେନି ।
ଭ୍ରମିଣ ମେଦିନୀ ବୁଲୁ ପ୍ରଭୁ ଆଗ୍ୟାଂ ଘେନି ।
ଶ୍ରୀକୃଷ୍ଣ କରୁଣା ଯେଣୁ ଦିଶେ ପଦମାନ
ଶ୍ରୀହରି ମହିମା ଲିହୁ ଗ୍ରନ୍ଥକରି ପୁଣ ।
ନିଯୋଗିଣ ସେବାବେଳେ ଶ୍ରୀକୃଷ୍ଣଙ୍କୁ ଭେଟୁ ।

ପଢ଼ି ବରତନ ପାଇ ଦିନକାଳ କାଟୁଂ ।
ଦୟାଳୁ ସେ ଦାରୁ ବ୍ରହ୍ମ ଦିବ୍ୟର ମୂର୍ତ୍ତି ରୂପ ।
ଦୀନଜନେ ଦୟାକରି ନାଶନ୍ତି ଦୁରିତ ।
ଆମ୍ଭ ପାଞ୍ଚ ଜଣଙ୍କୁ ବିପଦ ବେଳେ ବେଳେ ।
ପଡ଼ିଲେ ସାହା ହୁଅନ୍ତି ଆତଙ୍କର କାଳେ ।
ଶୁଣ ଆହୋ ରାମ ଦାସ ଅତିହିଂ ରହସ ।
ବିପତ୍ତି ହୋ କାହୁଂ ଆସି ହୋଇଲା ପ୍ରବେଶ ।
ଓଡ଼ିଶା ଦେଶରେ ପଞ୍ଚକୋଶର ମଧ୍ୟରେ ।
ଅନନ୍ତପୁର ଶାସନ ଶର୍ମା ଦ୍ୱିଜଘରେ ।
ତାର ସୁତ ମାଧୁରୀ ଶ୍ରୀକୃଷ୍ଣ ଆଶ୍ରିତହିଂ ।
ଶ୍ରୀକୃଷ୍ଣ ମହିମା ବିନୁ ଆନ ନ ଜାଣଇ ।
ଦିନୁଂ ଦିନ ବଳା ଯେ ଉଦାସ ମତେ ରହେ ।
ପ୍ରଭୁ ଉଦୟକୁ ବଳା ଅନୁସରି ଥାୟେ ।
ସ୍ୱକର୍ମ ତେଜିଲା ବଳା ନ କରେ ଆଳତି ।
ବାଳୁତ ପରାୟେ ତାର ଅଳସୁଆ ମତି ।
ମାତା ପିତା ଭ୍ରାତା ବନ୍ଧୁ ନକଲେ ଆଦର ।
ନିତ୍ୟେହେଂ ବୋଲନ୍ତି ବାଇ ଯାଅ ଦେଶାନ୍ତର ।
ଶୁଣିଣ କୁମରମଣି ମନେ ଆନନ୍ଦିତ ।
ଭାଳଇ ସୁଦୟା ଅବା କଲେକ ଅଚ୍ୟୁତ ।
ଯେକ ଦିନେ ମାଧୁରୀ ବୈଷ୍ଣବ ବେଶଧରି ।
ବୋଲଇ ପଡ଼ିଶା ଦ୍ୱାରେ ହେବି ଦେଶାନ୍ତରି ।
ମାତା ପିତା କ୍ରୋଧେଣ ବୋଇଲେ ଆରେ ବାଇ ।
ନଯାଇ କିମ୍ପାଇଂ ଅଛୁ ଆମ୍ଭ ଘରେ ତୁହି ।
ଯେତେକ ଶୁଣି କୁମର ହରି ଧ୍ୱନିକଲା ।
ହରି ହରି ବୋଲିଣ ବନକୁ ଚଳିଗଲା ।
ବନରେ ଅନୁସରଇ ସାଧୁ ସୁଜନକୁ ।
ବୁଲଇ ବନସ୍ତେ ବଳା ଭୟେ ନାହିଂ କାକୁ ।
ଦଣ୍ଡକ ଅରନ୍ୟ ପୂର୍ବ ପ୍ରାଚୀ ନଦୀ କୂଳ ।
ତପୀ ଯତି ସନ୍ନ୍ୟାସୀଙ୍କ ସେଠାବରେ ମେଳ ।

ଭ୍ରମିଣ କୁମରମଣି ସେଠାବରେ ହେଲା ।
ପର୍ଣ୍ଣଶାଳା ଦେଖିଣ ଆନନ୍ଦ ମନ କଲା ।
ତପୀ ଯତି ସନ୍ୟାସୀ କାହାକୁ ନ ଦେଖଇ ।
ମନେ ଅନୁସରି ବଳା ରହିଲାକ ତହିଁ ।
ଦିବସ ଯାଇଣ ନିଶି ହେଲା ପରବେଶ ।
ଯେକ ଲୟେ କରିଣ ଧ୍ୟାଇଛି ପୀତବାସ ।
ପୂର୍ବଭାଗ୍ୟ ଥିଲାରୁ ତାର ଅକସ୍ମାତ ହୋଇ ।
ତପୀଯେକ ଆସିଣ ମିଳିଲେ ପୁଣ ତହିଁ ।
ବକଳ ପିନ୍ଧିଣ ଗଳେ ତୁଳସୀର ମାଳ ।
ସ୍ଫୁଷ୍ଟିକର ମାଳ ଯେକ ଲମ୍ବିଅଛି ଗଳ ।
ଦହିଲା କନକ ପ୍ରାୟେ ଦିଶଇ ଶ୍ୱରୀର ।
ତେଜରେ ଜିଣଇ ଜ୍ୟୋତି ନିନ୍ଦେ ଦିବାକର ।
ଭଜନେ ଗରିଷ୍ଟ ମୁନି ଗ୍ୟାଂନରେ ବକତା ।
ଦୟାଶୀଳ ମୁନିବର ଅକର୍ମ ଦାଇକା ।
ତାଙ୍କୁ ଦେଖି ମାଧୁରୀ ପ୍ରଣମ୍ୟକରି ଶୋଇ ।
ଶୋକ ଗଦଗଦେ ବଳା ନ ପାରଇ କହି
ଚରଣ ଅଙ୍ଗୁଷ୍ଠି ଧୂଳି ଗର୍ଭକୁ ଖେପିଲା ।
ନିସ୍ତରିଲି ନିସ୍ତରିଲି ବୋଲିଣ ବୋଇଲା ।
କହିଲେ ସେ ମୁନିବର ମାଧୁରୀକି ପୁଣି ।
ମୂଳଫଳ ଗୁଡ଼ାଏ ଖାଇବାକୁ ଦେଲେ ଆଣି ।
କମଣ୍ଡଲୁ ଜଳ ଆଣି ମାଧୁରୀକି ଦେଲେ ।
ସନ୍ତୋଷେ ମାଧୁରୀ ଶ୍ରୀକୃଷ୍ଣଙ୍କୁ ସମର୍ପିଲେ ।
ଯେକେ ସେ ସପତ ଦିନ ନିଆହାରୀ ଯେଣୁ ।
ସନ୍ତୋଷେଣ ମାଧୁରୀ ଭୋଜନ କଲେ ତେଣୁ ।
ଆଞ୍ଚୋବନ ସାରିଣ ମାଧୁରୀ ତତପର ।
ନିବେଶିଲା ଶ୍ରୀକୃଷ୍ଣ ଚରଣେ ନେଇ ଶିର ।
ଶ୍ରୀକୃଷ୍ଣ ମହିମା ଭଜି ରଜନୀ ପୁହାଇଲା ।
ପ୍ରାତକାଳେ ମାଧୁରୀ ତପୀକି ଜଣାଇଲା ।
ବୋଇଲା ହେ ମୁନିବର ତୁମ୍ଭେ ଯେକାକୀ କି ।

ଆଉ ତପୀମାନେ ଯାଇଅଛନ୍ତି କେଣିକି ।
ଯେକା ତପୀକି ଯେ ଗୁମ୍ଫା ଶତେ ଗୋଟାକର ।
ଯେତ ବଡ଼ ଅସମ୍ଭବ ଅଟେ ଅବିଚାର ।
ଯେହା ଶୁଣି ମୁନି ଯେ ହସିଲେ ଟହ ଟହ ।
ଦେବା ତୋତେ ଯେଥୁଥାନ ଏଠାବରେ ରହ ।
ଶୁଣିଣ କୁମରମଣି ତପୀକି ବୋଇଲା ।
କଉଂ କଉଂ ତପୀଛନ୍ତି ଶୁଣିମା ସେ ଭଲା ।
ଗୁମ୍ଫାରେ କେକେ ରହନ୍ତି କିସ ତାଙ୍କ ନାମ ।
କାହିଂ ଯାଇଅଛନ୍ତି ସେ କଉଂଦିଗେ ପୁଣ ।
ଚିହ୍ନାଇବାକୁ ମୁନି ମାଧୁରୀ ସଙ୍ଗେ ଘେନି ।
ପର୍ଣ୍ଣଶାଳାମାନ ଚିହ୍ନାବନ୍ତି ମାହାମୁନି ।
ବୋଲନ୍ତି ହୋ ମାଧୁରୀ ଯେ ଗୁମ୍ଫା ଗୋରେଖର ।
ଯୋଗଲଏ ସାଧନ୍ତି ଏଠାରେ ନିରାଧାର ।
ଯେଠାବେ ମଳିକାନାଥ ଗୁମ୍ଫା କରିଛନ୍ତି ।
ଗୁରୁ ଆଗ୍ୟାଂ ଧରିଣ ସେ ଯୋଗ ଆରମ୍ଭନ୍ତି ।
ବାଉଳି ଆଶ୍ରମ ଯେ ଯେ ଦ୍ୱାର ବାରାଙ୍ଗୁଳ ।
ଯାଆନ୍ତି ଆସନ୍ତି ତପୀ ସାଧନ ସମୀର ।
ଲୋଇ ଦାସଙ୍କର ମଠ ଅଟଇ ଏ ପୁଣ ।
ଲଏ କରିଥାନ୍ତି ଯେକା ନିରାକାର ବ୍ରହ୍ମଂ ।
ବୀରସିଂହ ବିପରୀତ ଆଗ୍ୟାଂ କରୁଥାନ୍ତି ।
ବିଷମ ସନ୍ଧି ଯେ ନାଗାନ୍ତକ ସେ ଜାଣନ୍ତି ।
ଇଚ୍ଛାଯେ ଆସନ୍ତି ତପୀ ଶଏ ଯୁଣ କ୍ଷଣେ ।
ଶ୍ରୀକୃଷ୍ଣ ନିଯୋଗୀ ଯେ ଆସନ୍ତି ପ୍ରତିବିମ୍ବେ ।
ବାଉଳି ଦାସଙ୍କ ମଠ ଯେହି ହୋ ମାଧୁରୀ ।
ବୋଲୁଥାନ୍ତି ମୁନି ଯେ ମନୁଯେ ହେଲା ବୋଲି ।
ଯୋଗାରୂଢ଼ ସାଧନ୍ତି ଏ ବ୍ରହ୍ମଗ୍ୟାଂନ ମୂଳ ।
କାବଳେ ଖାବନ୍ତି ମୁନି ବୃଛର-ବକଳ ।
ଏସବୁ ଋଷି ଆଶ୍ରମେ କେ ରହେ କେ କ୍ଷଣେ ।
ବଡ଼ ଦୁର୍ଗମ ଯେ ବୁଲୁଥାନ୍ତି ଲତା ବନେ ।

କେହୁ ଫଳ ମୂଳ ଖାନ୍ତି କେହୁ ଖାନ୍ତି ଜଳ
କେହୁ ଖାନ୍ତି ପତ୍ର ଶାକ କେ ରହେ ନିର୍ଜଳ ।
ଯେମନ୍ତେ ଯେଠାରେ ଆମ୍ଭେ ଦିନକାଳ ହରୁଂ ।
ନିରଞ୍ଜନ ଶ୍ରୀକୃଷ୍ଣଙ୍କୁ ନିତ୍ୟେ ଅନୁସରୁଂ ।
ଦୁପିଷ୍ଟ ଦାନେବଙ୍କର ଯେଥି ନାହିଁ ଭଏ ।
ନିରାଲମ୍ବ ଭୂମି ଯେ ଯେ କ୍ଷୁଧା ତୃଷ୍ଣା ନୋହେ ।
ଦିନା ପାଞ୍ଚସାତ ହେଲା ତପୀ କେଣେ ଗଲେ ।
ଶୁଣୁଥିଲୁ ଓଡ଼ିଶା ଭ୍ରମଣ କରିବାରେ ।
ଶ୍ରୀକୃଷ୍ଣ ଉଦୟେ ହେଲେ ସଖାବୃନ୍ଦ ଘେନି ।
ବାରସସ୍ର ଭକ୍ତ ଉଦେ ହେଲେ ବୋଲି ଶୁଣି ।
ପଞ୍ଚସାଖା ଘେନି ବାରସସ୍ର ଭକ୍ତ ମେଳେ ।
ଖୋଳ କରତାଳେ ପ୍ରଭୁ ତାରିଲେ ସକଳେ ।
ଯେହା ଶୁଣିକରି ଅବା ସେଠାବକୁ ଗଲେ ।
ମାଧୁରୀ ଶୁଣିଣ ହରି ହରି ଭୋଳେ ବୋଲେ ।
ଋଷିଙ୍କି ପ୍ରଣାମକରି ବେଗେ ଚଳିଗଲା ।
ଶ୍ରୀକୃଷ୍ଣେ ମନ ନିବେଶି ଦେଶରେ ଭ୍ରମିଲା ।
ଭ୍ରମଇ ଭ୍ରମର ମଣି ଦେଶେ ଦେଶେ ପୁଣି ।
ଖୋଜିଣ ପାଇଲା ଭେଟ ସକଳ ତପୀ ମୁନି ।
ଆପେ ଶ୍ରୀଚୈତନ୍ୟ ପ୍ରଭୁ ସଖାବୃନ୍ଦ ଘେନି ।
ପଞ୍ଚସଖା ମେଳେ ବାରସସ୍ର ଭକ୍ତ ପୁଣି ।
ଖୋଳ କରତାଳରେ ବ୍ରହ୍ମାଣ୍ଡ ଉଛୁଳଇ ।
ଶ୍ରବଣେ ଶୁଣନ୍ତେ ନାଶକର ଭୟ ନାହିଁ ।
ଚାଣ୍ଡାଳୁଂ ବ୍ରାହ୍ମଣ ଆଦି ପଶୁଜନ୍ତୁମାନେ ।
ହରିବୋଲେ ତରିଗଲେ ନାନା ଜୀବଗଣେ ।
ବ୍ରହ୍ମଦେଶ ଭ୍ରମିଣ ମାଧୁରୀ ଠାବକଲା ।
ଉତ୍ତର କୋଶଳେ କୁଣ୍ଡୀନଗ୍ରରେ ମିଳିଲା ।
ସେ ସ୍ଥାନେ ପ୍ରଧାନ ମାତା ସିଦ୍ଧ ଭଗବତୀ ।
ଚାଟିକା ଦୁଆରି ଯେ ସେଠାରେ ନାହିଁ ଭୀତି ।
ଦୁଷ୍ଟ କି ଦୁପିଷ୍ଟ କେହି ନ ପାରନ୍ତି ପଶି ।

ଭଗବତୀ ଆଗ୍ୟାଂରେ ଗ୍ରାସିବ କାଳ ଆସି ।
ଯେହା ଜାଣି ଶମନ ଯେ ସେଠାକୁ ନ ଯାନ୍ତି ।
ତପୀ ଯତି ସନ୍ନ୍ୟାସୀ ନିର୍ଭୟ ହୋଇଥାନ୍ତି ।
ଚିତ୍ରାଗୀ ତଟଟି ସେହୁ ଅଟେ ସିଦ୍ଧସ୍ଥାନ ।
ଚିତ୍ରେଶ୍ୱରୀ ଭଗବତୀ ଚାଚିକା ଯେସନ ।
ଅଗମ୍ୟ ଅରଣ୍ୟ ମହା ଦୁର୍ଗମ ଯେ ସ୍ଥାନ ।
ଚିନ୍ତିଲେ ସିଦ୍ଧ ହୋଅଇ ସର୍ବ କଥାମାନ ।
ତାହା ଜାଣି ସୁସାଧୁ ସୁଜନ ଚିହ୍ନି ରହି ।
ଯୋଗଲୟେ କରିଣ ଥାଆନ୍ତି ଯୋଗୀ ଧ୍ୟାଇ ।
ସେଠାରେ ଉଦୟେ ଭକ୍ତ ହୋଇଛନ୍ତି ମେଳି ।
ଆମ୍ଭେ ପଞ୍ଚସଖା ଯେ ତହିଂରେ ସଙ୍ଗେ ଚଳି ।
ବାରସସ୍ର ଭଗତେ ପ୍ରଧାନ ସନାତନ ।
ଆପେ ଶ୍ରୀଚୈତନ୍ୟ ବିଜେ ସ୍ୱୟେଂ ପରଂବ୍ରହ୍ମ ।
ଦେଖିଲା ମାଧୁରୀ ଯହୁଂ କଲା ହରି ଧ୍ୱନି ।
ପ୍ରେମେ ଉଲ୍ଲସିତ ହୋଇ ଉଚ୍ଚେ କାନ୍ଦେ ପୁଣି ।
ଉଛୁଳିଲା ସୁଧାସିନ୍ଧୁ ପ୍ରେମେ ଉଲ୍ଲସିତ ।
ପ୍ରେମେ ଗଡ଼ାଗଡ଼ି ହେଲେ କପୋଳେ ଦିଏ ହାତ ।
ନୀର ଖୀର ବାରଣ ନୁହଇ ଯଉଂମତେ ।
ମାଧୁରୀ ସନାତନ ସେ ପ୍ରେମେ ଉଲ୍ଲସିତେ ।
ବିନାଧନେ ପ୍ରେମ ଦିୟେ ଯଉଂ ମହାପ୍ରଭୁ ।
ପତିତ ଉଦ୍ଧାରେ ପ୍ରକଟିତ ହେଲେ ସେହୁ ।
ସନାତନ ଗୋସାଇଂ ମାଧୁରୀ ଉପଦେଶ ।
ଶିଷ୍ୟକରି ରଖିଲେ ସେ ଆପଣାର ପାଶ ।
ଉଦବେଗ ଯିବାକୁ ଯେ କ୍ଷେତ୍ର ନୀଳାଞ୍ଚଳ ।
ତିନିଦିନେ ସେଠାବେ ହୋଇଲେ ଭକ୍ତ ମେଳ ।
ଉଦବେଗ ମାଧୁରୀ ଶ୍ରୀକୃଷ୍ଣ ମହିମାକୁ ।
ଚିହ୍ନାଇ କହିବା ବୋଲି ପଚାରେ ପ୍ରଭୁଙ୍କୁ ।
ସନାତନ ଗୋସାଇଂ କହିଲେ ମନ୍ତ୍ରଭାଗ ।
ପ୍ରମହଂସ ଦୀକ୍ଷାକୁ ସେ କରାଇ ଉଦଯୋଗ ।

ମନ୍ତ୍ର ମୂର୍ତ୍ତି ତନ୍ତ୍ର ଯନ୍ତ୍ର ଆପେ ଚିହ୍ନାଇଲେ ।
ବୀଜକୁ ଚିହ୍ନାଇ ବ୍ରହ୍ମ ଦରଶନ କଲେ ।
ପଞ୍ଚାତ୍ମିକ ବଢ଼ାଇ ବ୍ରହ୍ମକୁ ଚିହ୍ନାଇଲେ ।
ରାଧା ପ୍ରେମରସରେ କୃଷ୍ଣକୁ ନିଯୋଗିଲେ ।
ଏକ ବୀଜ ବେନିଫାଳ ରାଧାକୃଷ୍ଣ ଅଙ୍ଗ ।
ତିଳେ ଭିନ୍ନାଭିନ୍ନ ନାହିଁ ନୀରକ୍ଷୀର ସଙ୍ଗ ।
ଅଷ୍ଟାଙ୍ଗ ଯୋଗରେ ପ୍ରେମବ୍ରହ୍ମଂର ଧାରଣ ।
ଲଏ ସୂତ୍ରେ ବସିକଲେ ଧାଏ ଯେ ଧାରଣ ।
ମହାନିତ୍ୟ ସଙ୍ଗଜାତ ନାମ ବ୍ରହ୍ମନିତ୍ୟ ।
କାମବୀଜ ନିତ୍ୟ ନୀଳା ପ୍ରଣବ ଧାଇକ ।
ତ୍ରିକୂଟ ସନ୍ଧି ସଙ୍ଗମ ଦେଲେକ ଚିହ୍ନାଇ ।
ଚରଣେ ଲୋଟେ ମାଧୁରୀ ଉପଦେଶ ପାଇ ।
ଉଦବେଗ ପ୍ରଭୁ ଯେ ଯିବାକୁ ନୀଳାଞ୍ଚଳ ।
ଖୋଳ କରତାଳ ନାଦେ ପଡ଼ଇ ଚହଳ ।
ଚଳନ୍ତି ଯେସନକେ ସମୋଦ୍ର ଲହରୀ ।
ହରି ହରି ଶବଦେଣ ପୃଥୀ ଗଲା ପୂରି ।
ଆମ୍ଭେ ଗଲୁ ପ୍ରଭୁଙ୍କ ଗହଣ ଲଗାଇଣ ।
ନବସସ୍ର ସଖାଗଣ ସଙ୍ଗତେ ଘେନିଣ ।
ରହିଲେ ଯେ ତିନିସସ୍ର ଯୋଗ ଧାରଣାରେ ।
ଧାଇଲେ ନିମଗ୍ନ ସ୍ଥାନେ ରହି ନିରାହାରେ ।
ଜ୍ୟୋତି କଳା ଲୟେକରି ଚିନ୍ତି ଦିବ୍ୟପଥ ।
ସାଧିଲେ ଯୋଗ ସାଧନା ତିନିସସ୍ର ସନ୍ଥ ।
ମାଧୁରୀ କୁଟୀର କରି ଯୋଗ ଆରମ୍ଭିଲା ।
ତ୍ରିକୂଟ ତ୍ରିବେଣୀ ମଧ୍ୟେ ଚିତ୍ତ ଥଏ କଳା ।
ପବନ ଉଜାଣି ଯେ ଟେକିଲେ ଉପରକୁ ।
ହଜିଲା ପ୍ରମହଂସ ଯେ ଧାଇଲା ବ୍ରହ୍ମକୁ ।
ଦିନୁଂଦିନେ ବର୍ଦ୍ଧିତ ସାଧଙ୍ଗ ବ୍ରହ୍ମଗ୍ୟାଂନ ।
ଦଣ୍ଡେ କ୍ଷଣେ ନ ଛାଡ଼ଇ ନିଆହାରି ପୁଣ ।
ଯେମନ୍ତେଣ କେତେଦିନ ବହି ପୁଣ ଗଲା ।

ଦୁର୍ବଳ ଶରୀର ଯେ ନିର୍ବଳ ପ୍ରକାଶିଲା ।
ଯେକେତ ରକତ ମାଂସ ନିଯୁକ୍ତି ଯେ ଦେହୀ ।
ଭକ୍ଷଣ ନୋହିଲେ ଜଣେ ନପାରଇ ରହି ।
ଯେଣୁ ସେ ମାଧୁରୀ ଦାସ ବନକୁ ଗମନ ।
ନାନା ବୃକ୍ଷପତ୍ର ତୋଳି ଆଣଇ ବହନ ।
ପାକକରି କାବଳେ ଭୁଞ୍ଜନ୍ତି ତପୀବର ।
କମଣ୍ଡଳୁ ନୀର ଢାଳି କରନ୍ତି ଆହାର ।
ଯେମନ୍ତ ପ୍ରକାରେ ବ୍ରହ୍ମରୂପ ଥଏ କଲେ ।
ସନ୍ତୋଷେ ଶ୍ରୀକୃଷ୍ଣ ପାଦେ ଚିତ୍ତ ସମର୍ପିଲେ ।
ଯେ ବିଧିରେ ପ୍ରତିଦିନ ଦିନକାଳ ହରି ।
ତ୍ରିକାଳ ଜଗିଣ ସେ ପ୍ରଭୁଙ୍କ ସେବାକରି ।
ଯାଆନ୍ତି ଯେ ଦୁଇଦଣ୍ଡ ସେବା ନିଯୋଗାଇ ।
ଆସନ୍ତି ଯେ ଦଣ୍ଡକେ ଦଣ୍ଡକ ଚଢ଼ି ତହିଁ ।
ବନକୁ ଯାଆନ୍ତି ତପୀ ବୁଲି ଦଣ୍ଡପାଏ ।
ଆଣି ପତ୍ରଗୁଡ଼ି ପାକ କରନ୍ତି ଘଡ଼ିଯେ ।
ଯେ ବିଧିରେ ଦିନକାଳ ହରଇ ମାଧୁରୀ ।
ସମୟ ହରିଲା ଯୋଗ ଖଣ୍ଡଣ ବିଧିକରି ।
ଆମ୍ଭସଙ୍ଗେ ଯେବେ ଜଣେ ଥାନ୍ତା ସାଙ୍ଗହୋଇ ।
ନିଯୋଗାଇ ଦିଅନ୍ତା ଖଣ୍ଡଣ ହୋନ୍ତା ନାହିଁ ।
ଏମନ୍ତେ ବିଚାରି ମୁନି ବନକୁ ଗମନ ।
ମନର ଚଞ୍ଚଳେ ମୁନି ତୋଳେ ପତ୍ରମାନ ।
ଫେରି ଫେରି ଲତାରୁ ପତ୍ର ତୋଳି ମୁନି ।
ଚଞ୍ଚଳ ହୋଇଣ ଯେ ଆସନ୍ତି ଶୀଘ୍ର ଘେନି ।
ଆସନ୍ତେ ବିପୁନେ ମୁନି ଦେଖେ ଯେକ ଜନ ।
ଦ୍ୱାଦଶ ବରଷ ହେବ ବାଳୁତ ନନ୍ଦନ ।
ଦେଖିଣ ଯେ ତପୀ ତାକୁ ଆଶ୍ୱାସି ପୁଛିଲେ ।
ମହା ଅରଣ୍ୟରେ କିମ୍ପା ଏକା ବୁଲୁ ଆରେ ।
ମାତା ପିତା ଭ୍ରାଥା ବନ୍ଧୁ ନାହିଁ କି ତୋହର ।
ଛାଡ଼ିଦେଲେ କେମନ୍ତେ ଅଇଲୁ ଯେତେ ଦୂର ।

ଶୁଣିଣ କୁମରମଣି ଚରଣତଳେ ପଡ଼ି ।
ଯେ ରଖିବ ମୁଂ ତାହାର ମାତା ପିତା ଛାଡ଼ି ।
ତୁମ୍ଭେ ମାତା ପିତା ମୋର ଅଟ ତପୀବର ।
କି କରିବେ ମାତା ପିତା ତୁମ୍ଭେ ମୋ ସୋଦର ।
ତୁମ୍ଭ ସେବାକରି ମୁଂ କାଟିବି ଦିନକାଳ ।
କାଳକୁ କାଟନ୍ତି ସାଧୁ ସନ୍ଥଙ୍କର ମେଳ ।
ଯେହା ଶୁଣି ତପୀବର ହୋଇଲେ ସନ୍ତୋଷ ।
ସଙ୍ଗେ ଘେନିଗଲେ ବଳା ପର୍ଣ୍ଣକୁଟୀ ପାଶ ।
ଫଳମୂଳ ଶାକ ପାକ ଯତ୍ନକରି କଲେ ।
ଭୁଞ୍ଜିଣ ବାଳେକ ଯେ ସନ୍ତୋଷ ହୋଇ ବୋଲେ ।
ବୋଲିବ ଯା ତପୀ ତୁମ୍ଭେ କରିବି ମୁଂ ତାହା ।
ନିରତେ ଆଗ୍ୟାଂରେ ଥିବି ବୋଲିବଟି ଯାହା ।
ଯେମନ୍ତ ଶୁଣିଣ ମୁନି ଆନନ୍ଦିତ ହୋଇ ।
ବୋଇଲେ ବାଳକ ତୋର ନାମ କି ଅଟଇ ।
ବାଳକ ବୋଇଲା ମୋର ନାମ ମଥୁରିତ ।
ଜନମ କାଳରୁ ମୁଂ ଯେ ହୋଇଛି ଅନାସ୍ତ ।
ପୂର୍ବଭାଗ୍ୟ ଥିଲାରୁ ପାଇଲି ସାଧୁ ସଙ୍ଗ ।
କରିବି ସାଧୁଙ୍କ ସେବା ନୋହିବ ବିଭଙ୍ଗ ।
ଯେହାଶୁଣି ତପୀ ଯେ ଆନନ୍ଦ ମନ ହୋଇ ।
ରଖିଲେ ପର୍ଣ୍ଣକୁଟୀରେ ପୁତ୍ରସ୍ନେହ ବହି ।
ପ୍ରାତକାଳେ ତପୀ ଯେ ବୋଇଲେ ଆରେ ବାବୁ ।
ପ୍ରତିଦିନ ନାନା ପତ୍ର ଗୁଡ଼ିଏ ଆଣିବୁ ।
ପାକକରି ଶାକ ଯେ କାବଳେ ଆମ୍ଭେ ଖାଉଂ ।
କମଣ୍ଡଳୁ ନୀର ଖାଇ ସୁଖେ ଆମ୍ଭେ ରହୁ ।
ଏ ବିଧି ତୁ ଦେଇକରି ବୁଲୁଥାଅ ବନ ।
ଆମ୍ଭ ଆତ୍ମା ହେଲୁଣି ତୁ ଆମ୍ଭର ଜୀବନ ।
ଯେମନ୍ତ ଶୁଣି କୁମର ହରଷ ହୋଇଲା ।
ତପୀ ଯା ବୋଇଲେ ସେହି ବିଧି ଘଟାଇଲା ।
ଆଗ୍ୟାଂ ଭ୍ରଷ୍ଟ କରିବାକୁ ନ ଦିଅଇ ଚିତ୍ତ ।

ନିରତେଣ ଖଟିଥାଇ ମାଧୁରୀ ଦାସ ଚିତ୍ତ ।
ପ୍ରତିଦିନ ଏ ବିଧିରେ ନିଯୋଗିଣ ଦେଇ ।
ବାଳେକ ଭାବରେ ବଳା ବୁଲୁଥାଇ ତହିଁ ।
ଆନନ୍ଦ ହୋଇଣ ମୁନି ସୁଖେ ନେଲେ ଦିନ ।
ମଥୁରିଙ୍କି ଆଶ୍ୱାସି ସେ ବୋଲନ୍ତି ବଚନ ।
ଯେକଦିନେ ମଥୁରି ବନରୁ ପତ୍ର ଆଣି ।
ପାକକରି ବସିଲା ଚଞ୍ଚଳ ଚିତ୍ତ ଜାଣି ।
ବୋଇଲା ମୁନି ହେ ଆଜ ବେଗକରି ପାକ ।
ଉଛୁର ନ କରି ଯେହା ସୁସ୍ନେଣ ଯେ ଭକ୍ଷ୍ୟ ।
ଶୁଣିଣ ମଥୁରି ବାଣୀ ବୋଲେ ମୁନିବର ।
ମନଜାଣି ସେବାକରେ ମଥୁରି ଆମ୍ଭର ।
ପାକକରି ବସିଲା ମଥୁରି ବେଗକରି ।
ମନ ଦଣ୍ଡେ ବସି ମୁନି ଗଲେ ନୀଳଗିରି ।
ପ୍ରାତଃକାଳେ ନିଯୋଗିଣ ସେବାରେ ଖଟିଲେ ।
ଯେ ବିଧି କରିଣ ସେ ଓଳେଗ ମେଲାଇଲେ ।
କଷ୍ଟରେ ମିଳଇ ଯଉଂ ଶ୍ରୀମହାପ୍ରସାଦ ।
ପାଇଣ ମାଧୁରୀ ଆସେ ହୋଇ ମନ୍ଦ ମନ୍ଦ ।
ମନ ଦଣ୍ଡେ ଚଢ଼ିଣ ଚଞ୍ଚଳ ଆସେ ହୋଇଂ ।
ଶ୍ରୀମହାପ୍ରସାଦ କୋରା ହସ୍ତେ ଛନ୍ତି ଲଇଂ ।
ମତୁରିକି ବୋଇଲେ ରେ ପାଅ ଶ୍ରୀପ୍ରସାଦ ।
ଅମୋଖ୍ୟ ପିଣ୍ଡକୁ ମୋଖ୍ୟକରେ ଏହୁ ଦ୍ରବ୍ୟ ।
ପ୍ରଭୁଙ୍କ ନିର୍ମାଲ୍ୟ ଯେତ ବ୍ରହ୍ମସ୍ୱୟେଂ ଯେହି ।
ଅଣୁଯେ ଭଖିଲେ ମହାପାତେକ କ୍ଷୟେ ଯାଇଂ ।
କର ଦୁଇ ଯୋଡ଼ିଣ ମଥୁରି ପାଇ ଦେଲା ।
ମଧୁର ପାଇଣ ସ୍ନେହ ଭାବରେ ଖଟିଲା ।
ପାକ ଆଣିକରି ଦେଲା ମାଧୁରୀ ଦାସକୁ ।
କମଣ୍ଡଳୁ ଜଳ ଦେଲା ଆତ୍ମା ସନ୍ତୋଷକୁ ।
କାବଲେ ଖାଇଲେ ମୁନି କମଣ୍ଡଳେ ନୀର ।
ସାଧନ୍ତି ଯୋଗ ସାଧନେ ତେଣୁ ଅଜାମ୍ବର ।

ଏହା ଦେଖି ମଥୁରି ତପୀକି ଜଣାଇଲା ।
ଶ୍ରୀମହାପ୍ରସାଦ ପ୍ରଭୁ ନିଯୋଗ ନୋହିଲା ।
ମାଧୁରୀ ବୋଇଲେ ବାବୁ ଶୁଣ ହୋ ମଥୁରି ।
ଅଣୁମାତ୍ରେ ଭକ୍ଷ୍ୟ ଯେ ନଭକ୍ଷ୍ୟ ପେଟ ଭରି ।
ଶ୍ରୀପୁରୁଷୋତ୍ତମ ପୁର ଶ୍ରୀମହାପ୍ରସାଦ ।
ଦ୍ରଶନେ ନାଶଇ କାଳ ସ୍ପର୍ଶନେ ଆନନ୍ଦ ।
ତ୍ରିକାଳ ଜଗିଣ ସେବା ନିଯୋଗରେ ଖଟୁ ।
ଅଣୁମାତ୍ରେ ଭକ୍ଷି ଯେ ଅକାଳ କାଳ କାଟୁ ।
ଶୁଣିଣ କୁମରମଣି ଆଚମ୍ବିତ ହେଲା ।
ଗଲ କେତେବେଳେ ମୁନି ଅଇଲ ସେ ଭଲା ।
ମୁନିବର ବୋଇଲେ ତୁ ଶୁଣହୋ ମଥୁରି ।
ମନଦଣ୍ଡେ ଆସିପାରୁ ପୃଥୀ ବୁଲିକରି ।
ଇଚ୍ଛାକଲେ ମନଯାନ ଚଳେ ସ୍ୱଯ୍ତୁଣ ।
ଶ୍ରୀହରି କରୁଣା ଯେଣୁ ସାଧୁ ବ୍ରହ୍ମଗ୍ୟାଂନ ।
ପ୍ରଭୁଙ୍କ ଶ୍ରୀମୁଖେ ଆଗ୍ୟାଂ ହୋଇଛି ମଥୁରି ।
ନାଗାନ୍ତ ଯୋଗାନ୍ତ ଯେ ବେଦାନ୍ତ ଆଦିକରି ।
ଯେଣୁକରି ମନଦଣ୍ଡ ଚଳଇ ଆମ୍ବର ।
ଯେଣେ ଇଛା ତେଣେ ଗଲେ ପ୍ରଚଣ୍ଡ ପଚଖର ।
ଶୁଣିଣ କୁମରମଣି ଚରଣେ ଲୋଟିଲା ।
କହ ମାହାମୁନି ମୋତେ ଦୟା ଯେବେ ହେଲା ।
ଯେହୁତ ଅପୂର୍ବ କଥା ଆନେ ନ ମିଳଇ ।
ସୁସାଧୁ ସୁସନ୍ଥ ସିନା ଯେହା ସେ ଜାଣଇ ।
ମୁଂ ତୁମ୍ଭର ଦାସ ସିନା ମୋତେ ଦୟାକର ।
ମୁହିଂ ତୁମ୍ଭ ଚରଣେ ସେବଇ ନିରନ୍ତର ।
ଶୁଣି ମୁନିବର ଯେ ହୋଇଲେ ଆନନ୍ଦିତ ।
କହିଲେ ଯେ ମୁନିବର ସକଳ ବୃତ୍ତାନ୍ତ ।
ନାଗାନ୍ତକ ଯୋଗାନ୍ତକ ବେଦାନ୍ତକ ଯେତେ ।
ନାନା ପ୍ରତିବିଧିରେ କହିଲେ ତୋଷ ଚିତ୍ତେ ।
ଗୋରେଖନାଥଙ୍କ ବିଦ୍ୟା ବୀରସିଂହ ଆଗ୍ୟାଂ ।

ମଲ୍ଲିକାନାଥଙ୍କ ଯୋଗ ବାଉଳି ପ୍ରତିଗ୍ୟାଂ ।
ଲୋଇଦାସ କପିଳଙ୍କ ସାକ୍ଷୀ ମନ୍ତ୍ର ଯେତେ ।
କହିଲେ ସେ ଯେ ଯେମନ୍ତ ହୋଇଛି ଜଗତେ ।
ବୀଜବ୍ରହ୍ମ ମୂର୍ତ୍ତି ମନ୍ତ୍ର ବୁଝାଇ କହିଲେ ।
ଥାନ ଚିହ୍ନାଇଣ ସେ ଯେ ହସ୍ତ ମାରିଦେଲେ ।
ତ୍ରିକୂଟ ସନ୍ଧି ତ୍ରିବେଣୀ ଯେ ଦ୍ୱାର ।
ଧ୍ୟାନ ଧାରଣାଦି ଯେତେ ଅଷ୍ଟ ପରକାର ।
ସ୍ଥାନବନ୍ଧ ଦିଗ ବନ୍ଧନାଦି ଯେତେ ଯେତେ ।
କହିଦେଲେ ତପୀ ସର୍ବ ମଥୁରି ଅଗ୍ରତେ ।
ପାଇଲା ଯେ ଉପଦେଶ ପୂର୍ବଭାଗ୍ୟ ଥିଲା ।
ସୁସାଧୁ ସଙ୍ଗେତେ କର୍ମ ବାସନା ଛାଡ଼ିଲା ।
ଯେଣୁ ହେଲା ସାଧୁସଙ୍ଗ ସୁପଥ ଦିଶିଲା ।
ଅମୂଲ୍ୟ ପଦାର୍ଥ ଅକସ୍ମାତେ ସେ ମିଳିଲା ।
ଯେଣୁକରି ଗୁରୁଙ୍କୁ ପୂଜଇ ପ୍ରତିଦିନ ।
ମଥୁରି ପାକ କରଇ ମନଜାଣି ପୁଣ ।
ନିଯୋଗ ମେଲାଣୀ କରି ଚଞ୍ଚଳ କରଇ ।
ସାୟଂକାଳ ଛାଡ଼ି ତପୀ ପ୍ରଭାତେ ଭୁଞ୍ଜଇ ।
ଟଳିଲା ମୁନିଙ୍କ ବେଳା ସନ୍ଧ୍ୟାକାଳ ଗଲା ।
ମଥୁରି ପ୍ରଭାତ କାଳୁ ନିଯୋଗିଣ ଦେଲା ।
ପ୍ରତିଦିନ ବନୁ ପତ୍ରଗୁଡ଼ି ତୋଳି ଆଣି ।
ପ୍ରାତଃକାଳ ଜାଣି ସେ ଯେ ନିଯୋଗଇ ପୁଣି ।
ବନରେ ମଥୁରି କରେ ମନ୍ତ୍ର ପରୀକ୍ଷଣ ।
ଭଜି ମନ୍ତ୍ର ମୂର୍ତ୍ତିରେ ଯେ ଦେଖେ ସାକ୍ଷତେଣ ।
ଦିବ୍ୟ ମୂର୍ତ୍ତି ଦେଖିଲା ଷେସ ଚର୍ତ୍ତୁରୂପରାଶି ।
ଜ୍ୟୋତିକଳା ଉଦେହେଲା ସପ୍ତରେହ ଦିଶି ।
ପଦ୍ମ ବିକଶିତ ହେଲା ପାଖୁଡ଼ି ଫୁଟିଲା ।
ଅନନ୍ତ ଦଳ ମଧରେ ରାଧାକୃଷ୍ଣ ଲୀଳା ।
ଚତୁର୍ଭୁଜ କୃଷ୍ଣଚନ୍ଦ୍ର ରାଧାଛନ୍ତି କୋଳେ ।
ଲାଗିଛି ରାହାସ ଲୀଳା ଦେଖିଲାକ ତୋଳେ ।

ଦେଖିଣ କୁମରମଣି ମୂର୍ଚ୍ଛା ଯାଇ ପଡ଼ି ।
ଅଚେଷ୍ଟ ହୋଇ ପଡ଼ିଲା ପ୍ରମହଂସେ ବୁଡ଼ି ।
ପ୍ରହରେ କୁମରମଣି ମୂର୍ଚ୍ଛାରେ ପଡ଼ିଲା ।
ମଧ୍ୟାହ୍ନ କାଳ ହୋଇଲା ନିଯୋଗ ଟଳିଲା ।
ଯେଣୁ ମୁନିବର ଯେ ହୋଇଲେ ଆକୁଳିତ ।
ମଥୁରି ନଇଲାତ ହୋଇଲା ବିପରୀତ ।
ପଥ ଅନୁସରି ଯାନ୍ତେ ଦୂରରୁ ଦେଖିଲେ ।
ଆସଇ ମଥୁରି ବୋଲି କୁଟୀରକୁ ଗଲେ ।
ମଥୁରି ଆସଇ ପୁଣ ଶୂନ୍ୟ ହସ୍ତରେଣ ।
ବାଳୁତ ଭାବରେ ଚାହେଂ କଟାକ୍ଷ ନୟେନ ।
ଗୁରୁ ପଚାରିଲେ ରେ ମଥୁରି ଥିଲୁ କାହିଂ ।
ନ ଆଣିଲୁ ଆମ୍ଭ ଭକ୍ଷ କ୍ଷୁଧା ଆମ୍ଭ ଦେହୀ ।
ନଶୁଣି ମଥୁରି ତାହା ନ ଦିଏ ଉତ୍ତର ।
ଥକିତେ ଲଏ କରିଛି ପ୍ରଭୁ ନିରାକାର ।
ପ୍ରଜଳିତେ କୋପିତେ ପାଇଲେ ମୁନି ଦଣ୍ଡ ।
ଯଉଂ ଦଣ୍ଡେ ହୋଇବ ବ୍ରହ୍ମାଣ୍ଡ ନବଖଣ୍ଡ ।
ସେ ଦଣ୍ଡ ବଳାଇ ବଳା ପଛଘୁଞ୍ଚା ଦେଲା ।
ବହିତ ଅନ୍ୟାୟେ ଗାଳି ମୁନିକୁ କହିଲା ।
ବୋଇଲା ହୋ ଭଣ୍ଡ ଯତି ମାଇଲୁ ତୁ ଦଣ୍ଡ ।
ଆଜହିଂ କରିବି ତୋତେ ମୁହିଂ ଲଣ୍ଡଭଣ୍ଡ ।
ଯେମନ୍ତ କହିଣ ବଳା କୁବୁଦ୍ଧି ପାଞ୍ଚିଲା ।
ବୀରସିଂହ ବିଦ୍ୟାକୁ ପରୀକ୍ଷା ତହିଂକଲା ।
ଲେଖିଲାକ ମନ୍ତ୍ରଂମୂର୍ତ୍ତି ରୂପେ ଦେଲା ଖଳି ।
ସଂକଳ୍ପ କରିଣ ଅଗ୍ନି କୁଣ୍ଡେ ଦେଲା ଜାଳି ।
ଶ୍ୱରୀର ଜଳିଲା ତପୀ ହେଲେ ଯେ ବ୍ୟାକୁଳ ।
ଅକୁଳେ ନୟନୁ ବହିପଡ଼େ ଅଶ୍ରୁଜଳ ।
ବେଳୁଂ ବେଳ ଡହକ ତପତ ଶିଖା ଦେଲା ।
ମୁନିର ଅଚଳଚିତ୍ତ ଚଞ୍ଚଳ ହୋଇଲା ।
ବିଚାରନ୍ତି ତପୀ ଯେ ହୋଇଲା ବିପରୀତ ।

ଅକାଳେ କାଳତ ଆସି ହେଲା ପରାପତ ।
ତହୁଂ ଉଦ୍‌ବେଗ ମୁନି ମନ ଦଣ୍ଡେ ଚଢ଼ି ।
ଚଳିଲେ ଦଣ୍ଡକାରଣ୍ୟ କମଣ୍ଡଳୁ ଘେନି ।
ଦଣ୍ଡକା ଅରଣ୍ୟ ପୂର୍ବ ପ୍ରାଚୀନଦୀ କୂଳ ।
ସର୍ବ ଋଷିମାନେ ତହିଂ ହୋଇଛନ୍ତି ମେଳ ।
ସେଠାବେ ପ୍ରବେଶ ଯାଇଂ ମାଧୁରୀ ଗୋସାଇଂ ।
ସର୍ବ ଋଷିମାନଙ୍କୁ ପ୍ରଣାମ କଲେ ଯାଇଂ ।
ବ୍ୟାକୁଳେ ଗଡ଼ଇ ମୁନି ଛାଡ଼ଇ ବୋବାଳି ।
କହିତେ ସକ୍ୟ ନୋହଇ ପଡ଼େ ହାଲହୋଳି ।
ତପୀ ଯତି ସନ୍ନ୍ୟାସୀ ଅଇଲେ ସର୍ବେ ଧାଇଂ ।
ପଚାରିଲେ ତପୀହୋ କି କଥା କହ ଫେଇ ।
ଶୁଣ ତଂପୀ ତତପରେ ଦିଅନ୍ତି ଉତ୍ତର ।
ଉହକ ଉଠଇ ଦେହ ଜଳଇ ମୋହର ।
ଆମ୍ଭ ଚେଲା ମଥୁରି ଏମନ୍ତ ଦଣ୍ଡଦେଲା ।
ନ ଜାଣଇ ବାଳକ ଅନ୍ୟାୟେ ଆଚରିଲା ।
ତୁମ୍ଭେ ମହାତପୀ ଯେବେ କରିପାର ରକ୍ଷା ।
ରହଇ ମୋହୋ ଶ୍ୱରୀର ନୋହୁ ବ୍ରହ୍ମହତ୍ୟା ।
ଶୁଣି ମୁନିମାନଙ୍କୁ ଲାଗିଲା ମହାଭୟେ ।
ଯେକି ବିପରୀତ ବୋଲି ଲଗାଇଲେ ଳଏ ।
ଜାଣିଲେ ସମସ୍ତ ତପୀ ହେଲା ଘୋର କଳି ।
ଗ୍ରାସିଲାଣି ଆଙ୍କୁ କାଳ ପକାଇବ ଦଳି ।
ବିଚାରି ସମସ୍ତ ମୁନି କଥାଏ କରିବା ।
ବୀଜ ନେଇ ଅସ୍ଥି ଥୋଇ ବିଖ୍ୟାତ ହୋଇବା ।
ଯେମନ୍ତ ବିଚାରି ତହୁଂ ହେଲେ ତତପର ।
କମଣ୍ଡଳ ଜଳକୁ ମନ୍ତ୍ରିଲେ ମୁନିବର ।
ସର୍ବ ମୁନି ରୁଣ୍ଡହୋଇ ଧରି ଯେକ ମେଳ ।
ଢାଳିଲେ ମାଧୁରୀ ଦାସ ତପୀଙ୍କ ଉପର ।
ଶାନ୍ତି କଲା ତପୀଙ୍କର ଶ୍ୱରୀର ମନ୍ତ୍ରଂ ପାଣି ।
ଶୀତଳ ହୋଇଲା ଦେହ ଚନ୍ଦ୍ରସମ ଜାଣି ।

ଶାନ୍ତି ଲଭି ମୁନି ଯେ ବସିଲେ ତତପରେ ।
ହସିଣ କହିଲେ ସର୍ବ ମୁନିଙ୍କ ଆଗରେ ।
ଘୋର କଳି ଆସିଣ ଗ୍ରାସିବ ବେଳୁଂବେଳ ।
ଗୁରୁଙ୍କୁ ନମାନି ଶିଷ୍ୟେ ହୋଇବେ ପ୍ରବଳ ।
ସର୍ବଋଷି ମିଳି ଆମ୍ଭେ କଥାଏ କରିବା ।
ମନ୍ତ୍ରଂ ଥାଉ ମୂର୍ତ୍ତି ତାଉ ବୀଜ ହରିନେବା ।
ଅହଂକାର ଧରିଣ ନାଶିବେ ସର୍ବଜନ୍ତୁ ।
ଯେକେ ଯେକେ ଅହଂକାର ନାଶିବେ ଘରକୁ ।
ଘୋରକଳି ଦୁଷ୍ଟ ୟେ ଯେ ଥଏ ନ କରିବ ।
ପିତାପୁତ୍ର ଅନ୍ୟାୟ ସେ ନିଶ୍ଚୟେ ହୋଇବ ।
ନୋହିଲେ ସେ ବ୍ରହ୍ମାଙ୍କର ସୃଷ୍ଟି ଯିବ ନାଶ ।
ଅପରେ ମିଳିବ ପୁଣ ପରଚୁଆ ଦୋଷ ।
ସର୍ବ ଋଷି ୟେକମୁଖ ହୋଇ ଶୁଣୁଥିଲେ ।
ହେଉ ହେଉ ବୋଲିଣ ସମସ୍ତେ ଧ୍ୱନି କଲେ ।
ଥୋକେ ମୁନି ବୋଇଲେ ଯେ ଅସ୍ତୁ ଅସ୍ତୁ ହେଉ ।
ୟେ ଘୋର କଳିକି ଆମ୍ଭେ ମହାଭୟେ ପାଉଂ ।
ଦେଖୁ ଦେଖୁ ୟେଡ଼େ ତପୀ ଅନ୍ୟାୟେ ନାଶ ଯାନ୍ତା ।
ଅକୁଳ ବିକଳ ମୁନି କେତେକ ସହନ୍ତା ।
ହରି ହରି ବୋଲିଣ ସମସ୍ତେ ଚଳିଗଲେ ।
ଯେ ଯାହା ପର୍ଣ୍ଣକୁଟୀରେ ଯାଇଣ ମିଳିଲେ ।
ଶୁଣ ତୁ ହୋ ରାମଦାସ ଅତିହିଂ ଅପୂର୍ବ ।
ଶାପ୍ୟଦେଇ ଯେ ଯାହାରେ ଗଲେ ମୁନି ସର୍ବ ।
ମହତ ବଚନ ଯେ ପାଷାଣ ଗାର ଜାଣି ।
ଲଙ୍ଘନ କରିବ କେହୁ ୟେଡ଼େ ସକ୍ୟ ପୁଣି ।
ସେହିଦିନୁ ମନଯାନ ଇଚ୍ଛାରେ ନ ଚଳଇ ।
ଯେ ଯେମନ୍ତେ ରହିଲେ ସେ ଥକିତ ଯେ ହୋଇ ।
କେହୁ ହେଲେ ପାଷାଣ ସ୍ତେ କେହୁ ଦାରୁ ରୂପ ।
କେ ହେଲେ ମୂର୍ତ୍ତିକା ସମ କେ ହେଲେ ଥକିତ ।
ଦଶସସ୍ର ଦ୍ୱିଜବର ଯାଆନ୍ତି ଆସନ୍ତି ।

ନଯାଇଂ ରହିଲେ ହୀନ ଖୀନ ତାଙ୍କ ମତି ।
ଯୋଗୀଯେ ଜଗିଣ ଯୋଗ ହୋଇଲେ ସ୍ତକିତ ।
ମନଯାନ ନଚଳେ ଆକୁଳ ତାଙ୍କ ଚିତ୍ତ ।
ଅବିଶ୍ୱାସ ହୋଇଲା ସାଧୁଙ୍କ ନିଷ୍ଠାବାଣୀ ।
ଉପହାସ୍ୟ ପ୍ରାଏ ଯେ ମଣିଲେ ଜନେ ଶୁଣି ।
ଦିନୁଂଦିନ କଳି ଯେ ଗ୍ରାସିଲା ଘୋରକାଳ ।
ଯିବା ଆସିବା ଯେ ଦୁଇ ହୋଇଲା ଅଚଳ ।
ନିଯୋଗ ଯେ ପ୍ରଭୁ ସେବା ବିଭଙ୍ଗ ହୋଇଲା ।
ଶ୍ରୀକୃଷ୍ଣ ଘରରେ ତେଣୁ ସଙ୍କୁଳା ପଡ଼ିଲା ।
ପାଞ୍ଚସାତ ଦିନରେ ପ୍ରବେଶ ହେଲୁଂ ଯାଇଂ ।
ଗହଣ ଖଟୁ ପ୍ରଭୁଙ୍କ ନିଯୋଗରେ ତହିଂ ।
ନିଶି ଅର୍ଦ୍ଧମାନରେ ପଡ଼ଇ ତାରତମ ।
କେ ପାଇଲା ନ ପାଇଲା ପ୍ରଭୁ ନିଯୋଗେଣ ।
ଦିନ ଅବଧାନ ହୋନ୍ତି ଦୀନଜନ ପାଇଂ ।
ଯେ ସମୟ ଜାଣିଣ ଦ୍ରଶନ କଲୁ ଯାଇଂ ।
ବୋଇଲେ ମୋ ପ୍ରାଣ ପଞ୍ଚସଖା କାହିଂ ଥିଲ ।
ନିଯୋଗ ନରୁଚେ ମୋତେ ତୁମ୍ଭେ ତ ନଇଲ ।
ଯେହା ଶୁଣିଣ ଯେ ମୁହିଂ ଚରଣେ ପଡ଼ିଲି ।
ନିସ୍ତରିଲି ନିସ୍ତରିଲି ବୋଲିଣ ବୋଇଲି ।
ଜଣାଇଲି ଛାମୁରେ ସକଳ କଥା ମୁହିଂ ।
ହସିଲେ ଯେ ପ୍ରଭୁ ଶୁଣି ଟହଟହ ହୋଇ ।
ବୋଇଲେ ସୁଦାମ ତୁମ୍ଭେ ଶୁଣ ଆତ୍ମବାଣୀ ।
କଳିଯୁଗେ ବୌଧରୂପେ ପ୍ରକାଶିଲୁ ପୁଣି ।
କଳିରେ ବଉଧରୂପ ନିଜରୂପ ଗୋପ୍ୟ ।
ଯେଣୁ ଯେ ସକଳ ମୁନିଜନେ ଦେଲେ ଶାପ୍ୟ ।
ଆମ୍ଭେ ଯେହା ଜାଣୁ ହୋ ଅଚ୍ୟୁତ ଦାସବାଇ ।
ଏଣୁ କରି ପ୍ରକାଶିଲୁ ଯେକ କଳା ନେଇ ।
ଅଲଗେ ନାଶକୁ ଯାନ୍ତେ ଭଳକଲେ ତପୀ ।
ବେଳୁ ଜାଣି ନିରାକାର ମନ୍ତ୍ର ଅଛୁ ଥାପି ।

ତୁମ୍ଭେ ମୋର ପଞ୍ଚଆତ୍ମା ଅଟ ପାଞ୍ଚଜଣ ।
ଅବତାର ଶ୍ରେଣୀ ଯେତେ ତୁମ୍ଭପାଇଁ ପୁଣ ।
ନିରାକାର ମନ୍ତ୍ରେ ସର୍ବ ଦୁର୍ଗତି ହରିବ ।
ଆପଣେ ତରିଣ ପୁଣି ପରେ ତରାଇବ ।
ବୃନ୍ଦମାତା ଆଦି ଅଷ୍ଟସଖୀ ଛନ୍ତି ରଖି ।
ନିରାକାର ଭଜନୀ ନିର୍ମଳ ଭକ୍ତ ଦେଖି ।
ଯେମନ୍ତ କହିଣ ଦେଲେ ମନ୍ତ୍ର ନିରାଧାର ।
ଆଗ୍ୟାଂଦେଲେ କଳିଯୁଗେ କରିବ ପ୍ରଚାର ।
ଚିହ୍ନାଇଣ ଦେଲେ ପ୍ରଭୁ ସ୍ୱୟଂ ବ୍ରହ୍ମ ଯେହି ।
ମୁହିଂ ଯେହି ରୂପେ ଅଛି ସର୍ବ ଘଟେ ଥାଇ ।
ଥରେ ଉଚ୍ଚାରିଲେ କୋଟି ଯଜ୍ଞ ଫଳ ପାଇ ।
ନିରକାର ମନ୍ତ ଯେ ମୋହୋର ଦେହ ସେହି ।
*ଯାଅ ଅଚ୍ୟୁତ ଅନନ୍ତ ଯଶୋବନ୍ତ ଦାସ ।*
ବଳରାମ ଜଗନ୍ନାଥ କର ଯା ପ୍ରକାଶ ।
ଆଗ୍ୟାଂପାଇ ଆମ୍ଭେ ପାଞ୍ଚଜଣ ଯେ ଥଇଲୁଂ ।
ମନଯାନ ଚଳିଲା ବହନେ ପ୍ରବେଶିଲୁ ।
ଋଷି ତପୀ ସନ୍ନ୍ୟାସୀ ନାନକ ବୀରସିଂହ ।
ଲୋକ ଦାସ କପିଳ ବାଉଳି ଯେତେ ସଙ୍ଗ ।
ସଭା ମଣ୍ଡାଇଣ ଯେ ବସିଲେ ସର୍ବ ତପୀ ।
ପଚାରିଲେ ପ୍ରଭୁଙ୍କର କି ଆଗ୍ୟାଂ ହୋଉଛି ।
ବୋଇଲି ଯେ ଶୂନ୍ୟମନ୍ତ୍ର ଯନ୍ତ କର ନ୍ୟାସ ।
ଋଷି ତପୀ ଜୟେ ଜୟେ କଲେ ଯେ ପ୍ରକାଶ ।
ଦେଖିଲେ ଯେ ସ୍ୱୟଂ ବ୍ରହ୍ମ ଶୂନ୍ୟମନ୍ତ୍ର ହୋଇ ।
ଘଟେ ଘଟେ ବିଜେ ଯେହି ଶୂନ୍ୟକାୟା ଦେହୀ ।
ସ୍ଥାବର ଜଙ୍ଗମ୍ କୀଟ ପତଙ୍ଗାଦି ଯେତେ ।
ଶୂନ୍ୟକାୟା ଶୂନ୍ୟ ଯନ୍ତ ବିଜେ ଘଟେ ଘଟେ ।
ଶୂନ୍ୟକାୟାକୁ ଯେ ନିରାକାର ମନ୍ତ୍ରସାର ।
ଭଲା ଦୟାକଲେ ଦୀନଜନଙ୍କ ସୋଦର ।
ଆମ୍ଭପାଇଂ ବେଳେବେଳେ ପ୍ରଭୁ ସାହା ହୋନ୍ତି ।

ଦୁଷ୍ଟ ଦୁରିପିଷ୍ଟଙ୍କୁ ମାରି ଆମ୍ଭଙ୍କୁ ପାଳନ୍ତି ।
ଓଳଗ ମେଲାଇ ସର୍ବ ତପୀ ରୁଣ୍ଡହୋଇ ।
ହରି ହରି ବୋଲି ଧୂପ ଦୀପ ଦେଲେ ନେଇ ।
ବନ୍ଦାପନାକରି ପଞ୍ଚାମୃତ ନଇବେଦ୍ୟ ।
ରମ୍ଭାପାଂଳେ ସନ୍ତୋଷ କରିଲେ ମୁନି ସର୍ବ ।
ଅମଳାନ ବସ୍ତ୍ର ଢାଙ୍କି ସୁବର୍ଣ୍ଣ ନିଯୋଗିଲେ ।
ଶୂନ୍ୟଯନ୍ତ୍ରେ ନିରାକାର ମନ୍ତ୍ର ଉଚ୍ଚାରିଲେ ।
ଉଠିଲା ହରି ଶବଦ ପୂରିଲା ବ୍ରହ୍ମାଣ୍ଡ ।
ଅଚଳ ଚଳିଲା ମୁନିଙ୍କର ମନଦଣ୍ଡ ।
ଆନନ୍ଦେ ପୁଲକ ହୋଇଗଲେ ସର୍ବ ଋଷି ।
ଆମ୍ଭେ ଯେ ଅଇଲୁ ବାବୁ ନିରାକାର ଘୋଷି ।
ପୂର୍ବରୁ ଖସିଣ ନାମ ପଛିମକୁ ଆସେ ।
ଓଲଟି ପୁଣି ପୂର୍ବକୁ ବିଧିରେ ଚଳେ ସେ ।
ବିପରୀତ ହୋଇଣ ସେ ଯାଇଣ ଆସଇ ।
ଶବଦେ ମିଶିଣ ନିଶବଦେ ନିଯୋଗାଇ ।
ମାତ୍ରାକୁ ଧରିଣ ପୁଣି ପୂର୍ବକୁ ଫେରଇ ।
ନିଶବଦେ ମିଶିଣ ଶବଦେ ସମ୍ଭବଇ ।
ପଞ୍ଚବର୍ଗ ତିନିକ୍ଷଣ ଶବଦରେ ଠୁଳ ।
ଶିବ ଯେ ବରହକ ଅଂ ଅଟେ ମୂଳ ।
ଯେମନ୍ତେ ହୋଇଣ ନିରକାର ମନ୍ତ୍ର ହୋଇ ।
ଥରେ ଉଚ୍ଚାରିଲେ କୋଟି ଯଜ୍ଞଫଳ ପାଇ ।
ଭଜିବେ ମୋ ଭକ୍ତ ଯେହା କରିବେ ସଞ୍ଚାଳି ।
ବାରଣ ବେଳରେ ଆମ୍ଭ ସଙ୍ଗତରେ ମିଳି ।
ବାରସସ୍ର ଭଗତେ ଭଜିବେ ତିନିସସ୍ର ।
ଅଧିକୁଂ ଅଧିକ ନିରାକାର ଉପଦେଶ ।
ବହୁ ପୁଣ୍ୟ କରିଥିଲେ ନିରାକାରେ ପଶି ।
ହୁଅଇ ନିର୍ମଳଭକ୍ତି ବଢ଼େ ସୁଧାରାଶି ।
ଲେଖିବ ଯେ ନିରାକାର ମନ୍ତ୍ର ଶୁଦ୍ଧ ପାତ୍ରେ ।

ପଞ୍ଚବର୍ଣ୍ଣୀ ପୁଷ୍ପଦେଇ ପୂଜି ଯଥୋଚିତେ ।
ନମୋ ନିରାକାର ବ୍ରହ୍ମଂ ସ୍ୱାହା ଯେ ବୋଲିବ ।
କନ୍ଦରେ ମିଶାଇ ଖୀର ନଇବଦ୍ୟ ଦେବ ।
ଗୁରୁପୂର୍ଣ୍ଣମୀ ଦିନ ଯେହୁ ମନ୍ତ୍ରକୁ ପୂଜଇଂ ।
ଭକ୍ତ ବା ନଭକ୍ତ ନାଶକର ଭୟ ନାହିଂ ।
ଚତୁବର୍ଗ ବଢ଼େ ତାର ନୋହେ ଖଳବୁଦ୍ଧି ।
ସ୍ୱର୍ଗରେ ସଙ୍ଖୋଳି ପଢ଼େ ବାଞ୍ଛା ହୋୟେ ସିଦ୍ଧି ।
ତୁ ଯେଣୁ ମୋହୋର ବାବୁ ଅଟୁ ଯେ ବିଶ୍ୱାସ ।
ତୋ ଆଗେ ଗୁପତ କଥା କଲୁଂ ଯେ ପ୍ରକାଶ ।
ଗୁପତ କରିଣ ଭଜୁଥାଅ ନିରାକାର ।
ନୋହିବୁ ତୁ ପଥବଣା ନଥିବ ବିକାର ।
ଯିବା ଆସିବାକୁ ଯେ ନ ଡ଼ର ତୁହି ଆଉ ।
ନିରାକାର ଭଜନେ କଲ୍ମଷ କ୍ଷୟେ ଯାଉ ।
ନିରାକାର ପୁରୁଷକୁ ନିତ୍ୟେ ମୋର ସେବା ।
ଭଣଇ ଦୀନ ଅଚ୍ୟୁତ ତତ୍ତ୍ୱ ମୋତେ ଦେବା ।

ଇତିଶ୍ରୀ ଶୂନ୍ୟ ସଂହିତାୟା ଗୁରୁଶିଷ୍ୟ ବୋଧନେ ମାଧୁରୀ ମଥୁରି ଉପଦେଶ ଆଖ୍ୟାନେ ଭବିଷ୍ୟାନ୍ତ ଆଗମ ଚରିତେ ନିରକାର ମନ୍ତ୍ର କର୍ତ୍ତବ୍ୟ କଥନେ ନାମ ଦ୍ୱାଦଶ ଅଧ୍ୟାୟଃ ।

## ତ୍ରୟୋଦଶ ଅଧ୍ୟାୟ

ରାମଚନ୍ଦ୍ର ଦାସ ପଡ଼ି ଚରଣେ । କହଇ କରଯୋଡ଼ି ସନିଧାନେ ॥
ଶୁଣିଲି ଶ୍ରୀମୁଖ ଅମୃତ ବାଣୀ । ତରିଲି ମୁଂ ପୂର୍ବଭାଗ୍ୟରୁ ପୁଣି ॥
ଅପୂର୍ବ ଶ୍ରୀକୃଷ୍ଣ ମହିମା ଯେତେ । କହି ଉଦ୍ଧାରିଲେ ସୁଦୟା ଚିତ୍ତେ ॥
ସ୍ୱୟଂ ପ୍ରଭୁ ମୋର ତୁମ୍ଭେ ଯେ ଅଟ । ଅଧମ ଉଦ୍ଧାରେ ତୁମ୍ଭ ପ୍ରକଟ ॥
ପତିତ ଉଦ୍ଧାର କରିବା ପାଇଂ । ପ୍ରକଟ ହୋଇଛ ଆପେ ଗୋସାଇଂ ॥
ଅଦୃଶ୍ୟମାନ ଦୃଶ୍ୟ ହୁଏ ତେଣୁ । ଓକାର ମାତ୍ରା ଆପେ ଅଟ ଯେଣୁ ॥

ଅକ୍ଷରରୂପେ ଆତ୍ମାରାମେ ରମ । ବିନ୍ଦେ ଘଟେ ସ୍ୱୟଂ ଆପଣ ॥
ଆପେ ଥିଲାକୁ ଶୂନ୍ୟ କାୟା ଚଳେ । ଆପେ ଅଚଳ ଶୂନ୍ୟହିଁ ଅଚଳେ ॥
ରିପୁ ମର୍ଦ୍ଦନପୁରେ ଯା ନିବାସ । ତାଙ୍କ ଚରଣେ ଆଶ ରାମ ଦାସ ॥
ତୁମ୍ଭେ ଯେ ଅଟ ଗୁରୁ ବ୍ରହ୍ମ ମୋର । ମାତା ପିତା ବନ୍ଧୁ ଅଟ ସୋଦର ॥
ତୁମ୍ଭ ବିନୁ ମୋର କେ ଅଛି ଆଉ । ଫେଡ଼ିବ ସନ୍ଦେଶ କହିବ କେହୁ ॥
ପୂର୍ବଭାଗ୍ୟରୁ ତୁମ୍ଭଠାରେ ଆଶ୍ର । ପାଇଲା ଅଧମ ଯେ ରାମଦାସ ॥
ଆଗ୍ୟାଂ ହୋଇଛି ମୋତେ ତିନିବାର । ଆନରେ ଆଉ ପ୍ରକଟ ନକର ॥
କେମନ୍ତେ ଆଗ୍ୟାଂ ମେଣ୍ଟିବି ମୁଂ ଆଉ । କେ ଫେଡ଼ି କହିବ ସଂଶଏ ଯାଉ ॥
କହିତେ ଚିତ୍ତ ନ ବଳି ମୋର । ଆଗ୍ୟାଂ ହୋଇଛି ଯାହା ନିରାଧାର ॥
ଆତ୍ମା ଉଧୁରି ଆପଣେ ଟଳଇ । ଆନରେ ପ୍ରୟୋଜନ କିଛି ନାହିଁ ॥
ଲକ୍ଷେ ମୁନି ଧ୍ୟାନ ତୁଲ ଯାହାକୁ । ନିନ୍ଦୁଅଛି ସେ ଯେ ପଦ ପଦକୁ ॥
ଯେମନ୍ତ ପଦାର୍ଥ ଆନେ କି ହେବ । ଅର୍ଜିଲା ଶିରୀ ତାରେ ସମର୍ପିବ ॥
ଦେଲାରୁ ତ ଆଉ ନେବାକୁ ନାହିଁ । ଲୋଡ଼ିଲେ ଆଉ ପାୟେ ପୁଣି କାହିଁ ॥
କରୀର ଦନ୍ତ ଯେମନ୍ତ ବାହାର । ପାଷାଣ ଗ୍ୟାଂର ଯେହ୍ନେ ନିରାଧାର ॥
କରରୁ ଶର ଯେମନ୍ତ ଛୁଟଇ । ଆଣି ଲୋଡ଼ିଲେ ପାୟେ ପୁଣ କାହିଁ ॥
ଗଭୀର ସମୋଦ୍ର ପ୍ରାଏ ଉଦର । ପାଷାଣ ପରାଏ ଯାହା ଶ୍ୱରୀର ॥
କମଠ ପୃଷ୍ଠ ପ୍ରାୟେ ମୋ ହୃଦୟ । ଗୁପତ ଅତି ଅକଳିତ କାୟ ॥
ଆଗ୍ୟାଂ ହେବ ପ୍ରଭୁ ଯେମନ୍ତ କରି । ଅଗ୍ୟାଂନୀ ଅମଥିକି ପ୍ରତିପାଳି ॥
ବେଳେବେଳେ ପ୍ରଭୁ ସଂଶଏ ଫେଡ଼ । ତୁମ୍ଭ ଦୟାରୁ ମୁହିଁ ସିନା ବଡ ॥
ଗୋରୁ ଧନ ବିତ୍ତ ପୂରି ଅଛଇ । ଅତୁଟ ଲକ୍ଷ୍ମୀ ଅଚଳେ ଖଟଇ ॥
ଯାହା ବୋଲିବ ପାଦେ ସମର୍ପିବି । ଆଗ୍ୟାଂ ଅବଗ୍ୟାଂ କେଭେଂ ନକରିବି ॥
ଶ୍ରୀମୁଖେ ଆଗ୍ୟାଂ ହୋଇଛି ପ୍ରକାଶ । ମାୟା ତୋଠାରେ ନାହିଁ ରାମଦାସ ॥
ତେଣୁ ପଚାରେ ମୁଂ ତୁମ୍ଭ ଛାମୁରେ । ଗୁପତ କଥା ପ୍ରକାଶ ମୋଠାରେ ॥
ଯେଣୁ ମୁଂ ତୁମ୍ଭ ଚରଣେ ଶରଣ । ବିଶ୍ୱାସେ ସେବଇ ତୁମ୍ଭ ଚରଣ ॥
ପ୍ରଭୁ ପଣକୁ ନୁଉଛଣା ଯାଇଂ । ତୁମ୍ଭ ଆପଦ ମୋର ଶିରେ ଥୋଇ ॥
ଯଉଂ ପ୍ରଭୁ ଯେ ପରେ ଉଧାରନ୍ତା । ସେ ପ୍ରଭୁ ପାଦେ ମୁଂ ଅଟେ ଭଗତା ॥
ପ୍ରଭୁ ଚରଣେ ରେଣୁ ପ୍ରାୟେ ଥିବି । କର୍ଦ୍ଦମ ପ୍ରାୟେ ଲାଗି ମୁଂ ରହିବି ॥
ଜନ୍ମେ ଜନ୍ମେ ମୁଂ ତୁମ୍ଭରି ଶରଣ । ତୁମ୍ଭେ ବିନୁଂମୋ ଆନେ ନୋହୁ ମନ ॥
ଧନ୍ୟ ମୋ ମାତା ପିତା ବନ୍ଧୁଜନ । ଧନ୍ୟ ଜୀବନ ଧନ୍ୟ ମୋର ପୁଣ୍ୟ ॥

ଧନ୍ୟ ମୋ ସଙ୍ଗ ଧନ୍ୟ ଗୁରୁ ମୋର । ଧନ୍ୟ ପୂର୍ବହେତୁ ଧନ୍ୟ ଶ୍ୱରୀର ॥
ବେଳେବେଳେ ମୁହିଂ କହଇ ବଢ଼ି । ଆଗ୍ୟାଂ ହୋଅଇ ଯେ ସଂଶୟ ଛାଡ଼ି ॥
ଯେଣୁ ବିଶ୍ୱାସ ତୁମ୍ଭରି ଚରଣେ । ପଚାରଇ ବେଲୁଂ ମୁଂ ଦାସପଣେ ॥
ବୋଇଲ ପ୍ରଭୁ ଯେ ଶୂନ୍ୟ ଭଜନ । ଗୁପତ କର ନ କର ପ୍ରଛିନ ॥
କାହାଠାବେ ତୁମ୍ଭ ସୁଦୟ ଅଛି । କଉଂ ଜୀବ ଶୂନ୍ୟ ମନ୍ତ୍ର ଚିହ୍ନିଛି ॥
ସାଧକ ଅଙ୍ଗ ଭଜନ କି ପରେ । କଉଂ ସ୍ଥାନକୁ ଶୂନ୍ୟ କହି ବାରେ ॥
କାହିଂ ଭଗତକୁ ତୁମ୍ଭେ ରଖିଛ । ତୁମ୍ଭକୁ ସିନା ଅଟଇ ପ୍ରତ୍ୟଛ ॥
ପ୍ରଭୁ କହିଲେ ତା ପ୍ରତେ ପାଇବି । ବାରଣ ବେଳେ ସଂଶୟ ନାଶିବି ॥
ବାରଣ ବେଳେ ନଥିବ ଜଞ୍ଜାଳ । ଥିବି ପ୍ରଭୁଙ୍କର ଭକତ ମେଳ ॥
ଆଗ୍ୟାଂହେଉ ମୋତେ ସଂଶୟ ଯାଉ । ତୁମ୍ଭ କରୁଣା କାଳେ କାଳେ ଥାଉ ॥
ଯେତେ କାନ୍ଦିକରି ଶୋକେ କହଇ । ପ୍ରଦଖିଣ କରି ପାଦେ ଲୋଟଇ ॥
ଦେଖିଣ ଶିଷ୍ୟ ଭକତି ଅଦ୍ଭୁତ । କହିବା ଶୁଣ ରାମଦାସ ତତ୍ତ୍ୱ ॥
ତୁ ଯେଣୁ ପ୍ରଭୁଙ୍କ ଅଟୁ ସେବକ । ଯେଣୁ ତୋଠାରେ କରିଲୁ ବ୍ୟକତ ॥
ଆମ୍ଭ ପାଦରେ ଥାଅ ହସ୍ତ ଦେଇ । ଦାମ୍ଭିକ ପଣ୍ଡିତେ ଥିବୁ ଲୁଚାଇ ॥
ତରକ ତେରିଆ ଭଗତ ଯେତେ । ନ କହିବୁ ରାମ ରଖ ଗୁପତେ ॥
ମାଛ ମାଂସ ଭକ୍ଷ୍ୟା ଅଶଉଚ କି । କହିଲେ ଦୋଷ ହେବ ଅଛି ଲେଖି ॥
ପାଞ୍ଚ ସାତରେ ନକର ପ୍ରକଟ । ଗୁରୁ ଶିଷ୍ୟ ଦୁହେଂ ବିଚାରି ଭେଟ ॥
ଛଡ଼ ଶ୍ରୁତିରେ ଗୁରୁ ଅନ୍ଧ ହୋଇ । ଗୁରୁ ନାଶଯାଇ ଶିଷ୍ୟ କ୍ଲେଶହିଂ ॥
ନିରାକାର ତୁ ନ କର ପ୍ରକାଶ । ମୋହ ଶପଥ ତୋତେ ରାମଦାସ ॥
ଫଣି ଧଇଲେ ଡଂସଇଟି ବାବୁ । ଅଗ୍ନି ଲାଗିଲେ ପୋଡ଼ିଦିଯେ ସବୁ ॥
ସସ୍ତ୍ର ଧଇଲେ କରଇ ବିନାଶ । ନିଜ ଗୁଣ ତାର ନାହିଂ ଯେ ଦୋଷ ॥
ଯେଣୁ ତରକ ତେରିଆକୁ ତୁହି । ନିରାକାର ମନ୍ତ୍ର ଥିବୁ ଲୁଚାଇ ॥
କାଳେ ସେ ଉପହାସ ପ୍ରାୟେ ମଣି । ଅବିଶ୍ୱାସ କରେ ନ ଧରେ ପୁଣି ॥
ଯେ ଘୋର କଳିକି ଭୟେ ମୋହର । ମହିମା ନିନ୍ଦା ନାଶ ଯେ ଶ୍ୱରୀର ॥
ଘୋରକଳି ଯେ ଯେ ନକରେ ଥୟେ । ସନ୍ଥ ସାଧୁଙ୍କୁ ଯେ ଦଣ୍ଡେ ଅନ୍ୟାଯେ ॥
କପଟୀ ଭଗତ ଥୋକେ ଅଛନ୍ତି । ମୂଢ଼ ପଣ କରି ନାମ ନିନ୍ଦନ୍ତି ॥
ସାତ ପାଞ୍ଚ କଥା ଶିଖିବେ ଯହୁଂ । ଫୁଲଣା ହୋଇ କହିବେଟି ସେହୁ ॥
ନିନ୍ଦିବେ ସାଧୁ ଭକତଙ୍କୁ ମୋର । ଅମାୟା ଭଗତେ ଅଟୁ କିଙ୍କର ॥
ମାଛ ମାଂସ ଭକ୍ଷ୍ୟା ହେବେ ଭକତ । କପଟୀ ଲୋକ ହୋଇବେ ବହୁତ ॥

ଯେମନ୍ତ ଭାବେ ପଞ୍ଚସସ୍ର ଛନ୍ତି । ନିରାକାରରେ ସେ ଭାଗୀ ନୋହନ୍ତି ॥
ଯେଣୁ ମୁହିଂ ତୋତେ ବାଛି କହଇ । ମୂଢ଼ ଅଗ୍ୟାଂନୀକି ଥିବୁ ଲୁଚାଇ ॥
ବିରଜା ଆଶ୍ରେ କରିଛି ପ୍ରଭୁଙ୍କୁ । ବାରଣ ବେଳେ ପ୍ରଭୁ ଦେବେ ତାଙ୍କୁ ॥
ଆଶ୍ରିତ ଯେହି ଗୁପତଟି ସେହି । ନିରାକାର ଭଜି ଭବୁଂ ତରଇ ॥
ନିର୍ମଳ ଭଗତି ବଢ଼ଇ ତାର । ତାରତମ ବେଳେ ନାହିଂ ବିଚାର ॥
ଅମାୟା ଗୁପତ ଶଉଚ ଯେହି । ପଞ୍ଚୁ-ତିଳେକ ଯା ହୃଦରେ ଥାଇ ॥
ନାମ ଶ୍ରବଣେ ଅଶ୍ରୁଜଳ ପୂରେ । ପ୍ରେମ କୁଣ୍ଢିତେ ରାବେ ଉଚ୍ଚସ୍ୱରେ ॥
ପ୍ରଭୁ ନାମ କରିଥାଇ ସଞ୍ଜାଳି । ପ୍ରତିମା ପୂଜି ଦିଏ ଦୀପାବଳି ॥
ସତ୍ୟ ବକତା ଶାନ୍ତିହିଂ ସଳିତା । ଉଦାସ ମତେ ଭାବେ ହରି କଥା ॥
ବୀଜକୁ ଚିହ୍ନି ତତ୍ତ୍ୱରେ ଗୋଚର । ଜ୍ୟୋତିକଳା ଜାଣି ଯା ଚିତ୍ତ ସ୍ଥିର ॥
ଦାନୀପଣରେ ଦୟାଳୁ ଅଟଇ । ରାମଚନ୍ଦ୍ର ଭକ୍ତେ ଗଣନା ସେହି ॥
ଅଛନ୍ତି ମୋ ଭକ୍ତେ ତିନିସହସ୍ର । ନିରାକାର ମନ୍ତ୍ରେ ହେବେ ଉଦିତ ॥
ତିନିସସ୍ର ଭକ୍ତ ମୋ ନିଜ ଦେହୀ । ଅଂଶେ କଳାଯେ ଅଛନ୍ତି ସେ ପାଇଁ ॥
ନିରାକାର ମନ୍ତ୍ରେ ନିର୍ମଳ ଚେତା । ଗ୍ୟାଂନ ମଧ୍ୟେ ଧ୍ୟାନ ଅଟେ ବକତା ॥
ନିରାକାର ମନ୍ତ୍ରେ ନିମଜ୍ଜି ଥିବେ । ନିରତେ ବୀଜ ଯନ୍ତ୍ର ମନ୍ତ୍ର ଭାବେ ॥
ପ୍ରଭୁ ନିଯୋଗକୁ ନିତ୍ୟେ ସୁମରି । ଦୟା କ୍ଷମାକୁ ଯେ ଥିବେ ଆଚରି ॥
ସମତା ଭାବେ ସବୁ ହରି ମୟେ । ବିକାର ନ ଧରେ ନାହିଂ ସଂଶୟେ ॥
ଯେମନ୍ତ ଭାବେ ଯଉଂ ଜନ ଥାଇ । ନିରାକାର ମନ୍ତ୍ରେ ସେ ଭାଗୀ ହୋଇ ॥
ପ୍ରଭୁଙ୍କ ସୁଦୟା ହୋୟେ ତାଠାରେ । ଯାହା ବାଞ୍ଛେ ମନେ ଖଟେ ପୟରେ ॥
ଯେମନ୍ତ ଭାବେ ନିରାକାର କହି । ବିଧିପୂର୍ବ କରି ଥିବଟି ଦେଇ ॥
ଯେଥିରେ ଦୋଷ ନାହିଂ ରାମଦାସ । ପ୍ରଭୁଙ୍କ ଆଗ୍ୟାଂ ନ ମେଣ୍ଟଇ ଶିଷ୍ୟ ॥
ଯେ ଗୁରୁ ଦେଲା ତତ୍ତ୍ୱ ନିରାକାର । ତାରେ ଶରଣ ମୁହିଂ ଶତେବାର ॥
ସେ ଗୁରୁଆଗ୍ୟାଂ ମୁଂ ଯେବେ ଲଂଘଇ । ଦରିଦ୍ର ବ୍ୟାଧି ଆପଦ ପଡ଼ଇ ॥
ଅନ୍ଧ ବଧିର ବଢୁଥାଏ ରଣ । ଜନ୍ମେ ଜନ୍ମେ ବିଷ୍ଟୁଦ୍ୱାରେ କଷଣ ॥
ଏମନ୍ତ ଗୁରୁ ଭାଗ୍ୟ ଥିଲେ ପାଇଂ । ତିନି ସସ୍ରରେ ଜଣେ ସେ ଅଟଇ ॥
ରାମଚନ୍ଦ୍ର ମୋ ଆତ୍ମା ଅଟେ ସେହି । ଅମର ମଣ୍ଡଳେ ସଙ୍ଖୁଳା ପାଇ ॥
ଜନ୍ତୁପତିର ଯେ ନ ଥାଇ ଅଧି । ବିଷ୍ଣୁ ଦୁଆରେ ସେ ସଙ୍ଖୁଳା ବିଧି ॥
ତାଙ୍କ ଦ୍ରଶନେ ସର୍ବ ଦୁଃଖ ନାଶେ । ନିର୍ମଳ ଭକ୍ତି ଆପଦ ବିନାଶେ ॥
ପ୍ରଣାମ କରି ଦଣ୍ଡ ପ୍ରାୟେ ହୋଇ । କାକୁସ୍ତ ବାକ୍ୟ କହଇ ବୁଝାଇ ॥
ଅମାୟା ଅକ୍ରୋଧ ହରଷ ଚିତ୍ତ । ନିରତେ ହେଉଥିବ ପ୍ରଣମିତ ॥

ଆଗ୍ୟାଂକୁ ଅନୁସରି ଥିବ ପ୍ରତି । ଭୟ ଥିବ ଯେବେ ଜନ୍ତୁପତିକି ॥
ତାଙ୍କ ମଙ୍ଗଳ ନିରତେ ବାଞ୍ଛିବ । ଅପୂର୍ବ ଦ୍ରବ୍ୟ ତାଙ୍କୁ ସମର୍ପିବ ॥
ଯେମନ୍ତ ଭାବେ ଯଉଂ ଜନ ଥିବ । ରାମଚନ୍ଦ୍ର ଭକ୍ତ ମଧ୍ୟେ ରହିବ ॥
ଏ ଘୋର କଳି ନ କରଇ ଥୟେ । ଗୁରୁଶିଷ୍ୟେ ଭେଦକରେ ଅନ୍ୟାୟେ ॥
ଅବିଶ୍ୱାସ ହେବ ସାଧୁଙ୍କ ବାଣୀ । ଉପହାସ୍ୟ ପ୍ରାୟେ ମଣିବେ ପ୍ରାଣୀ ॥
ଏଥିକି ତଲେକରି ରାମ ଦାସ । ନିରାକାର ତୁ ନ କର ପ୍ରକାଶ ॥
ବାରମ୍ବାର ତୋତେ କହୁଛି ବାରି । ଉତ୍ତମ ଶିଷ୍ୟେ କହିବୁ ବିଚାରି ॥
ପାଇଲା ଯେହି ଗୁପତଟି ସେହି । ଆଉ ଆନରେ ପ୍ରୟୋଜନ ନାହିଂ ॥
ଗଙ୍ଗାନୀର ଛାଡ଼ି କୂପ ଜଳରେ । ସୁବର୍ଣ୍ଣ ଛାଡ଼ି ତମ୍ବାକୁ କେ ଧରେ ॥
ଅମୃତ ଛାଡ଼ି ବିଷ କେ ପିଅଇ । ବିରଜା ଦ୍ୱାରେ ସଙ୍ଖାଳିଟି ସେହି ॥
ନିରତେ ନିରାକାରକୁ ତୁ ଧାୟ । ନିର୍ମଳ ଶୁଦ୍ଧା ଭକତି ତୁ ପାଅ ॥
ବାଞ୍ଛା ଯାହାକରୁ କରିବା ସିଦ୍ଧି । କାଲି କହିବା ଉପଦେଶ ବିଧି ॥
ଏତେ କହି ହରି ହରି ବୋଇଲେ । ହରଷେ ନିଜ ମନ୍ଦିରକୁ ଗଲେ ॥
ହରି ଭଗତ ଚରଣେ ମୋ ଆଶ । ଶରଣ ମାଗଇ ଅଚ୍ୟୁତ ଦାସ ॥

ଇତିଶ୍ରୀ ଶୂନ୍ୟସଂହିତାୟାଂ ଗୁରୁ ଶିଷ୍ୟ କଥା ପ୍ରସଙ୍ଗେ ଗ୍ୟାଂନଯୋଗ ତତ୍ତ୍ୱ କଥନେ ପ୍ରଧାନ ମନ୍ତ୍ର ବିଧି ଉପାଖ୍ୟାନେ ନାମ ତ୍ରୟୋଦଶ ଅଧ୍ୟାୟଃ ।

## ଚତୁର୍ଦ୍ଦଶ ଅଧ୍ୟାୟ

ପ୍ରଭାତରୁ ନିତ୍ୟକର୍ମ ସାରି ରାମ ଓଳଗ କରଇ ପାୟେ ।
ସଞ୍ଜା ସମର୍ପିଣ ପୂଜା ନଇବେଦ୍ୟ ଦେଇଣ କାକୁସ୍ତେ କହେ ।
ହେବ୍‌ ଆଗ୍ୟାଂ ଆଜ ଶ୍ରୀମୁଖେ ତୁମ୍ଭର କହିଛ ହେ ମହାପ୍ରଭୁ ।
ଟହ ଟହ ହୋଇ ହସିଣ ବୋଇଲି ଭଲା ପଚାରିଲୁ ବାବୁ ।
ତୋ ମନ ରସିଲା ବାସନା ଫିଟିଲା ଅନ୍ଧକାର ହେଲା ନାଶ ।
ଜୀବ ଉଦ୍ଧାରକୁ ଉପଦେଶ ଦେବା ହେତୁ ଦିଅ ରାମଦାସ ।
ଏ କାୟା ଗୋଟି ଅକାରଣେ ଯିବଟି ବେଳୁଂ ଗୁରୁପାଦେ ସେବ ।
ଯିବା ଆସିବା ବେଳରେ ତାରତମ ଜନ୍ତୁପତି ନ କରିବ ।
ଦହିଲେ ସୁବର୍ଣ୍ଣ ଯେହ୍ନେ ତାରତମ ବେଳୁଂ ବେଳ ପ୍ରକାଶଇ ।

ଶୂନ୍ୟକାୟକୁ ଗୁରୁ ଆଗ୍ୟାଂ ଅନଳ ଦହିଲେ ନିର୍ମଳ ହୋଇ ।
ଯେ କାୟାକୁ ଦହ ନିର୍ମଳ ତୁ ହୁଅ କାଳେ କାଳେ ରହିଥାଅ ।
ଜନ୍ତୁପତିକି ଭୟ ତୋର ନ ଥାଉ ଅଚଳ ସମ୍ପଦ ପାଅ ।
ଶୁଣି ରାମଦାସ ହୋୟେ ଉଲ୍ଲସିତ ଆନନ୍ଦେ ପଡ଼ଇ ପାୟେ ।
ହରି ହରି ବୋଲି ପ୍ରଦକ୍ଷିଣ କରି ଆଞ୍ଜୋଳି ସୁବର୍ଣ୍ଣ ଦିୟେ ।
ପୂର୍ବମୁଖ ହୋଇ ବସି ରାମଦାସ ଶ୍ରୀଗୁରୁ ଚରଣେ ପଡ଼ି ।
କହ ଗୁରୁଦେବ ଉପଦେଶ ବିଧି ସଂଶୟେ ଯାଉ ମୋ ଛାଡ଼ି ।
ହସିଣ ଶ୍ରୀଗୁରୁ କହିଲେ ରେ ବାବୁ କହିଦେବା ଯଥାବିଧି ।
ଗୁପତ କର ପ୍ରଘଟ ନକରି ପାରୁ ଯେବେ ଯେହା ସାଧି ।
ଗୁରୁଶିଷ୍ୟ ଦୁଇ ପୂର୍ବମୁଖ ହୋଇ ବସିଲେ ଗୁପତ ଥାନେ ।
ଆଦ୍ୟେ ପଞ୍ଚବର୍ଣ୍ଣ ପୁଷ୍ପକୁ ଥାପିବ ଧୂପ ଦୀପ ଗୁଆ ପାନେ ।
ଅଗୁରୁ ଚନ୍ଦନ ଘଷିଣ ଯେ ପୁଣ ପୁଣ୍ୟୋଦକେ ଗଙ୍ଗାନୀର ।
ମିଶାଇ ଏ ତିନି ଏକତ୍ୱ କରିବ ରଖିବ ଯନ୍ତ୍ର ପାଖର ।
ଚତୁରଙ୍ଗୁଳିରେ ସୋବର୍ଣ୍ଣ କଲମ ପ୍ରାୟେ କରିଥିବ ରାମ ।
ଅଗର ଚତ୍ୱ ଅଙ୍ଗୁଳିରେ କରିଥିବ ଚଉଅଂଶୀ ବାସ ତମ ।
ରୋପ୍ୟ କଲମ ଚତୁ ଅଙ୍ଗୁଳିରେ ଆହୁରି କର ତୁ ବାବୁ ।
ତିନି କଲମେ ତ୍ରିତାପ ନାଶଯାଏ କାଳକୁ ଘଉଡ଼ିଦେବୁ ।
ଆଦ୍ୟେ ଖଡ଼ିଧରି ଭୂମିରେ ଅନାମ ବ୍ରହ୍ମକୁ ଥାପନା କରେ ।
ତହିଂ ତଳେ ନାମବ୍ରହ୍ମକୁ ଦେଇଣ କାମବୀଜ ଓଂମତିରେ ।
ଯେମନ୍ତ ବିଧିରେ ଶୂନ୍ୟଯନ୍ତ୍ର ଥାପି ପୂଜିବ ଯଥାଶକ୍ତିରେ ।
ଅମଳାଣ ବସ୍ତ୍ର ଢାଙ୍କି ତଥିପରେ ପ୍ରଦକ୍ଷିଣ ତିନିବାରେ ।
ଅଙ୍ଗ ଶୋଧି ଗୁରୁ ଶୂନ୍ୟଯନ୍ତ୍ର ପରୁ ଶୋଧିବ ଶିଷ୍ୟ ଅଙ୍ଗରୁ ।
ସ୍ଥାନେ ଶୂନ୍ୟଯନ୍ତ୍ର ଥାପନା କରିଣ ଶୂନ୍ୟକାୟା ଶୂନ୍ୟ ପରୁ ।
ଶୂନ୍ୟକାୟାରେ ଶୂନ୍ୟଯନ୍ତ୍ର ସ୍ଥାପନ କରନ୍ତି ଯେ ଯଉଂ ଗୁରୁ ।
ପରେ ତରାଇ ଆପଣେ ତରିଯାଇଂ ଏ ମାୟା ଭବସାଗରୁ ।
ବ୍ରହ୍ମ ତାଳୁକାରେ ଅନାମ ବ୍ରହ୍ମକୁ ଥାପିବ ସୁସଞ୍ଚ କରି ।
ପଞ୍ଚବୀଜ ପଞ୍ଚମାତ୍ରା ପଞ୍ଚଭୂତ ସେଠାବରୁ ସବୁ ଛରିଂ ।
ସୋଅର୍ଣ୍ଣ କଲମେ ସୁସଞ୍ଚ କରିଣ ଅନାମ ବ୍ରହ୍ମ ସ୍ଥାପନ ।
ଅଗୁରୁ ଚନ୍ଦନେ ଲେଖନ କରିବ ବ୍ରହ୍ମ ତାଳୁକାର ଥାନ ।

ଦେଉଳ ପୂଜାଟି ଦେବତା ଅପୂଜା ସେଠାବରେ ରାମ ଜାଣ ।
ଛରାଛର ହୋନ୍ତି ସକଳେ ସେଠାରୁ ଅଦୃଷ୍ଟି ସେହୁ ଅଗ୍ୟାଂନ ।
ବ୍ରହ୍ମାଣ୍ଡ ଭାଣ୍ଡ ତାହାକୁଟି ବୋଲନ୍ତି ସ୍ୱାୟଂ ବ୍ରହ୍ମ ଅଛି ଯହିଂ ।
ଭାଣ୍ଡ ଫୁଟିଲେ ବ୍ରହ୍ମାଣ୍ଡ ନାଶଯିବ ଏ କାୟା ଲୋଟିବ ମହୀ ।
ଯଉଂ ପ୍ରଭୁ ଛନ୍ତି ସେଠାବେ ହୋ ରାମ ତାହାକୁ ମୋହର ଚିତ୍ତ ।
ଜନ୍ମେ ଜନ୍ମେ ମୁହିଂ ଶରଣ ତାହାକୁ ଭଣଇ ଦୀନ ଅଚ୍ୟୁତ ।

ଇତିଶ୍ରୀ ଶୂନ୍ୟସଂହିତାୟଂ ଗୁରୁ ଶିଷ୍ୟ ବୋଧନେ ବ୍ରହ୍ମଂ ଯନ୍ତ୍ରଂ
ଚତୃବିଧି କଲମ କଥନେ ନାମ ଚତୁର୍ଦ୍ଦଶ ଅଧାୟଃ ।

## ପଞ୍ଚଦଶ ଅଧ୍ୟାୟ

ରାମଚନ୍ଦ୍ର ଦାସ ଶୁଣିଣ ଆନନ୍ଦ ହୋଇ ପୁଣ ପଚାରଇ ।
ଶୁଣିଲି ଶ୍ରୀକୃଷ୍ଣ ଅପୂର୍ବ ମହିମା ବିଜେ କରିଛନ୍ତି ଯହିଂ ।
ଶୁଣ ରାମଦାସ ଅତିହିଂ ରହସ ଅସମ୍ଭବ ଦେବା କହି ।
ଲଲାଟ ଚକ୍ର ଭ୍ରୂଲତା ପରେ ନାମବ୍ରହ୍ମକୁ ବସାଅ ନେଇ ।
ଲିହିବ ନାମବ୍ରହ୍ମ ବାସ ଚନ୍ଦନେ ସପ୍ତରେଢ଼ ତହିଂ ନେଇ
ଆଠ ଛଡ଼କ୍ଷରେ ବିଜେ କରିଛନ୍ତି ହର ଡମ୍ବରୁ ବଜାଇ ।
ଜ୍ୟୋତିରାନନ୍ଦ ବିଜେ ପ୍ରମବ୍ରହ୍ମଂ ପଞ୍ଚକଳା ଦିବ୍ୟ ଜ୍ୟୋତି ।
ଅନନ୍ତ ଜଳ ମଧ୍ୟ ବିଜେ କିଶୋର ନିତ୍ୟେ ରାହାସ ରଚନ୍ତି ।
ଭୂଲତା ପରେ କାମବୀଜ ବସାଇ ରୋପ୍ୟ କଲମ ଯେ ଧରି ।
ଯଉଂ ଥାନେ ନିତ୍ୟ ଲୀଳା ପରକାଶି ବିଜେ କରିଛନ୍ତି ହରି ।
କଉତୁକ ଲୀଳା କଲେ ନାନା ଖେଳା ସଂସାର ରଞ୍ଜନା ପାଇଂ ।
ପରଟେ ହେଲେ ଦିବ୍ୟରୂପ ଦେଖିବୁ ଭବଭୟେ କ୍ଷୟ ଯାଇ ।
ନାସିକାକୁ ନେଇ ପ୍ରଣବକୁ ଦେଇ ଲେଖିବ ଯେହି କଲମେ ।
ଶୂନ୍ୟକାୟାକୁ ଶୂନ୍ୟଯନ୍ତ କି ଶୋଭା ଦିଶିବଟି ତାରତମେ ।
ପଞ୍ଚ ମହାପାପ କ୍ଷୟେ ଯିବ ଅଙ୍ଗୁ ଦିବ୍ୟ ଅଙ୍ଗ ପାଲଟିବ ।
ଶ୍ରୀହରି ସେବକ ବୋଲି ଜନ୍ତୁରାଣ ବିଷ୍ଣୁରେ ଗଣାଇ ଦେବ ।
ଶୂନ୍ୟଯନ୍ତ୍ରରୁ ନିରାକାର ମନ୍ତ ଶ୍ରୀଗୁରୁ ଭେଦାଇ ଦେବ ।

ବତିଶି ଅକ୍ଷର ଅଟେ ନିରାଧାର ହସ୍ତ ମାରି ଚିହ୍ନାଇବ ।
ଶିଷ୍ୟ ଅଙ୍ଗୁ ପାପ ଦଶ ସସ୍ର ନାଶ ଗରୁ ଅଙ୍ଗେ ବିଶ୍ରାମଇ ।
ଗୁରୁ ବ୍ରହ୍ମବେତା ଶୂନ୍ୟମନ୍ତ୍ର ଚେତା ବ୍ରହ୍ମ ଗୁଣ ସେହିଠାଇଂ ।
ତେବେ ସେ ଗୁରୁ ତରଇ ଭବାର୍ଣ୍ଣବୁ ନୋହିଲେ ପାଅଇ କ୍ଲେଶ ।
ଗୁରୁ ନାଶଯାଇ ବହୁ କ୍ଲେଶ ପାଇ ଆପଣା ଅର୍ଜିଲା ଦୋଷ ।
ଜନ୍ତୁପତି ତାକୁ ତମ ଯେ କରଇ କିମ୍ପାଇ ଯେହା ତୁ କଲୁ ।
ପିମ୍ପୁଡ଼ି ପର୍ବତ ମସ୍ତକେ ବହିଣ ସମୁଦ୍ରେ ନାଶକୁ ଗଲୁ ।
ଗୁରୁ ସିନା ଜାଣେ ବ୍ରହ୍ମ ଗୁଣ ଗ୍ୟାଂନ ନିରାଧାର ସାରସ୍ୱତ ।
ଯେକବିଂଶ ବାରେ ଦଶ·ସସ୍ର ପାପରାଶି ହୋଯେ ବିନଶ୍ୱତ ।
ରାମଚନ୍ଦ୍ର ଦାସ ହେତୁକରି ଘେନ ଗୁରୁ ଅଗ୍ନିସମ ଯହିଂ ।
ନିରାକାର ମନ୍ତ୍ର ଭେଦ ଯେହୁ ଜାଣେ ପ୍ରଭୁ ସୁଦୟା ତା ଠାଇଂ ।
ତାଙ୍କୁ ଦେଖିଲେ ପ୍ରଣାମ କରୁଥିବ ସନ୍ତୋଷେ ପାଦେ ଖଟିବ ।
ଆପଣା ଅର୍ଜିଲା ଶିରୀ ସଅଂପିଣ ବିନୋଇ ହୋଇ କହିବ ।
ସନ୍ତୋଷେ ଯାହା ଶ୍ରୀମୁଖେ ଆଗ୍ୟାଂ ଦେବେ ଅବଶ୍ୟ ଫଳିବ ତାହି ।
ଅଚଳ ଶିରୀ ଅଳପେ ପରାପତ ପ୍ରଭୁ ସୁଦୟାଟି ଯହିଂ ।
ଯେ ଘୋର କଳିକି ମହାଭୟେ କରେ ନ ପୁଣ ଅନ୍ୟାୟ କରେ ।
ଦମ୍ଭ ମୋହ ଅହଂକାର ଧରି ପୁଣ ଅମାନନା ଅବିଚାରେ ।
ନଷ୍ଟ ହେଲେ ସେହି ଭ୍ରଷ୍ଟ ହେବ ଦେହୀ ପାଇବ ବହୁତ କ୍ଲେଶ ।
ଲକ୍ଷ୍ମୀରେ ଦୋରେହା ବିଷ୍ଣୁରେ ଅସ୍ନେହା ହୋଇବଟି ରାମଦାସ ।
ସର୍ବେ ଗ୍ରନ୍ଥେ ମୁଂ ଗୁପତ କରିଅଛି ନିରାକାର ମନ୍ତ୍ର ଗୋଟି ।
ତିନି ସସ୍ର ଭକ୍ତ ପାଇଂ ମୁଂ ରଖିଛି ଶୂନ୍ୟସଂହିତା ବାଛିଟି ।
ବୀଜବ୍ରହ୍ମ ଚିହ୍ନି ପଞ୍ଚତତ୍ତ୍ୱ ଗ୍ୟାଂନୀ ସପ୍ତ ପଞ୍ଚାତ୍ମିକ ଜାଣେ ।
ସେହି ସେ ଭଗତ ଯେ ଗ୍ରନ୍ଥ ଚିହ୍ନିବ ତିନି ସସ୍ରେ ସେହି ଜଣେ ।
ଆଗେ କହିବା ଯେ ଦୃଷ୍ଟାନ୍ତର ଦେବା ଭଗତ ଚିହ୍ନ କହିବା ।
ଆମ୍ଭ ଚରଣକୁ ଛୁଇଂଥାଅ ରାମ ଗୁପତ ନ କରୁ ଅବା ।
ବୀଜରେ ଯଉଂ ପ୍ରଭୁ ବିଜେ କରିଛି ଅକ୍ଷରେ ହୋଇ ଗୁପତ ।
ଜନ୍ମେ ଜନ୍ମେ ମୁହିଂ ଶରଣ ତାହାରେ ଭଣଇ ଦୀନ ଅଚ୍ୟୁତ ।

ଇତିଶ୍ରୀ ଶୂନ୍ୟସଂହିତାୟାଂ ଶ୍ରୀଗୁରୁ ଶିଷ୍ୟ ଉପଦେଶ କଥନେ
କଳମ ବିଧି ବିଧାନ ବିଚାରଣେ ନାମ ପଞ୍ଚଦଶୋ ଅଧ୍ୟାୟଃ ।

# ଷୋଡ଼ଶ ଅଧ୍ୟାୟ

ଶୁଣ ରାମଦାସ ଫେଡ଼ିବା ସନ୍ଦେଶ କହିଦେବି ତୋତେ ମୁହିଂ ।
ଗୁପତ ପ୍ରକଟ କରି ବେଳେବେଳେ କହି ଦେଉଥାଇଂ ମୁହିଂ ।
ତୁ ଯେଣୁ ଭଗତ ଶ୍ରୀହରି ସେବକ ମହିଂମା ନିଅତ ତୋର ।
ତେଣୁ ତୋହୋ ଆଗେ ଗୁପତ କହଇ ଯେଣୁ ଆତ୍ମା ଅଟୁ ମୋର ।
ଅତିହିଂ ରହସ୍ୟ ଶୁଣ ରାମଦାସ ଅତିହିଂ ଗୁପତ ସନ୍ଧି ।
ସୁଗୁରୁ ଶୁଣିଣ ଜାଣି ବନ୍ଦିପାରେ ନିରାକାର ପରସିଦ୍ଧି ।
ନିରାକାର ମନ୍ତ୍ର ଯନ୍ତ୍ର ତନ୍ତ୍ର ବ୍ରହ୍ମ ଗୁଣାଣ ଶ୍ରୀହରି ଧ୍ୟାନ ।
ଗୁରୁଙ୍କର କୋଠ ଗୁପତ ସନ୍ଧି ଗ୍ୟାଂନ ଜାଣନ୍ତି ସୁଗ୍ୟାଂନୀ-ଜନ ।
ଦ୍ୱାତ୍ରିଂଶ ଅକ୍ଷର ନିରାକାର ମନ୍ତ୍ର ମାତ୍ରା ପଞ୍ଚଦଶାକ୍ଷର ।
ଅଣାକାର ବ୍ରହ୍ମ ବିଜେ କରିଛନ୍ତି ନାମକୁ ଘେନି ସଙ୍ଗର ।
ତାହା କହିବା ହୋ ବରଜନନ୍ଦନ ହେତୁ ଥାଅ ତୁହି ଦେଇ ।
ନିରାକାର ମନ୍ତ୍ରେ ବ୍ରହ୍ମର ଗୁଣାଣ କହିବା ସଂଶୟେ ଫେଇ ।
ବୋଲ ତୁ ହୋ ରାମ ଅଂ ଅହକ ଓଂ ମହାଶୂନ୍ୟ ଶବ୍ଦ ନାମ ।
କାମବୀଜ ତଳେ ପ୍ରଣବ ରହିଛି କରେ କୋଟି ପରଣାମ ।
ଓଲଟିଣ ନାମ ମହାଶୂନ୍ୟେ ଲୀନ ଉଭବ ସଂଗ୍ରହ କରେ ।
ବ୍ରହ୍ମଗୁଣ ରାମ ବୋଲି କ୍ଲୀଂ ପୁଣ ନିତ୍ୟନୀଳା ଏହିଠାରେ ।
ନାମେ ବୋଲି ହରଂ ହରା ହରୁ ହର ହରେ ହରି ହରୋ ପୁଣ ।
ଅଂ ଅ ଶବଦ ମିଶି ଅଲେଖରେ ମାତ୍ରାକୁ ଘେନି ଭ୍ରମଣ ।
ଆବି ଦେଓ ମାତା ଶୂନ୍ୟ ବରହକ ହକ ଶୂନ୍ୟକୁଟି କହି ।
ନିରାକାର ଯେହି ଅଟନ୍ତି ହୋ ରାମ ଅକାର ବଟକୁ କହି ।
ଶିବଂ ବୋଲିଣ ଯେ ମାତ୍ରାକୁ କହୁଛି ଶବଦଟି ଅଟେ ଅଂ ଅ ।
ବାରି କହିଦେଲୁଂ ଆହୋ ରାମଦାସ ସଂଶୟେ ତୋହୋର ଦହ ।
ନାମ ଥିଲେ ସିନା ରୂପକୁ ଚିହ୍ନିବୁ ଅଣାକାରେ ହେବୁ ଠୁଳ ।
ଧ୍ୱନି ଅନହତ ବାଜଣା ବାରିବୁ କାଟିବୁ ଅକାଳ କାଳ ।
ଯେକବିଂଶ ବାର ଶୁଣ ରାମଦାସ ଗୁରୁ ଅଗ୍ରୁ ପାପ କ୍ଷୟେ ।
ଦଶ ସସ୍ର ପାପରାଶି ବିନେଶ୍ୱତ କାଳ ଘୁଞ୍ଚ ପାପ କ୍ଷୟେ ।

ଜନ୍ତୁପତିରେ ତାରତମ ନୋହିବ ନାଶକର ଭୟ ଯାଉ ।
ଗୁରୁଶିଷ୍ୟ ଭବସାଗରୁ ତରିଣ ନିରାକାରେ ଲୀନ ହେଉ ।
ହେବ ମୋତେ ଆଗ୍ୟାଂ ଶୁଣ ଆହୋ ରାମ ଆଦିମାତା ଛନ୍ତି କହି ।
ପାଦପଦ୍ମେ ଚିତ୍ତ ଥିବାରୁ ନିୟତ ମୂଢ଼ ଅଚ୍ୟୁତ କହଇ ।

ଇତିଶ୍ରୀ ଶୂନ୍ୟସଂହିତାୟାଂ ଶ୍ରୀଗୁରୁ ଶିଷ୍ୟ ବୋଧନେ ଯେକାକ୍ଷର
ବ୍ରହ୍ମଂ ଗୁଣାଣ ଗୁପ୍ତକଥା କଥୋପକଥନେ ନାମ ଷୋଡ଼ଶ ଅଧ୍ୟାୟଃ ।

## ସପ୍ତଦଶ ଅଧ୍ୟାୟ

ରାମଚନ୍ଦ୍ର ଦାସ ହୋଇ ହରଷିତ ପୁଣ ପୁଣ ପଚାରଇ ।
କହ ମହାପ୍ରଭୁ ପ୍ରଭୁଙ୍କ ଭଗତ ତୁମ୍ଭେ ରଖିଅଛ କାହିଂ ।
ତୁମ୍ଭକୁ ଗୋଚର ଅଟେ ନିରାଧାର ନିରଞ୍ଜନ ଆତ୍ମା ଯେଣୁ ।
ଅଦୃଶ୍ୟରୁ ଦୃଶ୍ୟ ହୋୟେ ଯୋଗଲଏ ଅନ୍ତର୍ଯ୍ୟାମୀ ନାଥ ଯେଣୁ ।
ଅନେକ ସୁଦୟା ଅଟେ ପ୍ରଭୁଙ୍କର ଅନେକ ମହିଂମା କହ ।
ଅନ୍ତେକାଳରେ ମିଶିଣ ଯେ ତୁମ୍ଭେ ଗୁପ୍ତହୋଇ ପୁଣ ରହ ।
ଆଚୁମ୍ବିତ ଆଲୋକିତ କହିଲ ଯେ କେ ଅବା ଶିଖାଇଦେଲା ।
ଅନ୍ତର୍ଯ୍ୟାମୀ ନାଥ କୁରୁଣାରୁ ସିନା ଅଦୃଶ୍ୟ ଦୃଶ୍ୟ ହୋଇଲା ।
ଶ୍ରୀମୁଖେ ବୋଲିଛ ବାରସସ୍ର ଭକ୍ତେ ତିନିସସ୍ର ନିରାଧାର ।
କିୟେ କାହିଂଛନ୍ତି କି ଲୀଳା କରନ୍ତି କହ ଯେଥିର ବିଚାର ।
ଯେତେ କହିଣ ପ୍ରଦକ୍ଷିଣ କରିଣ ଲବଣୀ ମେଞ୍ଚାଏ ଥୋୟେ ।
ଶରଣ ଶରଣ ଚରଣ ଧରିଣ ବିନୋଇ ହୋଇଣ କହେ ।
ଆନନ୍ଦେ ରାମକୁ କୋଳରେ ଧରିଣ ବୋଇଲେ ଶୁଣରେ ବାବୁ ।
ଆମ୍ଭ ଆତ୍ମା ତୁହି ତୋର ଆତ୍ମା ମୁହିଂ ତୁହି ସିନା ମୋର ସବୁ ।
ତୋହୋଠାରେ ଯହୁଂ ପ୍ରଭୁଙ୍କ ସୁଦୟା ଅଛିଟି ହୋ ରାମଦାସ ।
ତେଣୁ ତୋହଠାରେ ଗୁପ୍ତ କଥାମାନ କରୁ ଯେ ଆଉଂ ପ୍ରକାଶ ।
କହିଦେବା ତୋତେ ଶୁଣ ଏକଚିତ୍ତେ ଶ୍ରୀକୃଷ୍ଣ ଭଗତ ଗୁଣ ।
ବାର ସସ୍ରେ ସାରସ୍ୱତ ତିନିସସ୍ର ଆଉ ଯେତେ ଅକାରଣ ।
ଆଦିମାତାଙ୍କର ପାଇଂ ଯେ ଶ୍ରୀହରି ବେଲୁ ଜାଣି ରଖିଛନ୍ତି ।
ତରକ ତେରିଆ ମିଛୁଆ ମାଛୁଆ ଅହଂକାରୀ ଯେ ଅଟନ୍ତି ।

କୁତର୍କୀ ଦାମ୍ଭିକୀ ଲମ୍ପଟୀ ଅଦାତା ଅଶଉଚୀ ଯେ ନିର୍ଦ୍ଦୟା ।
ନବସସ୍ତ୍ର ଭକ୍ତ ଯେତେ ଗୁଣ ଘେନି ସଂସାରେ ଦେଖନ୍ତି ମାୟା ।
ଯେମାନେ ପ୍ରବଳ ହୋଇବେ ଦୁର୍ବଳ ଶ୍ରୀକୃଷ୍ଣ ମହିଂମା ଏଡ଼ି ।
ନାଗାନ୍ତ ବିଦ୍ୟା ପ୍ରଛନ୍ନେ ଭଗତି ଲେଶ ନ ପାଇବେ ଲୋଡ଼ି ।
ଢମାଳି ଗୀତ ଗାଇଣ ହରଷିତ ଲକ୍ଷଣା ଦେଇ କହିବେ ।
ବାରଣ ବେଳେ ମହାପ୍ରଭୁ ତାହାଙ୍କୁ ବାଛି ଆଗେ ଯାଚିଦେବେ ।
ଶୁଣିଲୁଟି ରାମ ହେତୁକରି ମନ ଶ୍ରୀକୃଷ୍ଣେ ପଶ ଶରଣ ।
ଦମ୍ଭ ମୋହ ଅହଂକାର ଛାଡ଼ି ସବୁ ଶ୍ରୀହରି ନାମ ବଖାଣ ।
ଶ୍ରୀକୃଷ୍ଣ ଚରଣେ ଶରଣ ପଶିଲେ କାଳ ଘୁଞ୍ଚି ପଳାଇବ ।
ଯାମର ଅଚ୍ୟୁତ ପାଦପଦ୍ମେ ଚିତ୍ତ କାଳେକାଳେ ରହିଥିବ ।

ଇତିଶ୍ରୀ ଶୂନ୍ୟସଂହିତାୟାଂ ଶ୍ରୀଗୁରୁ ଶିଷ୍ୟ ବୋଧନେ
ଭକ୍ତି ଗୁଣ କଥନେ ନାମ ସପ୍ତଦଶ ଅଧ୍ୟାୟଃ ।

## ଅଷ୍ଟାଦଶ ଅଧ୍ୟାୟ

ରାମଚନ୍ଦ୍ର ଦାସ ହୋଇଣ ହରଷ ପୁଣ ପୁଣ ପଚାରଇ ।
ତିନି ସସ୍ତ୍ର ନିଜ ଭଗତ ତୁମ୍ଭର କହ ରଖିଅଛ କାହିଂ ।
କଉଂ ଭାବେ ଥାନ୍ତି କି ତତ୍ତ୍ୱ ଜାଣନ୍ତି କିରୂପେ ହରି ଭଗତ ।
କହ ପ୍ରଭୁ ଏବେ ସଂଶୟ ମୋ ଯାଉ ହୋଇବି ମୁହିଂ କୃତାର୍ଥ ।
ଆପଣେ ତରିବି ଦୁରିତ ହରିବି ହେତୁ ହେବ ମୋର ମନ ।
ଦୀନ ଅଚ୍ୟୁତ ଯେ ହସିଣ କହନ୍ତି ରାମ ଥିର ହୋଇ ଶୁଣ ।
ଥଏ କଲେ ସିନା ସୁମନ ସୂତ୍ରରେ ବାନ୍ଧି ଦେବି ତୋତେ କହି ।
ବେଳକୁ ତୋହର ସଂଶୟ ନଥିବ ପରକି ଆପଣା ତହିଂ ।
ଯେତେ କହିଣ ଥିରହୋଇ ବସିଲେ ପାଦପଦ୍ମେ ଚିତ୍ତ ଦେଇ ।
ତ୍ରିକୂଟ ସନ୍ଧି ତ୍ରିବେଣୀ ଧାରେ ନେଇ ସୁମନକୁ ଯେ ଲଗାଇ ।
ବସିଲେ ଯେ ପୂର୍ବହେତୁ ଯେତେ ଶବ୍ଦ ଅଦୃଶ୍ୟ ହୋଇଲା ଦୃଶ୍ୟ ।
ଆନନ୍ଦ ପୁଲକ ହୋଇଣ କହିଲେ ଶୁଣ ଏବେ ରାମଦାସ ।

ପ୍ରିୟ ଶିଷ୍ୟ ମୋର ପ୍ରଭୁଙ୍କ ଭଗତ ମହିମା କ୍ରିୟା ବିଚାର ।
ସତ୍ୟଶୀଳ ଦାତା ପରେ ଉପଗାରି ଶ୍ରୀକୃଷ୍ଣେ ଭକ୍ତି ଅପାର ।
ଉଦାସୀଙ୍କ ଚିତ୍ତ ବାଉଳିଙ୍କ ମତ ନିର୍ମାୟା ଅଟଇ ଯେହି ।
ତିନିସହସ୍ରେ ଯେକ ଜଣ ଅଟେ ସେହି ଆବରହିଂ ଦେବା କହି ।
ସୁରବନ୍ତ ହୋଇ ସାଂଗ୍ରାମେ ଝାସଇ ଜନକୁ ନଥାଏ ଭଏ ।
ମୁଣ୍ଡକାଟ ଯେହୁ ଶରଣ ରଖଇ ତିନିସହସ୍ରେ ଜଣେ ସିଏ ।
ବୀଜତତ୍ତ୍ୱ ଇଣେ ମହିମା ବଖାଣେ ହରି ହରି ବୋଲୁଥାଇ ।
ହରି ଭଗତଙ୍କ ପାରୁଶରେ ରହେ ତିନିସହସ୍ରେ ଜଣେ ସେହି
ନାମତତ୍ତ୍ୱ ଚିହ୍ନି ଆତ୍ମାତତ୍ତ୍ୱ ଗ୍ୟାଂନୀ ନାମବ୍ରହ୍ମେ ଯାର ଆଶ ।
ବ୍ରହ୍ମଦରଶୀ ସେହି ସିନା ଅଟଇ ପ୍ରଭୁଙ୍କର ନିଜ ଦାସ ।
ଅନାମ ଅନହତ ଯେହୁ ବାରଇ ଧ୍ୱନିକି କରଇ ଲୟେ ।
ସ୍ୱୟଂ ପ୍ରଭୁ ତାଙ୍କୁ ସୁଦୟା କରନ୍ତି ନାହିଂ ତାଙ୍କୁ କାଳଭୟେ ।
କମଳା ସନ୍ତୋଷେ ତାର ଗୃହେ ରହେ ଚଉବର୍ଗ ବନ୍ଧେ ତାର ।
ପଦ୍ମପତ୍ରେ ଯେହ୍ନେ ବାରି ନରହଇ ହେଉଥାଇ ଢଳ ଢଳ ।
ମଥୁରା କାଶୀ କେ ଗୋପପୁରୁ ଆସି କଳିରେ ଅଛନ୍ତି ଜନ୍ମି ।
ବାରଣ ବେଳେ ଚିହ୍ନାଚିହ୍ନି ହେବେ କେ କାହାର ଭ୍ରାତା ଭଗିନୀ ।
ତିନି ସହସ୍ର ଯେ ନାରୀ ତିନିଶତ ଜନମି ଅଛନ୍ତି ଜନ ।
ସାତ ପାଞ୍ଚ ସୁତ ଜନମ କରିବେ ବିଷ୍ଣୁରେ ଥିବଇଂ ମନ ।
ସ୍ୱାମୀ ସଉଭାଗୀ ହୋଇଥିବେ ଭୋଗୀ ବିଷ୍ଣୁ ସେବକେ ଆଧିନ ।
ଆତ୍ମାରାମକୁ ଯେକହିଂ ମଣୁଥିବେ ନାମତତ୍ତ୍ୱକୁ ଭଜନ ।
କମଳାଙ୍କ ଅଂଶୀ ଜନମିବେ ଆସି କଳିରେ ହେବେ ଉଦଏ ।
ବାରଣବେଳେ ଚିହ୍ନାଚିହ୍ନି କରିବେ ଆପେ ପ୍ରଭୁ ଦେବରାୟେ ।
ମଥୁରାରୁ ଆସି ଆପେ ବ୍ରହ୍ମରାଶି ବଉଧରୂପ କଳିରେ ।
ତିନିସହସ୍ରେ ନିଜ ଅଂଶ ତାହାଙ୍କର ତେଜିବେ ପ୍ରଭୁ କିପରେ ।
ସେ ପ୍ରଭୁ ଦୟାଳୁ ପରକୁହିଂ ପାଳୁ ନିଜ ଅଂଶ ନ ବିଚାରେ ।
ପାମର ଅଚ୍ୟୁତ ପାଦପଦ୍ମେ ଚିତ୍ତ ଭଣଇ ପଦ କମଳେ ।

ଇତିଶ୍ରୀ ଶୂନ୍ୟ ସଂହିତାୟାଂ ଶ୍ରୀଗୁରୁଶିଷ୍ୟ ବୋଧନେ
ବିଷ୍ଣୁ ଭକ୍ତ ଗୁଣ ପ୍ରକାଶ କଥନେ ନାମ ଅଷ୍ଟାଦଶ ଅଧ୍ୟାୟ ।

# ଊନବିଂଶ ଅଧ୍ୟାୟ

ରାମ ଦାସ ଶୁଣ ହେତୁ ମନେ ଘେନ କହିବା ଭଗତ ବାଛି ।
ତିନି ସସ୍ରେ ପାଞ୍ଚସାତ ହେତୁ ଦିଅଂ ଭଗତ ଅଛି ମୁଂ ରଖି ।
କରିବେଟି ନାମ ବଖାଣ କରିଣ ଅଣହେତୁ ହେତୁ ଦେବେ ।
ଅଣଅକ୍ଷର ମହିମା କହି ପୁଣ ପତିତ ଥୋକେ ତାରିବେ ।
ହୋଇଅଛି ଆଗ୍ୟାଂ ପ୍ରଭୁଙ୍କ ପ୍ରତିଗ୍ୟାଂ କରିବେ ସେହୁ ପ୍ରକାଶ ।
ଉତ୍ତମ ଶିଷ୍ୟେ ନାମତତ୍ତ୍ୱ ବୁଝାଇ ଜଗତେ କର ପ୍ରକାଶ ।
ଏମନ୍ତେ ଭଗତ ଛନ୍ତି ପଞ୍ଚାଶତ ଅଟନ୍ତି ବ୍ରହ୍ମଦରଶୀ ।
ବାଖ୍ୟାନ କରି ଜଗତକୁ ତାରିବେ ଗୁପତେ କାହିଂ ନ ମିଶି ।
ପଚାରିଲେ ଭୟେ ଲାଗଇ ସଂଶୟେ ଗୁପତକରି କହନ୍ତି ।
ଗୁରୁ ଆଗ୍ୟାଂକୁ କେମନ୍ତେ ପରକାଶ କରିବୁ ବୋଲି ଭାଳନ୍ତି ।
ଶାନ୍ତ ଶୀଳ ଧୀର ବିବେକ ବିଚାର ଅବିକାର ନ ଧରନ୍ତି ।
ପତିତ ଉଦ୍ଧାରି ଆପଣେ ଉଧୁରି ନାମବ୍ରହ୍ମ ଭଜୁଥାନ୍ତି ।
ସୁଜନ ଗୋଷ୍ଠୀରେ ସୁସନ୍ଥ ସେବାରେ ସୁଭଗତ ଦେଖି ବସି ।
ଅଣଅକ୍ଷର ମହିମା ପରକାଶ କରନ୍ତି ସେ ଘୋର ନିଶି ।
ରାମ ଦାସ ଶୁଣି ପଚାରଇ ପୁଣି ଯେ ଭକ୍ତ ରଖିଛ କାହିଂ ।
କଉଂଠାବେ ବାସ କି ନାମ ପ୍ରକାଶ କଉଂଚିହ୍ନ ଅଛ ଦେଇ ।
କହିଲେ ମୋ ମନ ସଂଶୟେ ଦହନ ଚିତ୍ତ ମୋ ହୋଇବ ଥିର ।
ବାରଣ ବେଳେ ପଥବଣା ନୋହିବି ପ୍ରଭୁ ଆଗ୍ୟାଂ ଥିବ ଶିର ।
ରାମଚନ୍ଦ୍ର ବାଣୀ ଅଚ୍ୟୁତ ଯେ ଶୁଣି ବୋଲନ୍ତି ଶୁଣରେ ବାବୁ ।
ଯେ ଘୋର କଳିକି ଆମ୍ଭେ ପାଞ୍ଚଜଣ ଭୟ ପାଉଥାଉ ସବୁ ।
ଓଡ଼ିଶା ଦେଶରେ ପଞ୍ଚୁକୋଶଠାରେ ଅନନ୍ତପୁର ଶାସନ ।
ଶର୍ମା ଦ୍ୱିଜବର ଅଛି ସେହିଠାର ନାମବ୍ରହ୍ମକୁ ଭଜିଣ ।
ଭକ୍ତ ଅଟେ ସେହି ପ୍ରଭୁଙ୍କୁ ସେ ଧ୍ୟାଇ ତିନିସସ୍ରେ ସେହୁ ଜଣ ।
ତାହାଙ୍କ ଦ୍ରଶନ ଯଉଂ ଜନ କରଇ ଲଭଇ ବହୁତ ପୁଣ୍ୟ ।
ପ୍ରାଚୀ କୂଳେ ଘର ବାସୁ ମହାପାତ୍ର ଶ୍ରୀକୃଷ୍ଣେ ଆଶ୍ରିତ ସେହି ।
ନାମତତ୍ତ୍ୱ ଭଜେ ଦିବାରାତ୍ର ମଜେ ଦୟାପଦ ତାହାଠାଇଂ ।
ପ୍ରାଚୀକୂଳ ଲାଗି ଅଛନ୍ତି ଅଲଗି ସହସ୍ରେ ଭଗତ ମୋର ।

ନାମରେ ଆଶ୍ରିତ ପ୍ରେମେ ଉନମତ ବିକାର ନାହିଁ ତାଙ୍କର ।
ଯେ ଘୋର କଳିକୁ ମାହାଭୟେ ତାଙ୍କୁ ଗୁପତେ ଥାଆନ୍ତି ରହି ।
ଶୁଣୁଥାନ୍ତି ନାମ ଦିବାରାତ୍ରେ ପୁଣ ନ କହନ୍ତି କାହିଁ ଫେଇ ।
ଜାତିହୀନ ସେହି ଅଛନ୍ତି ଯେ ରହି ଦୁଃଖ ନ୍ୟନ୍ତି ଦିନକାଳ ।
ମୁଖେ ରାମନାମ ଗାୟନ କରନ୍ତି ପ୍ରଭୁ ନାମ କରି ମୂଳ ।
ଶୁଣି ରାମଦାସ ହୋଇଲା ଚକିତ ଆଚମ୍ବିତେ ପଚାରଇ ।
ତୁମ୍ଭର ଭଗତ ଜାତିହୀନ ଦୀନ ହୋଇଲା କିମ୍ପା ଗୋସାଇଂ ।
ଶୁଣ ରାମଦାସ ଫେଡ଼ିବା ସନ୍ଦେଶ ଯେହା କହିଦେବା ବାବୁ ।
ମହିମା ନିନ୍ଦନ ପରବିତ୍ତ ଧନ ହରିଲା ଏ ଦୋଷେ ସବୁ ।
ଅର୍ଜିଲାର କର୍ମ ଭୁଞ୍ଜିବାର ଧର୍ମ ଜାଣି କିମ୍ପା ବଣାହେଲା ।
ଜନ୍ତୁପତି ଯେ ତାରତମ କରିଣ ନୀଚକୁଳେ ଜନ୍ମଦେଲା ।
ହେଲେ ଜାତିହୀନ ତହିଁନାହିଁ ଭିନ୍ନ ଶ୍ରୀକୃଷ୍ଣ ବାସନା ଥାଏ ।
କଳିକତରା ପଙ୍କରେ ବୁଡ଼ିଲେ କି କର୍ଦ୍ଦମ ତା ଦେହେ ରହେ ।
କିଛୁଦିନ ଅନ୍ତେ କ୍ଷୟଯିବ ଦୋଷ ପୁଣ୍ୟହେବ ପରକାଶ ।
ସେ ବେଳେ ପ୍ରଭୁଙ୍କ ସଙ୍ଖୋଳା ପଡ଼ିବ ରଖିବେ ଆପଣା ପାଶ ।
ରାମଦାସ ଶୁଣ ହେତୁ ମନେ ଘେନ ନ ପୁଣ ତୁ ବଣା ହେଉ ।
ଜନ୍ତୁପତିରେ ତାରତମ ପଡ଼େକି ଉତ୍ତମ କନେଷ୍ଟ କେହୁ ।
ରାମଦାସ ଶୁଣି କ୍ରୋଧେ କହେ ବାଣୀ ତୁମ୍ଭ ସୁଦୟା ଯେ ଥାଉ ।
ମାୟା ମୋହ ତମ ଅହଂକାର ତୁମ୍ଭ ସୁଦୟାରୁ ନାଶ ହେଉ ।
ଆଉ କାହିଁ ତୁମ୍ଭେ ଭଗତ ରଖିଛ ଶୁଣିବାକୁ ବଡ଼ ଛନ ।
ଶୁଣିହୋଯେ ଥଏ ସଂଶୟେ ନାଶଯାଏ ହେତୁଥାଉ ମୋର ମନ ।
ଶୁଣ ରାମଦାସ ଆହୁରି ସନ୍ଦେଶ ଫିଟାଇ କହିବା ତୋରେ ।
କୁଣ୍ଡୀ ନଗ୍ରଦେଶ ବଟେଶ୍ୱର ପାଶ ରୁକୁଣା ଚଉରାଠାରେ ।
କାଶୀ ମୁକ୍ତେଶ୍ୱର ଗ୍ରାମ କାଶୀପୁର କାଳାଗ୍ନି ଅଛନ୍ତି ରହି ।
ଏ ଥାନକୁ ଲାଗି ଭକ୍ତେ ମୋରଛନ୍ତି ଯେକଶତ ଚାଳିଶହିଁ ।
କେହୁ ଭଜେ ନାମ କେ କରେ ଗାୟନ କେହୁ ମନସ୍ଥିତେ ରହେ ।
କେହୁ ଦମ୍ଭପଣ ତେଜିଣ ଶରଣ ଆଶ୍ରିତ ଜନରେ ଧାଏ ।
କେହୁ ପାଞ୍ଚ ସାତ ମିଶିଣ ଗୁପତ ଆତ୍ମା ପରଚେ କରନ୍ତି ।
କେହୁ ଶ୍ରୀହରିଙ୍କ ମହିମା ଲିଖନ କରି ଦିନ ହରୁଥାନ୍ତି ।

କେଉଣ ଭଗତ ଅଛନ୍ତି ହୋ ରାମ ପ୍ରଘଟ କରି କହିବା ।
ଶଯେ ଭଗତେ ପ୍ରଧାନ ଅଟେ ସେହୁ ନାମତତ୍ତ୍ୱେ ଥାଇ ସେବା ।
ସଂସାରହିଂ ସେହି ଲକ୍ଷ୍ମୀ ଦୟା ନାହିଂ ଦେବାକୁ ନଥାଇ ଶକ୍ତି ।
ଶ୍ରୀହରି ମହିମା ପସରା କରିଣ ଦିୟେ ଉଚ୍ଚ ନୀଚ ଜାତି ।
ଦେଲା ଯେହି ସେହି ଦରିଦ୍ର ଜନଟି ନ କରେ ତାହା ବିଚାର ।
ନେଲା ଏହି ବିଧି ପୂର୍ବକରି ପୁଣ ନ ରଖିବ ତହିଂ ଧାର ।
ଦେଲା ନେଲା ଦୁଇ ସମସରି ହେଲେ ନୋହିବ ତହିଂ ବାରଣ ।
ଗୁପତ କରିବୁ ଯେଣୁ ରାମଦାସ ହୁଡ଼ିଲେ ହେବ କଷଣ ।
ମଧୁର କୁଳରେ ଜାତ ହୋଇବ ଯେ ଯଦୁବଂଶ ଅଂଶ ଘେନି ।
ଭଗବାନ ନାମ ତିନିଜନ୍ମ ହେବ ଶିରେ ପଞ୍ଚରେହ ଚିହ୍ନି ।
ଅଛନ୍ତି ଯେ ଭକ୍ତ ଚିତ୍ରାଙ୍ଗୀ କୂଳରେ ଲେମ୍ବାଳ ମୋ ନିଜସ୍ଥାନେ ।
ମୋର ଆଶ୍ରେଥାନ୍ତି ମହିମା ଲିହନ୍ତି ଭାବନ୍ତି ସେ ନିଜ ନାମେ ।
ଦୁଇ ପଞ୍ଚାବନ ଭଗତ ମେଳେଣ ମୁହିଂ ତହିଂ ରହିଥାଇ ।
ପଢ଼ି ବରତନ ପ୍ରଭୁଙ୍କ କୋଠରୁ ନିତି କରିଦିଏ ମୁହିଂ ।
ମୋହ ଆଶ୍ରେ ଥାନ୍ତି କିଛି ନ ଜାଣନ୍ତି ଭାବନ୍ତି ନିରତେ ମୋରେ ।
ପଢ଼ି ବରତନ ଯାଚି ଦେଉଥାଇ ଲାଗଇ ଯେଣୁ ବିଧିରେ ।
ଗଣକ କୁଳେ ବଇରାଗୀ ଅଛଇ ଗୋପାଳ କୁଳେ ମୁରଲୀ ।
ମୋର ଅଂଶେ ବ୍ରଜାନନ୍ଦ ଯେହୁ ସେଟି ଉଗ୍ରେସେନ ତାକୁ ବୋଲି ।
ଅଗଣି ତ ବୋଲି ମାତା ଡାକୁଥାନ୍ତି ଅନ୍ନ ନ ମିଳଇ ଘରେ ।
ପ୍ରଭୁଙ୍କ ନିର୍ଦୟା ହେଲା ଯେଣୁ ଦୟା ଅଚ୍ୟୁତ ନାମ ମୋ ହେଲା ।
ପ୍ରକଟ କରି ଗୋକୁଳ ତାର ବୋଲି ଶ୍ରୀମୁଖେ ଆଗ୍ୟାଂ ହୋଇଲା ।
ଦୁଷ୍କୃତ କ୍ଷୟେ ସୁକୃତ ଉଦୟେ ହେବାରୁ ତୁହି ମିଳିଲୁ ।
ଶୂନ୍ୟ ସଂହିତା ବୀଜତତ୍ତ୍ୱ ଶୁଣିଣ ଦୁଷ୍କୃତ ମାନ ନାଶିଲୁ ।
ସେ ପ୍ରଭୁ ଦୟାଳୁ ଭକ୍ତଜନ ପାଳେ ଅଶରଣଙ୍କୁ ଶରଣ ।
ପାମର ଅଚ୍ୟୁତ ପାଦପଦ୍ମେ ଚିତ୍ତ ଭାସଇ ପ୍ରଭୁ ଚରଣେ ।

ଇତିଶ୍ରୀ ଶୂନ୍ୟସଂହିତାୟାଂ ଶ୍ରୀଗୁରୁ ଶିଷ୍ୟ ବୋଧନେ ପ୍ରଧାନ
ଭକ୍ତଙ୍କ ନାମ ଗ୍ରାମ ଉଚ୍ଚାରଣେ ନାମ ଊନବିଂଶ ଅଧ୍ୟାୟଃ ।

## ବିଂଶ ଅଧ୍ୟାୟ

ଶୁଣି ରାମଦାସ ହୋଇ ଉଲ୍ଲସିତ ପୁଣ ପୁଣ ପଚାରଇ ।
ଆଉ ଭଗତ ତୁମ୍ଭର ମହାପ୍ରଭୁ ରଖିଅଛ କହ କାହିଁ ।
କହିଲେକ ମନ ସଂଶୟ ଦୂରହେବ ମୋ ମନ ହୋଇବ ଥିର ।
ବେଳକୁ ମୋର ଯେ ବିକାର ନଥିବ ଶୁଣୁଥିବି ନିରାଧାର ।
ଶୁଣ ରାମଦାସ ଫେଡ଼ିବା ସନ୍ଦେଶ ଥିରକର ମନ ତୁହି ।
ବାଛି କହିବି ଭଗତ ମୋର ଯେତେ ଅଛନ୍ତି ଯେ ଯହିଁ ରହି ।
ଉତ୍ତରେ ପାଣ୍ଡବେ ଅଛନ୍ତି ଗୁପତେ ତାଙ୍କ ଆଶ୍ରେ ତିନିଶତ ।
ବେଳକୁ ବାରଣ ବେଳେ ବାରି ତାଙ୍କୁ ରଖିବେ ପ୍ରଭୁ ଅନନ୍ତ ।
ପାଣ୍ଡେବଙ୍କୁ ଆଶ୍ରେ ଅଛନ୍ତି ମୋ ଭକ୍ତ ଉଦେ କେହୁ ବା ଗୁପତ ।
ନାମ ଆଶ୍ରେ ଥାନ୍ତି ଦିନ ସେ ହରନ୍ତି କେ ଅବା ବାଉଳି ମତ ।
କେ କରେ ଗାୟନ କେବା ସଂକୀର୍ତ୍ତନ କେ କରେ ଆତ୍ମା ପରଚେ ।
କେହୁ ନାମତତ୍ତ୍ୱ ଭଜଇ ଗୁପତ ବୀଜତତ୍ତ୍ୱ କେହୁ ଭଜେ ।
ଅଛନ୍ତି ମୋ ଭକ୍ତ ରହି ତିନିଶତ ରାମ ଶୁଣ ହେତୁଦେଇ ।
ଯଉଂ ପାଣ୍ଡବଙ୍କ ଆଶ୍ରିତେ ଅଛନ୍ତି ଜନ୍ତୁପତି ଭୟେ କାହିଁ ।
ଯଉଂ ପାଣ୍ଡବେ ସଂସାରୁ ଦୁଷ୍ଟଙ୍କୁ ହେଳେ କରିଲେ ବିନାଶ ।
ଯଉଂ ପାଣ୍ଡବେ ଦୁଷ୍ଟ ଧୁଷାସନ ଉପାଡ଼ିଲେ ଭୁଜ ଦେଶ ।
ଯଉଂ ପାଣ୍ଡବ ଜମାଗାଷ୍ଟ ରାଜାକୁ ରଥ ଦଣ୍ଡେ ବାନ୍ଧି ଆଣି ।
ସେହି ପାଣ୍ଡବଙ୍କୁ ନିତ୍ୟେ ହିଂ ଶରଣି ମାଗଇ ଅଚ୍ୟୁତ ପୁଣି ।

ଇତିଶ୍ରୀ ଶୂନ୍ୟସଂହିତାୟାଂ ଗୁରୁଶିଷ୍ୟ ବୋଧନେ
ଶ୍ରେଷ୍ଠ ଭକ୍ତଙ୍କ ଗୁଣ ପ୍ରବନ୍ଧେ ପଞ୍ଚପାଣ୍ଡବଙ୍କ କର୍ତ୍ତବ୍ୟ
ପ୍ରକାଶନେ ନାମ ବିଂଶୋଧ୍ୟାୟଃ ।

## ଏକବିଂଶ ଅଧ୍ୟାୟ

ଶୁଣ ରାମଦାସ ଫେଡ଼ିବା ସନ୍ଦେଶ କହଇ ପ୍ରକଟ କରି ।
ହେତୁ ମନେ ଘେନି ଲଗାଅ ତୁ ଧ୍ୟାନ ତୁହି ମୁହିଁ ଏକା ସରି ।
ଯଉଂ ପ୍ରଭୁ ଯେ ଭଗତ ଭାବେ ବଶ ଭଗତ ଯେ ଯେହି ସେହି ।

ଅବତାର ଧରେ ଭଗତ ଭାବରେ ଲୀଳା ଭୋଗ ବିଳସଇ ।
ଅକ୍ଷର ରୂପେଣ ବିଜେ କରିଛନ୍ତି ଶୂନ୍ୟକାୟା ଚକ୍ର ପରେ ।
ପଞ୍ଚତତ୍ତ୍ୱେ ଯଉଂ ଭକ୍ତ ଚିହ୍ନିବ ଯେ ଭଗତ ବୋଲିବା ତାରେ ।
ତନିଶତ ଭକ୍ତ ଅଛନ୍ତି ହୋ ରାମ ହେତୁ ଦିଅ ଶଏ ଜଣ ।
ପ୍ରକଟ ହୋଇ ନାମତତ୍ତ୍ୱ ବୁଝାଇ ଗୁପତ ହେବେଟି ପୁଣ ।
ଦାସ ଭଗତ ଦୁଇଶତ ଅଛନ୍ତି ପ୍ରକଟ ନୋହି ଗୁପତ ।
ନାମ ଆଶ୍ରେକରି ଗୁପତେ ଅଛନ୍ତି କାଳେ ସେ ହେବେ ଉଦିତ ।
ଯଦୁବଂଶ ଅଂଶ ଅଟନ୍ତି ତିନିଶ ଗୋପର ଅଛନ୍ତି ଅଂଶ ।
ରାଜସ ଭଗତି ଉପାଳମ୍ଭ ଶକ୍ତି ବାହିଜ୍ୟ ଶକ୍ତି ସମ୍ଭାଷ ।
ବୀଜ କୁଳରେ ଗଣେଶ ପତି ଯେଁହୁ ଅଙ୍କୁର ଅଟଇ ସେହି ।
ପ୍ରେମ ରସେ ଉନମତ ହୋଇ ସେ ଯେ କୃଷ୍ଣ ନାମ ଗୁଣୁଥାଇ ।
ଗଣେଶ କୁଳ କାହ୍ନୁ ମୋ ଅଛଇ ତାର ସୁତ ପରୀକ୍ଷିତ ।
ଦ୍ୱିଜ ସାରଙ୍ଗ ନନ୍ଦ ବୋଲି ଯାହାକୁ ଉପନନ୍ଦ ବୋଲି ସେତ ।
ଆଉ ଭଗତ ମୋର ଯେତେ ଅଛନ୍ତି ବାଛିବା ପଦ୍ମ ଟୀକାରେ ।
ଠିକେ ପାଞ୍ଚସାତ ପ୍ରକାଶ କରିଲୁ ହେତୁକର ତୁ ମନରେ ।
ଯେତେକ ଶୁଣି ପାଦପଦ୍ମେ ପଡ଼ଇ କରିଣ ପୁଣ ବିନୟେ ।
ଆଉ କାହିଁଛନ୍ତି କହ ମହାପ୍ରଭୁ ଭ୍ରାନ୍ତି ମୋର ଯାଉ କ୍ଷୟେ ।
ଶୁଣ ରାମଦାସ ହେଉ ଭ୍ରମ ନାଶ କାଳେ କାଳେ ଭ୍ରାନ୍ତି ନୋହୁ ।
ଆଦିମାତ୍ରା ଦୟା କୃପା ଯେଣୁ ତୋତେ ପଦମାନ ଦିଶୁଥାଇ ।
ଉତ୍ତରେ ବିରିଜା ପ୍ରଧାନ ସର୍ବଦା ବ୍ରାହ୍ମଣୀ ଯେ ବଇତ୍ରଣୀ ।
ଯାଜପୁର ବ୍ରହ୍ମ ଯଜ୍ଞ ସ୍ଥାନ ଆଦି ବରାହ କ୍ଷେତ୍ର ସେ ପୁଣି ।
ତହିଁ ମୋ ଭଗତ ଅଛନ୍ତି ତିନିଶ ହେତୁଦିଅ ପାଞ୍ଚସାତ ।
ଦାସ ଭଗତ ଭଜିଣ ନାମତତ୍ତ୍ୱ ନିରତେ ଦେଇଣ ଚିତ୍ତ ।
ସେ ସ୍ଥାନ ଜଗିଣ ଜଗତେ ଥାନ୍ତି ସାଜି ପ୍ରଭୁ ଉଦୟକୁ ଚାହିଁ ।
ବ୍ରାହ୍ମଣୀ କୂଳେ ବେନ୍ଦୁ ମୋ ଅଛଇଂ ହୃଦପଦ୍ମେ ମୋତେ ଧ୍ୟାଇ ।
ଯଦୁବଂଶ ବଂଶ ଅଟଇ ହୋ ରାମ ସଫଳା ଯାଦବ ସୁତ ।
ବେନ୍ଦୁ ଯେହି ସେହି ଉଦ୍ଧବ ଅଟଇଂ ପଙ୍କଜ ପ୍ରାଏ ଉଦିତ ।
ମଧୁର କୂଳେ ପ୍ରଭୁ ଜାତ କରିବେ ପଞ୍ଚରେହ ଶିରେ ଦେଇ ।
ବ୍ରହ୍ମଦରଶୀ ନାମତତ୍ତ୍ୱେ ରଖିଣ ଯେତେକେ ଆତ୍ମା ପୁଣ ଥାଇଂ ।

ଶୁଣ ରାମଦାସ ଆହୁରି ସନ୍ଦେଶ ଫିଟାଇ ତୋତେ କହିବା ।
ଯାଜପୁରେ ବନ୍ଧୁ ମହାନ୍ତି ଯେ ଥିଲା ଶ୍ରୀକୃଷ୍ଣେ କରଇ ସେବା ।
ଅତି ଦୁଃଖେ ଦୁଃଖୀ କୃଷ୍ଣକୁ ଯେ ସାକ୍ଷୀ କରନିଏ ଦିନ କାଳ ।
ସେହି ସେ ଭଗତ ଜାଣେ ନାମତତ୍ତ୍ୱ ଯଦୁବଂଶ ଭୋଜପାଳ ।
ମଣି ଭୋଜପାଳ ଦ୍ୱାପରେ ନାମ ତାର କଳିରେ ବନ୍ଧୁ ମହାନ୍ତି ।
ତାହାର ଗୃହିଣୀ ଲକ୍ଷ୍ମୀ କଳା ଘେନି ଶ୍ରୀକୃଷ୍ଣେ ଥାଇ ତା ମତି ।
ଅଳପ ଦିନେଣ ଆହୋ ରାମ ତାହା କର୍ମ ଦୋଷ ଛାଡ଼ିଗଲା ।
ତିନି ସସ୍ରେ ଜଣେ ସେହି ଅଟେ ରାମ ନିର୍ମଳ ଭକ୍ତି ପାଇଲା ।
ଭକ୍ତ ଅଟେ ଯେହି ଗୁପ୍ତ ଅଟେ ସେହି ନାମ ନ-କରେ ପ୍ରକାଶ ।
ମୋ ଶପଥ ରାମ ତୋତେ ଦେଉଅଛି ମନରେ ଘେନି ବିଶ୍ୱାସ ।
ଅଳପ ସୂକ୍ଷ୍ମେ ନିର୍ମଳ ଚିତ୍ତ ହେବ ନିରତେ ଯେହ୍ନୁ ଭଜିବ ।
ଘୋର କଳି ତମ ବିନାଶ କରିଣ ପ୍ରଭୁରେ ସୁଦୟା ହେବ ।
ତୁହେ ରାମଦାସ ମୋହୋର ବିଶ୍ୱାସ ପୂର୍ବଭାଗ୍ୟ ତୋର ପାଇ ।
ଯେତେ ବୋଲିଣ କୋଳକରି ଧରିଣ ମୁଖରେ ଚୁମ୍ବନ ଦେଇ ।
ଶ୍ରୀହରିଙ୍କି ଧ୍ୟାଇ ମନରେ ମଜଇ ଅଦୃଶ୍ୟ ଦୃଶ୍ୟଟି ହୋଇ ।
ପାଦପଦ୍ମେ ଚିତ୍ତ ଥିବାରୁ ନିଅତ ପଦମାନ ଦିଶୁଥାଇଂ ।
ସେ ଯାହା ବୋଲନ୍ତି ମୁଂ ତାହା ଲିହଇ ସେ ଜାଣେ ତହିଂ ବିଚାର ।
ପାଦପଦ୍ମେ ଚିତ୍ତ ଭଣଇ ଅଚ୍ୟୁତ ତତ୍ତ୍ୱ ମୋର ନିରାକାର ।

ଇତିଶ୍ରୀ ଶୂନ୍ୟସଂହିତାୟାଂ ଗୁରୁଶିଷ୍ୟ ବୋଧନେ ଭକ୍ତ ନାମ ଗ୍ରାମ
ଗୁଣ ପ୍ରକାଶନେ ନାମ ଏକବିଂଶ ଅଧ୍ୟାୟଃ ।

## ଦ୍ୱାବିଂଶ ଅଧ୍ୟାୟ

ରାମଦାସ ଶୁଣି ପଚାରଇ ପୁଣି ବିନୟ କରି ଚରଣେ ।
ଶୁଣିଲି ଅପୂର୍ବ ଶ୍ରୀକୃଷ୍ଣ ଭଗତ ଆଶ୍ରିତ ସେ ଯେଉଂମାନେ ।
କହିଲ ଭଗତ ତିନିସସ୍ର ସନ୍ଥ ଶୁଣି ମୋ ମନ-ଆନନ୍ଦ ।
ଯେବେ ଯେ କିରୂପେ କି ଲୀଳା ହୋଇବ ଆଗ୍ୟାଂ ହୋଉ ଗୁରୁଦେବ ।
ତୁମ୍ଭେ ସିନା ଜାଣ ମହିମା ବଖାଣ ଗତ ଆଗତହିଂ ଜାଣ ।

ଆଦ୍ୟରୁ ଶ୍ରୀହରି ଆଗ୍ୟାଂ ହୋଇଅଛି କରିବା ତୁମ୍ଭେ ବଖାଣ ।
ମୋ ବଂଶ ତାରିଲ ମୋତେ ଉଦ୍ଧାରିଲ ତୁମ୍ଭ ଶ୍ରୀକରୁଣା ଯେଣୁ ।
କରୁଣା ନାବ ଲଗାଇ ପାରିକଲ କର୍ଣ୍ଣଧାର ଅଟ ତେଣୁ ।
ଆଉ କି ହୋଇବ କି ଲୀଳା କରିବ କହ ପ୍ରଭୁ ଏ ବିଚାର ।
ବାରଣ ବେଳେ ବାହ୍ରିଛନ୍ତି ରହିବେ କିରୂପେ ଭକ୍ତ ତୋହର ।
ଶୁଣ ରାମଦାସ କହିବା ସନ୍ଦେଶ ହେତୁ ମନ ଥାଅ ଦେଇ ।
ଚାରି ଦିଗରୁ ଜନମାନ ପୂର୍ବରେ ପଡ଼ିବେଟି ରଣ ଭୂଇଂ ।
ହୋଇବ ଯେ ମେଳି ସମୋଦ୍ର ଉଛଳି ଶୁଭିବଟି ମୁଖରାବ ।
ଟିକିରା ଗୋହିରୀଠାବେ ମେଳିହୋଇ ଠିକେକେ ଗୋଳ ବାଜିବ ।
ଦକ୍ଷିଣୁଂ ଆସିବେ ପଶ୍ଚିମେ ସାଜିବେ ଉତ୍ତରୁ ପଡ଼ିବେ ମାଡ଼ି ।
ଟିକିରାଂଗୋହିରୀଠାରେ ମେଳହୋଇ ଛାଡ଼ିବେଟି ଘୋର ରଡ଼ି ।
କଙ୍କାଳୀ କପାଳୀ ଚଣ୍ଡୀ ଆଦି କାଳୀ ଭଗବତୀ ବିରିଜାଇ ।
ବିଷ୍ଣୁମାୟାରେ ଜଗତ ଘୋଟିଯିବେ ଖଡ଼ଗ ଖପର ନେଇ ।
ଲହ ଲହ ଜିଭ୍ୟା ଦେଖାଇ ପ୍ରତିଗ୍ୟାଂ ଗର୍ଜିଣ ଧରି ଖାଇବେ ।
ତିନିସସ୍ର ନିରାଧାର ଭଗତ ଯେ ଆଶ୍ରିତରୁ ତରିଯିବେ ।
ନିରାକାର ଆଶ୍ରେ ନିର୍ମଳ ଭଗତ ନିରଞ୍ଜନ ତେଜ ଦେଖି ।
ପ୍ରେତାଳୀ କାଳୀ ଭଗବତୀ ଦୟାରୁ ତେଜ ଦେଖିଣ ଉପେଖି ।
ବ୍ରାହ୍ମଣୀକୂଳର ବରାହ ମଣ୍ଡଲୁ ବଇତ୍ରଣୀ କୂଳ ଲାଗି ।
ତିନିଶତ ଭକ୍ତ ଅଛନ୍ତି ହୋ ରାମ ବୀଜତତ୍ତ୍ୱ ଆତ୍ମା ଜାଗି ।
ବଇତ୍ରଣୀକୂଳେ ଅଛି ମୋ ଭଗତ ଜଗତାନନ୍ଦ ତା ନାମ ।
ଦ୍ୱିଜକୂଳରେ ହିଂ ଜନ୍ମ ତାକୁ ଦେଇ ଅଛନ୍ତି ପୁରୁଷୋତ୍ତମ ।
ଅଗ୍ନିହୋତ୍ରୀ-ନାମ ହୋଇବ ତାହାର ଅଙ୍ଗୀକାର ଅଛି ହୋଇ ।
ଦକ୍ଷପ୍ରଜାପତି ତୃତୀୟ ନନ୍ଦନ ପଦ୍ମ ପ୍ରଜାପତି ସେହି ।
ବୀଜତତ୍ତ୍ୱ ଜାଣେ ମହିମା ବଖାଣେ ନାମତତ୍ତ୍ୱେ ରସିଥାଇଂ ।
ଗ୍ୟାଂନୀ ଶୀଳ ଧୀର ବିବେକ ବିଚାର ତୀର୍ଥ ଭ୍ରମଣ କରଇ ।
ବାରଣ ବେଳେ ପ୍ରଭୁରେ ଜଣାଇବି ବିଜେକର ମୋର ପୁର ।
ଆମ୍ଭେ ପାଞ୍ଚଜଣ ଥିବୁ ଆହେ-ରାମ ତୁହି ଥିବୁ ସଙ୍ଗତର ।
ନବସସ୍ର ଗୃଧ ମାଂସ ଖାଇ ବୋଧ କାଳୀ କଂକାଳୀ ବିରିଜା ।

ପୃଥୀର ସଲ ନାଶିବେ ମହାମଲ ବିଜଏ ଦେବାଧି ରାଜା ।
ତିନିସତ୍ତ୍ୱ ନିରାଧାର ଭଗତ ଯେ ନାମତତ୍ତ୍ୱେ ମଜ୍ଜିଥିବେ ।
ନିର୍ଭୟ ହୋଇଣ ଆତ୍ମ ପରଚେଣ ହୋଇଣ ନାମ ଭଜିବେ ।
ରାମଦାସ ଶୁଣି ବୋଲେ ହରିହରି ହୋଇଲି ମୁଂ ଭବୁଂପାରି ।
ଭ୍ରାନ୍ତି ମୋର ଗଲା ସଂଶଯେ ଫିଟିଲା ତିନିସତ୍ତ୍ୱେ ହେଲି ସରି ।
ଆଗ୍ୟାଂକର ପ୍ରଭୁ ଆଉ ଯେ ଭଗତ ରଖିଅଛ କାହିଂ ପୁଣି ।
କିଭାବେ ରହନ୍ତି କି ଲୀଳା କରନ୍ତି କାହାକୁ ଆଶ୍ରିତ ପୁଣି ।
ରାମଚନ୍ଦ୍ର ବାଣୀ ଅଚ୍ୟୁତ ଯେ ଶୁଣି ଭଲା ପଚାରୁ ତୁ ବାବୁ ।
ତୋ ଆଗେ କହିବା ସଂଶୟ ଦହିବା ତୁହି ମୋର ମନ ସବୁ ।
ବ୍ରାହ୍ମଣୀ କୂଳେ ତିନିଶ ଭକ୍ତମେଳେ ଥିବ ଦଇତାରି ମୋର ।
ସାତ ପାଞ୍ଚମେଳେ ମାତି ମହାଭୋଳେ ନାମ ତତ୍ତ୍ୱ ଆଶ୍ରା ତାର ।
ଜ୍ୟୋତିକି ଯେ ଲଏ ଧୁନିକି ଯେ ଧ୍ୟାୟେ କରିବସେ ନିରବଧି ।
ଅଳପେ ଅଳପ ପଥ ଜିଣିଯିବ ତରିବ ଭବ ବାରିଧି ।
ଅଳପ ଦିନେ ଅଚଳ ଛାଡ଼ି ପୁଣ ନିଷ୍ଫଳେ ସ୍ଥାନକୁ ଯିବ ।
ନେତ୍ରବେଦ ଏକ ଜନମ ଲଭିଣ ତୀର୍ଥ ପ୍ରଯଟନେ ଥିବ ।
ମଧୁର କୂଳେ ପ୍ରଭୁ ଜାତକରିବେ ଦଇତାରି ନାମ ଦେଇ ।
ପାଞ୍ଚ ତିନିୟେକ ହୋଇବ ନନ୍ଦନ ଦୟାପଦ ଥିବ ତହିଂ ।
ଗୋପପୁର ବୃଦ୍ଧ ଅଟଇ ସୁନନ୍ଦ କଳିରେ ଯେ ଦଇତାରି
ଅଳପ ଦିନେ ଅଚଳ ଛାଡ଼ି ପୁଣି ଆସିବ ସେ ବେଗକରି ।
ଦ୍ୱିଜ ନାମ ଗଙ୍ଗକୂଳରେ ଯେ ଧ୍ୟାନ ଲଗାଇବ ଜ୍ୟୋତି କି ଯେ ।
ହରିହର ଶର୍ମା ସୁତ ହୋଇ ସେ ଯେ ଶୁଦ୍ଧ ଅବିରତେ ଭଜେ ।
ସାରିବ ସେ ଭୋଗ ଆସିବ ସେ ବେଗ ପୁଣି ବ୍ରାହ୍ମଣୀ କୂଳକୁ ।
ଯାମଳା ହୋଇ ଜନମ ଲଭିବ ସେ ତା ସୁତ ସୁତ ଗର୍ଭକୁ ।
ବାରଣ ବେଳେ ପ୍ରଭୁରେ ଜଣାଇବ ବିଜୟେ ମୋ ପୁରେ କର ।
ତୁହି ଥିବୁ ପୁଣି ମୁହିଂ ଥିବି ଜାଣି ପ୍ରଭୁ ମହିମା ବିଚାର ।
ସୁଦୟା ବହନ୍ତି ଭାବେ ବଶ ହୋନ୍ତି ଭଗତ ଯେ ନିଜ ଦେହୀ ।
ଭଗତଭାବେ ବଶହୋଇ ରହନ୍ତି ମେଣ୍ଟିବାକୁ ସକ୍ୟ ନାହିଂ ।
ବିଜେ ତାହା ପୁରେ କରିବେ ଶ୍ରୀହରି ଆମ୍ଭେ ପୁଣହିଂଯେ ଯିବୁ ।

ଆମ୍ଭ ଭଗତ ଆମ୍ଭଙ୍କୁ ଯେ ପୂଜିବ ଠିକ ବେଳେ ଆଧିଦେବୁ ।
ଶୁଣି ରାମଦାସ ହୋଇ ହସହସ ଭଲା କହିଲତ ପ୍ରଭୁ ।
ସାନକୁ ଯେ ବଡ଼ ବଡ଼କୁ ଯେ ସାନ କରିପାର ତୁମ୍ଭେ ସବୁ ।
ତୁମ୍ଭଙ୍କୁ ଯେ ଦୂର ନୋହେ ନିରାଧାର ତୁମ୍ଭଙ୍କୁ ସିନା ଗୋଚର ।
ତୁମ୍ଭେ ସିନା ଜାଣ ଭଗତ ବଖାଣ ଗ୍ୟାଂନୀକି ଅଗ୍ୟାଂନୀ କର ।
ଅଦୃଶ ଯେ ଦୃଶ ହୋଏ ଯୋଗଲୟେ ଅନ୍ତର୍ଯ୍ୟାମୀ ନାଥ ଯେଣୁ ।
ବାଛି କହିଲି ଯେ ସାରସ୍ୱତ କଥା ପରକେ ଆପଣା ମଣୁଂ ।
ଅଚ୍ୟୁତ ନାମ ଚ୍ୟୁତ ନାହିଁ ଯାହାର ଅଣାକାର ଯାର ଦେହୀ ।
ନିରାକାରଁ ସାରସ୍ୱତ ମନ୍ତ୍ରସାର ଦୀନ ଅଚ୍ୟୁତ ଭଣଇ ।

ଇତିଶ୍ରୀ ଶୂନ୍ୟସଂହିତାୟାଂ ଶ୍ରୀଗୁରୁଶିଷ୍ୟ ବୋଧନେ
ଭକ୍ତ ଭେଦ କଥନେ ନାମ ଦ୍ୱାବିଂଶ ଅଧ୍ୟାୟଃ ।

## ତ୍ରୟବିଂଶ ଅଧ୍ୟାୟ

ଶୁଣ ଗୋପସୁତ ତୋତେ କହିବା ବୁଝାଇ ।
ଓଂକାର ଦେହରେ ସପ୍ତ ପଞ୍ଚାତ୍ମିକ ଦେଇ ।
ଓଂକାର ବ୍ରହ୍ମର ଅଙ୍ଗ ପ୍ରକାଶିଛି କାୟା ।
ମାୟା ଅଙ୍ଗ ତ୍ରି ଅସ୍ଥାନେ ପ୍ରକାଶିଛି ଛାୟା ।
ତାରକ ଦଣ୍ଡକ ଯେ କୁଣ୍ଡଳୀ ଅର୍ଦ୍ଧବିନ୍ଦୁ ।
ତ୍ରି ଅସ୍ଥାନେ ପ୍ରକାଶ ହୋଇଛି କୋଟି ଇନ୍ଦୁ ।
ତାରକ ଯେ ଗ୍ୟାଂନ ଆତ୍ମା ପୃଥୀ ପ୍ୟାନ ଜାଣ ।
ମୂଳବ୍ରହ୍ମ ବୀଜରୂପ ଉକାର ସ୍ୱରେଣ ।
ତେଜଗୁଣ ଘେନି ଆଦିମାତା ଛନ୍ତି ଧ୍ୟାଇ ।
ପୃଥିବୀ ନାସିକା ଆଦିମାତା ତାଙ୍କୁ କହି ।
ଦଣ୍ଡକ ଯେ ଶ୍ରୀହରି ଉଦୟେ ଆଦିମୂଳ ।
ଆପଗ୍ୟାନ ଧ୍ୟାନ ଆତ୍ମା ସୁମନ ଯେ ଠୁଳ ।
କାମବୀଜେ ତତ୍ତ୍ୱ ନାମ ସ୍ୱରରେ ଯେକାର ।

ପ୍ରଣବେ ଦଣ୍ଡକ ଯେଥି ବିନ୍ଦେ ପୀତାମ୍ବର ।
ତନ୍ତୁଦେଶ ବୋଲି ତାକୁ ନିତ୍ୟଲୀଳା କହି ।
ଅଷ୍ଟଦଳ କମଳ ମଧରେ ଅଛି ରହି ।
କୁଣ୍ଡଳୀରେ ତେଜ ଯେ ସମାନ ତତ୍ତ୍ୱ ଆତ୍ମା ।
କୁମନ ସେ ପରାବୀଜ ତତ୍ତ୍ୱେ ବୁଦ୍ଧିରମା ।
ଆକାର ସ୍ୱରଟି ଯେଥି ବୀଜେ ଦିଗମ୍ବର ।
ତେଜ ଗୁଣ ଘେନି ସେ ତ୍ରିବେଣୀ ବହେ ଧାର ।
କଣ୍ଠର ଘଣ୍ଟିକାକୁ ତ୍ରିକୂଟ ବୋଲି କହି ।
ଯୋଗୀ ଜାଗି ଉଜାଗରେ ଯୋଗସିଦ୍ଧ ପାଇ ।
ଅର୍ଦ୍ଧମାତ୍ରା ଠାରେ ବାଇ ପଞ୍ଚଭୂତେ ଲେଖ ।
ପଞ୍ଚ ପବନରେ ବାଇ ପବନ ପ୍ରତକ୍ଷ୍ୟ ।
ଜୀବଆତ୍ମା ବିମନଟି ଧ୍ରାଂ ବୀଜେ ରହି ।
ତତ୍ତ୍ୱରେ ବିବେକଟି ସ୍ୱରରେ ଇକାରହିଂ ।
ଯେହିଟି ଜ୍ୟୋତିରାନନ୍ଦ ନାମବ୍ରହ୍ମ ଠୁଳ ।
ଚରାଚର ମଧରେଟି ପ୍ରଚରେ ଯେ ମୂଳ ।
ତଥିପରେ ବିନ୍ଦୁଯେହୁ ଆକାଶଟି ଧାମ ।
ବାଇ ମଧ୍ୟେ ଉଦ୍ଧାନ ସେ ଆତ୍ମାଟି ପରମ ।
ଅମନ ସେ ପ୍ରମବୀଜ ଆଶ୍ରୟଟି କହି ।
ସ୍ୱରରେ ଆକାର ଆଦିକର୍ତ୍ତା ଅଟେ ସେହି ।
ଉଭବ ସଂହାର କରେ ଭକ୍ତଭାବେ ଲୀଳା ।
ଗୋଲକରେ ପ୍ରେମରାଧା ରହି ସେ ମଜ୍ଜିଲା ।
ସପ୍ତ ଆଭରଣ ମଣି ଫଣି ଆକୃତିହିଂ ।
କୋଟି କୋଟି ଯୁଗ ଗଲେ ଲୀଳା ବିଘ୍ନ ନୋହି ।
କଳଙ୍କୀ ବେଳକୁ ଉଦେ ଭକ୍ତ ଯେ ପ୍ରକାଶ ।
ପଞ୍ଚାତ୍ମିକ ତତ୍ତ୍ୱ ବୁଝି କଳି ତମ ନାଶ ।
ଉଦୟେ ଭଗତ ଜନେ ପ୍ରକାଶିବେ ଧନ୍ଦା ।
କଳି ତମ ଆଚ୍ଛାଦିବ ସନ୍ଥ ଜନେ ନିନ୍ଦା ।
ଅଚାନିକେ ନଷ୍ଟଭ୍ରଷ୍ଟ ହେବେ ଅନ୍ୟୋଅନି ।

ଗୁରୁଙ୍କୁ ନମାନି ଶିଷ୍ୟେ ହେବେ ବ୍ରହ୍ମଗ୍ୟାଂନୀ ।
ତପତ ତେଜରେ ବାୟୁ ପ୍ରବଳ ବହିବ ।
ଜଳେ ବା ଅନଳେ ପୃଥୀ ନଷ୍ଟଭ୍ରଷ୍ଟ ହେବ ।
ପୃଥିବୀ କମ୍ପିବ ଅଶ୍ୱ ଆସିବ ଯେ ମାଡ଼ି ।
ମାତିବେ ଖଣ୍ଡ ଖୋଲାର ଅନ୍ୟୋଅନ୍ୟେ ବଢ଼ି ।
ବଣିଜାର ବେପାର ଯେ ମୂଳଧନ ଯିବ ।
ପୋତିଲାର ଧନ ଆଉ ଲୋଡ଼ି ନ ପାଇବ ।
ଶୋକରେ ମଜ୍ଜିବେ ଲୋକେ ହେବେ ବିକଳିତ ।
ମାୟାରେ ଚତୁର ହେବେ କୁଟୁମ୍ବ ମୋହିତ ।
ଛନ୍ଦମାୟା ମନ୍ଦକଥା ବଢ଼ିବ ନିରତେ ।
ଦ୍ୱନ୍ଦବାଦ ହିଂସା ବହି ନଷ୍ଟହେବେ ଥୋକେ ।
ବେତାଳୀ ହେବେ ପ୍ରବଳ ଗ୍ରାମେ ଗ୍ରାମେ ପଶି ।
କାଳୀ ଯେ କାଙ୍କାଳୀ ପୁଣି ଖାଇବେ ଆକ୍ରୋଶି ।
ବସିଲା ଠାବରେ ଆଉ ଭାଷା ନ ଆସିବ ।
ନଷ୍ଟହେବେ ପୁରଜନେ କାଙ୍କାଳୀ ଗ୍ରାସିବ ।
ଥିଲା ନଥିଲା ଯେ ଦୁଇ ହେବ ସମସରି ।
ନୋହିଲା ନୋହିଲା ବୋଲି ପଡୁଥିବ ହୁରି ।
ଆସିଲା ଆସିଲା ବୋଲି ରାଜାଥାଟେ ଥିବେ ।
ମାରିଲା ମାରିଲା ଖଣ୍ଡ ଖୋଲାରେ ଡାକିବେ ।
ଶ୍ରୀହରି ନାମକୁ ଆଉ ନଥିବ ଯେ କାଳ ।
ଗୁପ୍ତ ହେବ ହରିନାମ ପ୍ରଜାୟେ ବିକଳ ।
ଶ୍ରୀହରି ଆଶ୍ରିତ ଜନେ ଗୁପତେଣ ଥିବେ ।
ନାମକୁ ଆଶ୍ରିତକରି କାଳରୁ ବଞ୍ଚିବେ ।
ଯେହା ଜାଣିଛନ୍ତି ପୂର୍ବେଂ ପ୍ରଭୁ ଆଦିମୂଳ ।
ବୋଇଲେ ସୁଦାମ ଦାସ ଆମ୍ଭ ଆଗ୍ୟାଂ ପାଳ ।
ଗୋପପୁର ଗୋପାଳ ଯେ ଆମ୍ଭ ସଙ୍ଗେ ଥିବେ ।
ଆମ୍ଭ ଅବତାର ଅନୁସରି ଜନମିବେ ।
ଅନେକ କଷ୍ଟ ପାଇଣ ଭ୍ରମୁଥିବେ ଥୋକେ ।

ସେ କାଳେ ଗୋପାଳେ ସେବା କରିବେ କଟକେ ।
କଳଙ୍କୀ ବେଳକୁ ଉଦେ ଭକ୍ତ ଥିବେ ରହି ।
ନାମତତ୍ତ୍ୱ ଆଶ୍ରେ କରି ଦୁଃଖେ ଦୁଃଖି ହୋଇ ।
ଆମ୍ଭେ ଆପେ ବାରୁ ଚଢ଼ି ଦୁଷ୍ଟ ସଂହାରିବୁ ।
ତାରତମ କରି ସେବା ଆଗ ତାଙ୍କୁ ଦେବୁଂ ।
ନାଶିବୁ ପାତେକ ରାଶି ଦେବୁଂ ରାଜଭୋଗ ।
ଅନ୍ତକାଳେ ସଂହାରିଣ ଗର୍ଭେଦେବୁ ଠାବ ।
ତୁମ୍ଭେ ପାଞ୍ଚଜଣ ଆଗେ ହୁଅ ଅବତାର ।
ନାମତତ୍ତ୍ୱ ଦେଇ ଥୋକେ ପତିତଙ୍କୁ ତର ।
ହରିନାମ ଉପଦେଶ ମାହାମନ୍ତ୍ର ଦେଇ ।
ପବିତ୍ର କରିବ ଥୋକେ ପତିତଙ୍କୁ ତହିଁ ।
ଓଂକାର ଦେହରେ ପଞ୍ଚାତ୍ମିକ ଦେଇ ଭଜ ।
କଳି ତମ ନାଶହେବ ନୋହିବ ବହିଜ ।
କଳି ତମ ନାଶକରି ହୁଅ ବେଗେ ଉଦେ ।
ଗୋପାଳ ପୁଅଙ୍କୁ ଘେନି ଲୀଳାକର ହାଦେ ।
ଶୁଣ ହୋ ସୁଦାମ ଦାସ ମନ୍ତ୍ର ଦେବା କହି ।
ଆମ୍ଭ ପାଦ ଛୁଇଂଥାଅ ନକହିବୁ କାହିଂ ।
କହିଲେ ଶାପ୍ୟ ପାଇବୁ ନଷ୍ଟଭ୍ରଷ୍ଟ ହେବୁ ।
ସମ୍ପତ୍ତି ସନ୍ତତି ନାଶି ଦୁଃଖରେ ମଜ୍ଜିବୁ ।
ଉଦୟ ଭଗତ ମେଳେ ହୋଇବ ପ୍ରକାଶ ।
କଳିତାପ ନାଶହେବ ନ ଲାଗିବ ଦୋଷ ।
ଭଜିଣ ଗୁପତ ମନ୍ତ୍ର ଥିବଟି ଗୁପତେ ।
ବାରଣ ବେଳକୁ ଲୀଳା ଦେଖିବ ପ୍ରତକ୍ଷେ ।
ଯେଣୁ ପ୍ରିୟ ଆତ୍ମା ତୁହି ବରଜ ନନ୍ଦନ ।
ତେଣୁ ତୋହୋ ଆଗେ କହେ ଗୁପ୍ତକଥାମାନ ।
ଓଂକାର ଯେ ପିଣ୍ଡ ଗୋଟି ସପ୍ତ ଆବରଣ ।
ଭୂତ ସମୀର ଯେ ଆତ୍ମା ମନକୁ ଘେନିଣ ।
ବୀଜ ରୂପ୍ ସ୍ୱର ଯେଥି କୋଟି ତେଜହୋଇ ।
ବିଜୟେ କରିଣ ଛନ୍ତି ପଞ୍ଚୁଥାନେ ସେହି ।

ଓଂକାର କରିଣ ଦୀର୍ଘେ ପଛିମକୁ ଯିବ ।
ବିପରୀତ କରି ମନ୍ତ୍ର ମୁଖେ ଉଚ୍ଚାରିବ ।
ଛନ୍ଦାଛନ୍ଦି ହୋଇ ବ୍ରହ୍ମ ରାଉଅଛି ସ୍ୱର ।
ବ୍ରହ୍ମ ଗଣ୍ଠି ସନ୍ଧି ଚିହ୍ନି ଅଂଅକୁ ଧର ।
ଆ ଇ ଉ ଓ ଧରିଣ ଉଚ୍ଚାରିବ ସ୍ୱର ।
ରୂପ ନାମ ବୁଦ୍ଧି ବିବେକ ଆଶ୍ରୟକୁ ଧର ।
ଶ୍ରୀଂ ପୃଥୀ ପ୍ରାଣ ପ୍ୟାନ କୁମନ ସୁମନ ।
ମନ କ୍ଳୀଂ ଆପ ପ୍ୟାନ ତତ୍ତ୍ୱ ହ୍ରୀଂ ଘେନ ।
ତେଜ ସମାନ ଅମନ ଧ୍ରୀଂ ପର ବାୟୁ ।
ବାୟୁ ଆକାଶ ଉଦାନ ଜୀବ ଅମନୟୁ ।
ପ୍ଲୀଂ ଧ୍ରୀଂ ହ୍ରୀଂ ଶ୍ରୀଂ କ୍ଳୀଂ ନାମ ବୋଲ ଗୋପସୁତ ।
ଲଭିବୁ ପରମ ପଦ ନୋହିବୁ ତାପିତ ।
ଉଦୟେ ଭକତ ତାପ ନ ବାଧିବ ଜାଣି ।
କଳଙ୍କୀ ବେଳକୁ ଉଦେ ଗୁପ୍ତମନ୍ତ୍ର ପୁଣି ।
ଯାଅ ହୋ ସୁଦାମ ଦାସ ଶ୍ରୀହରି କହିଲେ ।
ବଉଳ ମୂଳରେ ପୁଣି ମନ୍ତ୍ର କହିଦେଲେ ।
ତୋ ଆଗେ କହିଲି ମୁହିଁ ବରଜନନ୍ଦନ ।
ଆତ୍ମା ପ୍ରିୟ ଯେଣୁ ତୁହି ନଥାଉଟି ଭିନ୍ନ ।
ଶୁଣି ରାମଦାସ ପାଦତଳେ ପଡ଼ି ଶୋଇ ।
ଧୂପ ଦୀପ ନଇବିଦ୍ୟ ଦେଇଣ ବିନୋଇ ।
ପୂଜାବିଧି ପାଦପଦ୍ମେ ଧ୍ୟାଇ ମାନସିକେ ।
ହରି ହରି ବୋଲି ଶବ୍ଦ କଲେ ତିନି ଡାକେ ।
ହରଷିତ ହୋଇଣ ଯେ ଗଲେ ମନ୍ଦିରକୁ ।
ପାମର ଅଚ୍ୟୁତ ବୋଲେ ଭୟ ମୋ ଦୁଷ୍ଟକୁ ।
ନିରେଖ ହୋଇ ଭବସାଗରେ ଅଛି ପଡ଼ି ।
ଶ୍ରୀହରି କରୁଣା ଥିଲେ ଭୟ ଯିବ ଛାଡ଼ି ।

ଇତିଶ୍ରୀ-ଶୂନ୍ୟସଂହିତାୟାଂ ଶ୍ରୀ ଗୁରୁଶିଷ୍ୟ ବୋଧନେ
ସପ୍ତପଞ୍ଚାତ୍ମିକ ପ୍ରଚ୍ଛିନ୍ନ କଥନେ ନାମ ତ୍ରୟବିଂଶ ଅଧ୍ୟାୟଃ ।

 

# ଚତୁର୍ବିଂଶ ଅଧ୍ୟାୟ

ରାମଚନ୍ଦ୍ର ଦାସ ପାଦପଦ୍ମ ଧରି କହି ।
ଶୁଣିଣ ସନ୍ଦେହ ମୋତେ ଲାଗିଲା ଗୋସାଇଁ ।
କହିଦିଅ ଧାରଣାର ଯୋଗସିଦ୍ଧି ଖଣ୍ଡ ।
ଲଭିବି ପରମ ପଦ ନାଶି ଯମଦଣ୍ଡ ।
ଶ୍ରୀହରି ଚରଣେ ଚିତ୍ତ ଥିବ ନିରବଧି ।
ନାଶିବି ପାତେକରାଶି ଯୋଗ ହେବ ସିଧି ।
ଏତେ କହି ହରିହରି ବୋଲି ପାଦେ ପଡ଼ି ।
ପୂଜାବିଧି ଥୋଇଣ ଯେ ବେନିକର ଯୋଡ଼ି ।
ଦେଖିଣ ଶିଷ୍ୟ ଭଗତି ହରଷ ଅଚ୍ୟୁତ ।
ହରିହରି ବୋଲି ଶବ୍ଦ କଲେ ତିନି ଡାକ ।
ଅମନ ପୁରରେ ମନ ନିବେଶିଲେ ନେଇ ।
ପ୍ରାଣ ପ୍ୟାନ ସମାନ ଉଦାନେ ମନ ଦେଇ ।
ଦିଶିଲା ଯେ ପୂର୍ବାପୂର୍ବ ଯୋଗସିଧ୍ୟ ଭାଗ ।
ବୋଇଲେ ବସିଣ ରାମ ଶୁଣ ଯେବେ ଯୋଗ ।
ତାରକ ଯେ ଦଣ୍ଡକ କୁଣ୍ଡଳୀ ଆଦି ଦେଖ ।
ଅର୍ଦ୍ଧ ବିନ୍ଦୁ ଘେନି ପାଞ୍ଚ ହୋଇଲା ସଂଯୁକ୍ତ ।
ପଞ୍ଚାତ୍ମିକେ ଦେଇଣ ଯେ ଭଜନ କରିଲେ ।
ଗୋଲକ ବୈକୁଣ୍ଠେ ଠାବ ଲଭନ୍ତି ସେ ଭଲେ ।
ତାରକ ଯେ ଶ୍ରୀଂ ଗୋପୀ ନାସିକାଟି କହି ।
ନିତ୍ୟକୃଷ୍ଣ ମହାନିତ୍ୟ ସେ ସ୍ଥାନେ ଦୃଶଇ ।
ନାସିକାକୁ ତଳେକର ଆହୋ ରାମ ଦାସ ।
ଜ୍ୟୋତି ଘରେ ରେଡ଼ ରୂପ ଅନାଦିଟି ଦୃଶ୍ୟ ।
ଦିଶିବ ଯେ ଦିବ୍ୟରୂପ ଦେଖ ସାକ୍ଷାତ୍ତେଣ ।
କହିବା ଧାରଣା ବିଧି ସାଧନା ସୂତ୍ରେଣ
ବସିବ ଯେ ସମାସନେ ମେରୁ ତୁଳକରି ।
ଚନ୍ଦ୍ରଘରେ ସୂର୍ଯ୍ୟଙ୍କୁ ଥାପିବ ଦୃଢ଼କରି

ତୋଳିବ ପ୍ରାଣ ଆପାନ ଲଗାଇ ସଧୀରେ ।
ଧ୍ୱନି ଶବଦକୁ ବାରବେନି ଗୁହାଠାରେ
ଧର୍ଯ୍ୟ ଦ୍ରୁପଣରେ ଧ୍ୟାଅ ପରମ ରୂପକୁ ।
ଅମୂଲ୍ୟ ପଦାର୍ଥ ଲାଭ ତୋହୋର ଭାଗ୍ୟକୁ ।
କହିବା ସାଧନା ବିଧି ସାଧିପାରୁ ଯେବେ ।
ପ୍ରତି ପ୍ରତି କରିଣ ଯେ କହିଦେବା ତେବେ ।
ଯେହା କଲେ ଯୁଗେ ଯୁଗେ ଥିବୁ ଚିର ହୋଇ ।
କ୍ଷଣେ ବା ନିମିଷେ ଧ୍ୟାଅ ହେତୁମତି ଦେଇ ।
ମହାଶୂନ୍ୟ ଛରିଣ ଅକ୍ଷରେ ହେଲା ଠୁଳ ।
ଅଂ ଆ ଇ ଉ ଏ ସ୍ୱର ହେଲା ମୂଳ ।
ପଞ୍ଚସ୍ୱର ଘେତି ବ୍ରହ୍ମ ରାଉଅଛି ସ୍ୱର ।
ଏହି ପଞ୍ଚାକ୍ଷର ନାମ ଗ୍ୟାଂନ ଆଶ୍ରେ ଧର ।
ଓଂକାର ସ୍ୱରରେ ଶ୍ଳୀଂ ପୃଥିବୀଜ କହି ।
ଆଦିମାତ ଦୟା କଲେ ଯୋଗ ସିଦ୍ଧ ହୋଇ ।
ପ୍ରାଣ ପବନକୁ ଦୃଢ଼େ ଧରିବୁ ତୁ ଯେବେ ।
ଆତ୍ମାଗ୍ୟାଂନ ସିଦ୍ଧ ଯୋଗ ପାଇ ସିନା ତେବେ ।
କୁମନରେ ପରକୃତି ଯୋଗ ଭଗ୍ନକରି ।
ସୁମନ ସୂତ୍ରେଣ ମନ ଧର ହେତୁକରି ।
କ୍ଳୀଂ ବୀଜ ଜଗୁନାଥ ଆପ ମଧ୍ୟେ ଘେନ ।
ପ୍ରାଣ ପବନକୁ ଧରି ଆତ୍ମା ମଧ୍ୟେ ଚିହ୍ନ ।
ତତ୍ତ୍ୱଆତ୍ମା ହ୍ଳୀଂ ବୀଜ ଶେଷଦେବ କହି ।
ତେଜଗୁଣ ସମାନ ଅପାନ ବାଇ ତହିଂ ।
ବିମନଟି ଶ୍ଳୀଂ ବୀଜ ମନ ଧ୍ଳୀଂ ବୀଜ ।
ପରମ ଆତ୍ମାଟି ମହାଶୂନ୍ୟ ବୋଲି ହେଜ ।
ବାୟୁ ଅପାନ ଆକାଶ ଉଦାନ ପବନ ।
ଜୀବଟି ଅମନ ପ୍ରୀଂ ଅଟେ ସିଂହାସନ ।
ଯେହିଟି ଅରୂପାନନ୍ଦ ନାମତତ୍ତ୍ୱ ଠୁଳ ।
ଉଭବ ସଂହାର କରେ ରାଧା ପ୍ରେମେ ଭୋଳ ।
ବଂସିବ ସମାନ ଭୂଇଂ ପଦ୍ମାସନ କରି ।
ବେନିକର ଛନ୍ଦି ହୃଦପଦ୍ମେ ଥିବ ଧରି ।

ମୂଳ କମଳକୁ ଚାପି ପବନ ତୋଳିବ ।
ତରାଟି ନାସିକା ଉପରକୁ ଦୃଷ୍ଟିଦେବ ।
ଅଳପ ଅଳପ ଧୀରେ ତୋଳିଣ ପବନ ।
ଅଣର ଠାବେଣ ନେଇ ରଖିବ ଚେତନ ।
ସମାନ ଦୃଷ୍ଟିରେ ବାଇ ସମାନଟି କରି ।
ଅରୂପାନନ୍ଦର ପଦେ ଲୟ ଥିବ ଧରି ।
ତେବେ ସିନା ଅଙ୍ଗୁ ପାପରାଶି ହେବ ନାଶ ।
ପାମର ଅଚ୍ୟୁତ ପାଦପଦ୍ମେ କରି ଆଶ ।

ଇତିଶ୍ରୀ ଶୂନ୍ୟ ସଂହିତାୟାଂ ଗୁରୁଶିଷ୍ୟ ବୋଧନେ ଯୋଗସାଧନ
ସମାସନ ବିଧି କଥନେ ନାମ ଚତୁର୍ବିଂଶ ଅଧାୟଃ ।

## ପଞ୍ଚବିଂଶ ଅଧାୟ

ରାମଚନ୍ଦ୍ର ଦାସ ହୋଇ ହସହସ ପାଦପଦ୍ମେ ପଡ଼ିଶୋଇ ।
ନିସ୍ତରିଲି ନିସ୍ତରିଲି ମାହାପ୍ରଭୁ ରୋଦନ କରିଣ କହି ।
ଚରଣ ଧରିଣ କାରୁଣ୍ୟ କରିଣ ପ୍ରେମଭାବେ ସ୍ନେହେ କହେ
ଯେ ଘୋର କଳି ମାହାଘୋର ଜଞ୍ଜାଳ ଶୁଣି ଲାଗିଲା କି ଭୟେ ।
ଯେ ଘୋର କଳି ବେଳୁଂବେଳ ବଳି ଧରିବ ଅର୍ଦ୍ଧାଙ୍ଗ କାୟା ।
ସତ୍ୟ ସୁରସାର ନରଖିବ ଧାର ଘୋଟିଥିବ ବେଗେ ମାୟା ।
ହୋଇବ ଦୁର୍ବଳ କଳିର ପ୍ରବଳ ନଥିବଟି କିଛି ଭଏ ।
ସୁଗ୍ୟଂ ସାଧୁଜନେ ପୀଡ଼ା ଅନୁକ୍ଷଣେ ଦେବ କଳିଯୁଗ ରାୟେ ।
ନ ରଖିବ ଧାର ମହିମା ବିଚାର ଅନ୍ୟୋଅନ୍ୟେ ହେବ ପୁଣି ।
ଶାନ୍ତି ଶୀଳତା ପ୍ରିୟବାକ୍ୟ ନ ଦେବେ କପଟେ ପୂରିବେ ପ୍ରାଣୀ ।
ଶ୍ରୀହରି ପ୍ରସାଦ ନମାନି ଆପଦ ଲଙ୍ଘିଲେ ଶ୍ରୀହରି ଜନ ।
ଶ୍ରୀହରି ସେବକ ଅନ୍ୟୋଅନ୍ୟ ହେବେ ଧାରା ନରଖିବେ ପୁଣ ।
ଶ୍ରୀମୁଖରେ ପ୍ରଭୁ ବୋଇଲେ ଧରଣୀ ବୋଧଦେଇ ଦେଲେ ଆଗ୍ୟାଂ ।
ମହିମା ଆଶ୍ରିତ ଜନକୁ ବିପଦ କଳିର ଦେଖ ପ୍ରତିଗ୍ୟାଂ ।
ସୂର୍ଯ୍ୟ ଅନଳେ ଶୀତକି ରହିପାରେ ପ୍ରଦୀପେ ଅନ୍ଧାର ନାଶ ।

ଶ୍ରୀହରି ମହିମା ଶ୍ରବଣେ ପାତେକରାଶି ହୋଇପାରେ ନାଶ ।
ଶ୍ରୀହରି ଭଗତ ଶୁଚି ସୁପବିତ୍ର ବିଘ୍ନମାନଙ୍କୁ ନାଶନ୍ତି ।
ଅମାୟା ଅକ୍ରୋଧୀ ପରେ ପ୍ରିୟ ଭାବି ମହିମା ଆଶ୍ରିତେ ଥାନ୍ତି ।
ଶ୍ରୀହରିକି ଲଏ କାଳେକାଳେ ଥାଏ ଶ୍ରୀହରିର ତାଙ୍କୁ ଦୟା ।
ବିପଦମାନ ଭୟରେ ନାଶ ଯାଇ ମହିମା ଦେଖ ପ୍ରତିଗ୍ୟାଂ ।
ପୂର୍ବେ ପ୍ରହଲାଦ କେତେହେଂ ଆପଦ ବିପଦ ପଡ଼ିଲା ତାର ।
ଶ୍ରୀହରି ପ୍ରସାଦେ ବିପଦ ବିନାଶି ଅମରେ ହେଲା ନରେନ୍ଦ୍ର ।
ଧ୍ରୁବଙ୍କୁ ଆପଦ ପଡ଼ିଲା ବିପଦ ବିଘ୍ନମାନ ହେଲେ ମେଳି ।
ଭୟାଙ୍କର ଭୟ ପ୍ରକାଶ ହୋଇଲା ଦାବାଅଗ୍ନି ଦେଲେ ଜାଳି ।
ମହିମା ଆଶ୍ରିତେ ବାଳୁତ ନନ୍ଦନ ଭୟରୁ ତ୍ରାହି ପାଇଲା ।
ଧ୍ରୁବମଣ୍ଡଳ ପରେଣ ପ୍ରିୟପଦ ଉପରେ ଯାଇ ରହିଲା ।
ଦେଖ ଶ୍ରୀମହିମା ପ୍ରସାଦରୁ ସିନା ଅଭୟେ ପଦ ଲଭିଲେ ।
ବିଭୀଷେଣ ଭୟ ବିନାଶ ହୋଇଲା ଅଭୟ ବର ପ୍ରାଇଲେ ।
ମହିମା ଆଶ୍ରିତ ଜନଙ୍କୁ ବିପଦ କାଳେ ନ ଥାଇଟି ପୁଣି ।
ଶ୍ରୀମୁଖେ ବୋଲିଛ ମହାପ୍ରଭୁ ତୁମ୍ଭେ ଶୁଣିଛି ଶ୍ରୀମୁଖବାଣୀ ।
ଶ୍ରୀମୁଖର ଆଗ୍ୟାଂ ହେବକି ଅବଗ୍ୟାଂ ବାରାନିଧି ଲଘୁକୂଳ ।
ମହୀ ଭରା ଅହିରାଜ ନସହିବ ଛାଡ଼ିବଟି ନିଜ ଶିର ।
ଜନ୍ତୁପତି ଦଣ୍ଡୁ ଶ୍ରୀହରି ସେବକ ମାତାପୁତ୍ରେ ଦୋଷ ହେଉ ।
ଶିଷ୍ୟ ଗୁରୁବାକ୍ୟ ଉପହାସକରି ଲଘି ଦିନକାଳ ନେଉ ।
ଗିରିଶିଖରରେ କୁମୁଦ ପ୍ରକାଶୁ ପଶ୍ଚିମେ ଉଦୟେ ଭାନୁ ।
ନିଶାପତି ଉଦେ ଉଆଂସ ନିଶିରେ ଅଚଳହିଂ ଏବେ ଚଳୁ ।
ହୋଇଲେ ଅରକ୍ଷ ଶ୍ରୀହରି ସେବକ ତାଙ୍କୁ ମହୀଭାର ହେଲା ।
ଶ୍ରୀହରି ସେବକ ହିଂସା ଅପବାଦ ଅବିରତେ ଗରାସିଲା ।
ତୁମ୍ଭେ ଯେ ଶ୍ରୀହରି ଜନେ ଉପକାରୀ ସଦାକାଳେ ଦୟାକର ।
ଅନ୍ତର୍ଯାମୀ ନାଥ ଆତ୍ମା ଯେଣୁ ତୁମ୍ଭେ ଭୃତ୍ୟଜନଙ୍କୁ ଉଦ୍ଧାର ।
ତ୍ରାହିକର ତ୍ରାହିକର ତ୍ରାହିକର ତ୍ରାହିକର ମହାବାହୁ ।
ସଦାକାଳେ ତୁମ୍ଭ ଭୃତ୍ୟଙ୍କର ସେବା ପରିଭୃତ୍ୟେ ଦିନ ଯାଉ ।
ଅଧମ ଅରକ୍ଷ ଗୁଆଂର ପତିତ ରାମଦାସ ନାମ ମୋର ।
ମାତାପିତା ପ୍ରିୟା ନୁହଇଟି ମୁହିଂ ବେଳହୁଂ ଅଟେ ଗୁଆଂର ।

ଶ୍ରୀହରି କରୁଣା ଥିବାରୁ ମୁଂ ସିନା ମହିମାନିଧିକି ପାଇ ।
ଧନ୍ୟ ପିତାମାତା ଧନ୍ୟ ଗୁରୁଦେବ ବୋଲି ପ୍ରଦକ୍ଷିଣେ ଶୋଇ ।
ଚରଣ ଧରିଣ ବିନୋଇ ହୋଇଣ ଶୋକ ଗଦଗଦେ କହେ ।
ଯେ ଘୋରକଳି ମହାଘୋର ପ୍ରବଳ ଲାଗୁଅଛି ମୋତେ ଭୟେ ।
ତୁମ୍ଭ କୃପା ନାବ ହୋଇଣ ପ୍ରଭବ ତ୍ରାହି ମୋତେ ତୁମ୍ଭେ କର ।
ଅଚ୍ୟୁତ ନାମ ଚ୍ୟୁତ ନାହିଂ ଯାହାର କରିବେ ସେହି ଉଦ୍ଧାର ।
ବିନୟ ଶୁଣିଣ ଅଚ୍ୟୁତ ବଦନ୍ତି ଶୁଣ ତୁହି ରାମଦାସ ।
ମୋହ ଆତ୍ମା ତୁହି ତୋହ ଆତ୍ମା ମୁହିଂ ତୋର ତହିଂ ମୋର ଆଶ ।
ତୁ ଯେ ପଚାରିଲୁ ବରଜନନ୍ଦନ କଳି ଘୋର ପୀଡ଼ା ବୋଲି ।
ତାହା କହିବା ଶୁଣ ତୁ ଯେକମନେ ତଥ୍ୟ ଥାଅ ମନେ ଘେନି ।
ଦ୍ୱାପରେ ଶ୍ରୀହରି ଜନମ ହୋଇଲେ ବସୁଦେବଙ୍କର ଘରେ ।
ନାନା କଉତୁକ ରାଜସୁଖ ଭୋଗ ଲଭିଲେ ଦେବକୀ କୋଳେ ।
କିଛି ରାଜବିଧି ଆଦିସୁଖ ସିଦ୍ଧି ଭୋଗ ବିଳାସିଲେ ପ୍ରଭୁ ।
ସ୍ୱର୍ଗରେ ସଂଖୋଳା କଲା ଶକ୍ରରାଏ ଦ୍ୱାପର ତେଜିଲେ ପ୍ରଭୁ ।
ଉଦ୍ଧବ ଅକ୍ରୂର ଅନାଧୃଷ୍ଟ ବୀର ପ୍ରିୟ ଯାଦବାଦି ଯେତେ ।
କେମନ୍ତେ ତେଜିବି ଆତ୍ମାପ୍ରିୟଜନ ଭ୍ରାନ୍ତିହେଲା ପ୍ରଭୁ ଚିତ୍ତେ ।
ଆକୁଳ ହୋଇଲେ ବ୍ୟାକୁଳେ କହିଲେ ନିଯୋଗ ତେଜିଲେ ପ୍ରଭୁ ।
ଆମ୍ଭେ ତାହା ଜାଣି ପାଞ୍ଚଜଣ ପୁଣି ପୁଛାକଲୁଂ ଏତେ ସବୁ ।
ଶ୍ରୀହରି ବୋଇଲେ ଆକଟେ କହିଲେ ଯାଅ ଯେଥୁ ତୁମ୍ଭେ ବେଗେ ।
ମୋହ ବଂଶ ମୁହିଂ ବିନାଶ କରିବି ରହି ନପାରିବି ଯେବେ ।
ଶ୍ରୀହରି ଆକୁଳ ଦେଖିଣ ବ୍ୟାକୁଳ ଚରଣ ଧରି ଶୋଇଲି ।
କ୍ରୋଧେ ଉଞ୍ଚେ ମୁହିଂ ଚରଣ ଧରିଣ ରୋଦନକରି ବୋଇଲି ।
କି ବୁଦ୍ଧି କରିବି କେଣିକି ମୁଂ ଯିବି କହ ପ୍ରଭୁ ଆଦିମୂଳ ।
କେମନ୍ତେ ମୁଛିବି ପଦ୍ମପାଦ ସେବା ହୋଇବ ସର୍ବ ନିଷ୍ଫଳ ।
ଜାଣି ଆଦିମୂଳ ଆକୁଳେ କହିଲେ ପ୍ରକଟ ନକର ବାବୁ ।
ବରୁଣ ରାଜା ପୁର ମଣ୍ଡି ଅଛଇ ମୋ ବଂଶ ପୂଜିବଇ ସବୁ ।
ମୁହିଂ ଆଗେ ଯାଇ କଳିଯୁଗେ ରହି ଦାରୁବ୍ରହ୍ମେ ପୂଜା ହେବି ।
କୈବଲ୍ୟ ପସରା ନିରନ୍ତରେ ଜୁରକରି ଭୋଗ ବିଳସିବି ।
ଥିବେ ମୋ ନିଯୋଗ ସେବାକାରୀ ସର୍ବ ଛତିନିସସ୍ର ନିଜ ଭକ୍ତ ।

ମାନସିକ ସେବା ଭୋଗ ବିଳସିବି ଦୁଷ୍ଟଙ୍କୁ କରି ନିପାତ ।
ପତିତ ତାରିବି ମୋ ଭକ୍ତ ପାଳିବି ଭୋଗ ବିଳସିବି ମୁହିଂ ।
ପାଦପାଣି ଗୋପ୍ୟ ନକହିବି ବାକ୍ୟ ନିଶ୍ଚଳରେ ଥିବୁଂଧାଇ ।
ନିରାକାର ଆଦିମୂଳ ମୁଂ ଅଟଳ ସେବାରେ ଥିବି ନିଶ୍ଚଳେ ।
ତ୍ରାହିକର ତ୍ରାହିକର ଦେବ ବୋଲି ମୋ ଭକ୍ତ ଡାକିବେ ଭୋଳେ ।
ଶୁଣି ନଶୁଣିବି ଗୁପତେ ମୁଂ ଥିବି ବାଞ୍ଛାଫଳ ଦେବି ମୁହିଂ ।
ମୋହବଂଶ ମୋତେ ନିରତେ ପୂଜିବେ ନିଯୋଗ ଦେବେ ଯୋଗାଇ ।
ତୁମ୍ଭେ ପାଞ୍ଚଜଣ ଆମ୍ଭ ଆତ୍ମା ବୋଲି କହିଲି ତୁମ୍ଭଙ୍କୁ ଯେହା ।
ଯାଅ ହୋ ଅଚ୍ୟୁତ ଆମ୍ଭ ଆତ୍ମା ତୁହି ଗୁପତ କରିବୁ ତାହା ।
ଯେତେ କହିଣ ଶ୍ରୀହରି ବିଜେକଲେ ନିଜ ମନ୍ଦିରକୁ ଗଲେ ।
ଆମ୍ଭେ ପାଞ୍ଚଜଣ ରହିଲୁ ନିଶ୍ଚଳେ ଧାଇଣ ପଦ୍ମ କମଳେ ।
ଯେମନ୍ତେ କିଛିଦିନ ଯାଇଣ ତହିଂ ଜାଣି ନଜାଣିଲେ କେହି ।
ଉଦ୍ଧବ ବିଚାରେ ବିପରୀତ ହେଲା ଦ୍ୱାରିକା ଶୋଭା ନପାଇ ।
ଅନୁସରି ନୀତି ରାଜାର ସମ୍ପତ୍ତି ରାଜନୀତି ନ ଶୋଭଇ ।
ବିପରୀତ ଧୂମ ପ୍ରକାଶ ଶୋଭନ ବେଲୁଂ ବେଳ ଗ୍ରାସିଯାଇ ।
ଚଞ୍ଚଳେ ନିର୍ମଳ ଧୂମଜାତ ବିଳ ଶୃକାଳ ଦିବସେ ରାବେ ।
ଉଲୁକ ଘୋର ରାବମାନ ଦିଅନ୍ତି ଦିବସେ ସୁନ୍ଦରା ତେଜେ ।
ବେଳୁ ବେଳ କାଳ ଗ୍ରାସିଲା ପ୍ରବଳ ଦୁର୍ବଳ ହେଲେ ପ୍ରବଳ ।
ନିରନ୍ତରେ ଭୟାଙ୍କାର ଗ୍ରାସିଗଲା ପ୍ରଜାଏ ହେଲେ ବିକଳ ।
ଉଦ୍ଧବ ଜାଣିଲା ବିପରୀତ ହେଲା ଦ୍ୱାରିକା ତେଜିବେ ପ୍ରଭୁ ।
ନିଜବଂଶ ନାଶକରି ହୃଷିକେଶ ନାଶିବେ ସଗୋତ୍ର ସବୁ ।
ହୋଇଲା ନିର୍ଜନ ନ ଫୁରେ ବଚନ ଶୋକ ଗଦଗଦେ କହେ ।
କାହା ଆଗେ କହିବି କି ବୁଦ୍ଧି କରିବି ନିରନ୍ତରେ ମନେ ଧାୟେ ।
କୁଶାସନେ ବସି ଯୋଗଲଏ ରସି ସାଧିଲା ସାଧନ ଗ୍ୟାଂନ ।
ମନ ଚଇତନ ସହଜେ ହଜିଲା ହଜିଲା ଗ୍ୟାଂନ ଅଗ୍ୟାଂନ ।
ପରମେ ପରମ ହୋଇଲା ଅଗ୍ୟାଂନ ଆଶ୍ରେକଲା ଅନାଦିକି ।
ଅଲେଖପୁରେ ନିରଞ୍ଜନ ପାଟଣା ଦିବ୍ୟରୂପ ତହିଂ ଦେଖି ।
କାଳିନ୍ଦୀ କଦମ୍ବ ମୂଳେ ଦେବଗଣ ତାଳମାନ ବାଦ୍ୟ ପୂରେ ।
ରମା ପ୍ରେମାବୃନ୍ଦ ଚମ୍ପକ ଲଳିତା ପ୍ରେମଲତାଦି ସଂଗରେ ।

ଶୁଭୁଅଛି ଧ୍ୱନି ମଧୁ ରସବାଣୀ ପିଉଷ ସଦା ସୁବାଦ୍ୟେ ।
ମହାଶୂନ୍ୟ ଯହିଁ ରାତ୍ରିଦିବା ନାହିଁ କୋଟି ସୂର୍ଯ୍ୟ ତହିଁ ଉଦେ ।
ଦେଖିଣ ଅଚେତ ହଜିଲା ସଚେତ ଜଳରେ ଜଳ ମିଶିଲା ।
ତେଜରେ କଳା ମିଶିଲା ବିତପନ ବାୟୁରେ ବାୟୁ ପଶିଲା ।
ପୃଥ୍ୱି ଆପ ତେଜ ବାୟୁ ଯେ ଆକାଶ ପଞ୍ଚଗ୍ୟାଂନ ପଞ୍ଚାତ୍ମିକେ ।
ପରମ ଅରୂପ ଅନାମ ମହାଶୂନ୍ୟ ଲୀନ ହୋଏ ଯେ ପ୍ରତକ୍ଷେ ।
ମହାଶୂନ୍ୟ ଜ୍ୟୋତି ଅରୂପ ଅମୂର୍ତ୍ତି ଜ୍ୟୋତିକଣ ରୂପରାଜେ ।
ହୁତାଶନ ଅଗ୍ନି ମହାଶୂନ୍ୟ ହୋଇ ଜ୍ୟୋତିରାନନ୍ଦ ସେ ବିଜେ ।
ଦେଖିଲା ଦିବ୍ୟ ନିରଞ୍ଜନ ପାଟଣା ସପ୍ତ ସନକାଦି ଯହିଁ ।
ମରୀଚି ମୁନି ମୁଚୁକୁନ୍ଦ ଗାଗ୍ରବ ଗୌତମ ଅଛନ୍ତି ଧାଇ ।
ଗୋପ ମଥୁରା ଦ୍ୱାରିକା ବୃନ୍ଦାବନ ଚତୁର୍ଭୁଜ ରୂପ ରାଜେ ।
ଛଡ଼ଭୁଜ ରୂପ କଉଂ ସ୍ଥାନେ ଛନ୍ତି ସହସ୍ର ମୂର୍ତୀ ବିରାଜେ ।
ସହସ୍ରେ ଲୋଚନ ସହସ୍ରେ ବଦନ ସହସ୍ରେ ବାହୁ ନାସିକା ।
ସହସ୍ରେ ଶ୍ରୁତି ଶ୍ରବଣ ଦେଖି ତହିଁ ସହସ୍ରେ ଶିରଟି ଯେକା ।
ଉଦ୍ଧବ ଅକ୍ରୂର ଅନାଦୃଷ୍ଟ ବୀର ପ୍ରିୟ ଯାଦବାଦି ଯେତେ ।
ଗୋପ ଅଂଶୀ ନନ୍ଦକନ୍ଦ ଗୋପବାଳ ସାତ୍ତ୍ୱକି ସୁତ ସହିତେ ।
ନାନା କଉତୁକ ଲୀଳା ଲାଗିଅଛି ଗୃହେ ଗୃହେ ଗୋପବାଳେ ।
ଦ୍ୱିଭୁଜ ହରି ବିଜୟେ ଯାର ଘରେ ଗୋପାଳ ଗୋଗୋଷ୍ଠ ମେଳେ ।
ଦୋହନ ମନ୍ଥନ କେ କରେ ଗାୟନ ସ୍ୱରଧ୍ୱନି ମଦୁରସେ ।
ଚତୁର୍ଭୁଜ ଷଡ଼ଭୁଜ ଦିବ୍ୟରୂପ କାହିଁ କରିଛନ୍ତି ବିଜେ ।
ଦୂତିକା ରାଧିକା ସହଚରୀମାନେ କୂଳବଧୂ ଲକ୍ଷ୍ମୀପ୍ରିୟା ।
ଦିବ୍ୟ ପଲଙ୍କେ ବିଜଏ ଆଦିକନ୍ଦ ଘେନିଣ ଗୋପ ନାୟେକା ।
କଉଂ ସ୍ଥାନରେ ପ୍ରଳୟ ଜଳରାଶି ଅଗାଧ ଗଭୀର ରୂପେ ।
ଘୋଟିଅଛି କୋଟି କୋଟି ସୂର୍ଯ୍ୟତେଜ ଲହରୀ ମାରଇଂ କୋପେ ।
କାହିଁ କାଳଚକ୍ର ଗ୍ରାସଇ ନିରତେ କେହୁ ମହାଭଏ ଗ୍ରାସେ ।
କାହିଁ ଯଦୁବୀର ଯାଦବ ସଂଗୋତ୍ର କାଳ ଫାଶିଯାଇଂ ବଳେ ।
ହୁଅନ୍ତି ଉଛୁକ ଯଦୁବଂଶ ଲୋକ କେବା କହନ୍ତି ରାଜାକୁ ।
ମାହାଘୋର ଯୁଦ୍ଧ ସାଂଗ୍ରାମ ଲାଗିଛି ଭୟ ନଥାଇ କାହାକୁ ।
ମାର ମାର ଧ୍ୱନି ଶବଦ ଶୁଭୁଛି ମଡ଼ା କୁଢ଼ କୁଢ଼ ପଡ଼େ ।

ପଦ୍ମନ କନ୍ଦ ପ୍ରାଶୁର ବୀରଶୁର ରୋଧିର ସାଗରେ ବୁଡ଼େ ।
କୋଟି କୋଟି ସୂର୍ଯ୍ୟ ତେଜ ବିରାଜଇ କାଳାନଳ ଚକ୍ର ଗ୍ରାସେ ।
କାକୁସ୍ତେ କେ ଅବା ଶରଣ ମାଗଇ କହଇ କେବା ବିରସେ ।
ଦିବ୍ୟ ସିଂହାସନ ଦିଶଇ ଶୋଭନ ଦେଉଳ ଅଟାଳିମାନ ।
ବିଜୟେ କରିଣ ଅଛନ୍ତିଟି ତହିଁ ଦିବ୍ୟ ମୂରୁତି ଶୋଭନ ।
ନାହିଁ ପାଦପାଣି ବଚନହିଁ ଶୁଣି ମଉନେ ଅଛନ୍ତି ରହି ।
ଦାରୁବ୍ରହ୍ମ ମୂର୍ତ୍ତି ତ୍ରାହିକର ବୋଲି ଭଗତେ ଡାକନ୍ତି ରହି ।
ନାନା ବେଶମାନ ହୁଅନ୍ତି ଶୋଭନ ନାନା ଲୀଳାମାନ ହୋୟେ ।
କୈବଲ୍ୟ ପସରା ବିକାକିଣା ଲାଗେ ଭଗତଭାବେ କେ ପାୟେ ।
ଗୁରୁଶିଷ୍ୟ ଭେଦ ନାହିଁ ଯହିଁ ପୁଣି ଶିଷ୍ୟ ଗୁରୁଙ୍କ ଉପାୟେ ।
ଚାଣ୍ଡାଳ ବ୍ରାହ୍ମଣ ସୁରଦେବ ମେଳେ କୈବଲ୍ୟପସରା ପାଏ ।
କରନ୍ତି ମଣୋହି ଦେବରାଜ ତହିଁ ଆପେ ଆପେ ଡାକପଡ଼ି ।
ଭଗତଜନ କୋଳାହଳ ଲଗାନ୍ତି କେହୁ ଯାନ୍ତି ଗଡ଼ାଗଡ଼ି ।
ଧୂପ ଦୀପ ବନ୍ଦାପନା ଆଦି ଦେଖ କାହିଁ ଲାଗିଅଛି ଲୀଳା ।
କାହିଁ ଲକ୍ଷ ଲକ୍ଷ ଦିହୁଡ଼ି ଜଳଇ ଆଳଟ ଲକ୍ଷେକ ଧରା ।
କଳା ଧଳା ବାରୁ ଚଢ଼ି ଦେବଗୁରୁ ଦୁଷ୍ଟଙ୍କୁ ମାରନ୍ତି କାହିଁ ।
ଯାଜପୁର ବ୍ରହ୍ମା ଜନ୍ମସ୍ଥାନ ଆଦି ବିରଜା ପ୍ରଧାନ ଯହିଁ ।
ତହିଁ ରାଜଭୋଗ ପ୍ରଭୁ ଦେବରାଜ କରନ୍ତି ଭଗତ ମେଳେ ।
ରାଜସୁଖ ଭୋଗ ସମ୍ପତ୍ତି ସଂଯୋଗ ଭୋଗ ତହିଁ ସେ ଦେଖିଲେ ।
ଉଦ୍ଧବ ଅକ୍ରୁର ସୁନନ୍ଦ ଯେ କନ୍ଦ ପଦ୍ମନନ୍ଦ ଅଛି ସେବି ।
ସାତ୍ୱକୀ ସୁତ ସୁବଳ ତହିଁ ସଦା ନୟୋଗିଣ ଥାଇ ସେବି ।
ସାତ୍ୱକୀ ଯେ ବିଷ୍ଣୁ ଭଣ୍ଡାର ରଖଇ ଉଦ୍ଧବ ଚାମର ଖଟେ ।
ପ୍ରତି ଶୁକଦେବ ପୁରାଣ କହନ୍ତି ବ୍ରହ୍ମା ଚାରିବେଦ ରଟେ ।
ଅପୂର୍ବ ତାରତମେ ପ୍ରଭୁଙ୍କ ଛାମୁରେ ଅଛନ୍ତି ଭଗତ ଜନେ ।
ତ୍ରାହିକର ତ୍ରାହିକର ତ୍ରାହିକର ବୋଲନ୍ତି ଆପଣା ମନେ ।
ଯଦୁଅଂଶୀ ଗୋପଅଂଶୀ ମୁନିଅଂଶୀ ଗନ୍ଧର୍ବ ଅଛନ୍ତି ସେବି ।
ନିୟୋଗ ସେବାରେ ଅଛନ୍ତି ଖଟିଣ ୟେକ ଭାବେଛନ୍ତି ଭାବି ।
ଶ୍ରୀହରି ଦିବ୍ୟ ସିଂହାସନେ ବିଜୟେ ଲଳିତା ଲବଙ୍ଗପ୍ରିୟା ।
ପ୍ରେମରୂପା ପ୍ରିୟସଖୀ ଖଟିଛନ୍ତି ଆବରହିଁ ପଦ୍ମାଳୟା ।

ଚିତ୍ରଚାମର ଆଲଟ ପଙ୍ଖାକାର ତରାସ ମୟୂରପୁଚ୍ଛେ ।
ନାନା ବାଦ୍ୟଧ୍ୱନି ବାଜଣା ବାଜେଇ ପ୍ରଭୁ କରିଛନ୍ତି ବିଜେ ।
ରାଜନୀତି ଭୋଗ ସ୍ୱୟଂ କରି ଭୋଗ ଆପଣେ ଭୁଞ୍ଜନ୍ତି ପ୍ରଭୁ ।
ସେବାକାରୀଜନ ସେବା ଯେ କରନ୍ତି ନିଯୋଗ ଦିଅନ୍ତି ସବୁ ।
ଉଦ୍ଧବକୁ ହରି କୋଳେ ଧରିକରି କହନ୍ତି ବ୍ରହ୍ମ ସାଧନ ।
ଯୋଗଲୟେ ବସି ଅଛିଟି ଉଦ୍ଧବ ସାଧନା ଭକ୍ତି ବିଧାନ ।
କୋଳେ ଧରିକରି ଆଶ୍ୱାସନା କରି ଉଦ୍ଧବକୁ ହରି କହେ ।
ଆମ୍ଭ ଆତ୍ମା ତୁହି ତୋହ ଆତ୍ମା ମୁହିଂ ତୁହି ମୁହିଂ ଭିନ୍ନ ନୋହେ ।
ଉଦ୍ଧବ ଶିରେ ଶ୍ରୀହରି ନିଜ କରେ ନୀଳପତନୀ ବାନ୍ଧନ୍ତି ।
ଭଗତ ମେଳେ ଶ୍ରୀହରି ଆନନ୍ଦରେ ସର୍ବେ ହୁଳହୁଳି ଦ୍ୟନ୍ତି ।
ନିଯୋଗ ଗଣସେବା ତାରତମେ ଶ୍ରୀହରି ଛାମୁରେ ରହି ।
ଦକ୍ଷିଣ ଦ୍ୱାରପାଳଙ୍କ ସେବାକରି ନିଯୋଗ ସେବା କେ ପାଇ ।
ଯେ ବିଧିରେ ସିଦ୍ଧି ରାଜଯୋଗ-ବିଧି ନିଯୋଗ ଦେଖାଇ ସବୁ ।
ଅଚେତପୁରେ ଚେତନା ପ୍ରକାଶିଲା ଚକ୍ର ସୁଦର୍ଶନ ତେଜୁ ।
ଚେତି ଚଇତନ ହୋଇଲା ଚେତନ ଚଞ୍ଚଳ କଲାଟି ମନ ।
ଚିତ୍ତେ ଲଯେକରି ଯୋଗନିଦ୍ରା ଭାଙ୍ଗିଲା ଚାହିଂଲା ଚାରିଦିଗେଣ ।
ବୋଲଇ ଦ୍ୱାରିକାପୁର ତହିଂ ଯେକା କେତେ ପୁର ମୁଂ ଦେଖିଲି ।
ନାନା କଉତୁକ ଲୀଳା ଲାଗିଅଛି ସାକ୍ଷାନ୍ତ ପ୍ରାୟେ ମଣିଲି ।
ଅସମ୍ଭବ ଦିବ୍ୟ ମୂରତି ଶୋଭନ ଗୋପ ମଥୁରାଦି କେତେ ।
ଦ୍ୱାରିକା ଅଯୋଧ୍ୟା ବୃନ୍ଦାବନ ଆଦି ବିରଜା ମଣ୍ଡଳ ଯେତେ ।
ବାରଣ ଭୂମି ନାରାୟଣେ ସ୍ୱରୂପ ସାକ୍ଷାତେ ଦେଖିଲି ମୁହିଂ ।
ଅନେକ କାଳ ଯୋଗ ମୁହିଂ ସାଧିଲି ଯେହା ନଦେଖିଲି କାହିଂ ।
ରାଜ ଯୋଗ ବିଧି ଭକ୍ତଭାବ ସିଦ୍ଧି ରାଜସୁଖ ଭୋଗମାନ ।
ଭଗତି ଭାବେ ଭଗତଜନ ମିଳି ଦେଖିଲି ଦିବ୍ୟ ଲୋଚନ ।
ଯେବେତ ଶ୍ରୀହରି ରାସଭୋଗଶିରୀ ଭଗତ ତାରିବେ ସେହି ।
କଳିଯୁଗେ ନୀଳାଞ୍ଚଳେ ଦାରୁରୂପେ ପ୍ରକାଶି ଜନଙ୍କୁ ମୋହି ।
କୈବଲ୍ୟ ପସରା ପତିତ ତାରିବେ ମେଳେଛ କରିବେ ନାଶ ।
ଭଗତଜନ ଘେନି ଲୀଳା କରିବେ ମର୍ତ୍ତ୍ୟ ବଇକୁଣ୍ଠେ ବାସ ।
ଚିତ୍ତେଣ ବିଚାରି ଆନନ୍ଦ ମନେ ଧରି ନୀଳାଞ୍ଚଳଙ୍କୁ ଗମନ ।

ଯୋଗଲଏ ବସି ଶ୍ରୀହରି ଛାମୁରେ କରିଲାଯାଇଂ ଦ୍ରଶନ ।
ଶ୍ରୀହରି ଜାଣିଲେ ଆକଟ ମଣିଲେ ଉଦ୍ଧବ ଜାଣିଲା ଯେବେ ।
ମୋହ ବଂଶ ମୁହିଂ ବିନାଶ କରିବି ରହି ନପାରିବି କେଭେଂ ।
ଉଦ୍ଧବକୁ ହରି ଆଶ୍ୱାସନକରି କହନ୍ତି ବଚନ ପ୍ରଭୁ ।
ଆତ୍ମଆତ୍ମା ତୁମ୍ଭେ କହିଥିଲ ବୋଲି ଆଶ୍ୱାସି କହିଲେ ସବୁ ।
ଉଦ୍ଧବ ଚରଣ ଧରିଣ କ୍ରୋଧେଣ ଶୋକ ଗଦଗଦେ କହେ ।
ଅନ୍ତର୍ଯ୍ୟାମୀ ନାଥ କିଅବା ନଜାଣ ଜଣାଇବି ପ୍ରଭୁ କିହେ ।
ଆହେ ଦୀନବନ୍ଧୁ କୃପାମୟେ ସିନ୍ଧୁ କରୁଣାସାଗର ହରି ।
ମୁଂ ହେଲି ଅରକ୍ଷ ହେ ପଦ୍ମପତ୍ରାକ୍ଷ କଲ ମୋତେ ଯେତେସରି ।
ମୁଛିବି କେମନ୍ତେ ପଦ୍ମପାଦ ସେବା କହ ପ୍ରଭୁ ଆଦିମୂଳ ।
ଅରକ୍ଷ ଜନକୁ ସୁଦୟା ଥିବାର ମୁଂ ଯେ ହୋଇଲି ନିଷ୍ଫଳ ।
ପାଇ୍ ହରାଇଲି ଦିବ୍ୟମଣି ମୁହିଂ ଅରକ୍ଷ କର୍ମ ମୋହରି ।
ନୀଳମଣି ହସ୍ତୁ କେ ଘେନି ଯାଉଛି କେମନ୍ତେ ମୁଂ ଦେହ ଧରି ।
କାନ୍ଦିଣ ଚରଣ ଧରି ପୁଣ ପୁଣ ପ୍ରଦକ୍ଷିଣେ ପାଦେ ପଡ଼ି ।
ଶୋକ ଗଦଗଦେ ରୋଦନ କରଇ ଚରଣ ଧରିଣ ପଡ଼ି ।
ଶ୍ରୀହରି ଦେଖିଣ ଉଦ୍ଧବ ଆକୁଳ କ୍ରୋଧେ ବାକ୍ୟ ନ ଫୁରଇ ।
ଥକିତ ହୋଇଣ ନିଷ୍ଠୁର ବଚନ ଉଦ୍ଧବକୁ ଦେଲେକହି ।
ଯାଅ ହୋ ଉଦ୍ଧବ ଘେନି ଆତ୍ମପାଦ ଆଶ୍ରମ ନାମେ ବଦରିକା ।
ଯୋଗସାଧି ତାପ ବିନାଶ କରିବୁ ନଥିବଟି ତୋର ଶଙ୍କା ।
ଉଦ୍ଧବ ଶୁଣିଣ କ୍ରୋଧେ ରାବେ ପୁଣି ଚରଣ ଧରି ତଳେପଡ଼ି ।
ତ୍ରାହି ତ୍ରାହି ତ୍ରାହି ବୋଲିଣ ଯେ ଉଚ୍ଚେ ପାଦପଦ୍ମ ଧରି ଗଡ଼ି ।
ଆଶ୍ୱାସନାକରି ଶ୍ରୀହରି ତାହାଙ୍କୁ କହିଲେ ଅନେକ ତହିଂ ।
ମୋହ ଆତ୍ମା ମୁହିଂ କେମନ୍ତେ ମୁଛିବି ଆଉ ନପାରିବି ରହି ।
ମୋ ବଂଶ ନାଶିବି ମୁହିଂ ଯେଥୁଂଯିବି ବୁଡ଼ିବ ଦ୍ୱାରକାପୁର ।
ବରୁଣ ରାଜା ଯେ ମୋ ବଂଶ ପୂଜିବ ମଣ୍ଡିଛି ଦିବ୍ୟମନ୍ଦିର ।
ବେଳେବେଳେ ଜଳନିଧି ଉପଚାରି ମୋର ତହିଂ ଥାଏ ଦୟା ।
ମୋ ବଂଶ ପୂଜିବ ଥାନେ ଠାବଦେବ କହିଦେଲୁ ତୋତେ ଯେହା ।
ଜାଣିଛୁ ତୁ ତାହା ଯୋଗ ବିଧି ଯାହା ଦେଖିଅଛୁ ତୁହି ଧୀର ।
ଲୀଳାକରି ଭୋଗ ବିଳାସିବୁ ଆମେ ଆଗ୍ୟାଂଟି ନିରାକାରର ।

ଶୁଣିଣ ଉଦ୍ଧବ କାରୁଣ୍ୟ କରିଣ ଶୋକ ଗଦଗଦ୍‌ ଦେ କହେ ।
କହ ମହାପ୍ରଭୁ କାହିଁ ମୁଁ ଭେଟିବି କରିବି କେମନ୍ତେ ଲୟେ ।
ହା କୃଷ୍ଣ ବୋଲିଣ ରୋଦନ କରିଣ ପୁଣ ପାଦଧରି ପଡ଼ି ।
ଆଶ୍ୱାସି ଉଦ୍ଧବେ କୋଳରେ ଧରିଣ କହିଲେ ସକଳ ଫେଡ଼ି ।
ଶୁଣ ହୋ ଉଦ୍ଧବ ଆମ୍ଭ ଲୀଳାଭାବ କଉତୁକ କୋଳାହଳ ।
କଳିଯୁଗେ ଆମ୍ଭେ ଭୋଗ ବିଳସିବୁ ଭକତଙ୍କ ତହିଁ ମେଳ ।
କିଛୁଦିନ ତହିଁ ଭୋଗ ବିଳସିବୁ ପାଦପାଣି ଗୋପ୍ୟକରି ।
ନ କହିବୁ ବାକ୍ୟ ହୋଇବୁ ଥକିତ ବେଶକାରୀ ବେଶକରି ।
ମାନସିକ ସେବା ଭୋଗ ବିଳସିବୁ ହସ୍ତେ ନଭୁଞ୍ଜିବୁ ଆମ୍ଭେ ।
ଭକ୍ତଙ୍କ ସଙ୍ଗେ ଭୁଞ୍ଜିବୁ ନିରବଧି ବେଳଜାଣି ଯୋଗାଇବେ ।
ଶେଷ ଭୋଗ ମୋର ନିର୍ମାଲ୍ୟ ହୋଇବ କୈବଲ୍ୟ ପସରା ବିକା ।
ବିକାକିଣା ଲାଗିଥିବ ନିରବଧି ନଥିବ କାହାରି ଶଙ୍କା ।
ଚାଣ୍ଡାଳ ବ୍ରାହ୍ମଣ ଗୁରୁଶିଷ୍ୟ ପୁଣ ବାରଣ ନଥିବ ତହିଁ ।
ବିକାର ନଥିବ ଯେକାକାର ହେବ ନିରାକାର ଆଜ୍ଞାଂ ଏହି ।
ଶ୍ରୀପ୍ରସାଦ ଲାଭ କଉତୁକେ ଭାବ ଅନୁସରଣ ପାଇବେ ।
ଲୋଭେ ସୁରପତି ଆଦିବେଳେ ଘେନି ମଞ୍ଚରେ ଜନମ ହେବେ ।
ଗୋପ ଯଦୁବଂଶ ଗନ୍ଧର୍ବ ବିଶେଷ ମୁନିଅଂଶୀ ହେବେ ଜନ୍ମ ।
ଥାନେ ଥାନେ ରହି ନିଯୋଗ ଖଟିବେ ଆମ୍ଭ ହିତେ ହେବେ ଜନ୍ମ ।
ତୁହି ଉଦ୍ଧବ ସେ ପଣ୍ଡାକରି ପୁଣ ଅନୁସରି ଜନମିବୁ ।
ଆମ୍ଭ ପ୍ରତିଯୋଗ ନିଯୋଗ ଖଟିଣ ଭଗତ ଜନ ପୂଜିବୁ ।
ଗୋପୀନାଥ ରୂପ ଧରି ମୁଁ ଗୁପତ ଭାବେ ଥିବି ଅନୁସରି ।
ବାରଣ ବେଳେ ଉଦୟେ ଭକ୍ତମେଳେ ସେବା ନିଯୋଗ ତୋହରି ।
ବାରଣ ବେଳେ ରାଜବିଧି ନିଯୋଗ ଖଟିବୁଟି ବୀର ତୁହି ।
ଆମ୍ଭସେବା ଭେଟ ତେବେ ତୁ ପାଇବୁ ବାରଣକୁ ଥାଅ ଧାଇ ।
ସାଧିଅଛୁ ଯୋଗ ପାଇବୁ ତୁ ଭୋଗ ବାରଣ ବେଳରେ ତୁହି ।
ନିରାକାର ସେବା ଖଟଣୀ ଖଟିବୁ କହିଲି ସଂଶୟେ ନାହିଁ ।
ଆମ୍ଭ ମଧେ ଭେଟ ବାରଣ ନିକଟ ତେବେ ତୁ ପାଇବୁ ବୀର ।
ବାରିକରି ସେବା ଆମ୍ଭେ ତୋତେ ଦେବା ଥିବୁ ତୁ ଆମ୍ଭ ସଂଗରେ ।
ଅନ୍ତର ନୋହିବୁ ଅନନ୍ତ ଦଳରେ ସେବା କରିବୁଟି ତୁହି ।

ଅନ୍ତକାଳେ ଆମ୍ଭେ ନିର୍ବାଣ ପଦରେ ରଖିବୁଟି ତୋତେ ନେଇ ।
ଯାଅ ହୋ ଉଦ୍ଧବ କହିଲେ ମାଧବ ପ୍ରଘଟ ନକର ଆଉ ।
କାଲି କାଳଚକ୍ର ବିନାଶ କରିବ କେହି ନରହିବେ ଆଉ ।
ଉଦ୍ଧବ ନଶୁଣି କ୍ରୋଧେ କହେ ବାଣୀ ଚରଣ ଧରି ରୋଦନ ।
ତ୍ରାହି ତ୍ରାହି ବୋଲି କ୍ରୋଧେଣ ଯେ ନେତ୍ରୁ ଅଶ୍ରୁଜଳ ସ୍ରବେ ପୁଣ ।
ଉଦ୍ଧବ ଆକୁଳ ଦେଖି ଆଦିମୂଳ କ୍ରୋଧେ ହୋଇଲେ ବିକଳ ।
ଆମ୍ଭେ ପାଞ୍ଚଜଣ ଆକୁଳ ହୋଇଲୁ ଧରିଣ ପଦ୍ମକମଳ ।
ହେଲା କୋଳାହଳ ରୋଦନ୍ତି ସକଳ ବିକଳ ହୋଇଲେ ସବୁ ।
ଉଚ୍ଛେଣ ରୋଦନ କରିଣ ଉଦ୍ଧବ ପ୍ରଦକ୍ଷିଣ କଲା ପ୍ରଭୁ ।
ଆମ୍ଭେ ପାଞ୍ଚଜଣ ପ୍ରଦକ୍ଷିଣ କରି ଛାମୁରେ ହୋଇଲୁ ଉଭା ।
ଆକଟେ ଶ୍ରୀହରି ଆଗ୍ୟାଂଦେଲେ ତୁମ୍ଭେ ଗୋକୁଳକୁ ତାର ଯାଯା ।
ତୁମ୍ଭେ ଜନମିବ କଳିଯୁଗେ ପୁଣ ଶୂଦ୍ରକୁଳେ ହେବ ଜାତ ।
ତିନି ଜନମେଣ ପ୍ରକାଶ ହୋଇବ ନାମ ହୋଇବ ଅଚ୍ୟୁତ ।୧୩୦।
ଗୋକୁଳ ତାରିବ ଭକ୍ତମେଳେ ଥିବ କଳିଯୁଗେ ପାଅ ପୂଜା ।
ଆମ୍ଭ ବଂଶ ଅଂଶ ଘେନିଣ ତୁରିତେ ଭକ୍ତଭାବେ ରହି ଯାଯା ।୧୩୧।
କିଛିଦିନ ଆମ୍ଭେ ଦାରୁବ୍ରହ୍ମରୂପେ ଭୋଗ ବିଳସିବୁ ରହି ।
ଭକ୍ତମାନେ ମେଳିହୋଇଣ ଆମ୍ଭକୁ ମଣୋହି ଦେବେ ଯୋଗାଇ ।
ତହୁଂ ଦୁଷ୍ଟବଳ ହୋଇବେ ପ୍ରବଳ ଭଗତଙ୍କୁ ଦେବେ କଷ୍ଟ ।
ଆକୁଳେ ବିପଦ ସହିବେଟି ସେହି କ୍ରିୟାକର୍ମ ହେବ ନଷ୍ଟ ।
ସହି ନପାରିବୁ ବାରୁ ଲାଗିହେବୁଂ ଦୁଷ୍ଟଙ୍କୁ ନାଶିବୁ ପୁଣି ।
ରାଜସିକ ଭୋଗ ତହିଂ ବିଳସିବୁଂ ତତ୍ତ୍ୱ ଥାଅ ଯେହୋ ଜାଣି ।
ଭଗତ ଜନେ ଅବିରତେ ପୂଜିବେ ସେବାଦେବେ ନିଯୋଗାଇ ।
ଧୂପ ଦୀପ ବନ୍ଦପନା କରିଣ ସେ ସେବାକରିବେଟି ସେହି ।
ଆମ୍ଭେଟି ନରକେଶରୀ ସ୍ୱରୂପରେ ଆଗ୍ୟାଂ ଦେବୁଟି ସେ ଯାହା ।
ଦୁଷ୍ଟବଳ ନାଶି ସପ୍ତରଥୀ ଆମ୍ଭ ସଙ୍ଗେ ସଙ୍ଗେ ଥିବେ ସାହା ।
ଦୁଷ୍ଟକୁ ନାଶିବୁ ଭଗତ ତାରିବୁ ସେନାପତି ପଣେ ଥିବେ ।
ଆମ୍ଭ କଟକ ଦକ୍ଷିଣ ଦ୍ୱାର ରକ୍ଷା ପାଇକରା ପଣ ନେବେ ।
ରାଜସୁଖ ଭୋଗ ଆମ୍ଭେ ବିଳସିବୁ ହସ୍ତରେ ଭୁଞ୍ଜିବୁ ପୁଣି ।
ବଚନ କହି ଭଗତଙ୍କୁ ତାରିବୁ ଉଦ୍ଧବ ଥାଅ ହୋ ଜାଣି ।

ମୂର୍ତ୍ତି ଜୟଗାନ ନଉପରେ ଶୂନ ଶୂନକଟି ଥାଅ ଧାଇ ।
ମଧୁ କୃଷ୍ଣପକ୍ଷ ତ୍ରୟୋଦଶୀ ଦିନ ଲକ୍ଷ ଲକ୍ଷ ନାଶ ମହୀ ।
କାଳୀକଙ୍କାଳୀ ଥିବେଟି ମହାବଳୀ ବେତାଳୀ ହୋଇବେ ମେଳି ।
ଅଚାନକେ ନଷ୍ଟଭ୍ରଷ୍ଟ ହେବେ ଦୁଷ୍ଟ ଖୋଜିଣ ଦେବେ ସେ ବଳୀ ।
ତୁମ୍ଭେ ପାଞ୍ଚଜଣ ଥିବ ସଙ୍ଗତେଣ ଆମ୍ଭେ ଥିବୁ ପୁଣ ତହିଁ ।
ଆମ୍ଭ ଭଗତ ଆମ୍ଭଙ୍କୁ ପୂଜିବେଟି ନିଯୋଗ ଦେବେ ଯୋଗାଇ ।
କରିବୁଟି ବିଜେ ଆମ୍ଭେ ଯାଇଂ ଆଗେ ଆମ୍ଭ ଭଗତ ମନ୍ଦିର ।
ଯେହି ଉଦ୍ଧବ କୋଳେ ଜନ୍ମ ସାତୁକୀ ଆପେ ପୂଜିବ ନିକର ।
ବାରଣ ଭୂମି ଆଦ୍ୟଆନ ମୋହୋର ବିରଜା ପ୍ରଧାନ ଯହିଁ ।
ତହିଁରେ ସୁନନ୍ଦ ବସୁନନ୍ଦ ଥିବ ନିରତେ ମୋ ପାଦେ ଧାଇ ।
ପଦ୍ମନନ୍ଦ କନ୍ଦ ଗୋପବାଳ ବୃନ୍ଦ ଘେନି ଆମ୍ଭ ସଙ୍ଗେ ଥିବ ।
ପଞ୍ଚତତ୍ତ୍ୱସାର ମହିମା ବିଚାର ପରୀକ୍ଷା ତହିଁ ହୋଇବ ।
ତିନିଦିନ ତହିଁ ତ୍ରିକାଳ କରିବୁ ଯୋଗ ସାଧିବୁଟି ରହି ।
ଗଉତମ ଆମ୍ଭ କଲ୍ୟାଣ କରତା ଯୋଗ ସଁଧାଇବେ ସେହି ।
ତହିଁ ତତପରେ ଯିବୁଂ ଉଦବେଗେ ଭୀଷ୍ମ ରାଜା ନବରଙ୍କୁ ।
ଯହିଁ ଭଗବତୀ ପ୍ରଧାନୀ ଅଟନ୍ତି ଭୟ ନଥାଇ କାହାକୁ ।
କରିବୁ କଟକ ଦିଶିବ ଛଟକ ଶତ୍ରୁ ସଂହାରିବୁ ତହିଁ ।
ରାଜସୁଖ ଭୋଗ ତହିଁ ମୁଂ କରିବି ସୁଦାମ ଥାଅ ତୁ ଧାଇ ।
ତହିଁ ହେବ ମେଳ ଭଗତଙ୍କ ଖେଳ ତାରତମେ ଦେବଦେବୀ ।
ଦୟାକ୍ଷମା ଶୀଳ କେ ଅବା ନିର୍ମଳ ରାଜନୀତିରେ ବୁଝିବି ।
ଯେତେ କହି ହରି ଉଦବେଗ ହୋଇ ବୋଇଲେ ସୁଦାମ ଯାଅ ।
କଳିଯୁଗେ ଥୋକେ ପତିତ ତାରିଣ ଆମ୍ଭ ସେବା ପୁଣି ପାଅ ।
ଆଗ୍ୟାଂ ଘେନିକରି ପ୍ରଦକ୍ଷିଣ କରି ଚରଣ ତଳେ ପଡ଼ିଲି ।
ତ୍ରାହି ତ୍ରାହି ତ୍ରାହି ବୋଲି ମୁଂ ଉଚେଣ ଉଦବେଗ ହୋଇଗଲି ।
ଦେଖ କର୍ମଯୋଗ ବିଧାତା ସଂଯୋଗ ଦେଖ ପୂର୍ବଭାଗ୍ୟ ମୋର ।
ଶ୍ରୀହରି ଆପଣେ ଜାଣିଣ କହିଲେ ଦୟାଳୁ ଭକ୍ତ ସୋଦର ।
କିଛି ଦୂର ମୁହିଁ ଅନ୍ତର ହୋଇଣ ପଛଘୁଞ୍ଚାକରି ଗଲି ।
ଶିରୀ ଚରଣକୁ ଚାହିଁ ତୁଷ୍ଟିକରି ଚରଣ ତଳେ ପଡ଼ିଲି ।
ଉଠି ଉଦବେଗେ ତାହାନ୍ତେଣ ପୁଣ କାଳାନଳ ଅଗ୍ନିଦିଶେ ।

ମହା ଭୟାଙ୍କାର ଖାଙ୍କର ବିରୂପ ବିକଟ ସ୍ୱରୂପ ଦିଶେ ।
ଛଡ଼ହିଂ ବଦନ ନଅହିଂ ଲୋଚନ ଏକପାଦେ ଚାଲେ ବାଙ୍କେ ।
ଜିଭ୍ୟା ଲହଲହ ବିକ୍ରମ ସ୍ୱରୂପ ଚଉଦିଗକୁ ସେ ଚାହେଂ ।
ଗ୍ରାସି ଆସେ ସେହୁ ଚନ୍ଦ୍ରେ ଯେହ୍ନେ ରାହୁ ତେସନ ପ୍ରାୟେକ ହୋଇ ।
ଦେଖି ମହାଭଏ କେ ଚାହିଂ ପଳାଏ ଆମ୍ଭେ ନପାରିଲୁ ଚାହିଂ ।
ସ୍ୱରୂପ ଅନ୍ତର ହୋଇଣ ସତ୍ୱର ଜ୍ୟୋତିପୁରକୁ ଯେ ଗଲେ ।
ଆମ୍ଭେ ପାଞ୍ଚଜଣ ଅଇଲୁ ଯେ ତହୁଂ ଧାଇଣ ପଦକମଳେ ।
ତୁ ଯେ ପଚାରିଲୁ ବରଜନନ୍ଦନ ମହୀ ଦୁଃଖ ଦେଲା ବୋଲି ।
ଶ୍ରୀହରିର ଲୀଳା କେ ଅବା କହିବ କେ ପାରିବ ତାହା କଳି ।
ନାଆ ଘେନି ମୁହିଂ ସାହେରକୁ ବାହେ ଗଣଇ ସମୋଦ୍ରବାଲି ।
ଶ୍ରୀହରି କରୁଣା ଥିବାରୁ କହଇ ମହିମା ଆଶ୍ରେ ମୋହରି ।
ତୁ ଯେ ପଚାରିଲୁ ବରଜନନ୍ଦନ କଳି ଘୋର ପୀଡ଼ା ଦେଲା ।
ଶ୍ରୀହରି ଜନକୁ ଆପଦ ଦେଇଣ ନିରନ୍ତରେ ସେ ଦଣ୍ଡିଲା ।
ନ ରଖିଲା ଧାର ନକଲା ବିଚାର ଥଏ ନ ରଖିଲା ପୁଣି ।
ତାହା କହିବା ଶୁଣ ତୁ ଯେକମନେ ପ୍ରଭୁ ଲୀଳା ରସବାଣୀ ।
ଧରଣୀ ଗୁହାରି ଶ୍ରୀହରିଙ୍କି କଲା ସମ୍ଭାଳି ତୋହୋର ପୁର ।
ଶ୍ରୀମୁଖେ ଶ୍ରୀହରି ଆଗ୍ୟାଂଦେଲେ ତାକୁ କରି ତାହାର ବିଚାର ।
ଯେହୁ ଘୋରକଳି ବେଲୁବେଳ ବଳି ଦଳିଲା ଭଗତ ଜନ ।
ନରଖିଲା ଧାର ନକଲା ବିଚାର ଯେକୁଯେକ ବଳି ପୁଣ ।
ଦୁଷ୍ଟଜନେ ସନ୍ଥ ପୀଡ଼ା ଅନୁକ୍ଷଣେ ଅଦୋଷେ ଦଣ୍ଡିବେ ତାକୁ ।
ଅନ୍ୟୋଅନ୍ୟ ଜନେ ହେବେ ଭିନ୍ନା ଭିନ୍ନ ଧାରା ନଥିବ ସେସବୁ ।
ଆରତେ କେ ହରି ଚରଣେ ଗୁହାରି କରି ଦିନ ହରୁଥିବେ ।
ରଖ ଆଦିମୂଳ କେଅବା ବିକଳ କ୍ରୋଧେ କେଅବା କହିବେ ।
କେ ଅବା ଶ୍ରୀହରି ରଖ ବୋଲିକରି ଆରତେ ଡାକିବେ ତାଙ୍କୁ ।
ଆରତନାଶନ ଅତ୍ରାହିଭଞ୍ଜନ କର୍ଣ୍ଣ ଡେରିବେ ଡାକକୁ ।
ଯେମନ୍ତେଣ ଘୋର ହୋଇବ ସମର ଭଗତେ ପାଇବେ ଦୁଃଖ ।
ଦୁଷ୍ଟଜନମାନେ ଦୁର୍ଗମେ ମାଡିବେ ଖଣା ଖୋଲାର ବହୁତ ।
ଦକ୍ଷିଣୁଂ ଆସିବେ ଉତ୍ତରେ ଗାଜିବେ ପଛିମେ ପଡ଼ିବେ ମାଡ଼ି ।
ଗୋଳ ଧନ୍ଦୋଳେ ଉଲକାପାତ ହେବ ଦୁଷ୍ଟଦେବେ ଘୋର ରଡ଼ି ।

ଶ୍ରୀହରି ଜାଣିମେ ସହି ନପାରିବେ ହୋଇବେ ସେ ବାଗୁଲାଗି ।
ବେନିହସ୍ତେ ଖଣ୍ଡା ଧରିଣ ବାହାର ଜିନ ବାଖରଇ ଭୁଙ୍ଗି ।
ଦୁଷ୍ଟଙ୍କୁ ନାଶିବେ ଭକ୍ତଙ୍କୁ ପାଳିବେ ରାଜସୁଖ ବିଳସିବେ ।
ରାଜଭୋଗ ସିଦ୍ଧି ଭୋଗ ବିଳସିଣ ଭଗତଜନ ପାଳିବେ ।
ତୁ ଯେ ପଚାରିଲୁ ବରଜନନ୍ଦନ କଳି ପୀଡ଼ା ଦେଲା ବୋଲି ।
ଶ୍ରୀହରିର ଲୀଳା ଖେଡ଼ କଉତୁକ ଭଗତେ ପାଇବେ ପୁଣି ।
ଭଗତ ଜନର ଡାକ ଜାଣି ପୁଣି କର୍ଣ୍ଣ ଡେରିଥାନ୍ତି ପ୍ରଭୁ ।
ତାଙ୍କପାଇଁ ଅବତାର ହୋଉଥାନ୍ତି ଭକ୍ତପାଇଁ ସିନା ସବୁ ।
ଅବ୍ରହ୍ମ ବ୍ରହ୍ମ ପ୍ରସନ୍ନ ହୋଇ ପୁଣ ଲୀଳାରସ ମାନଙ୍କରେ ।
ଅବ୍ୟୟ ଅରୂପ ଅନାମ ଯାହାର ନାନାରଙ୍ଗ ପୁଣି କରେ ।
ପଚାରୁ ଯେ ଆଉ ବରଜନନ୍ଦନ ପ୍ରଭୁଙ୍କ କ୍ରିଆବିଚାର ।
ବିଚାରି କେହେବା କେଅବା ଅନ୍ତକରେ ବିଷ୍ଣୁଲୀଳା ମାହାଘୋର ।
ପୁଣି ରାମଦାସ ହୋଇଣ ବିରସ ଚରଣତଳେ ପଡ଼ଇ ।
ଶୁଣିଲି ଅପୂର୍ବ ଶ୍ରୀହରିର ଲୀଳା ଉଦ୍ଧାର ପାଇଲି ମୁହିଂ ।
ମୁହିଂ ତରିଗଲି ମୋ ବଂଶ ତାରିଲି ଶୁଣିଲି ଶ୍ରୀହରି ଲୀଳା ।
ଭଗତଜନ ପାଦପଦ୍ମେ ଶରଣ ତୁମ୍ଭ ସୁଦୟା ହୋଇଲା ।
ଶୁଣିସି ଆହୁରି ଭଗବନ୍ତ କଥା କହିଥାଆ ପ୍ରଭୁ ମୋତେ ।
ଉଦ୍ଧବଙ୍କୁ ହରି ପ୍ରବୋଧି କହିଲେ ପ୍ରତି ପ୍ରତି କରି କେତେ ।
ତପସ୍ୟା କରିଣ ଉଦ୍ଧବ ଯେ ପୁଣ ଜନମିବ ଦେହ ବହି ।
ଜନମିଣ ଲୀଳା କିରୂପେ କରିବ ଭୋଗ ବିଳସିବ କାହିଂ ।
ଶୁଣିଥିଲେ ସିନା ସଂଶୟେ ନଥିବ ନୋହିବଟି ଆଉ ବଣା ।
ଶୁଣ ରାମଚନ୍ଦ୍ର କହିଦେବା ତୋତେ ଫେଡ଼ିବା ତୋର କଳ୍ପଣା ।
ନକହିବୁ କାହିଂ ଥିବୁଟି ଲୁଚାଇ ଦୁଷ୍ଟଙ୍କୁ ଭୟେ ମୋହର ।
କାଳେ ଉପହାସ୍ୟ ନିନ୍ଦିବେ ଅବଶ୍ୟ କୃଷ୍ଣ ନିନ୍ଦା ନସହଇ ।
ବିଷ୍ଣୁ ଆଜ୍ଞାଂ ଘେନି ଉଦ୍ଧବ ବଦ୍ରିକା ତପସ୍ୟା ସାଧନେ ଗଲା ।
ଶ୍ରୀହରି ମହିମା ସାରସ୍ୱତ ସାର ଉଦ୍ଧବ ଯୋଗ ସାଧିଲା ।
କିଛୁଦିନ ପୁଣି ଗଲା ତତପରେ ସାଧିଲା ଯୋଗ ସାଧନ ।
ଅଦଭୁତେ ଶବ୍ଦ ଧ୍ୱନି ଶୁଭିଗଲା ଅଚେତ ହେଲା ଚେତନ ।
ଚେତନାରେ ଚେତି ଶବଦ ବାରିଲା ଶ୍ରୀହରି ହେଲେଣି ଜନ୍ମ ।

ଚଇତନ ରୂପେ ପତିତ ତାରିବେ ମାନବେ ହୋଇବେ ଜନ୍ମ ।
ଯେମନ୍ତ ବିଚାରି ଅନୁସରି ତହିଁ ଉଦ୍ଧବ ଆସିବ ତହୁଁ ।
ଘାଟସଧା ଦିଜ ଘରେ ଜନମିଣ ଯୋଗ ସାଧିବଟି ସେହୁ ।
ଦୁଇ ତିନି ଜନ୍ମ ଅଗ୍ୟାଂନରେ ଯିବ ନୋହିବ ବ୍ରହ୍ମ ଗ୍ରହ୍ଣନ ।
ବେନୁ କାହ୍ନୁଜନ୍ମେ ଅଗ୍ୟାଂନ ନାଶିବ ସାଧିବ ଯୋଗ ସାଧନ ।
ରାଜରଷି ଭୋଗ ତହିଁ ବିଳସିବ ଭଗବନ୍ତ ଜନେ ସେବି ।
ସାତୁକୀ ସୁତର କୋଳେ ଜନମିବ ପାଦପଦ୍ମେ ଥିବ ସେବି ।
ବିଦୁର ଭେଟିବ ଅଗ୍ୟାଂନରେ ଥିବ ସୁନନ୍ଦ ସୁତଟି ସେହି ।
ସ୍ତୋକକୃଷ୍ଣ ଜନ୍ମ ସୁନନ୍ଦ ଅଂଶରେ ପରମାତ୍ମା ପାଦ ବହି ।
ଲଳିତା ସଖୀଟି ପ୍ରିୟ ପତିବ୍ରତା ପ୍ରେମରୂପା ପ୍ରିୟପଦ ।
ଜନମି ଗୌତମ କଲ୍ୟାଣ କରତା ଥିବ ଅନୁସରି ପାଦ ।
ଅକ୍ରୁର ସୁନନ୍ଦ ବୃଦ୍ଧ ନନ୍ଦକନ୍ଦ ଗୋପ ଅଂଶାଅଂଶ ଘେନି ।
ଯଦୁବଂଶର ଯେ କଲ୍ୟାଣ କରତା ମୁନିଅଂଶୀ ସେହି ପୁଣି ।
ହେବ କୋଳାହଳ ଲାଗିବଟି ମେଳ ପୂଜିବେ ଭଗତ ଜନ ।
ଆନନ୍ଦେ ଶ୍ରୀହରି ମହିମା ଗାୟନ କେ କରେ ଅବା ସେବନ ।
ତହିଁ ଗୋପୀନାଥ ରୂପଧରି ହରି ଅନୁସରି ପୁଣ ଥିବେ ।
ତାଙ୍କ ଆତ୍ମାପ୍ରିୟ ଭଗତଭାବକୁ କିରୂପେ ଅବା ତେଜିବେ ।
ଯେ ବିଧିରେ ସିଦ୍ଧି ଘେନି ପ୍ରତିନିଧି ଉଦ୍ଧବ ଥିବଟି ରହି ।
ଅଗ୍ୟାଂନେ ଅପ୍ରତେ ଭଗବନ୍ତ ଜନେ ଅପ୍ରଚେ ଥିବେଟି ସେହି ।
ଆମ୍ଭ ନିଜସ୍ଥାନ ଦିବ୍ୟ ଶୋଭାବନ ଚିତ୍ରାଙ୍ଗୀ କୂଳରେ ଯାଇ ।
ନେମାଳ ଗ୍ରାମ ଚିତ୍ରୋତ୍ପଳା ଉତ୍ତରେ ପଦ୍ମବନ ନାମେ ଭୂଇଂ ।
ସେସ୍ଥାନେ ଭଗତ ଉଦୟେ ଗୁପତ ପ୍ରକଟେ କେଅବା ଥିବ ।
ପଦ୍ମବନେ ପଦ୍ମନନ୍ଦ ଜନମିଣ ପ୍ରଛିନ୍ନେ ପରଚେ ଦେବ ।
ପ୍ରତି ପ୍ରତି ବିଧି ଭଗତଙ୍କ ସିଦ୍ଧି 'ବାରି କହିବା ନୋହଇ ।
ଶୁଣିଣ ଉଦ୍ଧବ ସାନନ୍ଦେ ପୂଜିଲା ଶ୍ରୀହରି ନାମକୁ ଧାଇ ।
ହେବ କୋଳାହଳ ଭଗତଙ୍କ ମେଳ ପରଚେ ପାଇବ ଯହୁଁ ।
ସାତୁକୀ ବିଷାଦେ' ଶୋକ ଗଦଗଦେ ଭାବେ ପୂଜିଲାଟି କେହୁ ।
ଉଦ୍ଧବ ସାଜିବ ସାତୁକୀ ପୂଜିବ ବିଦୁର ହେବ ଆନନ୍ଦ ।
ଲଳିତା ପ୍ରେମରେ ଶୋକ ଗଦଗଦେ ନରହିବ ତାର ଦମ୍ଭ ।

ପ୍ରେମେ ଗଡ଼ାଗଡ଼ି ଯିବେ ପ୍ରେମରୂପା ପାଇବେ ପରଚେ ଯେହୁ ।
ପ୍ରତକ୍ଷେ ପାଇଲା ଅନୁସରି ଥିଲା ଭାବେ ଭାବିଲାଟି ଯେହୁ ।
ପୂଜିବ ବହନ ଶ୍ରୀହରିଙ୍କ ଜନ ଉଦବେଗେ ହେବ ପୁଣି ।
ପ୍ରକଟ ହୋଇଲା ଶ୍ରୀହରିର ଲୀଳା ଗୁପତ ବାରତା ଜାଣି ।
ବାରଣ ବେଳ ଜାଣିଣ ଚଞ୍ଚଳ ଉଦବେଗ ହୋଇଯିବ ।
ଯୋଗ ସାଧି ତପ ଅନ୍ତକାଳେ ପୁଣି ସେବା ତାହାର ପାଇବ ।
ପ୍ରେମରୂପା ତହୁଂ ଅନ୍ତେ ପୁଣି ଯିବ ଯୋଗ ସାଧନାକୁ ପୁଣି ।
ତା ଅଂଶେ କନେଷ୍ଟ ନନ୍ଦନ ଅଂଶରେ ନନ୍ଦଗୋପାଳ ଜନମି ।
ଯଉଂ କନ୍ଦ ବୃନ୍ଦାବନେ ଶ୍ରୀହରିଙ୍କି ଯଗ୍ୟଂ ଅନ୍ନ ଆଣିଦେବ ।
ସକଳ ଗୋପାଳ ପ୍ରେମରୂପା ଅଂଶ ଅନୁସରି ଜନମିବ ।
ଶୁଣି ରାମଦାସ ହେଲା ହରଷିତ ଚରଣ ଧରିଣ ପଡ଼ି ।
କହଂ ମାହାପ୍ରଭୁ ଭଗତଙ୍କ କଥା ସଂଶୟେ ଯାଉ ମୋ ଛାଡ଼ି ।
ବିନୟ ହୋଇଣ ଆନନ୍ଦେ ଶୁଣିଲେ କହିଲେ ଶୁଣ ତୁ ରାମ ।
ଉଦ୍ଧବ ପୂଜିବ ଭଗବନ୍ତ ଜନ ପାଉଥିବେଟି କଷଣ ।
ଗ୍ୟାଂନରେ ସେ ଚିହ୍ନି ଅଗ୍ୟାଂନକୁ ଘେନି ଘୋର କଳିଯୁଗ ଜାଣି ।
ଭ୍ରମ ହୋଇଥିବ ବିଷୟା ଜଞ୍ଜାଳେ ଜାଣି ନ ଜାଣିମେ ପୁଣି ।
କିଛି ଦିନ ତହିଂ ଭୋଗ ବିଳସିବ ରାଜରଷି ସୁଖ ଘେନି ।
ଭଗତ ଜନେ ଜନମିବେ ଭାବେ ଭୋଗ ବିଳସିବେ ଜାଣି ।
କେଅବା ଆସଇ କେହୁ ଅବା ଯାଇ କେବା ଥିବ ଅନୁସରି ।
ଭାବେ ଭୋଳହୋଇ ଶ୍ରୀହରି ମହିମା ପୂଜିବ ନିଅତ କରି ।
ଯେହିଠାରୁ ମାୟା ଢାଙ୍କୁଣୀ ଫିଟିବ ପ୍ରକଟ ହୋଇବ ମହୀ ।
ଶୁଣ ରାମଦାସ ଗୁପତ କରିବୁ ଯେହା ନ କହିବୁ କାହିଂ ।
କିଛୁଦିନ ତହିଂ ଭୋଗ ବିଳସିବୁ ରାଜରଷି ଆଦି ଘେନି ।
ଚଞ୍ଚଳ ସାତୁକୀ ସୁତ କୋଳେ ଜନ୍ମି ସେବା ମଣାଇବୁ ପୁଣି ।
ସାତୁକୀ ଯେ ଥିବ ଉଦ୍ଧବ ମିଳିବ ବସୁନନ୍ଦ ଥିବ ଆଗେ ।
ସୁନନ୍ଦ ଯେ ବୃଦ୍ଧନନ୍ଦ ମିଳିଥିବେ କହିଲି ଯେ ପ୍ରିୟଭାବେ ।
ଶୁଣିଛୁତ ତାହା ଶ୍ରୀହରି ମହିମା କୋଳାହଳ ରସବାଣୀ ।
ଶୁଣି ରାମଦାସ ହୋଇଲା ହରଷ ଚରଣେ ପଡ଼ିଲା ପୁଣି ।
ସାରସ୍ୱତ ସାର ଗ୍ରନ୍ଥ ଯେ ସଙ୍ଗିତା ଭଗତଙ୍କ ଗଣ୍ଠିଧନ ।

ଶୂନ୍ୟଗ୍ରନ୍ଥ ମୁହିଂ ଗୁପତେ ରଖିଛି ବାରଣ ବେଳକୁ ପୁଣ ।
ବାରଣ ବେଳକୁ ଏ ଗ୍ରନ୍ଥ ପ୍ରଚ୍ଛିନ୍ନ ପଦ୍ମବନ ଦେବ ବାରି ।
ଭଗତଙ୍କ ଧନେ ଯେହ୍ନୁ ଗ୍ରନ୍ଥ ସିନା ରଖିଛି ମୁହିଂ ବିଚାରି ।
ଯେତେ କହିଣ ହରିହରି ବୋଲିଣ ନିଜ ମନ୍ଦିରକୁ ଗଲେ ।
ମୂଢ଼ ଅଚ୍ୟୁତ ବୋଲଇ ହରିହରି ଚନ୍ତିଣ ପଦକମଳେ ।

ଇତିଶ୍ରୀ ଶୂନ୍ୟ ସଂହିତାୟାଂ ଶ୍ରୀଗୁରୁଶିଷ୍ୟ ଉପଦେଶ କଥନେ
ଉଦ୍ଧବ ଯୋଗ ସାଧନେ ଶ୍ରୀକୃଷ୍ଣ ବିନୟ କଥନେ ଆଗ
ବର୍ଣ୍ଣନେ ନାମ ପଞ୍ଚବିଂଶ ଅଧ୍ୟାୟଃ ।

## ଷଷ୍ଠବିଂଶ ଅଧ୍ୟାୟ

ଶୁଣ ଗୋପସୁତ ଶ୍ରୀହରି ସିଦ୍ଧାନ୍ତ କଉତୁକ ତରଙ୍ଗିଣୀ ।
ଅଦଭୁତେ ଭୟାଙ୍କାର ବେଳୁବେଳ ଦ୍ୱାରିକାରେ ହେଲା ପୁଣି ।
ଦିବସେ ଉଲୁକ ଘୋର ରାବଦିଏ ଧୂମ ପ୍ରକାଶିଲା ଜାଣି ।
ଭୟାଙ୍କାର ଭୟ ନିରବଧି ହେଲା ଶୋକେ ବିକଳିତ ପ୍ରାଣୀ ।
ଅଦଭୁତେ ଅଶ୍ୱ ନିରାଧାର ବହେ କ୍ରୋଧେ ଶୋକେ ବିକଳିତ ।
ଶ୍ରୀହରିର ବଂଶ ଭୟାଙ୍କାର ଭୟ ପାଇ ଶୋକେ ପ୍ରଜଳିତ ।
ଅକ୍ରୁର ଉଦ୍ଧବ ଅନାଦୃଷ୍ଟ ବୀର ମଣିଭଦ୍ର ଭଦ୍ରଶିଳ ।
ସଫଳା ଯାଦବ ଆଦି ଯଦୁବୀର ବ୍ରଜସୁତ ବକ୍ରବୀର ।
ଶୋକେ ବିକଳିତ ହୋଇଲେ ସ୍ତକିତ ଚକିତ ମଣିଲେ ଜାଣି ।
ଅଦଭୁତେ ଭୟାଙ୍କାର ଭୟପାଇ ଶୋକେ ମଜ୍ଜିଲେଟି ପୁଣି ।
ଦିନୁଂଦ୍ଦିନ ତନୁ ନିର୍ବଳୁଂ ଭଜିଲା ଦୁର୍ବଳୁ ହେଲା ନିର୍ବଳ ।
ବିପରୀତା କାଳ ଗ୍ରାସିଲା ଚଞ୍ଚଳ ପ୍ରଜାଏ ହେଲେ ବିକଳି ।
ଦିବସେ ତାରକା ପ୍ରକାଶିଲେ ଯେକା ଶୃକାଳ ଦିବସେ ରଡ଼ି ।
ଯଦୁମଣି ବୀର ସାତୁକୀ ପ୍ରବର ଶୁଣି ଆତ୍ମା ଯାଏ ଛାଡ଼ି ।
ଉଦାସଂମତି ଭଜିଲେ ସୁରପତି ଯଦୁବଂଶ ବିକଳିତ ।
ଠାବେ ଠୁଳହୋଇ ଆତ୍ମାମେଳେ ବସି ଭାବୁଥାନ୍ତି ନାମତତ୍ତ୍ୱ ।
ଯେତ ମହାକାଳ ଦୁର୍ବଳ ପ୍ରବଳ ମାଡ଼ି ଆସୁଛଇ ପୁଣି ।

କେ ବୋଲଇ ବିଷ୍ଣୁ ମାୟାକାଳ ଗ୍ରାସି ବିନାଶିବ ଯେହିକ୍ଷଣି ।
କେ ବୋଲଇ ଯଉଂ ପୁର ବିଷ୍ଣୁଚକ୍ର ନିରବଧି ଥାଏ ରଖି ।
କାଳ ଅନଳ ବିନାଶିବ ଯେ ପୁର ଅଭିଶାପ୍ୟ ଦେଲା ତପୀ ।
ନ ଜାଣି ବାଳକେ ମେଳିହୋଇ ଯେକେ ଭାବେ ପ୍ରକାଶିଲେ ଯାହା ।
କ୍ରୋଧେ ମୁନିବର ଅଭିଶାପ ଦେଲେ ଅବଶ୍ୟ ଫଳିବ ତାହା ।
ଶ୍ରୀହରି ଏପୁର ଛାଡ଼ିବେ ନିକର ନିଶ୍ଚୟ ଜାଣଇ ମୁହିଂ ।
ହାକୃଷ୍ଣ ହାକୃଷ୍ଣ କେବା କ୍ରୋଧେ ବୋଲେ ମୂର୍ଚ୍ଛାଗତ ହୋଏ କହି ।
ସାତ ପାଞ୍ଚତିନି ହୋଇଣ ଯେ ମେଳି ଭାଳି ଶ୍ରୀହରି ମାୟାକୁ ।
କି ବୁଦ୍ଧି କରିବା କା ଆଗେ କହିବା ବିପରୀତ ତ ମନକୁ ।
ଦିନୁଦିଂନ ମହା ଭୟାଙ୍କାର ଭୟେ ଆପଦ ହେଲା ପ୍ରକଟ ।
ଜାଣି ନ ଜାଣି ଯେ ଯଦୁ ବୀରବର ଗୁପତ କଲେ ପ୍ରଘଟ ।
ଶ୍ରୀହରି ଜାଣିଲେ ଆକଟ ମଣିଲେ ହୋଇଲାଟି ଭୟାଙ୍କର ।
ନ ପାରଇ ରହି ନିରାକାର ଆଗ୍ୟାଂ ଚଞ୍ଚଳ ହେଲା ମନର ।
ମଣୋହି ନରୁଚେ ବିକଳିତ ଶୋକେ ଦୁର୍ବଳ ନିର୍ବଳ ହୋଇ ।
ଅନୁକ୍ଷଣେ ଅଶ୍ରୁଧାର ନେତ୍ରୁ ଗଡ଼େ ଆତ୍ମା ବଇକୁଳ୍ୟ ହୋଇ ।
ଯେମନ୍ତେ ରାମ କିଛୁଦିନ ଗୁପତ ପ୍ରକଟରେ ଦିନ ଗଲା ।
ଯଦୁବଂଶଚନ୍ଦ୍ର ବୀରବର ମହା ଶୋକଜଳରେ ବୁଡ଼ିଲା ।
ଯଦୁବଂଶଚନ୍ଦ୍ର ଗୋକୁଳ ନରେନ୍ଦ୍ର ମଥୁରା ମଙ୍ଗଳକାରୀ ।
ଅବ୍ୟଗତ ବ୍ରହ୍ମ ଅରୂପ ଅନାମ ମାୟା ମୋହ ରସେ ଭାଳି ।
ଥକିତ ଚିତ୍ତ ହୋଇଣ ବିକଳିତ ଉଦବେଗ ତତପର ।
ବିନାଶି ଦ୍ୱାରିକାପୁର ଶିରୀ ଯେକା ପ୍ରଭୁଙ୍କ ଯେହି ବିଚାର ।
ଦିନେକ ଶ୍ରୀହରି ଆକଟେ ଯେ ମୋତେ ବୋଇଲେ ସୁଦାମ ଶୁଣ ।
ମୋହୋ ଆତ୍ମା ତୁହି ତୋହୋ ଆତ୍ମା ମୁହିଂ ତୁହି ମୁହିଂ ନୋହି ଭିନ୍ନ ।
ମୋହ ବଂଶ ମୁହିଂ ବିନାଶ କରିବି ରହି ନପାରଇ ଯେବେ ।
ନିରାକାର ଆଗ୍ୟାଂ ଅଛି କଳିଯୁଗେ ଭାବ ବିଳସିବ ବେଗେ ।
ଆମ୍ଭ ନିଜ ଅଂଶ ବେନି ଅଂଶାଅଂଶ ଯୋଗ ସାଧପୁରେ ଦେଖ ।
ମୋ ବଂଶ ସମ୍ବାଦ ରଖିବୁ ଜଳଧି କେଯେ ସହିବାଯେ ଦୁଃଖ ।
ଯେମନ୍ତେ ଶ୍ରୀମୁଖ ଶୁଣିଣ ଯେ ମୁହିଂ ଚରଣ ତଳେ ପଡ଼ିଲି ।
ତ୍ରାହି ତ୍ରାହି ତ୍ରାହି ବୋଲିକରି ଉଚ୍ଚେ ପ୍ରଦକ୍ଷିଣ ପୁଣ କଲି ।

ଆଗ୍ୟାଂଶୀଳ ପ୍ରଭୁ ବୋଇଲେ ଯେ ମୋତେ ଚାଲ ହୋ ସୁଦାମ ତୁହି ।
ଆଚମ୍ବିତେ ଆସି ମିଳେ ଖଗବର ପ୍ରଭୁଙ୍କୁ ଓଳଗେ ସେହି ।
ହସିଣ ଶ୍ରୀହରି ବୋଇଲେ ତାହାକୁ ଆମ୍ଭେ ଯିବା ଜଳପୁର ।
ନିଶବଦେ ନିଦ୍ରା ଯାଇଣ ଅଛନ୍ତି ବେଗେ ଚାଲ ଖଗବର ।
ଦେଖି ଜଳପୁର ଆସିବା ଚଞ୍ଚଳ ପୁରୁ ନ ଉଠନ୍ତୁ ଜନେ ।
କାଲି କାଳଚକ୍ର ବିନାଶିବ ଆସି ଶୁଣିଥାଅ ତୁମ୍ଭେମାନେ ।
ଆଗ୍ୟାଂ ପାଇଣ ଖଗବର ବିକ୍ରମୀ ପକ୍ଷ ବିସ୍ତାରଇ ତାର ।
କୋଟି ବ୍ରହ୍ମାଣ୍ଡ ଯା ରୋମମୂଳେ ଅଛି ତାକୁ ବହିଲା ସେ ବୀର ।
ଚଳଇ ସଧୀରେ ଅନ୍ତରୀକ୍ଷପୁରେ ଦୁର୍ଗମ ପଥ ଚଳଇ ।
ଧନ୍ୟ ଖଗବର ଆଗ୍ୟାଂ ପ୍ରଭୁଙ୍କର ଜଳନିଧିପୁରେ ହୋଇ ।
ମୁହିଂ ଯେ ଅରକ୍ଷ ପ୍ରଭୁଙ୍କ ସେବକ ମୋକ୍ଷଦାତା ଦୟାନିଧି ।
ବୋଇଲେ ସୁଦାମ ଆମ୍ଭ ଆତ୍ମା ତୁହି ଦେଖିଥାଅ ପୁର ବିଧି ।
ଶ୍ରୀହରି ଚରଣ ପବିତ୍ର ଜଳେଣ ପଖାଳିଣ ଉଭାହୋୟେ ।
କରପତ୍ର ଯୋଡ଼ି ଚରଣକୁ ଚାହିଂ ଆନନ୍ଦେ ବିନୋଇ କହେ ।
ବୋଲେ ଜଳାଧିପ ତୁମ୍ଭେ ଯୋଗେଶ୍ୱର ଦେବାଧିଦେବଙ୍କ ରାଜ ।
ଆଜ ମୋର ପୁର ପବିତ୍ର ହୋଇବ ସେବିବି ପାଦ ସରୋଜ ।
ୟେ ଦିବ୍ୟ ମନ୍ଦିର ହୀରା ଲୀଳାପୁର ନିର୍ବାଣିଛି ମୁହିଂ ଆଣି ।
ନିରାକାର ବିଷ୍ଣୁ ଆକଟ ହୋଇବ କାଳେ ବିଜେହେବେ ପୁଣି ।
ବିଜେକର ପ୍ରଭୁ ମଣିରତ୍ନପୁର ନିଯୋଗ ଦେବି ଯୋଗାଇ ।
ଅନେକ କାଳ ଅନୁସରି ଅଛଇ ସେବା ନିଯୋଗିବା ପାଇଂ ।
ବିଜେକର ପ୍ରଭୁ ମଣିରତ୍ନପୁର ଦେଖନ୍ତୁ ମୋହର ବଂଶ ।
ଦ୍ରଶନେ ଅନେକ ସୁଗତି ପାଇବେ ଦୁସ୍କୃତ ହେବ ନାଶ ।
ମୋକ୍ଷ ମୋକ୍ଷକାର ସୁଗତି ହେବ ତାର ନରନାରାୟଣେ ଦେଖି ।
ଯଦୁକୁଳଚନ୍ଦ୍ର ବିଜେ ମଣିପୁର ନିସ୍ତାର ହୋଇବୁ ଦେଖି ।
ଶୁଣିଣ ଶ୍ରୀହରି ଅଶ୍ରୁ ଗଦଗଦେ କହନ୍ତି ଗଭୀର ବାଣୀ ।
ଶୁଣ ଜଳାଧିପ ଆମ୍ଭ ଆତ୍ମାପ୍ରିୟ ତୁ ଯେ ଉପଗାରି ପୁଣି ।
ଆକଟ ସେ ଦୁଷ୍ଟ ଭୟରୁ ମୁଂ କଷ୍ଟ ଆପଦେ ତୁ ସାହାହେଉ ।
କାଳେ ଜଳନିଧି ମୋ ବଂଶ ସମ୍ପାଦି ଦୁଷ୍ଟଙ୍କର ଦର୍ପ ଦହୁ ।
ତରଙ୍ଗ ଲହରୀ ଦୁଷ୍ଟେ ଭୟକରି ଦେଖି ଆପଦେଟି ଡରି ।

ନିରିଭୟ ଜଳନିଧି ତୋହୋ ପୁରେ ଦୁଷ୍ଟେ ଥାନ୍ତି ଭୟକରି ।
ଦେଖି ନିରାକାର ନିବିଷ୍ଟ ଯେ ପୁର ଦୁଷ୍ଟଙ୍କର ଦର୍ପ ଛଳେ ।
ନିର୍ବାଣି ଯେ ପୁର ଆଦିବିଧି ଯେତେ ଦେଲେସିନା ଯଥାକାଳେ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଅଧିପତି ଅବିକାର-ନିରଞ୍ଜନ ।
ନିରାକାର ବିଷ୍ଣୁ ଉଦ୍ଭବ ସମ୍ଭବ ଆଦି ପ୍ରଭୁଙ୍କୁ ସ୍ମରଣ ।
ସେହି କାଳ ରୂପ ନିଗ୍ରହ ସ୍ୱରୂପ ବିନାଶି ନାଶଇ ତାରେ ।
ନିଜ ଶ୍ୱରୀର ବିସୋରି ଆଦିନାଥ ଗର୍ଭେ ସଂହରଣ କଲେ ।
ପ୍ରତିବିମ୍ବ ଜ୍ୟୋତି ପ୍ରତିମା ପ୍ରକୃତି ମୁହିଂ ସେହିସେହି ହୋଇ ।
ସେହି ଆମ୍ଭେ ସିନା ଆଗ୍ୟାଂ ଅନୁସରି ଭୋଗ ବିଳସିବାପାଇଂ ।
ଆଗ୍ୟାଂ ଅନୁସରି ଭୋଗ ଆମ୍ଭେକରି ଆସୁ ପୁଣି ଯଥାକାଳେ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଆଦିନାଥ ସେବା ନିଯୋଗିବାବେଳେ ।
ବେଳେ ବେଳେ ମହାବିଷ୍ଣୁଙ୍କର ଲୀଳା ପ୍ରକାଶ କରିବାପାଇଂ ।
ପ୍ରତିବିମ୍ବ ଜ୍ୟୋତି ଆମ୍ଭେ ଯେ ପ୍ରକୃତି ଅବତାର ସିନା ହୋଇ ।
ଲୀଳା ଭୋଗ ଯୋଗ ପ୍ରତି ଉପବର୍ଗ ପ୍ରକଟକରିବା ପାଇଂ ।
ଦୁଷ୍ଟ ଦର୍ପଦଳି ଭକ୍ତବୃନ୍ଦ ପାଳି ମ୍ଳେଚ୍ଛ ସଂହାରଣ ମହୀ ।
ଯେଣୁ ସିନା ବିଷ୍ଣୁ ନିବିଷ୍ଟୁ ମୁଂ ବିଷ୍ଣୁ ସ୍ୱଲୀଳା ଆମ୍ଭେ ରଞ୍ଜିଲୁ ।
କିଛୁକାଳ ଭୋଗ ବିଳସିଣ ପୁଣ ନିଜଧାମେ ଆମ୍ଭେ ଯିବୁ ।
ଯଦୁବଂଶ କୁଳ ସମୂଳେ ବିନାଶ ନିରାକାର ଆଗ୍ୟାଂହୋଇ ।
ଆମ୍ଭ ନିଜଧାମ ନୀଳାଚଳ ବାସ ଭୋଗ ବିଳସିବି ମୁହିଂ ।
ଯଦୁଅଂଶୀ ଗୋପଅଂଶୀ ମୁନିଅଂଶୀ ଗନ୍ଧର୍ପ ଥିବେଟି ରସି ।
ସେବା ନିଯୋଗ ସଂଯୋଗାଇବେ ପୁଣି ପ୍ରତି ପ୍ରତି ବିଧିରେସି ।
ମାନସିକ ସେବା ଭୋଗ ବିଳସିବି କୈବଲ୍ୟ ପସରା ଦେଇଂ
ଚକ୍ରୁପରେ ନେତ ବାନ୍ଧି ଜଗନ୍ନାଥ ନାମ ନିରବଧି ତହିଂ ।
ହରି ଗୋଳଧ୍ୱନି ନିରବଧି ହେବ ମୋ ବଂଶ ଡାକିବେ ଭୋଳେ ।
ଶୁଣି ମନବାଞ୍ଛା ଫଳ ମୁଂ ଯେ ଦେବି ସେବା ନିଯୋଗିବା କାଳେ ।
ତୁ ଯେ ଜଳାଧିପ ଆମ୍ଭର ତୁ ବସା ଉପଗାରି ହେଲୁବେଳ ।
ଆମ୍ଭେ ନିଜଧାମ ଯିବୁ ଯଥାକାଳେ ଉପଗାରି ହେବୁ ପୁଣ ।
ଯଦୁବଂଶକୁଳ ସମୂଳେ ବିନାଶ କରିବି ମୁଂ ଯଥାକାଳେ ।
ମୋ ବଂଶ ନାଶିବି ମୁହିଂ ଯେଥୁ ଯିବି ବକ୍ରମୁନି ଶାପଫଳେ ।

ମୋହ ଆତ୍ମା ପାର୍ଥ ଜାରା ବୀର ସେତ ବିନାଶିବ ମୋର ଦେହୀ ।
ବିବଛ ସଂସ୍କାର ଅଗ୍ନି ପ୍ରଜ୍ଜ୍ୱଳିତ ନିଯୋଗାଇ ଦେବ ନେଇ ।
ନୋହିବ ଦହିଜ୍ୟ ମୋ ନିଜ ଶ୍ରୀରର ବହୁ ଉପାୟେ ଯତନେ ।
ସ୍ୱର୍ଗୁ ଦେବତାଏ ଶବଦ ପ୍ରକାଶି ମେଲିଦେବେ ନିରିଜନେ ।
ଯେହିକାଳେ ତୁହି ଉପଗାରି ହେବୁ ଜଳାଧିପ ଯେଣୁ କହି ।
ମଣିମୟପୁର ତୋ ଦିବ୍ୟ ମନ୍ଦିର ପୁର ମଣ୍ଡିଥାଅ ଯାଇ ।
କିଛୁଦିନ ମୁହିଂ ତହିଂ ଯୋଗ ସାଧି ପୁଣି ନିଜଧାମ ଯିବି ।
ନୀଳାଞ୍ଚଳେ ଦାରୁ ରୂପେଣ ପ୍ରତିମା ହୋଇ ଭୋଗ ବିଳସିବି ।
ଯେହି ଯଦୁବଂଶ ଥିବେ ଅଂଶାଅଂଶ ଗୋପଅଂଶ ଥିବେ ସେବି ।
ନିଯୋଗାଇ ଦେବେ ମଣୋହିଟି ମୋତେ ଅହନିଶି ଥିବେ ଭାବି ।
କିଛୁଦିନ ମୁହିଂ ଥକିତେ ରହିବି ବାକ୍ୟ ନ କହିବି କାହିଂ ।
ହସ୍ତେ ନଭୁଞ୍ଜିବି ଆସ୍ୱାଦନ ନେବି ନିରାକାର ଆଗ୍ୟାଂ ଯେହି ।
ଥିବେ ମୋ ଭଗତ ଗୋପ ଯଦୁବଂଶ ମୋ ନାମ ଭାବିବେ ଭୋଳେ ।
ଅମୃତ ଯୋଗାଡ଼େ ନାନାବିଧି ଦ୍ରବ୍ୟ ନିଯୋଗାଇ ଦେବେ ବେଳେ ।
ଭୁଞ୍ଜି ନିରବଧି ବେଶ ମୁଂ ହୋଇବି ରତ୍ନ ଆବରଣ ଦେହୀ ।
ନାନା ବର୍ଣ୍ଣେ ପୁଣି ମଣ୍ଡି ହୋଇ ବେଶେ ସୁବାସିତ ହେବି ମୁହିଂ ।
କଳିଯୁଗେ ନୀଳାଞ୍ଚଳେ ଦାରୁରୂପ ପୂଜିବେଟି ମୋର ଭକ୍ତେ ।
ବ୍ରହ୍ମ ନିରୂପଣ କରି ସ୍ୱୟେଂ ବିଷ୍ଣୁ ବ୍ରହ୍ମ ପ୍ରକାଶିବ ଯୁକ୍ତେ ।
ଠାବେ ଠାବେ ଠୁଳ ପ୍ରକାଶିବ ରୂପ ଭୋଗ ବିଳାସିବା ପାଇଂ ।
କଳିଯୁଗେ ନ ମତତ୍ତ୍ୱ ରୂପେ ଗୁପ୍ତ ଭୋଗ ବିଳସିବି ମୁହିଂ ।
କିଛିଦିନେ ମୁହିଂ ନୀଳାଞ୍ଚଳୁଂ ଯାଇ ପୁଣି ଅବତାର ହେବୁଂ ।
କଳିଯୁଗେ କଳ୍କିଂ ଅବତାର ଲୀଳା ବାରୁ ଚଢ଼ିଣ ଭ୍ରମିବୁଂ ।
ଦୁଷ୍ଟଙ୍କୁ ନାଶିବୁ ସନ୍ଥକୁ ପାଳିବୁ ତାରତମେ ସେବା ଦେବୁ ।
ଆମ୍ଭ ପରଚେ ପରମଗ୍ୟାଂନ ଭକ୍ତି ଉପଗାରେ ପୁଣ ଥିବୁ ।
ତୁ ଯେ ଜଳାଧିପ ଆମ୍ଭ ଉପଗାରି ବେଳେବେଳେ ସାହାହୋଉ ।
ଜାଣିଥା ମୋ ବଂଶ ତୋ ପରେ ରହିବେ ଯୋଗ ସାଧିବେଟି ସେହୁ ।
ଯେ ଇଛିବ ଯୋଗ କେବା ଅନୁଭବ ସାଧିବେ ଯୋଗ ସାଧନ ।
ତୁହି ଜଳାଧିପ ଆକଟେ କହିବୁ ନୋହିବଟି ବିଡ଼ମ୍ବଣ ।
କିଛିଦିନ ଯୋଗ ସାଧନେ ରହିବେ ମଣିପୁରେ ଥିବି ରହି ।

ନିରାକାର ଯୋଗ ସାଧନା କରିବି ପୂର୍ବ ପାପ ହେବ ଦହି ।
ଆଗ ମୁହିଂ ଯିବି ଅବତାର ହେବି ପ୍ରକାଶ କରିବି ନାମ ।
ଗଉରାଙ୍ଗ ଅବତାର ହେବି ମୁହିଂ କଳିଯୁଗେ ତତ୍ତ୍ୱନାମ ।
ଘରେ ଘରେ ତତ୍ତ୍ୱ ନାମଭଜି ଭକ୍ତେ ଗୌରାଙ୍ଗ ଶବଦ ଶତେ ।
ଧ୍ୱନି ବାଜି ଯୋଗ ଭାଜିବ ଯୋଗୀଙ୍କ ଯୋଗ ସାଧନାଟି ଯେତେ ।
ତୁହି ଜଳାଧିପ ତୋ ଯୋଗ ସାଧନେ ଶବଦ ବାରିବୁ ଥାଇ ।
ମୋ ବଂଶ ଚିତୋଇ ଶବଦ ବାରିବେ କଷ୍ଟେଥିବେ ତୋତେ ଧାଇ ।
ତୋହୋ ଆଗ୍ୟାଂଘେନି କଳିଯୁଗରେଣ ମୋ ବଂଶ ମୋତେ ଭାବିବେ ।
ଆକଟେ ମଣାଇ ଥିବୁ ନିରବଧି ଧାରା ସେହୁ ନ ଛାଡ଼ିବେ ।
ତୋତେ ମୁହିଂ ଆଗ୍ୟାଂ ଦେଲି ଜଳାଧିପ ଏ ଆଗ୍ୟାଂ ନୋହିବ ଭଙ୍ଗ ।
ଯେଥି ଶମ୍ଭୁଲିଙ୍ଗ ବିଚାର କରିବେ ତୁହି ଯେ ଅଟୁ ତରଙ୍ଗ ।
ଆମ୍ଭେ ଲୀଳାଭୋଗ ସାରି କଳିଯୁଗେ କଳ୍କୀଂ ଅବତାର ହେବୁଂ ।
ଆମ୍ଭ ବଂଶ ଆମ୍ଭ ନିଯୋଗେ ଖଟିବେ ଗ୍ୟାଂନଯୋଗରେ ଭେଟିବୁ ।
ଚିହ୍ନ ପରଚେ ଗ୍ୟାଂନ ଯୋଗ ସାଧନେ ଫଳ ଯାଚି ଦେବି ମୁହିଂ ।
ଅଧିପତି ପଣେ କେହି ଅବା ଥିବେ ଦେଖିବୁ ତୁ ଜଳସାଇଂ ।
ଦୁଇ ଦୁଇ ଯେକ ଜନ୍ମ ଅଗ୍ୟାଂନରେ ଯିବି କିଛୁଦିନ ପୁଣ ।
ଆମ୍ଭେ କଳଙ୍କି ଅବତାର ହୋଇବୁ ଅଗ୍ୟାଂନୀ ନାଶିବୁ ଜାଣ ।
ଦୁଇ ଯେକ ଜନ୍ମେ ଅଗ୍ୟାଂନ ବିନାଶ ଗ୍ୟାଂନ ପ୍ରକାଶିବ ପୁଣି ।
କଳଙ୍କୀ ବେଳକୁ ଅନୁସରି ଆଗ୍ୟାଂଦେବୁ ଜଳନିଧି ଜାଣି ।
କେ ଆସଇ ଯାଇ କେହୁ ଅବା ଧାଇ ଥିବ ଅନୁସରି କେହି ।
ଜାଣି ଜଳାଧିପ ତୁ ଆଗ୍ୟାଂ କରିବୁ ମଣାଇ କହିବୁଂ ତୁହି ।
ଯେହୁ ଯଦୁବଂଶ ଗୋପବାଳ ଶିଷ ଯେତେ ଯେତେ ବିତପନ ।
ଯେକେ ଯେକେ ବଳି ତେଜିବି ତପନ ବିନାଶି ନାଶିବେ ପୁଣ ।
ମୋ ଲୀଳା ବିଭଙ୍ଗ ନୋହିବ ତରଙ୍ଗ ବିଚାରି ଦେବୁଟି ଆଗ୍ୟାଂ ।
ସେ ଯେ ଘୋରକଳି ଅଟେ ମହାବଳୀ ଦେଖିବୁ କଳି ପ୍ରତିଗ୍ୟାଂ ।
ମାୟାପୁର ସେ ତ ମର୍ତ୍ତ୍ୟ ବଇକୁଣ୍ଠ ମୋ ବଂଶ ହୋଇବେ ମେଳି ।
ଠାବେ ଠାବେ ବଂଶ ମୂର୍ତ୍ତି ପୂଜା ଠୁଳ ନିରବଧି ହେବେ ମେଳି ।
ଗୋପ ଯଦୁବଂଶ ମୁନି ଅଂଶଅଂଶ ଗନ୍ଧର୍ପ ଥିବେଟି ଭାବେ ।
ଭୋଳହୋଇ ମୂଳ ନାମକୁ ଭାବିବେ ଆତ୍ମାପରଚେ କେ ଥିବେ ।

ସେ ଯେ ଯଦୁବୀର ବାଳେକ କୁମର ମୋ ଆତ୍ମା ପ୍ରିୟଟି ସେହି ।
ଗୋପବାଣୀ ବୃନ୍ଦା ନନ୍ଦକନ୍ଦ ଗୋପବାଳ ପ୍ରିୟ ଆତ୍ମା ଯେହି ।
କଳି ଶେଷକାଳେ ଗର୍ଭେ ସଂହରିବି ଦେଖିବୁ ତୁ ଜଳାଧିପ ।
କଳଂକୀ ବେଳେ ନିଯୋଗ ସେବାଦେବେ ନଥିବ ଦୁଷ୍ଟଙ୍କ ଦର୍ପ ।
ମୋ ବଂଶ କଳଙ୍କି ଲୀଳା ଅନୁସରି ଅବିରତେ ଭାବୁଥିବେ ।
ଠାବେ ଠାବେ ଠୁଳ ହୋଇଣ ଯେ ମେଳ ଆତ୍ମା ପରଚେ କରିବେ ।
ସାତୁକୀ ଯେ ସତ୍ୟ ମଣି ଅବିରତେ ସ୍ୱଭାବରେ ରଖିଥିବ ।
ସେବାଖଟି ରାତ୍ର ଦିବସ ଜାଗିଣ ସଦାଚାର ଚଳାଇବ ।
ତହୁଂ ତତପରେ ଯିବୁ ଉଦବେଗେ ଆମ୍ଭର ଯେ ନିଜଧାମ ।
ଅଳପ ଦିନେ ମୁଂ ଆସିବି ପୁଣ ଯେ ବ୍ରହ୍ମପୁରୀ କୁଳେ ଜନ୍ମ ।
ଜ୍ୟେଷ୍ଠ ନନ୍ଦନ ଯେ ହୋଇବ ତାହାର ନାମ ହେବ ନୀଳମଣି ।
ମଣିମୟ ପୁର ଆଗ୍ୟାଂଦେବୁ ତାକୁ ଅଚଳ ଚଳିବ ପୁଣି ।
ରାଜରଷି ଭୋଗ ବିଳସିବ ତୁମ୍ଭେ ହେବ ମହାଉପଗାରି ।
ଆତ୍ମପ୍ରିୟଜନ ଉପଗାରେ ଥିବେ ମୋ ଆଗ୍ୟାଂକୁ ଥିବୁ ଧରି ।
ଯେ ଯେ ଥୋକେ କୃଷ୍ଣ ଆତ୍ମାପ୍ରିୟ ମୋର ଅନୁଭବ ଯୋଗସାଧେ ।
ଗୋପବାଳା ମେଳେ ଗୋପ ବୃନ୍ଦାବନେ ଅମୃତ ଦିଶଇ ବନ୍ଦେ ।
ବୋଲଇ ଶ୍ରୀହରି କ୍ଷୁଧା ଅନଳେ ତୁ ନପାରୁ ଯେ କ୍ଷଣେ ରହି ।
ଆସିଅଛି ଅନ୍ନ ଦିବ୍ୟ ସେ ବ୍ୟଞ୍ଜନ ଭୋଗ କରୁକିନା ତୁହି ।
ଯଉଂ ବୃନ୍ଦାବନ ଗୋପାଳର ସୁତ ସୁବଳ ସୁବାହୁ ଦୁଇ ।
ସୁବାସ ଚନ୍ଦନ ଲେପଣ ଦିଅଇ ବିନୟେ ହୋଇଣ କହି ।
ବୋଲନ୍ତି ଶ୍ରୀହରି ତୋର ସଙ୍ଗେ ଥିବୁ ଚଞ୍ଚଳ ନୁହ ଯେ ତୁମ୍ଭେ ।
ବୃନ୍ଦାବନେ ଦୁଷ୍ଟ ଅଛନ୍ତି ଗରିଷ୍ଠ କହିଦେବୁ ଆମ୍ଭେ ଆଗେ ।
ଯେ ଯଉଂ ସୁନନ୍ଦ ବସୁନନ୍ଦ କନ୍ଦ ପ୍ରିୟ ଭାବଥାଇ କରି ।
ନାନା ବର୍ଣ୍ଣେ ପୁଷ୍ପ ସୁବାସ ଅମ୍ବର ବେଶ ଦିଏ ମୋତେ କରି ।
ଗନ୍ଧ ବାସ ଦେହେ ଲେପନ କରଇଂ ରାଧା କୃଷ୍ଣ ଆତ୍ମାପଦେ ।
ଉପନନ୍ଦ ରଙ୍ଗବାସ ଜାମୁଡ଼ାଳି ବେଶକରେ ନାନା ସଧେ ।
ମହାପଦ୍ମନନ୍ଦ ଗୋପବାଳବୃନ୍ଦ ଘେନି ପୁଷ୍ପ ଗୁନ୍ଥି ଦେଇ ।
କର ପଲ୍ଲବ ମାଳତୀ ଗଭାଚୂଳ ଦୟେଣା ଖଞ୍ଜାୟେ ନେଇ ।

ବୋଲଇ ଶ୍ରୀହରି ଶ୍ରୀଅଙ୍ଗକୁ ତୋର ଦିଶିଲାଟି ଦିବ୍ୟଶୋଭା ।
ଗନ୍ଧ ସୁବାସ ଶ୍ରୀଅଙ୍ଗେ ଲେପିବି ମୁଁ ବାନ୍ଧିଦେବି ଦିବ୍ୟଗଭା ।
ଆହେ ସେ ସୁଦାମ ମୋର ଆତ୍ମାରାମ ବିଶ୍ୱାସ ଥାଇଁ ସେ କରି ।
ନନ୍ଦରାଜନ ଆକଟରେ ମୋତେ କହେ ପ୍ରତିବୋଧକରି ।
ବୋଲଇ ଶ୍ରୀହରି ନୋହିଟି ତୋହରି ଆସିଛି ଦୁଷ୍ଟଙ୍କ ଛଳେ ।
ମଧୁଲୋଭେ ଭୃଙ୍ଗ ସୁବାସ ଘେନଇ ପୁଣି ଯିବ ଯଥାକାଳେ ।
ସେ ଯଉଂ ରାଧିକା ସଖୀଙ୍କ ନାୟେକା ଦୂତୀ ସହଚରୀ ସେହି ।
ରାଧାଙ୍କ ସଙ୍କେତ ଦୂତୀ ସହଚରୀ କୃଷ୍ଣକୁ ମଣାଇ କହି ।
ବୋଲଇ ଶ୍ରୀହରି ରାଧା ରସେ ରସ ରସିକନାଗର ତୁହି ।
ପୁରୁଷ ଯତନ ରମଣୀ ରତନ ଭୋଗକରୁ କିନା ତୁହି ।
ଯେଯେ ପ୍ରେମରୂପା ମୋ ଭାବରେ ଯେକା ଅନୁସରି ଭାବରସେ ।
ପ୍ରେମେ ଅଶ୍ରୁ ଗଦଗଦ ନିରବଧି ନିଯୋଗାଇ ରସେ ରସେ ।
ବୋଲଇ ଶ୍ରୀହରି ତୁମ୍ଭେ ମୋହ ଆତ୍ମା ମୁଁ ତୁମ୍ଭର ନିଜ ଦାସୀ ।
ରାସ ରସେ ମୋତେ ସଖୀଙ୍କ ସଙ୍ଗତେ ବିଶ୍ୱାସୀ ଥିବ ଆଶ୍ୱାସି ।
ପାମର ଅଚ୍ୟୁତ ନିରବଧି ଆଶ ଗୋପୀ ଗୋପୀନାଥ ପାଦେ ।
ଜନ୍ମେ ଜନ୍ମେ ସେବା ନିଯୋଗଟି ମୋର ନିରବଧି ପଦ୍ମପାଦେ ।

ଇତିଶ୍ରୀ ଶୂନ୍ୟସଂହିତାୟାଂ ଗୁରୁଶିଷ୍ୟ ବୋଧନେ ଗୋପବାଳକ
ଜନ୍ମାଜନ୍ମ ପ୍ରତିବିଧି କଥନେ ଶ୍ରୀକୃଷ୍ଣ ସ୍ୱୟଂ ଜଳନିଧିପୁର
ଗମନେ ନାମ ଷଷ୍ଠ ବିଂଶ ଅଧ୍ୟାୟଃ ।

## ସପ୍ତବିଂଶ ଅଧ୍ୟାୟ

ଆହୁରି ଶୁଣ ହୋ ବରଜନନ୍ଦନ ଗୋପୀନାଥ ପ୍ରିୟରସ
ଯଦୁବଂଶ ନାଶକରି ପୀତବାସ ବିଚାରଇ ପ୍ରୀତିରସ ।
ଯେ ଯଉଂ ବିଶାଖା ସଖୀ ମୋର ଆତ୍ମା ଲବଣୀ ଦିଅଇ ବଳେ ।
ବେଳେବେଳେ ଘେନି ପଲଙ୍କେ ଶୁଆଇ ରସାଇ ରସିକ ମେଳେ ।
ସେ ଯଉଂ ଲାବଙ୍ଗୀ ଆତ୍ମାପ୍ରିୟ ସଙ୍ଗୀ ରସବତୀ ସୁରସିକା ।

ବଛା ବାଳ ଘେନି କୁଞ୍ଜକୁ ଚଳନ୍ତେ ଦିଏ ଗୋରଚନା ଟୀକା ।
ଗୋଟିକା ସର ଲବଣୀ ଦିଏ ମୋତେ କେତେ ଚାଟୁକରି କହେ ।
ବୃନ୍ଦାବନେ ରାସ ଘେନିଣ ସୁବାସ ଗୋଳି ଅନୁସରି ଥାଏ ।
ଯେବେ ଯେ ଉତ୍ତମା ସଖୀଙ୍କ ଭାବନା ଶୁଣୁ ଜଳାଧିପ ତହିଁ ।
ଯେକୁ ଯେକ ବଳି ପ୍ରେମରସେ ଭାଳି ଭାବଭୋଳେ ଥାଇ ମୁହିଂ ।
ସେମାନେ ରସିଲା ପ୍ରେମ ପ୍ରକାଶିଲା ଉଛଳିଲା ରସରଙ୍ଗେ ।
ବୃନ୍ଦାବନେ ଗୋପୀ ଘେନି ରାସ ଲୀଳା କଲି ମୁହିଂ କୁଞ୍ଜେ କୁଞ୍ଜେ ।
ଦୁଷ୍ଟଙ୍କୁ ନାଶିଲି ରାସରସ କଲି ଗୋପେ ବଢ଼ି କିଛୁଦିନ ।
ଦୁଷ୍ଟ କଂସନାଶ କରିଣ ଯେ ମୁହିଂ ମଥୁରାରେ ନେଲି ଦିନ ।
ରାଜସୁଖ ଭୋଗ ଶିରୀ ବିଳସିଲି ଗୋପସୁତ ଘେନି ମୁହିଂ ।
ଯଦୁକୁଳ ଚନ୍ଦ୍ର ଗୋପର ନରେନ୍ଦ୍ର ରାଜସୁଖ ଭୋଗୀ ମୁହିଂ ।
ଆହା ସେ ଦଇବ ଭାଙ୍ଗିଲା ମୋ ଗର୍ବ ପୋଡୁମୋର କର୍ମଯଶା ।
କା ପୁତ୍ର କାହାର ସୁଖୀ ମୁନିହାର ଛଡ଼ାଇଲା କରି ହଂସା ।
ବିନା ଅପରାଧେ ମୋହର ସନ୍ତତି ନାଶିଲି ମୁଁ ସୁଖପାଇଂ ।
ଦଇବଯୋଗେ ନିରେଖ ଆତ୍ମା ମୋର ଯିବଟି ଅନାସ୍ତ ହୋଇ ।
ଧନ୍ୟ ସେ ବିବଛ କାଳେ ମୋର ପକ୍ଷ ଦଶାରେ ହୋଇବ ସାହା ।
କେମନ୍ତେ ମୁଛିବି ଆତ୍ମାପ୍ରିୟଜନ କେହି ନାହିଁ ମୋର ଆହା ।
କହୁ କହୁ ନେତ୍ରୁ ଅଶ୍ରୁଧାର ବହେ କ୍ରୋଧେ ବିକଳିତ ଚିତ୍ତ ।
ଦଇବ ବୋଲିଣ କୁଳ ହୋଇଣ ଶିରେ ଦେଲେ ବେନି ହାଥ ।
ତୁ ଯେ ଜଳାଧିପ ଆତ୍ମାପ୍ରିୟ ବୋଲି ଅଇଲି ମୁଁ ତୋତେ କହି ।
ମୋ ବଂଶ ତୋ ପୁରେ ଯୋଗ ଯେ ସାଧିବେ ଥିବୁ ପ୍ରିୟପଣ ହୋଇ ।
ଯଦୁବଂଶ ଅଂଶ ଅନାଦୃଷ୍ଟ ସ୍ୱେ ତ ମୋହୋ ଉପଗାରେ ଥାଇ ।
ବୋଲଇ ଶ୍ରୀହରି ଆସ ମୋର ପୁରୀ ଶ୍ରୀଅଙ୍ଗ ଦେବି ମଣ୍ଡାଇ ।
ଦିବ୍ୟ ଅଳଂକାର ଶ୍ରୀଅଙ୍ଗେ ମଣ୍ଡିବି ବାନ୍ଧିଦେବି ଦିବ୍ୟଗଭା ।
ତମାଳ ବର୍ଣ୍ଣ ଯେ ଶ୍ରୀଅଙ୍ଗ ତୋହୋର ଦିଶିବଟି ବଡ଼ ଶୋଭା ।
ଯେଉଂ ହରିବ୍ରହ୍ମ ଯାଦବଟି ଶ୍ରଦ୍ଧା ବନବିଜେ କାଳେ ତୋତେ ।
ବୀରବର ବେଶ କରିଦିଏ ତୋତେ ସେହି ଦାରୁଲାଗି କରେ ।
ବୋଲଇ ଶ୍ରୀହରି କୃଷ୍ଣଙ୍କୁ ସଂହରି ଆସିବୁଟି ବେଗେ ତୁହି ।

ବାଲୁତ ନନ୍ଦନ କାଲି ଉପବାସ ମଣୋହି ନକଲୁ ରହି ।
ପଦ୍ମନ କନ୍ଦର୍ପ ଅନିରୁଦ୍ଧ ସେ ତ ବିରଳାକ୍ଷ ବୀରବର ।
ମୋହ ଆତ୍ମାପ୍ରିୟ ବୀରବର ବାନା ଉଡ଼ଇଟି ନିରନ୍ତର ।
ଉଦ୍ଧବ ଅକ୍ରୂର ଅନାଦୃଷ୍ଟ ବୀର ମଣିଭଦ୍ର ଭଦ୍ରଶୀଳ ।
ଯେକୁଯେକ ବଳି ବୀରଦର୍ପ ଦଳି ବୋଲନ୍ତି ସେ ମହାବଳ ।
ଦଇବର ବଳେ ଦୁର୍ବଳ ନିର୍ମଳେ ହୋଇଲେ ମୋହର ବଂଶ ।
ଆହା ବକ୍ର ଋଷି ଭିଆଇଲୁ ଯେହା ପୂରିଲା ତୋର ମୁହାଂସ ।
ସେ ଯେ ଯଦୁବଂଶ କଲ୍ୟାଣ କରତା ମୃଦ୍‌ଗର ଗାଗ୍ରବ ଋଷି ।
ଗଉତମ ଭରଦ୍ୱାଜ ଚ୍ୟବନ ଯେ ଦୁର୍ବାସା ଋଷିଶୃଙ୍ଗଟି ।
ନକଲେ ବିଚାର ନାଶିଲେ ମୋ ପୁତ୍ର ବ୍ରହ୍ମଋଷି କଲା ହିଂସା ।
ନ ଜାଣି ବାଳେକ ଖେଡ଼ କଉତୁକ ପଚାରିଲେ ସେ ମାନସା ।
ଆମ୍ଭର ଦୁଲଣା ଅଲିଅଳ ସିନା ଜାଣି ନଥିଲା କି ଋଷି
ଅଭିଶାପ ଦେଇ ମୋ ବଂଶ ନାଶିଲେ ସେହି ତ ଅଟେ ତପସି ।
ଦୁଷ୍ଟଙ୍କର ନଷ୍ଟ ଭୟରୁ ଗରିଷ୍ଠ କାଳେ ବେଳେ ସାହା ହୋଯେ ।
କିଞ୍ଚିତ ଦୋଷେ ମୋହ ବଂଶ ନାଶିଲେ ତପୀର ଦେଖ ଅନ୍ୟାଏ ।
ହେଉ ହେଉ ଋଷି ଅବିଶାପ୍ୟ ମୋତେ ମୋ ବଂଶ ନାଶିବି ମୁହିଂ ।
ଆହେ ଜଳନିଧି ମଣିପୁରୁ ଆଣି ଦିଅ କାଳଚକ୍ର ତୁହି ।
ମାରିବି ମୋ ବଂଶ ମରିବେ ଅବଶ୍ୟ କଥା ଯୁଗେ ଯୁଗେ ରହୁ ।
ମରୀଚି ମୁଚୁକୁନ୍ଦ ଗଲ୍ୟ ଗାଗ୍ରବ୍ୟ ବକ୍ରଋଷି କଥା ଥାଉ ।
ତପୀ ହୋଇ କୋପୀ କିଞ୍ଚିତ ଦୋଷେଟି ବିନାଶିଲେ ମୋର ଶିରୀ ।
ରାଜଶିରୀ ଭୋଗ ବିଳସିଲି ମୁହିଂ ନାଶେ ଋଷି ହିଂସା କରି ।
ଆହୋ ଜଳାଧିପ ଆମ୍ଭର ଯେ ବଂଶ ରଖିବୁଟି ଜଳପୁରେ ।
ଯୋଗସାଧି ଭୋଗ ବିଳସିବି ମୁହିଂ ଆମ୍ଭ କଳଙ୍କି ବେଳରେ ।
ଏହି ଋଷି ବେଳେ ତୋ ପୁରେ ମିଳିବେ ସାଧିବେଟି ଏଥି ଯୋଗ ।
ଆକଟ ମଣାଇଂ ଥିବୁ ଜଳନିଧି ମୋ ଲୀଳା ନୋହିବ ଭଙ୍ଗ ।
ନୋହିବ ଅନ୍ୟଥା ଋଷି ଅଭିଶାପ ନିଚେ ଉଚ୍ଛେ ହେବେ ଜନ୍ମ ।
କର୍ମ କଷଣ ହୋଇବ ନିରବଧି ଦଣ୍ଡଧାରୀ କେବା ପୁଣ ।
ଦଣ୍ଡୀ ସନ୍ନ୍ୟାସୀ ଭିକ୍ଷୁକ ଯେତେ ପ୍ରାଣୀ ଅନ୍ୟାଚାରୀ କେବା ହେବେ ।

ପରମହଂସ ନିର୍ବିଷ୍ଣୁ ବିଷ୍ଣୁ ମହିମା ଫଳ ପୁଣି ନପାଇବେ ।
କଳିଯୁଗେ ଆମ୍ଭେ ଭୋଗ ବିଳସିବୁଁ ଥିବେ ତହିଁ ଆମ୍ଭ ବଂଶ ।
ବକ୍ରଋଷି ଆଉ ମର୍ତ୍ତ୍ୟକୁ ନଆସୁ ସ୍ୱର୍ଗେ କରିଥାଉ ବାସ ।
ତପୀହୋଇ କୋପୀ ମୋ ରାଜ ସମ୍ପତ୍ତି ଦେଖି ହିଂସାକଲେ ଯାହା ।
କର୍ମ ଅବଳେ ଆମ୍ଭର ପ୍ରିୟଜନ ଶତ୍ରୁପଣେ କଲେ ଯେହା ।
ଶୁଣ ଜଳାଧିପ ଗୋପେ ସୁଗୁପତ ହୋଇ କିଛିଦିନ ଥିଲି ।
ନନ୍ଦରାଜନ ଯେ ଆକଟ କଲା କେତେ ବେଳେ ବେଳେ ମୁଁ ସହିଲି ।
ଗୋପୀ ଜନ ସ୍ନେହ ଭାବେ ବଶ୍ୟକଲେ ପ୍ରେମ ସୁଧାରସ ଦେଇ ।
ରାଧା ରସବତୀ ରମଣୀ ରତନ ଭୋଗ କରୁଥିଲି ମୁହିଁ ।
ବିଧାତା ଅବଶେ ଦୁଷ୍ଟ କଂସରାଜା ଧରିଆଣି ମଥୁରାକୁ ।
ମାଲବନ୍ଧେ ଦେଇ ମାର ଗୋପସୁତେ ତିଆରି କହିଲା ତାଙ୍କୁ ।
ଧର୍ମବଳେ ମାତାପିତାଙ୍କ କଲ୍ୟାଣେ ଦୁଷ୍ଟ କଂସ ଗଲା ନାଶ ।
ମୁଁ ରାଜ ସମ୍ପଦ ଭୋଗ ବିଳସିଲି କେତେ ଦୁଷ୍ଟ କଲି ନାଶ ।
ଜାରା ନାରକା ବହୁ ବୀର ନାଶିଲି ଅନେକ ମାଇଲି ଦୁଷ୍ଟ ।
ଉଗ୍ରସେନ ଅକଣ୍ଟେକ ରାଜକଲା ହୋଇଲା ମନରେ ହୃଷ୍ଟ ।
ତପୀ ଯତି ସତୀ ସନ୍ୟାସୀଙ୍କି ନୀତି ପୂଜଇ ଆନନ୍ଦ ହୋଇ ।
ପ୍ରିୟ ରସେ ପ୍ରେମପଣେ ମୋ ଭାବରେ ଅନୁକ୍ଷଣେ ଲୟଦେଇ ।
ଆତ୍ମା ପରତେ ପରମ ଗ୍ୟାଂନ ଆତ୍ମାଭାବେ ଥାଇ ମୋର ଆଶେ ।
ବୋଲଇ ଶ୍ରୀହରି ଯେ ରାଜ ସମ୍ପଦ ଭୋଗକରୁ ଦିନାକାତେ ।
ଦିବ୍ୟ ଅଳଙ୍କାର ଶ୍ରୀଅଙ୍ଗେ ମଣ୍ଡିବି ବାନ୍ଧିଥିବା ଦିବ୍ୟଚୂଡ଼ା ।
ତମାଳ ବର୍ଣ୍ଣ ଶ୍ରୀଅଙ୍ଗ ଶୋଭାପାଏ ଯୁବତୀଙ୍କ ଘରବୁଡ଼ା ।
ପ୍ରେମପଣେ ଉଗ୍ରେସେନ ରାଜନୀତି ସମ୍ପଦ ଭୋଗକରଇ ।
କରମ ଅବଳେ ବିଧାତା ନସହି ପ୍ରିୟପଣେ ଶତ୍ରୁହୋଇ ।
ମୋର ପ୍ରିୟବତୀ ରାଧା ଗୁଣବତୀ ଅନୁକ୍ଷଣେ ଚିତ୍ତେ ଚିନ୍ତି ।
ପତ୍ରିକା ଲେଖି ବିରହେ ହୋଏ ଦୁଃଖୀ ଦୂତ ଆଇଲାକ ଘେନି ।
ନପଢ଼ି ପତ୍ରିକା ହୋଇଗଲି ମୁର୍ଚ୍ଛା ଦୂତକୁ ଦେଖିଲି ଯହୁଁ ।
ମୋର ପ୍ରିୟସଖା ସୁଦାମ ସୁବଳ ଆଶ୍ୱାସି କହିଲେ ତହୁଁ ।
ଘେନିଣ ପତ୍ରିକା ସୁଦାମ ମୁଁ ଯେକା ଯେକାନ୍ତ ଥାନକୁ ଗଲୁଁ ।

ମୃଦଭାଙ୍ଗି ପ୍ରିୟସଖୀର ଉଦନ୍ତ ପତ୍ରିକା ପଠନ କଲୁଂ ।
ଜାଣିଲା ସୁବଳ ଯେ ମଧୁମଙ୍ଗଳ ମାତାଙ୍କୁ କହିଲା ବେଳେ ।
କି ବିଚାରି ମାତା ସ୍ନେହ ଛାଡ଼ିକରି ଛାଟେ ପ୍ରହାରିଲା ମୋତେ ।
ହୋଇଲି ବିକଳ ଆତ୍ମା ମୋ ଆକୁଳ ଜାଣିଲା ସୁଦାମ ତାହା ।
ବିକଳିତ ଚିତ୍ତେ କ୍ରୋଧେଣ କହିଲା ମଧୁ ମଙ୍ଗଳଙ୍କୁ ଯାହା ।
ଆତ୍ମା ପରତେ ପରମବ୍ରହ୍ମରାଶି ଲୀଳା ତୁମ୍ଭେ ଭଗ୍ନ କଲ ।
ମାୟାବଳେ କରି କଇତବ ଛଳେ ଶ୍ରୀଅଙ୍ଗଙ୍କୁ କ୍ଳେଶ ଦେଲ ।
ସେହିଦିନୁ ଅନୁସରି ବୁଝୁଥାଇ ବିଧାତା ଅବଳ ହେଲା ।
ଦଇବ ବଳେ ମୋ ଆତ୍ମ ପ୍ରିୟଜନ ଶତ୍ରୁପଣେ ଯେହା କଲା ।
ହେଉ ହେଉ ଆମ୍ଭ ପ୍ରିୟଜନ ଶତ୍ରୁପଣେ କଲେ ଯେବେ ଏହା ।
ମୋହକର୍ମ ଶତ୍ରୁପଣେ ଦଣ୍ଡଦିଯେ କାଆଗେ କହିବି ଯେହା ।
ଯେ ମଧୁମଙ୍ଗଳ ମାୟାକୁ ଘେନିଣ ବିଳସୀ କୈତପେ ଥାଉ ।
କଳିଯୁଗେ ଗୋପ ବାଳକ ମେଳରେ ମହୁଲାସେ ଦିନ ନେଉ ।
ଆତ୍ମା ପରତେ ପରମ ଗ୍ୟାଂନତତ୍ତ୍ୱ ଲୋଭେ ହୋଇ ଉଦବେଗ ।
ଉଚ୍ଚନୀଚ ପୂର୍ବବିଧି ଛାଡ଼ି ତହିଂ ସେ ଯେ ପ୍ରକାଶ କରିବ ।
ଦେଳା ନେଳା ବାସ ପ୍ରକଟ ନୋହିବ ନ ଫୁଟିବ ଜ୍ୟୋତି କଳା ।
ଶ୍ରୀହରି ମହିମା ଫଳହୀନ ହୋଉ ଦମ୍ଭେ କହୁ ଜ୍ୟୋତି ଲୀଳା ।
ମାୟା ବିଳସାଇଂ କ୍ରୋଧେ ହରିଲୀଳା ମାୟାକରି ଜନମୋହୁ ।
ବାରଣ ବେଳେ ଶ୍ରୀହରି ସେବା ଯେତେ ତାରତମେ ଭାଗୀ ହୋଉ ।
ମଗିବଟି ସେବା ତାହାର ଯେ ଅବା ନଶୁଣିବୁ ଆମ୍ଭେ ବେଳେ ।
ଶମ୍ଭୁଲିଙ୍ଗ ଯଉଂ ବେଳେ ଜଣାଇବେ ଶୁଣି ନଶୁଣିବୁ କାଳେ ।
ଶୁଣିଥାଅ ଜଳାଧିପ ଆମ୍ଭ ବାଣୀ ବିଚାରି ଦେବୁଟି ଆଗ୍ୟାଂ ।
ଆମ୍ଭେ କଳିଯୁଗେ ଲୀଳା ପ୍ରକାଶିବୁ ଦେଖିବୁ କଳି ପ୍ରତିଗ୍ୟାଂ ।
ଶୁଣି ଜଳନିଧି ଆନନ୍ଦ ହୋଇଣ ହରି ହରି ବୋଲି ଢଳି ।
ମଣିମୟପୁର ନୀଳକଣ୍ଠେଶ୍ୱର ଲିଙ୍ଗ ପାଶେ ଯାଇଂ ମିଳି ।
ବିନୋଇ ହୋଇଣ ଚରଣେ ପଡ଼ିଣ କହିଲା ସକଳ ସିଧି ।
ଶୁଣି ଶମ୍ଭୁଲିଙ୍ଗ ତାଣ୍ଡବେ ରସିଲେ କଲେ ଯାହା ଯଥାବିଧି ।
କାଳାନଳ ଅଗ୍ନି କାଳଦଣ୍ଡ ଚକ୍ର ଉଦଗାରିଲେ ବିଶ୍ୱଗର୍ଭୁ ।

ବିଷ୍ଣୁକୂଟ ମାୟା ଗର୍ଭେଟି ତାଙ୍କର ସଂହାରଣେ ସେ ଯେ ତାହୁ ।
ଶୁଣି ତତପରେ ଶ୍ରୀହରି ଛାମୁରେ ଶମ୍ଭୁଲିଙ୍ଗ ଆସି ମିଳି ।
ତାଣ୍ଡବ ରସେ ଭୋଳ ହୋଇ ଈଶ୍ୱର ଶ୍ରୀହରି ମହିମା ଭାଳି ।
ହରିହର ଜଳନିଧି ମିଶି ସିଦ୍ଧି ଯୋଗ ସାଧନ ପୁରରେ ।
ହର ଦେଖି ହରି ହେଲେ ବିକଳିତ କ୍ରୋଧେ ଅଶ୍ରୁଜଳ ଝରେ ।
ଶୁଣ ତୁହୋ ହର ପଶିଲୁ ତୋ ପୁର ବକ୍ର ଋଷି ହିଂସାକଲା ।
ରାଜଶିରୀ ଭୋଗ ଭୁଞ୍ଜୁଥିଲି ମୁହିଂ ଋଷି ଜାଣି ନ ସହିଲା ।
ଦଇବେ ଆମ୍ଭର ବାଳୁତ କୁମର ଅଲିଅଳ ସିନା ହୋଇ ।
ବକ୍ରଋଷି ଯେହା ଜାଣିକି ନଥିଲା ଅଭିଶାପ୍ୟ ଗଲା ଦେଇ ।
ନରହିଲା କ୍ଷଣେ ଗଲା ସେ ଚଞ୍ଚଳେ ଚତୁର ବୋଲିବା ତାକୁ ।
ଉଦ୍ଧବ ଅକ୍ରୁର ମଣିଭଦ୍ର ଜାଣି ଥିଲେକି ଯାନ୍ତା ସ୍ୱର୍ଗକୁ ।
ଆହା ସେ ଦଙ୍ଗବ କିସୁଖ ଭାଙ୍ଗିଲା ଅନାସ୍ତ ହେଲେ ମୋ ବଂଶ ।
କେମନ୍ତେ ନାଶିବି ଆତ୍ମାର କୁମର କହ ହେ ପାର୍ବତୀଈଶ ।
କହୁ କହୁ ଅଶ୍ରୁଧାର ନେତ୍ର ବହି ଉଛୁଳିଲା ଜଳନିଧି ।
ଫେନ ଉଦ୍‌ଗାରି ତୀଖଧାର ବହି ଯଦୁବଂଶକୁ ଓଷଧି ।
ଦେଖି ସଦାନନ୍ଦ ହୋଇଲେ ଆନନ୍ଦ କହିଲେ ମଧୁର ବାଣୀ ।
ଆହୋ ହରି କିମ୍ପା ବିକଳ ହୋଉ ତୁ ଆମ୍ଭେ ଅଛୁ ତାହା ଜାଣି ।
ଯଦୁବଂଶ କୁଳ ସମୂଳେ ବିନାଶ କରିବୁଟି ତୁହି ଏବେ ।
ତୋ ବଂଶ ଉଦ୍ଧବ ଅକ୍ରୁର ଯାଦବ ଯୋଗ ସାଧନକୁ ଯିବେ ।
ତୋହ ସଖା ଦାମ ସୁଦାମ ସୁବାହୁ ସୁବଳ ଶ୍ରୀବଛ ଥିବେ ।
ଅବତାର ଶ୍ରେଣୀ ଅନୁସରିଣ ଯେ ସେହୁ ପୁଣ ଜନମିବେ ।
ଅଚ୍ୟୁତ ଅନନ୍ତ ଯଶୋବନ୍ତ ଜଗନ୍ନାଥ ବଳରାମ ପୁଣି ।
କଳିଯୁଗେ ଲୀଳା ପ୍ରକାଶ କରିବେ ତୁମ୍ଭ ଆଗ୍ୟାଂ ଶିରେ ଘେନି ।
ଯଦୁବଂଶ ନାଶକରି ହୃଷିକେଶ ତୁହି ପୁଣ ଯିବୁ କାଳେ ।
ବଉଧ ରୂପେଣ ମଉଦଧି କୂଳେ ଭୋଗ ବିଳସିବୁ ବେଳେ ।
ତୋହୋବଂଶ ଜଳନିଧି ପୁରେ ଯୋଗ ସାଧିବେ ହୋ ହୃଷିକେଶ ।
ଏହି ଜଳନିଧି ମଣାଇ ଥାପିବେ ତୋ ବଂଶ ପାଇବେ ଯଶ ।
ମଣିମୟପୁରେ ଅଛୁଂ ଆମ୍ଭେ ରହି ଯାଚି ବାଞ୍ଛା ବର ଦେବୁଂ ।

ଶ୍ରୀହରି ଆମ୍ଭରି ପ୍ରିୟ ଯଉଂ ପ୍ରାଣୀ ସେ ଭଣ୍ଡାର ସମର୍ପିବୁ ।
ଆଗେ ତୁମ୍ଭେ ଦାରୁବ୍ରହ୍ମ ରୂପେ ପୂଜା ପାଇବଟି ହୃଷିକେଶ ।
ତୋହୋ ବଂଶ ଥୋକେ ତୋ ସେବା ଘଟିବେ ଆନନ୍ଦେ ହୋଇହରଷ ।
କେ ଦେବ ଯୋଗାଇ କେ ଦେବ ଭୁଞ୍ଜାଇ କେବା ଥିବ ଅନୁଗ୍ୟାଂନେ ।
ଦିବ୍ୟ ଅଲଂକାର କଣ୍ଠେ ଭୂଷଣ କେ କରିଦେବ ଆଣି ଯତ୍ନେ ।
କେବା ଚନ୍ଦ୍ରସମ ଶ୍ରୀଅଙ୍ଗେ ଲେପନ ବନମାଳା ଦେବ କେହି ।
କେ ଅବା ଶ୍ରୀଅଙ୍ଗେ ସୁବାସ ଅମ୍ବର ନାଗି କରୁଥିବେ ନେଇ ।
ତୋହର ଯେ ନୀଳାଞ୍ଚଳ ନିଜଧାମ ରହି କରିବୁ ତୁ ବାସ ।
ବାକ୍ୟ ନକହି ଥକିତେ ଚାହିଁଥିବୁ କଳଙ୍କି କରିବ ଆଶ ।
ଠାବେ ଠାବେ ଠୁଳ ରୂପ ପ୍ରକାଶିବୁ ଆନେଆନେ ପାଇ ପୂଜା ।
ଭଗତ ହସ୍ତେ ଭୁଞ୍ଜିବୁ ନିରବଧି କଳିଯୁଗକୁ ତୁ ଯା ଯା ।
କଳିଯୁଗେ ହରି କୈବଲ୍ୟ ପସରା ବସାଇବେ ତୋର ବଂଶ ।
ପତିତ ତାରିବ ଠୁଳ ରୂପେ ଥିବ ନାମ ରୂପେଣ ପ୍ରକାଶ ।
କିଛୁଦିନେ କଳିଯୁଗରେ ଯେ ତୁମ୍ଭେ ଲୀଳାକରି ଭକ୍ତ ଭାବେ ।
ତୋ ବଂଶ ତୁମ୍ଭକୁ ଅନୁସରି ଥିବେ ନିଯୋଗେ ଖଟିବେ ସର୍ବେ ।
ଅଗ୍ୟାଂନରେ କିଛୁ ଦିନ କଳିଯୁଗେ ଯିବ ସିନା ଭୋଗ ହୋଇ ।
ଉଦୟେ ତୋ ବଂଶ ପ୍ରକାଶ ହୋଇବେ ଜନ୍ମହେବେ ଯହିଁ ତହିଁ ।
ଥୋକେ ତୋହ ବଂଶ ତୋ ସେବା ଖଟିବେ ଥୋକେ ଠୁଳନାମ ଧାଇ ।
ବାରଣ ବେଳେ ଯେ ଚିହ୍ନିଣ ରଖିବୁ ସେବାଦେବୁ ତୋତେ ଯାଇ ।
ଉଦ୍ଧବ ଯେ ପ୍ରିୟଭାବରେ ତୁମ୍ଭଙ୍କୁ ଅନୁସରି ପୂଜୁଥିବ ।
ତୁମ୍ଭେ ଗୋପୀନାଥ ରୂପଧରି ଗୁପ୍ତେ ଭୋଗ ପୁଣ ବିଳସିବ ।
ଠୁଳ ରୂପ ଧରି ଠାବେଠାବେ ତୁମେ ଭଗତଭାବରେ ଭାବ ।
ଗୋପ ଯଦୁବଂଶ ଭଗତି ଭାବକୁ ଘେନି ଭୋଗ ବିଳସିବ ।
ଅକ୍ରୁରଟି ପ୍ରିୟ ଭାବଟି ତୁମ୍ଭର କରଇ ତୁମ୍ଭରେ ତୁଷ୍ଟି ।
ସେହି ଅନୁସରି ତୋ ଲୀଳାକୁ ଭାବି ପାଦପଦ୍ମେ ଦେବ ମତି ।
ବାରଣ ବେଳକୁ ଅନୁସରି ସେହି ଭଗତି ଭାବରେ ଥିବେ ।
ଅନୁବ୍ରତେ ହରି ତୋ ଲୀଳା ଭାବରେ ଯୋଗ ସାଧନା କରିବେ ।
ମଣିଭଦ୍ର ମଣିମୟପୁରେ ଯୋଗ ସାଧି ଆସିବେଟି ବେଳେ ।
ବାରଣ ବେଳକୁ ଅନୁସରି ଥିବେ ଧାଇ ତୋ ପାଦକମଳେ ।
ଉପନନ୍ଦ ଯୋଗ ସାଧନାରୁ ଆସି ଅନୁସରି ଭାବୁଥିବ ।
ସ୍ତୋକକୃଷ୍ଣ ପ୍ରେମ ଆଦି ବିଷ୍ଣୁଲୀଳା ପ୍ରଚ୍ଛିନେଣ ଯେ ଧାଇବ ।

ବିଦୁର ଯେ ସ୍ନେହ ଭାବେ ରସିଥିବ ବାରଣକୁ ଥିବ ଧାଇ ।
ଦାମ ଗୋପାଳ ତୋ ନାମେ ରସିଥିବେ ନାମତତ୍ତ୍ୱେ ଲଏ ଦେଇ ।
ସୁନନ୍ଦ ଆନନ୍ଦ ଭାବେ ତୁମ୍ଭ ସେବା ଅନୁସରି ଥିବ ପୁଣି ।
ଉଗ୍ରସେନ ରାଜ ସମ୍ପଦ ଭୋଗରେ ଅନୁସରି ଅନୁକ୍ଷଣି ।
ପେମରୂପା ପ୍ରେମଭାବରେ ଘେନିବ ପ୍ରେମେ ଅଶ୍ରୁଧାର ବହି ।
କନ୍ଦ ଗୋପାଳ ଯେ ଆନନ୍ଦ ଭାବରେ ବାରଣ ଲୀଳାକୁ ଧାଇ ।
ବିଳସିବ ନୀଳ ସୁବଳ ସୁଶୀଳ ଜଳାଦ ଯେ ଧନାଶ୍ରିୟ ।
ରାମ ଶ୍ୟାମ କାମ ପଦ୍ମନ ଉଜ୍ଜ୍ୱଳ ତୁମ୍ଭଙ୍କୁ ଯେ କରି ଲୟ ।
ବସୁନନ୍ଦ ଆତ୍ମାପ୍ରିୟ ତୁମ୍ଭର ସେ ଅନୁସରି ସ୍ନେହେ ଥିବ ।
ତୁମ୍ଭ ନାମଧରି ଠାବେ ଠାବେ ଠୁଳ ପୂଜି ତୁମ୍ଭକୁ ଭେଟିବ ।
ସାତ୍ୱକୀ ଯେ ସତ୍ୟକରି ଅବିରତେ ଧାଇବ ପାଦ ପଦ୍ମକୁ ।
ଅତୁଟ ଲକ୍ଷ୍ମୀ ତୁମ୍ଭଙ୍କୁ ଯାଚିଦେବେ ତୁମ୍ଭରି ଉପଗାରକୁ ।
ସଦାଚାରେ ସଦାବର୍ତ୍ତୀଟି ଆନନ୍ଦେ ଚାଲିବ ହେ ମହାବାହୁ ।
ଦିବ୍ୟ ପୂର୍ଣ୍ଣଚାନ୍ଦ ପ୍ରାଙ୍ଗଣେ ଦେଉଳ ନିର୍ବାଣିଟି ଥିବ ସେହୁ ।
ତହିଂ ଗୋପୀନାଥ ରୂପଧରି ତୁମ୍ଭେ ଭୋଗ ବିଳସିବ ବେଳେ ।
ଗୋପ ଯଦୁବଂଶ ମୁନି ଅଂଶାଅଂଶ ଗନ୍ଧର୍ବ ଥିବେ ସେ ମେଳେ ।
ଆହୋ ହରି ତୁମ୍ଭ ବଂଶ ଅନୁସରି ତୁମ୍ଭ ସେବା ଥିବେ କରି ।
ଠାବେ ଠାବେ ଠୁଳ ହୋଇଣ ଯେ ମେଳ ଭଜୁଥିବେ ରାମହରି ।
ମୁହିଂ ପୁଣି ଯିବି ଅନୁସରି ଥିବି ଦେଖିବିଟି ରାଜବିଧି ।
ସିଦ୍ଧିସେବା ତୁମ୍ଭ ବଂଶ ଯୋଗାଇବେ ଏକେ ଏକେ ଘେନି ଆଧି ।
ରାଜବିଧି ସିଧି କଳଙ୍କି ବେଳରେ ଦାରୁଲାଗି ଦୁଷ୍ଟ ଛଳେ ।
ସପତ କଟକ ଦିଶିବ ଛଟକ ଆଣ୍ଡେ ବସିବ ସେ କାଳେ ।
ତୁମ୍ଭେ ତହିଂ ରାଜସୁଖ ବିଳସିବ ଘେନିଣ ତୁମ୍ଭର ବଂଶ ।
କାବ୍ୟ ଶାସ୍ତ୍ର ତୁମ୍ଭେ ପୁରାଣ ଶୁଣିବ ଘେନି ତୁମ୍ଭ ଅଂଶାଅଂଶ ।
ରାଜବିଧି ସିଦ୍ଧି ଯେ ଯାହା ନିଯୋଗ ସେବା ଥିବେ ଅନୁସରି ।
ଅଷ୍ଟ ପାଟବଂଶୀ ତୁମ୍ଭ ପ୍ରିୟଆତ୍ମା ଆଗ୍ୟାଃ ଥିବେ ଲୟେ କରି ।
ଆହେ ହରି କିମ୍ପା ବିକଳ ହୋଉଛ ପାଇବଟି ରାଜଭୋଗ ।
ତୁମ୍ଭ ବଂଶ ଘେନି ନୀଳାରସେ ରଙ୍ଗ କରୁଥାଅ ଯୁଗ ଯୁଗ ।
ବେଳେବେଳେ ଭୋଗକରୁ ଦୟାନିଧି ଲୀଳା ଯୁଗେ ଯୁଗେ କରି ।
ତୁମ୍ଭ ବଂଶ ଘେନି ତୁମ୍ଭେ ଲୀଳାକର ଆମ୍ଭେ ଥାଉ ଅନୁସରି ।

ତୁମ୍ଭର ଭିଆଣ ତୁମ୍ଭେ କି ନଜାଣ ତୁମ୍ଭକୁ କି ଅଗୋଚର ।
ତୁମ୍ଭେ ନାଶକର ତୁମ୍ଭେ ପ୍ରତିପାଳ ତୁମ୍ଭରି ନାମଟି ସାର ।
ମାୟା କଥାକୁ ଯେ କିମ୍ପାଇଂ ରୋଦନ କର ତୁମ୍ଭେ ଦୟାନିଧି ।
ଯାଅ ଯାଅ ଯେବେ କଳିଯୁଗକୁ ଯେ ତୋର ନାମକରି ସିଧି ।
ଆହେ ଜଳନିଧି ଆକଟେ ମଣାଇ କରୁଥିବୁ ତୋର ଲୀଳା ।
ତୁମ୍ଭ ନାମଧରି ଅହନିଶି ତୁମ୍ଭ ନାମ କରିଥିବୁଂ ଭେଳା ।
ଆଗ୍ୟାଂ ପ୍ରତିପାଳି ଥିବେ ତୁମ୍ଭ ବଂଶ ଶ୍ରୀପ୍ରସାଦ ଲୋଭପାଇଂ ।
ତୁମ୍ଭ ନାମକୁ ଯେ ଅନୁସରି ଥିବେ ନିଯୋଗ ଖଟିବେ ସେହି ।
ଯେତେ କହି ହର ହେଲେ ତରତର ସଂହାରଣକୁ ସେ ରାହୁ ।
ବୀଜକୂଟ ମାୟା ସଂହାରଣ ତେଜ ପ୍ରକାଶିଲେ କହୁ କହୁ ।
ହରି ତରତର ହୋଇ ନିଜପୁର ହରଷରେ ଚଳିଗଲେ ।
ହରି ଜଳନିଧି ପ୍ରମୋଦିଣ ସିଦ୍ଧି ଯୋଗ ସାଧନ କହିଲେ ।
ଶୁଣ ଜଳନିଧି ତୁ ଯେ ଉପଗାରି ରଖିବୁ ମୋହରି ବଂଶ ।
ଆକଟ ମଣାଇଥିବୁ ଜଳନିଧି ମୋ ଲୀଳା ନୋହଇ ନାଶ ।
ମଣିମୟପୁର ଶ୍ରୀହରି ମନ୍ଦିର ନିର୍ବାଣିଛି ପୁଣି କେତେ ।
ଶମ୍ଭୁଲିଙ୍ଗ ଜାଣି ତୁ ଦୟା କରିବୁ ପ୍ରତି ପ୍ରତିବିଧି ଯେତେ ।
ଯାଅ ଜଳାଧିପ ତୋହୋର ଯେ ପୁର ନିର୍ବାଣ ସେ ପୁର ଯାଇଂ ।
କାଲି କାଳଚକ୍ର ବିନାଶ କରିବ ରହି ନ ପାରଇ ମୁହିଂ ।
କହୁଂ କହୁଂ ଖଗବର ପକ୍ଷୀ ତାର ବିସ୍ତାରି ଶୂନ୍ୟେ ଉଡ଼ିଲେ ।
ନିଜପୁରେ ଆସି ଶ୍ରୀହରି ପ୍ରବେଶି ଶୋକ ଜଳରେ ବୁଡ଼ିଲେ ।
ପାମର ଅଚ୍ୟୁତ ଅରକ୍ଷ ଗୁଆଂର କରି ନାହିଂ ଗୁରୁସେବା ।
ଶ୍ରୀହରିର ବଂଶ ଲଳିତା ରଙ୍ଗଣୀ କେତେ କହିବି ମୁଂ ଅବା ।
ସମୋଦ୍ର ଜଳକୁ ଖୁରି ଘେନି ବୋହି ଶୁଖାଇକି ବାରାନିଧି ।
ଠିକକରି କିଛି ବିଚାରି କହିଲି ଆଗ୍ୟାଂଦେଲେ ଦୟାନିଧି ।
ଯାହା ବୋଲଇ ସେ ମୁଂ ତାହା ଲିହଇ ସେ ଜାଣେ ତା ଲୀଳାରସ ।
ଦୀନ ଅଚ୍ୟୁତ ସେ ପାଦପଦ୍ମେ ଆଶ ଜନ୍ମେଜନ୍ମେ ମୋର ଆଶ ।

ଇତିଶ୍ରୀ ଶୂନ୍ୟ ସଂହିତାୟାଂ ଗୁରୁଶିଷ୍ୟ ବୋଧନେ ଜଳନିଧିପୁର
ହରିହର କଥୋପକଥନେ ନାମ ସପ୍ତବିଂଶ ଅଧ୍ୟାୟଃ ।

# ଅଷ୍ଟବିଂଶ ଅଧ୍ୟାୟ

ଶୁଣ ରାମଦାସ ଅତିହିଂ ରହସ ତୋ ଆଗେ କହିଲି ମୁହିଂ ।
ମୋହ ଆତ୍ମା ଯେଣୁ ଅଟୁ ତୁ କୁମର ସଂଶୟ ଫେଡ଼ିଲି କହି ।
ତୋର ଆତ୍ମା ମୋର ମୋର ଆତ୍ମା ତୋର ତୁହି ମୁହିଂ ନୋହି ଭିନ୍ନ ।
ଶ୍ରୀହରି କରୁଣା ଅଛି ଯେଣୁ ମୋତେ କହେ ସତ୍ୟ କଥାମାନ ।
ଶ୍ରୀହରି ଚରିତ୍ର ଶୁଣିଲେ ପବିତ୍ର ପତିତ ପଢ଼ି ଲିହଇ ।
ଅନ୍ତକାଳେ ଜନ୍ତୁପତି ଭୟ ପାୟେ ତାର ଦଣ୍ଡ ନଲଗାଇ ।
ଶୁଣି ଶୁଣାଇ ଯଉଂଜନ ନିଷ୍ଠଲେ ସୁଧା ଶ୍ରୀକୃଷ୍ଣ କଥାକୁ ।
ବିଷ୍ଣୁଦ୍ୱାରେ ଅଧିପତି ମିଳେ ତାକୁ ପବିତ୍ର ବୋଲିବା ତାକୁ ।
ଯଥାକାଳେ ହରି ଭବଜଳୁ ପାରି କରି ନ୍ୟନ୍ତି ରାମ ଜାଣ ।
ନିଜ ଗୁଣ ତାଙ୍କୁ ପତିତ ତାରିବା ଆଶ୍ରେକଲା ଲୋକ ପୁଣ ।
ଯେଣୁ ତୁ ଆଶ୍ରିତ ମହିମାରେ ଚିତ୍ତ ନିରବଧି ଦେଇଥାଉ ।
ଶ୍ରୀହରିର ବଂଶ ଲୀଳା ତରଙ୍ଗିଣୀ ଶୁଣି ଚିତ୍ତ ପୁଲକାଉ ।
ବାରଣ ବେଳେ ପଥବଣା ନୋହିବୁ ହୋଇବଟି ତାରତମ
ଶ୍ରୀହରି କରୁଣା ତୋଠାରେ କରିବେ ନୋହିବ ତୋ ଚିତ୍ତଭ୍ରମ ।
ଶୁଣ କୁମର କହିବା ଲୀଳାସାର ଚିତ୍ତଥାଅ ଯେଥିଦେଇ ।
ଦାମ୍ଭିକ କୁଟିଳ ଦୁଷ୍ଟ ଯେବା ନର ନଷ୍ଟ ଜନକୁ ନକହି ।
ଆମ୍ଭ ପାଦେ ହସ୍ତ ଦେଇଥାଅ ସତ୍ୟ ଦୁଷ୍ଟକୁ ନକହ ଯେହ୍ନା ।
ପଣ୍ଡିତ ବାଦୀ ଶୁଣିବା ଅସମ୍ଭବ ନୋହେ ଯେ ଭକ୍ତି ସୋରେହ୍ନା ।
କହେ ଯେ ଯେହାକୁ ଦୁଷ୍ଟବୋଲି ତାକୁ ଶ୍ରୀହରି କରୁଣା ନୋହେ ।
ଅନ୍ତକାଳେ ଜନ୍ତୁପତି ତାରତମ ନୀଚକୁଳେ ଜନ୍ମ ଦିୟେ ।
ବ୍ୟାଧ ଜଳ ବାଧ ଯେବା ଅପରାଧ ପରହିଂସା ଅଁକୁଳହିଂ ।
ଶୁଣ ତୁ କୁମର ଯେଣୁ ଆତ୍ମା ମୋର କହିଲି ମୁଂ ତୋତେ ଇଛି ।
ଶୁଣ ତୁ କୁମର ତୁହି ଆତ୍ମାମୋର କହିଲି ତୋତେ ବୁଝାଇ ।
ଭୟ ଥିଲେ ସିନା ବିଷ୍ଣୁରେ ଭଗତି ଦିନୁଂଦିନ ବଢ଼ଇଟି ।
ବାରଣ ବେଳେ ତାରତମ ଦେଖିବୁ ଶ୍ରୀହରି ଜନଙ୍କ ସେବା ।

ଉତ୍ତମ କନେଷ୍ଟ କେହୁଅବା ନଷ୍ଟ ପ୍ରଭୁ ବାଛିଦେବେ ସେବା ।
କେ କଲା ଅନୀତି ଧାରା ଯେବା ନୀତି ପୂଜଇ ଶ୍ରୀହରି ଜନ ।
ସୋଏଂ ବ୍ରହ୍ମରାଶି ତାରତମ ଦେବେ ଦେଖିବୁ ଦିବ୍ୟ ଲୋଚନ ।
ଶୁଣି କୁମର ଚରଣେ ପଡ଼ି ପୁଣ ପୁଣି ବିନୋଇ କହଇ ।
ସାତୁକୀ ସୁତ ଶ୍ରୀହରି ନିଜ ବଂଶ କିସେବା ପାଇଲେ ସେହି ।
ଜଳନିଧି ପୁରେ ନିଯୋଗ ସାଧିଲେ ଶୁଣିଥିବି ନିରାଧାର ।
ହେତୁ ଚିତ୍ତ ବୁଦ୍ଧି ଥୟେ କରିଥିବି ଭୟେ ନଥିବ ମୋହର ।
ଶ୍ରୀହରିର ଲୀଳା ଶ୍ରବଣେ ଶୁଣିବି ଥିବ ହେତୁମତି ମୋର ।
ଶ୍ରୀହରି ଛାମୁରେ ସଙ୍ଖୋଳା ପାଇବି ଆଜ୍ଞାଂ ଧରିଥିବି ଶିର ।
ରାମର ବିନତି ଶୁଣିଣ ଅଚ୍ୟୁତ ବୋଇଲେ ଧନ୍ୟରେ ବାବୁ ।
ଭଲା ସନ୍ଧିକଥା ବିଚାରି ପଚାରୁ ଶୁଣିଲେ ନିସ୍ତାର ହେବୁ ।
ଥିଏ ହେଲେ ସିନା ସୁମନ ସୂତ୍ରରେ ବାଛିବା ଶ୍ରୀହରି ସେବା ।
ଆକାଶରୁ ଚାନ୍ଦ ହସ୍ତେ ଧରି ଲୋଡ଼େ ଶ୍ରୀହରି ଆଦେଶ ଦେବା ।
ଅଗ୍ନି ପବନ ଶୂନ୍ୟହସ୍ତେ ଧରଇ ସମୋଦ୍ରେ ବାହଇ ମୁହିଂ ।
ଅଗାଧ ପୟୋଧି ଶ୍ରୀହରି ଲୀଳାକୁ କେ ଅବା ପାରିବ କହି ।
ସହସ୍ର ମୁଖରେ ବେଦବର କହି ନପାଇଲା ଅନ୍ତ ଯାର ।
ଚର୍ତୁମୁଖ ବ୍ରହ୍ମା ଲଜ୍ଜା ପାଇଲାଟି କିଛି ନୋହିଲା ଗୋଚର ।
ମୁହିଂ ସେ ଅରକ୍ଷ କାହିଂ ହେବି ଲକ୍ଷ ହରିଲୀଳା କହିବାକୁ ।
ତିନିସସ୍ତ୍ର ନିଜ ବଂଶ ପ୍ରଭୁଙ୍କର ଥିବେ ବାରଣ ବେଳକୁ ।
ତୋ ଆଗେ ଆଗତ କହଇ ଗୁପତ ଶୁଣିବେ ଶ୍ରୀହରି ଜନ ।
ହେତୁ ଚିତ୍ତମତି ଭୟଧରି ସେବା କରିବେଟି ପ୍ରତିଦିନ ।
ତୋ ଆଗେ କହଇ ବରଜନନ୍ଦନ ଗୋପ୍ୟାନ କରିବୁ ଯେହା ।
କଳି ଶେଷେକାଳେ ମୋ ଭକ୍ତ ଉଦୟେ ନାମ ଆଶ୍ରେ ହେବେ ଶ୍ରୋହା ।
ପୂଜି ଭଜି ହରି ନାମ ଆଶ୍ରେକରି ରାଜସୁଖ ବିଳସିବେ ।
ଭଣ୍ଡାରୁ ଶ୍ରୀହରି ନୀଳ ପୀତାମ୍ବର ଏହାଙ୍କ ଶିରେ ବାନ୍ଧିବେ ।
ଅନେକ ଦିନୁ ତପସ୍ୟା କରି କଷ୍ଟେ ଅନୁସରିଣ ଅଛନ୍ତି ।
କଳି ଶେଷକାଳେ ଶ୍ରୀହରିର ନୀଳା ଦେଖିବେ ବୋଲି ଭାବନ୍ତି ।
ଜାଣି ଜଳନିଧି ତପୀ ଘେନି ଚଳିଗଲା ମଣିପୁର ବେଗେ ।
ଯହିଂ ଆଦି ଶ୍ରୀୟା ବିଜେ କରିଛନ୍ତି ଅଷ୍ଟନିଧି ଘେନି ସଙ୍ଗେ ।
ଦେଖିଲା ଶ୍ରୀୟାଦେବୀଙ୍କ ଦ୍ୱାରେ ବାଟ ପଡ଼ିଛି ବଜ୍ର କିଳିଣୀ ।

ଘେନି ତପୀ ଜଳନିଧି ବାହୁଡ଼ିଲା ଦୁୟଦ୍ୱାରେ ହେଲା ପୁଣି ।
ତହିଁ ଗୋପବାଳ ଯଦୁଏ ସକଳ ମୁନିଅଂଶୀ ଛନ୍ତି ଯେତେ ।
ଗାନ୍ଧର୍ପ ତାଳ କଂସାଳ ବଜାବନ୍ତି ବିଷ୍ଣୁ ପ୍ରତିମା ଅଗ୍ରତେ ।
ସାତ ପାଞ୍ଚ ତିନି ଶୟେ ପଞ୍ଚାଶ ଯେ ମେଳି ହୋଇଛନ୍ତି ବସି ।
ୟେକର ମୁଖେ ଆରେକ ଦିୟେ ସୁଧା ପ୍ରେମେ ହୋୟେ ପୁଛାପୁଛି ।
କେ ବୋଲଇ ଆଦି ଶ୍ରୀହରି ମହିମା ବର୍ଣ୍ଣିକେ ପାରିବ ମୁଖେ ।
ୟେ ମାୟା ସଂସାର ଅତିହିଁ ଅସାର ବହୁକଷ୍ଟେ ଦେହ ରଖେ ।
ନୋହିଲା ଯେ ଆଦିମାତାଙ୍କର ଦୟା ପାଇଲୁ ବହୁତ କ୍ଳେଶ ।
କର୍ମ ଅବଳେ କଷଣ ସହୁ କେତେ ପାଇଲୁ ବହୁ ଜିଘାସ ।
କାହିଁ ବାଲପୋୟେ ତପୀବୃନ୍ଦ ବସି ଶୁଣନ୍ତି ତତ୍ତ୍ୱ ପୁରାଣ ।
ତପୀ ମହାତମା ଗୌତମ କହନ୍ତି ଶ୍ରୀହରି ମହିମା ପୁଣ ।
ଅବ୍ୟଗତ ବ୍ରହ୍ମ ଅରୂପ ରୂପକୁ ଅନେକ ମାୟା ଦିଶଇ ।
ନିତି ଉପୁତ୍ତି ପ୍ରଳୟାଦି କର୍ତ୍ତା ସଂହାରଣ ସେ କରଇ ।
ଶ୍ୱେତ ପୀତ ଶ୍ୟାମ କୁଙ୍କୁମ ଲୀଳା ସେ ରୂପ ପ୍ରକାଶନ୍ତି ମାୟା ।
ଅନେକ ମୂରତି ୟେକ ସ୍ୱରୂପ ସେ ଦିନ ଦୁଃଖୀ ଜନେ ଦୟା ।
ଭାଳି ଗଉତମ କହନ୍ତି ପୁରାଣ ସର୍ବେ ଶୁଣିଛନ୍ତି ବସି ।
ସେ ପୁରେ ଜଳନିଧି ଶୁଣିଲା ପୁରାଣ ଘେନି ଗୋପ ଯଦୁବଂଶୀ ।
ଶ୍ରୀହରି ଜନକୁ ବିନୋଇ କହିଲା ଶୁଣିଲା ତତ୍ତ୍ୱ ପୁରାଣ ।
ସତ୍ୟେ ଯାଇଂ ପ୍ରଭୁ ମହିମା କହିବି ବିଷ୍ଣୁରୂପ ଗୁଣମାନ ।
ୟେକଆତ୍ମା କରି ବିକାର ନ ଧଣି ଆତ୍ମା ପରଚେ କରିବ ।
ଅବ୍ୟଗତ ବିଷ୍ଣୁ ମହିମା ବର୍ଣ୍ଣଣ ୟେକ ଆତ୍ମା ଯେ ମଣିବ ।
ଆଚୁମ୍ବିତ ବିଷ୍ଣୁ ମହିମା କହିଣ ବୋଲନ୍ତି କହିବା କେତେ ।
ପାଞ୍ଚ ତିନି ଦୁଇ ଏକ ଠୁଳହୋଇ ଭାଳି ବସିବେ ନିରତେ ।
ବିଘ୍ନ ବେଳେବେଳେ ପାଇବ କଷଣ ଶ୍ରୀୟାଙ୍କ ନୋହିବ ଦୟା ।
ମାୟା ମୋହେ ବିଳସାଇ କ୍ରୋଧବଳେ ଦମ୍ଭେ ଧରିଥିବୁ କାୟା ।
ଶ୍ରୀହରି ବାରଣ ରାଜବିଧି ବେଳେ ପାଇବ ଯାଇଟି ଭୋଗ ।
ଯାଅ ଯାଅ ବଳା ମର୍ତ୍ତ୍ୟପୁରେ ୟେବେ ତୁମ୍ଭେ ଯାଇ କର ଭୋଗ ।
ଶମ୍ଭୁ ସଦାଶିବ ସଂହାରଣ କାଳାନଳ ଅଗ୍ନି ମୋର ଭୟେ ।
ଜାଣିଲେ ସେ ଶିବ କ୍ରୋଧ ହୋଇବେଟି ନଷ୍ଟହେବେ ତପୀରାଏ ।
ଯାଅ ହୋ ମଥୁରା ଯାଦବ ଉର୍ମିଳାସୁତ ଭାସ୍କର ତୁ ବେଗେ ।

ଯହିଂ ତହିଂ ଜନମିଣ କିଛିଦିନ ଅନୁସରି ପଦ୍ମପାଦେ ।
ଶ୍ରୀହରି ମହିମା ଶ୍ରବଣ କରିଣ ଅଶ୍ରୁ ପୁଲକିତ ହୋଇ ।
ଶ୍ରୀହରି ଜନଙ୍କୁ ଅନୁସରି ତତ୍ତ୍ୱ ମହିମାକୁ ଥିବୁ ଧ୍ୟାଇ ।
ଯେମନ୍ତେଣ ତହିଂ କିଛୁଦିନ ଅନ୍ତେ ପାଇବୁ ତୁ ଦିବ୍ୟ ହେତୁ ।
ଶ୍ରୀହରି ବାରଣ ଲୀଳା ଅନୁସରି ଦ୍ୱିଜକୁଳେ ଜନ୍ମିବୁ ତୁ ।
ବାରଣ ନିକଟେ ଉଦୟେ ଭଗତ ଥିବେ ବାରଣକୁ ଧ୍ୟାଇ ।
ତୁହି ଜନମିବୁ ଦ୍ୱିଜ କୁଳରେ ଯେ ଆଦିଗଙ୍ଗା କୂଳେ ଯାଇ ।
ସିଦ୍ଧ ଭଗବତୀ ଆଦି ଅପର୍ଣ୍ଣାକୁ ସେବିବୁ ତତ୍ତ୍ୱ ମନରେ ।
ଜାଣି ଆଦିମାତା ନାଶି ବିଘ୍ନ ଦୟା ରଖିବେ ବାରଣ ଠାରେ ।
ଶୁଣି ତତପରେ ସିଦ୍ଧ ଶୂନ୍ୟପୁରେ ଶୂନ୍ୟେ ଶୂନ୍ୟେ ଗଲା ମିଶି ।
ଅଗ୍ୟାଂନ ଅଚ୍ୟୁତ ଅନୁସରି ଅଛି ନିଜ କଳାକୁ ଯେ ରସି ।

ଇତିଶ୍ରୀ ଶୂନ୍ୟ ସଂହିତାୟାଂ ଗୁରୁଶିଷ୍ୟ ବୋଧନେ
ଜଳନିଧି ପୁରେ ଯୋଗ ସାଧନ ବିଧି ତତ୍ତ୍ୱ
କଥୋପକଥନ ନାମ ଅଷ୍ଟବିଂଶ ଅଧ୍ୟାୟଃ ।

## ଊନତ୍ରିଂଶ ଅଧ୍ୟାୟ

ରାମଚନ୍ଦ୍ର ଦାସ ବିନୟ ହୋଇଣ ଶ୍ରୀଗୁରୁ ଚରଣେ ପଡ଼ି ।
ଆଗ୍ୟାଂ ହୋଇବ ଯେ ମୋତେ ଗୁରୁବ୍ରହ୍ମ ଯନ୍ତ୍ର ମନ୍ତ୍ର ତନ୍ତ୍ର ଧାଡ଼ି ।
ଯେହି ଜୀବଆତ୍ମା ତତ୍ତ୍ୱ ବୁଝାଇବା ତେବେ ଭ୍ରମ ଯିବ ମୋର ।
ଯେ ଛାର ପାମର ଅଧମ ଗୁଆଂର ତରିବ ତିମିର ଘୋର ।
ତୁମ୍ଭେ କୃପାନିଧି ଅଗାଧ ପୟୋଧି କରୁଣା କରିବ ବାରେ ।
କପଟ ଦାମ୍ଭିକ ହିଂସା ତମ ଭ୍ରମ ବାଧା ନଲାଗିବ ମୋରେ ।
ଏମନ୍ତ ଜଣାଇ ଶ୍ରୀଗୁରୁ ଚରଣେ ଓଳେଗ ମେଲାଇ ରହେ ।
ଶିଷ୍ୟର ଭଗତି ଦେଖି ଗୁରୁ ଚିତ୍ତି ଅମୃତ ପୟୋଧି ବହେ ।
ଶୁଣ ରାମଦାସ ଯନ୍ତ୍ର ଉପଦେଶ ଯାହା ପଚାରିଲୁ ବାବୁ ।
ଜୀବ ଆତ୍ମାଗତି ମନ୍ତ୍ର ଯନ୍ତ୍ର ରୀତି ତୋ ଆଗେ କହିବା ସବୁ ।
ଯାହା ତୁ ଶୁଣିଲେ ଆନ ନଶୁଣିବୁ ଆନ ନ ଦେଖିବୁ ଡୋଳେ ।
ଆପେ ଅନାଦି ଆଦି ଅନ୍ତ ବୋଲିଣ ପ୍ରତକ୍ଷ୍ୟ ପାଇବୁ ହେଲେ ।

ଯନ୍ତ୍ରକୁ ଭେଦିଲେ ଧନ୍ଦା ତୋ ଫିଟିବ ଅନ୍ଧକାର ହେବ ନାଶ ।
ଜୀବର ଯେ ଗତି ନାମ ବ୍ରହ୍ମତତ୍ତ୍ୱ ପାଇବୁ ତୁ ରାମଦାସ ।
ଯନ୍ତର ବିଧାନ ବରଜନନ୍ଦନ ଶୁଣ ସାବଧାନ ହୋଇ ।
ଫୁଲ ଚନ୍ଦ୍ର ଧୂପ ଦୀପ ନଇବିଦ୍ୟ ବସ୍ତ୍ର ପଞ୍ଚାମୃତ ଦେଇ ।
ନବତନ ବସ୍ତ୍ର ଗୁରୁଶିଷ୍ୟ ବେନି ପୂଜା ପତ୍ରିକା ସ୍ଥାପିବ ।
ଗୁରୁଶିଷ୍ୟ ବେନି ପୂର୍ବମୁଖ ହୋଇ ନାମବ୍ରହ୍ମକୁ ଜପିବ ।
ଯନ୍ତ କାଟି ଗୁରୁ ମନ୍ତ୍ର ବସାଇବେ ତନ୍ତ୍ରେ ଦେଖି ଭ୍ରମ ନାଶ ।
କଳିକାଳ ନାଶି ତତ୍ତ୍ୱ ସତ୍ୟଗୁଣେ ଲୀନହେବୁ ରାମ ଦାସ ।
ଶ୍ରୀଗୁରୁ ଆଜ୍ଞାଂରେ ବରଜନନ୍ଦନ ସଞ୍ଚା ସମ୍ପାଦିଲା ଯେଣୁ ।
ପାମର ଅଚ୍ୟୁତ ଶ୍ରୀକୃଷ୍ଣର ଭୃତ୍ୟ ସ୍ଥାପି କହେ ଯନ୍ତ ତେଣୁ ।
କଉଂ ଭାଗ୍ୟ ଆଜ ହେଲା ବାଳଶିଷ ଦେଖିବୁ ନୟନ ଘେନି ।
ତୋ ହେତୁ ମୋ ହେତୁ ତାରି ତରିଯିବୁ ଭବୁ ତରିଯିବା ବେନି ।
ସବୁ ଶାସ୍ତ୍ରଙ୍କର ମୂଳ ଅଟେ ନାମ ନାମର ତତ୍ତ୍ୱ ଅନାମ ।
ସବୁ ଯନ୍ତ୍ରଙ୍କର ପରେ ସାରସ୍ୱତ ଅକାର ଯନ୍ତ୍ରଟି ରାମ ।
ଆକାର ବ୍ରହ୍ମ ଯନ୍ତ୍ରକୁ ଥାପିଣ କହିବା ତୋ ଆଗେ ବାବୁ ।
ଅନାଦି ଶବଦ ବ୍ରହ୍ମ ସନାତନ ସପ୍ରତେ ପାଇବୁ ସବୁ ।
ଶ୍ରୀଗୁରୁ ସ୍ମରି ଖଡ଼ିକରେ ଧରି ଭୂମିରେ କାଟନ୍ତି ଗାର ।
ବ୍ରହ୍ମାଣ୍ଡ ପାତନା ଶ୍ୱରୀର ଥାପନା ସବୁ ଆକାର ମଧର ।
ତଳେ କରିଥାଅ ବରଜକୁମର ତାଳୁ ପାଦ ମୂଳ ଯାଏ ।
ଯଉଂଠାରେ ଯଉଂ ଚକ୍ରଶକ୍ତି ଦେବ ପବନ ଗମି ନ ପାଏ ।
ପ୍ରଥମେ ଅକାର ବ୍ରହ୍ମ ତାଳୁକାର ଥାପିବ ସୁସଞ୍ଚ କରି ।
ପଞ୍ଚମାତ୍ରା ପଞ୍ଚବୀଜ ପଞ୍ଚଭୂତ ସକଳ ସେଠାବୁଂ ଛରି ।
ଅନାମ ଅନହତ ଅବିକାର ସେ ଅରେହ ଅରୂପାନନ୍ଦ ।
ଅଲେଖ ଅରେଖ ଅନାଦି ଅବ୍ୟକ୍ତ ଅଶ୍ରୁତି ଅମୂର୍ତ୍ତି ଛନ୍ଦ ।
ଅଶେଷ ନାମର ମୂଳ ସାରସ୍ୱତ ଅଣାକ୍ଷର ଅନହତ ।
ଅଦୃଶ୍ୟ ଅଧାତ୍ମ ଶଦ୍ଦ ଅଶବଦ ପରମାତ୍ମା ଗତି ତତ୍ତ୍ୱ ।
ସେଠାବୁଂ ସମସ୍ତେ କ୍ଷରାକ୍ଷର ହୋନ୍ତି ହେତୁ କରିବା ତୁ ରାମ ।
ତହିଂର ତଳରେ ବିଜେ କରିଛନ୍ତି ଆପଣେ ସେ ଜ୍ୟୋତିବ୍ରହ୍ମ ।
ଶବଦ ଦ୍ୱାଦଶ ବ୍ରହ୍ମରୁ ଛରିଣ ଜ୍ୟୋତିବ୍ରହ୍ମ ଉଦେ ଜାଣ ।
ଯେକାକ୍ଷର ବ୍ରହ୍ମ ଭୂଲତା ପରେଣ ବିଜେ ନାମ ପରଂବ୍ରହ୍ମ ।

ତହିଁ ତଳେ କାମବୀଜ ଯେବେ ହେଳ ଭ୍ରୂଲତା ମଧ୍ୟରେ ବାସ ।
କଉତୁକ ଲୀଳା ସଂସାରର ଖେଳା ସେଠାବରେ ରାମଦାସ ।
ବେନି ଚକ୍ଷୁ ମଧେ ପ୍ରକାଶ ହୋଇଛି ସେଠାକୁ ଶୁଭଇ ଧ୍ୱନି ।
ଜାଗି ସଦାଶିବ ଅମର ହୋଇଲେ ଭାବି ତରିଗଲେ ମୁନି ।
ନାସିକା ଶ୍ରବଣ ମୁଖକୁ ଘେନିଣ କଣ୍ଠ ଘଣ୍ଟିକା ଯେ ଆଦି ।
ଅନାଦି ପାଦୁକା ବଇଠି ପରିଯନ୍ତେ ଅଛଇ ସେ ମେରୁ ଭେଦି ।
ଯେ ମେରୁ ସ୍ତମ୍ଭରେ ଛଡ଼ଚକ୍ର ବସେ ହେତୁକର ବ୍ରଜବାଳ ।
ହ କ୍ଷ ବେନିକ୍ଷର ବିଜୟେ ହୋଇଛି ସେହି ସେ ନେତ୍ର କମଳ ।
ପ୍ରଣବ ନାସିକା ଏ ମୁଖ ଘଣ୍ଟିକା ଚାରି ବେଦକୁ ଘେନିଣ ।
ପର ରଜ ଶଶବଦ ଅଷ୍ଟାକ୍ଷର ଅଜପାକୁ ଘେନି ପୁଣ ।
ତହିଁ ତଳେ କଣ୍ଠ କମଳେ ବିଜୟେ ପାର୍ବତୀ ଘେନି ଈଶ୍ୱର ।
ଷୋଳ ପବନକୁ ଷୋଳ ଗୋଟିକ୍ଷର ଅ ଆ ଠାରୁ ଅଂ ଅ ।
ହଟକ ପୁର ସେ ହଅର ନିବାସ ତା ତଳେ ହୃଦକମଳ ।
ଦ୍ୱାଦଶ ଦଳରେ ଦ୍ୱାଦଶ ପବନ ଘେନି ବିଜେ ନନ୍ଦବାଳ ।
ଆତ୍ମା ଲିଙ୍ଗ ସ୍ଥାନ ହୃଦୟ ତା ନାମ ଲକ୍ଷ୍ମୀ ନାରାୟଣ ବାସ ।
ତା ତଳେ ବ୍ରହ୍ମାଣ୍ଡ ଆପନା କରିଣ ବିଜଏ ଦେବଲୋକେଶ ।
ଡଅ ଠାରୁ ଫଅ ଦଶ ଅକ୍ଷର ସେ ଦଶ ପବନକୁ ଘେନି ।
ବିଜୟେ ବ୍ରହ୍ମା ସେ ନାଭି ମଣ୍ଡଳରେ ସୁରା ଯେ ସାବିତ୍ରୀ ବେନି ।
କୁମ୍ଭେକ ପୁରେକ ତାହା ତଳେ ଲେଖ ଲିଙ୍ଗଚକ୍ର ଶତଦଳ ।
ଷଟ ଅକ୍ଷର ଷଟ ବାୟୁ କହୁଛି ବଅଠାରୁ ଦେଖ ରଳ ।
କାମ ଦେବ କାମାକ୍ଷୀକି ଘେନି କରି ପୁରେକ ପୁରେ ବିଜୟ ।
ତହିଁତଳେ ଗୁହ୍ୟଚକ୍ର ଚାରିଦଳ ଚାରି ପବନ ସେ ବହେ ।
ବଅ ଠାରୁ ଶଅ ବହଇ ପବନ ସ୍ଥୂଳଚକ୍ର ନାମ ତାର ।
ଗଣେଶ ବକ୍ରତୁଣ୍ଡୀଦେବୀ ଘେନିଣ ବିଜୟେ ରେଚକ ପୁର ।
ଆଧାର ଲିଙ୍ଗ ନାଭି ହୃଦୟ କଣ୍ଠ ଲଲାଟ ଛଡ଼ଚକ୍ର ଯେ ।
ଯେଥିପରେ ଦେଖ ଅଲେଖ ଭୁବନ ଅରୂପାନନ୍ଦ ବିଜୟେ ।
ନେତ୍ରରେ ଯେ ସାମ ନାସରେ ଯେ ଯଜୁ ମୁଖରେ ଋକ ବସଇ ।
ଶ୍ରବଣ ବେନିରେ ଅଥର୍ବ ବେଦ ସେ ସିଧିରସ୍ତୁ ଘେନି ରହି ।
ପର ବେନିଚକ୍ଷୁ ରଜ ବେନିନାସା ଶଶ ବେନିମୁଖେ ବସେ ।
ବଦ ବେନିକର୍ଣ୍ଣ ଚାଟରେ ବସିଣେ ଶବଦେ ଶବଦ ମିଶେ ।

ହରେ ଚାରିନାମ ମୁଖରେ ପ୍ରକାଶ ରାମନାମ ନାସିକାରେ ।
କୃଷ୍ଣ ନାମ ବେନି ନେତ୍ରରେ ପ୍ରକାଶ ଶ୍ୟାମ ଶ୍ରବଣ ମଧ୍ୟରେ ।
ମହାମନ୍ତ୍ର ଦେହ ଗୋଟିକି ପ୍ରକାଶ ହୋଇଛି ଯେ ଦେହ ଛନ୍ଦ ।
ମନ୍ତ୍ରରାଜ ଯନ୍ତ୍ର ଭେଦିଣ ରହିଛି ପଡ଼ିଛି ନିଗୂଢ଼ ବନ୍ଧ ।
ମହାମନ୍ତ୍ରଂ ମନ୍ତ୍ରଂ ଅଙ୍ଗରେଣ ଦେଖ କହିବା ତହିଁର ହେତୁ ।
ଅକ୍ଷର ମୂର୍ତ୍ତିଯେ ପ୍ରକାଶ ହୋଇଛି ଭେଦିଅଛି ସପ୍ତଧାତୁ ।
ହକାର ସର୍ବ ଶକ୍ତିକି ଧରିଣ ଯେ ଅଛଇ ପାଦ ତଳରେ ।
ରେକାର ନଖଚକ୍ର ପ୍ରକାଶିଛି ରାକାର ଗୁହ୍ୟ ଦେଶରେ ।
ମକାର ଆଣ୍ଠୁରେ କୂରୁମ ରୂପରେ ବହିଛି ମେରୁଦଣ୍ଡକୁ ।
ହକାର ଜାନୁ ସ୍ଥଳରେ ବିଜେକରି ରେକାର ଜଙ୍ଘମୂଳକୁ ।
ରାକାର ପିଚ୍ଛକ ବିଗ୍ରହ ରୂପରେ ଧରିଛି ମନ୍ଦର ଗିରି
ମକାଆ କଟିରେ ନିଶ୍ଚଳେ ବସିଣ ଅଚଳ ଗିରିକି ଧରି ।
ରାକାର ଅକ୍ଷର ପାର୍ଶ୍ୱ ଆବୋରି ମକାର ଚଳେ ପ୍ରକାଶ ।
ରାକାର କୁକ୍ଷିରେ ବସି ଯନ୍ତ୍ରଚାଳେ ଯକାର କନ୍ଧରେ ବାସ ।
ହକାର ହସ୍ତ କଉଣିରେ ବିଜଏ ରେକାର କଚଟି ବନ୍ଧ ।
ହକାର କର୍ଣ୍ଣ ସଂପୁଟରେ ବସିଣ ରେକାର ମସ୍ତକ ଛନ୍ଦ ।
ଦକ୍ଷିଣ ଭାଗରେ ସଧୀରେ ବସିଣ ଷୋଳକ୍ଷର ଧାତୁ ଭେଦି ।
ଏହିରୂପେ ବାମଭାଗରେ ବିଜୟେ ଶ୍ରୀମହାମନ୍ତ୍ର କୃଷ୍ଣାଦି ।
ଶ୍ରୀ ମନ୍ତ୍ରରାଜ ଶିରେ କାମବୀଜ ହଂ ବୀଜ ନେତ୍ରେ ବସେ ।
ରମାବୀଜ ମୁଖମଣ୍ଡଳ ଆବୋରି ଆବୋରି ଗୋପୀ ବେନି ଶ୍ରୁତିରେ ସେ ।
ଜନ ବେନି ଭୁଜେ ପଡ଼ି ଛନ୍ଦେ ଛନ୍ଦେ ବଲ୍ଲଭାୟ ବେନି କଟି ।
ସ୍ୱାହା ବେନି ଶିରେ କେଶ ଆଦି ଚୂଡ଼ା ପ୍ରକାଶ ମସ୍ତକ ଗୋଟି ।
ଓଂକାର ମୂର୍ଦ୍ଧ୍ନି ମୁଣ୍ଡଳେ ବିଜଏ କାମବୀଜ ଲିଙ୍ଗେ ରହି ।
ପରାବୀଜ କଟି ବଇଠି ଆବୋରି ରମା ବେନି ପାଦ କହି ।
ମହାମନ୍ତ୍ର ମନ୍ତ୍ରରାଜ ଯନ୍ତ୍ର ହେଜ ତନ୍ତ୍ରରେ ତୁଲ ହୋଇଛି ।
ପଞ୍ଚଭୂତ ପଞ୍ଚବୀଜ ପଞ୍ଚଆତ୍ମା ସମତୁଲରେ ଶୋଇଛି ।
ପୃଥିବୀ ଦୁଆର ଗୁହ୍ୟ ଦେଶରେ ସେ ଲିଙ୍ଗରେ ଆପ ବସଇ ।
ତେଜ ନେତ୍ରଦ୍ୱାରେ ପ୍ରକାଶ ହୋଇଣ ନାସାରେ ବାୟୁ ବହଇ ।
ଆକାଶେ ଆକଶ ଅଟଇ ନିବାସ ପଞ୍ଚବୀଜ ତଳେକର ।
ଆଧାରଚକ୍ରରେ ପରାବୀଜ ବସେ କାମବୀଜ ସ୍ୱରଘର ।

ରମାବୀଜ ନାଭି କମଳ ମଧ୍ୟରେ ହୃଦୟେ ଓଂକାର ରହି ।
ପ୍ଳୀଂ ବୀଜ ଘେନି ହୃଦେ ପ୍ରାଣ ଲିଙ୍ଗ ଉଦାନ ପବନ ବହି ।
ଧ୍ଲୀଂ ବୀଜ କଣ୍ଠଦେଶରେ ରହିଣ କ୍ଲୀଂ ବୀଜ ଲଲାଟରେ ।
କାୟା ଗୋଟିକି ସେ ଆବୋରି ରହିଛି ମାୟା ଅଙ୍ଗ ବିରାଟରେ ।
ନଖ ରୋମଚର୍ମ ରକ୍ତ ମାଂସ ମଜ୍ଜା ଅସ୍ଥି ଘେନି ସପ୍ତଧାତୁ ।
ଯେ ରୂପେ ଯେ କାୟା ପ୍ରକାଶ ହୋଇଛି କହିବା ଏହାର ହେତୁ ।
ପରାବୀଜ ଲେଖ ରୂପରେଣ ଦେଖ ରମାବୀଜ ରୋମାବଳୀ ।
କାମବୀଜ ଚର୍ମ ଢାଙ୍କିଣ ଅଛଇ ସୁଦର୍ଶନ ଚକ୍ରେ ଝଳି ।
ପକାରି ପରମ ବ୍ରହ୍ମବୀଜ ଦେଖି ମିଶି ଆବୋରିଣ ରହି ।
ପ୍ରଣବ ପଞ୍ଚଶକ୍ତି ଘେନିଣ ମଜ୍ଜା ଅସ୍ଥି ବେନି କହି ।
ଆହୁରି କଳାଏ କହିବା ତୋ ଆଗେ ତଳଏ କର କୁମର ।
ବ୍ରହ୍ମ ଗାୟତିରୀ ସୁରା ଯେ ସାବିତ୍ରୀ ପ୍ରଣବ ଦଶ ବିଚାର ।
ଚୂଡ଼ା ଚତୁର୍ଦ୍ଦଶ ଅଷ୍ଟ ଯେ ବ୍ୟାହୃତି ତ୍ରିପଦା ଚତୁର୍ବିଂଶକ ।
ଅବନା ଅଷ୍ଟ ଅକ୍ଷର ପ୍ରଣବରେ ଏମନ୍ତେ ଚତୁଃଷଷ୍ଟିକ ।
ଚଉଷଠୀକ୍ଷର ଯେହ୍ନୁ ଯେ ଗାୟତ୍ରୀ ଚଉ ପାଦେଣ ସେ ଉଭା ।
ଚଉଦ ବ୍ରହ୍ମାଣ୍ଡ ମଧ୍ୟରେ ଭେଦିଣ କେମନ୍ତେ ପାଉଛି ଶୋଭା ।
କାଠ ଖଡ଼୍ଗହସ୍ତ ଧରି ବେଦମାତା ତ୍ରିବେଣୀ ଶିଖେ ରହିଛି ।
ଦ୍ୱାଦଶ ଯୋଜନ ଜିହ୍ୱା ଆୟତନ ପୁଚ୍ଛ ବାଟରେ ଭଖୁଛି ।
ପଥକୁ ଆବୋରି ନର୍ବନ୍ଧେଣ ରହେ ନାହିଂ କେହି ଅବାଡ଼କୁ ।
କାଳଚକ୍ର ତାର ଫେରୁଥାଇ ନିତ୍ୟେ କାର ସକ୍ୟ ଫେଡ଼ିବାକୁ ।
ପରଚେ ହୋଇଲେ ଦୟା ସେ ବହନ୍ତି ବେଦମାତା ଗାୟତିରୀ ।
ଶବଦ ବ୍ରହ୍ମରେ ଯାଇଣ ସମ୍ଭାଇ ଶବଦେ ଶବଦେ ଫେରି ।
ଅନାଦି ପାଦୁକା ଧ୍ୟାନ ଲଗାଇଣ ପାବନ୍ଧ ରୂପେ ରହିଛି ।
ଚାରି ବେଦ ଚାରି ଦୁଆରେ ରହିଣ ପରମ ତୁଷ୍ଟି କରୁଛି ।
ଯନ୍ତ୍ରକୁ ତନ୍ତ୍ରରେ ଭେଦିଲେ ଯେ ହେତୁ ପାଇବୁ ସିନା କୁମର ।
ଶ୍ରୀଗୁରୁ ଚରଣେ ନିରବଧି ଯେକା ଚିତ୍ତ ସମତୁଲ କର ।
ଦାମ୍ଭିକ ହିଂସା କପଟ ଦୂରକରି ବିକାର ନ ଧର ଚିତ୍ତେ ।
ଅକାର ବ୍ରହ୍ମଯନ୍ତ୍ର ଅଣଅକ୍ଷର ଭେଦ କହିଦେଲୁ ତୋତେ ।
ରାତ୍ର ଦିବା ଦୁଇ ଯହିଂ ସମସରି ମଲା ଜୀଇଲା ଏକତ ।
ସାନ ବଡ଼ ଯଉଂ ଭୂମି ସମସରି ନାହିଂ ଯହିଂରେ ବ୍ୟକତ ।

ବେଳକାଳ ଦୁଇ ନାହିଁ ବାରିବାକୁ ସ୍ନାନ ସନ୍ଧ୍ୟା ତର୍ପଣହିଁ ।
ଜପ ତପ ସ୍ତୋତ୍ର ଧ୍ୟାନ ଧାରଣା ଯେ ଶୁଦ୍ଧ ଅଙ୍ଗନ୍ୟାସ ନାହିଁ ।
ସବୁଠାରେ ଥାଇ କାହିଁ ନମିଶଇ ଅନାଦି ଶବଦବ୍ରହ୍ମ ।
ଅଣହେତୁ ତେଜି ଅରୂପାନନ୍ଦର ପାଦେ ଚିତ୍ତକର ସମ ।
ଅବିକାରେ ପଶି ବିକାରକୁ ଧଂସି ସଛଙ୍ଗ ମୂଳ ପ୍ରଧାନ ।
ଶିବ ସନେକ ଜନେକ ଭୃଗୁ ମେଳେ ତରିଲେ ଯନ୍ତ୍ର ବିଧାନ ।
ଯନ୍ତ୍ର ମନ୍ତ୍ର ତନ୍ତ୍ର ସମତୁଲ ହେଲେ ଦେଖିବୁ ଅନାଦି ବ୍ରହ୍ମ ।
ଦ୍ରଶନେ ଦୂରିତମାନ ଦୂରଯିବ ବିନାଶ ହୋଇବ ଭ୍ରମ ।
ଗୁପତ କର ମନତପ ହର କହିଲେ ଶାପ୍ୟ ପାଇବୁ ।
ଶ୍ରୀଗୁରୁ ଚରଣେ ସମଚିତ୍ତ କଲେ ନାମାମୃତ ତୁ ଖାଇବୁ ।
ସୁବର୍ଣ୍ଣକୁ ଯେହ୍ନେ ଅନଳେ ଦହିଲେ ଶୁଦ୍ଧରୂପ ପ୍ରକାଶଇ ।
ସେ ଯନ୍ତ୍ର ବ୍ରହ୍ମ ଦ୍ରଶନରେ କଲୁଷ ଦୂରିତ ପାପ ନାଶଇ ।
ଲୀଳା ନିମନ୍ତେ ନାନାଦି ପ୍ରକାରେଣ ନାନାରୂପ ଧରି ହରି ।
ଛପନା କୋଟି ଜୀବଜନ୍ତୁ ମଧରେ ନିଷ୍ଫଳେ ଅଛନ୍ତି ପୂରି ।
ଯେକ ସଞ୍ଚା ଆଉଠାବରେ ତ ନାହିଁ ଏକ ବ୍ରହ୍ମ ଅଛି ପୂରି ।
ସଂସାର ଲୀଳା ନିମନ୍ତେ ନିର୍ବିକାର ଘଟେ ଘଟେ ବିଜେକରି ।
ଜଗନ୍ନାଥ ବଳଭଦ୍ର ସୋଭଦ୍ରା ଯେ ସୁଦର୍ଶନ ରୂପ ଚାରି ।
ଚତୁଧା ମୂରତି ଏକ ଆତ୍ମା ଭିନ୍ନାଭିନ୍ନ ରୂପ ଛନ୍ତି ଧରି ।
ସିଂହାସନ ଘେନି ପଞ୍ଚୁଆତ୍ମା ସେହୁ ଭିନ୍ନାଭିନ୍ନ ପଞ୍ଚନାମ ।
ପଞ୍ଚଆତ୍ମା ପଞ୍ଚଭୂତରେ ପ୍ରକାଶ ନୀଳାଞ୍ଚଳେ ଦାରୁ ବ୍ରହ୍ମ ।
ମଛ କଛପ ବରାହ ନରସିଂଘ ବାମନ ପରଶୁରାମ ।
ଶ୍ରୀରାମ ହଳୀ ଯେ ବୁଦ୍ଧ କଳ୍କି ନାମ ଅଟେ ଯେ ଯେ ସର୍ବସମ ।
ଅବତାର ଯେତେ ଯେହି ଜଗନ୍ନାଥ ଅଙ୍ଗରୁ କ୍ଷରି ମିଶନ୍ତି ।
ଲୀଳା ନିମନ୍ତେ ସେ ନୀଳାଦ୍ରି ନାଯେକ ନିର୍ବିକାରେ ବସିଛନ୍ତି ।
ସାକ୍ଷାତ ଅନାଦି ଅଛି ସର୍ବଭେଦି ଦାରୁରୂପରେ ପ୍ରକାଶ ।
ପଣ୍ଡା ପଡ଼ିଆରି ପଞ୍ଚୁପାଳକାଦି ଖଟନ୍ତି ନିରତେ ପାଶ ।
ଯେହି ଜଗନ୍ନାଥ ସାକ୍ଷାତେ ଅନାଦି ଅବ୍ୟକ୍ତ କରୁଣାରାଶି ।
ଛପନ ପ୍ରକାରେ ଶ୍ରୀମହାପ୍ରସାଦ ଆସ୍ୱାଦନ ଦ୍ୟନ୍ତି ବସି ।
ପତିତପାବନ ପତାକା ଉଡ଼ାଇ ଚକ୍ରପରେ ନିରନ୍ତରେ ।
ଅଣାକାର ବ୍ରହ୍ମ ଆକାରେ ମିଶିଣ ଚାଳଇ ଯେକ ଯନ୍ତରେ ।

ଯେକାରେ ଯେକ ତୁଲରେ ଚାଲୁଛି ନଯାଇ ସ୍ଥାନରେ ଅନ୍ତ ।
ସେଠାବେ ଅନାମ ଏଠାବେଟି ନାମ ବିଜଏ ପ୍ରଭୁ ଅନନ୍ତ ।
ସେଠାବେ ନିଶବ୍ଦ ଏଠାବେ ଯେ ଶବ୍ଦ ନାମ ରୂପରେ ପ୍ରକାଶ ।
ଜଗ ଜନ୍ତ ଚାଳ ଶିରୀ ଜଗନ୍ନାଥ ବିଜୟେ ଶ୍ରୀନନ୍ଦିଘୋଷ ।
ଯନ୍ତ୍ର ମନ୍ତ୍ର ତନ୍ତ୍ର ତ୍ରିବିଧ ରୂପରେ ନୀଳାଞ୍ଚଳରେ ପ୍ରକାଶ ।
ସେହି ଯେହି ସେହି କେଭେଂ ଭିନ୍ନ ନୋହେ ହେତୁକର ରାମଦାସ ।
ସର୍ବ ଜନ୍ମେ ତୋର ବାସନା ଥିବାରୁ ବାସିଲା ହେତୁରେ ମନ ।
ଅଣହେତୁ ତେଜି ଅଣାକ୍ଷର ଭଜି ଦେଖ ଅନାମୟ ବ୍ରହ୍ମ ।
ତୋ ଚିତ୍ତ ରସିଲା ବାସନା ଫୁଟିଲା ତରି ତାରିଲୁ ତୁ ଯେଣୁ ।
ଶ୍ରୀଗୁରୁ ଭଣ୍ଡାର ନାମ ଯନ୍ତ୍ର ମନ୍ତ୍ର ତତ୍ତ୍ୱ ତୁ ପାଇଲୁ ଯେଣୁ ।
କୋଟି ଦଣ୍ଡବତ କରି ବ୍ରଜସୁତ ଶ୍ରୀଗୁରୁ ଚରଣେ ପଡ଼ି ।
ଜୟ ତୁ ଜୟ ଶ୍ରୀଗୁରୁ ପ୍ରମବ୍ରହ୍ମ ବୋଲେ ବେନି କରଯୋଡ଼ି ।
ଶିଷ୍ୟର ଭଗତି ଦେଖି ଗୁରୁବ୍ରହ୍ମ ତନ୍ତ ବିସର୍ଜନ କଲେ ।
ପୂଜା ଧୂପ ଦୀପ ନଇବିଦ୍ୟ ଦେଇ ନିଜ ମନ୍ଦିରକୁ ଗଲେ ।
ପାମର ଅଚ୍ୟୁତ ପାଦପଦ୍ମେ ଚିତ୍ତ ପଦ୍ମବନରେ ନିବାସ ।
ଯନ୍ତ୍ର ମନ୍ତ୍ର ତନ୍ତ୍ର ହୋଇଲା ସମ୍ପୂର୍ଣ୍ଣ କହଇ ଅଚ୍ୟୁତ ଦାସ ।

ଇତିଶ୍ରୀ ଶୂନ୍ୟ ସଂହିତାୟାଂ ଶ୍ରୀଗୁରୁ ଶିଷ୍ୟ ବୋଧନେ
ଅଣାକ୍ଷର ଯନ୍ତ୍ର ମନ୍ତ୍ର ତନ୍ତ୍ର ପ୍ରଭେଦ କଥନେ ନାମ ଊନତ୍ରିଂଶ
ଅଧ୍ୟାୟଃ ଶୂନ୍ୟ ସଂହିତା ସଦାଇଯେ ସମ୍ପୂର୍ଣ୍ଣ ।



# ଗୋବିନ୍ଦ ଚନ୍ଦ୍ର

ବନ୍ଦଇଂ ଯେ ଲମ୍ୱୋଦର ଗଉରୀ ନନ୍ଦନ
ମନୁଷ୍ୟ ଶରୀର ଯାର ଗଜେନ୍ଦ୍ର ବଦନ ।
ଭଗ୍ନଦନ୍ତ ପରଶୁ ଅମୃତ ଲଡୁ କର
ଯୋଗେଶ୍ୱର ପୁରୁଷ ଦକ୍ଷିଣ ଦ୍ୱାରପାଳ
କପାଳେ ଶୋଭଇ ଚିତା ଶିରେ ଏକ ଜଟା
ଇନ୍ଦୁର ବାହନ ନାଥ ସୁରଗଣ ଶ୍ରେଷ୍ଠା
ଚାରିଯୁଗ ଗଲେ ଯାକୁ ନିମିଷେକ ହୋଇ
ଇନ୍ଦ୍ର ଚନ୍ଦ୍ର ଦିବାକର ମାୟା ନ ଜାଣଇ
କପିଳାସବାସୀ ତୁମ୍ଭେ ପରମ ଈଶ୍ୱର
ଅବ୍ୟକତ ପୁରୁଷ କହିବ ଲମ୍ୱୋଦର ।
ତୋହର ଚରଣ ତଳେ ଲୁଳୁ ମୋର ମାଥ
ପ୍ରସନ୍ନ ଅଙ୍କାରେ ପଦ କରିବା ଭକତ
ଏଥୁ ଅନନ୍ତରେ ଯେ ପରମ ସ୍ୱର୍ଗବାସୀ
ଦୁର୍ବାସାଙ୍କ ପାଦତଳେ ମସ୍ତକ ନିବେଶି ।
ଭୋ ମୁନି ଗୋବିନ୍ଦଚନ୍ଦ୍ର ରାଜା ଯେହୁ ଥିଲେ
କାହାକୁ ସେ ସେବାକରି ଅମର ହୋଇଲେ ।
ଶୁଣିମାକୁ ଇଚ୍ଛା ମୋତେ କହିବା ବିସ୍ତାରି ।
ଯୋଗ ଗ୍ୟାଂନ ଶୁଣି ତୋଷ ହୋଇବ ଶରୀରୀ ।
ଦୁର୍ବାସା ବୋଇଲେ ବାବୁ ଶୁଣ ଶୁଦ୍ଧହିଆ
ତୁ ଯେ ପଚାରିଲୁ ସାବଧାନେ ଶୁଣ ତାହା ।
ଶୁରଚନ୍ଦ୍ର ବୋଲିକରି ବଙ୍ଗଦେଶ ରାୟ
ତାରାଚନ୍ଦ୍ର ବୋଲି ହେଲା ତାହାର ତନୟ ।
ଏହାର ନନ୍ଦନ ନାମ ବ୍ରହ୍ମଚନ୍ଦ୍ର ରାଜା

ଗୋପୀଚନ୍ଦ୍ର ନାମେ ତା'ର ହୋଇଲା ତନୁଜା ।
ମେରୁଚନ୍ଦ୍ର ବୋଲିକରି ତାହାର କୁମର
ବିଷ୍ଣୁଚନ୍ଦ୍ର ବୋଲି ନାମ ହୋଇଲା ତାହାର ।
ବିଷ୍ଣୁଚନ୍ଦ୍ରର ନନ୍ଦନ ହେଲା ରିପୁଚନ୍ଦ୍ର
ତାହାଠାରୁ ଉତପନ୍ନ ଶ୍ରୀ ଗୋବିନ୍ଦଚନ୍ଦ୍ର ।
ମହା ପରତାପୀ ରାଜା ବଳେ ବଳୀୟାର
ତିନି କ୍ରୋଶ ଆୟତନ କଟକ ତାହାର ।
ତିନିପୁର କାଙ୍ଗୁଲା ଯେ ପଥର ପାଚେରୀ
ତିନି ତାଳ ଗଭୀର ବିଳାସ ଖଣା ଝରି ।
ଜଗତୀ ଅଟାଳି ମେଢ ମଣ୍ଡପ ନବର
ଉପରେ ଶଙ୍ଖୁଆ ଢାଳ ଭିତରେ ହିଙ୍ଗୁଳ ।
ଚନ୍ଦ୍ରଶାଳା ପୁରେ ଦିବ୍ୟ ମନ୍ଦିର ଉପମା
ଅଷ୍ଟରତ୍ନ ମିଶାଇ ଗଢ଼ିଲା ବିଶ୍ୱକର୍ମା ।
କୂଅ ତଡ଼ାଗ ଅନେକ ବାମ୍ପୀ ସରୋବର
ଗଭୀର ସୁସ୍ୱାଦୁ ଜଳ ଅତି ପରିମଳ ।
ମେଢ଼ କାଠଘରମାନ ଅତି ବିତପନ
ଶୟେ ବଖରାରେ ପୋଷା ପକ୍ଷୀଗଣମାନ ।
ବସନ୍ତ କାବେରୀ ଯେ ଆବର ରାଜହଂସ
ଚକ୍ରୁଆ ଚକୋଇ ବଗ ସଂଚାଣ ସାରସ ।
କୁମ୍ଭା ଦହିୟା ଯେ ମତ୍ତ ମୟୂର ମୟୂରୀ
ଶାମଳା ପଲ କାମରି ତେଣ୍ଟୋଇ ତିତିରୀ ।
ଶୁଆ ଶାରୀ ସାତଭାଇ ଗୁଣ୍ଡରୀ କାପତୀ
ରାଙ୍ଗବଣି ରାଜହଂସ ପାରୁଆ ଭାରତୀ ।
ଚନ୍ଦ୍ରଚୂଡ଼ କୁକ୍କୁଟ ଯେ ପଙ୍କୁପତ୍ର ଖାଇ
ଲମ୍ବା ଥଣ୍ଟ କୋଦମୁଖୀ ପକ୍ଷୀଚଟା ବାଇ ।
ଗୋଖଣିଆ ପଦ୍ମକାଙ୍କ ପାଣିକୁଆ ପକ୍ଷୀ
ଗଙ୍ଗାଇ ଡୁବାଇ କାଠହଣା ପକ୍ଷୀ ଅଛି ।
ହଂସ ହଂସରାଳି କୁଜି ରାଜବଣୀ ପକ୍ଷୀ
କାପଉଡ଼ି ଶଙ୍ଖଚିଲ ହୁତଡେଣା ଟେକି ।

ଅଗ୍ନିଗିଳା ହରିଡ଼ା କଙ୍କାଳି ଯେ ଚେଣ୍ଟୁଆ
ପାଣିକୁଆ ଗୁଣ୍ଡରିଆ କୁଣ ବଣଖିଆ ।
ବଡ଼ସାନ କାଙ୍କ ଯେ କୋଇଲି କୁମ୍ଭାଟୁଆ
ଦନ୍ତବକ୍ର ସାଡ଼ଙ୍ଗା ଯେ ଗୋଳେହା ପୋଳେହା ।
ବଡ଼ବଙ୍କା ତାମ୍ରଚୂଡ଼ ସମୁଦ୍ର ଘାଟୁଆ
ପୁଲକ ବେଦୁର ବୁଡ଼ି ଅଧରୀ ଯେ କୁଆ ।
ଘରଚଟା ବାଇଆ ଯେ ପାଟବାଲି ଶୁଆ
ଅମୃତୀ ଅମୃତ ଯେ ଚିଲୋଳ ପାଟଶୁଆ ।
ଏବିଧି ଅନେକ ପକ୍ଷୀ ପୋଷଇ ରାଜନ
ଭୂମିରେ ବସଇ କେହୁ ମଞ୍ଚାରେ ବନ୍ଧନ ।
ଧାଡ଼ି ଧାଡ଼ି ପଞ୍ଜରୀ ଭିତରେ ଥୋକେ ଥାନ୍ତି
ଯେ ଯହିଂକି ଭାଜନ ସେ ଆହାର ଭୁଞ୍ଜନ୍ତି ।
ଦୁଧଭାତ ମତ୍ସ୍ୟମାଂସ ଆଧାର କେ ଖାଇ
ବେନିଶତ ପରିବାରୀ ଯେହାଙ୍କୁ ଜଗାଇ ।
ମୃଗ ସମ୍ବର ହରିଣ ଆଦି ବାହୁଟିଆ
ବ୍ୟାଘ୍ର ଯେ ଭଲ୍ଲୁକ ରାଜା ପୋଷେ ହୋଇ ସ୍ନେହା ।
ନବଲକ୍ଷ ବଙ୍ଗବଳ ତେରଲକ୍ଷ ହସ୍ତୀ
ଷୋଳଶତ ତୁରଙ୍ଗମ ଓଟ ଶତେ ଛନ୍ତି ।
ଅତି ପରିମଳ ରାଜ୍ୟ ପଟାନ୍ତର ନାହିଂ
ବଙ୍ଗମତୀ ନଦୀତୀରେ ନଗର ବସଇ ।
ଅବସନ୍ତେ ବସନ୍ତ ବହଇ ନିରନ୍ତର
ବିଦ୍ୟାଧର ପ୍ରାୟେ ତହିଂ ପୁରୁଷେ ସୁନ୍ଦର ।
ରୋଗ ଶୋକ ଚିନ୍ତା ନାହିଂ ଅଚିନ୍ତା ଭୁବନ
ଜନ ପ୍ରଜାମାନ ଅର୍ଜି କୁବେର ସମାନ ।
ବାଟିକେ ଚିନାୟେ କର ଭିଆଣ ପ୍ରମାଣ
କର ଶୁଝି ପ୍ରଜାୟେ ଅର୍ଜନ୍ତି କୋଟିଧନ ।
ଖଣି ମରାଇ ବହୁତ ଅଟେ ଧାନ ଘର
ଖାଇ ବୋହି ନସରଇ ଅତି ଅଗୋଚର ।
ଢଣେ ନାହିଂ ଦରିଦ୍ର ଯେ ସମସ୍ତେ ପୁଂରୁଣା

ହରିନାମ ଗାୟନ କରନ୍ତି ବହୁଗୁଣା ।
ସୁବର୍ଣ୍ଣର ଚୁଡ଼ି ହସ୍ତେ କଣ୍ଠେ କଣ୍ଠିମାଳ
ପାଟନେତ ଆଭରଣେ ହୁଅନ୍ତି ଉଜ୍ଜ୍ୱଳ ।
ଶୁକ୍ଳବସ୍ତ୍ର ମାନ ମଣ୍ଡି ହୁଅନ୍ତି କିଞ୍ଚିତ
ଅନ୍ନଦାନ ବସ୍ତ୍ରଦାନ ଦିଅନ୍ତି ବହୁତ ।
ମାଗିଲେ ଦିଅନ୍ତି ମିଥ୍ୟା ନ ଆସଇ ମୁଖେ
ବଳବନ୍ତ ନାହିଁ ଯେଣୁ ବିହରନ୍ତି ସୁଖେ ।
ଯେମନ୍ତେ ଅଚଳାଚଳ ବଙ୍ଗଦେଶ ସୀମା
ଯୋଦ୍ଧାଙ୍କର ଅଚିନ୍ତା ଯେ ସମସ୍ତେ ବଡ଼ିମା ।
ଅନ୍ନଦାନ ବସ୍ତ୍ରଦାନ ଦିଅନ୍ତି ରାଜନ
ଦରିଦ୍ର ସାଧବ ହେଲେ ସନ୍ତୋଷ ବ୍ରାହ୍ମଣ ।
ଆପଣ ରାଜ୍ୟକୁ କିଛି ଭୟଭୀତ ନାହିଁ
ଆବର ସମର ସେ କରିବ କାହିଁ ପାଇଁ ।
ରିପୁମାନେ ଶରଣ ପଶନ୍ତି ଭୟେ ଆସି
ନିଷ୍କଣ୍ଟକ ରାଜ୍ୟକୁ କରଇ ବଙ୍ଗବାସୀ ।
ଗର୍ଭଧାରୀ ଜନନୀ ମୁକୁତା ମହାଦେଇ
ମହା ପୁଣ୍ୟବତୀ ସେହୁ ଶୁଦ୍ଧ ତାର ଦେହି ।
ଅବଧୂତ ଗୋରେଖନାଥର ସେହୁ ଚେଲୀ
ସ୍ତ୍ରୀଜନ୍ମ ପାଇଣ ଯୋଗ ସାଧିଲା ଅବନୀ ।
ଯେକ ପୁତ୍ର ଯେ ଗୋବିନ୍ଦଚନ୍ଦ୍ରହିଁ ତାହାରି
ଅନେଶ୍ୱତ ନାରୀ ତାର ସମସ୍ତେ ସୁନ୍ଦରୀ ।
ସବୁଙ୍କର ମୋକ୍ଷସ୍ଥାନ ରୋଦମା ଗୋଦମା
ରାଜାର ସେ ପାଟବଂଶୀ ଶଚୀ ପ୍ରାୟେ ସୀମା ।
ଚାରିଶତ ପରିବାରୀ ଯେହାଙ୍କୁ ଖଟନ୍ତି
ଦୁହେଁ ଯୁବାନାରୀ ଯେକ ପ୍ରାଣ ହୋଇଥାନ୍ତି ।
ପତିଭକ୍ତା ନାରୀ ସେହି ଦୁହେଁ ଚାରୁହଂସୀ
ଦୁଃଖ ସୁଖ ନଜାଣନ୍ତି ସର୍ବଦା ହରଷୀ ।
ଫଗୁଣ ଶୁକଳ ପକ୍ଷ ଦଶମୀର ଦିନ
ବସିଛି ଗୋବିନ୍ଦଚନ୍ଦ୍ର ଜଗତୀ ଆସ୍ଥାନ ।

ସିଦ୍ଧେଶ୍ୱର ନାମେ ମନ୍ତ୍ରୀ ବସିଛି ପାର୍ଶ୍ୱେ
ସୁବୁଦ୍ଧି କରିଣ ଆଗେ କହଇ ବିଶ୍ୱାସେ ।
ନିତ୍ୟକର୍ମ ସାରି ରାୟେ ପଲଙ୍କରେ ବସି
ଜପମନ୍ତ୍ର ସାରି ଆଗେ ଶରୀର ପ୍ରଶଂସି ।
ମନେ ମନେ ଭାବି ରାୟେ ହୁଅନ୍ତି ଯେ ଭୋଳି
ଚମ୍ପାର ବରଣ ପ୍ରାୟେ ମୋହ୍ର ଦେହ ଝଳି ।
ଭଲା ବିଚାରଇ ମୁଁ ଯେ ଅତ୍ୟନ୍ତ ସୁନ୍ଦର
ସୃଜିଲା ବିହି ରୂପ ଦେଖି ଦେଖି ମୋର ।
ଯେକେତ ସୁନ୍ଦର ରୂପ ଦ୍ୱିତୀୟେ ରାଜନ
ଦେବତାଙ୍କ ସଙ୍ଗରେ ହେବି ସରିସମ ।
ଯେତେ ବୋଲି ଚଞ୍ଚଳ ଦର୍ପଣ ଘେନି କର
ଆପଣେ ଦେଖଇ ରାଜା ବଦନ କମଳ ।
ନିଷ୍କଳଙ୍କ ଶରୀର କଳଙ୍କ ନାହିଁ କିଛି
ମନେ ମନେ ଆନନ୍ଦ ହୋଇଲା ରାଜାବସି ।
ସିଦ୍ଧେଶ୍ୱର ବୋଲେ ସ୍ୱାମୀ ତୁମ୍ଭେ କାମଦେବ
ଭୋଗ କଉତୁକେ ମର୍ତ୍ତ୍ୟେ ହୋଇଛ ଉଭବ ।
ପୂର୍ଣ୍ଣିମାର ଚନ୍ଦ୍ର ପ୍ରାୟେ ବିରାଜଇ ଜ୍ୟୋତି
ଆପଣାକୁ ଚାହିଁ ଆପେ ପ୍ରଶଂସା କରନ୍ତି ।
ସୁବୁଦ୍ଧି ସହିତେ ତହୁଁ କହିଲେ ମଣାଇ
ତଥାପି ଦର୍ପଣେ ଚାହିଁ ଅଛି ବଙ୍ଗ ସାଇଁ ।
ଏସନ ସମୟେ ଯେ ମୁକୁତା ଦେଇ ମାୟେ
ପୁତ୍ରର ସନ୍ନିଧେ ଯାଇ କଲେକ ବିଜୟେ ।
ଦେଖିଲେ ଦର୍ପଣେ ମୁହଁ ଚାହିଁଛି କୁମର
କ୍ରୋଧଭରେ ମହାସତୀ ଶୋକ ଗୁରୁତର ।
କିମ୍ପାଇ କୁମରମଣି ହୃଦୟ ନିରେଖୁ
ସିଦ୍ଧପୁରୁଷଙ୍କ ସଙ୍ଗେ ଲେଖ ଆପଣାକୁ ।
ଦିଗପାଳମାନେ ବାବୁ ହୋଇ ଅବତାର
ମାୟାଦେହ ଘେନି ସର୍ବେ ଗମନ୍ତି ସଂସାର ।
ବ୍ରହ୍ମା ବିଷ୍ଣୁ ହେଉଛନ୍ତି ଦଶ ଅବତାର

ରଖି ନ ପାରନ୍ତି ପିଣ୍ଡ ପ୍ରାଣ ଯେକବାର ।
ତୋହର ପିଅର ଥିଲା ରିପୁଚନ୍ଦ୍ର ରାୟ
ତୋହ ତହିଁ ଶତେଗୁଣ ସୁନ୍ଦର ତା କାୟ ।
ଅନ୍ଧାର ଦିଶେ ଆଲୋକ ମାଣିକ୍ୟର ତ୍ରାସ
ସେହି କାଳେ ନ ରହି ହୋଇଲା ପ୍ରାତେ ନାଶ ।
ଅଗ୍ନିରେ ଦହିଣ ପିଣ୍ଡ ହୋଇଲାକ ଧୂଳି
ତୁ କି କାରଣେ କୁମର ଶରୀର ନିରୋଳି ।
ଯମରାଜା ଗଣନା କରୁଛି ବସି ଦିନ
ସମୟେକ ପୁତ୍ର ତୁ ରେ ହୋଇବୁ ନିଧନ ।
ଯେତେ ବୋଲି ଅଶ୍ରୁଜଳ ନୟନୁ ଗଳାଇ
ଶୁଣିକରି ଚକିତ ହୋଇଲେ ନରସାଇଂ ।
ହସ୍ତରୁ ଦର୍ପଣ ପକାଇଲା ଭୂମିଗତ
କି କହିଲ ମାୟେ ତୁମ୍ଭେ ମୋହର ଅଗ୍ରତ ।
ଅନ୍ନଦାନ ବସ୍ତ୍ରଦାନ ଦେଇଅଛି ମୁହିଁ
ଦାନେଶ୍ୱର ମୋର କୀର୍ତ୍ତି ଜଗତେ ଶୁଭଇ ।
ପ୍ରଜାଙ୍କୁତ ପୀଡ଼ା ନାହିଁ ଶରଣ ରଖଇ
ଅପ୍ରାଧ ଅର୍ଜିଲା ପ୍ରାଣୀ ଦୋଷ ମୁଂ ଛାଡ଼ଇ ।
ଦେବତା ବ୍ରାହ୍ମଣେ ସେବା ମୋର ନିରନ୍ତର
ଲକ୍ଷେ ଚମ୍ପା ଚଢ଼ାଏ ମୁଂ ଈଶ୍ୱରଙ୍କ ଶିର ।
ଶ୍ରୀବିଷ୍ଣୁ ପୁରାଣ ଶୁଣେ ପାଞ୍ଚଦଣ୍ଡ ଯାଏ
ସୂର୍ଯ୍ୟ ଦେବତାଙ୍କୁ ମୁଇଂ ଦୁଇଦଣ୍ଡ ଧ୍ୟାୟେ ।
ତୁମ୍ଭେ ଗର୍ଭଧାରୀ ମାତା ଅଟଗୋ ମୋହର
ତୁମ୍ଭ ପାଦରଜ ନିତ୍ୟ ଘେନଇଂ ଶରୀର ।
ପିତୃପିତା ମାନଙ୍କର କାରଣ ନିମିତ୍ତେ
ପିଣ୍ଡଶ୍ରାଦ୍ଧ ଦେଉଅଛି ବ୍ରାହ୍ମଣଙ୍କ ହସ୍ତେ ।
ପାପ ବାଧା ନିମନ୍ତେ ସମର ନ କରଇ
ଆବର ମରଣ ମୋତେ ହୋଇବ କିମ୍ପାଇଂ ।
ଦେବୀଙ୍କି ଶୀତଳ ଭୋଗ ଦିଅଇ ସମସ୍ତ
ଧର୍ମ ଥିଲେ କାଳ କିମ୍ପା ନ ଘୁଞ୍ଚିବ ମାତ ।

ମାତାଯେ ବୋଇଲେ ବାବୁ ଶୁଣରେ କୁମର
ଯେତେ ଧର୍ମ କରୁଅଛୁ ସମସ୍ତ ନିଷ୍ଫଳ ।
ପିଣ୍ଡ ମୋକ୍ଷ କରିଣ ଯେବେ ଧର୍ମ କର
ଚିର ଆୟୁଷ ତୋହର ହୋଇବ କୁମର ।
ତୁ ମହାଗୁରୁଙ୍କୁ ସେବା କରୁନାହିଁ ବାବୁ
ନାମବ୍ରହ୍ମ ଶୁଣିଥିଲେ କାରଣ ପାଇବୁ
ତାରଇ ମାରଇ ଗୁରୁ ବଚନ ପ୍ରମାଣ
ପିତା ମାତାଠାରୁ ଗୁରୁ ବଡ଼ ବୋଲି ଜାଣ ।
ମନ ଦୃଢ଼ କରି ଖଟ ଶ୍ରୀଗୁରୁ ଚରଣ
ତେବେ ସିନା ବଳା ରେ ତୁ ପାଇବୁ କାରଣ ।
ଶିଷ୍ୟ ହୋଇ ଗୁରୁଠାରେ ଯେବେ ଅବିଶ୍ୱାସୀ
ଦୁଇକୂଳ ଅଲଗା ମଧ୍ୟରେ ଭେଳା ଭାସି ।
କୋଟିଯେ ହିରଣ୍ୟ ଦାନ ଦେଲେ ଧର୍ମ ଯେତେ
ଗୁରୁ ପାଦ ରଜ ଧୂଳି ଘେନୁଥିବୁ ନିତ୍ୟେ ।
ଅଷ୍ଟରତ୍ନ ଗୋଧନାଦି ଦାନ ଯେତେ ଦେବା
କେବେହେଂ ଗୁରୁଙ୍କୁ ତିଳେ ଶୁଝି ନ ପାରିବା ।
ପ୍ରାତଃ କାଳୁ ଗୁରୁପାଦ ପଖାଳିବୁ ଜଳେ
ଥୋକାଯେ ଭକ୍ଷିଣ ଥୋକେ ପକାଇବୁ ଶିରେ ।
ଗୁରୁ ଯାହା କହିବେ ଘେନିବୁ ଦୃଢ଼କରି
ତିରଣ ଜାଳି ହୋଇବ ଯେହ୍ନେ ମେରୁଗିରି ।
ଭଲମନ୍ଦ ଦୁଇକଥା ବିଚାରି କହିବ
ଅଜାତି ହୋଇଲେ ତାଙ୍କ ଚରଣ ଧୋଇବ ।
ଦେବ ଯାହା ଦେଲି ବୋଲି ନ ବୋଲିବ ତୁଣ୍ଡେ
ବଜ୍ରଶିଳା ଘେନି ଯମ ପିଟିବଟି ମୁଣ୍ଡେ ।
ଗୁରୁର ବଚନ ବାବୁ ପାଷାଣର ଗାର
ଗୁରୁଙ୍କୁହିଂ ସେବାକଲେ ଯମଦଣ୍ଡୁ ପାର ।
ଗୁରୁ ଅକଲ୍ୟାଣେ ବଳା ନର୍କଗତି ପାଇ
ସପତ ପୁରୁଷ ଯାଯେ ଜନମ ହୁଅଇ ।
ବୋଲଇ ଗୋବିନ୍ଦଚନ୍ଦ୍ର ଶୁଣସି ଗୋ ମାଯେ

ଆଗହୁଁ ନ କହିଲୁ ଯେ ଯେତେ ଦିନ ଯାଏ ।
ପିଣ୍ଡ ରହିବାକୁ ମାତା କହ ସଦବୁଦ୍ଧି
କେଉଁ ଗୁରୁ ସେବାକଲେ କାୟା ହୁଏ ସିଦ୍ଧି ।
ବ୍ରାହ୍ମଣ ହେଉ କି ବା ଚାଣ୍ଡାଳ ହେଉ କିନା
ଯେ ରଖିବ ପିଣ୍ଡ ତାକୁ କରିବ ମାନନା ।
ବୋଲଇ ମୁକୁତା ଦେଈ ଶୁଣରେ ନନ୍ଦନ
ରାଜ୍ୟ ସୁଖ କି ତେଜିବୁ କହରେ ବହନ ।
ହସ୍ତୀ ଘୋଡ଼ା ଓଟ ତୋର ସମ୍ପଦ ବହୁତ
ଯେହା ଛାଡ଼ି ପାରିବୁ କି କହ ତୁ ରେ ସତ ।
ନବଲକ୍ଷ ବଳ ତୋର ଅନେ୍କଶତ ରାଣୀ
ଯେହା ତେଜିଲେକ ସିଦ୍ଧ ହେବୁ ତୁ ଅବନୀ ।
ଗୋବିନ୍ଦଚନ୍ଦ୍ର ବୋଇଲେ ମୂର୍ଚ୍ଛିଲି ମୁଁ ଯେହା
ଗୁରୁକେ ହୋଇବ ମୋତେ ବତାଅ ଗୋ ତାହା ।
ସତ୍ୟ ସତ୍ୟ ମାତା ମୋର ବଚନ ପ୍ରମାଣ
ତେଜିଲି ସମ୍ପତ୍ତି ଛୁଏଁ ତୁମ୍ଭର ଚରଣ ।
ମାତାଯେ ବୋଇଲେ ବାବୁ ଶୁଣରେ ଗୋବିନ୍ଦ
ମିଥ୍ୟାମାୟା ସଂସାରେ ତୁ ପଡ଼ି ନୁହ ବନ୍ଦୀ ।
ଯେବଣ ହାଡ଼ିପାରେ ଖଟଇ ବାଡ଼ିତାଟି
ତାକୁ ସେବା କରିବୁ ଚରଣ ତଳେ ଲୋଟି ।
ଯେବେ ସେ ପ୍ରସନ୍ନ ତୋତେ ହୋଇବେ କୁମର
ଯମ କାଳପାଶରୁ ବଞ୍ଚିବୁ ଚିର କାଳ ।
ନୃପତି ବୋଇଲେ ଯେବେ ସିଦ୍ଧ ସେ ପୁରୁଷ
ନୀଚ କୁଳେ ଜାତ କିମ୍ପା କହ ସେ ସନ୍ଦେଶ ।
ପୂର୍ବ କର୍ମ ବଳୁ ରହି ମୃତ୍ୟୁ ମଣ୍ଡଳର
ପ୍ରଭାତହୁଁ ବାଡ଼ିତାଟି ଖଟଇ ମୋହର ।
ତାହାର ଚରଣେ ମାତା କେମନ୍ତ ତରିବି
ଅକାରଣେ ହେଳେ ପ୍ରାଣ କେମନ୍ତେ ନାଶିବି ।
ମୁକୁତା ଦେଈ ବୋଇଲେ ଶୁଣ ବାପ ତୁହି
ଶାପ ଅନୁକ୍ରମେ ମର୍ତ୍ତ୍ୟେ ଅବତାର ସେହି ।

ସତ୍ୟ ଯୁଗେ ଅତିଶୟ ତପ ଯେଣୁ କଲା
ଇନ୍ଦ୍ରପଦେ ବସିବାକୁ ମନ ବଳାଇଲା ।
ବ୍ରହ୍ମାଙ୍କୁ ମଣାଇ ବର ମାଗିଲାକ ଯହୁଂ
ବେଦବର ନାଥ ହେଲେ ପ୍ରସନ୍ନ ଯେ ତହୁଂ ।
ବୋଇଲେ ହେ ବ୍ରହ୍ମରଷି ଘୋର ତପେ ଥିବୁ
ଷାଠିଏ ସହସ୍ର ବର୍ଷ ଅଗ୍ନିରେ ପଶିବୁ ।
ଶତେ ଧୂଳି ମାଂସ ଯେବେ କରାଇବୁ ଦେହୀ
ବସିବୁ ଅମର ପଦେ କେ କରିବ ନାହିଁ ।
ବ୍ରହ୍ମାର ବଚନେ ରଷି ଘୋର ତପ କଲା
ଷାଠିଏ ସହସ୍ର ବର୍ଷ ଅଗ୍ନି ଲଗାଇଲା ।
ପ୍ରଥମେ ଯେ ଦୁଇପାଦ ଭରିଲା ଅନଳେ
ଜଳିଲା ଶରୀର କ୍ଷୟେ ନୋହିଲା ବିକଳେ ।
ନାଭି ମଣ୍ଡଳରେ ଯହୁଁ ଅନଳ ଲାଗିଲା
ଆତ୍ମା ବୈକଲ୍ୟ ରଷିର ବହୁତ ହୋଇଲା ।
ଆଗ୍ୟାଂଦେଲେ ବେଦବର ନିସତ ହୋଇଲୁ
ତୋର ପରା ରଷି ଅଗ୍ନି ସହି ନ ପାରିଲୁ ।
ଘେନ ଘେନ ଶାପ ବୋଲି ବୋଇଲେ ବିଧାତା
ବଙ୍ଗଦେଶେ ଧନାହାଡ଼ି ଘରେ ହୁଅ ଜାତ ।
ଗୋବିନ୍ଦଚନ୍ଦ୍ର ରାଜାର ଖଟ ବାଡ଼ିତାଟି
ଶୁଣି ବ୍ରହ୍ମ ରଷି ପାଦେ ପଡ଼ିଲେ ଯେ ଲୋଟି ।
ମୁକ୍ତିର କାରଣ ଯେ କହିବା ମୋତେ ଯେବେ
ବେଦବର ବୋଇଲେ ତୁ ଜାତ ହୁଅ ବେଗେ ।
କାହ୍ନୁ ପା ଚେଲାଙ୍କ ହୋଇବ ମହାଗ୍ୟାଂନ
ତୋ ବୋଲେ ମରଢ଼ାଶାଳ ଖଟିବେକ ଆନ ।
ଗୋବିନ୍ଦଚନ୍ଦ୍ର ରାଜାକୁ କହିବୁ ସୁବୁଦ୍ଧି
ତହିଁପରେ କ୍ରମେ ତୋର ହୋଇବ ଯେ ସିଦ୍ଧି ।
କେତେହେଂକ ଦିନ ରହି ଆସିବୁ ବହନ
ଦେବତାଙ୍କ ସଙ୍ଗେ ନିଶ୍ଚେଂ ହେବୁ ତୁହି ସମ ।
ବେଦବରଙ୍କ ବଚନେ ଜନ୍ମି ନୀଚକୁଳେ

ତାହାର ଜନମ କଥା ମୁଁ ଜାଣଇ ଭଲେ ।
ତୁ ଯେ ବୋଲୁ ଖଟଇ ମରଡ଼ାଶାଳ ମୋର
ତାହାର ଆଗ୍ୟାଂରେ ଆନ କରଇ ନିର୍ମଳ ।
ପ୍ରତକ୍ଷରେ ଦେଖ ବାବୁ ବେନି ନୟନର
ଦେଖିଲେତ ପ୍ରତେ ଯିବୁ ତୁହିଟି କୁମର ।
ଏତେ ବୋଲି ନବର ଭିତରେ ବିଜେକଲେ
ଚଉରାଶି ମଜ୍ଜଫୁଲି ମଣୋହି ସାରିଲେ ।
ଦିନଶେଷ ରଜନୀ ହୋଇଲା ଗୋବିନ୍ଦାଇ
ରାତ୍ର ବେନି ପ୍ରହରରୁ ଉଜାଗର ହୋଇ ।
ହୀରାର କଉଠ ମାଡି ମରଡା ଶାଳର
ପ୍ରବୃତ୍ତି ସଂସ୍କାର ସାରି ହୋଇଲା ବାହାର ।
ରତ୍ନଗଡ୍ଡୁ ଜଳରେ ଶଉଚ କଲା କାୟେ
ଖଣ୍ଡେ ଦୂରେ ଅନ୍ୟାଇଛି ଅନ୍ତର ପରାୟେ ।
ଯେମନ୍ତ ସମୟେ ଯେ ରଜନୀ ପାହିଗଲା
କାକରତି ଦ୍ୟନ୍ତେ ଦିଗ ନିର୍ମଳ ଦିଶିଲା ।
ହାଡିପାଏ ବାହାର ହୋଇଲେ ଧାତିକାରେ
ପଛରେ ଗୋଡ଼ାଇ କାନ୍ଦେ ବାଳୁତ କୁମରେ ।
ହାଡିପାଏ ବୋଲେ ବାବୁ କାନ୍ଦ କାହିଂ ପାଇଂ
ଏହିକ୍ଷଣି ଆସିବି ମନ୍ଦିରେ ଥାଅ ତୁହି ।
ନରହି ବାଳୁତ ଗୋଟି ଗୋଡ଼ାଇଲା ଯହୁଂ
ମରଡ଼ା ଶାଳ ନିକଟେ ବିଜେକଲା ତହିଂ ।
ଧାଡ଼ି ଧାଡ଼ି ରଙ୍ଗଲତା ବୃକ୍ଷ ତୋଟାମାନ
ଫଳଭରା ହୋଇଣ ଯେ ରହିଅଛି ପୁଣ ।
ବାୟେଣ ବରଡ଼ା ପତ୍ର ଶବଦ କରଇ
ପଇଡ କାନ୍ଦିକି ଚାହିଂ କୁମର ବୋଲଇ ।
ଭୋ ପିତା ବୃକ୍ଷରୁ ମୋତେ ପଇଡ଼ ତୋଳି ଦିଅ
ହାଡ଼ିପା ବୋଇଲା ବାବୁ ଯେମନ୍ତ ନକହ ।
ରାଜାଙ୍କର ପଇଡ଼ ଯେ ଆଣିଲେ ଅସାର
ତୋଟାଳିଆ ଜାଣିଲେ କରିବେ ମହାଗୋଳ ।

ତଥାପି କୁମରମଣି କାନ୍ଦେ ଗଡ଼ଘାଳି
ଦିଅ ପିତା ପଇଡ଼ ବୃକ୍ଷରୁ ମୋତେ ତୋଳି ।
ପୁତ୍ରର ବିକଳ ଦେଖି ହାଡ଼ିପା ବୋଇଲେ
ଆସ ହୋ କତିକି ବୋଲି ବୃକ୍ଷକୁ ରାଇଲେ ।
ଗୁରୁଙ୍କ ବଚନ ପାଇ ନାରିକେଳ ଗଛ
ଆକାଶୁଂ ଖସିଣ ଆସି ହୋଇଲାକ ମଞ୍ଚ ।
ଆପଣେ ହାଡ଼ିପା ଫଳ ଗୋଟିଏ ତୋଳିଲେ
ବାଳୁତ ହସ୍ତରେ ନେଇ ନାରିକେଳ ଦେଲେ ।
କୁମର ବୋଇଲା ପିତା ଦିଅ ଆଉ ଗୋଟି
ନାସ୍ତି କଲେ ହାଡ଼ିପା ବହନ ଗଲା ଉଠି ।
ଆକାଶେ ରହିଲା ଯାଇ ନାରିକେଳ ଗଛ
ଫଳ ଘେନି କୁମର ଲେଉଟିଗଲା ପଛ ।
କୋଦାଳ କୁଣ୍ଡୋଇକି କୋମଳେ ଆଗ୍ୟାଂଦେଲେ
ବେଗେ ଯାଇଂ ବାଡ଼ିତାଟି ଖଟରେ ବୋଇଲେ ।
ଆଗ୍ୟାଂ ପରମାଣେ ଯେ କୋଦାଳ ଚଳିଗଲା
ମରଡ଼ା ଶାଳେ ପଶି ସବୁ ନିର୍ଭାକଲା ।
କୁଣ୍ଡୋଇରେ ପୂରାଇ ସେ ଦେଲା ତତକ୍ଷଣ
ନଗ୍ରରୁ ବାହାର କରି ପକାଇଲା ପୁଣ ।
ହାଣ୍ଡିନେଇ ଗୋମୟ ପକାଇ ପୁଣି ଗୋଳି
ନବୋଲୁଂ ପହଂରା ପଛେ ନେଲା ସେ ପହଂରି ।
ଯେ ଯାହା ଠାବରେ ଯାଇ ରହିଲେ ତ୍ୱରିତ
ହାଡ଼ିପାଏ ବିଜେ କଲେ ନିଜ ଗୃହପ୍ରାନ୍ତ ।
ଖଣ୍ଡିଏକ ଦୂରେ ଯେ ଗୋବିନ୍ଦଚନ୍ଦ୍ର ଥିଲେ
ହାଡ଼ିପା ଚରିତମାନ ନୟନେ ଦେଖିଲେ ।
ନଗର ଭିତରେ ଯାଇ ପଶିଲେ ବହନ
ମାତାଙ୍କର ସନ୍ନିଧିରେ ବିଜୟ ବହନ ।
ଅବଧାନେ ଶୁଣ ମାତା ଆଗ୍ୟାଂ ଦେଲେ ଯାହା
ମରଡ଼ାଶାଳାରେ ରହି ଦେଖିଲି ମୁଂ ତାହା ।
ହାଡ଼ିପାର ପୁତ୍ରଗୋଟା ସଂଗତରେ ଥିଲା

ନାରିକେଳ ଫଳରୁ ସେ ଗୋଟିଏ ମାଗିଲା ।
ତକ୍ଷଣେ ହାଡ଼ିପା ଆଜ୍ଞା ଦେଲାକ ବୃକ୍ଷକୁ
ଆକାଶୁଁ ଓହ୍ଲାଇ ବୃକ୍ଷ ଅଇଲା. ତଳକୁ ।
ତହିଁରୁ ଗୋଟିଏ ଫଳ ତୋଳି ପୁତ୍ରେ ଦେଲା
ଯା ବୋଲନ୍ତେ  ବୃକ୍ଷଯାଇ ଆକାଶେ ଲାଗିଲା ।
କୋଦାଳ କୁଣ୍ଢୋଇ ଯାଇଂ ଖଟେ ବାଡ଼ି ତାଟି
ପ୍ରତକ୍ଷ୍ୟେ ଦେଖିଲା ମାୟେ ମୋର ବେନି ଆଖି ।
ଜନନୀ ବୋଇଲେ ବାବୁ ଦେଖିଲୁ ପ୍ରତକ୍ଷ
ସଦଗୁରୁ ପୂଜାକଲେ ପିଣ୍ଡ ହୋୟେ ମୋକ୍ଷ ।
ଜନମ ହୋଇଲେ ଦେହ କ୍ଷୟ ହୋୟେ ବାବୁ
ନାମବ୍ରହ୍ମ ଶୁଣିଥିଲେ କାରଣ ପାଇବୁ ।
ଜଉ ସଙ୍କଳସ ଯେହ୍ନେ ଅଗ୍ନିପାଶେ ଜାଣି
ପୁରୁଷ ଦେହକୁ ଅଗ୍ନି ପରାୟେ ତରୁଣୀ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ନପାରନ୍ତି ଯାଇ
ପୁନ ପୁନ ଅବତାର ହୋନ୍ତି ଦେହଛାଡ଼ି ।
ଇନ୍ଦ୍ରଜାଲ ମାୟା କେହି କାହାର ନୁହନ୍ତି
ବିଜୁଳି ପବନ ପ୍ରାୟେ ଜୀବ ଘଟ ସ୍ଥିତି ।
ସର୍ବଜ୍ଞାନ ଆଦିମୂଳ ଗୋବିନ୍ଦର ନାମ
ଗୋବିନ୍ଦ ଚିନ୍ତିଲେ ପାଇ ପରମ କାରଣ ।
ଗୋବିନ୍ଦର ନାମ ମହାମନ୍ତ୍ର ବୋଲି ଜାଣି
ସେହି ନାମ ଘୋଷୁଥିଲେ ପାଇବୁ କାରେଣୀ ।
ବରଷାରେ ପାଣିଥୋପା ଯେସନେ ଉପୁନ୍ନ
କେଣେ ଭାସିଯାଇ ନ ଦିଶଇ ରେଖ ବର୍ଣ୍ଣ ।
'ସେହିମତି ଦେଖ ୟେ ଶରୀର ଗୋଟି ବାବୁ
କାଳକୁ ଜିଣିଲେ ଚାରିଯୁଗେ ରହିଥିବୁ ।
କର୍ଣ୍ଣରେ ମନ୍ଦ୍ରା ଲାଇ କାଇକନ୍ଥା ହୃଦେ
ସର୍ବାଙ୍ଗ ବିଭୂତି ଘଷି ରହିବ ଆନନ୍ଦେ ।
ଶିଙ୍ଗା ଶକତି ତ୍ରିଶୂଳ କନ୍ଧେ ଘେନିଥିବୁ
ଝୋଳିକନ୍ଥା ଲାଉଥାଳ ନିରତେ ବହିବୁ ।

ନଗ୍ରରେ ପଶିଣ ବାବୁ ମାଗିବୁ ତୁ ଭିକ୍ଷା
ଦେଉକି ନ ଦେଉ ପୁଣ ଯେ ଯାହାର ଇଚ୍ଛା ।
ପାଇଲେ ଆନନ୍ଦ ମୟେ ନ ପାଇଲେ ତୋଷ
ତହିଂକି ତୋହର ମନେ ନ ଧରିବୁ ରୋଷ ।
ଢାଗିଲାରେ ମାତା ବୋଲି ଶିଙ୍ଗାନାଦ ଦେବୁ
ଭିକ୍ଷାଦେଲା କନ୍ୟାର ବଦନ ନ ଚାହିଂବୁ ।
ଆସନ୍ତେଣ ଭୂମିକୁ ତୁ ଦେଉଥିବୁ ଦୃଷ୍ଟି
କଦାଚିତେ ଭ୍ରମି ତୁ ନ ଚାହିଂବୁ ଲେଉଟି ।
ପୁରୁଷଙ୍କୁ ବାବା ବୋଲିବୁରେ ବାପ ଭାଇ
ସ୍ତ୍ରୀ ଜନମାନଙ୍କୁ ବୋଲିବୁ ଆଇ ମାଇଂ ।
ବାଲୁତେ କାଟିବୁ ହିଂସା ଅହଂକାର ମାନ
କୋଟିୟେ ପୁରୁଷ ଚିତ୍ତେ ଉଦ୍ଧିରିବା ପୁଣ ।
ପାଞ୍ଚଠା ଭିକ୍ଷାରୁ ବାବୁ ଅଧିକ ଘେନିଲେ
ଦେଲେଣ ଧରମ ନାହିଂ ନ ଘେନିମୁ ଥାଳେ ।
ଆଣିଲେ ହେଂ କାରଣ ତୁ ନପାଇବୁ ପୁଣ
ବିଳମ୍ବ ନକରି ପୁଣ ଲେଉଟିବ ରଣ ।
କାମ କ୍ରୋଧ ନିଦ୍ରାତ୍ୟାଗ ନ କରିବୁ ଯେବେ
ପିନ୍ଧିଲାର ବସ୍ତ୍ର ଧୋବି ଘେନିଯିବ ତେବେ ।
ରତି ଉପେକ୍ଷିଣ ତୁ ଆହାର ବଞ୍ଚାଅ
ନିଶାରେ ଜଗିବସିବୁ ମନେ ହେଜିଥାଅ ।
ସେ ସିଦ୍ଧ ହୋଇଲେ ଜଳେ ନବୁଡ଼ଇ ପାଦ
ଚଉରାଶି କାଠି ସିନ୍ଧୁ ଗଭୀର ଅଗାଧ ।
ଷୋହଳ ଡମ୍ବରୁ ଶିଖେ ସରୋବର ପୂରି
ବନ୍ଧ ନଭାଜିବ ମନ କରିବ ଲହରୀ ।
ତେବେ ସେ ତରିବ ଗୁରୁ ହୋଇବେ ପ୍ରସନ୍ନ
ଯେବେ ଟାଇ ଶ୍ରୀଗୁରୁଙ୍କ କରିବା ଦ୍ରଶନ ।
ଯେତେ ବୋଲି ପୁତ୍ରକୁ ଘେନିଣ ମହାଦେଈ
ନିଶାରେ ବାହାର ହେଲେ ସଙ୍ଗେ କେହି ନାହିଂ ।
ପଯର ପୂଜାକୁ ଅଷ୍ଟରତ୍ନ ଟାଙ୍ଗୁଡ଼ାୟେ

ପୁଷ୍ପମାଳ ଚନ୍ଦନ ଯେ କର୍ପୂର ପୂରାୟେ ।
ତୁରିତେ ମିଳିଲେ ଯାଇ ହାଡ଼ିପାଙ୍କ ଦ୍ୱାର
ଜାଣିଣ ହାଡ଼ିପା ଘରୁ ହୋଇଲେ ବାହାର ।
ମାତାଙ୍କର ଆଗ୍ୟାଂପାଇ ରାଜା ଗୋବିନ୍ଦାଇ
ଅଷ୍ଟରତ୍ନ ଚାଙ୍ଗୁଡ଼ି ଥୋଇଲେ ତଳେ ନେଇ ।
ହାଡ଼ିପା ଚରଣ ଧରି ଓଳଗି ଶୁତିଲେ
ଦେଖିଣ ହାଡ଼ିପା ମନେ ତରସ୍ତ ହୋଇଲେ ।
ଧାତିକାରେଁ କୋଳକରି ଧଇଲେ ରାଜାଙ୍କୁ
କି ନିମନ୍ତେ ରାଜନ ଅଇଲୁ ମୋହଠାକୁ ।
ଛତିଶ କୁଳ ପାଟକ ଚାରି ଜାତି ସାର
ଶୂଦ୍ର ବଶ୍ୟ କ୍ଷତ୍ରିୟ ଆବର ଦ୍ୱିଜବର ।
ସର୍ବତହୁଂ ପାପୀ ହୀନ ହାଡ଼ି ଜାତି ଗୋଟି
ମୋହର ଚରଣ ତଳେ କିମ୍ପା ତୁମ୍ଭେ ଲୋଟି ।
ବାଡ଼ିତାଟି ଖଟିଣ ତୁମ୍ଭଙ୍କୁ କରେ ସେବା
ଅପ୍ରାଧ ଉଚିତ ଜାଣି ଶାସ୍ତିମୋତେ ଦେବା ।
ପ୍ରଭାତରୁ ଚାହିଂବ ଯେ ମୋହର ବଦନ
ତାହାକୁ ଲାଗଇ ଦୋଷ ଶୁଣ ହେ ରାଜନ ।
ମୁକୁତା ଦେଈଙ୍କ ମୁଖ ଚାହିଂଲେ ହାଡ଼ିପା
ତୁମ୍ଭେ ଜାଣୁ ଜାଣୁ ଯେହା ବିଚାରିଲ କିମ୍ପା ।
ବୋଲଇ ମୁକୁତା ଦେଈ ଶୁଣ ହେ ମହାଗୁରୁ
ଗୋବିନ୍ଦଙ୍କୁ ମନ୍ତ୍ରଦିଅ ମାୟା ମୋହ ତରୁ ।
ହାଡ଼ିପା ବୋଇଲେ ତୋର ଏକଇ ନନ୍ଦନ
ଯେହାକୁ ତୁ ସିଦ୍ଧ ଯେବେ କରିବୁ କାରଣ ।
ରାଜ୍ୟେ ରାଜା କରିବାକୁ କେହୁ ଅଛି ତୋର
କେ ପାଳିବ ବଙ୍ଗଦେଶ ଚତୁରଙ୍ଗ ବଳ ।
ଅନାଥ ହୋଇବେ ଜନ ପରଜା ବିପଦେ
ରିପୁଭୋଗ କରିବେ ଯେ ଯେତେକ ସମ୍ପଦେ ।
ଅନେଶ୍ୱତ ରାଣୀ ବେନି ପାଟ ମହାଦେଈ
ଯେହାଙ୍କ ଭାଙ୍ଗିବ ଆଶା ବିଶ୍ରାମିବେ କାହିଂ ।

ଯେତେକ ସମ୍ପତ୍ତି କରିପାରିବଟି ତେଜ୍ୟା
ମତ୍ତଗର୍ବ ବୟସରେ ହୋଇଅଛି ରାଜା ।
ବଡ଼ ଇ ଦୁର୍ଗମ ପଥ ତପ ସାଧିବାର
ନ ବୋଲ ମୁକୁତା ଦେଇ ଯେମନ୍ତ ବେଭାର ।
ମାହାଦେଈ ବୋଇଲେ ସେକଥା ଛାଡ଼ିଦିଅ
ଯୁଗ ଯୁଗାନ୍ତରେ ସିଦ୍ଧ ହେଉ ମୋର ପୁଅ ।
ରାଜ୍ୟ ଆବୋରିଣ ମୁହିଂ ରାଜା ହୋଇଥିବି
ରାଉତ ମାହୁନ୍ତ ସର୍ବ ପ୍ରଜାନ୍ତ ପାଳିବି ।
ହାଡ଼ିପା ବୋଇଲେ ରାଜା ଶୁଣ ଗୋବିନ୍ଦାଇ
ମନ ଦୃଢ଼କରି କଷ୍ଟ ପାରିବୁ କି ସହି ।
ଲବଣୀଠାରୁ କୋମଳ କାୟା ଅତି ସୁଖ
ଅରଣ୍ୟ ଡିଙ୍ଗରେ ବୁଲି ପାଇବୁ ତୁ ଦୁଃଖ ।
ଭୂମିରେ ଶୋଇଣ ପୁତା ଅଭକ୍ଷ୍ୟ ଭକ୍ଷିବୁ
ଶ୍ମଶାନ ଭୂମିରେ ପୁତା ଯେକାଳେ ବୁଲିବୁ ।
ଗ୍ରାମେ ନ ଭୁଞ୍ଜିବୁ ପୁତା ଯାନେ ନ ଚଢ଼ିବୁ
ଭୋଜନ ଶେଷକୁ ପୁତା ପାଣି ନ ଭକ୍ଷିବୁ ।
ଛପନ କୋଟି ଜୀବର ମୃତ୍ୟୁ ଅଟେ ସାର
ସର୍ବ ଘଟେ ନାରାୟଣ କେହି ନାହିଂ ପର ।
ପବନକୁ ନିରୋଧିବୁ ଦଶଦ୍ୱାର ବାଟେ
ଶୋଷିଣ ଯେ ନିଶ୍ୱାସ ତୁ ଚଳାଅ ଉଚାଟେ ।
ଅମନ ମନ୍ଦିରେ ପଶି ମନ କର ଦୃଢ଼
ଯୋଗ ସାଧିବାର ପୁତା ଅତି ମହାଗାଢ଼ ।
ନାଭିପାଶେ ନାସାଦଣ୍ଡ ଯେବେଟି ଲାଗିବ
ତେବେ ସେ ପ୍ରାଣକୁ କେବେ ପିଣ୍ଡ ନ ଛାଡ଼ିବ ।
ମୂଳ କମଳକୁ ପୁତାରେ ପାରିବୁକି ସାଧି
ନସାଧିଲେ ଅକାରଣ ହୋଇବ ଯେ ବିଧି ।
ବୋଇଲେ ଗୋବିନ୍ଦଚନ୍ଦ୍ର ଶୁଣ ମହାଗୁରୁ
ପାଇଲି କାରଣ ଆଶ୍ରେ କଲି ମହାମେରୁ ।
ତୁମ୍ଭ ଶ୍ରୀଚରଣରେଣୁ ପରସାଦେ ପୁଣି

ସାଧିବି ମୁଂ ଯୋଗଧ୍ୟାନ କର୍ଣ୍ଣପଥେ ଶୁଣି ।
ଛାଡ଼ିବି ସଂସାର ଦୁଃଖ ଦଣ୍ଡ ସିଂହାସନ
ରାଜ୍ୟ ଦେଶକୁ ମୋହର ନରୁଚଇ ମନ ।
ମାୟାରେଣ ପଶିଲେ କାୟା ହୋଯେ କ୍ଷୟ
ନୋହୁ ସେ ପଣ ସମ୍ପତ୍ତି ରହିବା ସମୟ ।
ମନ ଦୃଢ଼ କରାଇଲେ ହାଡ଼ିପା ଗୋସାଇଂ
ଆସ କର୍ଣ୍ଣେ ମହାମନ୍ତ୍ର ଦେବି ଗୋବିନ୍ଦାଇ ।
ମହାମନ୍ତ୍ର ଉଚ୍ଚାରିଲେ ଦକ୍ଷିଣ କର୍ଣ୍ଣର
ଗୁରୁ ଆଜ୍ଞାଂଦେଲେ କାୟା ହେଉ ତୋ ଅଜର ।
କର୍ଣ୍ଣରେ ମୁଦୁରାଦେଇ ବୋଲି ନାଦଦେଲେ
ଅକ୍ଷୟ ହୋଇଣ ଥାଅ କଲ୍ୟାଣ ବାଞ୍ଛିଲେ ।
ଦୀକ୍ଷାପାଇ ଆନନ୍ଦ ହୋଇଲା ରାଜା ମନ
ପୁଣି ସେ ଗରୁଙ୍କ ପାଦେ କଲାକ ପ୍ରଣାମ୍ ।
ନିର୍ମଳ ଜଳରେ ପାଦ ପଖାଳି ବେଗରେ
ଗର୍ଭକୁ କ୍ଷେପିଣ ଅର୍ଦ୍ଧେ ପକାଇଲା ଶିରେ ।
ମାତାଙ୍କୁ ଓଳଗି ହୋଇ ଉଠିଲା ତୁରିତ
ଉଜ୍ଜ୍ୱଳ ଦିଶିଲା ତାକୁ ଧ୍ରୁବ ପରିଯନ୍ତ ।
ସମରାଜ୍ୟ ପାଶୋରିଲା ନରୁଚିଲା ମନେ
ମନ ବଳାଇଲା ନେଇ ଶ୍ରୀଗୁରୁ ଚରଣେ ।
ପୁତ୍ରକୁ ହିଂ ଯୋଗୀକରି ମୁକୁତା ଜନନୀ
ଅସମ୍ଭାଳେ ନୟନରୁ ବହୁଅଛି ପାଣି ।
କିସ ପାଇଂ ଯେକୁ ବୁଧି କଲି ମୁହିଂ ନାରୀ
ଏକଇର ବଳା ମୋର ହେଲା ଉପଚାରୀ ।
ଦଶମାସ ଗର୍ଭେଧରି ହେଲି ଅପୁତ୍ରିକ
କୁଳ ଭାସିଗଲା ମୋର ହୋଇଲି ନିରକ୍ଷ ।
ଦଇବ ପୁରୁଷ ଯେହା ବିଚାରୁଛି ପୁଣି
ମାତା ପୁତ୍ର ଭିନ୍ନ ଭିନ୍ନ କରାଇଲୁ ଆଣି ।
ବଙ୍ଗରାଜ୍ୟ ସମ୍ପତ୍ତି ମୋ କେ ଭୋଗ କରିବ
ମୁହିଂ ସେ ଗୋବିନ୍ଦ ମନ କଲି ଉଦବେଗ ।

ହାଡ଼ିପା ବୋଇଲେ ତୁମ୍ଭେ ବିକଳ କିମ୍ପାଇ
ଅନେକ ପ୍ରକାରେ ବୁଦ୍ଧି କହିଲି ମଣାଇ ।
ଆପଣା ଇଚ୍ଛାରେ ପୁତ୍ର ଯୋଗୀ କରାଇଲୁ
ବାଳୁତ ସ୍ୱଭାବେ ମନ କିମ୍ପା ବଳାଇଲୁ ।
ଯେବେକି ଲୋଡ଼ିଲେ ଆଉ ପାଇ ସେହୁ କଥା
ମିଥ୍ୟାରେ ରୋଦନକରି ମନକରୁ ବ୍ୟଥା ।
ବୋଲଇ ଗୋବିନ୍ଦଚନ୍ଦ୍ର ଶୁଣସି ଗୋ ମାୟେ
ସାଧୁତ ମେଲିଣ ପୂର୍ବେ ବୋଇତ ଗୋଟିଏ ।
ସିନ୍ଧୁର ଲହରୀ ଘାତେ ଭାସିଲା ବୋଇତ
କୂଳରେ ନ ଲାଗି ସର୍ବ ଦ୍ରବ୍ୟଗଲା ହତ ।
ମୋତେ ସେହିମତ କରି ମୃତ୍ତୁଛ ଗୋ ମାୟେ
ସମୁଦ୍ରେ ଭାସିଲା ଭେଳା ଲୋଡ଼ିଲେକି ପାଏ ।
ତୁମ୍ଭେ ସେ କାରଣ ମୋତେ କଲ ଗର୍ଭଧାରୀ
ମୋହକର୍ମ ବଳେ ମୁଂ ସଂସାରୁ ଯିବି ତରି ।
କୁମର ବଚନେ ମାୟେ ଗଲେକ ନବରକୁ
ଗୁରୁଆଜ୍ଞ୍ୟାଂ ଦେଉଛନ୍ତି ଗୋବିନ୍ଦଚନ୍ଦ୍ରକୁ ।
ନବରକୁ ନ ଯା ବାବୁ ବସ ମଣ୍ଡପର
ଦିନଚାରି ରହି ଫେରିଯିବୁ ଦେଶାନ୍ତର ।
କୁମର ବଚନେ ମାୟେ ନବରକୁ ଚଳି
ମଣ୍ଡପେ ବସିଲା ରାଜା ମୃଗଛାଲ ମାଡ଼ି ।
ଯେମନ୍ତ ସମୟେ ଯେ ଶୁଭିଲା ଶଙ୍ଖଧ୍ୱନି
ପିକରାବ ଦେଲା ଯହୁଂ ପାଇଲା ରଜନୀ ।
ନଗ୍ର ନରନାରୀ ଯେ ବାହାର ହେଲେ ଘରୁ
ଦେଖିଲେ ବସିଛି ରାଜା ଅନାଇଲେ ଦୂରୁଂ ।
ସର୍ବାଙ୍ଗ ବିଭୂତି ମୟେ ହୃଦେ ଶୋହେ କନ୍ଥା
ଦେଖିଣ ଆଶ୍ଚର୍ଯ୍ୟ ଯେ ପାଇଲେ ମହାବ୍ୟଥା ।
ମୃଦୁସୁଲୀ ଗଣ ଯେହା ଦେଖିଲେକ ଯହୁଂ
ଅନ୍ତେପୁର ପୁରକୁ ସେ ଧାଇଂଗଲେ ତହୁଂ ।
ଯେଉଂଠାରେ ବସିଛନ୍ତି ରୋଦମା ପୋଦମା

ବାରତା କହନ୍ତି ଯାଇ ମୃଦୁସ୍ଵରୀ ବାମା ।
ଶୁଣ ମାୟେ ଠାକୁରାଣୀ ଦେଖିଲଇଂ ଯାହା
ଯୋଗୀ ବେଶ ହୋଇଛନ୍ତି ତୁମ୍ଭ ପ୍ରାଣନାହା ।
ମଣ୍ଡପରେ ବସିଛନ୍ତି ବିଭୂତି ଭୂଷଣ
କର୍ଣ୍ଣରେ ମୁଦୁରା ହୃଦେ କାଇ କନ୍ଥାମାନ ।
ନଗ୍ର ନାରନାରୀମାନେ ବେଢ଼ି ଦେଖୁଛନ୍ତି
ହାଡ଼ିପା ଯେ ଉଚାଟିଲା ଯେମନ୍ତ ବୋଲନ୍ତି ।
ରୋଦମା ପୋଦମା ବେନି ସପତଣୀ ଶୁଣି
ଆତ୍ମା ବିସର୍ଜିଲେ କି ବାଲୁତ ମତି ଜାଣି ।
ମୂଳରୁ ଛେଦିଲେ ଯେହ୍ନେ ତରୁ ତଳେ ପଡ଼େ
କେଶବାସ ଅସମ୍ଭାଳ ହୃଦୟ ଆକୁଳେ ।
ଘଡ଼ିକେ ଚେତନା ପାଇ ଉଠିଲେକ ରାଣୀ
ପ୍ରିୟସଖିମାନେ ମୁଖେ ସିଞ୍ଚୁଛନ୍ତି ପାଣି ।
ନବରୁ ବାହାର କେଶ ଅସମ୍ଭାଳ ହୋଇ
ଯେଉଂଠାରେ ବସିଛନ୍ତି ରାଜା ଗୋବିନ୍ଦାଇ ।
ସେଠାରେ ପ୍ରବେଶ ହେଲେ ରୋଦମା ପୋଦମା
ଉର୍ଦ୍ଧ୍ୱମୁଖ ହୋଇ ରଡ଼ି ଦେଲେ ଦୁଇ ବାମା ।
ତାହାଙ୍କ ପଛରେ ଅନେଶ୍ୱତ ପରିବାରୀ
ରାଜାଙ୍କର ମୁଖ ଚାହିଂ ପାଡ଼ନ୍ତି ବୋବାଳି ।
ଆହା ପ୍ରାଣନାଥ କେ ତୁମ୍ଭଙ୍କୁ କଲା ବାଇ
କାହାଠାରୁ ହୀନବୁଦ୍ଧି ଶିଖିଲ ଗୋସାଇଂ ।
ନବଲକ୍ଷ ବଳ ତୋର ଅନେଶ୍ୱତ ରାଣୀ
ଷୋହଳଶତ ହସ୍ତୀ ମୂଳଦନ୍ତୀ ଶତ ତିନି ।
ଚାରିଶତ ସିନ୍ଧୁଜାତି ଶତେକ ଖଇର
ବେନିଶତ ଟାଙ୍ଗଣ ଅଟଇ ନରେଶ୍ୱର ।
ଯେହିମତେ ଷୋହଳଶତ ତୋହର ପାରୁଶ
ତହିଂର ଉପରେ ଦଣ୍ଡସିଂହାସନେ ବସ ।
ଯେତେ ବଡ଼ ପଣଛାଡ଼ି ଯିବୁ ଦେଶାନ୍ତର
ବାହୁଡ଼ି ଗୋସାଇଂ ଆମ୍ଭ ବୋଲ ଶୀଘ୍ରକର ।

କର୍ଣ୍ଣରୁ ମୁଦ୍ରୁରା କାଢ଼ି କନ୍ଥା ଦୂର କର
ବିନୟରେ କହୁଅଛୁଂ ବାରେ ରକ୍ଷାକର ।
ହୀନ ବିଡ଼ମ୍ବଣ ରୂପ ହୋଇଲ କି ଅର୍ଥେ
କେ ତୁମ୍ଭଙ୍କୁ ବୁଦ୍ଧିଦେଲା ନକହ ଅଗ୍ରତେ ।
ରାଣୀଙ୍କୁ ନଚାହିଁ ରାଜା ଚାହିଁଲା ମେଦିନୀ
ଶୁଣସିଗୋ ରୋଦମା ପୋଦମା ବେନିରାଣୀ ।
ମାୟାମୋହ ତେଜି ଆମ୍ଭେ ଦେଶାନ୍ତର ଯିବୁଂ
ମୃତ୍ତିକା ଶରୀର ଗୋଟି ଅକ୍ଷୟ କରିବୁଂ ।
କୋଟିଯେ ପୁରୁଷ ମୋର ପାଇବେ କାରଣ
କାଳି ଲଗାଇବୁ ଆମ୍ଭେ ଯମର ମୁଖେଣ ।
ଦଣ୍ଡ ସିଂହାସନେ ମୋର ନରୁଚଇ ମନ
ମାୟେ କହିଛନ୍ତି ମୋତେ ଯେହି ବ୍ରହ୍ମଗ୍ୟାଂନ ।
ହାଡ଼ିପା ବୋଲିଣ ଗୁରୁ ଦୀକ୍ଷା ଦେଲେ ମୋତେ
ଯେ ପାପ ଶରୀର ମୁକ୍ତି ହୋଇବ ଯେମନ୍ତେ ।
ତୁମ୍ଭେତ ବିପୁଳ ଭୋଗ ଭୁଞ୍ଜିବ ସମୟେ
ଯେବେ ମନୁ ମୂର୍ଚ୍ଛି ମୋତେ ଧଉର୍ଯ୍ୟଧର କାୟେ ।
ନିରାଶ ହୋଇଣ ରାଣୀ ନବରକୁ ଯାଅ
ମାତା ମୁକୁତା ଦେଈକି ସେବା କରୁଥାଅ ।
କାନ୍ତର ବଚନ ଶୁଣି ହୋଇଲେ ବିକଳ
ମୁଖ ଟେକି ଯାହା ପ୍ରଭୁ ନ କହିଲ ଉତ୍ତର ।
କେମନ୍ତେ ବଳିବ ସତ ଆମ୍ଭଙ୍କୁ ଛାଡ଼ିବ
ଧର୍ମଦେବତା ତୁମ୍ଭଙ୍କ କେମନ୍ତେ ସହିବ ।
ବୋଲନ୍ତି ଗୋବିନ୍ଦଚନ୍ଦ୍ର ଶୁଣସି ଗୋ ରାଣୀ
ତୁମ୍ଭଙ୍କୁ ଚାହିଁଲେ ମୋର ଯୋଗହୋୟେ ହାନି ।
ମାସ ଦୁଇ ଚାରି ଫେରି ଆସିବୁ ଲେଉଟି
ଯେହି ବଙ୍ଗଦେଶରେ ହୋଇବା ଭେଟାଭେଟି ।
କାନ୍ତର ବଚନେ ରାଣୀ ହୋଇଲେ ବିକଳ
ମୁଖଟେକି ଚାହିଁ ପ୍ରଭୁ କହସି ଉତ୍ତର ।
ପୂର୍ବେ ଈଶ୍ୱରଙ୍କୁ ଆମ୍ଭେ ମାଗିଥିଲୁଂ ବର

ତପ ବଳେ ତୁମ୍ଭଙ୍କୁ ପାଇଲୁ ଦଣ୍ଡଧର ।
କୋଡ଼ିଏ ବରଷର ଗୋବିନ୍ଦଚନ୍ଦ୍ର ରାଜା
ଷୋଳବରଷର ରୋଦମା ପୋଦମା ଭାରିଯା ।
ଯେମନ୍ତ ସମୟ ରାଜା ଦେଶାନ୍ତର ଗଲେ
ଦଇବ ପୁରୁଷ ତୋତେ ନସହିବ ଭଲେ ।
ଆମ୍ଭେ ତୋ ଅର୍ଦ୍ଧ ଅଙ୍ଗ ମହାପାଟରାଣୀ
କଳିଙ୍ଗରାଜା ଦୁହିତା ବିରହ କାମେନୀ ।
ଆଶା ଆଉଂ ନିରାଶ କରନ୍ତି ଯେଉଂ ଜନ
ମହାପାପୀ ସଙ୍ଗେ କରେ ନରକ ଗମନ ।
ରୋଦମା ପୋଦମାକୁ ଯେ ବୋଲେ ମହୀଧର
କାହିଂକି ଗୋ ରାଣୀ ତୁମ୍ଭେ କରୁଅଛ ଗୋଳ ।
ଦଇବ ପୁରୁଷମାନେ କରନ୍ତି ବିଚ୍ଛେଦ
କେ ଆନ କରିବ ସୂଚୀମୁନେ ନାହିଂ ଭେଦ ।
ମଦନବାଣକୁ ଯେବେ ନ ପାରିବ ସହି
ଚୋରିରତି କରାଇବ ସପତଣୀ ଦୁଇ ।
ଅତିହିଂ ଅଗ୍ୟାଂନ ଯେବେ ହୋଇବାକ ମନ
ଦେଉଳେ ସମ୍ପଦା ତୁମ୍ଭେ ହୁଅ ଗୋ ବହନ ।
ନିରାଶେ ବୋଲଇ ରାଜା ଛାଡ଼ିଲି ସେନେହ
ଆମ୍ଭଙ୍କୁ ଅନାଇ କିମ୍ପା କରୁଅଛ କୋହ ।
ହୋଇବଇଂ ଯୋଗୀବେଶ ସାଧିବଇଂ ଯୋଗ
ଆବର କିସ କରିବି ରତିରସ ଭୋଗ ।
ଶୁଣି ପ୍ରତ୍ୟୁତ୍ତର ଦେଲେ ରୋଦମା ପୋଦମା
ପୂର୍ବ ଅପରାଧ ଆମ୍ଭ କେ କରିବ କ୍ଷମା ।
ଆହୋ ମହୀପତି ବଢ଼ି କହିବୁଂ ଯେ କେତେ
ମଣ୍ଡପରେ ମଠକରି ଯୋଗ ସାଧ ନିତ୍ୟେ ।
ସୁବର୍ଣ୍ଣ ଳାଉରେ ଆମ୍ଭେ ମାଗୁଥିବୁଂ ଭିକ୍ଷା
ଦଳବଳ ଲୋକ ଆମ୍ଭେ ଖଟିଥିବୁଂ ଇଛା ।
ଅଗୁରୁ ଚନ୍ଦନ ଚୁଆ ଚନ୍ଦନର ଶ୍ରେଣୀ
ଯେହାପରେ କରିଦେବୁଂ ଝିଙ୍କର ଛାଉଣୀ ।

ଯେକାନ୍ତ ଶୟନେ ନିଦ୍ରା ମାଡ଼ିବ କେମନ୍ତେ
ଗୁପତେ ଖଟାଇ ଭିକ୍ଷା ତୁମ୍ଭର ଅଗ୍ରତେ ।
ଶୁଣ ହେ ରାଜନ ତୋତେ ସଂକ୍ଷେପି କହିବା
ବଡ଼ଯୋଗୀ ବୋଲାବନ୍ତି ଅନାଦି ମହାଦେବା ।
ବିଷ୍ଣୁ ପ୍ରଳୟରେ ଯାର ନୋହେ ନିଦ୍ରାଭଙ୍ଗ
ତାହାର ରମଣୀ ଯେ ପାର୍ବତୀ ଥାଇ ଅଙ୍ଗ ।
ଚଉଷଠି ସିଦ୍ଧ ଆଦି ମୀନ ଯେ ଗୋରେଖ
ଯେମାନେହିଁ ନ ଛାଡ଼ନ୍ତି ତରୁଣୀର ସୁଖ ।
ତହୁଁନିକି ବଡ଼ଯୋଗୀ ହୋଇବୁ ରାଜନ
କାଳେ ଯେତେ ଯୋଗ ନରହିବ ଯୋଗୀପଣ ।
ମଦନରାୟ ବାଣକୁ ନ ପାରୁ ଯେ ସହି
ନପୁଣ ହସନ୍ତି ସବୁ ନାକେ ହସ୍ତଦେଇ ।
ଦନ୍ତରେ ତିରଣ ଧରି ମାଗୁଅଛୁଂ ଆମ୍ଭେ
ସମୟେକ ରହି ରାଜା ଭୋଗକର ତୁମ୍ଭେ ।
ମନକୁ ବୋଧିଲୁଂ ସୁଖ ଛାଡ଼ିଦେଲୁଂ ଆମ୍ଭେ
ବଳେନିକି ସୁଖଭୋଗ କରାଇବ ତୁମ୍ଭେ ।
ବୋଇଲ ହେ ମଠ ତୋଳିଦେବ ପାଟନେତ
ସେସବୁ ବିଷୟ ନରୁଚଇ ମୋର ଚିତ୍ତ ।
ମଣ୍ଡପ କୋଣରେ ଥିବି ଯେହୁ ମୋର ଇଚ୍ଛା
ତ୍ରିପୁତି ହୋଇବି ମୁଠାଏ କରିଣ ଭିକ୍ଷା ।
ରୋଦମା ବୋଇଲେ କୋପେ ପ୍ରଜ୍ୱଳିତ ହୋଇ
ଆରେ ରେ ହାଡ଼ିପା ଯେଡ଼େ କର୍ମ କଲୁ ତୁହି ।
ତୋହର ମୁଣ୍ଡରେ ବଜ୍ର ପଡୁରେ ପାମର
ଯମ ତୋତେ ଠାବଦେଉ ରୌରବ ନର୍କର ।
ନର୍କ ଆଶ୍ରେକରି ତୋ ସର୍ବଦା ଯାଉଦିନ
ନୁହ ତୁ ମୁକତ ପୃଥ୍ୱୀ ଥିବ ଯେତେଦିନ ।
ତୁ ତ ଜନ୍ମ ହୋଇକରି ଯେଡ଼େକ ଅଗ୍ୟାଂନ
ଯେଡ଼େ ବଡ଼ ରାଜା ଯେ ହୋଇଲା ଯୋଗୀପଣ ।
ରାଜାର କୁମାରୀ ଆମ୍ଭେ ଶତ ସପତଣୀ

ସବୁରି ନିଃଶ୍ୱାସ ପଡୁ ତୋହର ମୂର୍ଦ୍ଧନୀ ।
କୁଳଦୀପ ଲିଭାଇ ଅନ୍ଧାର କଲୁ ଘର
ରାଜା ଥାଉଂ ରାଣୀ ରାଣ୍ଡ କଲୁ ତୁ ନିକର ।
ଯେତେ ବୋଲି ପାଷାଣ ଉପରେ ଯାଇଂ ପଡ଼ି
ହସ୍ତରୁ କାଢ଼ିଲେ ଶଙ୍ଖା ସ୍ୱର୍ଣ୍ଣଖଡୁ ଚୂଡ଼ି ।
ଧାତିକାରେ ପରିବାରୀ ଧଇଲେକ ତୋଳି
କେଶବାସ ଅସମ୍ଭାଳ ହୃଦରେ ବିକଳି ।
ତୁମ୍ଭେ ଲୋ ପରର ଝିଅ ଆମ୍ଭେ ପର ପୁଅ
ସଂସାର ଆଚାରେ ତୁମ୍ଭ ଆମ୍ଭରଟି ସ୍ନେହ ।
ଛାଡ଼ିଲାର ଭାରିଯା ଯେ ବାପର·ବଇରି
ଯେତେ ଇଚ୍ଛା ଆମ୍ଭଙ୍କୁ ଲୋ ଦେଇଯାଅ ଗାଳି ।
ରାଣୀ ବୋଲେ ଅବଧାନେ ଶୁଣିମା ଗୋସାଇଂ
ପୂଜନୀୟ ଜନେ ଗାଳି ଦେବୁ କିସ ପାଇଂ ।
ଯେବେ ଆମ୍ଭର କର୍ମରେ ଅଛଇ ବିଧବା
ମହୁରା ଗୋଳି ପିଇବା କି ଅର୍ଥେ ଜୀଇଂବା ।
ନୃପତି ବୋଇଲେ ତୁମ୍ଭେ ଜୀଅ ଅବା ମର
ନୋହିଲେ ନ ମରି ତୁମ୍ଭେ ଭିନ୍ନେ ଘର କର ।
ସୁଖମନେ ତୁମ୍ଭଙ୍କୁ ଆମ୍ଭର ଶୋକ ନାହିଂ
ଇଚ୍ଛାହେଲେ ସମ୍ପଦ ଭଣ୍ଡାର ନିଅ ବହି ।
ହାଡ଼ିଘରେ ପଶଯାଇ ଦାଣ୍ଡେ କର ଘର
ଯେଠାରୁ ବହନ ଚଳ ନକର ଚହଳ ।
ଆଜଠାରୁ ମଲାବୋଲି ଲେଖିବ ଆମ୍ଭଙ୍କୁ
ଇଚ୍ଛାହେଲେ ରହି ସେବା କରିବ ମାତାଙ୍କୁ ।
ଯେହା ଶୁଣି ରୋଦନ କରନ୍ତି ଶତେବାଳୀ
ସମସ୍ତେ ଯୁବତୀ ଜଣେ ନାହିଂ ମଧ୍ୟ ଭଳି ।
ଚନ୍ଦ୍ରମାଙ୍କୁ ତାରାଗଣ ଯେହ୍ନେ ବେଢ଼ିଥାନ୍ତି
ସେହିମତି ଗୋବିନ୍ଦଚନ୍ଦ୍ରଙ୍କୁ ଶୋଭା ପାନ୍ତି ।
ପୁଣିହିଂ ନିର୍ଲ୍ଲଜ ହୋଇ ବୋଲୁଛନ୍ତି ବାଳୀ
ଦିନ ନ ସରଇ ରାଜାଙ୍କର ଗୁଣ ଭାଳି ।

ଛଡ଼ ମାସ ରାଜାଙ୍କର ମଣ୍ଡପରେ ରହି
ଆମ୍ଭେ ସେ ମୁକତି ପାଉଂ ବଙ୍ଗଦେଶ ସାଇଂ ।
ଅମୃତ ମଶୋହି ଖଟିଥିବୁ ବେନି ବେଳ
ଛାର ଶଯ୍ୟା ଛାଡ଼ି ଶୁଅ ପଲଙ୍କ ଉପର ।
ଗୋବିନ୍ଦଚନ୍ଦ୍ର ବୋଲେ ନ କହ ବଢ଼ିକରି
ଭିକ୍ଷା ଭଜେ ଆନନ୍ଦେ ମୋ ମନ ଶୀଘ୍ର କରି ।
ମଢ଼ଫୁଲି ଅନ୍ନ ମୋତେ ଲାଗେ ବିଷ ପିତା
ପାଟ ନେତ ପଲଙ୍କକୁ ନାହିଂ ମୋର ଚିନ୍ତା ।
ଭୂମିଗତ ଶଯ୍ୟା ରାଣୀ ସୁଖ ଯେ ଅଟଇ
ପବନ ଆଲଟେ ଦେହ ଉଶ୍ୱାସ କରଇ ।
ପଲଙ୍କେ କାଟଇ ଦେହ ଶୁଣସି ଗୋ ରାଣୀ
ଶରୀରକୁ ନିଦ୍ରା ମୋର ନମାଡ଼େ ରୟଣୀ ।
ରାଣୀ ବୋଇଲେ ଯେ ତୁମ୍ଭେ ଯୋଗୀ ହୋଇଯିବ
ରୋଦମା ପୋଦମା ତୁମ୍ଭ ସଙ୍ଗେ ଘେନିଥିବ ।
ପ୍ରବାସରେ ସେବା କରିଥିବୁ ମନ ଜାଣି
ଶଯ୍ୟା ଛାଡ଼ି ଆନଠାରେ ଶୁତିବୁ ରୟଣୀ ।
ଆମ୍ଭେ ଯେ ପତିରେ ଭକ୍ତା ଅଟୁ ବେନି ବାମା
ଅନ୍ୟପୁରୁଷର ଛାଇ ନଦେଖୁ ଯେ ସୀମା ।
ନିଜ କାନ୍ତ ବିନୁ ଆମ୍ଭ ଅନ୍ୟ ଗତି ନାହିଂ
ତେଣୁ ସେ ହୃଦୟ ଫାଟି ଯାଉଛି ଗୋସାଇଂ ।
ଶୟନ ଶଯ୍ୟାରେ ପିଠି ନ ଦେଉ ଆମ୍ଭଙ୍କୁ
ଯେତେକ ନିରାଶ କିମ୍ପା କରୁଛ ଏବକୁ ।
ଗୋବିନ୍ଦଚନ୍ଦ୍ର ରାଜନ ବୋଲଇ ବଚନ
ନକହ ବୋଇଲେ କହ ସେହି କଥାମାନ ।
ତୁମ୍ଭଙ୍କୁ ଘେନିଣ ଆମ୍ଭେ ଗଲେ ଦେଶାନ୍ତରେ
ଯୋଗ ପଥ ଅପ୍ରାପତ ହୋଇବ ମୋହରେ ।
ତୁମ୍ଭେ ଯେ ମଦନ ବାଣ ନପାରିବ ସହି
ବିଜୁଳି ପବନ କାହିଂ ହସ୍ତେ ଧରାହୋଇ ।
ରାଜରାଣୀ ସୁଖ ଭୋଗ ଆଜଠାରୁ ଗଲା

ଦଇବ ପୁରୁଷ ଯେହା ଭିନ୍ନ ଭିନ୍ନ କଲା ।
ଗୁରୁ ମନ୍ତ୍ର ଦେଲାଠାରୁ ଅଙ୍ଗେ ନାହିଁ ଖେଦ
ଦଶଦ୍ୱାରେ ମହାବନ୍ଧ ନୋହିବାକୁ ଭେଦ ।
ରାଜାର ବସନ ତେଜି ବହିବୁ ଯେ କନ୍ଥା
ଆଗ୍ୟାଂ ଦେଇଛନ୍ତି ମୋ ମୁକୁତାଦେଈ ମାତା ।
ରାଣୀ ବୋଲେ ଆହେ ରାଜା ତୁମ୍ଭେ ତ ମହତ
ମହତକୁ ଆଶ୍ରେକରି ହୋଇଲୁଂ ଅନାଥ ।
ଦୁଇକୂଳ ଛାଡ଼ି ମଧ୍ୟେ ଭାସିଲୁ ଜଳର
ମାତା ପିତା ଭାଇ ବନ୍ଧୁ ଛାଡ଼ିଲୁ ନିଜର ।
ଜଳ ଶୁଖିଗଲେ କାହିଁ ମୀନ ଜୀବ ରକ୍ଷା
ଚନ୍ଦ୍ରମା ନଥିଲେ ତାରା ନୋହିବେ ଯେ ଲେଖା ।
ପତିର ବିହୀନେ ପତ୍ନୀ କି କରି ବଞ୍ଚଇ
ଭୋ ଦଇବ ପୁରୁଷ ବିଚାରୁ କିନା ତୁହିଁ ।
କପାଳରେ କର ମାରି ଚାହାନ୍ତି ଆକାଶ
ରାଜାକୁ ଚାହିଁ ବୋଲନ୍ତି ନ କର ନିରାଶ ।
ଭଲା ସେ ଶାଶୂ ଅଟନ୍ତି ପୁର ଗୁରୁଜନ
ଯୋଗୀକରି ଦେଉଛନ୍ତି ଯେକଇ ନନ୍ଦନ ।
କାହା ଘେନି ରାଜ୍ୟ ସେ କରିବ ମହାଦେଈ
ଆମ୍ଭେ ଶୋକ କଲେ ତାକୁ ଚିନ୍ତା ନମାଡ଼ଇ ।
ସ୍ତ୍ରୀମାନଙ୍କ ବେଦନା ସେ ନପାରନ୍ତି ଜାଣି
ସବୁଅଙ୍ଗ ଯେକତ ନୁହଇ ଭିନ୍ନ ପୁଣି ।
ଯେବେ ହୋ ରାଜନ ଆମ୍ଭ ବୋଲ ନ କରିବୁ
ସମସ୍ତେ ମରିବୁ ତୋ ଉପରେ ହତ୍ୟାଦେବୁ ।
ଯୁଗତେ ତାହାର ଭଗ୍ନୀ ସମୟେ ପଡ଼ନ୍ତି
ବିକଳେ ଯୁବତୀମାନେ ବାତୁଳେ କହନ୍ତି ।
ବୋଲଇ ଗୋବିନ୍ଦଚନ୍ଦ୍ର ଶୁଣସି ଗୋ ରାଣୀ
ମନ ମହାପ୍ରଭୁ କେତେ କଥା କରେ ଆଣି ।
ଯହିଁକି ବଳାଇ ମନ ତହିଁକି ବଳଇ
କାହାରି ବଳରେ ଆନ କରିତ ନୁହଇ ।

ଯେତେଦିନ ଯାଏ ଲୋ ଭାରିଯା ହୋଇଥିଲ
ଆଜଠାରୁ ଧର୍ମମାତ ନିଶ୍ଚୟ ହୋଇଲ ।
ମାତାପୁତ୍ରେ ଭେଟ କାହିଁ ଅଛି ଗୋ ରୋଦମା
ଅଗାଧେ ଭାସିଲେ ଭେଳା କାହୁଁତ ଆଣିମା ।
ଯେଣୁ ସେ ଗୋବିନ୍ଦଚନ୍ଦ୍ର କରିଲେ ନିରାଶ
ରୋଦମା ପୋଦମାଙ୍କର ଉଡ଼ିଲା ସାହସ ।
ଯେମନ୍ତ ସମୟେ ଯେ ରାଉତ ଷୋଳଶତ
ତେରଶତ ଶାବେଳି ଆବର ଶତେ ଓଟ ।
ନବଲକ୍ଷ ବଙ୍ଗବଳ ଆସିହେଲେ ଜୁଣ୍ଡ
ମୁଖରାବ ଶବଦରେ କମ୍ପିଲା ବ୍ରହ୍ମାଣ୍ଡ ।
ବାଗୁଆଳ ବୁଆଳ ଘଡ଼ଇ ଘଡ଼ିତାଳ
ପ୍ରକୃତି ସେବକଠାରୁ ଯେତେ ବାଦ୍ୟକାର ।
ସମରାଜ୍ୟରେ ପ୍ରଜାଏ ମିଳିଲେ ସକଳ
ବେଢ଼ିଲେ ମଣ୍ଡପ ତଳେ ତିଳେ ନାହିଁ ସ୍ଥଳ ।
ଶିରେକର ଦେଇ ସର୍ବେ କଲେ ନିଉଛାଳି
ଉଠି କରପତ୍ର ଯୋଡ଼ି ପକାନ୍ତି ବୋବାଳି ।
ରାଉତେ ବୋଇଲେ ହୋ ଗୋବିନ୍ଦଚନ୍ଦ୍ର ରାଏ
ଲକ୍ଷବଳଯାକ ଆମ୍ଭେ ଅଇଲୁ ସଭିଏଁ ।
ଯେତେ ସୈନ୍ୟପରେ ଯାହାଙ୍କର ଅଛି ପଣ
ସେ ରାଜାକି ତ୍ୟାଗକରେ ଦଣ୍ଡ ସିଂହାସନ ।
ଆମ୍ଭଙ୍କୁ ଛଡ଼ିଣ ତୁମ୍ଭେ ନ ଯାଅ ଗୋସାଇଂ
ବହୁତ ବଚନ ଭାଙ୍ଗିଲେ ତ କାର୍ଯ୍ୟ ନୋହି ।
ରାଜାହୋଇ ଦ୍ୱାରେ ଦ୍ୱାରେ ମାଗୁଥିବ ଭିକ୍ଷା
ପଞ୍ଚୁକୋଳି ଅନ୍ନକୁ ବଳିଲା ତୁମ୍ଭ ଇଚ୍ଛା ।
ବଧିର ଶୁଣଇକି ସେ କମ୍ଭୁରସ ବାଣୀ
ନଶୁଣଇ ରାଜା ହେଠମାଥେ ଅଛି ପୁଣି ।
ପୁଣିହିଁ ମାହନ୍ତମାନେ ଜଣାଇଲେ ଛାମୁ
ସାବଧାନେ ଶୁଣ ରାଜା ହୋଇ ଅବଧାନୁ ।
ଯୋଗୀ ହେଲେ ରାଜ୍ୟେକ କରି ବଇଭୋଗ

ନାହିଁ ଭ୍ରାତୃ ପୁତ୍ର ରିପୁ କଳନା କରିବ ।
ଅନେଶ୍ୱତ ମହାଦେଈ ବେନି ପାଟରାଣୀ
ଯେହାଙ୍କୁ କେ ସମ୍ଭାଳିବ କହବୁଦ୍ଧି ପୁଣି ।
ଗର୍ଭଧାରୀ ମାତା ପୁଣି ଅଛନ୍ତି ନବର
କେମନ୍ତେ ଧରିବ ହିଆ ଜଳିବ ଅନଳ ।
ଆମ୍ଭଙ୍କୁ ଅନାଥ ନକର ହେ ବଙ୍ଗସାଇଂ
କେ ଆମ୍ଭଙ୍କୁ ପାଳିବ ପୋଷିବ ଅନ୍ନଦେଇ ।
ବାହୁଡ଼ି ଗୋବିନ୍ଦଚନ୍ଦ୍ର ନବରକୁ ଆସ
ହାଡ଼ିପା ଛାର ପାଗଳ କଥାରେ ବିଶ୍ୱାସ ।
ମଉନ ହୋଇଣ ବସିଥିଲା ନୃପମଣି
ଗୁରୁଙ୍କର ନିନ୍ଦା ବାଣୀ କର୍ଣ୍ଣପଥେ ଶୁଣି ।
ଆହେ ଲକ୍ଷବଳ ତୁମ୍ଭେ ତୁନି ହୋଇଯାଅ
ନ ଜାଣି ନ ବୁଝି ଯେ ଗୁରୁଙ୍କୁ ଗାଳିଦିଅ ।
ନାହିଁ ଆମ୍ଭର ଯେ ଇଚ୍ଛା ନ ଯୋଗାଇ କିଛି
ନ ଯୋଗାଇ ନବର କେବଣ ସୁଖ ଅଛି ।
ନ ଯୋଗାଇ ରାଣୀ ପାଟ ମହାଦେଈ ମାନ
ଯୋଗୀ ହୋଇଲଇଂ ମାତ ଆଗ୍ୟାଂ ପରମାଣ ।
ତୁମ୍ଭେ ଲକ୍ଷବଳ ହୋଇଥିଲଟି ଆମ୍ଭର
ଆଜଠାରୁ ନିଶ୍ଚୟ ହୋଇଲ ତୁମ୍ଭେ ପର ।
ଇଚ୍ଛା ହେଲେ ମାତାଙ୍କ ପଦେ ଖଟିଥାଅ
ତୁମ୍ଭମାନଙ୍କ ଇଚ୍ଛାରେ ଅନ୍ୟ ନଗ୍ରେ ଯାଅ ।
ମାତା ଯେବେ ବୁଝିବେ ତୁମ୍ଭର ହାନିଲାଭ
ଆମ୍ଭଙ୍କୁ କିମ୍ପାଇଂ କହିଆସ ସଦଭାବ ।
ଲେଛିଲାର କଥା କି ଲୋଡ଼ିଲେ ଆଉପାଇ
ବ୍ରହ୍ମାବିଷ୍ଣୁ ଶିବ ବିନୁ ଅନ୍ୟ କେ ନୋହଇ ।
ତହୁଂ ଦଳବଳମାନେ ହୋଇଲେ ନିରାଶ
ରାଉତଙ୍କ ସେନାପତି ସେବାକାରୀ ବଂଶ ।
ଶିରେ କରଦେଇ ସର୍ବେ କହନ୍ତି ବିନୟୀ
ଯେବେ ଯୋଗୀ ହୋଇବଟି ବଙ୍ଗଦେଶ ସାଇଂ ।

ତୁମ୍ଭର ନିରାଶେ ଆମ୍ଭେ କାହାକୁ ଓପ୍ରୋଧ
ଗତବାକୀ ଲେଖାକରି ଦିଅ ମହାରାଜ ।
କ୍ଷତ୍ରିମାନଙ୍କର ଲାଗି ଯିବା ନ ଯୋଗାଇ
ଦଳ ଲୋକଙ୍କର ଲେଖି ନ ଦିଅ କିମ୍ପାଇଂ ।
ଯେବେ ତୁମ୍ଭେ ନଗରକୁ କରିବ ଗମନ
ନ ମାଗିବୁ ଗତ ବାକୀ ଭାତ ବରତନ ।
ଏମନ୍ତ ବଚନ ଯହୁଂ ରାଉତ ବୋଇଲେ
ଶୁଣିଣ ଗୋବିନ୍ଦଚନ୍ଦ୍ର ହରଷ ହୋଇଲେ ।
ବେଭାରେତ ଦେଶାନ୍ତର କରୁଅଛି ମୁଇଂ
ଦଳଲୋକଙ୍କର ଲାଗି ଯିବ କାହିଂ ପାଇଂ ।
ପଛଆଡ଼େ ନାନା ଗାଳି ଦେଉଥିବେ ମୋତେ
ଅଧର୍ମ କାହାଣୀ କିମ୍ପା ଶୁଭିବ ଜଗତେ ।
ଏତେ ବୋଲି ଆଗ୍ୟାଂ ଦେଲେ ମହତ ରାଜନ
ଦଳକରଣଙ୍କୁ ରାଇ ଆଣରେ ବହନ ।
ତତକ୍ଷଣେ ଡଗରା ଯେ ଆଣିଲେ ହକାରି
ଆଗ୍ୟାଂ ବୋଲି ଦେଲେ ଯେ ଗୋବିନ୍ଦ ଦଣ୍ଡଧାରୀ ।
ତୁହୋ ଦଳକରଣ ଲେଖାରେ ଦିଅ ମନ
ରାଉତ ମାହୁନ୍ତ ମୋର ଯେତେକଟି ସୈନ୍ୟ ।
ଗତ ବାକୀ ବରତନ ଅଛି ଯାର ଯେତେ
ସବୁ ଗୋଟା କରିଣ ବହନ କହ ମୋତେ ।
ଦଇବେ ପ୍ରତାପୀ ସେ ଗୋବିନ୍ଦଚନ୍ଦ୍ର ରାୟେ
କରଣ ବୋଇଲା ସ୍ୱାମୀ କହିବି କଥାୟେ ।
ଲେଖାରେ ବସିଲା ଯାଇଂ ସୁବୁଦ୍ଧି କରଣ
ଆଗହୁଂ ଜଣାଏ ଯାର ଯେତେ ବରତନ ।
ପଡ଼ିହତ ଚଉକତ କରଣଟି ଯେତେ
ସବୁଙ୍କୁ ବସାଇ ଲେଖାଇଲାକ ତୁରିତେ ।
ରାଉତ ମାହୁନ୍ତ ଯେ ପଦାନ୍ତି ଭୃତ୍ୟଙ୍କର
ବ୍ରାହ୍ମଣ ଚାଣ୍ଡାଳ ଯେ ଘଡ଼ଇ ଘଡ଼ିତାଳ ।
ସବୁ ଯେକ ଠାବକଲା ସୁବୁଦ୍ଧି ମହାନ୍ତି

ଗୋବିନ୍ଦଚନ୍ଦ୍ର ସନ୍ନିଧେ ମିଳିଲା ତଡ଼ତି ।
ସାବଧାନ ହୋଇ ତୁମ୍ଭେ ଶୁଣିମା ଗୋସାଇଁ
ଗତ ବାକୀ ବରତନ କହିବି ବୁଝାଇ ।
ସମରାଜ୍ୟେ ଆମ୍ଭର ଯେତେକ ଦଳବଳ
ପ୍ରକୃତି ସେବକଠାରୁ ଯେତେ ବାଦ୍ୟକାର ।
ସବୁଯେକ ଠୁଳକରି ଜଣାଉଛି ମୁହିଁ
ବେନି ପଦ୍ମ ପନ୍ଦର ମର୍ଭୁତ ଟଙ୍କା ହୋଇ ।
ଗତ ବରତନ ଯେଯେ ଟଙ୍କା ଆମ୍ଭେ ଲାଗି
ଶୁଣି ବଡ଼ ସନ୍ତୋଷ ହୋଇଲେ ମହାଯୋଗୀ ।
ଆହେ ପଟ୍ଟନାୟକ ବହନ ହୋଇ ଯାଅ
ମାତାଙ୍କର ଛାମୁରେ ଯେ ବହନ ଜଣାଅ ।
ଭଣ୍ଡାର ଘର ଫେଡ଼ି ବହନ ଟଙ୍କା ଆଣ
ପାଇକ ରାଉତମାନେ ଯାଆନ୍ତୁ ବହନ ।
ଗୋବିନ୍ଦଚନ୍ଦ୍ର ବଚନେ ଚଳିଲା କରଣ
ମାତାଙ୍କ ଛାମୁରେ ଯାଇଁ କହିଲା ବହନ ।
ଶୁଣ ମାଯେ ଆଗ୍ୟାଂତୋଳି ଦେଲେ ମହାରାଯେ
ଲକ୍ଷ ବଳଯାକ ସବୁ ଅଛନ୍ତି ସମୂହେ ।
ଯେତେ ଗତ ବାକୀ ବରତନ ଥିଲା ରହି
ସମସ୍ତେ ଆସ୍ଥାନ ତଳେ କହିଲେ ଗୋସାଇଁ ।
ମୋତେ ରାଯେ ଲେଖାକର ବୋଲି ଆଗ୍ୟାଂଦେଲେ
ଗତ ବାକୀ ବରତନ ଲେଖାକଲି ଠୁଳେ ।
ବେନିପଦ୍ମ ଟଙ୍କା ଯେ ପନ୍ଦର ମରଭୂତ
ଭଣ୍ଡାରୁ ଯେତେକ ଗଣି ଦିଅସି ତୁରିତ ।
ତକ୍ଷଣେ ମୁକତା ଦେଇ ହୋଇଲେ ବାହାର
ବେଗରେ ମିଳିଲେ ଯେ ଭଣ୍ଡାର ସିଂହଦ୍ୱାର ।
ଭଣ୍ଡାର ନାୟକକୁ ବୋଇଲେ ମହାଦେଈ
ଭଣ୍ଡାର ବହନ ଫେଡ଼ି ଦିଅସିରେ ତୁହିଁ ।
ଆଗ୍ୟାଂପାଇ ବହନ ଫେଡ଼ିଲେ ରକ୍ଷାପାଳେ
ସିନ୍ଦୁକରୁ ଫେଡ଼ିଣ ଯେ ଦେଲେ ଧାଡିକାରେ ।

ବେନିପଦ୍ମ ପନ୍ଦର ମର୍ତ୍ତ୍ୟ ଟଙ୍କା ଦେଲେ
ଆସ୍ଥାନର ତଳେ ନେଇ ସବୁକୁଡ଼ ବଳେ ।
ବୋଇଲେ ଗୋବିନ୍ଦଚନ୍ଦ୍ର ଶୁଣ ଲକ୍ଷବଳ
ସେ ଯାହା ବର୍ତ୍ତନ ବାକୀ ନିଅସି ତୁମ୍ଭର ।
ୟେକକୁ ଆରେକ ଚାହିଁ ବୋଲନ୍ତି ରାଉତେ
ରାଜାଯୋଗୀ ହୋଇଛି ଯେ ବୋଲନ୍ତି ଜଗତେ ।
ୟେଣୁକରି ବିକଳ ଯେ ମାଡ଼ିଲା ସବୁନ୍ତି
ବିନୟେ କହନ୍ତେ ଆମ୍ଭ ବୋଲ କଲା ନାସ୍ତି ।
ବର୍ତ୍ତନ ମାଗିଲେ ଗଣି ଦେଲା ଦଣ୍ଡଧାରୀ
ଓପ୍ରୋଧ ଛାଡ଼ିଲା ଯିବ ଦେଶାନ୍ତର କରି ।
ୟେକା ଜଣକରେ ସୁସ୍ଥ ହୋଇଥିଲା ସୀମା
ରାଜା ନଥିଲେ ଯେ କେହ୍ନୁ କରିବ ଗଣନା ।
ବାବୁୟେ ଷୋଡ଼ଶ ବର୍ଷ ସୁନ୍ଦର ମୂରତି ।
ପାଶୋର ନଯାଇ ହୃଦ ହେଉଚି କରତି ।
ଏମନ୍ତ ସମୟେ ଯେ ମୁକୁତା ଦେଇ ରାଣୀ
ପୁତ୍ରକୁହିଁ ଯୋଗାଇଲେ ଅନ୍ନଭିକ୍ଷା ଆଣି ।
ସୁବର୍ଣ୍ଣ ଥାଳିରେ ଅନ୍ନ ଶାକର ମିଶାଇ
ଭୁଞ୍ଜାରେ ଗୋବନ୍ଦଚନ୍ଦ୍ର ବିହି ଯାହା ଲିହି ।
ବୋଲଇ ଗୋବିନ୍ଦଚନ୍ଦ୍ର ଶୁଣଗୋ ଜନନୀ
ସୁବର୍ଣ୍ଣ ଥାଳିରେ ଅନ୍ନଦେଲ କିମ୍ପା ଆଣି ।
ଗୁରୁଆଜ୍ଞାଂ ଦେଇଛନ୍ତି ଲାଉରେ ଭୁଞ୍ଜିବୁ
ତେବେସେ ସଂସିଦ୍ଧ ଗୁଣ କାରଣ ପାଇବୁ ।
ଶୋକେ ଗଦଗଦ ହୋଇଲେକ ଗର୍ଭଧାରୀ
ସୁବର୍ଣ୍ଣ ଥାଳିରୁ ଅନ୍ନ ଲାଉଥାଳେ ଭରି ।
ଭୁଞ୍ଜିଣ ଗୋବିନ୍ଦଚନ୍ଦ୍ର ମନୟେ ଆନନ୍ଦ
ମୁଖ ବିକାଶଇ ତାର ପୂର୍ଣ୍ଣିମାର ଚନ୍ଦ୍ର ।
ଲକ୍ଷବଳ ମୁଖ ଚାହିଁ ହେଠମାଥ କରି
ନବ ଲକ୍ଷ ବଳଯାକ ପାଡ଼ିଲେ ବୋବାଳି ।
ଆହେ ମହୀପତି ତୁଯେ ଅପୁତ୍ରିକ ଜନ

ସନ୍ତାନ ସନ୍ତତି ହଉ ଲେଉଟ ବହନ ।
ଅପୁତ୍ରିକ ବଦନ ଚାହିଁବା ବଡ଼ ଦୋଷ
କୁଳରକ୍ଷା ହେଉ ଶୋଭା ପାଉ ବଙ୍ଗଦେଶ ।
ଗୋବିନ୍ଦଚନ୍ଦ୍ର ବୋଇଲେ ପୁତ୍ର କି କରିବି
ମାୟା ମୋହ ଥାଇ ନିକି ଘର କରୁଥିବି ।
ସଂସାରେ ବାଛନ୍ତି ସିନା ଅପୁତ୍ରିକ ଦୋଷ
ମନରଖି ପାରିଲେ କୁମର ହେବ କିସ ।
ମୂଳଥିଲେ ଡାଳ ତହୁଁ ପଲ୍ଲବଇ ସିନା
ମୂଳ ଗଲେ ଡାଳର ପ୍ରଳୟ ହୋଯେ କିନା ।
ଆହେ ଲକ୍ଷବଳ ତୁମ୍ଭେ ତୁନି ହୋଇ ଯାଅ
ମାତାଙ୍କ ଚରଣତଳେ ସେବା କରୁଥାଅ ।
ସୁଖ ଭୋଗ କରୁଥିବ ନକରିବ ଆନ
ଯେମନ୍ତ କହିଲେ ଯହୁଁ ଗୋବିନ୍ଦରାଜନ ।
ନିରାଶ ହୋଇଣ ଦଳବଳ ଲେଉଟିଲେ
ମାତାଙ୍କୁ ଚାହିଁଣ ରାଜା ବଚନ ବୋଇଲେ ।
ରୋଦମା ପୋଦମା ଲାଗନ୍ତିଟି ତୋତେ ମାୟେ
ମନ ମୂରୁଛଇ ଗୋ ଧଇର୍ଯ୍ୟ ଧର କାୟେ ।
ଦେଶ ରାଷ୍ଟ୍ର ପାଳି ତୁମ୍ଭେ ରାଜ୍ୟକରୁଥିବ
ଶୁଭ ଆଚରିଣ ମୋତେ କଲ୍ୟାଣ ବାଞ୍ଛିବ ।
ବହନ ମେଲାଣି ଦିଅ ଯିବି ଦେଶାନ୍ତର
ମାତାୟେ ବୋଇଲେ ସିଦ୍ଧ ହୁଅରେ କୁମର ।
ମିଳିଲେ ମୁକୁତୀ ଦେଈ ବେନିରାଣୀ କତି
ଅସାଷ୍ଟମ ହୋଇଣ ସେ ପଡ଼ିଛନ୍ତି ଖିତି ।
କରଧରି ତୋଳିଲେ ମୁକୁତା ମହାଦେଈ
ଉଠଗୋ ନବରେ ଯିବା ବୋଲି ଆଗ୍ୟାଂଦେଇ ।
ଚାରିମାସେ ଆସିବେ ଗୋବିନ୍ଦଚନ୍ଦ୍ର ରାଜା
ସେ ହୋଇବେ କାନ୍ତ ତୁମ୍ଭେ ହୋଇବ ଭାରିଯା ।
ପ୍ରବୋଧି କହନ୍ତେ ରାଣୀ ଉଠିଲେ ବହନ
ଅନ୍ତଃପୁରକୁ ସେ ଶୀଘ୍ର କଲେ ଯେ ଗମନ ।

ରୋଦମା ପୋଦମାକୁ ମୁକୁତାଦେଇ ନେଇ
ବେନି ସପତଣୀ କର୍ଣ୍ଣେ ମହାମନ୍ତ୍ର କହି ।
ଗ୍ୟାଂନ ପାଇ ରୋଦମା ପୋଦମା ହେଲେ ତୋଷ
ପାଶୋରିଲେ କାମଚେଷ୍ଟା ରତିରଙ୍ଗ ରସ ।
ମାତାଙ୍କ ଅଗ୍ରତେ ରାଣୀ ବୋଲନ୍ତି ବଚନ
ଦେଶାନ୍ତରେ ଯାଉ ରାଜା ସାକ୍ଷୀହେଉ ଧର୍ମ ।
ଜଳ ସ୍ଥଳ ଅନଳେ ରଖନ୍ତୁ ମହାମାଈ
ଦିବାନିଶି ଜଗନ୍ନାଥେ ସାହେଥିବେ ହୋଇ ।
ଯେତେ ବୋଲି ଯେ ଯାହାରେ ହୋଇଲେକ ତୁନି
ଯେଥୁ ଅନନ୍ତରେ କଥା ଶୁଣ ଆନ ବାଣୀ ।
ସୁଧର୍ମା ଯେ ପୁଚ୍ଛାକଲେ ଦୁର୍ବାସାଙ୍କୁ ଚାହିଂ
ଯେଥୁ ଅନନ୍ତରେ କିସ ହୋଇଲା ଗୋସାଇଂ ।
ଦୁର୍ବାସା ବୋଇଲେ ଶୁଣ ଗନ୍ଧର୍ବ ନନ୍ଦନ
ପିଠିଦେଇ ମଣ୍ଡପରେ ବସିଲେ ରାଜନ ।
ବାଳବୃଦ୍ଧ ତରୁଣ ସମସ୍ତେ ଦେଖୁଥିଲେ
ଯଥା ସମୟେ ଯେ ଯାହା ଘରକୁ ସେ ଗଲେ ।
ଗୁରୁଯାଇ ମିଳିଲେ ଗୋବିନ୍ଦଚନ୍ଦ୍ର କତି
ବହୁତ ଗ୍ୟାଂନ ଗୋଚର ବୁଝାଇ କହନ୍ତି ।
ଶୁଣ ବାବୁ ଗୋବିନ୍ଦରେ ନଗ୍ର ବୁଲିଯିବା
ବନାନ୍ତ କନ୍ଦର ନଦୀ ସମୁଦ୍ର ଦେଖିବା ।
ନୃପତି ବୋଇଲେ ଯେ ମୋହର ଇଛାଯେହି
ତୁମ୍ଭ ଆଗ୍ୟାଂ ହେବ ଯାହା ତାହା କରିବଇଂ ।
ଗୁରୁ ଆଗ୍ୟାଂଦେଲେ ବାବୁ ଆମ୍ଭେ ଦେଲୁ ଦୀକ୍ଷା
ଯେଥକୁ କି ଦକ୍ଷିଣା ଦେବାକୁ ତୋର ଇଛା ।
ବୋଲଇ ଗୋବିନ୍ଦଚନ୍ଦ୍ର ବଙ୍ଗଦେଶ ମୋର
ଦକ୍ଷିଣାକୁ ଦେଲୁ ଆମ୍ଭେ ମହୀ ଭୋଗକର ।
ହାଡ଼ିପା ବୋଇଲେ ବାବୁ କି କରିବି ତାହା
ରାଜ୍ୟଦେଶ ମାଗୁଣି ମୋ ନାହିଂ ନରନାହା ।
ଗୋବିନ୍ଦଚନ୍ଦ୍ର ବୋଲଇ ଲକ୍ଷେ ସୁନା ଦେବି

ଅପୂର୍ବ ନୁହଇ ଧନ କିସ ମୁଂ କରିବି ।
ହାଡ଼ିପା ବୋଇଲେ ବାବୁ ଦ୍ରବ୍ୟ କି କରିବା
ଠୁଳ ଛଡ଼ାଇଲେ ସୁଖେ ମଣ୍ଡପେ ବସିବା ।
ବୋଇଲେ ଯେ ଗୋବିନ୍ଦ ଆବର କିସ ଦେବା
ଜାଣି ନପାରିଲି ମନୁ ଫେଡ଼ିଲେ ଜାଣିବା ।
ହାଡ଼ିପା ବୋଇଲେ ଯେବେ ତୁ ପାଇଲୁ ଦୀକ୍ଷା
ପଞ୍ଚଦ୍ୱାର ଫେରିଣ ତୁ ବେଗେ ଆଣ ଭିକ୍ଷା ।
ନ କରିବୁ ଲାଜ ବାବୁ କର୍ମକୁ ଆଦର
ସୁଖ ଛାଡ଼ିକରି ଦେହେ ଦୁଃଖ ଭୋଗକର ।
ପଞ୍ଚକୋଳି ଅନ୍ନ ଯେବେ ହୋଇବୁ ତୁ ଭୋଗୀ
କାମ କ୍ରୋଧ ନିଦ୍ରା ତେଜି ବୋଲାଇବୁ ଯୋଗୀ ।
ଅଳପ ଅଳପକରି ତୁଟାଇବୁ ଅନ୍ନ
ତୁଟାଇଲେ ଦେହ ତୋର ନଜାଳିବ କାମ ।
ଚଉଷଠୀ ରୋଗ ଦେହେ ନକରିବ ପୀଡ଼ା
ଶ୍ମଶାନରେ ବୁଲୁଥିବୁ ଅନିଦ୍ରା ଅମଡ଼ା ।
ଯେଉଂ ଲାଉ ଥାଳ ଆମ୍ଭେ ଦେଇଅଛୁଂ ତୋତେ
ବେଢ଼ାଏ ଲେଖାଏଂ ନିତ୍ୟେ ଘୋରୁଥିବୁ ପଥେ ।
ଯେତେ ସମ୍ଭାଇବ ଅନ୍ନ ତେତେକ ଖାଇବୁ
ତିଅଣ ଲବଣଙ୍କର ପାଶକୁ ନ ଯିବୁ ।
ଲାଉଆ ତୁଟିବା ଦିନ ଅନ୍ନ ନଖାଇବୁ
ଶାକ କାଞ୍ଜି ଆମ୍ବିଳ ଆମିଷ ନଭୁଞ୍ଜିବୁ ।
ଯେକମାତ୍ର ଆଧାରକୁ ଦୁଗ୍ଧଅନ୍ନ ମାଗ
ବାଳବୃଦ୍ଧ ତରୁଣେ ହୋଇବୁ ଯେକ ଅଙ୍ଗ ।
ଶୁଣି ମାନ ବିସର୍ଜିଲା ବଙ୍ଗଦେଶ ସାଇଂ
କେମନ୍ତ ପ୍ରକାରେ ମୁଂ ଯେ ଅନ୍ନ ମାଗିବଇ ।
ମୋହର ଅଧମପଣ ଅଟେହେ ବେଭାରେ
ଗୁରୁଆଗ୍ୟାଂ ମେଣ୍ଟିତ ନୋହଇ କେତେବେଳେ ।
ଯେତେ ବୋଲି ମେଖଳି ଦେହରେ ପୂରାଇଲା
ବାମ କନ୍ଧେ ଦୋଳାଇଣ ଲାଉକୁ ଖଞ୍ଜିଲା ।

ବିଭୂତି ବଟୁଆ ଗୋଟି ହସ୍ତରେ ଘେନିଲା
ମଣ୍ଡପରୁ ଓହ୍ଲାଇ ଗୁରୁଙ୍କୁ ସୁମରିଲା ।
ଜାଗିଲାରେ ମାତା ବୋଲି ନଗରେ ଜଣାଇ
ଦ୍ୱାରେ ଦ୍ୱାରେ ଜଣାଇ ଗୋ ଭିକ୍ଷାଦିଅ ମାଇ ।
କାଇ ବସ୍ତ୍ର ଦେଖି ଆସି ବେଢ଼ିଲେ କୁକୁର
ବାଡ଼ି ଉଞ୍ଚାଇଣ ରାଜା ହୁଅଇ କାତର ।
ରାଜା ଭିକ୍ଷା ମାଗିବାର ଦେଖି ନଗ୍ରଜନ
ବାଳବୃଦ୍ଧ ରୋଦନ କରନ୍ତି ଘନ ଘନ ।
ଆହୋ ମହୀପତି ଯେଡ଼େ ସୁଖ ତ୍ୟାଗ କଲୁ
ଦ୍ୱାରେ ଦ୍ୱାରେ ଭିକ୍ଷା ମାଗି ଯେହା ଅରଜିଲୁ ।
ଯେବେହେଂ ତୁମ୍ଭକୁ କେହି ନାହିଂ ବଳୀୟାର
କର୍ଣ୍ଣରୁ ମୁଦ୍ରୁରା କାଢ଼ି କନ୍ଥା ଦୂରକର ।
ବେଗେ କନ୍ଥା ପକାଇ ନଗ୍ରରେ ଯାଅ ଚଳି
ଗୁରୁ ତୋର କି କରିବ ଶୁଣ ଦଣ୍ଡଧାରୀ ।
ଛାର ଯେ ହାଡ଼ିପା ବାଡ଼ିତାଟି ଖଟୁଥିଲା
କେଉଂ ଗ୍ୟାଂନ କହିଣ ତୁମ୍ଭଙ୍କୁ ବାଇକଲା ।
କାହାରି କଥା ସେ କର୍ଣ୍ଣପଥେ ନ ଶୁଣଇ
ଭିକ୍ଷାଦିଅ ମାୟେ ବୋଲି ବଚନ ବୋଲଇ ।
ପଞ୍ଚଦ୍ୱାର ତଣ୍ଡୁଳେ ପୂରିଲା ଥାଳଗୋଟି
ବେଗବେଗ ହୋଇ ରାଜା ଆସଇ ଲେଉଟି ।
ଗୁରୁଙ୍କ ଅଗ୍ରତେ ଯାଇ ମଣ୍ଡପେ ବସିଲା
କି କରିବି ତଣ୍ଡୁଳ ଗୁରୁଙ୍କୁ ପଚାରିଲା ।
ହାଡ଼ିପା ବୋଇଲେ ବାବୁ ଦୁଇ ଭାଗକର
ତଳ ବିଲୋପନ କରି ଅନ୍ନ ଦିଅ ଖର ।
ତତକ୍ଷଣ ଅଗ୍ନି ଆଣିଲାକ ମଣ୍ଡପର
ହାଣ୍ଡି ବସାଇଣ ପୁଣ ପୂରାଇଲା ନୀର ।
ଗୁରୁ ଆଗ୍ୟାଂ ଦେଲେ ବାବୁ ଶୁଣ ନୃପମଣି
ଅନ୍ନ ରାନ୍ଧିବାର ମନ୍ତ୍ର କର୍ଣ୍ଣେ ଥାଅ ଶୁଣି ।
ବିଷ୍ଣୁ ଯୋଗାଡ଼ିଲେ ପାଣି ଅଗ୍ନି ଦେଲେ ବ୍ରହ୍ମା

ପାକ ସମ୍ପାଦିଲେ ତହିଁ ରୁଦ୍ରଙ୍କର ବାମା ।
ବିଷ୍ଣୁ ଦେଲେ ବିଭୂତି ଆଦିତ୍ୟ ଦେବେ ଥାଳ
କୁମ୍ଭ ଗୋଟି ଯେ ଅନାଦି ନାଥ ଗୋରେଖର ।
ଆବର ସନ୍ଦେହ କଥା ଶୁଣ ମହୀଭୋଗୀ
ଦଶ ପନ୍ଥୁ ସନ୍ଥୁ ଶତ ପନ୍ଥୁ ଛନ୍ତି ଯୋଗୀ ।
ଗୁରୁ ଆଗ୍ୟାଂ ପାଇ ରାଜା ମନ୍ତ୍ର ଉଚ୍ଚାରିଲା
ବେଦପତି ନାମ ଧରି ଅଗ୍ନି ଜାଳି ଦେଲା ।
ତତକ୍ଷଣି ପାକସିଦ୍ଧ ହୋଇଲା ଯେ ଅନ୍ନ
ଓହ୍ଲାଇ ଶୀତଳ କଲେ ଗୋବିନ୍ଦ ରାଜନ ।
ହାଡ଼ିପା ବୋଇଲେ ବାବୁ ଖାତ ଖୋଳ ମହୀ
ଭାତହାଣ୍ଡି ପୋତି ଆମ୍ଭେ ଯିବା ଶୀଘ୍ର ହୋଇ ।
ଅକଟା ଅବଛା ଫଳ ଅଖାଦ୍ୟ ଅଭକ୍ଷ୍ୟ
ସମୟରେ କରିବାଟି ରିପୁଚନ୍ଦ୍ର ବସ୍ତ୍ର ।
ଗୋବିନ୍ଦଚନ୍ଦ୍ର ରାଜା ଯେ ଖଣତିଯେ ଘେନି
ଚାରିହସ୍ତ ଗଭୀରରେ ଖୋଳିଲେ ମେଦିନୀ ।
ତିଅଣ ରାନ୍ଧି ଲୋଡ଼ଇ ଅତି ବ୍ୟଗ୍ରକରି
ମୁଖରେ ପଶଇ ଧୂଆଁ ବେନି ଚକ୍ଷୁ ମଳି ।
ଅଗ୍ନି ଲିଭିଯାଏ ପୁଣ ଫୁଙ୍କଇ ଲେଉଟି
ହୁଅଇ ଅବସ୍ଥା ତାର ପଞ୍ଚପ୍ରାଣ ଗୋଟି ।
ଅତି ଗର୍ବେଶ୍ୱର ରାଜା ସୁକୁମାର ଦେହୀ
ଯେଉଂ ଶରୀରକୁ ସୂର୍ଯ୍ୟ ତେଜ ନ ଲାଗଇ ।
ଯେତେ ବଡ଼ ପ୍ରଭୁପଣ ଛାଡ଼ିଲାକ ଯେହ୍ନୁ
ଅଣାୟତ ଗୁରୁଆଗ୍ୟାଂ ମେଣ୍ଟିବାକ କାହୁଁ ।
ରାଜା ହାଣ୍ଡି ଗାତରେ ଥୋଇଲା ଧାଡିକାର
ଉପରେ ତିଅଣ ହାଣ୍ଡି ଥୋଇଲା ନିକର ।
ଢାଙ୍କୁଣି ଦେଇଣ ମାଟି ଘୋଡ଼ାଇଲା ରାୟେ
ନ ଜାଣନ୍ତି ନରନାରୀ ରଜନୀ ସମୟେ ।
ହରିତକୀ ବୃକ୍ଷମୂଳେ ଭାତହାଣ୍ଡି ପୋତି
କହୁଂ କହୁଂ ତିଶିରା ପହର ହେଲା ରାତି ।

ପାହାନ୍ତା ସମୟେ ଶୁଭିଲାକ ଶଙ୍ଖଧ୍ୱନି
ବିଭୂତି ବୋଳି ହୋଇଲେ ଗୁରୁଶିଷ୍ୟ ବେନି ।
ସମରସ ଜାଣି ଭଇରବ ବଜାଇଲେ
ନବରେ ମୁକୁତା ଦେଈ କର୍ଣ୍ଣରେ ଶୁଣିଲେ ।
ଧାତିକାରେ ବାହାର ହୋଇଲେ ମହାସତୀ
ଗମନ କରଇ ରାତ୍ରେ କେହି ନାହିଁ କତି ।
ଗୋବିନ୍ଦଚନ୍ଦ୍ର ସନ୍ନିଧେ ବିଜେକଲେ ମାୟେ
ତାହାଙ୍କୁ ଦେଖି କୁମର ଲୋଟିଲାକ ପାୟେ ।
କଲ୍ୟାଣ କରନ୍ତି ଯେ ମୁକୁତା ଦେଈ ମାୟେ
ଜଳେ ସ୍ଥଳେ ଅନଳେ ରଖନ୍ତୁ ମହାମାୟେ ।
ନିରାକାର ବିଷ୍ଣୁ ତୋତେ ହୋଇଥାନ୍ତୁ ସାହା
ଗୁରୁ ଅନୁଗ୍ରହେ ତୋର ସିଦ୍ଧ ହେଉ କାୟା ।
ସୁସେବା କରିବୁ ଗୁରୁ ବଚନ ପାଳିବୁ
ସୁସ୍ୱାଦକୁ ନଇଚ୍ଛିବୁ ମନେ ନ ହେଳିବୁ ।
ହାଡ଼ିପା ବୋଲେ ମୁକୁତା ଦେଈଙ୍କି ଯେ ଚାହିଁ
ଯେତେ ରାତ୍ରେ ଯେଠାକୁ ଅଇଲ କିସପାଇଁ ।
ପୁତ୍ରକୁ ନେବାକୁ ମନ ଅଛିକି ତୋହର
କର୍ଣ୍ଣରୁ ମୁଦ୍ରା କାଢ଼ କନ୍ଥା ଦୂର କର ।
ପାସୋରିଲା କଥା କିମ୍ବା ସୁମରଣା କରୁ
ତୋତେ ଦେଖି ମୋହର ମନଟି ବଡ଼ ଗରୁ ।
ମାତା ପୁତ୍ରେ ଦେଖିଲେ ଯେ କ୍ରୋଧଜାତ ହୋଇ
ଅଗ୍ରପଶ୍ଚାତ କଥାକୁ ବିଚାରୁ ତ ନାହିଁ ।
ଅତି ନିରାଶ ପନ୍ଥା ତୁ ବୋଲିକି ନ ଜାଣୁ
ଛାଡ଼ିଲା ମୁହାଂସ କିମ୍ବା 'ଲେଉଟାଇ ଆଣୁ ।
ତୋର ଗୁରୁ ଗୋରେଖନାଥ ମୋ ଗୁରୁ କାହ୍ନୁପା
ସେବାରେ ସ୍ୱଦୟା କଲେ ଆମ୍ଭେ ସାର୍ଦ୍ଧ ଶାଖା ।
ଜାଣୁ ଜାଣୁ କିଗୋ ବଣା ହେଉ ମହାଦେଈ
ପୁତ୍ରକୁ ମୂର୍ଚ୍ଛିଣ ଶୋକ କରୁ କାହିଁ ପାଇଁ ।
ମୁକୁତା ଦେଈ ବୋଇଲେ ଗର୍ଭଧାରୀ ମୁହିଁ

ଏକଇର ବଳା ମୋର ଯିବ ଯୋଗୀ ହୋଇ ।
ଚକ୍ଷୁ ପୂରାଇ ଆଜକ ଦେଖିଥାଏ କିନା
ଆଜଠାରୁ ବଙ୍ଗଦେଶ ଶୂନ୍ୟ ହେବ ସିନା ।
ଛାର ଯେ ଜୀବନ ମୋର କି କାରଣେ ରହେ
କୁମରମୁଖକୁ ଚାହିଁ ଶୋକେ ମାତା କହେ ।
ବୋଲଇ ଗୋବିନ୍ଦଚନ୍ଦ୍ର ଶୁଣ ଗୋ ଜନନୀ
ଯିବା ସମୟକୁ କିମ୍ପା ଶୋକ କରୁ ପୁଣି ।
ତୁମ୍ଭେ ସିନା କହିଦେଲ ଯୋଗପଥ ବାଟ
ଯେବେ କାହିଁ ପାଇଁ ଶୋକ କରୁ ଗରୁ କଷ୍ଟ ।
ହରାଇବା ଧନ ଆଉ ଲୋଡ଼ିଲେକି ପାଇ
ଗଲା ମଲା ଦୁଇ କଥା ଭୋଟାଭେଟି ନାହିଁ ।
ନବରକୁ ଯାଅ ମାତ ଦେଇଣ ମେଲାଣି
ପୁତ୍ରର ବଚନ ଶୁଣି ହସିଲେକ ରାଣୀ ।
ବାବୁ ଲେଉଟି ଚାହିଁଦେ ହୃଦ ହେଉ ଶାନ୍ତି
ଖଣ୍ଡେ ଦୂର ଅନାଇ କୁମର ପ୍ରଣମନ୍ତି ।
ଲେଉଟ ମୁକୁତାଦେଇ ଆମ୍ଭେ ଯିବୁଂ ଦୂର
ମନରେଣ ମହାସତୀ କିଛି ନ ବିଚାର ।
ହରଷେଣ ମହାସତୀ ନବରକୁ ଗଲେ
ଗୋବିନ୍ଦଚନ୍ଦ୍ରକୁ ଚାହିଁ ଗୁରୁ ଆଗ୍ୟାଂ ଦେଲେ ।
ବାବୁ ଘେନ ଯେବେ କନ୍ଥା ଲାଉ ଥାଳମାନ
ନଗ୍ରଜନେ ନଜାଣୁ ଚଳିବା ପଥ ଗ୍ରାମ ।
କଠାଉ ମାଡ଼ିଲେ ଦେବ ଘେନିଲେ ଖଣତି
ମାୟାଘର ପ୍ରାୟେକ ଯେ ମଣିଲେ ସବୁନ୍ତି ।
କଟିରେ ଗୋବିନ୍ଦଚନ୍ଦ୍ର ମେଖଳା ଭରିଲେ
ବିଭୂତି ବଟୁଆଗୋଟା ହସ୍ତରେ ଘେନିଲେ ।
ଝୋଲିକନ୍ଥା ଘେନି ସଜ ହୋଇଲେ ରାଜନ
ଆଗରେ କଢ଼ାଇ ଗୁରୁ ପଛରେ ଗମନ ।
ନବରୁ ବାହାର ହୋଇ ଗମନ କରନ୍ତି
କୁମ୍ଭ ପୂର୍ଣ୍ଣିମାର ଯାତ୍ରା ସେଦିନ ହୋଇଛି ।

ବହୁତ ଯେ ବାଟ ରାଜା ନପାରଇ ଚାଲି
ବେନି ତଳିପାରୁ ସେ ରୁଧିର ଗଲା ଗଳି ।
ଶୋଣିତ ଦେଶରେ ଯାଇ ପ୍ରବେଶ ହୋଇଲେ
ଗୋବନ୍ଦିଚନ୍ଦ୍ରଙ୍କୁ ଚାହିଁ ଗୁରୁ ଆଗ୍ୟାଂ ଦେଲେ ।
ବାବୁ ନଗ୍ର ଫେରି ଭିକ୍ଷା ଆଣରେ ବହନ
ଉଛୁର ହେଉଛି ବେଳ କରିବୁଂ ଭୋଜନ ।
ଗୁରୁ ଆଗ୍ୟାଂ ନିରାଧାରେ ଶିରଗ୍ରତେ ଘେନି
ଗୁରୁଙ୍କୁ କହିଣ ରାଜା ଚଳିଲା ବହନି ।
ଜାଗିଲାରେ ମାତାବୋଲି ଡାକିଲେକ ରାଯେ
ଜାଣନ୍ତେ ନବର ନାରୀ ଭିକ୍ଷା ନେଇ ଦିଏ ।
ଗୁରୁଙ୍କ ଅଗ୍ରତେ ନେଇ ରଖିଦେଲେ ଭିକ୍ଷା
ହାଡ଼ିପା ବୋଇଲେ ଭୁଞ୍ଜ ଯେ ତୋହର ଇଛା ।
ଗୋବିନ୍ଦଚନ୍ଦ୍ର ବୋଇଲେ ତୁମ୍ଭେ ଭକ୍ଷ କର ।
ପଛକୁ ଯେତେକ ଥିବ ହୋଇବ ମୋହର ।
ଜାଣିଲେ ଗୋବିନ୍ଦ ମନ ହାଡ଼ିପା ଗୋସାଇଂ
ଅର୍ଦ୍ଧେକ ଥୋଇ ଅର୍ଦ୍ଧେକ ଦେଲେକ ବଢ଼ାଇ ।
ଭୁଞ୍ଜଇ ଗୋବିନ୍ଦଚନ୍ଦ୍ର ଚଉଦିଗ ଚାହିଁ
ତିଉଣ ଲବଣ ଦୁଗ୍ଧ ଭକ୍ଷିବାକୁ ନାହିଁ ।
ନରୁଚଇ ଅନ୍ନ ରାଜା ମନରେ ବିରସ
ଗୋଟି ଗୋଟି କରିଣ ଭୁଞ୍ଜଇ ଅନ୍ନରସ ।
ଅର୍ଦ୍ଧେକ ପକାଇ ରାଜା ଅର୍ଦ୍ଧେକ ଭୁଞ୍ଜିଲେ
ଆଚମନ ସାରି ରାଜା ଗୁରୁପାଶେ ଗଲେ ।
ଆସନ ମାଡ଼ିଣ ଗୁରୁ କଲେକ ଶୟନ
ପଦ ମଞ୍ଚାଳିଲେ ବସି ଗୋବିନ୍ଦ ରାଜନ ।
ଯେହ୍ନିମତି ଷୋଳ ଘଡ଼ି ନିଶି ଶେଷଗଲା
ଉଜାଗର ହୋଇ ରାଜା ଅଗ୍ରତେ ବସିଲା ।
ସୂର୍ଯ୍ୟୋଦୟ ହେଲାରୁ ସେ ତହୁଂ ଉଠିଗଲେ
ଗୌହାଟ ପାଟଣା ଦେଶେ ପ୍ରବେଶ ହୋଇଲେ ।
ବେଳ ପ୍ରହରକେ ଗୁରୁ ଶୌଚ ସ୍ନାନ ସାରି

ଶିବ ସ୍ଥାନେ ବସିଲେ ହାଡ଼ିପା ଜପକରି ।
ସେ ସ୍ଥାନେ କମଳ ପତ୍ର ପିନ୍ଧନ୍ତି ମନୁଷ୍ୟ
ଅନ୍ନ ନ ମିଳଇ ଯହୁଁ ପିଅନ୍ତି ଗୋରସ ।
ସେ ନଗ୍ରେ ରହିଣ ଭିକ୍ଷା ମାଗିଲା ରାଜନ
ଦୁଗ୍‌ଧ ଭିକ୍ଷା ବାହାର ହୋଇଲା ତତକ୍ଷଣ ।
ମୋହନ ମଙ୍ଗଳପୁର ଯଦୁ ରାଷ୍ଟ୍ର ଦେଶ
ବେଳକାଳ ମଙ୍ଗଳ ବୁଲିଲେ ସେ ହରଷ ।
କାହିଁ ଚୌର ତସ୍କର ବା କାହିଁ ବ୍ୟାଘ୍ରଭୟେ
ନିତ୍ୟେ ଉଜାଗର ହୋନ୍ତି ଗୁରୁଚେଲା ଦୁହେଁ ।
ଯେମନ୍ତେ ଅନେକ ଦେଶ ବୁଲିଲେକ ଯହୁଁ
ଭୃଙ୍ଗଦେଶେ ପ୍ରବେଶ ହୋଇଲେ ଯାଇଂ ତହୁଁ ।
ମନେ ମନେ ଗୁରୁଦେବ ବିଚାର କରନ୍ତି
ଯୋଗୀକରି ଆଣିଲି ମୁଂ ବଙ୍ଗଦେଶ ପତି ।
କୋଡ଼ିଯେ ବରଷ ରାଜା କାମଦେବ ବର୍ଣ୍ଣ
ଶତେ ପାଟମହାଦେଈ ଉପରେ ରତନ ।
ରତ୍ନ ଗଜପଲଙ୍କ ଉପରେ ଯେହୁ ଶଯ୍ୟା କରି
ଭୋଗକରି ନାହିଁ ଯେ ଅଇଲା ଦଣ୍ଡଧାରୀ ।
ଆବର ସ୍ତିରୀ ମୁରୁଛି ପାରଇକି ନାହିଁ
ଜାଣିମା ଯେହାର ମନ କେମନ୍ତ ପାଳଇ ।
ଯେତେ ବୋଲି ଶିଷ୍ୟକୁ ଘେନିଣ ତହୁଂ ଗଲେ
ଗଣିକାଦ୍ୱାରରେ ଯାଇଂ ପ୍ରବେଶ ହୋଇଲେ ।
ରମ୍ଭା ନାମେ ତରୁଣୀ ଯେ ଅଟେ ନବ ଯୁବା
ଦେଖିଲେ ଭଳିବେ ମୁନି ଚନ୍ଦ୍ରଜ୍ୟୋତିପ୍ରଭା ।
ହାଡ଼ିପାକୁ ଦେଖି ରମ୍ଭା ଉଠିଲେ ବହନ
ବୋଲନ୍ତି ଗୋସାଇଂ କେଉଂ ଦେଶରୁ ଗମନ ।
ଗୁରୁଆଗ୍ୟାଂ ଦେଲେ ଆମ୍ଭେ ଉତ୍ତରୁ ଅଇଲୁଂ
ଦେଶାନ୍ତରଂ କରିବାକୁ ମନ ବଳାଇଲୁଂ ।
ଆମ୍ଭର ଯେ ଚେଲାଗୋଟି ନପାରିଲା ଚାଲି
ବାଳୁତ ଶିଷ୍ୟ ଗମନେ ହେଲା ଦୁଃଖ ଭାରି ।

ରମ୍ଭାକନ୍ୟା ବୋଇଲା ବିଶ୍ରାମ କର ରହି
ଯେତେଦିନ ଯାଏ ଥିବ ଭିକ୍ଷା ଦେବି ମୁହିଁ ।
ହାଡ଼ିପା ବୋଇଲେ ମାଗୋ ଯଦି ଦେବୁ ଭିକ୍ଷା
ଯେ ଚେଲାଗୋଟିକ ଛାଡ଼ିଯିବି ତୋର କକ୍ଷା ।
ଚତୁର୍ମାସ୍ୟା ଯାଏ ଭିକ୍ଷା ଖଟିବୁ ଯେହାକୁ
ଯେହାକୁ ଖଟିଲେ ସେବା ଲାଗିବ ଆମ୍ଭଙ୍କୁ ।
ବୋଲଇ ସୁନ୍ଦରୀ ରମ୍ଭା ରହୁ ଚେଲାଗୋଟି
ଯେତେକ ଲାଗଇ ଅନ୍ନ ଦେବି ନିତ୍ୟେ ଖଟି ।
ଗୁରୁଆଗ୍ୟାଂ ଦେଲେ ଯେ ଗୋବିନ୍ଦଚନ୍ଦ୍ରେ ଚାହିଁ
ରମ୍ଭାକନ୍ୟା ଘରେ ଦିନାକେତେ ଥାଅ ରହି ।
ଆମ୍ଭେ କପିଳାସ ଯାଇଂ ଆସିବୁଂ ବହନ
ଦିବାନିଶି ଘୋଷୁଥିବୁଂ ଆମ୍ଭର ଚରଣ ।
ମନ ବିଚଳିତ କଲେ ଅକାରଣ ହେବୁ
ଦୁଇ କୂଳ ମଧ୍ୟରେ ଅଲଗା ଭାସୁଥିବୁ ।
ଗୋବିନ୍ଦଚନ୍ଦ୍ର ବୋଇଲେ ଯେ ତୁମ୍ଭର ଆଗ୍ୟାଂ
ତୁମ୍ଭ ଶ୍ରୀଚରଣ ବିନୁ ନାହିଁ ମୋ ପ୍ରତିଗ୍ୟାଂ ।
ମୁହିଁ ମନେ ମନେ ମନଦୃଢ଼ କରୁଥିବି
ବିଚଳିତ ହୋଇଲେ ଅନଳେ ଦହିହେବି ।
ଯେହା ଶୁଣି ହାଡ଼ିପା ଯେ ଅନ୍ତରୀକ୍ଷେ ଗଲେ
ରମ୍ଭାକନ୍ୟା ଘରେ ଯେ ଗୋବିନ୍ଦଚନ୍ଦ୍ର ଥିଲେ ।
ରମ୍ଭାକନ୍ୟା ଭିକ୍ଷା ତାଙ୍କୁ ଖଟିଗଲା ଜାଣି
ମଉନେ ବସିଣ ରାଜା ନକହଇ ବାଣୀ ।
ବେଡ଼ାଯେ ଲେଖାଯେଂ ଲାଉ ପଥରେ ଘୋରଇ
ଦିନକୁ ଦିନ ତାହାର ଆହାର ତୁଟଇ ।
ଯେହିମତି ଷୋଳଘଡ଼ି ନିଶିଶେଷ ହେଲା
ଉଜାଗର ହୋଇ ରାଜା ନିଶ୍ଚିନ୍ତେ ବସିଲା ।
ସୂର୍ଯ୍ୟର ଜ୍ୟୋତି ପରାଯେ ବିରାଜଇ ଦେହ
ଦେଖିଣ କାମେନୀମାନେ ହୋଇଲେକ ମୋହ ।
ନଥାଇ ଶକତି ଶୂଳ ପାଦରେ କଠାଉ

ଭଇରବ ନାଦ ସେ ବାଏ ଯାଉଂ ଯାଉଂ ।
ଆହାକି ସୁନ୍ଦର ଭାଷା ସୁନ୍ଦର ମୂରତି
ସ୍ୱର୍ଗ ବିଦ୍ୟାଧର ପ୍ରାୟେ ଦିଶଇ ତା'ର ଜ୍ୟୋତି ।
କେ ଯେହାକୁ ଯୋଗୀ ବୋଲି ପାରିବ ସଂସାରେ
କେବଣ ଶାପରୁ ଯେ ବୁଲନ୍ତି ଦ୍ୱାରେ ଦ୍ୱାରେ ।
ପଚାରନ୍ତି ଦ୍ୱାରୀ ହେ ଶୁଣିମା ଯୋଗବାସୀ
କେଉଂ ରାଜ୍ୟୁଂ ମଠ କରିଅଛ ଯେଥେ ଆସି ।
ମୁଖ ଟେକି କାହାକୁ ହୋ ନକହତ କଥା
ମହାମନ୍ତ୍ର ବୋଲୁଅଛ ହୋଇ ହେଠମଥା ।
ତିନିଦଣ୍ଡ ବୁଲି ରାଜା ଶୀଘ୍ରେ ଲେଉଟିଲା
ଆସନ ଉପରେ ଯାଇ ତୁରିତେ ବସିଲା ।
ରାଜାମୂର୍ତ୍ତି ଚାହିଂ ବେଶ୍ୟା ହୋଇଲା ତବତ
ଚାଲନ୍ତେ ଦେଖିଲା ତା'ର  ନ ଶୁଭଇ ପାଦ ।
ଉଠିଯାଇ ଭୂମିକି ଯେ ଚାହିଂଲା ନିରେଖି
ବେନି ତଳିପାରୁ ତାଙ୍କ ପଦ୍ମ ଜନ୍ମୁ ଅଛି ।
ରମ୍ଭା ବିଚାରଇ ଏତ ସାମାନ୍ୟ ନୁହଇ
ଚାରୁ ସୁକେଶ ତାହାର ଭୂମିରେ ଲୋଟଇ ।
ବେନି ବାହୁଦଣ୍ଡ ଆଣ୍ଠୁ ତଳକୁ ଲମ୍ବଇ
ଅଙ୍କୁଶ କୁଣ୍ଡଳ କରତଳେ ଶୋଭାପାଇ ।
ଲଲାଟେ ତ୍ରିଶାଖା ଶିରେ ବିରାଜଇ ଯାର
ପାଦତଳେ ପଦ୍ମଚିହ୍ନ ଦିଶୁଛି ଭୂମିର ।
ବଡ଼ଲୋକ ହୋଇ କିମ୍ପା ଯୋଗାନ୍ତ ସାଧିଲା
ସୁକୁମାର ଶରୀରକୁ ଯେତେ କଷ୍ଟ ଦେଲା ।
ଯେହା ଶୁଣି କହେ ରାଜା ଶୁଣସି 'ଗୋ ମାତ
ନୁହଇ ମୁଂ ବଡ଼ଲୋକ ସାନ କୁଳେ ଜାତ ।
ଅପାଣ୍ଡୁକ ପଣେ ମୁଂ କୁଟୁମ୍ବ ନ ପୋଷିଲି
ଉଦର ନିମନ୍ତେ କର୍ଣ୍ଣେ ମୁଦ୍ରର ଭରିଲି ।
କନ୍ୟା ବୋଲେ ନାଥ ତବ ଗୁରୁନାମ କିସ
ସ୍ୱରୂପ କହିବା ତୁମ୍ଭ ଘର କେଉଂ ଦେଶ ।

ରାଜନ ବୋଇଲା ଗୁରୁ ହାଡ଼ିପା ମୋହର
ମୋହର ନାମ ଗୋବିନ୍ଦ ବଙ୍ଗଦେଶ ଘର ।
ରମ୍ଭାକନ୍ୟା ପରତେ ନଗଲା ତାର ହୃଦେ
ରାଜପୁତ୍ରେ ନୋହିଲେ କି ପଦ୍ମଅଛି ପାଦେ ।
ଯେତେ ବୋଲି ସୁନ୍ଦରୀ ମଦନ ରସଭରେ
ଗୋବିନ୍ଦଚନ୍ଦ୍ରକୁ ଚାହିଂ ମନେ ଲୋଭକରେ ।
ମନେ ବିଚାରିଲା ମୁଂ ତ ଗଣିକା କାମେନୀ
ବହୁତ ପୁରୁଷ ଭୋଗ କରୁଅଛି ପୁଣି ।
ଯେମନ୍ତ ଲକ୍ଷଣବନ୍ତ ଦେଖିଲାତ ନାହିଂ
ପ୍ରୀତି ବଢ଼ାଇ ଯେହାକୁ ନିଶ୍ଚେ ନେବି ମୋହି ।
ଦଇବର ଯୋଗେ ସିନା ପୁରୁଷକୁ ଭେଟି
ଯେତେ ଦିନେ ଦଶା ମୋର ପାଲଟିଲା ସେଟି ।
ଜୀବନ ସଫଳ ମୋର ମାତା ପିତା ଧନି
ଯେତେ ବୋଲି ମନେ ମନେ ଆନନ୍ଦ ତରୁଣୀ ।
ଗୋବିନ୍ଦଚନ୍ଦ୍ରକୁ ଚାହିଂ ବୋଲଇ ସୁନ୍ଦରୀ
ଶୁଣ ନାଥ ନିରାଧାର ବଚନ ମୋହରି ।
ଗୁରୁ ଯେ ତୁମ୍ଭଙ୍କୁ ଛାଡ଼ିଗଲେ ମୋର ଠାଇଂ
କେଉଂଣି ଆଡ଼କୁ ତୁମ୍ଭେ ଫେରିଯିବ ନାହିଂ ।
କାକର କୁହୁଡ଼ି ଖରା ଦୁଃଖ ନ ପାଇବ
ଗମ୍ଭିରୀ ଭିତରେ ତୁମ୍ଭେ ସୁଖେ ବସିଥିବ ।
ବେନିବେଳ ଭିକ୍ଷା ଯେ କରିବ ଦୁଧଭାତ
ପିଠା କ୍ଷୀରୀସା ଯେ ନାନା ସୁପକ୍ୱ ପଦାର୍ଥ ।
ଯେତେବେଳେ ଯାହା ଇଛା କରିବ ଭୋଜନ
ମୋହ ଘରେ ଅପୂର୍ବ ଯେ ନାହିଂ ଦ୍ରବ୍ୟମାନ ।
ପଲଙ୍କ ସୁପାତି ଶେଯେ ଶୟନ କରିବ
ଯେତେବେଳେ ଯାହା ଇଛା ମୋ ଆଗେ କହିବ ।
ଶୁଣସି ଗୋ ମାତ ବୋଲି ବୋଇଲେ ରାଜନ
ମୁହିଂ କିସ କରିବି ସୁପକ୍ୱ ଦ୍ରବ୍ୟମାନ ।
ପଞ୍ଚକୋଳି ଅନ୍ନ ଯେଉଂ ଯୋଗୀ ମାଗି ଖାଇ

ତାହାଙ୍କୁ ଭୁଲାଇ ଲୋକ ମହାପାପ ପାଇ ।
ଗମ୍ଭିରୀ ଭିତରେ ମୁଁ କିପାଇଁ ବସିଥିବି
ପଲଙ୍କ ସୁପାତି ଶେଯ କିସ ମୁଁ କରିବି ।
ବାହାର ମେଲାରେ ଆମ୍ଭେ ଧୁନି ଲଗାଇବୁ
କାକର କୁହୁଡ଼ି ଖରା ଦେହେ ମେଣ୍ଟାଇବୁ ।
କର୍ମରେ ମିଳଇ ଯାହା କରିବୁ ଭୋଜନ
ଅନୁକ୍ଷଣେ ଧ୍ୟାଉଥିବୁ ଶ୍ରୀଗୁରୁ ଚରଣ ।
ବୋଲଇ ସୁନ୍ଦରୀ ତୁମ୍ଭେ ଶୁଣସି ହୋ ନାଥେ
ଶରୀର ବହିଣ କିମ୍ପା ଅନ୍ୟ କହ ମୋତେ ।
ସନତ ସନାକାଦି ଯେ ଲୋଭ ନ ଛାଡ଼ନ୍ତି
ସୁଖଭୋଗ ଲାଳସାରେ ଗ୍ରାମରେ ରହନ୍ତି ।
ଯେ ଦେହ ଘେନିଣ ଭୋଗ ଯେହୁ ନ କରଇ
ମଲେ କି ଖାଇବ ବୋଲି ସତେ ନ ଜାଣଇ ।
ବଦନକୁ ଚାହିଁ ମୁଁ ଯେ ହୋଇଲଇଁ ବଶ
ତୁମ୍ଭେ ନିରପେକ୍ଷ ଦେହୀ କହିଲ ନିରାଶ ।
ମନରେ ଗୋବିନ୍ଦଚନ୍ଦ୍ର ବିଚାର କରଇ
ମୋତେ ଭୁଲାଉଂଛୁ ରମ୍ଭା ରମିବାର ପାଇଁ ।
ମୁହିଁ ଯେବେ ସୁଖଭୋଗ ବିଚାର କରନ୍ତି
ବଙ୍ଗଦେଶ ରାଜପଣ କିମ୍ପାଇ ଛାଡ଼ନ୍ତି ।
ମୋତେ କି ଅପୂର୍ବ ହୋଇଲା ଯେ ମେଦିନୀର
ନବଲକ୍ଷ ବଙ୍ଗଦେଶ ଛାଡ଼ିଲି ନିକର ।
ଅନେଶ୍ୱତ ମହାଦେଈ ରୋଦମା ପୋଦମା
ଯେହାଙ୍କୁ ଛାଡ଼ିଲି ମୁଁ ଯେ ମାତାଙ୍କ ବଚନା ।
ଯେତେ ବଡ଼ ସମ୍ପଦ ଛାଡ଼ିଲି ହେଲି ଯୋଗୀ
ଯେବେ କିମ୍ପା ପଦାର୍ଥେ ମୁଁ ହୋଇବଇଁ ଭୋଗୀ ।
ଗୁରୁ ଯହୁଁ ମହାମନ୍ତ୍ର କହିଲେ କର୍ଣ୍ଣର
ଯମର ଉପରେ ଯେ ବୋଲାଯେ ଯମେଶ୍ୱର ।
ଯୋଗ ସାଧି ଅଜ୍ରାମର କରିବି ଶରୀର
ଯେହି କଥା ମନରେ ଯେ ହୁଅଇ ମୋହର ।

ଶୁଣସି ଗୋ ମାତ ବୋଲି ରାଜନ ବୋଇଲେ
ଆବରବେଳେ ଯେକଥା ନ କହ ତୁ ମୋରେ ।
ବାହାରେ ମୁଠାଏ ମୋତେ ଦେଉଥିବୁ ଭିକ୍ଷା
ନୋହିଲେ ମେଲାଣି ଦିଅ ଯେ ତୋହର ଇଚ୍ଛା ।
ରମ୍ଭା ବୋଲେ ନାଥ ଯେ ମହୀରେ ଜାତ ହୋଇ
ଯେତେକ ପ୍ରତିଗ୍ୟାଂ ନାଥ କହ କାହିଂ ପାଇଂ ।
ଗୁରୁ ତୁମ୍ଭଙ୍କୁ ଛାଡ଼ିଲେ ମୋହର ପାରୁଶ
ମୋହର ମନେ ତୁମ୍ଭଙ୍କୁ ନାହିଂ ଅବିଶ୍ୱାସ ।
ଉପକାରୀ ପ୍ରାଣୀକି ଯେ ନ ମାରି ବାଟରେ
ଯାଚିଲେ ମାଣିକ ଭେଣ୍ଡି ବୋଲନ୍ତି ସଂସାରେ ।
ଦିବା ନିଶି ତୁମ୍ଭ ପାଦେ କରୁଥିବି ସେବା
ଯାଚିଲା଼ର ଦ୍ରବ୍ୟ କେହ୍ନୁ ଆନକରେ ଅବା ।
ଭାବ ଆଲିଙ୍ଗନେ ମୁଂ ଯେ ବଞ୍ଚିବଇଂ ଦିନ
କେଳି କୁତୂହଳେ ମୋର ପୁହାଇବି ଦିନ ।
ମୁହିଂ ଯେ ସୁନ୍ଦରୀ ତୁମ୍ଭେ ସେହିମତି ଶୋଭା
ତୁମ୍ଭେ ଯେ ସୁବୁଦ୍ଧି ଅଟ ମୁହିଂ ନବଯୁବା ।
ମୋତେ ଦେଖି ପୁରୁଷେ ହୁଅନ୍ତି ଅସମ୍ଭାଳ
କେହ୍ନୁ ମୁରୁଛି ପାରିବ ମାନବଶରୀର ।
ଯେତେ ବୋଲି ସଜହୋଇ ବସିଲା ତରୁଣୀ
ବକ୍ରଭାବେ ଅନାଇଲା କୁରଙ୍ଗ ନୟନୀ ।
ମରମ ବଚନ ସେ ଯେ କହିଲା ରାଜାରେ
କହୁ କହୁ ଉଲଗ୍ନ ହୋଇଲା ଧାତିକାରେ ।
ପ୍ରେମ କୁତୂହଳେ ବାଳୀ ଉଲସି ଉଠିଲା
ଗୋବିନ୍ଦ ସୁମରି ରାଜା ନୟନ ବୁଜିଲା ।
ପଡ଼ିଲା ମହାସଙ୍କଟ ଉଦ୍ଧାରିବା ହରି
ବାଘୁଣୀ ମୁଖରୁ ମୋତେ ନେବାକ ଉଦ୍ଧରି ।
ଗୁରୁଙ୍କୁ ସୁମରି ରାଜା ଉଠିଲାକ ଯହୁଂ
ବେନି ଭୁଜେ କୋଳାଗ୍ରତ କଲା ବାଳୀ ତହୁଂ ।
ପେଲି ପକାଇଲା ରାଜା ପଡ଼ିଲା ସୁନ୍ଦରୀ

ଘଡ଼ିକେ ଉଠିଲା ବାଳୀ ଦେହ ତା ସମ୍ଭାଳି ।
ମହା ଲାଜଭରର ହୋଇ ବିରହିତ ବାଳୀ
ବିରହ ପଞ୍ଚମ ଶରେ ଦେହ ଅସମ୍ଭାଳି ।
ଚନ୍ଦନ ବୃକ୍ଷ ପ୍ରଯେକ ମଣି ଆଶ୍ରେ କଲି
ନିଶ୍ଚଯେ ଶିମୁଳି ବୃକ୍ଷ ପରାଯେ ମଣିଲି ।
କାଠ ହେଲେ ପଲ୍ଲବନ୍ତା ପଥର ଝଡନ୍ତା
ପଶୁ ହେଲେ ହସି ମୋତେ ଉତ୍ତର ଦିଅନ୍ତା ।
ଯେହା ସେ କର୍ମରେ ମୋର ଲିହିଲାକ ଆଜ
ଚାତକ ଚାହାଣୀ ଚାହିଁ ଲଘିବଇଁ କାର୍ଯ୍ୟ ।
ତୁମ୍ଭେ ନାଥ ଯୋଗ ସାଧ ଯେ ତୁମ୍ଭର ଇଚ୍ଛା
ଉଦେ ଅସ୍ତେ ଦୁଇବେଳ କରୁଥିବ ଭିକ୍ଷା ।
ନିରାଶରେ ସୁନ୍ଦରୀ ରହିଲା ତୁନିହୋଇ
ଯେମନ୍ତେ ବହୁତ ଦିନ ଗଲା ଶେଷହୋଇ ।
ଯେଥୁ ଅନନ୍ତରେ କଥା ଶୁଣ ସ୍ୱର୍ଗବାସୀ
କପିଳାସ ତେଜି ଗୁରୁ ବିଜେ କଲେ ଆସି ।
ଦେଖି ଆସନ ତେଜିଲେ ବଙ୍ଗଦେଶ ସାଇଁ
ଗୋବିନ୍ଦଚନ୍ଦ୍ର ସନ୍ନିଧେ ବିଜେ କଲେ ଯାଇଁ ।
ଗୁରୁଙ୍କ ଚରଣତଳେ ପ୍ରଣମିତ କଲେ
ସିଦ୍ଧ ହୁଅ ଗୋବିନ୍ଦ ବୈକୁଣ୍ଠେ ବସ ଭଲେ ।
ରମ୍ଭା କନ୍ୟା ବାହାର ହୋଇଲା ଧାଡିକାରେ
ଗୃହର ଚେରେଷ୍ଟା ଛାଡ଼ି ହୋଇଲା ଛାମୁରେ ।
ଗୁରୁଙ୍କ ଦର୍ଶନ ଆସି କଲା ରମ୍ଭାବାଳୀ
କୁଶଳ ପଚାରି ଗୁରୁ କଲ୍ୟାଣ ଯେ କରି ।
ଆମ୍ଭର ଚେଲାକୁ ତୋହଠାରେ ଛାଡିଗଲୁଁ
ଯତସତ କଥା ତାର କେମନ୍ତେ ବୁଝିଲୁ ।
ରମ୍ଭା ବୋଲେ ଅବଧାନେ ଶୁଣିମା ଗୋସାଇଁ
ଭଲା ମହାମନ୍ତ ତୁମ୍ଭେ କର୍ଣ୍ଣେ ଅଛ କହି ।
ସାଧୁଯେ ତୁମ୍ଭର ଚେଲା ଅଳପ ବୟସ
ନୁହଇ ଚଞ୍ଚଳ ବୁଦ୍ଧି ଧୀର ତାର ଚିତ୍ତ ।

କାହାର କୁମର ଯେ ମାନବ ଜନ୍ମ ହୋଇ
ଅନ୍ୟାୟ ଅନୀତି ଯେହା ଦେଖିଲାତ ନାହିଁ ।
ଗୁରୁ ମନେ ବିଚାରିଲା କାରଣ ହୋଇଲା
ଭଲା ହିଆ ଗୋବିନ୍ଦର ଧୈର୍ଯ୍ୟ ଧଇଲା ।
ଯେତେ ବୋଲି ରମ୍ଭାକୁ କହିଲେ ହାଡ଼ିପାଯେ
ଚେଲାଗୋଟି ଘେନି ଆମ୍ଭେ ଯିବୁଂ ମଠ ଯାଯେ ।
ହାଡ଼ିପା ବୋଇଲେ ଆସ ହୋ ଗୋବିନ୍ଦଚନ୍ଦ୍ର
ଯେତେ ବୋଲି ବାହାର ହୋଇଲେ ବେଗେ ରୁଦ୍ର ।
ମାଳବେଣୀ ନଗ୍ରରେ ସେ ପ୍ରବେଶ ହୋଇଲେ
ସେ ନଗ୍ରରେ ଭଲମନ୍ଦ ସମସ୍ତ ଦେଖିଲେ ।
ଧନା ଶୁଣ୍ଢି ଦ୍ୱାରେ ଯାଇଂ ହେଲେ ପରବେଶ
ଯେକାନ୍ତ କରିଣ ତାକୁ ହକାରିଲେ ପାଶ ।
ଆହେ ଧନେଶ୍ୱର ସାହୁ କହିବୁ କଥାଯେ
ବାଟକୁ ସମ୍ବଳ ନାହିଁ ଯିବୁ ମଠ ଯାଯେ ।
ଯେହି ଚେଲା ଗୋଟି ରଖି ଯାଉଅଛୁ ଆମ୍ଭେ
ଟଙ୍କା ଗୋଟାଚାରି ବନ୍ଧା ଦେଇଥାଅ ତୁମ୍ଭେ ।
ଧନାଢ୍ୟ ବୋଇଲେ ଯେତେ ଇଚ୍ଛା ଟଙ୍କା ନିଅ
ରାଜାକୁ ବୋଇଲା ବାବୁ ଦିନାକେତେ ରହ ।
ଅନ୍ୟାୟ କଥାକୁ ମନ କେବେହେଂ ନଦେବୁ
ସବୁଥିରେ ଗୋବିନ୍ଦରେ ସାବଧାନ ହେବୁ ।
ପରସ୍ତିରୀ ମାତା ପରପୁରୁଷଟି ପିତା
ପର ଧନ ନ ହରିବୁ ପରରେ ଅହନ୍ତା ।
ଚାରି ଟଙ୍କା ଘେନି ଗୁରୁ ଗଲେ ଦୂରଦେଶ
ରହିଲେ ଗୋବିନ୍ଦଚନ୍ଦ୍ର ଧନା ଶୁଣ୍ଢି ପାଶ ।
ଶୁଣ୍ଢି ଘରେ ନିତ୍ୟେହେଂ ମଦିରା ଉପୁଜଇ
ଗୋବିନ୍ଦଚନ୍ଦ୍ର ରାଜନ ବସି ବିକୁଥାଇ ।
ଧନିଆ ବୋଇଲା ନାଥ ତୁମ୍ଭେ ମହାଯୋଗୀ
ଦେହକୁ ଚଞ୍ଚଳ ଯାହା ହେଉଥାଅ ଭୋଗୀ ।
ଗୋବିନ୍ଦଚନ୍ଦ୍ର ବୋଇଲେ ନରୁଚଇ ତାହା

ମନ ଯେ ବଢ଼ିଲେ କାହୁଁ ବଢ଼ିବ ମୋ ହିଆ ।
ଧନା ଶୁଣି ଭରିଯା ଯେ ଷୋଡ଼ଶ ସଂପୂର୍ଣ୍ଣ
ରାଜାକୁ ଦେଖିଣ ତା'ର ଚିତ୍ତ ଛନଛନ ।
ନ ପଶଇ ଘରେ ବାଳୀ ନକରଇ କିଛି
ଭୋଜନକୁ ମନ ନାହିଁ ନିଦ୍ରାହିଁ ମୁରୁଛି ।
ଉଜାଗର ହୋଇ ବାଳୀ ଘରେ ବସିଥାଇ
ଚାରି ପହର ନିଶିରେ ଚାରି ବେଶ ହୋଇ ।
ବିଚାରିଲେ ବଙ୍ଗରାୟେ ମୁଁ ପଡ଼ିଲି କାହିଁ
ଯେହାର ଦାଢ଼ରୁ ମୁହିଁ କେହ୍ନେ ବଞ୍ଚିବଇଂ ।
ରମ୍ଭା ତହୁଁ ଶତେ ଗୁଣେ କଟାଳିଲା ମୋତେ
ଯେ କଷଣୁ ରକ୍ଷାକର ମୋତେ ଜଗନ୍ନାଥେ ।
ଯେହିରୂପେ ଚିନ୍ତାକଲା ମନେ ଦଣ୍ଡଧାରୀ
ଯେକ ଦିନକରେ ନିଶି ଅମାବାସ୍ୟା ଅନ୍ଧାରି ।
ନିଦ୍ରାର ସମୟ ଆସି ହୋଇଲାକ ଯହୁଁ
ମଠରେ ଗୋବିନ୍ଦଚନ୍ଦ୍ର ଜାଗିଲାକ ତହୁଁ ।
ଶୁଣିଆଣୀ ଉଭାହେଲା ଆସନ ଉପର
ଆହେ ନାଥ ତୁମ୍ଭ ରୂପେ ମନ ଗଲା ମୋର ।
ଆଜ ଆମ୍ଭେ କେଳିରସ କରିବା ଗୋସାଇଂ
ଅଥୟ କରୁଛି ଦେହ ତୁମ୍ଭ ମୁଖ ଚାହିଁ ।
ଯତସତ ଘେନି ଯେତେ ଲୋକ ଛନ୍ତି ରହି
ଜନମ ହୋଇଲେ ସୁଖ କେବା ନଇଛଇ ।
କନ୍ୟାର ବଚନେ ରାଜା ମହା କୋପ କଲା
ତୁ ଲୋ ପାମରୀ ରାଣ୍ଡେଣୀ ଅଟୁ ଯେ ଅବଳା ।
ମୁହିଁ ମହାଯୋଗୀ ଦେଶାନ୍ତର କରିଥାଏ
ତପ ଭଗ୍ନକରୁ ଆସି ନାହିଁ ତୋର ଭୟେ ।
ଶାପ ଦେଲେ ମରିବୁ ଆସନୁ ଘୁଞ୍ଚିଯାଅ
ନାସିକା କର୍ଣ୍ଣ ଛେଦିବି ବେଗେହେଂ ପଳାଅ ।
ତୁ ମୋହର ଦାତା ଯେଣୁ ଦେଉଅଛ ଅନ୍ନ
ତେଣୁ ଦୋଷ ଉପେକ୍ଷିଲି ଛାର ସ୍ତିରୀଜନ ।

ପତିପୁତ୍ରମାନେ ତୋତେ କି ବୋଲି ବୋଲିବେ
ଜଗତ ମୁଖରେ ତୋତେ ଅପଖ୍ୟାତି ଦେବେ ।
ମନରେ ଗୁରୁଙ୍କୁ ଚିନ୍ତା କଲା ନୃପମଣି
ବିଳମ୍ବ ନକରି ବାଳୀ ଉଠିଲା ବହ୍ନି ।
ରାଜାର ଉପରେ ଯାଇ ଉଠିଲା ବହ୍ନ
ଗୁରୁଙ୍କୁ ସୁମରି ରାଜା ବୁଜିଲା ନୟନ ।
ବିବସନ କଲା ବାଳୀ ନୃପତିର ଅଙ୍ଗ
ନିରାଶେ ଉପସ୍ଥ ଗୋପ୍ୟ ନାହିଁ ଉପବେଗ ।
ଲଜ୍ୟାରେ ଅବଳା ଫେରିଗଲା ନିଜ ସ୍ଥାନେ
ଶ୍ରୀଗୁରୁ ସୁମରି ରାଜା ରହିଲେ ମଉନେ ।
ବେନି ବେଳ ଭିକ୍ଷା ଆଣି ଖଟେ ମନଜାଣି
ଚାରି ବରଷରେ ଗୁରୁ ବିଜେ କଲେ ପୁଣି ।
ପାଞ୍ଚ ଟଙ୍କା ଲେଉଟାଇ ଦେଲେ ଧାତିକାର
ଶୁଣିକି ବୋଇଲେ ଆମ୍ଭେ ଯିବୁଂ ଖଣ୍ଡେଦୂର ।
ଶୁଣିଆଣୀ ବୋଇଲା ଗୁରୁଙ୍କ ମୁଖ ଚାହିଁ
ଧନ୍ୟ ଧନ୍ୟ ପୁରୁଷ ତା ପିତାମାତା ଦୁଇ ।
ଯେତେକ ନିଷ୍ଠୁର ଦେହ ତୁମ୍ଭ ଚେଲାଗୋଟି
ମୋ ତହୁଂ ବଳିଲା ମୋର ବଶ ନୋହିଲାଟି ।
ଅକ୍ଷୟ ଅମର ହୋଇ ବଞ୍ଚୁ ଚିରକାଳ
ପ୍ରତକ୍ଷେ ଜାଣିଲି ଯେତ ଅନାଦି ଈଶ୍ୱର ।
ହାଡ଼ିପା ବୋଇଲେ ଆମ୍ଭ ବଚନ ପ୍ରମାଣ
ଯୋଗେଶ୍ୱରୀ ତାର ମାତା କେ କରିବ ଆନ ।
ସିଦ୍ଧହୁଅ ଶୀଘ୍ରରେ ଗୋବିନ୍ଦଚନ୍ଦ୍ର ଯୋଗୀ
ମୁକ୍ତହୋଇ ସ୍ୱର୍ଗେ ବସ ଚିର ସୁଖ ସେବି ।
ଯେତେ ବୋଲି ଗୁରୁ ଚେଲା ତହୁଂ ବାହାରିଲେ
ଗୁର୍ଜ୍ଜର ଦେଶରେ ଯାଇ ପ୍ରବେଶ ହୋଇଲେ ।
କନ୍ୟା ନାମେ ରାଢ଼ିଆଣୀ ଦୁଆରେ ମିଳିଲେ
ଢଗିଲାରେ ମାତା ବୋଲି ଉଚ୍ଚସ୍ୱର କଲେ ।
ରାଢ଼ିଆଣୀ ପୁଚ୍ଛାକଲା ଶୁଣିମା ଗୋସାଇଂ

କେଉଣ ଦେଶରେ ମଠ କହ ମୋହଠାଇଂ ।
ବିଦ୍ୟାଧରଙ୍କର ପ୍ରାୟେ ବିଶୁଦ୍ଧ ଗୋସାଇଂ
ଚାତୁର୍ମାସ୍ୟା ଯାଏ ଭିକ୍ଷା ଖଟିବି କି ମୁହିଂ ।
ହାଡ଼ିପା ବୋଇଲେ ମାତ ଶୁଣସି ଗୋ ତୁହି
ଘରବାସ ଲୋକ ସିନା ଘର କରୁଥାଇ ।
ପରବାସୀ ଲୋକଙ୍କର ନାହିଂ ଘରଦ୍ୱାର
ଯେଉଂଠାରେ ବିଜେକଲୁ ସେହିଠାରେ ଘର ।
ଚଉଦିଗେ ବୁଲି ବୁଲି କୋଟିତୀର୍ଥ କରୁଂ
କପିଳାସବାସୀ ଆମ୍ଭେ ଅସିଅଛୁଂ ଦୂରୁଂ ।
ତୁ ବଡ଼ ଦାତୃକ ବୋଲି ଶୁଣିଲୁ କର୍ଣ୍ଣର
ତେଣୁ କରି ପ୍ରବେଶିଲୁଂ ତୋହ୍ମର ଦୁଆର ।
ବୋଲୁଅଛି ରାଡ଼ିଆଣୀ ମୁହିଂ ବଡ଼ପାପୀ
ତୁମ୍ଭ ପାଦରଜ ନିମ୍ଭେ ପଡ଼ିଲା ଅଦ୍ୟାପି ।
ଯେତେଦିନ ଥିବ ରହି ମୋହର ମନ୍ଦିର
ଜୀବଥିବା ଯାଏ ଭିକ୍ଷା ଖଟିବି ତୁମ୍ଭର ।
ମୁହିଂ ଅପୁତ୍ରିକ ନାରୀ ଅରଜିଛି ଧନ
ମୁହିଂ ମଲେ ଘେନିଯିବେ ରାଜାପାତ୍ର ଗଣ ।
ଧର୍ମ କରିଥିଲେ ମୋର ବାଟକୁ ସମ୍ବଳ
ପଶୁଆ ସଞ୍ଚଇ ଧନ ଗ୍ୟାଂନୀମାନେ ଦାନେଶ୍ୱର ।
ଆହୁରି ପାଞ୍ଚ ମୂରତି ସଙ୍ଗେ ଘେନି ଆସ
ଅମୃତମଣୋହି ଖଟିଥିବି ଅନ୍ନରସ ।
ହାଡ଼ିପା ବୋଇଲେ ଧର୍ମଥିଲା ପ୍ରାଣୀମାନେ
ଆଗହୁଂ କହନ୍ତି ସତ୍ୟ ସତ୍ୟହିଂ ବଚନେ ।
ତୁହି ଯେ ବୋଇଲୁ ମାତା ଅନ୍ନ ଦେବି ମୁହିଂ
କହନ୍ତେ ଜାଣିଲି ତୋର ଅକଳଙ୍କ ଦେହୀ ।
ଯେବେ ତୋର ମନେ ଅଛି ଯେତେକ ବିଶ୍ୱାସ
ରହିବୁଂ ତୋହର ବାସେ ପୂରୁ ତୋର ଆଶ ।
ଯେକା ଆମ୍ଭେ ଚଳିଯିବୁଂ ଖଣ୍ଡିଯେକ ଦୂର
ଚେଲାଟିକୁ ଛାଡ଼ିଯିବୁଂ ତୋହର ମନ୍ଦିର ।

ଯେହାକୁ ଖଟିବୁ ଭିକ୍ଷା ଥିବ ଯେତେ ଦିନ
ଆମ୍ଭେ ଆସି ଘେନିଯିବୁଂ ଇଚ୍ଛା ସମୟେଣ ।
ପାଞ୍ଚମୂର୍ତ୍ତି ଭିକ୍ଷାଦେଲେ ଯେ ହୋଇବ ଧର୍ମ
ତହୁଂ ଶତଗୁଣେ ତୋତେ ହୋଇବ କାରଣ ।
କନ୍ୟା ବୋଇଲାକ ନାଥ ଯେ ତୁମ୍ଭର ଇଚ୍ଛା
ଯେବେ ଦୁଇଜଣ ତୁମ୍ଭେ କର ଫଳଭିକ୍ଷା ।
ଦଇବେ ହାଡ଼ିପା ଗୁରୁ ଅନ୍ନ ନଭକ୍ଷନ୍ତି
ପବନ ଅପ୍ୟାନେ ତାଙ୍କ ମନ ହୁଏ ଶାନ୍ତି ।
ବୋଲନ୍ତି ହାଡ଼ିପା ଆମ୍ଭେ ଅନ୍ନତ୍ୟାଗ କଲୁଂ
ଗୋବିନ୍ଦଚନ୍ଦ୍ରକୁ ତୁମ୍ଭ ମନ୍ଦିରେ ଛାଡ଼ିଲୁଂ ।
ତୋହର ବଚନ ପ୍ରତିପାଳିଥିବ ଯେହି
ତୁ ଯହିଁକି ପେଷିବୁ ତା ନକରିବ ନାହିଁ ।
ରାଜାଙ୍କୁ ଅନାଇ ଗୁରୁ ବୋଲନ୍ତି ବଚନ
କନ୍ୟାର ଉତ୍ତର କେବେ ନକରିବୁ ଆନ ।
ମେରୁ ପ୍ରଦକ୍ଷିଣ କରି ଆମ୍ଭେ ବୁଲିଆସି
ତୁମ୍ଭଙ୍କୁ ଯେ ଘେନିଯିବୁ ହୋଇ ମନତୋଷି ।
ଆଗ୍ୟାଂ ନିରାଧାର କରି ଶରଧାରେ ଘେନ
ଶିଷ୍ୟଙ୍କୁ କହିଣ ଗୁରୁ ଚଳିଲେ ବହନ ।
ରାଡ଼ିଆଣୀ ବୋଇଲା ଉଚ୍ଛୁର ହେଲାବେଳ
ତୁମ୍ଭେ ହୋ ଗୋବିନ୍ଦନାଥ ଭିକ୍ଷା ବେଗେକର ।
ଅନ୍ନ ପରଷିଲା ଆଣି କଇବ୍ରତ ନାରୀ
ଭିକ୍ଷାସାରି ଆନନ୍ଦ ହୋଇଲେ ଦଣ୍ଡଧାରୀ ।
ଯେମନ୍ତେ ରହିଲେ ରାଜା କଇବ୍ରତୀ ଘର
ଦିନ ଶେଷ ରୟଣୀ ହୋଇଲା ଅନ୍ଧକାର ।
ନିତ୍ୟେ ସେ ଭାଜଇ ଲିଆ ରାଡ଼ିଆଣୀ ନାରୀ
ପାଗ ସଂଯୋଗ କରିଣ ଅଗ୍ନିଦେଲା ଜାଳି ।
ଭାଜଇ ହାଣ୍ଡିରେ ଲିଆ ଛଡ଼ାଏ କୁଳାର
ବିକଇ ପସରା ନିତି ମାପଇ ଅଢ଼ାର ।
ରାତ୍ର ଅର୍ଦ୍ଧଭାଗେ ସେ ରାନ୍ଧଣା କରେ ଭାତ

ଖାଇ ସାରି ଦୁଇଦଣ୍ଡ ଶୁଅଇ ନିଅତ ।
ରାତ୍ର ପାଞ୍ଚଘଡ଼ିଠାରୁ ଉଜାଗର ହୋଇ
ଚୁଲି ଲଗାଇଣ ସେହୁ ଧାନ ଖରଡ଼ାଇ ।
ସେହିମତି କରି ବିକା କିଣା କରୁଥାଇ
ତିସରା ପହର ହେଲେ ଲୁଗା ପାଲଟଇ ।
ବସିବାକୁ କ୍ଷଣେ ତାକୁ ନାହିଁ ଅବସର
ଧେନୁମାନେ ଛନ୍ତି ତାର ଦୁହାଂଳ ଅପର ।
ଅଜା ଯେ ତିନି ସହସ୍ର ପୋଷିଛି ସେ ଘରେ
ଷାଠିଏ ଭରଣ ଧାନ ପଡ଼ିଅଛି ଦ୍ୱାରେ ।
କଇରି ମରାଇ ଘରେ ଅଛି ଘଞ୍ଚ ହୋଇ
ତିନିଶ ଭରଣ ଧାନ ରଣ ଦେଇଥାଇ ।
ସବୁବେଳେ ମନ ତାର ଚଞ୍ଚଳ ପ୍ରକାର
ଯେକା ଜଣେ ସିନା ତାକୁ ନ ଥାଇ ଅସର ।
ଦଣ୍ଡେ ନ ବସିଣ ବିକା କିଣା କରୁଥାଇ
ଦିବସେ ନ ଥାଇ ଭୋକ ରାତ୍ରେ ନିଦ୍ରା ନାହିଁ ।
ଦେଖିଣ ଚକିତ ହେଲେ ଶ୍ରୀ ଗୋବିନ୍ଦଚନ୍ଦ୍ର
କଇବ୍ରତୀ ବୋଲେ ନାଥେ ଶୁଣ ମୋ ଉତ୍ତର ।
ମୁହିଁ ଖଇ ଭାଜି ଦେଉଥିବି ତୁମ୍ଭ ଆଗେ
ଅଢ଼ାରେ କୁଞ୍ଚାରେ ମାପି ଦେଉଥିବ ଯୋଗେ ।
ଗରାଖ ଅଇଲେ ଧାନ ମାପିବ ଅଢ଼ାରେ
ଭଲକରି ଦେଉଥିବ ଦ୍ୱିଗୁଣ ପ୍ରକାରେ ।
ପାଇଟି ଉଶ୍ୱାସ ମୋତେ ହୋଇବ ଗୋସାଇଂ
ମୋ ବୋଲ କରିବ ତୁମ୍ଭ ଗୁରୁହନ୍ତି କହି ।
ନୃପତି ବୋଇଲେ ମାତା ଧନ୍ୟ ଲୋଭ ତୋର
ଅଚଳାଚଳ ସମ୍ପତ୍ତି ପୂରିଛି ତୋ ଘର ।
ପୁତ୍ର ପଡ଼ି ନାହିଁ ଯେକା ଜଣେ ବୋଲି କହୁ
ବସି ଭୋଗକରି କିମ୍ପା କଦର୍ଥନା ପାଉ ।
ମୃତ୍ୟୁ ପରିଯନ୍ତେ ତୋତେ ଗୋଡ଼ାଇବ ଅନ୍ନ
ତୋହ ମଲେ ଘେନିଯିବେ ରାଜାପାତ୍ର ମାନ ।

କଇବ୍ରତୀ ବୋଇଲା କାହାର ଲୋଭ ନାହିଁ
ଜୀବ ଯିବା ଯାଏ ଧନ ମୂରୁଛି ନୁହଇ ।
ନୃପତି ବୋଇଲେ ଗ୍ୟାଂନ ପାଇଲା ରମଣୀ
ଲୋଭ ମୋହ କିଞ୍ଚିତେ ସେ ନ ଛାଡ଼େ ଅବନୀ ।
ବଙ୍ଗଦେଶେ ଥିଲା ଯେ ଗୋବିନ୍ଦଚନ୍ଦ୍ର ରାଜା
ନବଲକ୍ଷ ବଙ୍ଗଦେଶ ଶତେକ ଭାରିଯା ।
ସହସ୍ରେକ ତୁରଙ୍ଗମ ସହସ୍ରେକ ହସ୍ତୀ
ଗୁରୁ ଆଗ୍ୟାଂରେ ଛାଡ଼ିଲା ଯେତେକ ସମ୍ପତ୍ତି ।
ଦଣ୍ଡ ସିଂହାସନ ଛାଡ଼ି ଯୋଗୀ ହୋଇଗଲା
ତାହାଙ୍କୁ ସେହି ସମ୍ପତ୍ତି ବଡ଼ କି ହୋଇଲା ।
କଇବ୍ରତୀ ବୋଇଲା ଯେ ସୁଗ୍ୟାଂନ ଗୋଚରୀ
ଗୃହ କରିବାକୁ କେହି ନୁହେଂ ତାଙ୍କ ସରି ।
ମୋହତୁଂ ଗୋବିନ୍ଦଚନ୍ଦ୍ର ହୋଇବ କି ତପୀ
ବୁଲି ବୁଲି ଦେହ କ୍ଷୀନ ହୋଇଲା ଅଦ୍ୟାପି ।
ପର ପ୍ରତି ଆଶା ଭିକ୍ଷା ଦେବ କେ ନଦେବ
କୁଟୁମ୍ବ ନିଃଶ୍ୱାସ ତାର ଉପରେ ପଡ଼ିବ ।
ମୁହିଁ ବନ୍ଧୁ ଦୁଃଖପଡ଼ି ଅରଜୁଛି ଧନ
ଯିଏ ମାଗେ ତାହାକୁ ହିଂ ଦିଏ ଅନ୍ନଦାନ ।
ଦେବା ଯେ ମାଗିବା ଦୁଇ କଥା ସମକର
ଦେବା ଲୋକ ଦେହ ଅନ୍ତେ ବସେ ସ୍ୱର୍ଗପୁର ।
ପୃଥ୍ୱୀ ବୁଲି ରାଜା ନ ପାଇବ ଫଳ ଯେତେ
ଗୃହକର୍ମରେ କାରଣ ଲଭିବି ମୁଂ ତେତେ ।
କାମ କ୍ରୋଧ ନିଦ୍ରା ତିନି ଯୋଗକୁ ଧାରଣ
ଦିନକୁ କଳପକରି ବଞ୍ଚଇ ମୁଁ ଦିନ ।
ଖଇ ଭାଜିବାକୁ ମୋର ନଅଣ୍ଟଇ ଦିନ
ତେଣୁ କରି ନିଦ୍ରା ମୋର ନମାଡ଼େ ନୟନ ।
ଦିନେକ ଭୋଜନ ମୁଂ ଯେ କରେ ଯେକାବେଳେ
ବେଭାରେ ପୁରୁଷ ଗ୍ୟାଂନ ନାହିଂନା ମୋହରେ ।
ତିନିଶ ଅଶୀ ବରଷ ଯେହିମତି ଗଲା

ଦିନେ ହେଁ ଅଙ୍ଗକୁ ମୋର ଅଳସ ନୋହିଲା ।
କଇବ୍ରତୀ କଥା ଶୁଣି ଗୋବିନ୍ଦ ରାଜନ
କଥାରେ ଜିଣି ନ ପାରି ହୋଇଲା ମଉନ ।
ମନେ ବିଚାରିଲା ଗୁରୁ କହିଗଲେ ମୋତେ
କଇବ୍ରତୀ ବୋଲି ମୁଁ ଯେ ଭାଙ୍ଗିବି କେମନ୍ତେ ।
ଯେତେ ବୋଲି ଖଇ ବିକି ବସିଲା ରାଜନ
ବାଛି ନ ଜାଣି ରାଜନ ଅଧେ଼ାଇ ଧନ ।
ସାନ ଅଢ଼ା ବଡ଼ ଅଢ଼ା ବାରଣ ନ ଯାଇ
ସାନରେ ମାପିଣ ପୁଣି ବଡ଼ରେ ଦିଅଇ ।
କଇବ୍ରତୀ ବୋଲେ ନାଥ ଶୁଣ ମୋ ଉତ୍ତର
ଅଢ଼ା ଚିହ୍ନି ନ ପାରିଲେ ଅତି ଗର୍ବେଶ୍ୱର ।
ବିସ୍ତାରି କହିଲା ତାଙ୍କୁ ରାଢ଼ୁଆଣୀ ନାରୀ
ଜାଣିଲେ ଗୋବିନ୍ଦଚନ୍ଦ୍ର ସାନ ବଡ଼ ବୋଲି ।
ବିକିଲେ ଅସର କ୍ଷଣେ ନ ଥାଇ ତାହାକୁ
ଯେକାବେଳେ ଭିକ୍ଷାଯାଇ ଲଗାଇ ନିଶାକୁ ।
ଯେମନ୍ତେ ଚାରିବରଷ ଦିନ ବହିଗଲା
କଇବ୍ରତୀ ମୁଖକୁ ନୃପତି ନ ଚାହିଂଲା ।
ଅବିଛନ୍ନେ ହେଠମାଥ ହୋଇ ବସିଥାଇ
ତାହାଦେଖି ରାଢ଼ିଆଣୀ ବିଚାର କରଇ ।
ଦିନେହେଁ ମୁଖ ନାଥ ଟେକି ନ ଚାହିଲା
ଜାଣିମା ସନ୍ଦେଶ ବୋଲି କତିରେ ବସିଲା ।
ଦେଖିଲା ଚରଣ ତଳେ ପଦ୍ମପାଦ ଚିହ୍ନ
ମନେ ବିଚାରିଲା ଯେତ ବଡ଼କୁଳେ ଜନ୍ମ ।
ଆଜିଠାରୁ ଖଇ ତୁମ୍ଭେ ନବିକିବ ନାଥେ
ବସିକରି ଯୋଗ ତୁମ୍ଭେ ସାଧୁଥିବ ସୁଖେ ।
ଗୋବିନ୍ଦଚନ୍ଦ୍ର ଚିନ୍ତିଲେ ଯେ ମୋତେ ଚିହ୍ନିଲା
ସେହିଦିନୁ ଆସନ ବାହାରେ ସଜାଡ଼ିଲା ।
ଯେମନ୍ତେ ଚାରିବରଷ ହୋଇଲା ସମ୍ପୂର୍ଣ୍ଣ
ହାଡ଼ିପା ବିଜୟେ କଲେ ଚେଲା ସନ୍ନିଧାନ ।

ଗୁରୁ ଦେଖି ରାଜନ ଆସନ ଉପେକ୍ଷିଲା
ଆଦେଶ ଆଦେଶ ବୋଲି ଚରଣେ ପଡ଼ିଲା ।
କଲ୍ୟାଣ ବାଞ୍ଛିଲେ ତାଙ୍କୁ ମହତ ପୁରୁଷ
ସିଦ୍ଧହୁଅ ଗୋବିନ୍ଦ ରେ ବଇକୁଣ୍ଠେ ବସ ।
ତହୁଂ ରାଡ଼ିଆଣୀକି ଭେଟିଲେ ହାଡ଼ିପାୟେ
ଖଣ୍ଡେ ଦୂରୁଂ ରାଡ଼ିଆଣୀ ଲୋଟିଲାକ ପାୟେ ।
ଗୁରୁ ଆଜ୍ଞାଂଦେଲେ ମାଗୋ ଚେଲାଗୋଟି ନେଲୁ
ଅନ୍ୟାଚାର କଥା ଯାର କିରୂପେ ବୁଝିଲୁ ।
ରାଡ଼ିଆଣୀ ବୋଲୁଅଛି ଶୁଣିମା ଗୋସାଇଂ
ଚାରିବରଷ ହୋଇଲା ଅଛି ମୋର ଠାଇଂ ।
ପଚାରିବା କଥାକୁ ଉତ୍ତର ଦେଉଥାଇ
ମୁଖଟେକି ଦିନେ ମୋତେ ଚାହିଂବାକୁ ନାହିଂ ।
ମୋହ ଘରଠାରୁ ଦିନେ କେଣିକି ନ ଯାଇ
ନୁହଇ ଚଞ୍ଚଳ ବୁଦ୍ଧି ଥିଲା ତାର ଦେହୀ ।
କାୟା ସିଦ୍ଧ ହୋଇଲା ହାଡ଼ିପା ବିଚାରିଲେ
ଗୋବିନ୍ଦଚନ୍ଦ୍ରକୁ ଚାହିଂ ମନେ ବିଚାରିଲେ ।
ବାଟରେ ଯେ ପଚାରନ୍ତି ହାଡ଼ିପା ଗୋସାଇଂ
ନିଜ ରାଜ୍ୟ ଦେଖିବୁକି ରାଜା ଗୋବିନ୍ଦାଇ ।
ନୃପତି ବୋଇଲେ ମୋର ତହିଂ କିସ କାର୍ଯ୍ୟ
ମୁହିଂ କିସ କରିବଇଂ ମୋର କିସ ରାଜ୍ୟ ।
ହାଡ଼ିପା ବୋଇଲେ ତୋର ଗର୍ଭଧାରୀ ଅଛି
ନେଇ ଭେଟାଇବା ତତେ ମୁକୁତା ଦେଇକି ।
ଯେତେ ବୋଲି ଗମନ କରନ୍ତି ଗୁରୁଶିଷ୍ୟ
ନିଶାକାଳେ ପ୍ରବେଶ ହୋଇଲେ ବଙ୍ଗଦେଶ ।
ନଗର ପାରୁଶେ ସିଂହଦ୍ୱାରେ ହେଲେ ଯାଇ
ନିଦ୍ରାଗତ ସମସ୍ତେ ଚଂହଳ ନଶୁଭଇ ।
ହାଡ଼ିପା ବୋଇଲେ ବାବୁ ନବରକୁ ଯାଅ
ଅନ୍ତପୁରେ ଯାଇ ମାତା ପୁତ୍ର ଭେଟ ହୁଅ ।
ରାଣୀ ମହାଦେଈ ଜେମା ମୁଦୁସୁଲୀମାନେ

କାହାକୁ ନଦେଖା ଦେଇ ପଶିବୁ ଗୋପନେ ।
ନୃପତି ବୋଲଇ ସ୍ୱାମୀ କବାଟ କିଳିଣୀ
କି ରୂପେ ଫିଟିବ ଦ୍ୱାର କହ ତତ୍ତ୍ୱବାଣୀ ।
ହାଡ଼ିପାଏ କବାଟରେ ଲଗାଇଲେ କର
ଫିଟିଲା ଯନ୍ତ୍ର କିଳିଣୀ ବାହାର ଭିତର ।
ସିଂହଦ୍ୱାର ମାଡ଼ିଣ ବସିଲେ ଗୁରୁଦେବ
ଭିତରେ ପଶିଲା ରାଜା ଗତିକରି ବେଗ ।
ଯେଉଂଠାରେ ଅଛନ୍ତି ମୁକୁତା ମହାଦେଈ
ସେସ୍ଥାନରେ ପ୍ରବେଶ ହୋଇଲେ ଗୋବିନ୍ଦାଇ ।
ଦେଖିଲା କଟକ ତାର ସବୁଅଛି ପୂରି
ଜାଗିଲାରେ ମାତା ବୋଲି ମୁଖରେ ଉଚାରି ।
ଗଜ ପଲଙ୍କରେ ମାତା ନିଦ୍ରା ଯାଇଛନ୍ତି
ଜାଗିଲା ଜାଗିଲା ପଦ କର୍ଣ୍ଣରେ ଶୁଣନ୍ତି ।
ଧାଡିକାରେ ନିଦ୍ରା ତେଜି ଉଠିଲେ ବହନ
ପ୍ରବେଶ ହୋଇଲେ ଯାଇ କୁମର ସନ୍ନିଧାନ ।
ଲୟେ ଅନୁସରିଲେ ମୁକୁତା ମହାଦେଈ
ତୁହିକି ମୋହର ପୁତ୍ର ରାଜା ଗୋବିନ୍ଦାଇ ।
ମାତାଙ୍କ ଚରଣତଳେ କୁମର ଲୋଟିଲା
ସିଦ୍ଧଲୋକେ ବସ ବୋଲି ମାତା ପ୍ରକାଶିଲା ।
ଗୁରୁ କାହିଁଛନ୍ତି ବାବୁ କହ ମୋ ଆଗର
କୁମର ବୋଇଲା ଗୁରୁ ଛନ୍ତି ସିଂହଦ୍ୱାର ।
ବସରେ କୁମର ବୋଲି ମାତା ଆଗ୍ୟାଂ ଦେଲେ
ଆପଣେ ଭିତରୁ ଆଣି ଅନ୍ନ ପରଶିଲେ ।
ଭୁଞ୍ଜରେ କୁମର ବୋଲି ମାତା ଆଗ୍ୟାଂ ଦେଲେ
ଲବଣ ଗୋଟିଏ ଦିଅ କୁମର ବୋଇଲେ ।
ଜନନୀ ବୋଇଲେ ବାବୁ କି ଯୋଗ ସାଧିଲୁ
ବାର ବରଷରେ ତୁ ତ ଲୁଣ ନ ଛାଡ଼ିଲୁ ।
ମାୟାଚାରୀ ସଙ୍ଗେ ହୋଇଲୁକି ବାଇ
ଭଲା ସେ ଗୁରୁ ଗୋସାଇଂ ଗ୍ୟାଂନ ଦେଲେ କହି ।

ଯେତେ ବୋଲି ଲୁଣ ଆଣିଦେଲେ ମହାସତୀ
ଭୁଞ୍ଜରେ ଗୋବିନ୍ଦଚନ୍ଦ୍ର ବିରସ ତା ମତି ।
ଯେବେ ତୁ କୁମରମଣି ବିଗ ଫେରିଯିବୁ
ଅନ୍ନ ଯେବେ ଛାଡ଼ିବୁ ମୋ ବଦନ ଚାହିଁବୁ ।
ଯେତେ ବୋଲି ପୁତ୍ରକୁ ଘେନିଣ ମହାଦେଇ
ସିଂହଦ୍ୱାରେ ପ୍ରବେଶିଲେ ହାଡ଼ିପାଙ୍କ ତହିଁ ।
ଆଦେଶ ଆଦେଶ ବୋଲି ଶିର ନୁଆଇଲେ
ହାଡ଼ିପାକୁ ଚାହିଁ ମୁକ୍ତା ବଚନ ବୋଇଲେ ।
ତୁମ୍ଭେ ଯେ ପୁତ୍ରକୁ ଘେନି ଦେଶାନ୍ତର ଗଲ
ବାର ବରଷରେ କିଛି କାରଣ ନକଲ ।
ଅନ୍ନଭିକ୍ଷା ପରଶନ୍ତେ ମାଗିଲା ଲବଣ
ଲବଣ ଭୁଞ୍ଜିଲେ କାହୁଁ ପାଇବ କାରଣ ।
ଲବଣ ସକାଶୁଁ ଦେହୁଁ ମାଉଂସ ମିଳାଇ
ସର୍ବ ସ୍ୱାଦ କରେ କେହୁ ଛାଡ଼ି ନ ପାରଇ ।
ଯେବେ ଯେହିକ୍ଷଣି ଯେ ପୁତ୍ରକୁ ଘେନିଯିବ
ଲବଣ କାଟନ୍ତେ ସିନା ଅନ୍ନହିଁ ଛାଡ଼ିବ ।
ଅନ୍ନ ଭୋଗ କଲା ଯାଉଅଛି ନାଶ
ପବନ ଆହାର କଲେ ସିଦ୍ଧ ଅଙ୍ଗ ଦେଶ ।
ହାଡ଼ିପା ବୋଇଲେ ଶୁଣ ମୁକୁତା ଗୋ ମାତା
ଆଡ୍ଡେ ଆଡ୍ଡେ କରି ସିନା ମାୟାକୁ ଛାଡ଼ନ୍ତା ।
ତୋତେ ଭେଟାଇବା ପାଇଂ ଆଣିଲୁ କର୍ମରେ
ପ୍ରତ୍ୟକ୍ଷେ ଜାଣିବ ଆର ଲେଉଟାଣି ବେଳେ ।
ଯେହା ଶୁଣି ମହାଦେଇ ଭିତରକୁ ଗଲେ
ଗୋବିନ୍ଦଚନ୍ଦ୍ର ଘେନି ହାଡ଼ିପା ବିଜେ କଲେ ।
ଯେମନ୍ତ ସମୟେ ଯେ ରୟଣୀ ପାହିଗଲା
ରୋଦମାର ଆଗେ ଯାଇ ପୋଦମା କହିଲା ।
ଶୁଣ ସପତଣୀ ସଖି ଦେଖିଲଇଂ ଯାହା
ସ୍ୱପନ ଦେଖିଲି ଆଜ ଆସିଥିଲେ ନାହା ।
କଥାଭାଷା ହେଉଥିଲେ ମାତାଙ୍କ ପାଶରେ

ତେତେବେଳୁ ମୁହିଂ ଥିଲି ଅଚେତ ନିଦ୍ରାରେ ।
ରୋଦମା ବଚନ ଶୁଣି ପୋଦମା ବୋଲଇ
ମୁହିଂ ଆଜ ସ୍ୱପନ ଦେଖିଲି ପ୍ରାଣସହୀ ।
ପଲଙ୍କେ ପହୁଡ଼ିଛନ୍ତି ମୋତେ କୋଳେ ଘେନି
ଆପାର ଚାଟୁ ବଚନ କହୁଥିଲେ ପୁଣି ।
ମୁଖକୁ ମୁଖ ଲଗାଇ ଦେଲେ ଚୁମ୍ବଦାନ
କାମରସେ ତ୍ରିପତି ହୋଇଲା ମୋର ମନ ।
ସତ ପ୍ରାୟେ ମଣିଥିଲି ସ୍ୱପନ ରହସ୍ୟ
କାଳେ ମିଛ ହୋଇଲା ଗୋ ଶୁଣ ତୁ ବିଶ୍ୱାସ ।
ପ୍ରଭୁ ମୁଖ ସ୍ମରି ରୋଦନ କଲେ ବାଳୀ
ଅନେଶ୍ୱତ ରାଣୀ ଶୋକ କଲେ ଅସମ୍ଭାଳି ।
ନଗରେ ଚହଳ ଶବ୍ଦ ଶୁଭିଲାକ ଯେଣୁ
ଧାଇଂ ଆସି ମୁକୁତା ଯେ ମିଳିଲେକ ତେଣୁ ।
ଅନିମିତ୍ତେ କିମ୍ପାଇଂ ଗୋ ପାଡୁଛ ବୋବାଳି
ଆଉ ଅଳପ ଦିନେ ଆସିବେ ଦଣ୍ଡଧାରୀ ।
ରାଣୀ ବୋଲେ ଚାରିମାସ କରିଥିଲେ କଷ୍ଟ
ବାରବରଷରେ ସ୍ୱାମୀ ନ ପାଇଲୁ ଭେଟ ।
ପ୍ରବୋଧି କହନ୍ତେ ସର୍ବେ ହୋଇଗଲେ ତୁନି
ଭିତରକୁ ବିଜେ କଲେ ମୁକୁତା ଜନନୀ ।
ଯେଥୁ ଅନନ୍ତରେ କଥା ଶୁଣ ଆନ ବାଣୀ
ବଙ୍ଗ ଦେଶୁଂ ବାହାର ହାଡ଼ିପା ଚେଲା ଘେନି ।
ହାଡ଼ିପା ବୋଇଲେ ତୋତେ ମହାମନ୍ତ୍ର ଦେଲୁ
ବାରବରଷରେ ତୋତେ ରାଜ୍ୟକୁ ଆଣିଲୁ ।
ତୋ ମାତା ମୁକୁତାଦେଈ ବାହିଲା ସିଦ୍ଧାନ୍ତ
ତୁହିତ ଶୁଣିଲୁ ଗିରେ ପୁଣି ତଦଗତ ।
ଗୁରୁ ସିନା କହଇ ସଂସାର ଅନୁଭବ
ସାଧିଲେ ହୁଅଇ ସାଧ ଆଉ ମାନ ସର୍ବ ।
ଅନ୍ନ ତୁ ଛାଡ଼ିଣ କର ପବନ ଆହାର
ଫିଟିଣ ଯାଉ ଅଛିକି ବାହାର ଭିତର ।

ସିଦ୍ଧ ମୂଳ ଚିହ୍ନାଇଲେ ଶ୍ରୀଗୁରୁ ଗୋସାଇଁ
ଯେହା ଖାଅ ଅମର ହୋଇବ ତୋର ଦେହୀ ।
ଯୋଗାସନ ମନ୍ତ୍ର କହି କରିଲେ କାରେଣୀ
ଅଧରୁ ଯାଉଛି ଉଡ଼ି ପବନ ଉଜାଣି ।
ବୋଲନ୍ତି ଗୋବିନ୍ଦଚନ୍ଦ୍ର ତୋର ପରସନ୍ନେ
ଘୋରୁ ଘୋରୁ ଲାଉଟି ତୁଟିଲା କିଛିଦିନେ ।
ଆବର ଅନ୍ନକୁ ଠାବ ନାହିଁ ଯେ ଗୋସାଇଁ
ତଳଚକି ଅଛି ଯେକ ଟଙ୍କା ପ୍ରାୟ ହୋଇ ।
ଜଳ ଭିତରକୁ ତାହା ଫିଙ୍ଗିଲେ ବହନ
ଯେତେ କହି ଗୁରୁ ଶିଷ୍ୟେ କରନ୍ତି ଗମନ ।
ଡାହାଣ ବ୍ରତେକ କରି ହାଡ଼ିପା କାହ୍ନନ୍ତି
ଅରଣ୍ୟ ଡିଙ୍ଗର ପଥେ ଗମନ କରନ୍ତି ।
ଦିବସେ ବୁଲନ୍ତି ରାଜ୍ୟେ ବନେ ରାତ୍ରେ ଫେରି
ସେହି ଦିନୁ ଅନ୍ନତ୍ୟାଗ କଲେ ଦଣ୍ଡଧାରୀ ।
ଅଷ୍ଟଦିନେ ଗୋଗୋଷ୍ଟରୁ ପାନ କରି ଦୁଧ
ଛ'ମାସରେ ତଥାକଥା କଲାକ ନିରୋଧ ।
ନଗର ତ୍ୟଜି ସମୁଦ୍ର କୂଳେ ଯାଇ ରହି
କୋମଳ ପଲ୍ଲବ ତହିଁ ଫଳମୂଳ ଖାଇ ।
ଗୁରୁଙ୍କୁ ପୁଛିଲା ସ୍ୱାମୀ ଶୁଣ ମୋ ଉତ୍ତର
ଯେଉଁ ଦିନ ବଙ୍ଗେ ହୋଇଥିଲି ନୃପବର ।
ସୁଗ୍ୟାନୀ ବ୍ରାହ୍ମଣମାନେ କହୁଥାନ୍ତି ମୋତେ
ସାତସିନ୍ଧୁ ସାତଦ୍ୱୀପ ଅଛି ମହୀଗତେ ।
କର୍ଣ୍ଣେ ଶୁଣିଥିଲି ମୋ ନଦେଖି ଥିଲା ଚକ୍ଷୁ
ଚର୍ମନୟନେ ଦେଖିଲି ମଣିବି ପ୍ରତ୍ୟକ୍ଷୁ ।
ମହିମା ସମୁଦ୍ର ନାଥ ଦେଖିବି କେମନ୍ତେ
ଯେତେ ବୋଲି ଚରଣେ ଲୋଟିଲେ ମହୀପତେ ।
ହାଡ଼ିପା ବୋଇଲେ ଯେବେ ଇଚ୍ଛାକଲୁ ମନ
ଦେଖାଇବା ସପ୍ତସିନ୍ଧୁ ସପ୍ତଦ୍ୱୀପମାନ ।
କେମନ୍ତେ ବୁଲିବୁ ବାବୁ ଅଗାଧ ଜଳର

ଚୌରାଶୀ କାଠି ଗଭୀର ନାହିଁ ଥଳକୂଳ ।
ଆସ ଆସ ପୁତ୍ର ତୋତେ ସନ୍ଦେଶ କହିବା
ପାଦୁକା ମନ୍ତ୍ର କହିଲେ ଗୁରୁ ମହାଦେବା ।
ଯେ ମନ୍ତ୍ର ପଢ଼ିଣ ବାବୁ ପଥକୁ ଚାହିଁଲେ
ଯେଣେ ବାଞ୍ଛା କରିବୁ ଗମିବୁ ତେଣେ ଭଲେ ।
ଆବର ଅଞ୍ଜନ ମନ୍ତ୍ର ଶୁଣରେ କୁମର
ନିଶାରେ ଶତେ ଯୋଜନ ଦିଶିବ ନିର୍ମଳ ।
ପୁଣିହିଁ ସନ୍ନ୍ୟାସ ମନ୍ତ୍ର ଦେଲେ ତପୀବର
ଯେ ମନ୍ତ୍ର ପଢ଼ିଲେ ଉଡିଯିବୁ ସ୍ୱର୍ଗପୁର ।
କୁହୁକ ମନ୍ତ୍ର ବିଧାନ କହିଲେ ଗୋସାଇଁ
ଆସୁ ଯାଉଥିଲେ ତୋତେ ନ ଦେଖିବେ କେହି ।
ସଭା ମଧ୍ୟରେ ଅସଂଖ୍ୟ ଲୋକ ବସିଥିବେ
ତୁ ତାଙ୍କ ସଙ୍ଗତେ ଥିବୁ କେହି ନ ଦେଖିବେ ।
ଆବର ମନ୍ତ୍ରର କଥା ଶୁଣ ମହୀଦେବ
ହାଣିଲେ ଖଡ୍‌ଗ ଗଦା ଉପୁଡ଼ି ପଡ଼ିବ ।
ଆବର କଥାଯେ ଅଛି ଅନ୍ନପୂର୍ଣ୍ଣା ମନ୍ତ୍ର
ଆପଣେ ଥୋଇବୁଂ ନେଇ ତୀର୍ଥଜଳ ପାତ୍ର ।
ଯେକଗୋଟି ତଣ୍ଡୁଳ ଜଳରେ ପକାଇବୁ
ଚୁଲିରେ ବସାଇ ନିଆଁ ଚୁଲିରେ ଜାଳିବୁ ।
ଫୁଟିବ ତଣ୍ଡୁଳ ଗୋଟି ହୋଇବ ନରମ
ଲକ୍ଷେ ଲୋକ ଖାଇଲେଣ ନୋହିବ ନିଉନ ।
ଯେମନ୍ତେ ଅନେକ ମନ୍ତ୍ର ହାଡ଼ିପା କହିଲେ
ଶୁଣିଣ ଗୋବିନ୍ଦଚନ୍ଦ୍ର ହରଷ ହୋଇଲେ ।
କୃଷ୍ଣାଜିନ ପକାଇଲେ ସିନ୍ଧୁଜଳେ ପଶି
ଦୁଇ ଆସନରେ ଗୁରୁ ଶିଷ୍ୟ ଯାଇ ବସି ।
ଚଞ୍ଚଳ ବିଜୁଳି ଯହ୍ନେ ଅନ୍ତରୀକ୍ଷେ ହୋଇ
କହୁଂ କହୁଂ ପ୍ରବେଶ କାଞ୍ଚନ ଦ୍ୱୀପେ ଯାଇଂ ।
ଛାଲରୁ ଉତୁରି କୂଳେ ହେଲେ ପରବେଶ
ଯେ କାଞ୍ଚନ ଦ୍ୱୀପ ବାବୁ ଶୁଣରେ ସନ୍ଦେଶ ।

ବେନିଶତ ଯୋଜନ ଯେ ମର୍ତ୍ତ୍ୟକୁ ଦୁର୍ଲଭ
କହିଣ ନୁହଇ ଯେ ଯେ ଅପୂର୍ବ ସୁଲଭ ।
କ୍ରୋଶ ଦୂର ବୋଲିଣ ଆସନେ ବିଜେକଲେ
ତହୁଁ ଅନ୍ତରୀଣେ କୁଶଦ୍ୱୀପରେ ମିଳିଲେ ।
ଚାରି କ୍ରୋଶ କୁଶସ୍ଥଳୀ ଅଛି ଦ୍ୱୀପ ଲାଗି
ରତ୍ନଦ୍ୱୀପେ ପ୍ରବେଶ ହୋଇଲେ ଆସି ବେଗି ।
ହୀରା ନୀଳା ପୋହଳା ଯେ ଅଷ୍ଟ ରତ୍ନମାନ
ଗଛିଛନ୍ତି କୁଢ଼ କୁଢ଼ ପର୍ବତ ସମାନ ।
ଗୋବିନ୍ଦଚନ୍ଦ୍ର ବୋଇଲେ ଯେ ଦ୍ରବ୍ୟ କାହାର
କୁବେର ନୃପତିର ଯେ ଅଟଇ ଭଣ୍ଡାର ।
ତହୁଁ ଅନ୍ତରୀକ୍ଷେ ଚଳି ଶାକଳ ଦ୍ୱୀପରେ
ବେଗେଣ ଗୋବିନ୍ଦ ବୀର ପରବେଶ ହେଲେ ।
କୁହୁକ ମନ୍ତ୍ର ବଳେ ବେଗେ ଚଳିଗଲେ
ରମ୍ୟକ ଦ୍ୱୀପରେ ଯାଇଂ ପ୍ରବେଶ ହୋଇଲେ ।
ଦଧି ଘୃତ ସୁରା ପୁଣି ଇକ୍ଷୁ ଦୁଗ୍ଧ ମଧୁ
ଲବଣ ସହିତ ହୋଇ ଯେ ଯେ ସପ୍ତସିନ୍ଧୁ ।
ସାତ ସିନ୍ଧୁ ସାତଦ୍ୱୀପ ଇଚ୍ଛାରେ ବୁଲିଲେ
ବାହୁଡ଼ି ସମୁଦ୍ରକୂଳେ ପ୍ରବେଶ ହୋଇଲେ ।
ଗୋବିନ୍ଦଚନ୍ଦ୍ର ବୋଇଲେ ନିସ୍ତାରିଲି ମୁହିଂ
ଛାଡ଼ିଲେ ମନରୁ ଚିନ୍ତା ଭୟ ଭ୍ରାନ୍ତି ନାହିଂ ।
ମନ ପବନରୁ ଯେ ବଳିଲା ମୋର ଗାତ୍ର
ଯେ ଦେହେ ଦେଖିଲି ଦ୍ୱୀପ ସମୁଦ୍ର ସପତ ।
ଧନ୍ୟରେ ମୁକୁତା ଦେଇ ଜନନୀ ମୋହର
ସେହି ମତି ବୁଦ୍ଧି ଦେଲୁ କରମ ସୁଫଳ ।
ବୋଇଲେ ଗୋବିନ୍ଦଚନ୍ଦ୍ର ଶୁଣ ଗୁରୁଦେବ
ଦଣ୍ଡ ସିଂହାସନ ଦେଶ କିସ ମୋର ହେବ ।
କି କରିବି ହସ୍ତୀ ଘୋଡ଼ା କି କରିବି ବଳ
କି କରିବି ରୋଦମା ପୋଦମା ବେନି ମୋର ।
ସମୟରେ କାୟା ମୋର ହୁଅନ୍ତା ବିନାଶ

ସୁବେଳେ ପାଇଲି ଗୁରୁ ନାଶିଲି ସନ୍ଦେଶ ।
ଅସାଧକୁ ସାଧ କଲି ମନକୁ ପାଇଲି
ମନ ପବନକୁ ଆଣି ଜଗୁଆଳ କଲି ।
ହାଡିପା ବୋଇଲେ ବାବୁ ପାଇଲୁ କାରଣ
ଯେବେ ଦିଗବିଜେ କରିଯିବାକ ବହନ ।
ସିନ୍ଧୁ କୂଳ ବୁଲି ଯାଉଛନ୍ତି ଗୁରୁ ଚେଲା
ଯୋଗାନ୍ତି ସଙ୍ଗରେ ରାଜା ହୋଇଛନ୍ତି ମେଳା ।
ଗଣ୍ଡୁକୀ ଗୋମତୀ ଯେ କେଦାର ଗଉତମୀ
କେଦାର ସଙ୍ଗମ ଚିତ୍ରୋତ୍ପଳା ବୈତରଣୀ ।
ଗଙ୍ଗାସାଗର ସଙ୍ଗମ ଗୟା କୁଶଭଦ୍ରା
ଉତ୍ତରବାହିନୀ ସରସ୍ୱତୀ ଯେ ନରମଦା ।
କପିଳାସ ଗୋହାଟ କାବେରୀ ଗଙ୍ଗା ସ୍ଥାନ
ଯେପରି କୋଟିୟେ ତୀର୍ଥେ କଲେକ ଯେ ସ୍ନାନ ।
କ୍ଷଣେହେଂ ନାହିଂ ବିଶ୍ରାମ ବୁଲୁଂ ନାନା ଦେଶ
ଶେଷ ହେଲା ଜମ୍ବୁଦ୍ୱୀପ ଦ୍ୱାଦଶ ବରଷ ।
ଗୋବିନ୍ଦଚନ୍ଦ୍ରକୁ ଗୁରୁ ପଚାରନ୍ତି ବାଣୀ
ମାତା ବୋଲ ହୃଦଗତେ ଅଛୁଟିକି ଘେନି ।
ଦ୍ୱାଦଶ ବରଷ ଆସି ହୋଇଲାକ ଦିନ
ବଙ୍ଗ ଦେଶ ଦେଖିବାକୁ ଅଛିଟିକି ମନ ।
ଗୋବିନ୍ଦଚନ୍ଦ୍ର ବୋଇଲେ ମୋର ଇଚ୍ଛା ନାହିଂ
ତୁମ୍ଭ ଅନୁଗ୍ରହ ହେଲେ ଯିବି ଶୀଘ୍ର ହୋଇ ।
ତୁମ୍ଭେ ଯିବ ଯେଣେ ମୁହିଂ ଯିବି ସେଇ ବାଟେ
ଆଜ୍ଞାଂ ଶିରାଗ୍ରତ କରି ଅଛଇ ଲଲାଟେ ।
ଯେତେ ବୋଲୁଂ ହାଡ଼ିପାୟେ ଲେଉଟାଣି ବିଜେ
ପ୍ରବେଶ ହୋଇଲେ ଯାଇ ବଙ୍ଗଦେଶ ରାଜ୍ୟେ ।
ନଗ୍ରର ବାହାରେ ଭଙ୍ଗା ଦେଉଳ ଦେଖିଲେ
ନିଶା ସମୟକୁ ଯାଇଂ ତହିଂ ବିଶ୍ରାମିଲେ ।
ଦେଖିଲେ କଟକ ହୋଇଅଛି ନାରଖାର
ଘରମାନ ଭାଜିବାରୁ ବନସ୍ତ ଆକାର ।

ମୃଗ ଯେ ସମ୍ବର ଗଣ୍ଡା ବହୁତ ଅଛନ୍ତି
କୂପ ବାପୀ ପୁଷ୍କରିଣୀ ସବୁ ଅସରନ୍ତି ।
ଗୁରୁ ଆଜ୍ଞା ଦେଲେ ବାବୁ କଟକ ତୋହର
କୋଶେ ଆୟତନ ଯେ ଗୋଟିଏ ନାହିଁ ଘର ।
ଯାଅ ତୁ ନଗର ବୁଲି ଦେଖ ଦଣ୍ଡଧାରୀ
ଜନଜନ୍ତୁଯେ ଅଛନ୍ତି ଆସ ଠାବକରି ।
କଟକ ବୁଲି ରାଜନ ନବରେ ପଶିବୁ
ମାତାଙ୍କୁ ଦ୍ରଶନ କରି ସନ୍ଦେଶ ବୁଝିବୁ ।
ଗୁରୁଙ୍କ ବଚନ ପାଇ ରାଜା ଗୋବିନ୍ଦାଇ
ଶୂନ୍ୟ ପଥେ ନଗରକୁ ଗମନ କରଇ ।
ଦେଖିଲା କଟକ ତାର ନାରଖାର ଦିଶି ।
ପାଚେରୀ ଅଟାଳି ମେଢ଼ ଭାଜି ଯାଇଅଛି ।
ସିଂହଦ୍ୱାର ପାରୁଶରେ ରାଜ୍ଜିଆଣୀ ଘର
ଜାଗିଲା ରେ ବୋଲି ମାତା ଡାକି ଦୁଇଥର ।
ଘରେ ଥାଇ ସୁମନ୍ତିକା କର୍ଣ୍ଣରେ ଶୁଣିଲା
ହସ୍ତରେ ଭିକ୍ଷା ଧରିଣ ବାହାର ହୋଇଲା ।
ଦେଖିଲା ଅନ୍ଧାର ରାତି ସମୟେ ଯୁଗତ
ନିରେଖି ଚାହିଁଲା ବାଳୀ ନୃପତିର ମୁଖ ।
ତୁମ୍ଭେ ହୋ ଯୋଗାନ୍ତ ନାଥେ କେଉଁ ଦେଶେ ଥିଲ
ଯେତେ ରାତ୍ରକାଳେ କିମ୍ପା ଭିକ୍ଷା ଜଗାଇଲ ।
କିବା ତୁମ୍ଭ ମନୋରଥ କହ କିନା ମୋତେ
କୁଶଳ ବାରତା ଗୋଟା ପୁଛିଲା ଯୁଗତେ ।
ଯେହି କଟକରେ ଯେ ଗୋବିନ୍ଦଚନ୍ଦ୍ର ଥିଲା
ନବଲକ୍ଷ ବଳ ଛାଡ଼ି ଯୋଗୀ ହୋଇଗଲା ।
ଚବିଶ ବରଷ ଆମ୍ଭେ ଅଛୁଁ ଦିନ ଗଣି
ମାତା ତାର ଯେଥି ଅଛି ଅନେଶ୍ୱତ ରାଣୀ ।
ସୁମନ୍ତି ବଚନେ ରାଜା ସମାସ୍ୟା ନ ଦେଇ
ସତ କହ ତୁମ୍ଭେ କି ରାଜନ ଗୋବିନ୍ଦାଇ ।
ସୁମନ୍ତି ବଚନେ ରାଜା ସମସ୍ୟା ନ ଦେଲା

କହୁଂ କହୁଂ ମନ୍ତ୍ରୋଚାରି ଅନ୍ତର୍ଦ୍ଧାନ ହେଲା ।
ସୁମନ୍ତି ବିଚାରେ ଯେତ ରାଜା ଗୋବିନ୍ଦାଇ
କହୁଂ କହୁଂ କେଣେ ଗଲା ଦେଖିବାକୁ ନାହିଁ ।
ତୁରିତେ ପଶିଲା ଯାଇ ନବର ଭିତର
ଜାଗିଲାରେ ମାତ ଦେଖା ଦିଅରେ ମୋହର ।
ଗଜ ପଲଙ୍କରେ ମାତା ନିଦ୍ରାଛନ୍ତି ଯାଇ
ଶବଦ ବାରିଲେ ଯେ ମୁକୁତା ମହଦେଈ ।
ବାର ବରଷରେ ମୋ ଅଇଲା ଗୋବିନ୍ଦାଇ
ଯେତେ ବୋଲି ମାତା ପୁତ୍ରକୁହିଁ ଦେଲା ଚାହିଁ ।
ପୁତ୍ରର ବଚନ ଶୁଣି ଶୋକେ ଅସମ୍ଭାଳ
ନୟନରୁ ଲୋତକ ବହଇ ଅନର୍ଗଳ ।
ମେରୁହାଡ଼ ଭିତରେ ପଶିଅଛି ଲାଭି
କୁମ୍ଭନାଦ ପ୍ରାୟେକ ବଚନ ତାର ଶୁଭି ।
ଖନ୍ଦାଶାଳୁଂ ଅନ୍ନ ଆଣି ପରଷିଲେ ମାୟେ
କି କରିବି ଅନ୍ନ ମାୟେ ସିଦ୍ଧ ମୋର କାୟେ ।
ଜନନୀ ବୋଇଲେ ବାବୁ କ୍ଷୀର ପାନକର
ନୃପତି ବୋଇଲେ ମାତା ତାହିଁ କଲି ଦୂର ।
ହରଷ ହୋଇଲେ ମାୟେ କୁମର ବଚନେ
ଯେବେ ସେ ତରିଲୁ ବାବୁ ମୋହର ନନ୍ଦନେ ।
ମୁଖରେ ଚୁମ୍ବନ ଦେଇ ହରଷ ହୋଇଲେ
ଗୁରୁ କାହିଁଛନ୍ତି ବାବୁ ବୋଲିଣ ବୋଇଲେ ।
ତକ୍ଷଣେ ମୁକୁତା ଦେଈ ବାହାର ହୋଇଲେ
ଭଙ୍ଗା ଦେଉଳେ ଯାଇଣ ଗୁରୁଙ୍କୁ ଦେଖିଲେ ।
ଆଦେଶ ଆଦେଶ ବୋଲି ଦୂରୁଂ କଲେ ସେବା
ମୁକୁତା ଦେଈଙ୍କୁ ଚାହିଁ ଆଗ୍ୟାଂ ଦେଲେ ଗୁରୁଦେବା ।
ପୁତ୍ର ତୋର ସିଦ୍ଧେଶ୍ୱର ହୋଇଲାକ ଯେବେ
ରାଜ୍ୟ କରୁଥାଅ ମାତା ପୁତ୍ର ଯେକା ଠାବେ ।
ବୋଲନ୍ତି ମୁକୁତାଦେଈ ଗୋବିନ୍ଦଚନ୍ଦ୍ରକୁ
ବୃକ୍ଷ ନଟୀକାଳ କାହିଁ ଆସିବ ହସ୍ତକୁ ।

ତକ୍ଷଣେ ଗୋବିନ୍ଦଚନ୍ଦ୍ର ବୃକ୍ଷକୁ ଚାଇଲେ
ଆକାଶୁଂ ପଇଡ଼ ଆସି ହସ୍ତରେ ଲାଗିଲେ ।
ଯାଅ ବୋଲୁଂ ନିଜ ସ୍ଥାନେ ବସିଲାକ ଯାଇଂ
ବଚନ କାଟିଲା ଯେ ବୋଇଲେ ମହାଦେଇ ।
ମୃତ୍ତିକା ମୁଠାଏ ଘେନି ପାଞ୍ଚିଲେ ମନର
ବୋଇଲା ସିଦ୍ଧ ବିଭୂତି ଦେଖିଲା ଚକ୍ଷୁର ।
ପଥର ଘେନି ବୋଇଲେ ହୁଅ ତୁ ସୁବର୍ଣ୍ଣ
ଆଗ୍ୟାଂ ପ୍ରମାଣେ ହୋଇଲା ଯେ ଅଷ୍ଟରତନ ।
ମର ବୋଇଲେ ଯାହାକୁ ସେଇ ସେ ମରଇ
ଉଠସିରେ ପୁତା ବୋଲି ବୋଇଲେ ଉଠଇ ।
ପରତେ ପାଇଲେ ମାଏ ମନରେ ହରଷ
ଚାରିଯୁଗେ ଗଲେ ବାବୁ ବଇକୁଣ୍ଠେ ବସ ।
ହାଡ଼ିପାଏ ବୋଇଲେ ଗୋବିନ୍ଦଚନ୍ଦ୍ର ଚାହିଂ
ପୋତିଲାର ସିଦ୍ଧ ଅନ୍ନ କାଢ଼ସିରେ ଯାଇ ।
ଖଣତି ଘେନିଣ ମାଟି ଖୋଳିଲା ରାଜନ
ଡାକୁଣୀ କାଢ଼ିଲା ଯହୁଂ ଦିଶିଲା ତିଉଣ ।
ଆସ ଆସ ଗୋସାଇଂ ହାଣ୍ଡିକି ତଳେକର
ମନେ ବିଚାରିଲେ ଦେଖି ପୋକ ସଳସଳ ।
ଅମ୍ବିଳ ବାସୁଛି ଅନ୍ନ ଭଲ ଦିଶୁଅଛି ।
ଆଗ୍ୟାଂ ହେଉଛନ୍ତି ହାଡ଼ିପାଏ ଜାଗ ବାଛି ।
ବାବୁ ସିଦ୍ଧି କି ଅସିଦ୍ଧି ପଦ ହେତୁକର
ପଚିବା ଅସାଧ ଅନ୍ନ ସାଧିବା ଆବର ।
କ୍ଷୀର ଅନ୍ନ ଭୋଗ କଲେ ଦେହସିଦ୍ଧି ହୋଇ
ତିଉଣ ଲୁଣ ଖାଇଲେ ବହନ ମରଇ ।
ଯେହା ଯେ ଜାଣଇ ସେ ବଞ୍ଚଇ ଚିରଦିନ
ଯେବେ ସିଦ୍ଧ ଅନ୍ନ ବାବୁ ଭୁଞ୍ଜିବା ବହନ ।
ଯେତେ ବୋଲି ଗୁରୁଚେଲା ମୁକୁତା ଜନନୀ
ତିନିହେଂ ଘେନିଲେ ଅନ୍ନ ସରିସମ ଘେନି ।
ଚବିଶ ବରଷ ପୋତା ହୋଇଥିଲା ଅନ୍ନ

ଭୁଞ୍ଜିଲା ବେଳକୁ ହେଲା ଅଗ୍ନିର ସମାନ ।
ହାଡ଼ିପା ବୋଇଲେ ବାବୁ ହୋଇଲୁ ଅମର
ଯେବେ ମାୟେ ପୋୟେ ତୁମ୍ଭେ ଥାଅ ଯେକଠାର ।
ଆମ୍ଭେ ଯାଉଅଛୁ କପିଳାସ କନ୍ଦରକୁ
ଯେତେ ବୋଲି ସୁମରିଲେ ପାଦୁକା ଦ୍ୱୟକୁ ।
ମନ ପବନ କଠାଉ ମିଳିଲାକ ଆସି
ତକ୍ଷଣେ ମାଡ଼ିଲେ ହାଡ଼ିପାୟେ ଯୋଗବାସୀ ।
କହୁଂ କହୁଂ ଅନ୍ତରୀକ୍ଷେ ଗଲେ ଶୂନ୍ୟମାର୍ଗେ
କପିଳାସ ପୁରେ ଯାଇଂ ମିଳିଲେକ ବେଗେ ।
ମାତା ପୁତ୍ର ଦୁହେଂ ଯେ ରହିଲେ ସିଂହଦ୍ୱାର
ଜନନୀ ବୋଇଲେ ବାବୁ ଶୁଣରେ କୁମର ।
କୁହୁକ ଲଗାଇ ଯେହି ମଣ୍ଡପରେ ଥିବୁ
ଚାତୁର୍ମାସ୍ୟା ପାହିଲେଣ ତୀର୍ଥ କରିଯିବୁ ।
କୁମର ବୋଇଲେ ମାତା ନ କୁହ ଯେମନ୍ତ
ମାୟାକୁ ଲଗାଇ ମୋତେ ଚିହ୍ନିବେ ସମସ୍ତ ।
ନଗ୍ର ନାରୀମାନେ ଚିହ୍ନିବେ ସକଳ
ମାୟାଚାରୀ ସର୍ବେ କାହିଂ ବସିବେ ସଭାର ।
ତୁମ୍ଭେ ମୁକୁତା ଦେଇ ଯେହି ନଗ୍ରେ ଥାଅ ରହି
ଯେକାନ୍ତେ କୋଟିୟେ ତୀର୍ଥ କରିବଇଂ ମୁହିଂ ।
ସପ୍ତଦ୍ୱୀପ ସପ୍ତସିନ୍ଧୁ ଆଦି ଯେଉଂମାନ
ଅମର ପୁର ସହିତେ ଲଙ୍କା ଆଦିସ୍ଥାନ ।
ଯାଅବୋଲି ଜନନୀ ପୁତ୍ରକୁ ଆଗ୍ୟାଂ ଦେଲେ
ପିଠିଦେଇ ନଗର ଭିତରେ ସମ୍ଭାଇଲେ ।
ଚଳିଲେ ଗୋବିନ୍ଦଚନ୍ଦ୍ର ଉତ୍ତର ମୂରତି
ରୋଗ ଶୋକ ଚିନ୍ତା ତାଙ୍କ ନାହିଂ ଭୟଭ୍ରାନ୍ତି ।
ଗୁରୁ ଦେଇଥିଲେ ଯେ ପାଦୁକା ମନ୍ତ୍ର ଗୋଟି
ତାହା ଚଢ଼ି ଗମନ କରଇ ଶୀଘ୍ରଗତି ।
ଦିବାରାତ୍ରେ ଗମିଲେ ପୃଥିବୀ ଲକ୍ଷେ ଯୁଣ
କୋଟିୟେ ତୀର୍ଥରେ ପଶି କଲେକ ସ୍ନାହାନ ।

ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଦେଖିଲେ
ଜଳଧିପୁରକୁ ଯାଇ ମନ ବଳାଇଲେ ।
କୃଷ୍ଣାଜିନ ଛାଲ ପକାଇଲେ ସିନ୍ଧୁଜଳେ
ଗୁରୁଙ୍କୁ ସୁମରି ଯାଇ ବସିଲେକ ଛାଲେ ।
ପବନ ଆପଦେ ମନ୍ତ୍ର କଲେ ସୁମରଣ
ଅନ୍ତରୀକ୍ଷେ ଚଳିଲେ ସେ ପବନ୍ନୁଂ ବହନ ।
ସାତସିନ୍ଧୁ ସାତଦ୍ୱୀପ ବୁଲି ଯାଉ ଯାଉ
ଲଙ୍କାଦ୍ୱୀପେ ପରବେଶ ହୋଇଲେକ ତହୁଂ ।
ଚବିଶ ଅଙ୍କୁଶ ଅଛି ଯେକାଗ୍ର ନଗର
ମେଘଦଣ୍ଡ ପାଚେରୀ ଲାଗିଛି ଆକାଶର ।
ସବୁ ହୀରାମୟ ଯେ ସବୁହିଂ ବିଂତପନ
ସେହି ଠାବରୁ ରାଜନ ଚଳିଲା ବହନ ।
ଲେଉଟିଲା ମହାରାଜା ଜଳାର୍ଦ୍ଧପୁରକୁ
ଦାଣ୍ଡେ ଯାଉଂ ଦେଖିଲା ବରୁଣ ଦେବତାଙ୍କୁ ।
ରତ୍ନାକର ଦେଖିଣ ଚିହ୍ନିଲା ବଙ୍ଗଦେଶୀ
ତୁମ୍ଭେତ ଗୋବିନ୍ଦଚନ୍ଦ୍ର ଯେଥେ ଅଛ ଆସି ।
ଦେହତ ତୋହର ସିଦ୍ଧ ଗୁରୁସେବା କରି
ଜଳାର୍ଦ୍ଧ ପୁରକୁ ତ ଅଇଲୁ ଭିକ୍ଷାକରି ।
ମାନବ ଶରୀର ହୋଇ ଯୋଗାନ୍ତ ସାଧିଲୁ
ଜଳସ୍ଥଳ ଅନଳ ସବୁହିଂ ଯେକେ କଲୁ ।
ଦେବଙ୍କର ସଙ୍ଗେ ସଙ୍ଗ ହୋଇଲୁ ରାଜନ
ରହ ଚତୁର୍ମାସ୍ୟା ମୋର ଜଳାର୍ଦ୍ଧ ଭୁବନ ।
ଗୋବିନ୍ଦଚନ୍ଦ୍ର ବୋଇଲେ ଲେଉଟାଣି ବେଳେ
ଅବଶ୍ୟ ରହିବି ମୁହିଂ ତୁମ୍ଭ କଟକରେ ।
ସେଠାରୁ ଗୋବିନ୍ଦଚନ୍ଦ୍ର ହୋଇଲେ ବାହାର
ଶୂନ୍ୟାସନ ମନ୍ତ୍ର ଯେ ପଢ଼ିଲେ ଧାତିକାର ।
ଅଳକା ଭୁବନେ ଯାଇ ପ୍ରବେଶ ହୋଇଲା
ନଗର ପଶ୍ଚିମେ ଭାଗେ ମଣ୍ଡପେ ଦେଖିଲା ।
ଶ୍ରୀକର୍ପୂର ଅକ୍ଷୟ ଭଣ୍ଡାର ତହିଂ ଅଛି

ସେହି ଅଷ୍ଟରତ୍ନ ପୁର ଆନ ନାହିଁ କିଛି ।
ଦ୍ୱାଦଶ ମାସ ସେଠାରେ ରହିଲା ରାଜନ
ଜେହି ନ ଦେଖିଲା କେହି ନ କହେ ବଚନ ।
ନଗର ବାହାର ହୋଇ କୁବେର ଦେଖିଲା
ତୁମ୍ଭେ ତ ଗୋବିନ୍ଦଚନ୍ଦ୍ର ବୁଲୁଛ ବୋଇଲା ।
ଦେଖିଲୁ ଜନ୍ମ ମରଣ ସିଦ୍ଧ କଲୁ କାଯେ
ମନଇଚ୍ଛା ଥିଲେ ରହ ଚାତୁର୍ମାସ୍ୟା ଯାଯେ ।
ଗୋବିନ୍ଦଚନ୍ଦ୍ର ବୋଇଲେ ଦିନାକେତେ ଯାଉ
ଦେଖଇ ଅମରପୁର ତପ ସିଦ୍ଧ ହେଉ ।
ଯେତେ କହି ଅଳକା ଭୁବନୁ ଚଳିଗଲା
ବୈଶ୍ୱାନର ପୁରେ ଯାଇଂ ପ୍ରବେଶ ହୋଇଲା ।
ବେନିମାସ ବିଶ୍ରାମିଲା ନ ଦେଖିଲେ କେହି
ଅମରାଦି ପୁରେ ଯାଇ ତୁରିତେ ସମ୍ଭାଇ ।
ଅମର ସଭାରେ ଯାଇ ମିଳିଲେ ରାଜନ
ଦେଖଇ ଗୋବିନ୍ଦଚନ୍ଦ୍ର ରାଜାଗଣମାନ ।
ଇନ୍ଦ୍ର ପଚାରିଲେ ଆସ ବଙ୍ଗଦେଶ ସାଇଂ
ଅମର ଭୁବନକୁ ଅଇଲୁ କିସ ପାଇଂ ।
ଗୋବିନ୍ଦଚନ୍ଦ୍ର ବୋଇଲେ ଗୁରୁସେବା କରି
ମହାମନ୍ତ୍ର ପ୍ରସନ୍ନରୁ ଅମର ହୋଇଲି ।
ସୁସିଦ୍ଧ ହୋଇବା ପାଇଂ ଅଇଲି ଯେଥକୁ
ପାଇଲି କାରଣ ଯେବେ ଯିବଇଂ ମଞ୍ଚକୁ ।
ଇନ୍ଦ୍ର ବୋଲେ ଧନ୍ୟ ତୋର ମୁକୁତା ଜନନୀ
ସଦବୁଦ୍ଧି ଦେଲା ଯହୁଂ ହୋଇଲ ସୁଗ୍ୟାଂନୀ ।
ଦୈବପୁର ଦେଖିବାକୁ ହୋଇଲୁ ଭାଜନ
ସିଦ୍ଧଜନଙ୍କ ସଙ୍ଗତେ ହୋଇଲୁଂ ସମାନ ।
ପ୍ରଶଂସା ପାଇଣ ରାଜା ଉଠିଲା ବହନ
ଅମର ଭୁବନରେ ଦେଖିଲା ପୁର ମାନ ।
ପଞ୍ଚରାତ୍ର ରହି ତହିଂ ବାହାର ହୁଅଇ
ସଂଯିବନୀ ପୁରେ ଯାଇ ତୁରିତେ ମିଳଇ ।

ଜନ୍ତୁପତି ଦେଖିଣ ଆସ୍ଥାନ ତ୍ୟାଗ କଲା
ମାନବ ଶରୀରେ ରାଜା ମହାତପ କଲା ।
ମମ କାଳପାଶରୁ ଯେ ରହିଲୁ ଉବୁରି ।
ନିଶ୍ଚୟ ଦେଖିଲି ଯେତ ସିଦ୍ଧ ସଙ୍ଗେ ସରି ।
ବସ ବୋଲି ଠାବଦେଲା ସଭାର ମଧର
ବେନି ଦଣ୍ଡ ରହି ତହୁଂ ହୋଇଲା ବାହାର ।
ଯମ ରାଜାକୁ ଚାହିଂଣ ବୋଲନ୍ତି ବଚନ
ମୃତ୍ୟୁ ମଣ୍ଡଳକୁ ଯିବୁ ଶୁଣ ହୋ ରାଜନ ।
ଜନ୍ତୁପତି ବୋଇଲା ବିଜୟ କର ଯାଇଂ
ଖଣ୍ଡେ ଦୂର ପାଛୋଟି ଅଇଲା ଜନ୍ତୁସାଁଇଂ ।
ମେଲାଣି ପାଇଣ ଯମ ଆସ୍ଥାନକୁ ଗଲା
ଶୂନ୍ୟେଣ ଗମଇଂ ଯେ ମୁକୁତା ଦେଇ ବଳା ।
କହନ୍ତି ଦୁର୍ବାସା ବଳା ଶୁଣ ସିଦ୍ଧ ହିଆ
ଯେଥୁ ଅନନ୍ତରେ ପୁଣି ଉପୁଜିଲା ଯାହା ।
ଚାହିଂଲେ ଗୋବିନ୍ଦଚନ୍ଦ୍ର ପଥ ଅନୁସରି
ତନ୍ତୀପାଞ୍ଚେ ଆସୁଛନ୍ତି ଶୂନ୍ୟେ ବିଜେକରି ।
ଲାଗିଛନ୍ତି ଶୂନ୍ୟେ ତନ୍ତ ବୁଣୁଛନ୍ତି ଲୁଗା
ପୂର୍ବେଣ ଗୋରଖନାଥ ବାଉଛନ୍ତି ଫୁଙ୍କା ।
ଦୁଇଲୋକଙ୍କର ଶୂନ୍ୟେ ହୋଇଲାକ ଭେଟ
ଚାହିଂଲେ ଗୋବିନ୍ଦଚନ୍ଦ୍ର ତନ୍ତୀପାଙ୍କ ମୁଖ ।
ଶୂନ୍ୟରେ ବୁଣନ୍ତି ଲୁଗା ପବନହୁଂ ଖର
ଛିଡ଼ ବୋଲି ବୋଇଲେ ଗୋରେଖ ତପୀବର ।
ଆଜ୍ଞ୍ୟାଂ ପ୍ରମାଣରେ ତନ୍ତ ମଧରୁ ଛିଡ଼ିଲା
ଦେଖିଣ ତନ୍ତୀପା ମନେ ତାପ ଉପୁଜିଲା ।
ଲାଗିଲା ଲାଗିଲା ବୋଲି ଡାକ ଦେଲେ ଯହୁଂ
ତତକ୍ଷଣେ ତନ୍ତସୂତା ଲାଗିଲାକ ତହୁଂ ।
ପୁଣିହିଂ ଗୋରେଖ ବୋଲେ ଛିଡ଼ିଲାକ ପୁଣ
ଦୁଇ ଖଣ୍ଡ ହୋଇ ତନ୍ତ ଛିଡ଼ିଲା ପ୍ରମାଣ ।
ତନ୍ତୀପା ବୋଇଲା ବେଗେ ଲାଗସିରେ ସୂତା

ଲେଉଟି ଲାଗିଣ ସୂତା ହୋଇଲା ଜଡ଼ିତା ।
ଗୋରେଖ ବୋଇଲେ ପୁଣି ଛିଡ଼ିଲା ପ୍ରମାଣ
ଦୁଇଖଣ୍ଡ ହୋଇତନ୍ତ ଛିଡ଼ିଗଲା ପୁଣ ।
ତନ୍ତୀପା ବୋଲରେ ତନ୍ତ ନୋହିଲା ଯୋଡ଼ିଣ
ଜାଣିମାନା ଆଜ କେ ହୋଇ ବଡ଼ଜଣ ।
ଦୁଇ ଲୋକ ଉଚ୍ଚବାଚେ ହୋଇଲୋକ କଳି
ଦେଖନ୍ତି ଗୋବିନ୍ଦଚନ୍ଦ୍ର ଦୂରେ ଥାଇକରି ।
ବୋଇଲେ ହୋ ତନ୍ତୀପାୟେ ହୋଇଲୁକି ବାଇ
ମୋହ ଆଗରେ ତୋର ପହିଜ କାହିଁ ପାଇଁ ।
ଦିଗବିକେ କରୁଅଛଂ ବୋଲିକି ନଜାଣୁ
ତନ୍ତ ଖଣ୍ଡେ ସଙ୍ଗେ ଘେନି ପହିଜ ବଖାଣୁ ।
ମୋହ ବଳେ ପ୍ରତିଗ୍ୟାଂଯେ ସହି ନ ପାରଇ
ଯେବେ ଶୂନ୍ୟ ପଥରୁ ତୁ ଯାଅ ଆଡ଼େ ହୋଇ ।
ତନ୍ତୀପା ବୋଇଲେ ନାଥେ ନ କହ ବଡ଼ାଇ
ତୁମ୍ଭ ଶଙ୍ଖଧ୍ୱନି ଶୁଣି ହିଆ ଚମକଇ ।
ମୁହିଁ ଯେ ତନ୍ତୀପା ଚାରିଯୁଗେ ଅଜାମର
ଦେବତାଙ୍କୁ ମଣେ ମୁହିଁ ତରଣ ଆକାର ।
ଚଉଷଠି ସିଦ୍ଧରେ ମୁଂ ବରଣ ଅଟଇ
ମୋହ ତହୁଂ ଅଧିକ ଯେ ଜଣେ କେହି ନାହିଁ ।
ମନେ ଯାହା ବସେ ମୁହିଁ ଧରେ ସେହି ରୂପ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ସ୍ୱରୂପ ।
ପୁଣି ପ୍ରତ୍ୟୁତ୍ତର ଦେଲେ ମତ୍ସ୍ୟୋଦର ତେଲା
କେଉଁେ ମୋତେ ପାରିବୁ ଦେଖିବ ବେନିଡୋଳା ।
ଶୂନ୍ୟୁ ଖସି ପଡ଼ିଲେ ତନ୍ତୀପା ମହାଯୋଗୀ
ମଞ୍ଚରେ ବଳଦରୂପ ହୋଇଲେକ ବେଗି ।
ଗୋରେଖ ବୋଇଲେ ଆଜ ରହ ରହ ବାବୁ
ଯେମନ୍ତ ହୋଇଲେ ନିକି ବଡ଼ ବୋଲାଇବୁ ।
ତନ୍ତୀପା ବୋଇଲେ ତୁମ୍ଭେ ପଛ ଦୃଷ୍ଟିକର
କେମନ୍ତ କରିବି ଠାବ ଜାଣିମା ଯେବେଳ ।
ମହାଯତି ଗୋରେଖ ପଛକୁ ଦେଲେ ଦୃଷ୍ଟି

ତନ୍ତୀପା ହୋଇଲେ ବୃକ୍ଷେ ଆମ୍ବଫଳ ଗୋଟି ।
ଲେଉଟି ଗୋରେଖ ଗଲେ ଆମ୍ବଗଛ ଠାକୁ
ଆମ୍ବ ଛିଣ୍ଡାଇ ବୋଇଲେ କ୍ଷେପିବ ଗର୍ଭକୁ ।
ଲାଜପାଇ ତନ୍ତୀପା ହୋଇଲେ ପକ୍ଷୀଜନ୍ମ
ଚଢ଼େଇଆ ହୋଇଲେ ଯେ ଗୋରେଖ ତପୋଧନ ।
ଜଳରେ ମୀନ ଗୋଟିଏ ହୋଇଲେ ତନ୍ତୀପା
ଜାଲ ପାତିଣ ଗୋରେଖ ଜଳେ କଲା କ୍ଷେପା ।
ଜାଣିଲେ ତନ୍ତୀପା ଯେହା ହୋଇଲେ ବାହାର
ଅନ୍ତରୀକ୍ଷେ ମେଘରୂପ ଆଚ୍ଛାଦି ଅମ୍ବର ।
ସଂସାର ଅନ୍ଧାର ହେଲା ନ ଦିଶିଲା ଦିଗ
ପବନ ହୋଇ ବହିଲେ ସେ ଗୋରେଖ ବେଗ ।
ବାୟେଣ ଉଡ଼ିଲେ ମେଘ ଚଉଦିଗ ଦିଶି
ସେଠାରୁ ଗୋରେଖନାଥ କର କର ହସି ।
ଶ୍ରମପାଇ ତନ୍ତୀପା କୁହୁଡ଼ି ବରଷିଲେ
ଗୋରେଖ ଫୁଙ୍କିଲେ ଦୂରୁଂ କୁହୁଡ଼ି ଫାଟିଲେ ।
ଜଳ ଭିତରେ ସେ ଗେଣ୍ଡା ଗୋଟିୟେ ହୋଇଲେ
ଗୁପତ ପରାୟେ ସେହୁ ଗାତରେ ରହିଲେ ।
ଦେଖିଲେ ତନ୍ତୀପା ଲୁଚି ଅଛଇ ଗାତର
ଖାଡୁଆ ହୋଇଲେ ଯେ ଗୋରେଖ ତପଧର ।
ଅଣ୍ଡରେ ଗିଳିବେ ବୋଲି ଆକ୍ରୋଶିଲେ ଯହୁଂ
ଗର୍ତ୍ତରୁ ତନ୍ତୀପା ଯେ ବାହାର ହେଲେ ତହୁଂ ।
ଗୋରେଖ ବୋଇଲେ ଆଉ କି ରୂପ ଧରିବୁ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତୁ ଦୁଃସହ ନୋହିବୁ ।
ମୋତେ ଦେଖିପାରୁ କି କିମିଆ କରିଥାଅ
ତନ୍ତୀପା ବୋଇଲେ ତୁମ୍ଭେ ଯାହା ଇଚ୍ଛାହୁଅ ।
ବସାଇ ଗୋରେଖନାଥ ରହିଲେ ଜଳରେ
ପାଣି ସଙ୍ଗେ ପାଣିହୋଇ ମିଶିଲେ ତହିଁରେ ।
ତନ୍ତୀପା ଖୋଜନ୍ତି ଖିଅ ଦେଇ ଜଳେ ପଶି
ଲୋଡ଼ି ନ ପାଇଲେ ଯେ ଜଳର କେଉଂ ପାଶି ।
ଥାଳି ଘେନି ଛାଣିଣ ମାଇଲା ଗେଣ୍ଡାମାନ

ମହୀ ବିଦାରଇ ନ ଦେଖଇ ସିଦ୍ଧପଣ ।
ତନ୍ତୀପା ବୋଇଲେ ରେ ଗୋରେଖ କେଣେ ଗଲା
କି ରୂପ ଧରିଲା ଯାଇଂ କାହିଂ ସମ୍ଭାଇଲା ।
ମନରେ ବିରସ ଯେ ବହୁତ ହୁଏ ତନ୍ତୀ
ଆଗେ ଉଭା ହୋଇଲେ ଗୋରେଖ ମହାଯତି ।
ହେଠ ମାଥ ହୋଇଣ ତନ୍ତୀପା ମହାଯତି
ସଧୀରେ ଗୋରେଖନାଥ ବାଣୀ ପଚାରନ୍ତି ।
ତୁତ ବଡ଼ ମହାତପା ଅଟୁରେ ତନ୍ତୀପା
କେ ସାନ କରିବ ତୋତେ ମନେ ତାପ କିମ୍ପା ।
ତନ୍ତୀପା ବୋଇଲେ ତୁମ୍ଭେ ସୁସିଦ୍ଧ ଗୋସାଇଂ
ସିଦ୍ଧଗଣ ସଙ୍ଗେ ତୁମ୍ଭେ ଆଗ ଲେଖା ହୋଇ ।
ମିଛଇନ୍ଦ୍ର ଆଦିନାଥଙ୍କର ତୁମ୍ଭେ ନାତି
ତୁମ୍ଭେ ସବୁ କରିପାର ଶୟଳେ ବିଖ୍ୟାତି ।
ଆଉ ମାନେ ଯତି ତୁମ୍ଭେ ମହାଯତି ଭଣି
ତୁମ୍ଭଙ୍କୁ ଭେଟିଣ ମୁଂ ଯେ ପାଇଲି କାରେଣୀ ।
ତନ୍ତୀପା ବୋଇଲେ ତୁମ୍ଭେ ବିଜେକରି ଯିବା
ମୁହିଂ ଯିବି ସ୍ୱର୍ଗପୁର ମୋତେ ଆଗ୍ୟାଂ ଦେବା ।
ଯେ ବଚନ ଶୁଣି ଗୋବିନ୍ଦଚନ୍ଦ୍ର ରାଣ
ବେନି ଜନଙ୍କର ପାଦେ କଲା ଯେ ପ୍ରଣାମ ।
ତନ୍ତୀପା ବୋଇଲେ ଯେ ରିପୁଚନ୍ଦ୍ର ବଳା
ଗୋରେଖ ବୋଇଲେ ଯେ ଗୁରୁ ସେବାକଲା ।
ହାଡ଼ିପା ଯେ ଦେଲେ ଗ୍ୟାଂନ ମାତା ଦେଲେ ବୁଦ୍ଧି
ଚବିଶ ବରଷେ ସର୍ବ ହୋଇଲାକ ସିଦ୍ଧି ।
ଆଦେଶ ଆଦେଶ କଲା ବଙ୍ଗଦେଶ ସାଇଂ
ଗୋରେଖ ବୋଇଲେ ରାଜା କାହିଂଥିଲୁ ରହି ।
ଗୋବିନ୍ଦ ଚନ୍ଦ୍ର ବୋଇଲେ ଦିଗ ଫେରୁଅଛି
କର୍ମଫଳେ ଆଜ ଭେଟ ହେଲି ମହାଯଦି ।
ପାଇଲି କାରଣ ମୋର ପାପ କ୍ଷୟଗଲା
ଦ୍ୱିତୀୟ ଗୁରୁ ହାଡ଼ିପା ଦେଖି ବେନି ଡୋଳା ।
ମାନ୍ୟ କରି କହିଲାକ ବଙ୍ଗଦେଶ ପତି

ଗୋରେଖ ବୋଲନ୍ତି ତୁମ୍ଭେ ଅଟ ଆମ୍ଭ ନାତି ।
ତୋ ମାତା ମୁକୁତା ଦେଈ ଆମ୍ଭର ନନ୍ଦିନୀ
ଆମ୍ଭଙ୍କୁ ସେବା କରିଣ ହୋଇଲା ସେ ଗ୍ୟାଂନୀ ।
ଘେନ ସିଦ୍ଧି ବିଭୂତି ବୋଇଲେ ମହାଯତି
ତନ୍ତୀପା ଗୋବିନ୍ଦଚନ୍ଦ୍ର ଦୁହେଁ ହାତ ପାତି ।
ବ୍ରହ୍ମା କପାଳରେ ନେଇ ଘଷିଲେ ବହନ
ବଜ୍ରାଙ୍ଗ ଶରୀରେ ହେଲେ ଗୋବିନ୍ଦରାଜନ ।
ତନ୍ତୀପାଙ୍କ ତନ୍ତୁ ସୂତା ଛିଡ଼ି ଯାଇଥିଲା
ବିଭୂତି ଲାଗନ୍ତେ ସୂତା ଯୋଡ଼ିଣ ହୋଇଲା ।
ଯାଅରେ ଭୂପତି ତୋତେ ହେଉ କଇଲାଣ
ଯେତେ ବୋଲି ଗୋରେଖ ଯେ ହେଲେ ଅନ୍ତର୍ଦ୍ଧାନ ।
ତନ୍ତୀପା ବୋଇଲେ ରାଜା ନାମ ଆଶ୍ରେକର
ମାୟା ମୋହ ଛାଡ଼ି ଯୋଗପଥରେ ବିହର ।
ଭଲ ଇଚ୍ଛାକଲୁ ଅଜ୍ରାମର କଲୁ କାୟେ
ଯା ଯା ଦିଗେ ବୋଲିଣ ବୋଇଲେ ତନ୍ତୀପାୟେ ।
ଗୋବିନ୍ଦଚନ୍ଦ୍ର ରହିଲା ମଞ୍ଚ ମଣ୍ଡଳରେ
ଏକା ଏକା ତପକଲା ଗଣ୍ଡୁକୀ ନଦୀରେ ।
ସପତ ବରଷ ଯାୟେ ହୋଇଲା ମଉନ
ଆଗହୁଁ ପାଞ୍ଚ ବରଷ ବଳିଥିଲା ପୁଣ ।
ଯେମନ୍ତେ ବାରବରଷ ସମ୍ପୂର୍ଣ୍ଣ ହୋଇଲା
ଆପଣା ରାଜ୍ୟରେ ଯାଇ ତୁରିତେ ମିଳିଲା ।
ମାତାଙ୍କୁ ଦର୍ଶନ କରି କହିଲା ବିନୋୟି
ଦେଖିଲି ସପତ ସିନ୍ଧୁ ସପ୍ତଦ୍ୱୀପା ମହୀ ।
ଜଳଧି ଅଳକାପୁର ସଞ୍ଜିବନୀ ପୁର
ବୈଶାନର ଭୁବନ ଦେଖିଲି ସ୍ୱର୍ଗପୁର ।
ଶୂନ୍ୟେ ଆସୁ ଆସୁ ମୁଁ ଯେ ତନ୍ତୀପା ଦେଖିଲି
ଗୋରେଖଙ୍କୁ ଦେଖି ବହୁ ପରଶଂସା କଲି ।
କହିଲେ ଯେବେ ଗୋ ମାତା ମୋତେ ସଦ୍‌ବୁଦ୍ଧି
ବୋଇଲେ ମୁକୁତା ଦେଇ ହୋଇଲାକ ସିଦ୍ଧି ।
ନୃପତି ବୋଇଲେ ମୁଂ ଯେ ଯିବି କପିଳାସ

ଗୁରୁଙ୍କୁ ଦ୍ରଶନ ନାହିଁ ଦ୍ୱାଦଶ ବରଷ ।
କହିଣ ଗୋବିନ୍ଦଚନ୍ଦ୍ର ହୋଇଲେ ବାହାର
ରହିଲେ ମୁକୁତା ଦେଇ ଆପଣା ରାଜ୍ୟର ।
କପିଳାସ ପୁରେ ଯାଇ ପ୍ରବେଶ ହୋଇଲେ
ଗୁରୁଙ୍କୁ ଦର୍ଶନ କରି ନିଶ୍ଚିନ୍ତେ ରହିଲେ ।
ନମସ୍ତେ ହାଡ଼ିପା ସାଧକଲ ମୋର କାଯେ
ଚାରିଯୁଗ ଗଲେ ତାଙ୍କୁ ଦିବସ ପରାଯେ ।
ତୁମ୍ଭର ଚରଣ ତଳେ ମମ ଶିର ଲୋଟୁ
କିଞ୍ଚିତେ ପ୍ରସନ୍ନ ହୁଅ ଭ୍ରାନ୍ତି ମୋର ଫିଟୁ ।
ନମସ୍ତେ ତନ୍ତୀପା ମୋତେ ହୁଅ ସୁପ୍ରସନ୍ନ
ମାୟା ମୋହେ ପଡ଼ି ମୁହିଁ ଯେ ହେଲି ହିନିମାନ ।
ମସ୍ଛଇନ୍ଦ୍ର ଚଉରଙ୍ଗୀ ଆଦି ମୀନ ବୁଦ୍ଧ
ତୁମ୍ଭର ଆଜ୍ଞାଂରେ ମୋର ପିଣ୍ଡ ହେଉ ସିଦ୍ଧ ।
ନମସ୍ତେ ଗୋରେଖନାଥ ଯତିଙ୍କ ଠାକୁର
ଚଉଷଠି ସିଦ୍ଧଙ୍କ ଉପରେ ଅଧିକାର ।
ଭବ ଜଳଧିରୁ ପାରିକର ମହାଯତି
ତୁମ୍ଭର ପ୍ରସନ୍ନେ ମୋର ହୋଇବ ମୁକତି ।
ନମସ୍ତେ ଗୋବିନ୍ଦଚନ୍ଦ୍ର ରିପୁଚନ୍ଦ୍ର ବଛ
କିଞ୍ଚିତେ ପ୍ରସନ୍ନ ହୋଇ ମୋର ପ୍ରାଣରଖ ।
ତୁ ଯେ ଯମରାଜ ଦଣ୍ଡ ନିବାରିଲୁ କାଳେ
ନିଜ ଦେହ ଘେନିଅଛୁ ଯୁଗଯୁଗାନ୍ତରେ ।
ମୁହିଁତ ମୁରୁଖ କି ଜାଣିବି ତୁମ୍ଭ ମନ
ଲୋଡ଼ି ନ ପାରିଲି ମୁଁ ଯେ ତୁମ୍ଭର ଚରଣ ।
ନ ଜାଣଇ ପାଠଶାଠ ଯତି ସନ୍ଥଗଣ
ଚରଣାରବିନ୍ଦେ ଯେ ବଳିଲା ମୋର ମନ ।
ଶୁଣ ହୋ ସୁଜନ ଜନେ କଳିଯୁଗ ବାଣୀ
ବଙ୍ଗଦେଶ ପତି ଆପେ ଯୋଗୀ ହେଲେ ପୁଣି ।
ଗୋବିନ୍ଦଚନ୍ଦ୍ରଙ୍କ ପାଦେ ରହୁ ମୋର ଆଶ
ଶରଣ ମାଗଇ ନିତ୍ୟେ ଯଶୋବନ୍ତ ଦାସ ।

ପପ

# ପ୍ରେମଭକ୍ତି ବ୍ରହ୍ମ ଗୀତା

## ପ୍ରଥମ ଅଧ୍ୟାୟ

ନମସ୍ତେ ଦେବ ଜଗନ୍ନାଥ । ଯେ ପ୍ରଭୁ ଶଙ୍ଖ ଚକ୍ର ହସ୍ତ ॥
ପ୍ରଳୟ ଜଳେ ଶଙ୍ଖାମାରି । ଯେ ଶଙ୍ଖ ଚକ୍ର ଭୁଜେ ଧରି ॥
ଜଗତ ଉଦ୍ଧାରଣ କାଳେ । ମେଦିନୀ ଥାପିଲ ନିଶ୍ଚଳେ ॥
ଦୈତ କୁ ମାରି ନରହରି । ନାମ ଯାହାର ଦଇତାରି ॥
ସେ ପ୍ରଭୁ ପଦ୍ମ ପାଦ ଗତେ । ମୋ ମନ ରହୁ ଅବିରତେ ॥
ମୋହର ଅନ୍ୟେ ନାହିଁ ଆଶା । ସେ ପାଦେ କରିଛି ଭରସା ॥
ନମସ୍ତେ ଦେବ ମହେଶ୍ୱର । ଅନ୍ଧକ ନାଶନ ଠାକୁର ॥
ତ୍ରିପୁର ଦୈତ୍ୟକୁ ସଂହାରି । ନାମ ଯାହାର ତ୍ରିପୁରାରି ॥
ଯେ ପ୍ରଭୁ ତମ ରୂପ ଧରେ । ଜଗତ ପାଳିଣ ସଂହାରେ ॥
ସେ ପ୍ରଭୁ ପାଦେ ମୋର ଚିତ୍ତ । ନିରତେ ରହୁ ଅବିରତ ॥
ନମସ୍ତେ ବାକ୍ୟ ଦେବୀ ପାଦେ । ପ୍ରସନ୍ନ ହୁଅ ଅପ୍ରମାଦେ ॥
ନମଇ ଦେବ ଗଣ ନାଥ । ଅମୃତଭୋଗୀ ହରସୁତ ॥
ଗ୍ୟାଂନ ଅମୃତେ ତୋଷ ମନ । ଶିର ବଦନ ଗଜାନନ ॥
ଭଗତଭାବେ ମତି ଭୋଳା । ପ୍ରସନ୍ନ ହୁଅ ଚଣ୍ଡୀବଳା ॥
ନମଇ ବ୍ୟାସ ମୁନିବର । ପୁରାଣ ବାକ୍ୟ କୃପାକର ॥
ମୋ ମନ ଶ୍ରୀକୃଷ୍ଣ ଚରଣେ । ଆଶ୍ରିତ ହେବି ଭୃତ୍ୟ ପଣେ ॥
ତାଙ୍କ ଦାସର ପରିଚାର । ଭୃତ୍ୟର କୋଟିକେ ଅନ୍ତର ।
ଯେ ରୂପେ କରି ପ୍ରତି ଆଶା । ଭବାବ୍ଧି ତରଣେ ଭରସା ॥
ଯେମନ୍ତ ବାଞ୍ଛା ମୋର ଚିତ୍ତେ । ଶରଣ ପଦ୍ମ ପାଦ ଗତେ ॥
ରଖୁ ନ ରଖୁ ସେ ଜାଣନ୍ତି । ସେ ପାଦୁଂ ଅନ୍ୟେ ନାହିଂଗତି ॥

କୃଷ୍ଣ ଚରିତ ଶୁଣି କର୍ଣ୍ଣେ । ରାହାସ ଗୋଲୋକ ବିଧାନେ ॥
ଶ୍ରୀରାଧା କୃଷ୍ଣଙ୍କ ଚରିତ । ଗୁରୁଙ୍କ ଉପଦେଶ ତତ୍ତ୍ୱ ॥
ଶ୍ରୀରାଧା କୃଷ୍ଣ ନିତ୍ୟ ସ୍ଥାନେ । ଯେ କଥା ପୂର୍ବର ବିଧାନେ ॥
ଯେ କଥା ଅର୍ଜୁନ ପଚାରି । ଶ୍ରୀକୃଷ୍ଣ ଶ୍ରୀପୟର ଧରି ॥
ସେ କଥା ଅଗାଧ ଗହନ । ଥୋକାୟେ ଫୁରୁ ମୋର ମନ ॥
ଅର୍ଜୁନ ବେନିକର ଯୋଡ଼ି । ଶ୍ରୀକୃଷ୍ଣ ଶ୍ରୀପୟରେ ପଡ଼ି ॥
ବୋଲେ ଶୁଣିମା ଭଗବାନ । ଯେ ଅବା ସଂଶୟ ମୋ ମନ ॥
ତୁମ୍ଭ ଶ୍ରୀଚରଣେ ପୁଛଇ । ପ୍ରସନ୍ନେ କହିବା ଗୋସାଇଁ ॥
ହେ ଦେବ ଦେବ ଦାମୋଦର । ସଂଶୟ ଫେଡ଼ ମନୁମୋର ॥
ତୁମ୍ଭେ ମୋ ପ୍ରାଣ ପଞ୍ଚଭୂତ । ସର୍ଜନା ତୁମ୍ଭର ଜଗତ ॥
ଯେଣୁ ପୁଛଇ ବିଦ୍ୟମାନେ । ଯେ ଅବା ସଂଶୟ ମୋ ମନେ ॥
ତୁମ୍ଭ ବିତ୍ତକେ ଯେ ବିଷୟ । ଆନକେ ଫେଡ଼ିବ ସଂଶୟ ॥
ସଂସାର ଯେତେବେଳେ ନାହିଁ । ନାମ ସ୍ୱରୂପ ହିଁ ନ ଥାଇ ॥
ନ ଥିଲେ ରବି ଶଶୀ ପୁଣ । ନ ଥିଲେ ଶୂନ୍ୟେ ତାରାଗଣ ॥
ନଥିଲା ପଞ୍ଚଭୂତ ସାର । ନଥିଲା ତ୍ରିଗୁଣ ପ୍ରକାର ॥
ତୁମ୍ଭେ କେମନ୍ତେ ଥିଲ କାହିଁ । କେମନ୍ତ ସ୍ୱରୂପରେ ରହି ॥
କେଉଂ ଥାନରେ ତୁମ୍ଭେ ଥାଅ । ନାମ ସ୍ୱରୂପ କାହୁଂ ବହ ॥
ଆଦି ସମ୍ଭୂତ କାହୁଂ ହେଲା । ନାମ ସ୍ୱରୂପ ପ୍ରକାଶିଲା ॥
ପ୍ରସନ୍ନେ କହିବ ଗୋସାଇଁ । ସଂଶୟ ମୋର ଚିତ୍ତୁଂ ଫେଇ ॥
ମୁଂ ତୁମ୍ଭ ଭୃତ୍ୟ ପରିଚାର । ମୋର ସଂଶୟ କର ଦୂର ॥
ସଖା ସୁହୃଦ ପରିମାଣି । ଯେଣୁ ଭରସା କଲି ପୁଣି ॥
ଯେ ପ୍ରଶ୍ନ ଅଭୟ ପୟରେ । ଯେଣୁ ମୁଂ ପୁଛଇ ଛାମୁରେ ॥
ଯେମନ୍ତେ ଆଜ୍ଞାଂମୋତେ ହେବ । ମୋ ମନ ସଂଶୟ ତୁଟିବ ॥
ଯେତେ ବୋଲିଣ କରଯୋଡ଼ି । କୃଷ୍ଣ ଚରଣ ତଳେ ପଡ଼ି ॥
ତାଦେଖି ପ୍ରଭୁ ବ୍ରହ୍ମରାଶି । ବିମ୍ବ ଅଧରେ ମନ୍ଦ ହସି ॥
ଶ୍ରୀକରେ ଟେକିଲେ ଅର୍ଜୁନେ । ତା' ଅଙ୍ଗ ପୋଛିଣ ବସନେ ॥
ବସାଇ ଆପଣା ଜାନୁରେ । କହନ୍ତି ବଚନ ଗମ୍ଭୀରେ ॥
ବୋଲନ୍ତି ବିଶ୍ୱାସ କରାଇ । ତୁମୋର ଅର୍ଦ୍ଧ ଆତ୍ମା ଦେହୀ ॥
ଶୁଣ ଅର୍ଜୁନ ରସ କଥା । ତୋହର ପ୍ରଶ୍ନ ବେବସ୍ଥା ॥

ସେ କଥା ଅଟଇ ଗୁପତ । ତୋ ଆଗେ ପ୍ରକାଶିବା ତତ୍ତ୍ୱ ॥
ଶ୍ରବଣେ ଶୁଣି ମନେ ଘେନ । ପ୍ରଘଟ ନୁହଇ ପ୍ରଶନ ॥
ପୂର୍ବେ ମୁଁ ପ୍ରେମ ପ୍ରିୟ ଚିତ୍ତେ । କହିଛି ରାଧାଙ୍କ ଅଗ୍ରତେ ॥
ସେ ରାଧା ମୋର ନିଜ ଦେହୀ । ତାମସ ଆନ ନୋହି କେହି ॥
ତୁ ଯେଣୁ ଅର୍ଦ୍ଧ ଆତ୍ମା ମୋର । ତୋତେ କହିବା ସେ ବିଚାର ॥
ଗୁପତ କଥା ଯେ ଗହନ । ଶୁଣ ଅର୍ଜୁନ ଦେଇ ମନ ॥
ଦିନେ ମୁଁ ରାଧାର ଭୁବନେ । ଯେକାନ୍ତେ ଗଲି ରାତ୍ର ମାନେ ॥
ସେହି ଯେକାନ୍ତ ଗୃହେ ଅଛି । ତା' ପତି ଗୋଷ୍ଠେ ଯାଇ ଅଛି ॥
ଶାଶୂ ନଣନ୍ଦହିଁ ନଥିଲେ । ଗୃହେ କନ୍ଦଳ କରି ଗଲେ ॥
ଯେମନ୍ତ ସମୟରେ ତହିଁ । ତା' ଗୃହେ ମିଳିଲି ମୁଁ ଯାଇଁ ॥
ମୋର ଆଗମ ଜାଣି ବାଳୀ । ତୋଳି ମାଣିକ୍ୟ ଦୀପାବଳୀ ॥
ଗୃହେ ପାୟେତା ପାତି କରି । ଦ୍ୱାର ନିକଟୁଁ ନେଲା ବରି ॥
ଶୀତଳ ଜଳେ ପାଦଧୋଇ । ପଲଙ୍କେ ବସାଇଲା ନେଇ ॥
ବସନେ ପୋଛି ମୋ ପୟର । ବିଞ୍ଚଣୀ ବିଞ୍ଚଇ ସଧୀର ॥
ସର ଲବଣୀ ଛେନା ଦହି । ସଙ୍ଗତେ ଶାକର ମିଶାଇ ॥
ଅମୃତ ପଣା ଗଙ୍ଗବାଣ । ଭୁଞ୍ଜାଇ ସନ୍ତୋଷ କରିଣ ॥
ବିବିଧ ସୁଗନ୍ଧ ଚନ୍ଦନ । ମୋ ଅଙ୍ଗେ ଲେପିଣ ବହନ ॥
ପୁଷ୍ପ ସୁବାସ ଗଭାଶିରେ । ମାଳ ମୋ ଲମ୍ବାଇ ହୃଦରେ ॥
ତାମ୍ବୁଳ କର୍ପୂର ଭୁଞ୍ଜାଇ । କହଇ ଶୋକଭର ହୋଇ ॥
ଗଦ୍‌ଗଦ ଅଶ୍ରୁ ଗଳେ ତା'ର । ବୋଇଲା ଶୁଣ ଚକ୍ରଧର ॥
ମୋହୋର ଜନ୍ମ ଦୋଷ ଏହୁ । କାହାଗେ କହିବି ମୁଁ ଆଉ ॥
ହେ ଦେବ ଦେବ ଭଗବାନ । ତୁମ୍ଭ ବିତ୍ରକେ ନୋହି ଆନ ॥
ଶାଶୂ ନଣନ୍ଦ ନସହନ୍ତି । ନିତ୍ୟେ କୁବାଦ ମୋତେ ଦ୍ୟନ୍ତି ॥
ମୋ ଛାର ହୀନ ତିରୀ ନାରୀ । ଦୟାକି ଛାଡ଼ିଲ ଶ୍ରୀହରି ॥
ଶୁଣି ତା ଅମୀୟ ବଚନ । ଉଠି ମୁଁ କଲି ଆଲିଙ୍ଗନ ॥
ଚୁମ୍ବନ ଦେଇ ମୁଖେ ପୁଣି । କୋଳେ ମୁଁ ବସାଇଲି ଆଣି ॥
କହିଲି ପୂର୍ବକଥା ମାନ । ଶ୍ରୀରାଧାକୃଷ୍ଣଙ୍କ ବିଧାନ ॥
ଶୁଣି ସନ୍ତୋଷ ହେଲା ବାଳୀ । ବୋଇଲା ଶୁଣ ବନମାଳୀ ॥
ଯେବେ ମୁଁ ତୁମ୍ଭ ପ୍ରାଣପ୍ରିୟା । କିପାଇଁ କର ମୋତେ ମାୟା ॥

ତୁମ୍ଭ ଆମ୍ଭର ଏକ ସ୍ଥାନ । କାହୁଁ କେମନ୍ତେ ହେଲା ଜନ୍ମ ॥
ତୁମ୍ଭେ ସେ ରହିଥିଲ କାହିଁ । ମୋହର ଜନ୍ମ କାହୁଁ ହୋଇ ॥
ଯେ କାଳେ ନ ଥିଲା ସଂସାର । ତୁମ୍ଭର ଥିତି କଉଂ ଠାର ॥
ମୋତେ ଯେ ସଙ୍ଗତରେ କରି । ଜନମ ଲଭିଲ ଶ୍ରୀହରି ॥
ତୁମ୍ଭେ ସେ ଜାଣ ଆଦିଅନ୍ତ । ମୋ ଆଗେ କହ ପଦ୍ମନେତ୍ର ॥
ଆମ୍ଭେ ବୋଇଲୁ ତାହାଶୁଣି । ଶୁଣ ଗୋ ଆଦି ଜନ୍ମବାଣୀ ॥
ଆଦି ସମ୍ଭୂତ ଶୁଣ ରାଧା । ଯହିଁକି ବଳିଲା ଶରଧା ॥
ମୁହିଁ ମୋହର ତହୁଁ ଜାତ । ମୁହିଁ ସେ ସୃଜିଲି ଜଗତ ॥
ତୋର ନିର୍ଣ୍ଣୟ ଦେବା କହି । ଶୁଣ ତୁ ଯେକ ମନ ହୋଇ ॥
ମୋହର ନାହିଁ ଆଦି ଅନ୍ତ । ଯେ କାଳେ ନଥାଇ ଜଗତ ॥
ନ ଥାଇ ରବିଶଶୀ ତାରା । ସ୍ୱର୍ଗ ପାତାଳ ବସୁନ୍ଧରା ॥
ନଥିଲେ ନାମ ରୂପ ଗୁଣ । ସଂସାର ଯେ ବିଧି ଭିଆଣ ॥
ସେ କାଳେ ମୋର ଥାଏ ତନ । ଗଗନ ଯେହ୍ନେ ସର୍ବଶୂନ୍ୟ ॥
ଯେ ଶୂନ୍ୟପରେ ଜ୍ୟୋତି ଜାଣ । ତାପରେ ମହାଶୂନ୍ୟ ପୁଣ ॥
ସେ ଶୂନ୍ୟ ଉପରେ ଚେତନା । ଚେତନା ମଧ୍ୟେ ମୋର ଠଣା ॥
ଅଣ ଅକ୍ଷର ନିରାକାରେ । ବୁଦ୍‌ବୁଦା ପ୍ରାୟେ ମୁଂ ଶୂନ୍ୟରେ ॥
ହେତୁ ଆସନ ଦୃଢ଼େ ଧରି । ମୁଂ ଥିଲି ଏକାନ୍ତେ ସେ ପୁରୀ ॥
ତହିଁ ମୋ ସୃଷ୍ଟି ଇଚ୍ଛା ହେଲା । ମୋ ଦେହୁଁ ପ୍ରକୃତି ଜନ୍ମିଲା ॥
ଉର୍ମି ଧୂର୍ମି ଯେ ଜ୍ୟୋତି ଜ୍ୱାଳା । ବିନ୍ଦୁ ସହିତେ ପଞ୍ଚକଳା ॥
ଉଚ୍ଛୁଡ଼ି ପଡ଼ନ୍ତେ ଯେ ପାଞ୍ଚ । ସଲିଳ ଜଳେ ପଡ଼ି ସଞ୍ଚ ॥
ଜଳେ ପଡ଼ନ୍ତେ ପଞ୍ଚଭୂତ । ତକ୍ଷଣେ ଯୋଗମାୟାଜାତ ॥
ସେ ଯୋଗମାୟା ଆଦିଶକ୍ତି । ଯେ ଅର୍ଦ୍ଧମାତ୍ରା ଶୂନ୍ୟ ସ୍ଥିତି ॥
ସେ କାଳରୂପ ନିଦ୍ରାଗତ । ଜଳରୁ ହୋଇଲା ସମ୍ଭୂତ ॥
ସେ ଜଳେ ନ ପାରିଲା ରହି । ଉର୍ମିରେ ଟଳ ଟଳ ହୋଇ ॥
ଦେଖିଲା କେହି ନାହିଁ ଜଣେ । ବିଚାର କରଇ ଆପଣେ ॥
ମନରେ କରି ଗରୁତମ । ନାଭିର ତଳୁଂ ଏକ ରୋମ ॥
ହୁଂକାର କରି ଉପାଡ଼ିଲେ । ଓଂ କାର କରି ତା' ଥାପିଲେ ।
ଭେଦିଲା ସପତ ବ୍ରହ୍ମାଣ୍ଡ । ଜଳରେ ଜାଣି ମେରୁଦଣ୍ଡ ॥
ଓଁକାର ନାମ ତାକୁ ଦେଇ । ଦେବୀ ବସିଲେ ତହିଁ ଯାଇ ॥

ତେବେ ସେ ନିଶ୍ଚଳ ନୋହିଲା । ପୁଣିହିଂ ଟଳଟଳ ହେଲା ॥
ଦେବୀ ବୋଇଲେ ତାହା ଜାଣି । ତୁ ବଜ୍ରକୀଳା ହୁଅ ପୁଣି ॥
ତୋତେ ମୁଂ ଦେଉଅଛି ବର । ବଜ୍ର ଯେ ହୋଉ ତୋ ଶରୀର ॥
ସେ ବଜ୍ରକୀଳା ବୋଲେ ଶୁଣି । ବର ତୁ ଯେବେ ଦେଲୁ ପୁଣି ॥
ତୁ ଆଦିମାତା ଶକ୍ତି ହେବୁ । ମୋତେ ତୁ ଲିଙ୍ଗ ସେ କରିବୁ ॥
ଯେ ଅଙ୍ଗେ ଭେଦି ମୁହିଂଥିବି । ସକଳ ସୃଷ୍ଟି ମୁଂ କରିବି ॥
ମୋ ତହୁଂ ଛରିବ ସମସ୍ତ । ସକଳ ମନ୍ତ୍ର ଯନ୍ତ୍ର ତତ୍ତ୍ୱ ॥
ବେଦରେ ହୋଇବି ପ୍ରସିଦ୍ଧି । ପ୍ରଥମ ଉଚ୍ଚାରଣ ବିଧି ॥
ବେଦ ସେ ଆଗେ ମତେ ବରି । ସକଳ କର୍ମ ସେ ବିଚାରି ॥
ବଳେ ମୁଂ ହେବି ବଳୀୟାର । ବିରାଟ ନାମ ହେବ ମୋର ॥
ମୋ ଅନ୍ତ ନ ପାଇବେ କେହି । ଅନନ୍ତ ନାମ ହେବି ମୁହିଂ ॥
ଆଉର ବଳଭଦ୍ର ଶେଷ । ମୋ ନାମ ହୋଇବ ବିଶେଷ ॥
ତା'ଶୁଣି ଦେବୀ ଅସ୍ତୁକରେ । 'ସେ ବଜ୍ରକୀଳା ବୋଲାଇଲେ ॥
ଭେଦିଲେ ଦେବୀ ଆଦ୍ୟେ ଯାଇ । ଶକ୍ତିରେ ଲିଙ୍ଗ ପ୍ରାୟେ ହୋଇ ॥
ତା' ଦେଖି ଯୋଗମାୟା ତୋଷ । ଯହୁଂ ଛରନ୍ତି ସର୍ବ ରସ ॥
ସେ ବିନ୍ଦୁ ଯୋଗମାୟା ପରେ । ରହିଲେ ଅର୍ଦ୍ଧମାତ୍ରାଶିରେ ॥
ଶେଷେ ଓଂକାର ବୋଲାଇଲେ । ବେଦରେ ପ୍ରଣବ ହୋଇଲେ ॥
ଯାହାକୁ ଅଣାକ୍ଷର କହି । ସେ ବିନ୍ଦୁ ବ୍ରହ୍ମ ଅଛି ବହି ॥
ତହୁଂ ଜନ୍ମିଲା ଏକାକ୍ଷର । ଅନନ୍ତ ସର୍ପର ଆକାର ॥
ତାହାକୁ ସୁଷୁମ୍ନା କହି । ସେ ଶିଶୁବେଦ ଘର ସେହି ॥
ଅବାବି ମଣ୍ଡଳ ଅକ୍ଷର । ୟେ ମିଶା ଥାପନ ଓଂକାର ॥
ସକଳ ଯନ୍ତ୍ର ମନ୍ତ୍ର ସାର । ଆଗେ ଉଚ୍ଚାରନ୍ତି ଓଂକାର ॥
ତାର ନମିଶି ଶୁଦ୍ଧ ନୋହି । ସକଳ ମନ୍ତ୍ର ବୀଜ ସେହି ॥
ତୋତେ କହିବା ଯାହା ସାକ୍ଷ । ପୂର୍ବ ଜନ୍ମର ଯେ ପ୍ରତକ୍ଷ ॥
ତାକୁ ଓଂକାର ବୋଲି କହି । ଶୁଣ ରାଧିକା ଚନ୍ଦ୍ରମୁହିଂ ॥
ଯାହା ମୁଂ କହିଲି ତୋହରେ । ଗୁପତ ସଂସାର ପ୍ରକାରେ ॥
ପ୍ରେମ ଭାବରେ କହିଲଇଂ । ଶୁଣ ରାଧିକା ତୋଷ ହୋଇ ॥
ଶୁଣିଲୁ ଟିକିବୀର ପାର୍ଥ । ଯାହା କହିଲୁ ରାଧାଗ୍ରେତ ॥
ପ୍ରଘଟ ନ କରିବୁ କାହିଂ । ରଖିତୁ ମନରେ ପୂରୋଇ ॥

ଯେ ବ୍ରହ୍ମ ଗୀତା ପ୍ରେମରସ । ଶ୍ରୀକୃଷ୍ଣ ଶ୍ରୀମୁଖୁଁ ପ୍ରକାଶ ॥
ଯେ ହାଯେ ଶ୍ରବଣେ ଶୁଣନ୍ତି । କି ଅବା ବଦନେ ଗୁଣନ୍ତି ॥
ସକଳ ପାପୁଁ ସେ ନିସ୍ତରେ । ଅନ୍ତେ ରମଇ ଗୋଲକରେ ॥
ଶୁଣି ଅର୍ଜ୍ଜୁନ ମନେ ତୋଷ । ଯାହା କହିଲେ ପୀତବାସ ॥
ଅମୃତୁଁ ଅଧିକ ଯେ ଗ୍ୟାଂନ । ସୁଜନେ ପିଅ ଶ୍ରୁତିପାନ ॥
ଯେ ଗୀତ ପଦବନ୍ଧ ରସ । କହଇ ଯଶୋବନ୍ତ ଦାସ ॥
ପଣ୍ଡିତେ ଦୋଷ ମୋ ନ ଧର । ମୁଁ ତୁମ୍ଭ ଭୃତ୍ୟ ପରିଚାର ॥
କୃଷ୍ଣ ଚରଣେ କରି ଆଶ । ଶରଣ ଯଶୋବନ୍ତ ଦାସ ॥

ଇତି ଶ୍ରୀ ପ୍ରେମ ଭକ୍ତି ବ୍ରହ୍ମ ଗୀତା କଥନେ ରାଧାକୃଷ୍ଣ ସମ୍ବାଦେ
ଏକାକ୍ଷର ଅଣାକ୍ଷର ଓଂକାର ବିନ୍ଦୁଯୋଗ ଥାପରେ
ଅର୍ଜ୍ଜୁନବୋଧନେ ନାମ ପ୍ରଥମ ଅଧ୍ୟାୟ ସମ୍ପୂର୍ଣ୍ଣ ।

## ଦ୍ୱିତୀୟ ଅଧ୍ୟାୟ

ଶ୍ରୀକୃଷ୍ଣ ଶ୍ରୀମୁଖର ବାଣୀ । ଶୁଣିଲେ ରାଧା ଠାକୁରାଣୀ ॥
ସେ ପ୍ରେମ ଗଦଗଦ ହୋଇ । ପ୍ରଭୁକୁ ଆଲିଙ୍ଗନ ଦେଇ ॥
ଭୋ ପ୍ରଭୁ ନିସ୍ତରିଲି ମୁହିଂ । ଆବର କହ ଭାବଗ୍ରାହୀ ॥
ପୂର୍ବ ଜନ୍ମର ଯଥାମତ । ମୋ ଆଗେ କହିବ ସମସ୍ତ ॥
ହେ ପଦ୍ମନେତ୍ର ଗଦାଧର । କହ ସଂଶୟ ଯାଉ ଦୂର ॥
କହନ୍ତି ଦେବ ନାରାୟଣ । ଭୋ ସଖି ସାବଧାନେ ଶୁଣ ॥
ପୂର୍ବର କଥା ବିଧି ମାନ । ଯାହାତୁ କଲୁ ପରଶନ ॥
ଯେବେ ସେ କହିବା ଗୁପତ । ଆମ୍ଭ ଜନମ କାଳ ତତ୍ତ୍ୱ ॥
ଓଂକାର ପରେ ଦେବୀ ଥିଲେ । ମନେ ଯେମନ୍ତ ବିଚାରିଲେ ॥
କାହୁଁ ମୁଁ ହୋଇଲି ଜନମ । ଦଶଦିଗତ ଦେଖି ଶୂନ୍ୟ ॥
ଶୂନ୍ୟ ମଣ୍ଡଳେ ଲୟ କଲା । ଜ୍ୟୋତି ସେ ମଣ୍ଡଳ ଦେଖିଲା ॥
ଜ୍ୟୋତି ଉପରେ ଅଗ୍ନିଜାଣି । ଅଗ୍ନି ଉପରେ ହିମ ପୁଣି ॥
ହିମ ଉପରେ ବିନ୍ଦୁ ଥିଲା । ସେ ଶୂନ୍ୟ ବ୍ରହ୍ମଙ୍କୁ ଦେଖିଲା ॥

ତା' ଦେଖି କୃତାଞ୍ଜଳି କରି । ମୋର ରୂପକୁ ମନେ ଧରି ॥
କରନ୍ତେ ଯୋଗମାୟା ଧ୍ୟାନ । ଶୂନ୍ୟେ ମୋ ଲମ୍ଭିଲା ଆସନ ॥
ଶୂନ୍ୟରୁ ମହାରସ ଝଡ଼ି । ତା'ର ଆଞ୍ଜୁଳି ମଧ୍ୟେ ପଡ଼ି ॥
ଉର୍ମି ଧୂର୍ମି ଯେ ଜ୍ୟୋତି ଜ୍ୱାଳା । ଶୂନ୍ୟରେ ଥିଲେ ଚାରି କଳା ॥
ସେ ଚାରିକଳା ରସେ ମିଶି । ସୁଗନ୍ଧ ସୁଶୀତଳ ବାସି ॥
ବେନି ହସ୍ତରେ ସେ ଆଞ୍ଜୁଳି । ଧଇଲା ଯୋଗମାୟା ତୋଳି ॥
ବେନି ହସ୍ତରେ ତାହା ଗ୍ରାସୀ । ବେନି ଭାଗରେ ଗର୍ଭେ ପଶି ॥
ତା' ଗର୍ଭେ ସମ୍ଭୂତ ହୋଇଲେ । ଅଣ୍ଡ ଯେ ଗର୍ଭେ ପ୍ରକାଶିଲେ ॥
ବାମ ହସ୍ତର ଭାଗ ସ୍ତିରୀ । ଡାହାଣେ ପୁରୁଷ ସଞ୍ଚରି ॥
ବାଳକ ବାଳକୀ ହୋଇଲେ । ସେ ଆଦିରୂପ ପ୍ରକାଶିଲେ ॥
ଗର୍ଭେ ରହିଲେ ଅଣ୍ଡ ଦୁଇ । ସେ ଯୋଗ ମାୟା ନ ଜାଣଇ ॥
ଯେମନ୍ତେ କେତେ କାଳ ଗଲା । ଗର୍ଭକୁ ଗୁରୁ ତା ଲାଗିଲା ॥
ସେ ଯୋଗମାୟା ବିଚାରଇ । ଗର୍ଭେ ମୋ କି ଅବା ଅଛଇ ॥
ସେମନ୍ତ ବୋଲି ଦିନକର । ଚାପିଲା ଆପଣା ଉଦର ॥
ହସ୍ତକୁ କର୍କଶ ଲାଗିଲା । ନିଗୂଢ଼ ବନ୍ଧେ ତା' ଚାପିଲା ॥
ବାଳକ କୋମଳାଙ୍ଗ ଦେହୀ । ପଡ଼ି ହୋଇଲା ଏକଦେହୀ ॥
ଏକ ସ୍ୱରୂପ ପ୍ରାୟେ ପଡ଼ି । ପିଣ୍ଡରୁ ପ୍ରାଣ ଗଲା ଛାଡ଼ି ॥
ଯୋଗମାୟାର ଯୋନି ନାହିଁ । ରୋମ ବିମ୍ବରେ ଜାତ ହୋଇ ॥
ଦେଖିଲା କୋମଳ ସ୍ୱରୂପ । ହେମ ମର୍କତ ପ୍ରାୟେ ରୂପ ॥
ଚାରିଚରଣ ଚାରିକର । ଜଡ଼ିତ ହୋଇଛି ଶରୀର ॥
ନୀଳ ଜୀମୂତେ ତଡ଼ିତକି । ଜଡ଼ି ହୋଇଛି ଏକା ଏକି ॥
ଜନମ ହେଲେ ତହିଁ ପୁଣ । ପିଣ୍ଡ ପଡ଼ିଛି ନାହିଁ ପ୍ରାଣ ॥
ତା' ଦେଖି ଯୋଗମାୟା ଚିତ୍ତେ । ବିଚାର କରେ ହୃଦଗତେ ॥
କି କର୍ମ କଲି ମୁଁ ନ ଜାଣି । ଏମନ୍ତ ଦ୍ରବ୍ୟ ନାଶି ପୁଣି ॥
ଚିତ୍ତେ ପାଇଲେ ବଡ଼ ଚିନ୍ତା । ଧ୍ୟାନ ସେ କଲେ ଉର୍ଦ୍ଧ୍ୱରେତା ॥
ଶୂନ୍ୟେ ଶବଦ ହେଲା ପୁଣି । ଦଶ ଅକ୍ଷର ସଞ୍ଜୀବନୀ ॥
ସେ ଶବ୍ଦ ଶୁଣି ଯୋଗମାୟା । ଆନନ୍ଦେ ପୁଲକିତ କାୟା ॥
ଶୁଣିଲେ ମହାଶୂନ୍ୟ ବାଣୀ । ଦଶ ଅକ୍ଷର ସଞ୍ଜୀବନୀ ॥
ସେ ସବୁ କର୍ଣ୍ଣରେ କହିଲେ । ତକ୍ଷଣ ଜୀବନ ପାଇଲେ ॥

ଜଡ଼ିଲା ଅଙ୍ଗେ ମୌ ଚୈତନ୍ୟ । ବସିଲା ମନୋମତ ଜ୍ଞାନ ॥
କେବେହେଁ ନୋହିଲେ ସେ ଦୁଇ । ଏକ ସ୍ୱରୂପ ପ୍ରାୟେ ଦେହୀ ॥
ଦେଖି ସାନନ୍ଦ ମାତା ହିୟା । ପୁତ୍ରଙ୍କୁ ଆଶ୍ୱାସିଣ କାୟା ॥
କୁଚ ଉପରେ ତାଙ୍କୁ ଧରି । କହନ୍ତି ଅତି ସ୍ନେହ କରି ॥
ବାଳ ସ୍ୱରୂପ ଯୁବା ହୁଅ । ସର୍ବଦା ଯେକ ରୂପେ ଥାଅ ॥
ବାଳକ ବୃଦ୍ଧହି ନୋହିବ । ନବୀନ ଯୁବା ହୋଇଥିବ ॥
କୋଟିକଳ୍ପାନ୍ତେ ତୁମ୍ଭ ସଙ୍ଗ । ନିମିଷେ ନୋହିବାକ ଭଙ୍ଗ ॥
କୋଟିଏ ବ୍ରହ୍ମାବିଷ୍ଣୁ ଯାଉ । ତୁମ୍ଭର କ୍ରୀଡ଼ାଭଙ୍ଗ ନୋହୁ ॥
କୋଟିଏ କୋଟି ଯୁଗ ଯିବ । ତୁମ୍ଭର ଯୁବା ରୂପ ଥିବ ॥
ତୁମ୍ଭର ତହୁଁ ଏ ଜଗତ । ସୃଷ୍ଟି ହୋଇବ ଆତଜାତ ॥
ତୁମ୍ଭେ ସକଳ ମାତାପିତା । ସଂସାରେ ଯେତେ ଦେହବନ୍ତା ॥
ସକଳ ଜୀବ ମଧ୍ୟେ ସାର । ତୁମ୍ଭେ ସେ ହୋଇବ ଠାକୁର ॥
ତୁମ୍ଭର ନାମ ଉଚ୍ଚାରିବେ । ସକଳ ପାପୁଁ ନିସ୍ତରିବେ ॥
ତୁମ୍ଭର ନାମ ମୋକ୍ଷଦାତା । ଅଷ୍ଟାଙ୍ଗ ଯୋଗର କରତା ॥
ମୁଖେ ଉଚ୍ଚାରି ନିତିନିତି । ଲଭିବେ ନିର୍ମଳ ଭଗତି ॥
କୋଟି ଜନ୍ମର ପାପଯିବ । ଯେ ରାଧାକୃଷ୍ଣ ଉଚ୍ଚାରିବ ॥
ଯେମନ୍ତ ବୋଲି ବରଦେଲେ । ଆସନ ଆପଣ ହୋଇଲେ ॥
ତକ୍ଷଣେ ହୋଇଲେ ସେ ଯୁବା । କି ଅବା ପଟାନ୍ତର ଦେବା ॥
ନବୀନ ସୁନ୍ଦର ମୂରତି । କୋଟି କନ୍ଦର୍ପ ଯୁବା ଜ୍ୟୋତି ॥
ସେ ଯୋଗମାୟା ଆସନରେ । ତାହାଙ୍କ ବେନି କୁଚପରେ ॥
ଶ୍ରୀରାଧା କୃଷ୍ଣ ସେ ବିହରି । ଯା ନାମ ମୋକ୍ଷେ ଅଧିକାରୀ ॥
ସେ ରୂପ ରାଧାକୃଷ୍ଣ ଦୁଇ । ନାମରେ ରାମନାମ ସେହି ॥
ଶ୍ରୀ ଶକ୍ତି ଭୂଶକ୍ତି ବିଚାର । ହଂସ ପରମହଂସ ପାର ॥
ନୀଳ ଗଉର ରୂପ ଦୁଇ । ଅଛନ୍ତି ଛନ୍ଦାଛନ୍ଦି ହୋଇ ॥
ଯେ ଯୋଗମାୟା ବାମ କୁଚେ । ଶ୍ରୀକୃଷ୍ଣ ଦକ୍ଷପାଦ ସଞ୍ଚେ ॥
ରାଧାଙ୍କ ବାମ ସେ ଚରଣ । ମାତାଙ୍କ ଦକ୍ଷସ୍ତନେ ପୁଣ ॥
ଆବର ବେନି ପାଦ ଦୁଇ । ଅଛନ୍ତି ଛନ୍ଦାଛନ୍ଦି ହୋଇ ॥
ଶ୍ରୀକୃଷ୍ଣ ବେନି ପାଦନେଇ । ରାଧାଙ୍କ କଟିଭାଗେ ଦେଇ ॥
ରାଧାଙ୍କ ବାମ ସେ ଚରଣ । ଶ୍ରୀକୃଷ୍ଣ କଟିଭାଗେ ପୁଣ ॥

ଭୁଜରେ ଭୁଜ ଭିଡ଼ାଭିଡ଼ି । କପାଳୁଂ କଟିଯାଏ ଜଡ଼ି ॥
ହେମ ମର୍କତ ଜାଣି ଆଭା । ନୀଳ ଗଉର ରୂପ ଶୋଭା ॥
ରାଧିକା ଶୁଣି ପୁଚ୍ଛେ ତହିଂ । ଶ୍ରୀକୃଷ୍ଣ ଶ୍ରୀମୁଖକୁ ଚାହିଂ ॥
ଭୋ ପ୍ରଭୁ ପଚାରିବି ଯାହା । ଶ୍ରୀମୁଖେ ଆଜ୍ଞାଦେବ ତାହା ॥
ଯେକା ଥାନରୁ ଛରି ଦୁଇ । କିଂପାଇ ବେନିବର୍ଣ୍ଣ ହୋଇ ॥
ସ୍ୱରୂପ କିଂପା ଭିନ୍ନ ଭିନ୍ନ । କହ ହେ ପ୍ରଭୁ ଭଗବାନ ॥
ଶ୍ରୀକୃଷ୍ଣ ବୋଇଲେ ଗୋ ଶୁଣ । ବେନି ସ୍ୱରୂପ ଭିନ୍ନ ଗୁଣ ॥
କହିବା ତୋତେ ତା ବୁଝାଇ । ଶୁଣ ତୁ ଏକ ମନ ହୋଇ ॥
ସର୍ବ ମଧୁଙ୍କ ମଧୁ ସାର । ଯେ ରସ ଶୂନ୍ୟରୁ ବାହାର ॥
ସେହି ସେ ପୁରୁଷ ଛରିଲେ । ମଅ ଅକ୍ଷର ବୋଲାଇଲେ ॥
ନୀଳ ଜୀମୂତ ଘନ ବ୍ୟାପୀ । ସେ ରୂପ କୃଷ୍ଣ ଚନ୍ଦ୍ର ରୂପୀ ॥
ସେ ରୂପ ପର୍ମ ବ୍ରହ୍ମ ସାର । ମଅ ଅକ୍ଷର ଅଧିକାର ॥
ସର୍ବ ପୁଣ୍ୟଙ୍କ ପୁଣ୍ୟରସ । ଯେ ଚୌଷଠି କଳାରୁ ପ୍ରକାଶ ॥
ସେ ରସୁଂ ରା ଅକ୍ଷର ହେଲା । ରାଧିକା ନାମ ବୋଲାଇଲା ॥
ଗଉର ରୂପ ଅଟେ ସେହି । ସେ ରୂପ ପରମ ଅଟଇ ॥
ଯେ ମିଶି ରାଧାକୃଷ୍ଣ ଥିତି । ଜୀବ ପରମ ହିଂ ବୋଲାନ୍ତି ॥
ଯେଣୁ ଯେ ରାମନାମ ଦୁଇ । ଯେ ମୂଳ ମନ୍ତ୍ରଟି ବୋଲାଇ ॥
ଯେ ଯହୁଂ ହୋଇଥିଲେ ମରା । ଲେଉଟି ଲୀଳା ଅଙ୍ଗ ଫେରା ॥
ଆଗେ ପୁରୁଷ ପଛେ ସ୍ତିରୀ । ଯେଣୁ ସେ ମରା ନାମ ଧରି ॥
ରାଆ ଅକ୍ଷର ରାଧାହୋଇ । ମଅ ଅକ୍ଷର କୃଷ୍ଣ ସେହି ॥
ଯେଣୁ ସେ ଲୀଳା ଅଙ୍ଗଧରି । ରାଧା ଅକ୍ଷର ଆଗ କରି ॥
ମଅକୁ ପଛ ଯହୁଂ କଲା । ଯେଣୁ ସେ ରାମନାମ ହେଲା ॥
ଯେ ରାମନାମର ମହିମା । ମୁଖେ କେ କହୁ ଗୁଣ ସୀମା ॥
ଆବର ନାହିଂ ନା ଉପମା । କିଛୁ ଜାଣନ୍ତି ହରବ୍ରହ୍ମା ॥
ଯେ ନାମ ଭାବିଣ ଶଙ୍କର । ଅଷ୍ଟାଙ୍ଗ ଯୋଗେ ଅଧିକାର ॥
ମାୟା ନଲାଗେ ତାଙ୍କ ଅଙ୍ଗେ । ସଦେହେ ଥାନ୍ତି ଚାରି ଯୁଗେ ॥
ସେ ନାମ ଭାବିଲେ ଭୂଷଣ୍ଡ । ଅବନୀ ଥାନେ ଅଛି ପିଣ୍ଡ ॥
ଏ ନାମ ଅଗସ୍ତି ଭାବିଲେ । ସାତ ସମୁଦ୍ର ଚଳୁ କଲେ ॥
ଏ ରାମ ନାମ ଯେ ଶୁଣନ୍ତି । ବିଷୁଲି ପାତି ସୁରାପାନ ॥

ମାତୃହରଣ ଗୁରୁଦ୍ରୋହୀ । ଯେ ଅନ୍ୟ ପାତକ ଅଟଇ ॥
ସକଳ କ୍ଷୟ ଯାନ୍ତି ଭଲେ । ଏ ରାମନାମ ଉଚ୍ଚାରିଲେ ॥
ସଂସାର ବନ୍ଧୁ ସେ ତରନ୍ତି । ଅନ୍ତେ ପରମ ଗତି ପାନ୍ତି ॥
ଶ୍ରୀରାଧାକୃଷ୍ଣ ଭକ୍ତି ଲଭେ । ଜୀବ ପରମ ଭାବ ଭାବେ ॥
ତୁ ରାଧା ଜୀବ ମୋର ଦେହୀ । ମୁଁ ତୋର ପରମ ଅଟଇ ॥
ସକଳ ଜୀବେ ଏହିଭାବ । କହିଲୁ ପ୍ରେମଭକ୍ତି ଭାବ ॥
ଯାହା ପଚାରିଲୁ ସଂଘାତ । ଶୁଣିଲୁଟିକି ଜନ୍ମ ତତ୍ତ୍ୱ ॥
ପୂର୍ବ ଜନ୍ମର ଯେଉଁ କଥା । ତୁମ୍ଭର ଆମ୍ଭର ବେବସ୍ଥା ॥
ଶୁଣି ରାଧିକା ତୋଷ ହୋଇ । ପଡ଼ିଲା କୃଷ୍ଣ ପାଦେ ଯାଇ ॥
ବୋଲଇ ଅତି ସ୍ନେହ ଭରେ । ଦଇନି କରି କାକୁସ୍ୱରେ ॥
ଭୋ ପ୍ରଭୁ ପୂର୍ବ କଥା ଶୁଣି । ପବିତ୍ର ହୋଇଲି ମୁଁ ପୁଣି ॥
ମୁଁ ସେ ଅଜ୍ଞାନ ମୂଢ଼ ପ୍ରାଣୀ । ସେ ସେ ଠାକୁର ଠାକୁରାଣୀ ॥
ମୋ ଛାର ଦୋଚାରୁଣୀ ନାରୀ । ତାଙ୍କ ଚରଣେ କାହିଁ ସରି ॥
ପୁଣି ସେ ବିଧି ମୋକ୍ଷମନେ । କହଇ କୃଷ୍ଣ ଦିବ୍ୟମାନେ ॥
ଯେବେ ମୁଁ ତୁମ୍ଭ ପ୍ରାଣପ୍ରିୟା । ମୋତେ କିଂପାଇ କଲ ମାୟା ॥
ତୁମ୍ଭର ସଙ୍ଗରୁ ଅନ୍ତର । କିଂପାଇ କଲ ଚକ୍ରଧର ॥
ତୁମ୍ଭଙ୍କୁ ଅଯୋଗ୍ୟ ହୋଇଲି । ଅନ୍ୟର ପତ୍ନୀ ବୋଲାଇଲି ॥
ଯେବେ ସେ ପୁଣି ଇଚ୍ଛାକଲ । ବିଟ ପୁରୁଷ ବୋଲାଇଲ ॥
ଜଗତ ଅପବାଦ ଶୁଣି । ରାଧିକା କୃଷ୍ଣେ ବିଡ଼ମ୍ବଣି ॥
ତା' ଶୁଣି କହନ୍ତି ମୁରାରି । ଯେମନ୍ତେ ନୁହଇ ସୁନ୍ଦରୀ ॥
ପୂର୍ବର କଥା ସଖୀ ଯାହା । ତୋ ଆଗେ କହଇ ମୁଁ ତାହା ॥
ସତ୍ୟଯୁଗର କଥା ଶୁଣ । ନିତ୍ୟରେ ରାଧାକୃଷ୍ଣ ପୁଣ ॥
ସେ ରାଧା ଅଙ୍ଗ ଶ୍ରମଭରେ । ସ୍ୱେଦ ଯେ ଜନ୍ମିଲା ଶରୀରେ ॥
ସେ ଝାଳ ସାଗରେ ପଡ଼ିଲା । କ୍ଷୀର ସମୁଦ୍ରରେ ବୁଡ଼ିଲା ॥
କନ୍ୟାଯେ ହୋଇଲା ଜନମ । ତାହାର ନୀଳକନ୍ୟା ନାମ ॥
କମଳା ନାମ ତା'ର ହୋଇ । ବରୁଣ ଦୁହିତା ବୋଲାଇ ॥
ଜାଣିଲା ବିଷ୍ଣୁ ପାଟରାଣୀ । କମଳା ଅଟନ୍ତି ଯେ ପୁଣି ॥
ସେ କନ୍ୟା ବ୍ରହ୍ମାର ଭୁବନେ । ବାଲୁକା ପୂଜେ ପ୍ରତିଦିନ ॥
ବିଷ୍ଣୁଙ୍କୁ ପତିପଣେ ଧ୍ୟାୟୀ । ପୂଜଇ ଗଙ୍ଗାତୀରେ ଯାଇ ॥

ସେ ଗଙ୍ଗାତୀରେ ଥାନ୍ତି ନିତି । ସେ ସତୀ ଋଷି ବ୍ରହ୍ମପତି ॥
ଦେଖିଲେ ନୀଳକନ୍ୟା ମୁଖ । ରୂପେ ସେ ମୋହୁଛି ତ୍ରୈଲୋକ୍ୟ ॥
ତାହାଙ୍କୁ ମୁନି ପୁଚ୍ଛା କରି । ଆମ୍ଭଙ୍କୁ ପାରିବ କି ବରି ? ॥
ତା' ଶୁଣି କନ୍ୟା କୋପ କଲା । ତାଙ୍କୁ ଅମେଣ୍ଟ ଶାପଦେଲା ॥
ମୁଁ ସ୍ତିରୀ ବିଷ୍ଣୁ ଅଭିଷେକୀ । ତୁ ପୁଣ ହୁଅ ନ ପୁଂସକି ॥
ସେ ମୁନି ପୁଣି ତପ କରି । ନିରତେ ବିଷ୍ଣୁଙ୍କୁ ସୁମରି ॥
ଦେଖି ତାହାର ତପ ଧ୍ୟାନ । ଆମ୍ଭେ ହୋଇଲୁ ପରସନ ॥
ପୁଛିଲୁ ତପ କିଂପା କହ । ମାଗିଲା ନୀଳକନ୍ୟା ଦିଅ ॥
ବୋଇଲୁ ତୋତେ ଅସ୍ତୁ ହୋଉ । ମୋର ଭଗତ ଅଟୁ ଯହୁଂ ॥
ସୁବାହୁ ଦ୍ୱାପର ଯୁଗରେ । ଜନ୍ମିବ ଗୋପ ନାମ ପୁରେ ॥
ତୁ ଯେ ହୋଇବୁ ଚନ୍ଦ୍ରସେଣା । ସେ କନ୍ୟା ବ୍ରିଖଭାନୁ ଜେମା ॥
ରାଧିକା ହୋଇବ ତା' ନାମ । ଗୋପାଳ କୁଳେ ସେ ଜନମ ॥
ତାହାକୁ ବିଭା ତୁ ହୋଇବୁ । ନୁ ପୁଂସେ ରମି ନ ପାରିବୁ ॥
କଂସ ନୃପତି ଥିବ ହୋଇ । ତାହାକୁ ନାଶିବାର ପାଇଂ ॥
ରଙ୍ଗା ଅବତାରେ ଜନ୍ମିଣ । ସେ କନ୍ୟା କରିବୁ ରମଣ ॥
ଆମ୍ଭର ବାମା ସେ ଅଟଇ । ତୁ ଋଷି ଶୁଣ ମନ ଦେଇ ॥
ତେଣୁ ସେ ଚନ୍ଦ୍ରସେଣା ହେଲା । ତୋହର ପତି ବୋଲାଇଲା ॥
ତୁ ଅଟୁ ଆମ୍ଭର ରମଣୀ । ରାଧିକା ନୀଳକନ୍ୟା ଜାଣି ॥
ତୋତେ ସେ ବ୍ରହ୍ମାନେଇ ପୁଣ । ଅଜ୍ଞାନ କୁଣ୍ଡେ ବୁଡ଼ାଇଣ ॥
ବାଳ ସ୍ୱରୂପ ତୋତେ ଦେଇ । କାଳନ୍ଦୀ ପଦ୍ମବନେ ଥୋଇ ॥
କୋଟି ଚନ୍ଦ୍ରମା ଜିଣି ତନୁ । ଦେଖି ଆଣିଲେ ବ୍ରିଖଭାନୁ ॥
ଦୁହିତା କରିଣ ପାଳିଲେ । ରାଧିକା ବୋଲି ନାମ ଦେଲେ ॥
ତୁ ଯହୁଂ ଗୋପରେ ଜନମ । ଆମ୍ଭେ ଜନମ ମଧୁବନ ॥
ତୋ ପାଇଂ ଗୋପକୁ ଅଇଲୁ । ନନ୍ଦଭୁବନେ ବିଜେକଲୁ ॥
ସେ ବ୍ରହ୍ମା ଗଲା ପୁଣ କହି । ବିରହ ବେଣୁ ମୋତେ ଦେଇ ॥
ରାଧାଙ୍କୁ କର ଭୋଗ୍ୟମାନ । ଷୋଳ ସହସ୍ର ଗୋପୀଜନ ॥
ତୋର ମୋହର ଯେକଦେହ । ରାଧିକା ନକର ସନ୍ଦେହ ॥
ନିତ୍ୟ ରାହାସ ଅଂଶ ଭାବେ । ଦୁଇ ସ୍ୱରୂପ ତୁମ୍ଭେ ଆମ୍ଭେ ॥
ଦୁଷ୍ଟବଳଙ୍କୁ ନାଶ କରି । ପୁଣି ଚଳିବା ନିଜ ପୁରୀ ॥

ଭକ୍ତ ରକ୍ଷଣେ ମୋର ଦେହୀ । ଯୁଗାନୁସାରେ ଜନ୍ମ ମୁହିଁ ॥
ଜଗତ ଉଦ୍ଧାରଣ ଅର୍ଥେ । ମୋର ଜନମ ଏ ଜଗତେ ॥
ବ୍ରହ୍ମାବଚନ ଇଷ୍ଟ ମୋର । କଂସ ନାଶନେ ଅବତାର ॥
ଏ ଗୋପପୁରେ ଦିନାକେତେ । ରହିଲୁ ତୁମ୍ଭର ନିମନ୍ତେ ॥
ପୁଣି ଚଳିବୁ ମଧୁପୁରୀ । କଂସ ନାଶନ ହେତୁ ଧରି ॥
ତାହାକୁ ବିନାଶ କରିଣ । ଥୋକାଏ ମାରି ଦୁଷ୍ଟଗଣ ॥
ଧର୍ମଥାପିଣ ବସୁନ୍ଧରୀ । ପୁଣି ଚଳିବା ନିତ୍ୟପୁରୀ ॥
ସଂସାର ଆମ୍ଭ ତହୁଁ ଜାତ । ଆମ୍ଭେ ସକଳ ତାତ ମାତ ॥
ଶୁଣତୁ ମୋର ପ୍ରାଣସଖୀ । କିଂପାଇ ହୋଉ ମନେ ଦୁଃଖୀ ॥
ଶୁଣି ରାଧିକା ତୋଷମନ । କୃଷ୍ଣରେ କରି ପ୍ରେମଦାନ ॥
ହୋଇଲେ ବେନି ଜନେ ତୋଷ । ପ୍ରେମରେ ପରମ ସନ୍ତୋଷ ॥
ପଦ୍ମ ନୟନ ଗଦାଧର । କହନ୍ତି ଅର୍ଜୁନ ଆଗର ॥
ଯେବେ ଶୁଣିଲୁ ବୀରତୁହି । ପ୍ରଘଟ ନକରିବୁ କାହିଁ ॥
ଗୁରୁ ଗୁପତ ଯେତେ ପୁଣ । ଶ୍ରୀରାମ ନାମ ଯେ ନିର୍ଗୁଣ ॥
ଯାହାମୁଁ ରାଧା ପ୍ରେମେ କହି । ଶୁଣି ସଂସାରୁ ତର ତୁହି ॥
ଗୁରୁ କହିଲେ ଏହାଜାଣି । ଆତ୍ମାସ୍ୱରୂପ ପରିମାଣି ॥
ଯେ ରାମନାମେ କର ଆଶ । କହଇ ଯଶୋବନ୍ତ ଦାସ ॥
ସୁଜନେ ଦୋଷ ମୋ ନ ଧର । ମୁଁ ତୁମ୍ଭ ଭୃତ୍ୟ ପରିଚାର ॥
ଯାହା କହିଲି ପଦମତେ । ଏ ଦୋଷ ନ ଧରିବ ଚିତ୍ତେ ॥

ଇତି ଶ୍ରୀରାଧାକୃଷ୍ଣ ସମ୍ବାଦେ ପ୍ରେମଭକ୍ତି ବ୍ରହ୍ମ ଗୀତା କଥନେ
ଶ୍ରୀ ରାଧାକୃଷ୍ଣ ଯୁଗଳ ରୂପ ନିତ୍ୟରାସ ଜନ୍ମ କଥନେ
ଅର୍ଜୁନ ବୋଧନେ ନାମ ଦ୍ୱିତୀୟ ଅଧ୍ୟାୟ ।

## ତୃତୀୟ ଅଧ୍ୟାୟ

ଶ୍ରୀକୃଷ୍ଣ ଶ୍ରୀପୟର ଧରି । ଅର୍ଜୁନ ପୁଣି ହିଁ ପଚାରି ॥
ଶୁଣିମା ପ୍ରଭୁ ଚକ୍ରଧର । ଯେ ଅବା ସଂଶୟ ମୋହର ॥
ମୁଁ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ । ମୋତେ ନ କରିବ ଗୁପ୍ତ ॥

କହିଲ ଯୁଗଳ ଜନମ । ପୂର୍ବର କଥା ବିଧିମାନ ॥
ଶୁଣି ମୁଂ ହୋଇଲି ପବିତ୍ର । ସଂଶୟ ଫେଡ଼ ଜଗନ୍ନାଥ ॥
କି ଆଗ୍ୟାଂଦେଲେ ଠାକୁରାଣୀ । ପୂର୍ବର ଆଦିଜନ୍ମ ବାଣୀ ॥
ସେ କଥା ଗୁପତ ନକର । ମୋ ଆଗେ କହ ଚକ୍ରଧର ॥
କୃତାର୍ଥ କର ମୋତେ ପୁଣି । ଯାହା କହିଲେ ଠାକୁରାଣୀ ॥
କୃଷ୍ଣ କହନ୍ତି ଶୁଣ ପାର୍ଥ । ରାଧା ସଂଶୟ କଲେ ଚିତ୍ତ ॥
ପୁଣି ପୁଚ୍ଛନ୍ତି ଚନ୍ଦ୍ରାବଳୀ । ଭୋ ପ୍ରଭୁ ଶୁଣ ବନମାଳୀ ॥
ମୋହୋର ଘେନ ପ୍ରଭୁ ସେବା । ତୁମ୍ଭ ଶ୍ରୀମୁଖେ ଆଗ୍ୟାଂଦେବା ॥
ଯୁଗଳ ରୂପଛନ୍ତି ଜଡ଼ି । ଭୁଜ ଚରଣନୋହେ ବାରି ॥
ଅଛନ୍ତି ଛନ୍ଦାଛନ୍ଦି ହୋଇ । ପାଦରୁ ଚୂଳ ଯାଏ ତହିଂ ॥
କେ ତାଙ୍କୁ ନିଯୋଗ କରଇ । ଅନ୍ନ ଭୋଜନ କାହୁଂ ହୋଇ ॥
ଶଉଚକର୍ମ ବିଧିମାନ । କି ରୂପେ ହୁଅଇ ବିଧାନ ॥
କେ ଅବା ସେବାକରେ ତାଙ୍କୁ । କହ ସଂଶୟ ମୋ ମନକୁ ॥
କହନ୍ତି ଦେବ ନାରାୟଣ । ହେ ସଖୀ ସାବଧାନେ ଶୁଣ ॥
ସେ ରାଧା କୃଷ୍ଣ ଛନ୍ତି ଜଡ଼ି । ଭୁଜରେ ଭୁଜ ଭଡ଼ାଭିଡ଼ି ॥
ପ୍ରେମଯନ୍ତ୍ରରେ ଶୋଭା ସେହି । ବାଛିତ ନ ଦିଶନ୍ତି ଦୁଇ ॥
ଶ୍ରୀକୃଷ୍ଣ ଅଙ୍ଗ ନ ଦିଶଇ । ରାଧାଙ୍କ କୁଚମଧ୍ୟେ ରହି ॥
ମୁଖରେ ମୁଖ ଦେଇଛନ୍ତି । ଅଧରେ ଅଧର ଚୁମ୍ବନ୍ତି ॥
ତାହାଙ୍କ ମଧୁ ପ୍ରେମ ରସ । ଉଛୁଡ଼ି ପଡ଼େ ଚଉପାଶ ॥
ଅଧରୁ ପାଦ ଯାଏ ବହି । ସେ ପ୍ରେମୁଂ ପ୍ରେମରୂପା ହୋଇ ॥
କହଣା କାଳନ୍ଦୀ ତା ନାମ । କହିଲେ ହୋଇଲା ଜନମ ॥
ପ୍ରେମ ପଲଙ୍କେ ଶଯ୍ୟା ସେହି । ତା' ନାମ ପ୍ରେମରୂପା କହି ॥
ରାଧାକୃଷ୍ଣଙ୍କ ପ୍ରେମଭରେ । ଯନ୍ତ୍ର ସେ ଚାଳଇ ନିର୍ଭରେ ॥
ସେ ରାଧାକୃଷ୍ଣ ପ୍ରେମ ରସୁଂ । ସେ ପ୍ରେମରୂପା ଗର୍ଭବାସୁଂ ॥
ତହୁଂ ତ୍ରିପୁର ହେଲେ ଜନ୍ମ । ସେ ଆଦି ତ୍ରିଗୁଣ ତା ନାମ ॥
ତିନି ପୁରେଣ ଯେକ ଦେହୀ । ଯେଣୁ ତ୍ରିପୁରା ନାମ ହୋଇ ॥
ସେ ଦଶ ଭୁଜରେ ସମ୍ଭୂତ । ସେ ଆଦି ଦୁର୍ଗା ଆଦିମାତ ॥
ସେ ଗୁଣ ନୋହେ ଯେକପୁଣ । ଜନ୍ମିଲା ଆପେ ତିନିଗୁଣ ॥
ତା ଦେଖି ଯୋଗମାୟା ତୋଷ । ହୋଇଲେ ପରମ ସନ୍ତୋଷ ॥

ତାହାଙ୍କ ଦଶଭୁଜ ଚାହିଂ । ସେ ଯୋଗମାୟା ବୋଲେ ତହିଂ ॥
ଆମ୍ଭବଚନ ଅନୁଭାବେ । ଯୁଗଳ ରୂପ ସେବ ତୁମ୍ଭେ ॥
ତୁମ୍ଭଙ୍କୁ ଦେଉଅଛି ବର । ତୁମ୍ଭର ହୋଉ ଅଧିକାର ॥
ସଂସାର ଜନଙ୍କର ହିତା । ତୁମ୍ଭେ ସେ କରମ କରତା ॥
ସକଳ କର୍ମ ତୋ ଗୋଚର । ଦିଶିବ ଜନ୍ମ ଅନୁସାର ॥
ଷଠୀ ଦିଉଛି ତୁହି ହେବୁ । ଅନେକ ପୂଜା ତୁ ପାଇବୁ ॥
ମୋର ବଚନେ ଯେବେ ତୁହି । ଯୁଗଳ ରୂପ ସେବ ତୁହି ॥
ଚୌଷଠୀମନ୍ତ୍ର ମେଳସ୍ଥାନ । ଚୌଷଠୀ ସସ୍ର ଗୋପୀମାନ ॥
ରାସମଣ୍ଡଳୀ ନିତ୍ୟସ୍ଥଳ । ସକଳ ମନ୍ତ୍ରଯନ୍ତ୍ର ମେଳ ॥
ତାଙ୍କ ଉପରେ ତୁହି ଏକା । ହୋଇବୁ ନିତ୍ୟରେ ନାଏକା ॥
ତୋର ଭୋଗରେ ନିତ୍ୟସ୍ଥଳ । ଭୋଗ ସେ ଭୁଞ୍ଜିବେ ଯୁଗଳ ॥
ଗୋପାଳ ଅଧା ମନ୍ତ୍ର ଆଗେ । କଳ୍ପିବୁ ରାଧାକୃଷ୍ଣ ଭୋଗେ ॥
ତୋହୋର ଅଙ୍ଗ ଲାଗି ତୁଲ । ଭୋଗ ସେ ମୁକ୍ତି କଇବଲ ॥
ତୋ ବିନୁ ଶୁଦ୍ଧ ନୋହୁ କିଛି । ମୋର ସନ୍ମତ ଯେହ୍ନୁ ଅଛି ॥
ତୁ ଯହୁଂ ଲାଗିବୁ ତକ୍ଷଣ । ସେ ଶୁଦ୍ଧ ହୋଇବାକ ପୁଣ ॥
ତୋର ନଲାଗି ଶୁଦ୍ଧନୋହୁଂ । ମୋ କଥା ସବୁଦିନେ ଥାଉ ॥
ବିଷ୍ଣୁହିଂ ତୋତେ ନ ଛାଡ଼ିବ । ସର୍ବଦା ଈଷକରି ଥିବ ॥
ଚାରି ଯୁଗରେ ତୋର କାୟା । ସର୍ବଦା ହୋଉ ବିଷ୍ଣୁପ୍ରିୟା ॥
ତୋ ଅଙ୍ଗ ସୁବାସିତ ହେବ । ଆମୋଦେ ଜଗତ ମୋହିବ ॥
ତୋ ଲାଗି ଭୋଗଦେବ ଆଳ । ସର୍ବଦା ଭୁଞ୍ଜିବେ ନିର୍ମଳ ॥
ଯେମନ୍ତେ ବର ମାତା ଦେଲେ । ଯୁଗଳ ରୂପ ସେ ସେବିଲେ ॥
ଦଶଭୁଜରେ ତାଙ୍କ ସେବା । କି ଅବା ପଟାନ୍ତର ଦେବା ॥
ପାଶ ଅଙ୍କୁଶ ବେନିକରେ । ଶୌଚ ସ୍ନାହାନ ବେନି କରେ ॥
ଆବର ଦେଖ ବେନିକର । ବସ୍ତ୍ର ତାମ୍ବୁଳ ଅଳଙ୍କାର ॥
ବେନି ଭୁଜରେ ଭୋଗସିଦ୍ଧି । ଆଲଟ ଚାମର ପ୍ରସିଦ୍ଧି ॥
ଯେମନ୍ତେ ସେବା ବିଷ୍ଣୁଅଂଶୀ । ଶ୍ରୀରାଧା କୃଷ୍ଣ ମନତୋଷି ॥
ତ୍ରିପୁରା ତ୍ରିଗୁଣ ଅଟଇ । ସତ ଯେ ରଜତମ ସେହି ॥
ତା ତିନି ପାଦୁଂ ତିନିକ୍ଷର । ଅ କାର ଉ କାର ମ କାର ॥
ରୁଦ୍ର ବ୍ରହ୍ମାଦି ବିଷ୍ଣୁହେଲେ । ସେ ପୁଣି ଜଗତ ସୃଜିଲେ ॥

ଏ ତିନି ପାଦୁଂ ବେଦ କଲା । ତ୍ରିପାଦ ନାମ ବୋଲାଇଲା ।।
ବେଦରୁ ଜଗତ ଭିଆଣ । ସ୍ତୁ ସଖୀ ସାବଧାନ ଶୁଣ ।।
ରାଧା ବୋଲନ୍ତି ପ୍ରିୟଭାବେ । ଭୋ ପ୍ରଭୁ ପଚାରଇ ଏବେ ।।
ନିତ୍ୟସ୍ଥଳକୁ ଭେଦକରି । ମୋତେ ଯା କହିଲ ଶ୍ରୀହରି ।।
ମୁଂ ଯେବେ ନିତ୍ୟରେ ନାୟିକା । ତୁମ୍ଭ ସଙ୍ଗତେ ମୁଂ ରାଧିକା ।।
ମୋହୋରେ ଯେବେ ଦୟାବହ । ସକଳ କଥାମାନ କହ ।।
ଯେ ରାଧାକୃଷ୍ଣ ରାମ ନାମ । କି ରୂପେ ଜୀବ ଏ ପରମ ।।
ବ୍ରହ୍ମ କି ରୂପେ ପରିମାଣି । ସେ ନିତ୍ୟସ୍ଥଳ ମଧ୍ୟେ ପୁଣି ।।
ଅଣ ଅକ୍ଷର କାହା କହି । ଅକ୍ଷର ରୂପ ପ୍ରକାଶଇ ।।
ନିତ୍ୟ ରାହାସ କେ ଉପରେ । ଏ କଥା କହ ମୋ ଆଗରେ ।।
କହନ୍ତି ଦେବ ନାରାୟଣ । ତୁ ସଖୀ ସାବଧାନେ ଶୁଣ ।।
ଯାହା ପୁଚ୍ଛିଲୁ ନିତ୍ୟ କଥା । ଶୁଣିମା ମନେ ଧରି ଶ୍ରୋତା ।।
ଯେ କଳ୍ପେ ବୃକ୍ଷର ମୂଳରେ । ଅନନ୍ତ ସହସ୍ର ଫେଣାରେ ।।
ସପତ ଆବରଣ ଭେଦି । ମଧ ଫେଣାରେ ରତ୍ନବେଦୀ ।।
ତା' ଚାରିପାଶେ ଚାରିସ୍ତମ୍ଭ । ହୀରା ନୀଳାରେ ସେ ଆରମ୍ଭ ।।
ମାଣିକ୍ୟ ପ୍ରବାଳ ଏ ଚାରି । ଶ୍ରେଣୀ ବୈଡୁର୍ଯ୍ୟ ରାମ ସରି ।।
ଉପରେ ରତ୍ନମୟେ ଚାଳ । ମୁକୁତା ଲମ୍ବେ ମାଳମାଳ ।।
ଚାନ୍ଦୁଆ ଚନ୍ଦ୍ର ଦିନ ମଣି । ପାଟ ଝୁମ୍ପାରେ ଲମ୍ବେ ଶ୍ରେଣୀ ।।
ଜବା ପୁଷ୍ପର ପ୍ରାୟେ ଶୋହେ । ଜଡ଼ି ମୁକୁତା ଦେହ ପ୍ରାୟେ ।।
ସେ ସସ୍ରଦଳର ଉପରେ । ତା'ପରେ ପ୍ରେମ ପଲଙ୍କରେ ।।
ତା'ପରେ ପ୍ରେମମୟୀ ଦେହା । ତା'ପରେ କୃଷ୍ଣଘେନି ପ୍ରିୟା ।।
ଶେଷେ ବୋଲାଇ ନିତ୍ୟ ସ୍ଥାନ । ଶ୍ରୀରାଧାକୃଷ୍ଣ ବେନି ଜନ ।।
ବିହାର ଜୀବ ପରମରେ । ବେନି ଅକ୍ଷର ସେହିଠାରେ ।।
ଶେଷେ ବୋଲାନ୍ତି ରାମନାମ । ଦେହାଧି ଜୀବ ସେ ପରମ ।।
ସେ ପରେ ଯନ୍ତ୍ରମନ୍ତ୍ର ପୁଣ । ସକଳ ପ୍ରଚ୍ଛିନ୍ନ ପ୍ରମାଣ ।।
ତଥି ଉପରେ ଅଣାକ୍ଷର । ତାପରେ ଶୂନ୍ୟ ନିରାକାର ।।
ଶୂନ୍ୟ ଉପରେ ମହାଶୂନ୍ୟ । ଶୁଣ ରାଧିକା ଦେଇମନ ।।
ରୂପ ଅରୂପ ତହିଁ ନାହିଁ । ଯେ ମହାଶୂନ୍ୟ ସେ ବୋଲାଇ ।।
ସକଳ ନାଶ ଗଲେ ସେହି । ରହଇ ଏକାର୍ଣ୍ଣବ ହୋଇ ।।

ତହିଁରୁ ନାମ କ୍ଷରି ଅଛି । ତା'ଠାରେ ଚାରିକଳା ଗଛି ॥
ତ କାର ଗୀତା ନିଜସ୍ଥାନ । ପାବଛ କୋଟିଗ୍ରନ୍ଥମାନ ॥
ତହୁଁ ହୁଁକାର ଯେବେ ହୋଇ । ହୁଁକାରୁ ଓଁ କାର କ୍ଷରଇ ॥
ସେହି ସେ ଅଣାକ୍ଷର ଜାଣ । ତହୁଁ ସେ ଏକାକ୍ଷର ପୁଣ ॥
ସେ ଶିଶୁବେଦ ମହାଭାର । ସେହି ସେ ଅନାଦି ଅକ୍ଷର ॥
ତହୁଁ ହୋଇଲା ବେନି କ୍ଷର । ସେହି ସେ ରାମନାମ ସାର ॥
ବେନି ଅକ୍ଷରୁ ସେ ତ୍ରିକୋଣ । ଜୀବ ପରମ ବ୍ରହ୍ମଗୁଣ ॥
ସେ ତ୍ରିୟ ତତ୍ତ୍ୱର୍ଟି ବୋଲାଇ । ଯେଣୁ ପରମ ନିତ୍ୟ ସେହୁ ॥
ତିନି ଅକ୍ଷରୁ ଷଡକୋଣ । ଯେହାସେ ଛଡ଼ ଆବରଣ ॥
ଯେ ଷଡ ମନ୍ତ୍ର ନିତ୍ୟଧାମ । ଷଡ ଅକ୍ଷର ନିତ୍ୟନାମ ॥
ଯେଥୁଁ ହୋଇଲା ଅଷ୍ଟକୋଣ । ଆଠରୁ ଷୋଳନାମ ପୁଣ ॥
ଷୋଳଯୁଗଳେ ସେ ବତିଶ । ଯେମନ୍ତେ ଗୁରୁ ଉପଦେଶ ॥
ଆବର ମନ୍ତ୍ର ଯନ୍ତ୍ର ଯେତେ । ନିତ୍ୟକୁ ନିଘଟେ ପ୍ରଶସ୍ତେ ॥
ପୁଲିଙ୍ଗ ସ୍ତ୍ରୀଲିଙ୍ଗ ବିଚାର । ପ୍ରେମଭକ୍ତିରେ ନିତ୍ୟଘର ॥
ପୁରୁଷ ଅଙ୍ଗନାହିଁ ଯହିଁ । ଯେକା ପୁରୁଷ ଭାବଗ୍ରାହୀ ॥
ଯେ ତାଙ୍କୁ ପ୍ରେମଭକ୍ତି କରେ । ଶରୀର ବହି ଯେ ସଂସାରେ ॥
ପ୍ରେମ ଭଗତି ଯେ କରଇ । ସେ ପ୍ରାଣୀ ନିତ୍ୟରେ ବସଇ ॥
ଅନ୍ତେ ପଶଇ ରାସଗତେ । ରାଧିକା ଶୁଣ ଯେକ ଚିତ୍ତେ ॥
ପ୍ରେମର ମହିମା ଅପାର । ପ୍ରେମ ଲକ୍ଷଣ ମୋ ଶରୀର ॥
ପ୍ରେମ ଷୋଡଶୀ ଯେ ଭଜଇ । ଷୋଳ ଅକ୍ଷରମନ୍ତ୍ର ଯହିଁ ॥
ଯେମନ୍ତ ଭକ୍ତିରେ ନିର୍ବାଣ । ମୁକ୍ତିର ଅଟଇ ନିର୍ଗୁଣ ॥
ଯେମନ୍ତେ ଦାରୁବ୍ରହ୍ମ ଗୋପ୍ୟ । ଓଁକାର ଜଗନ୍ନାଥ ରୂପ ॥
ଗୋପୀ ମୋହୋର ନିଜ ଦେହୀ । ଯେ ତାଙ୍କୁ ଭଗତି କରଇ ॥
ମୋତେ ମିଶାଇ ସ୍ତୁତି କରେ । ଅନ୍ତେ ବସଇ ଗୋଲୋକରେ ॥
ପ୍ରେମଭକ୍ତିରୁ ଭକ୍ତି ନାହିଁ । ପ୍ରେମ ନିକଟେ ଥାଇ ମୁହିଁ ॥
ତୋହୋର ପ୍ରେମ ପ୍ରିୟଭରେ । ଯାହା ମୁଁ କହିଲି ତୋହରେ ॥
ସଂସାରେ ଶୁଣା ନାହିଁ କେହି । ତୋ ପ୍ରେମଭାବେ ଦେଲୁଂ କହି ॥
ଶୁଣି ରାଧିକା କୃତକୃତ । କୃଷ୍ଣ ଚରଣେ ପ୍ରେମ ଚିତ୍ତ ॥
ରହିଲା ପ୍ରେମଭକ୍ତି ଭରେ । ମନ ନିବେଶି ଶ୍ରୀ ପୟରେ ॥

ଅର୍ଜୁନ ଶୁଣି ଯେହୁ ପଦ । ରାଧାଙ୍କ ସଂଗେ ଯେ ସମ୍ବାଦ ॥
ଯାହା ତୁ ମୋତେ ପଚାରିଲୁ । ଶ୍ରବଣ ପଥରେ ଶୁଣିଲୁ ॥
ପ୍ରଗଟ ନ କରିବୁ କାହିଁ । ଗୁରୁଙ୍କୁ ସେବି ଯେହା ପାଇ ॥
ଯେ ବ୍ରହ୍ମ ଗୀତା ପ୍ରେମରସ । ଅମୃତୁଂ ଅଧିକ ପୀୟୂଷ ॥
କହିଲେ ପ୍ରଭୁ ଜଗନ୍ନାଥ । ଶୁଣି ସେ ବୀରବର ପାର୍ଥ ॥
ପଡ଼ିଲା କୃଷ୍ଣ ପଦ୍ମପାଦେ । ବୋଲଇ ଭାବ ଗଦଗଦେ ॥
ଭୋ ପ୍ରଭୁ କମଳା ରମଣ । ଯେ ଜୀବ କର ପରିତ୍ରାଣ ॥
ପ୍ରେମ ଭକ୍ତିରେ ଭକ୍ତି ସୀମା । କହିବା ପ୍ରେମର ମହିମା ॥
ପ୍ରେମ ଲକ୍ଷଣ କହ ମୋତେ । ପ୍ରେମ ଷୋଡ଼ଶୀ ମନ୍ତ୍ର ଯନ୍ତେ ॥
କି ରୂପେ ପ୍ରେମ ଭକ୍ତି ଗ୍ୟାଂନେ । ମନ୍ତ୍ର ବସଇ କଉଂ ଥାନେ ॥
କି ରୂପେ ପ୍ରେମ ଭକ୍ତି କରି । ଯେ ଘୋର ସଂସାରୁ ନିସ୍ତରି ॥
କହନ୍ତି ପ୍ରଭୁ ଭଗବାନ । ଅର୍ଜୁନ ଶୁଣ ମୋ ବଚନ ॥
ଭକ୍ତି ଯେ ନବ ପରକାର । ପ୍ରେମ ଭଗତି ଅଟେ ସାର ॥
ପ୍ରେମ ଷୋଡଶୀ ହେତୁ କଲୁ । ରାଧାଙ୍କୁ କହନ୍ତେ ଶୁଣିଲୁ ॥
ସେ ମନ୍ତ୍ର ପ୍ରଚ୍ଛିନ୍ନ ଅଟଇ । ଗୁପତେ ଶୁଣ ମନ ଦେଇ ॥
ଯେ ତ୍ରିୟ ତତ୍ତ୍ୱ ସେ ଯୁଗଳ । ବେନି ପାରୁଶେ ଷଡ଼ଦଳ ॥
ମଧ୍ୟରେ ଦଶକ୍ଷର ଘେନ । ଗୋପୀଜନ ବଲ୍ଲଭାୟ ନମ ॥
ଶେଷେ ଯେ ଚାରିକ୍ଷର ସ୍ଥିତି । ଯେ ପାଦ ଅଧର ବୋଲାନ୍ତି ॥
ପ୍ରଥମେ ପ୍ରଣବ ଉଚ୍ଚାର । ନମଃ ସ୍ୱାହାୟେ ଶେଷେଧର ॥
ଦେଖଯେ ଦାରୁବ୍ରହ୍ମ ଚାହିଁ । ପ୍ରେମ ଷୋଡଶୀ ମନ୍ତ୍ରଦେହୀ ॥
ଯେମନ୍ତେ ଷୋଳ ଅଙ୍ଗ ଜାଣ । ପାଦରୁ ଶିର ଯାଏ ପୁଣ ॥
କ କାରୁ କୃଷ୍ଣଚନ୍ଦ୍ର ମୁଖ । ସ କାରୁ ନୟନ ସେ ଦେଖ ॥
ହ କାରୁ ବାମ ସେ ନୟନ । ଏ କାରୁ ବୋଲାନ୍ତି ତ୍ରିକୋଣ ॥
ହ କାରୁ ଦକ୍ଷ ବାହୁ ହୋଇ । ସ କାରୁ ବାମ ବାହୁ କହି ॥
କ କାର ଅଧର ଯେ ପୁଣ । ଯେ ଷଡବୀଜ ଅଙ୍ଗଜାଣ ॥
ଯେଥିରୁ ହରେ କୃଷ୍ଣ ରାମ । ଯେ ଷଡ ଅକ୍ଷର ଜନମ ॥
ଆଗେ ଭଗତି ପଛେ ମୁକ୍ତି । ଯେଣୁ ଯେ ଦାରୁ ବ୍ରହ୍ମମୂର୍ତ୍ତି ॥
ସ୍ୱାହା ହୋଇଛି ମୁଖ ଜାଣ । ମିଶି ସପତ ଆଭରଣ ॥
ଆବର ଦଶକ୍ଷର କହି । ଗୋପୀଜନ ବଲ୍ଲଭାୟ ହିଂ ॥

ଘୋକାର କୃଷ୍ଣର ଭୂଲତା । ପୀ କାର ପିଛୋଡ଼ାରେ ସ୍ଥିତା ॥
ବେନି ଶ୍ରବଣ ଜନ ଦୁଇ । ବଲ୍ଲନାସିକା ବେନି ହୋଇ ॥
ଭକାର ଯକାର ଚରଣ । ବେନିରୁ ହୋଇଲେ ନିର୍ବାଣ ॥
ନମସ୍ତେ ପାଦ ନମସ୍କାର । ଯେମନ୍ତେ ପ୍ରକୃତି ଅଙ୍ଗର ॥
ରାଧାଙ୍କ ଅଙ୍ଗେ ଗୋପ୍ୟ ହୋଇ । ଶ୍ରୀକୃଷ୍ଣ ଅଙ୍ଗ ନ ଦିଶଇ ॥
ଦକ୍ଷିଣ ନୟନ ଅଧର । ଯେ ବେନି ଦିଶନ୍ତି ମଧର ॥
ଅର୍ଜୁନ ବୋଲଇ ଗୋସାଇଂ । ଷୋଳ ଅକ୍ଷର ମନ୍ତ୍ର ଦେହୀ ॥
ଷୋଡଶ ଅଙ୍ଗ କହ ମୋତେ । ଯନ୍ତ୍ରରେ ପ୍ରକୃତି ସହିତେ ॥
କୃଷ୍ଣ କହନ୍ତି ପାର୍ଥ ଶୁଣ । ପ୍ରକୃତି ଅଙ୍ଗ ସର୍ବ ପୁଣ ॥
ବେନି ନୟନ ନାସା ଦୁଇ । ବେନି ଶ୍ରବଣ ମୁଖ ହୋଇ ॥
ଯେ ସାତ ସାତ ଆବରଣ । ଆବର ନବଅଙ୍ଗ ଶୁଣ ॥
ବେନି ଚରଣ ବେନିକର । ହୃଦୟ ପୃଷ୍ଠ ସେ ଉଦର ॥
ମର୍ମ ସେ ଜିହ୍ୱା ନବ ହୋଇ । ଷୋଡଶ ଅଙ୍ଗ ଅଟେ ଏହି ॥
ଯେମନ୍ତ ରାଜ ରାଧା ଅଙ୍ଗେ । ଆବୋରି ରହିଛି ଶ୍ରୀ ଅଙ୍ଗେ ॥
ଯେଣୁ ଶ୍ରୀକୃଷ୍ଣ ପ୍ରେମେ ଥାନ୍ତି । ରାଧାଙ୍କ ଅଙ୍ଗେ ପ୍ରେମ ସ୍ଥିତି ॥
ଯେମନ୍ତ ପ୍ରେମଭକ୍ତି କହି । ଶୁଣ ଅର୍ଜୁନ ମନ ଦେଇ ॥
ଯାହାର ପୂର୍ବ ଭାଗ୍ୟବଳେ । ସେବଇ ଗୋପୀଗଣ ମେଳେ ॥
ଅଷ୍ଟନାୟିକା ମଧ୍ୟ କରି । ଯେକ ଗୋପିନୀ ଅଙ୍ଗ ଧରି ॥
ସେ ଗୋପୀପ୍ରାୟେ ବେଶକରି । ବସ୍ତ୍ର ଆଲଟ କରେ ଧରି ॥
ସେବିବ ଶ୍ରୀକୃଷ୍ଣ ପୟର । ମନ ନଥିବ ଅନ୍ୟଠାର ॥
ବୋଲିବ ଦେବ ଜଗନ୍ନାଥ । ଗୋପୀଙ୍କ ପତି ଗୋପୀନାଥ ॥
ମୁଇଂ ଗୋପୀଜନଙ୍କ ଦାସୀ । ଶରଣ ରଖ ବ୍ରହ୍ମରାଶି ॥
ଯେମନ୍ତେ ସମର୍ପିବ ଅଙ୍ଗ । ଅନଳେ ଯେସନେ ପତଙ୍ଗ ॥
ଯେରୂପେ ପ୍ରେମଭକ୍ତି ଭେଦ । ଅର୍ଜୁନ ଶୁଣି ଗଦଗଦ ॥
ପଡ଼ିଲା ଶ୍ରୀକୃଷ୍ଣ ପୟରେ । ମନ ନିବେଶି ପ୍ରେମଭରେ ॥
ପିଇଣ ଅର୍ଜୁନ ସନ୍ତୋଷ । ଯେ ବ୍ରହ୍ମ ଗୀତା ପ୍ରେମରସ ॥
ଯେ ହାଯେ ଶ୍ରବଣେ ଶୁଣନ୍ତି । ସକଳ ପାପୁଂ ନିସ୍ତରନ୍ତି ॥
ଶ୍ରୀ ରାଧାକୃଷ୍ଣେ ଭକ୍ତି ଲଭେ । ଯା ମନେ ଯେ ଯେମନ୍ତ ଭାବେ ॥
କୃତାନ୍ତ ପାଶୁଂ ସେ ତରଇ । ଅନ୍ତେ ବୈକୁଣ୍ଠ ଗତିପାଇ ॥

କହଇ ଦାସ ଯଶୋବନ୍ତି । ଶ୍ରୀ ରାଧାକୃଷ୍ଣ ପାଦଚିନ୍ତି ॥
ଗୁରୁ ବୈଷ୍ଣବ ବିପ୍ରଜନ । ଯେ ତିନି ବିଷ୍ଣୁଙ୍କ ସମାନ ॥
ଯେ ତିନିଜନେ କୃପାକର । ଯେ ଦୋଷ ଚିତ୍ତେ ମୋ ନଧର ॥
ସୁଗ୍ୟାଂନୀ ପଣ୍ଡିତ ଉତ୍ତମା । ଯେ ଦୋଷ ମୋର କର କ୍ଷମା ॥
ବାଲୁତ ପ୍ରାୟେ ମୋର ମତି । ଯେ ରାମ ନାମେ ମୋ ପୀରତି ॥
ଯେ ରାମ ନାମ ସେ ଅମୃତ । ସୁଜନେ ପିଅ ଶ୍ରୁତି ପଥ ॥
ଯେଣୁ ସଂସାର ତୃଷ୍ଣାନାଶେ । ପରମ ଧର୍ମପଥ ଦିଶେ ॥
କାମାଦି ଇନ୍ଦ୍ରଗଣେ ଡରି । ଶରୀରେ ଥାନ୍ତି ଅପସରି ॥
ମାଗଇ ଯଶୋବନ୍ତ ଛାର । ଯେ ଦେହ ଅନ୍ତକାଳେ ମୋର ॥
ଯେ ମନ୍ତ ପ୍ରଭୁ କୃପାହେବ । ଯେ ରାମ ନାମ ସେ ଫୁରିବ ॥
ଉଚ୍ଚାରି ରାମ ଭଗବାନ । ଯେ ଦେହ ଛାଡ଼ିବ ଜୀବନ ॥
ଗୁରୁ ସେ ପର୍ମ ବ୍ରହ୍ମସାର । ଶରଣ ତାଙ୍କର ପୟର ॥

ଇତି ଶ୍ରୀରାଧାକୃଷ୍ଣ ସମ୍ବାଦେ ପ୍ରେମଭକ୍ତି ବ୍ରହ୍ମ ଗୀତା କଥନେ
ନିତ୍ୟରାସ ତ୍ରିପୁର (ତ୍ରିପୁରା) ଜନ୍ମ କଥନେ ଅର୍ଜ୍ଜୁନ
ବୋଧନେ ନାମ ତୃତୀୟ ଅଧ୍ୟାୟ ।

## ଚତୁର୍ଥ ଅଧ୍ୟାୟ

ପୁଣି ଅର୍ଜ୍ଜୁନ କରଯୋଡ଼ି । କହଇ କୃଷ୍ଣପାଦେ ପଡ଼ି ॥
ବୋଲଇ ଶିରେ ଦେଇକର । ଶୁଣିମା ପ୍ରଭୁ ଚକ୍ରଧର ॥
ହେ ଦେବ କମଳାରମଣ । ମୋତେ କରିବା ପରିତ୍ରାଣ ॥
ଯାହା କହିଲ ଚକ୍ରପାଣି । ଶୁଣିଲି ଅସମ୍ଭବ ବାଣୀ ॥
ଶ୍ରୀରାଧା କୃଷ୍ଣଙ୍କ ଚରିତ । କହିଲ ପ୍ରଭୁ ଜଗନ୍ନାଥ ॥
କି ଆଗ୍ୟାଂ ଦେଲେ ଠାକୁରାଣୀ । ନିତ୍ୟ ରାହାସ କଥା ଶୁଣି ॥
ଶୁଣିମା ତୁମ୍ଭ ଶ୍ରୀମୁଖରୁ । ବାଞ୍ଛା ପୂରାନ୍ତି କଳ୍ପତରୁ ॥
ମୁଂ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ । ମୋତେ ନ କରିବ ଗୁପତ ॥
ସେ କଥା କହ ଭଗବାନ । ଶୁଣି ସନ୍ତୋଷ ହୋଇ ମନ ॥

ଶୁଣି ସେ ଅର୍ଜୁନ ବଚନ । କହନ୍ତି ପ୍ରଭୁ ଭଗବାନ ॥
କୃଷ୍ଣ କହନ୍ତି ମୃଦୁବାଣୀ । ଯାହା କହିଲେ ରାଧାଶୁଣି ॥
ସେ କଥା କହିବାକ ତୋତେ । ଶୁଣ ଅର୍ଜୁନ ଯେକ ଚିତ୍ତେ ॥
ଶୁଣି ବୋଇଲେ ଚନ୍ଦ୍ରାବଳୀ । ଶୁଣିମା ପ୍ରଭୁ ବନମାଳୀ ॥
ଯେତେ କହିଲ ନିତ୍ୟସାର । ଶୁଣି ସଂସାରୁ ହେଲି ପାର ॥
ଆବର କହ ପ୍ରଭୁ ମୋତେ । ସଂଶୟ ନଥାଉ ଯେମନ୍ତେ ॥
ଚନ୍ଦ୍ର ସୂର୍ଯ୍ୟ ଯେ ତାରାଗଣ । ବାୟୁ ଆକାଶ ଯେ ପ୍ରମାଣ ॥
ସକଳ ମନ୍ତ୍ରଯନ୍ତ୍ର ମାନ । ଅକ୍ଷର ଯେ ଅବା ସ୍ଥାପନ ॥
କଉଂ ଅକ୍ଷରେ କଉଂ ନାମ । ସପତ ଆବରଣ ମାନ ॥
କେ କାହିଂ ବସତି କେମନ୍ତେ । ସକଳ ମନ୍ତ୍ର ଯନ୍ତ୍ର ତନ୍ତ୍ରେ ॥
ସେ କଥା କହିବା ଗୋସାଇଂ । ତୁମ୍ଭର ଦାସୀ ଯେବେ ମୁହିଂ ॥
ତୁମ୍ଭ ମହିମା ମୁଂ ଶୁଣିମି । ଏ ଜନ୍ମେ ପବିତ୍ର ହୋଇବି ॥
କହିବା ପ୍ରଭୁ ଭଗବାନ । କାହୁଂ କେ ହୋଇଲା ଜନମ ॥
ଜୀବ ପରମ ବ୍ରହ୍ମ ଜାଣ । କେମନ୍ତ ପ୍ରକାରେ ଭିଆଣ ॥
କେଉଂ ସ୍ଥାନରେ କେ ବସଇ । କହିବା ପ୍ରଭୁ ଭାବଗ୍ରାହୀ ॥
ଯେମନ୍ତେ ଶୁଣି ଭଗବାନ । କହନ୍ତି କମଳ ଲୋଚନ ॥
ଅଶକ୍ୟ ଅଗୋଚର କଥା । ତୋହୋର ପ୍ରଶନ ବେବସ୍ଥା ॥
ଥୋକାଯେ ତୋତେ ମୁଂ କହଇ । ଶୁଣ ରାଧିକା ମନ ଦେଇ ॥
ଯେବେ ଶରଧାକଲ ମନ । କହିବା ଶୁଣ ବ୍ରହ୍ମଜ୍ଞାନ ॥
କିଛି ନ ଥାଇ ଶୂନ୍ୟପୁରୀ । ସେକାଳେ ଥିଲେ ନରହରି ॥
ହେତୁ ଆସନେ ଶୂନ୍ୟପୁର । ରହିଣ ଥିଲେ ନିରାକାର ॥
ବୁଦ୍‌ବୁଦା ଜଳ ଅଣ୍ଡ ଧରି । ରହିଣ ଥିଲେ ଶୂନ୍ୟ ପୁରୀ ॥
ତହୁଂ ସେ ଶୂନ୍ୟ ହୋଇଜାତ । ହୋଇଲା ଗଗନ ସମ୍ଭୂତ ॥
ସେ ଶୂନ୍ୟ ଅଣ୍ଡଭେଦ ହୋଇ । ତହୁଂ ଜନମ ଭାବଗ୍ରାହୀ ॥
ତହୁଂ ଜନ୍ମିଲା ଜଳ ଅଙ୍ଗ । ହାନ୍ଦୋଳ ଘୂମ ଆରତୁଙ୍ଗ ॥
ଯେମନ୍ତେ ପ୍ରକାଶିଲା ଜଳ । ସେ ଜଳୁଂ ଜାତ ଆଦିମୂଳ ॥
ସେ ପୁଣି ଗୋଲୋକେ ରହିଲେ । କ୍ଲୀଂ ଅକ୍ଷର ଅଙ୍ଗ ତୁଲେ ॥
ସେ କାମବୀଜ ଅଙ୍ଗ ସେହି । ରହିଲେ ଏକାର୍ଣ୍ଣବ ଭୂଇଂ ॥
ଚାରି ଦୁଆରେ ଚାରି ବେଦ । ରହି କାଳନ୍ଦୀ ମଧ୍ୟ ହ୍ରଦ ॥

ସେ ପୁଣ ପ୍ରକୃତି ଜନ୍ମାଇ । ରହିଲେ ଦୁଇଅକ୍ଷର ହୋଇ ॥
କ୍ଲୀଂ ବୀଜ ଶ୍ଳୀଂ ବୀଜ ସେ ଘେନି । ବୋଲନ୍ତି ରାଧାକୃଷ୍ଣ ବେନି ॥
ଯେହି ସେ ରାମ ନାମ ଭାବେ । ତୋତେ ମୁଁ କହି ଅଛି ପୂର୍ବେ ॥
କ୍ଲୀଂ ଅକ୍ଷର କାମ ବୀଜ । ଶ୍ଳୀଂ ଅକ୍ଷର ଅଟେ ରଜ ॥
ଯେହି ସେ ମାତା ପିତା ବେନି । ସଂସାର ପିଅର ଜନନୀ ॥
ପୁଣି ସେ ଲଜ୍ଜା ଜାତ ହେଲା । ବିରାଟ ଅଙ୍ଗ ବୋଲାଇଲା ॥
ବିରାଟ ଶେଷ ସେ ଅନନ୍ତ । ଶିରେ ବହିଲେ ମହାନିତ୍ୟ ॥
ତା ଶିରେ ରାଧାକୃଷ୍ଣ ରହି । ଯେଣୁ ସେ ମହାନିତ୍ୟ କହି ॥
ପରମ ବ୍ରହ୍ମ ସେ ବୋଲାନ୍ତି । ଯହୁଁ ସକଳ ଉତପତି ॥
ବିରାଟ ଲଜ୍ଜା ଅଙ୍ଗ ସେହି । ହ୍ଳୀଂ ଅକ୍ଷର ଯାହା କହି ॥
ଶିରେ ସେବିଥିଲେ ନିତ୍ୟକୁ । ମୁକ ନୟନ ତା' ତଳକୁ ॥
ତେଣୁ ସେ ଲଜ୍ଜା ଅଙ୍ଗ ସେହି । ତା' ଦୃଷ୍ଟି ନିତ୍ୟକୁ ନଥାଇ ॥
ବିରାଟ ଅଙ୍ଗ ଜୀବ ଜୀବ । ତେଣୁ ବୋଲାଇ ଜୀବ ଶିବ ॥
ସେ ଜୀବ ଚନ୍ଦ୍ରାବଳୀ ମତେ । ତ୍ରିକୋଣେ ମିଳିଲେ ତୁରିତେ ॥
ଶ୍ରୀକୃଷ୍ଣ ରାଧା ଚନ୍ଦ୍ରାବଳୀ । ଯେ ନିତ୍ୟ ତିନିରୂପେ କେଳି ॥
ଜୀବ ପରମ ବ୍ରହ୍ମ ଯେହି । ଶୁଣ ରାଧିକା ମନ ଦେଇ ॥
ପୁଣି ସେ ପ୍ରେମରୂପା ହେଲେ । ପ୍ରେମ କାଳନ୍ଦୀ ବୋଲାଇଲେ ॥
ସେ ଷଡ଼ ଶକ୍ତି ଭିଆଇଣ । ଯୁଗଳ ତିନିଅକ୍ଷର ପୁଣ ॥
କ୍ଲୀଂ ଶ୍ରୀଂକୁ ଘେନି ହ୍ରୀଂ । ଆବର ହ୍ରୀଂ ଶ୍ରୀଂ ଜ୍ରୀଂ ॥
ଯେ ରୂପେ ଷଡ଼ ଶକ୍ତି ଯେହି । ଯେ ଷଡ଼ କୋଣଟି ବୋଲାଇ ।
ସେ ଷଡ଼ ସଖୀ ନାମ ତୋତେ । କହିବା ଶୁଣ ଯେକ ଚିତ୍ତେ ॥
ସେ ବୃନ୍ଦାବତୀ ରଙ୍ଗ ଦେବୀ । ଆବର ରତ୍ନ ରେଖା ସେବି ॥
ଲୀଳାବତୀ ସୁଭଦ୍ରା ଜଡ଼ । ପ୍ରିୟାବତୀଙ୍କୁ ଘେନି ଷଡ଼ ॥
ଯେ ରୂପେ ଷଡ଼ସଖୀ ନାମ । ଯେମନ୍ତେ ହରେ କୃଷ୍ଣ ରାମ ॥
ଯେମନ୍ତେ ନିଜ ଦେହ ମୋର । ଯେମନ୍ତେ କହଇ ଶରୀର ॥
ହ କ୍ଷର ମୋର ବର୍ଣ୍ଣ ରୂପ । ରେ ଏ ଯେ ଅଧର ସ୍ୱରୂପ ॥
ରା କ୍ଷର ଭୁଜ ସେ ଅଟଇ । ମ କ୍ଷର ରାହୁରେଖା କହି ॥
କୃଷ୍ଣ ଅକ୍ଷର ମୋ ମୂର୍ଦ୍ଧନି । ଷଅ ମୋ ମୂର୍ତ୍ତି ସାକ୍ଷୀ ଘେନି ॥
ଯେମନ୍ତେ ଏକରୂପ ମୋର । ଯେମନ୍ତେ କହଇ ଶରୀର ॥

ଯେ ପ୍ରେମଶଯ୍ୟା ଷଡ଼କୋଣ । ସେ ବୃନ୍ଦାବତୀ ଅଧିଷ୍ଠାନ ॥
କର୍ଣ୍ଣ ନୟନ ନାସା ଛଡ଼ । ମଧ୍ୟରେ ରାଧାକୃଷ୍ଣ ଜଡ଼ ॥
ନିତ୍ୟ କରନ୍ତି ପ୍ରେମ ଭରେ । ଭୋ ସଖୀ କହିଲୁ ତୋହୋରେ ॥
ସେ ବୃନ୍ଦାବତୀ ସେ ଲଳିତା । ସେ ପୁଣ ଅଷ୍ଟକୋଣେ ସ୍ଥିତା ॥
ତା ସଂଗେ ଅଷ୍ଟସଖୀ ଘେନି । ନିତ୍ୟ ଖଟନ୍ତି ସେ କାମିନୀ ॥
ଯେମନ୍ତ ଅଷ୍ଟାକ୍ଷର ନାମ । ହରେ କୃଷ୍ଣଯେ ହରେ ରାମ ॥
ଯେହି ସେ ଅଷ୍ଟପାଟ ବଂଶୀ । ଅଷ୍ଟଗୋପୀକା ନାମ ଭାଷି ॥
ଲଳିତା ବିମଳା ଶ୍ରୀଧନ୍ୟା । ଶ୍ରୀମତୀ ହରିପ୍ରିୟା କନ୍ୟା ॥
ସୁକେଶୀ ସଚଳା ସୁନ୍ଦରୀ । ପଦ୍ମା ସହିତେ ଅଷ୍ଟନାରୀ ॥
ପ୍ରେମଭକ୍ତିରେ ଯେ ନିର୍ବାଣ । ଯେ ସେ ବୋଲାଇ ଅଷ୍ଟକୋଣ ॥
ମଧ୍ୟରେ ରାଧାକୃଷ୍ଣ ବେନି । ନିତ୍ୟରେ ପ୍ରେମରସ ଘେନି ॥
ଯେବେ କହିବା ଷୋଳଦଳ । ଯେମନ୍ତେ ଷୋଳକ୍ଷର ଠୁଳ ॥
ଷୋଳ ନାମ ଯେ ଷୋଳଘେନି । ନିତ୍ୟରେ ରାଧାକୃଷ୍ଣ ବେନି ॥
ଯେମନ୍ତେ ଷୋଳନାମ ହୋଇ । ବତିଶ ଅକ୍ଷର ଅଟଇ ॥
ତହିଂର କହିବା ନିର୍ଗୁଣ । ଗୁରୁଙ୍କ ଉପଦେଶ ପୁଣ ॥
ଯେଠାରେ ଷୋଳନାମ କହି । ହରେ ଶବଦ ଆଠ ହୋଇ ॥
କୃଷ୍ଣ ଶବଦ ଚାରି ଜାଣ । ରାମ ଶବଦ ଚାରି ପୁଣ ॥
ଯେମନ୍ତେ ଷୋଳନାମ ହୋଇ । ଯେ ଷୋଳ ରୂପ ତୋତେ କହି ॥
କୃଷ୍ଣାଦି ରାମାଦି ଯେ ଦୁଇ । ହରାଦି ଯେଥି ମଧେ କହି ॥
ଏ ରୂପେ ଆଠ ଆଠ ନାମ । ପୁଂଲିଙ୍ଗ ସ୍ତ୍ରୀଲିଙ୍ଗ ଉପାମ ॥
ପୁଂଲିଙ୍ଗ କୃଷ୍ଣନାମ ଯେହି । ସେ ଚାରି କୃଷ୍ଣ ଯେକ ଦେହୀ ॥
ଲୀଳାଙ୍ଗ କୃଷ୍ଣ ସ୍ତୋକ କୃଷ୍ଣ । ଶ୍ରୀକୃଷ୍ଣ ଘେନି ବାଳକୃଷ୍ଣ ॥
ଆବର ରାଧା ଚନ୍ଦ୍ରାବଳୀ । ଦୂତୀ ତ୍ରିପୁରା ଆଠ ମିଳି ॥
ଯେ ଆଠ କୃଷ୍ଣାଦିକା ଯେହି । ରାମାଦି ଆଠ ନାମ କହି ॥
ବିରାଟ ଶେଷଦେବ ଲେଖା । ଅନନ୍ତ ବଳଭଦ୍ର ସାଖା ॥
ରାମା ରତନ ରାମାଯେଣୀ । ରେବତୀ ଯୋଗମାୟା ପୁଣି ॥
ଯେ ନାମ ରାମାଦି ବୋଲାଇ । ଯେମନ୍ତେ ଷୋଳ ନାମ କହି ॥
ଆବର ଷୋଳ ଗୋପୀକହି । ଶୁଣ ରାଧିକା ମନ ଦେଇ ॥
ବିମଳା ଶରଧା ଯେ ବେନି । କୁନ୍ତଳା ବୃନ୍ଦାବତୀ ଘେନି ॥

ହଂସଚାରୁ ସୁମେଧା ଦୁଇ । ସୁକେଶୀ ଚିତ୍ରରେଖା କହି ॥
ରମ୍ଭା ପଦ୍ମିନୀ ସଂଗେ ଜାଣ । ଗୋମତୀ ବଇନେତ୍ରୀ ପୁଣ ॥
ରଙ୍ଗଣୀ ସୁରେଖା ଶ୍ୟାମଳା । ଯେ ରୂପେ ଷୋଳଗୋପୀ ମେଳା ॥
ବତିଶ ଦଳରେ ବସନ୍ତି । ଷୋଳ ବତିଶ ଯେ ବୋଲାନ୍ତି ॥
ବତିଶ ଚଉଷଠୀ କଳା । ଓଁ କାର ଯୋଗପୀଠ ହେଲା ॥
ପୁଣି କହିଲା ଯୋଗବଳେ । ଅନନ୍ତ ଜନମର କାଳେ ॥
ତା ତହୁଂ ଶୂନ୍ୟ ହୋଯେ ଜାତ । ସେ ଶୂନ୍ୟ ପ୍ରଳମ୍ବ ସମ୍ଭୂତ ॥
ପୁଣ ସେ ଅଣାକ୍ଷର ହୋଇ । ସେ ବିନ୍ଦୁ ଶିରେ ଅଛି ରହି ॥
ପ୍ରଳମ୍ବ ବ୍ରହ୍ମ ନିରାକାର । ରହିଲା ଅର୍ଦ୍ଧମାତ୍ରା ଶିର ॥
ଓଁ କାର ବ୍ରହ୍ମରୂପ ଧରି । ବିନ୍ଦୁ ଜନ୍ମିଲା ଶୂନ୍ୟ ପୁରୀ ॥
ସେ ବିନ୍ଦୁ ରୂପ ନରହରି । ସେ ପୁଣ ବେଦ ଜାତ କରି ॥
ଓଁ କାର ଯହୁଂ ବେଦ ଜାତ । ଋକ ଜନମିଲା ତୁରିତ ॥
ଅ କାର ମ କାର ସେ ଘେନି । ଅଥର୍ବ ଯଜୁ ଜାତ ବେନି ॥
ସ କାରୁ ପବନ ତୁରିତ । ସାମ ମୋ ମୁଖରୁ ସମ୍ଭୂତ ॥
ପୁଣି କହିଲେ ହେତୁ କରି । ରଜ ତାମସ ସତ୍ତ୍ୱ ଧରି ॥
ବ୍ରହ୍ମାଦି ବିଷ୍ଣୁ ମହେଶ୍ୱର । ଜନ୍ମିଲା ତ୍ରିଗୁଣ ସଂସାର ॥
ସେ ଚାରିବେଦ ବ୍ରହ୍ମା ହସ୍ତେ । ଦେଲି ମୁଁ ସୃଷ୍ଟିର ନିମନ୍ତେ ॥
ସେ ଚାରିବେଦୁଂ ବ୍ରହ୍ମା ମୁନି । ଜନ୍ମାଇ ତ୍ରିଗୁଣ ସଂଘେନି ॥
ବେଦରୁ ପଞ୍ଚକ୍ଷର ଜାତ । ତହୁଂ ଜନ୍ମିଲା ପଞ୍ଚଭୂତ ॥
ଇ କାରୁ ପୃଥ୍ୱୀ ଜାତ ହୋଇ । ଙ୍କ କାରୁ ଜଳ ଜାତ ହୋଇ ॥
ଈ କାରୁ ଜାତ ସେ ପବନ । ନାଦରୁ ଜାତ ହୁତାଶନ ॥
ବିନ୍ଦୁ ଆକାର ଶୂନ୍ୟ କହି । ଯେ ପାଞ୍ଚ ତତ୍ତ୍ୱଟି ବୋଲାଇ ॥
ବେଦରୁ ବାରମାତ୍ରା ହେଲେ । ପଞ୍ଚାଶକ୍ଷର ବୋଲାଇଲେ ॥
ପୁଣି ସେ ଛଡ଼ ଚକ୍ର ହୋଇ । ମୂଳ କମଳ ଲିଙ୍ଗ ଦୁଇ ॥
ନାଭିକମଳ ହୃଦ ପୁଣ । କଣ୍ଠ ଲଲାଟ ଛଡ଼ ଜାଣ ॥
ବ୍ରହ୍ମା ସେ ବସିଲେ ନାଭିରେ । ବିଷ୍ଣୁ ରହିଲେ ହୃଦୟରେ ॥
କଣ୍ଠେ ରହିଲେ ସଦାଶିବ । ଲଲାଟେ ନିରଞ୍ଜନ ଦେବ ॥
କୃଷ୍ଣ ଅଂଶରୁ କାମ ଜାଣ । ରହିଲେ ଲିଙ୍ଗ ଚକ୍ରେ ପୁଣ ॥
ରୁଦ୍ରର ଅଂଶରୁ ପ୍ରକାଶ । ମୂଳ କମଳେ ସେ ଗଣେଶ ॥

ବ୍ରହ୍ମାଣ୍ଡ ଦେଖି ନରହରି । ଧର୍ମ ସ୍ୱରୂପେ ଅବତରି ॥
ଧର୍ମର ପଛେ କାଳ ଜାତ । କାଳର ପଛରେ ମହତ ॥
ଦୟା ଜନ୍ମିଲା ତା ପଛରେ । ତ୍ରିଗୁଣ ପଶି ବ୍ରହ୍ମାଣ୍ଡରେ ॥
ତା' ପଛେ ଲୋଭ କାମ ଜାତ । ତା' ପଛେ ଅହଂକାର ସ୍ଥିତ ॥
ମୁଂ କାର ଶାନ୍ତି ତିନି ଆଶ । ତା' ପଛେ ଇନ୍ଦ୍ରି ଯେକାଦଶ ॥
ସୂର୍ଯ୍ୟ ଅନନ୍ତ ମୁଖୁଂ ଜାତ । ଦ୍ୱାଦଶ କଳାରେ ଆଦିତ୍ୟ ॥
ଚନ୍ଦ୍ରମା ଘେନି ଷୋଳକଳା । ମାୟାର ମୁଖୁଂ ଜନମିଲା ॥
ସେ ଚନ୍ଦ୍ରମା ତା ଶାପ ପାଇ । ବଢ଼ଇ ପାଖରେ ଛିଡ଼ଇ ॥
ତାହାର ନିଜ କଳାପୁଣ । ବହଇ ଈଶ୍ୱର ଶିରେଣ ॥
କୁହୁରେ ଚନ୍ଦ୍ର ସୂର୍ଯ୍ୟମାନ । ରହନ୍ତି ଏକଇ ଆସନ ॥
ନକ୍ଷତ୍ର ଗଣଙ୍କର କଥା । ତୋହର ପ୍ରଶନ ବେବସ୍ଥା ॥
ଦିତିର ଦୁହିତା ଯେ ହେଲେ । ଜନମ ସତାଇଶ କଲେ ॥
ଚନ୍ଦ୍ରକୁ ତାହା ବିଭାଦେଇ । ନକ୍ଷତ୍ରଗଣ ସେ ବୋଲାଇ ॥
ତ୍ରିଗୁଣ ଘେନିଣ ପ୍ରକାଶ । ମାତାର ଗୁଣୁଂ ସେ ରାକ୍ଷସ ॥
ପିତାର ଗୁଣୁ ଯେହ୍ନୁଂ ହେଲେ । ନବ ଦେବତା ବୋଲାଇଲେ ॥
ସେ ଗୁଣରୁ ଯେ ଯେ ପ୍ରକାଶ । ସେ ନବ ହୋଇଲେ ମାନସ ॥
ଯେ ଗ୍ରହଗଣ ସଙ୍ଗେ ଥାନ୍ତି । ଚନ୍ଦ୍ର ଅଙ୍ଗେଣ ଭୋଗ ଯାନ୍ତି ॥
ସେ ଚନ୍ଦ୍ରଜଳ ଅଙ୍ଗେ ଜାତ । ରାଧିକା ଶୁଣ ଯେକ ଚିତ୍ତେ ॥
ପ୍ରଥମେ ତୁଙ୍ଗଜଳ କହି । ପୁଣ ବୁଦ୍‌ବୁଦା ପ୍ରକାଶଇ ॥
ତହୁଂ ଘୁମିଳ ଜଳ ହେଲା । ତହୁଂ ହାନ୍ଦୋଳ ପ୍ରକାଶିଲା ॥
ପୁଣ ସେ ଦିତିମାଗେ ବର । କଶ୍ୟପ ଋଷିଙ୍କ ଛାମୁର ॥
ଯେମନ୍ତେ ଚାରିଜଳ କହି । ଜଳୁଂ ଜଗତ ଜନମଇ ॥
ମୋହୋର ଜାତ ହେବ ପୁତ୍ର । ବଳେ ସେ ହେବ ବଳବନ୍ତ ॥
ଇନ୍ଦ୍ର ହୁଂ ଅଧିକ ସେ ହେବ । ସଂସାରେ ରାଜା ବୋଲାଇବ ॥
ହୋଇବ ଅକ୍ଷୟ ଅଜୟ । କାହାକୁ ନଥିବ ତା ଭୟ ॥
କଶ୍ୟପଦେଲେ ତାକୁ ବର । ତୋ ପୁତ୍ର ହେବ ବଳୀୟାର ॥
ସେ ନାରୀ ହେଲା ଗର୍ଭବାସ । ଯହୁଂ ହୋଇଲା ଦଶମାସ ॥
ତା' ଗର୍ଭେ ଇନ୍ଦ୍ର ବଜ୍ର ଧରି । କାଟିଲା ଅଣଚାଷ କରି ॥
କଶ୍ୟପ ଋଷି ତାହା ଜାଣି । ଅମୃତ ପିଆଇଲେ ଆଣି ॥
ତହୁଂ ହୋଇଲେ ପୁତ୍ରଜାତ । ସେ ପୁଣ ନୋହିଲେ ଏକତ ॥

 

ହୋଇଲେ ଅଣଚାଷ ମୂର୍ତ୍ତି । ପବନ ବହିଲେ ଧରତୀ ॥
ସେ ଷଡ଼ ଚକ୍ରରେ ବସିଲେ । ବାଇବେ ଦିଗପାଳ ହେଲେ ॥
ଶୂନ୍ୟ ଆକାଶ ଯହିଁ ସ୍ଥିତି । ପଞ୍ଚାଶକୋଟି ତା' ଆକୃତି ॥
ତା'ର ମଧ୍ୟରେ ଯେ ବ୍ରହ୍ମାଣ୍ଡ । ରଚ୍ଚନା ଚତୁଦଶ ଖଣ୍ଡ ॥
ଅନନ୍ତ ଅଂଶୁ ଏ ବ୍ରହ୍ମାଣ୍ଡ । ସର୍ଗ ପାତାଳ ମଞ୍ଚଖଣ୍ଡ ॥
ସେ ଅଣ୍ଡମଧ୍ୟେ ଲିଙ୍ଗ ରୂପେ । ଈଶ୍ୱରଖେଳେ ମାୟାକଳ୍ପେ ॥
ତା' ମଧ୍ୟେ ମେରୁ ଯେ ମୁରାଟ । ତା'ର ଶୃଙ୍ଗରେ ସ୍ୱର୍ଗବାଟ ॥
ଜମ୍ବୁଦ୍ୱୀପକୁ ସେ ପଶ୍ଚିମ । ମେରୁ ପର୍ବତ ଯାର ନାମ ॥
ଶତେ ଯୋଜନ ସେ ଉସର୍ଗ । ବିସ୍ତାର ଅଟେ ଚାରିଭାଗ ॥
ତା' ଚାରିପାଖେ ଅଷ୍ଟଗିରି । ହିମବନ୍ତକୁ ଆଦିକରି ॥
ଏଥି ମଧ୍ୟରେ ଚନ୍ଦ୍ରସୂର୍ଯ୍ୟ । ମେରୁ ଉହାଡ଼େ ହୀନ ତେଜ ॥
ବାମ ଭାଗରୁ ସେ ଭ୍ରମନ୍ତି । ସେ ଶିଶୁମାର ଚକ୍ରେ ସ୍ଥିତି ॥
ମେରୁ ଉହାଡ଼େ ସୂର୍ଯ୍ୟଯାଇ । ଛାୟାରେ ରାତ୍ର ପ୍ରକାଶଇ ॥
ସେ ସୂର୍ଯ୍ୟ ସିନ୍ଧୁତଟେ ଯାଇ । ଉଦୟଗିରି ଭେଟ ପାଇ ॥
ତେବେ ଦିଶନ୍ତି ଛାୟାନାଥ । ରାତ୍ର ଯାଇଣ ଦିବାଗତ ॥
ସକଳ ଜୀବ ଜନ୍ତୁମାନେ । ଆନନ୍ଦ ସୂର୍ଯ୍ୟ ଦରଶନେ ॥
ଥାବର ଜଙ୍ଗମ ପତଙ୍ଗ । କୀଟ ସ୍ୱରୂପୀ ଯେତେ ଜୀବ ॥
ବେଦୁଂ ସକଳ ଜାତ ହୋଇ । ବ୍ରହ୍ମା ତା' ସର୍ଜନା କରଇ ॥
ସକଳ ଦେହେ ନାରାୟଣ । ବସନ୍ତି ଅନାଦି କାରଣ ॥
ପରମଆତ୍ମା ନରହରି । ବସେ ଚେତନା ମଧ୍ୟେ ପୂରି ॥
ନର ଅଙ୍ଗରେ ଭୋଗ ଭୁଞ୍ଜେ । ଦୁର୍ଗମ ଦୁଃଖ ସୁଖ ମଧ୍ୟେ ॥
ଯେରୂପେ'ସଂସାର ପ୍ରଧାନ । ଯାହା ତୁ କଲୁ ପରଶନ ॥
କହିଲୁଂ ତୋହୋର ଅଗ୍ରତେ । ରାଧିକାଶୁଣ ଯେକ ଚିତ୍ତେ ॥
କହିଲେ ବ୍ରହ୍ମାଣ୍ଡ ଗୋସାଇଂ । ଶୁଣ ରାଧିକା ତୋଷହୋଇ ॥
ରାଧା ପ୍ରସନ୍ନ କରି ମନ । ଗଲି ମୁଂ ଆପଣା ଭୁବନ ॥
ଅର୍ଜୁନ ଶୁଣ ଯେକ ଚିତ୍ତେ । ଯାହା ତୁ ପଚାରିଲୁ ମୋତେ ॥
ଏ ରୂପେ ସର୍ଜନା ସଂସାର । ବ୍ରହ୍ମା ରୁଦ୍ରକୁ ଅଗୋଚର ॥
ଯେ ପ୍ରଶ୍ନ କହିଲୁ ତୋହରେ । ଗୁପତ ସଂସାର ପ୍ରକାରେ ॥
ରଖ ତୁ ହୃଦରେ ପୂରାଇ । ଶ୍ରୀଗୁରୁ ସେବି ଯେହା ପାଇ ॥
ଯେ ଗୁରୁ ବିଷ୍ଣୁରେ ଭଗତି । ଉତ୍ତମ ସଂସାରେ କହନ୍ତି ॥

କପଟୀ ଲମ୍ପଟୀ ଯେଲୋକ । ସାକଟ ପରେ ଯେ ହିଂସେକ ।।
ଅର୍ଜୁନ କହି ଏ ଚରିତ । ଜାଣୁନା କରୁ ଅଛ ସତ୍ୟ ।।
ଯେ ବ୍ରହ୍ମ ଗୀତା ପ୍ରେମରସ । ଯାହା ମୁଂ କଲଇଂ ପ୍ରକାଶ ।।
ଯେହା ଯେ ଶ୍ରୁତିରେ ପିବନ୍ତି । କି ଅବା ବଦନେ ଗୁଣନ୍ତି ।।
ସକଳ ପାପ ତା'ର ନାଶେ । ନିତ୍ୟ ଲୋକରେ ସେହୁ ମିଶେ ।।
ମୁଖେ ନିନ୍ଦନ୍ତି ସାଧୁବାଣୀ । ଅର୍ଜୁନ ଥାଅ ଏହା ଜାଣି ।।
ଯେଣୁ ହୁଅନ୍ତି କୀଟ କୃମି । ଜନ୍ମ ମରଣ ପଥଗ୍ରମୀ ।।
ତୁ ଯେବେ ପ୍ରେମଭକ୍ତି କର । ଯେ ଘୋର ସଂସାରୁ ନିସ୍ତର ।।
ଶୁଣି ଅର୍ଜୁନ ତୋଷ ହୋଇ । ପଡ଼ିଲା କୃଷ୍ଣପାଦେ ତହିଂ ।।
ବୋଲଇ ଗଦଗଦ ବାଣୀ । ଭୋ ପ୍ରଭୁ ନିସ୍ତରିଲି ଶୁଣି ।।
ମୁଂ କାହିଂ କେତେ ତପ କଲି । ତୁମ୍ଭର ଗୋଷ୍ଠୀରେ ବଢ଼ିଲି ।।
ଧନ୍ୟ ମୋ ପିତୃ ପୁରାତନ । ଶୁଣିଲି ଶ୍ରୀମୁଖ ବଚନ ।।
କହିଲି ବ୍ରହ୍ମମୟ ଗୀତା । ଭଗତ ଜନଙ୍କର ହିତା ।।
କହଇ ଦାସ ଯଶୋବନ୍ତି । ଶ୍ରୀକୃଷ୍ଣ ପଦପାଦେ ଚିନ୍ତି ।।
ପ୍ରାକୃତ ଭାଗବତ ମତେ । ଯାହା କହିଲି ପଦକେତେ ।।
ସୁଜନେ ନ ଧରିବ ଦୋଷ । ମୁଂ ତୁମ୍ଭ ଦାସ ପରୁ ଦାସ ।।
ସୁଗ୍ୟାଂନୀ ପଣ୍ଡିତ ଉତ୍ତମା । ଯେ ଦୋଷ ମୋର କରକ୍ଷମା ।।

ଇତି ଶ୍ରୀରାଧାକୃଷ୍ଣ ସମ୍ବାଦେ ପ୍ରେମଭକ୍ତି- ବ୍ରହ୍ମ ଗୀତା
କଥନେ ନିତ୍ୟ ସଂସାର ଉତ୍ପତ୍ତି ରଞ୍ଜନେ ଅର୍ଜୁନ
ବୋଧନେ ନାମ ଚତୁର୍ଥ ଅଧ୍ୟାୟ ।

## ପଞ୍ଚମ ଅଧ୍ୟାୟ

କୃଷ୍ଣ ଚରଣେ ଦେଇଚିତ୍ତ । ଅର୍ଜୁନ ଭକ୍ତିଭାବେ ଯୁକ୍ତ ।।
ଭାବେ ପୁଲକ୍ ତା ଶରୀର । ତନୁ ଉଦ୍‌ଗମ କଣ୍ଠଦ୍ୱାର ।।
କହି ନ ପାରେ ପ୍ରେମଭରେ । କଣ୍ଠ କୁଣ୍ଠିତ ସ୍ୱେଦ ଝରେ ।।
ରହିଲା ସ୍ତମ୍ଭୀଭୂତ ହୋଇ । ଶ୍ରୀକୃଷ୍ଣ ପଦ୍ମପାଦେ ଚାହିଂ ।।
ତା' ଦେଖି ପ୍ରଭୁ ବ୍ରହ୍ମରାଶି । ଅର୍ଜୁନେ କହନ୍ତି ଆଶ୍ୱାସି ।।
ମୁଖେ ସୁବାସ ଜଳ ଦେଇ । ଆପଣା ସନିଧେ ବସାଇ ।।

 

ଶ୍ରମ ଛାଡ଼ିଲା ତା' ଶରୀର । ହସି କହନ୍ତି ଚକ୍ରଧର ॥
କହି ତୁ ସ୍ତମ୍ଭୀଭୂତ ହେଲୁ । ବଚନ କହି ନ ପାରିଲୁ ॥
ଶୁଖିଛି କଣ୍ଠ ଓଷ୍ଠ ତୋର । ବଦନୁଂ ନ ସ୍ଫୁରେ ଉତ୍ତର ॥
ଅର୍ଜୁନ ଶୁଣି କରଯୋଡ଼ି । କହେ ଶ୍ରୀକୃଷ୍ଣ ପାଦେ ପଡ଼ି ॥
ଶୁଣିମା ପ୍ରଭୁ ଭଗବାନ । କହି ମୁଂ ନୁହଇ ଭାଜନ ॥
ଯାହା ଶୁଣିଲି ଶ୍ରୀ ମୁଖରୁ । ମହିମା ଅଗୋଚର ମେରୁ ॥
ଦୋସର ନ ପାରଇ କହି । ଯେଣୁ ସଂଶୟ ଚିତ୍ତେ ମୁହିଂ ॥
ରହିଲି ଭୟ ଚିତ୍ତେ ଧରି । ତା' ଶୁଣି କହନ୍ତି ମୁରାରି ॥
କିସ ସଂଶୟ ଚିତ୍ତେ ତୋର । କହନ୍ତୁ ଭୟ ଦୂର କର ॥
ତା' ଶୁଣି ବୋଲଇ ଅର୍ଜୁନ । କି ଅବା କହିବି ପ୍ରଶ୍ନ ॥
ଯେବେ କହିଲ ଦାମୋଦର । ଶୁଣି ମୋ ନ ସ୍ଫୁରେ ଉତ୍ତର ॥
ପ୍ରଚ୍ଛିନ୍ନ ଶ୍ରୀମୁଖ ବଚନ । କେ ଅବା କହିପାରେ ଅନ୍ୟ ॥
ଶ୍ରୀମୁଖୁଂ ଯେ ପଦ ଭକତ । ଗୁରୁ ପରମ ଗୁରୁ ତତ୍ୱ ॥
ମୁଂ ଶୁଣି ପଚାରଇ ଭାବେ । ଭୋ ପ୍ରଭୁ ଦୟା ହେବ ଯେବେ ॥
ଯେତେ କହିଲ ନାରାୟଣ । ସକଳ ଶୁଣିଲି ଶ୍ରବଣ ॥
ଏମନ୍ତ ସ୍ଥାନ ଅଛି କାହିଂ । ସଂସାରେ ଦେଖିନାହିଂ କେହି ॥
ମୋ ଛାର କି ଅବା ଭାଜନ । ସେ ସ୍ଥାନ ପାଇବି ଦର୍ଶନ ॥
ବ୍ରହ୍ମାଇନ୍ଦ୍ରଙ୍କୁ ଅଗୋଚର । ମୋ ଛାର ମନୁଷ୍ୟ ମାତର ॥
ଶୁଣି କହନ୍ତି ଭଗବାନ । ଯେମନ୍ତେ ନବୋଲ ଅର୍ଜୁନ ॥
ତୁ ମୋର ଅର୍ଦ୍ଧ ଆତ୍ମା ଦେହୀ । ହରି ଅର୍ଜୁନ ଭିନ୍ନ ନୋହି ॥
ଯେବେ ତୁ ପାଇବୁ ଦର୍ଶନ । ସେ ବ୍ରହ୍ମମୟ ନିତ୍ୟସ୍ଥାନ ॥
ସେ କଳ୍ପବୃକ୍ଷର ମୂଳରେ । ଅନନ୍ତ ଫଣାର ମଧ୍ୟରେ ॥
ବିଜୟେ ଜଗନ୍ନାଥ ଅଙ୍ଗେ । ରାଧା ଅଛନ୍ତି ଦକ୍ଷଭାଗେ ॥
ଦର୍ଶନ କରାଇବା ନେଇ । ଯେମନ୍ତ ବୋଲି ଭାବଗ୍ରାହୀ ॥
ଅଣାଇ ବିନତାକୁମର । ଅର୍ଜୁନ ଘେନି ସଙ୍ଗତର ॥
ବିଜୟେ କଲେ ଭଗବାନ । ଅଶୀ ଯେ ସହସ୍ର ଯୋଜନ ॥
ମିଳିଲେ ଭ୍ରଥ ଖଣ୍ଡ ଲାଗେ । ଉତ୍କଳଦେଶେ ସିନ୍ଧୁଭାଗେ ॥
ଦକ୍ଷିଣ ନୀଳଗିରି ତଟ । ଅକ୍ଷୟେ ନାମ କଳ୍ପବଟ ॥
କ୍ଷେତ୍ର ପୁରୁଷୋତ୍ତମ କହି । ଚତୁର୍ଦ୍ଧାରୂପ ଭାବଗ୍ରାହୀ ॥
ବିଜୟେ ରତ୍ନ ସିଂହାସନେ । ମିଳିଲେ ସେହୁ କ୍ଷେତ୍ରସ୍ଥାନେ ॥

ସ୍ନାହାନ ସମୁଦ୍ରେ ସାରିଲେ । ପୁଣି ମାର୍କଣ୍ଡେ ସ୍ନାନ କଲେ ॥
ଶଉଚ କର୍ମ ବିଧି ସାରି । ଅର୍ଜୁନ କର ଧରି ହରି ॥
ସିଂହ ଦୁଆରେ ବିଜେକଲେ । ପ୍ରଥମେ ସିଂହକୁ ଦେଖିଲେ ॥
କହନ୍ତି ପ୍ରଭୁ ଭଗବାନ । ଯେ ସେ ଗୁପତ ନିତ୍ୟସ୍ଥାନ ॥
ଗୁପତ ବଇକୁଣ୍ଠ ଯେହି । ଶୁଣ ଅର୍ଜୁନ ମନ ଦେଇ ॥
ମୁକତି ପଞ୍ଚକୋଶ ପୁଣ । ଶଙ୍ଖନାଭି ମଣ୍ଡଳ ଜାଣ ॥
ଚାରି ଦୁଆରେ ମୁକ୍ତିହାଟ । ଦକ୍ଷିଣ ଭାଗେ ସ୍ୱର୍ଗବାଟ ॥
ଦେଖ ଯେ ବଡ଼ଦାଣ୍ଡ ଚାହିଁ । ଯେ ଭୀଷ୍ମ ଗର୍ଭ ଏ ଅଟଇ ॥
ଯେ ଯେ ଅଛନ୍ତି ସିଂହ ଦୁଇ । ବିଷ୍ଣୁଙ୍କ ଦ୍ୱାରପାଳ ଯେହି ॥
ଜୟ ବିଜୟ ଯେ ବୋଲାନ୍ତି । ଗୁପତେ ସିଂହ ହୋଇଛନ୍ତି ॥
ପାଚେରୀ କାଙ୍ଗୁଲା ନିର୍ବାଣ । ଅନନ୍ତ ଫଣା ଯେ ପ୍ରମାଣ ॥
ସହସ୍ର ଫଣା ଦେଖ ଚାହିଁ । ପାଚେରୀ କାଙ୍ଗୁଲା ଅଟଇ ॥
କପାଟ ବଜ୍ର ଅଙ୍ଗ ରାଶି । ଯେହା ଜାଣିଲେ ନିତ୍ୟେ ପଶି ॥
ବାଇଶି ପାବଚ୍ଛ ନିର୍ବାଣ । ବାଇଶି କୋଟି ବିଷ୍ଣୁଗଣ ॥
ବେନି ପାରୁଶେ ଚାହାଂ ବୀର । ଅଛନ୍ତି ବ୍ରହ୍ମା ଇନ୍ଦ୍ର ହର ॥
ସକଳ ତପୀ ଯତି ଜନ । ଦେଖ ପାରୁଶେ ବିଦ୍ୟମାନ ॥
ସେବା କରନ୍ତି ନିତ୍ୟସ୍ଥଳେ । ସକଳ ତପୀ ଯତିମେଳେ ॥
ଅଙ୍ଗେ ରୋଷୁଅ ଘରପ୍ରତି । ଯେଠାରେ ଲକ୍ଷ୍ମୀ ଅଧିପତି ॥
ଅମୃତ ମୁଣୋହି ରାନ୍ଧନ୍ତି । ପରଶେ ଭୀଷ୍ମକ ଦୁହିତୀ ॥
ଦେଖ ଯେ ବଟ ଆୟତନ । ଦେବନାଶନ ଯେହାନାମ ॥
ଝପଟେ ଯେଠାକୁ ଅଇଲେ । ହୃଦୟ ଫାଟିଯାଇ ଭଲେ ॥
ବଟମଙ୍ଗଳା ଦେଖ ଦୂତୀ । ସଙ୍ଗେ ତା' ସଖୀଗଣ ଘେତି ॥
ନାନା ସୁବାଦ୍ୟ ଗୀତ ଗାଇ । ସେ ରାଧାକୃଷ୍ଣ ପାଦଧ୍ୟାୟୀ ॥
ରାହାସ ଖଟନ୍ତି ନିତ୍ୟରେ । ଆପଣେ ବୀଣାଯନ୍ତ୍ର ଧରେ ॥
ମୁକତି ମଣ୍ଡପ ସେ ଦେଖ । ବୈକୁଣ୍ଠବିଷ୍ଣୁର ବୈଠକ ॥
ଯେଥି ଚନ୍ଦନ ବଟେ ଥାଇ । ଭୂଷଣ୍ଡ ରାମାନାମ ଧ୍ୟାଇ ॥
ତଳେ ତା' ରୋହିଣୀର କୁଣ୍ଡ । କାରୁଣ୍ୟଜଳ ଯେଥି ରୁଣ୍ଡ ॥
ଗଙ୍ଗା ଯମୁନା ସରସ୍ୱତୀ । ସେ ଚାରି ଜଳ ଯେଥି ସ୍ଥିତି ॥
କାକ ଯେ କୁଣ୍ଡରେ ପଡ଼ିଲା । ଦେଖ ହେ ଚତୁର୍ଭୁଜ ହେଲା ॥
ଦକ୍ଷିଣ ଦ୍ୱାର ଆୟତନ । ଯେ ବାରପାବଚ୍ଛ ନିର୍ବାଣ ॥

 

ଯେ ବାରକୋଟିଏ ଗନ୍ଧର୍ବ । ହାହା ହୁହୁ ଯେ ଯେକୁ ସର୍ବ ॥
ଆଗେ ପଶ୍ଚିମେ ମଧୁବନ । ଯେ ସେ ବିହାର ବୃନ୍ଦାବନ ॥
ଯେଉଁ ଯେତେକ ଦ୍ରବ୍ୟହୋନ୍ତି । ସକଳ ବିଷ୍ଣୁଭୋଗ ସେତି ॥
ଦୟଣା ତୁଳସୀ ମାଧବୀ । ଅମୃତ ପାଣି ଗଙ୍ଗା ସେବି ॥
ଚୂତ ପଣସ ଟଭା ନାର । ଇକ୍ଷୁ ରସାଳ ଯେତେ ଆର ॥
ବିମଳା ଲକ୍ଷ୍ମୀଙ୍କର ସ୍ଥାନ । ଯେହି ସେ ବିଷ୍ଣୁଙ୍କ ଭୁବନ ॥
ଯେଠାରେ ଅଷ୍ଟପାଟ ବଂଶୀ । ସେବା କରନ୍ତି ମନତୋଷି ॥
ଆବର ଦେଖ ସୁନା କୂପ । ପାତାଳଗଙ୍ଗା ଯେ ସ୍ୱରୂପ ॥
ବଟଷେ ଥାଇ ମୁଦା ହୋଇ । ସ୍ନାହାନ ସାରି ଭାବଗ୍ରାହୀ ॥
ଦ୍ୱାଦଶ ଯାତ୍ରା ସାରି ହରି । ଜ୍ୟେଷ୍ଠ ପୂର୍ଣ୍ଣମୀ ସ୍ନାନକରି ॥
ପନ୍ଦର ଦିନ ଅଣସରେ । ରହନ୍ତି ଗୁମଟ ସରଘରେ ॥
ଦେଖ ତୁ ସ୍ନାହାନ ମଣ୍ଡପ । ଯେହି ସେ ଯୋଗପୀଠ ରୂପ ॥
ତପୀଙ୍କ ତପସ୍ଥାନ ଯେହି । ଶୁଣ ଅର୍ଜୁନ ମନଦେଇ ॥
ଯେ ଦେଖେ ଭେଟେ ସେ ମଣ୍ଡପ । ହେଲେ ଖଣ୍ଡଇ ପଞ୍ଚପାପ ॥
ଯେ ଥାନେ ପଞ୍ଚତୀର୍ଥ ବିଶେ । ପଞ୍ଚଆ ପାତକ ବିନାଶେ ॥
ଦେଖ ଜଗମୋହନ ଘର । ବିଷ୍ଣୁଙ୍କ ବଇକୁଣ୍ଠ ପୁର ॥
ଯେଠାରେ ନାନା ପାପୀଗଣ । ମୁକ୍ତି ହୁଅନ୍ତି ଅନୁକ୍ଷଣ ॥
ଗରୁଡ଼ ଖୁମ୍ବ ମେରୁରୂପ । ରମ୍ୟକ ନାମେ ଯେହୁ ଦ୍ୱୀପ ॥
ଗରୁଡ଼ ବିଷ୍ଣୁଦ୍ୱାରେ ଥାଇ । ବିଷ୍ଣୁଙ୍କୁ ପୃଷ୍ଠରେ ବହଇ ॥
କଳା ପାବଚ୍ଛ ଅରଗଳି । ଯେଠାରୁ ମହାନିତ୍ୟସ୍ଥଳୀ ॥
ଯେଠାରେ ଦ୍ୱାରୀ ବୃନ୍ଦାବତୀ । ଶ୍ରୀରାଧା କୃଷ୍ଣେ ତା ଭଗତି ॥
ମୁଣୋହି କୋଠା ବିଦ୍ୟମାନ । ଯେଠାରେ ତ୍ରିପୁରାଙ୍କ ସ୍ଥାନ ॥
ତ୍ରିପୁରା ଭୋଗସିଦ୍ଧ ଦେଇ । କୈବଲ୍ୟ ଭୁଞ୍ଜନ୍ତି ଗୋସାଇଂ ॥
ନାନାଦି ଭୋଗମାନେ ପୁଣ । ଯେଠାରେ ପ୍ରଚ୍ଛିନ୍ନ ପ୍ରମାଣ ॥
ଯେଠାରୁ ଆଗକୁ ଯେ ଯାଇ । କୋଟିଏ ପାତକ ହୁଅଇ ॥
ଯେ ଲୋକ ନିତ୍ୟରେ ବିହାର । ଆଗକୁ ତାଙ୍କ ଅଧିକାର ॥
ପୁରୁଷ ଅଙ୍ଗରେ ନ ଯାଇ । ଯାହାର ସଖୀ ଅଙ୍ଗଥାଇ ॥
ଯାହାର ପ୍ରେମରେ ଭଗତି । ସେମାନେ ଡରେ ନ ଗମନ୍ତି ॥
ସେମାନେ ଭୟେ ଥରହର । ସ୍ତୁତି କରନ୍ତି ଯେହି ଠାର ॥
ଅର୍ଗଳି ଡେଇଂଣ ନଯିବ । ଯେଠାରେ ସ୍ତୁତି ଆରମ୍ଭିବ ॥

ଦେଖ ଯେ ରତ୍ନସିଂହାସନ । କୋଟିଯେ ବ୍ରହ୍ମା ବିଷ୍ଣୁମାନ ।।
କୋଟିଯେ ଶାଳଗ୍ରାମ ରୂପ । ଅଛନ୍ତି ସିଂହାସନେ ଗୋପ୍ୟ ।।
ଚାରି ପାଶୁଶେ ବେଦ ପୁଣ । ପାବଛ ସରୂପରେ ଜାଣ ।।
ଉପରେ ରତ୍ନମୟେ ବେଦି । ଅଛି ବ୍ରହ୍ମାଣ୍ଡ ଭାଣ୍ଡ ଭେଦି ।।
ଓଂ କାର ବହ୍ନ ବିନ୍ଦୁ ସେହି । ଅନନ୍ତ ଶେଷଦେବ ସେହି ।।
ତଥି ଉପରେ ଚକ୍ରାମାନ । ଅଟେ ପୃଥିବୀ ଆୟତନ ।।
ସ୍ୱର୍ଗ ପାତାଳ ମଞ୍ଚ ତିନି । ବଇଠି ସ୍ୱରୂପେ ଜନମି ।।
ଡାହାଣେ ବଳଭଦ୍ର ରୂପ । ଯେହି ସେ ବିରାଟ ସ୍ୱରୂପ ।।
ଅନନ୍ତ ଅଙ୍ଗେ ପ୍ରଚ୍ଛିନ୍ନ । ଓଂ କାର ହ୍ଲାଂ ଅଙ୍ଗ ଜନମ ।।
ବାମେ ଶ୍ରୀ ଜଗନ୍ନାଥ ଯେହି । କ୍ଲିଂ ଅଙ୍ଗରେ ବିଜେ ସେହି ।।
ମ କାରୁ ପରମ ଶରୀର । ଯାର ମାୟାରେ ଏ ସଂସାର ।।
କୈବଲ୍ୟ ମୁକ୍ତିଦାତା ଯେହି । ଯେ ପୁଣ ମୋର ନିତ୍ୟ ଦେହୀ ।।
ମଧ୍ୟେ ସୁଭଦ୍ରା ବ୍ରହ୍ମାରୂପ । ରାଧାଙ୍କ ଅଙ୍ଗେ ତହିଁ ଗୋପ୍ୟ ।।
ଅ କାରୁ ବ୍ରହ୍ମରୂପ ହୋଇ । ସ କାରୁ ରାଧା ଅଙ୍ଗ ହୋଇ ।।
ପାଶୁଶେ ସୁଦର୍ଶନ ଯତି । ସେ ମହାଶୂନ୍ୟ ବ୍ରହ୍ମଜ୍ୟୋତି ।।
ନାହିଁ ଯାହାର ପାଦପାଣି । ଶିର ନାସିକା କର୍ଣ୍ଣ ପୁଣି ।।
ଅମନ ମନ ଭିନ୍ନ ନାହିଁ । ସେ ସଦାନନ୍ଦ ରୂପ ଯେହି ।।
ଯେ ରୂପେ ଚାରି ପରକାର । ଚତୁର୍ଥ ରୂପ ଯେ ବିହାର ।।
ମନ୍ତ୍ର ଯେ ହରେ କୃଷ୍ଣ ଦେହୀ । ଗୁରୁଯା ଉପଦେଶ ଦେଇ ।।
ହ ଅ ଅକ୍ଷର ଭଦ୍ରଶାଖା । ଗୁପତ ରୂପେ ଯେ ରାଧିକା ।।
ରେ ଅକ୍ଷର ଯେ ବଳଦେବ । ରେବତି ପତି ଅନୁଭାବ ।।
କୃରୁ ଅକ୍ଷର କୃଷ୍ଣଦେହୀ । ଶ୍ରୀଜଗନ୍ନାଥ ଯାହା କହି ।।
ଷ୍ଣ ଅ ଯେ ସୁଦର୍ଶନ ପୁଣ । ଯେମନ୍ତେ ଚତୁର୍ଥ ପ୍ରମାଣ ।।
ଦର୍ଶନେ ଯେ ଚାରି ପ୍ରକାର । ଶ୍ରୀକୃଷ୍ଣ କଲେ ନମସ୍କାର ।।
ଅର୍ଜୁନ ଦେଖି ପାଦେ ପଡି । କୋଟିଏ ଦଣ୍ଡବତ କରି ।।
ବୋଲଇ ପ୍ରଭୁ ଜଗନ୍ନାଥ । ତୁମ୍ଭ ଦର୍ଶନେ ମୁଁ ମୁକତ ।।
ମୋ ସକଳ ପାପ କ୍ଷୟେ । ଦେଖିଲି ପ୍ରଭୁଦେବ ରାୟେ ।।
ଦର୍ଶନ କଲି ବ୍ରହ୍ମରୂପ । ଖଣ୍ଡିଲି କୋଟିଜନ୍ମ ପାପ ।।
ମୋହୋର ନାହିଁ ଯମଭୟେ । ଯେବେ ଶୁଣିମା ଦେବରାୟେ ।।
ଯେ ତୁମ୍ଭେ ଭିନ୍ନ ନୋହ ଦୁଇ । ଯେକ ସ୍ୱରୂପ ଯେକ ଦେହୀ ।।
ମୁଁ ମୂଢ଼ ମାୟା ଜଡ଼େ ପଡ଼ି । ବଣା ହୁଅଇ ପଥଛୁଡ଼ି ।।

ତୁମ୍ଭେ ସେ ଦୟାର ସାଗର । ପତିତ ବାଞ୍ଛା ପୂର୍ଣ୍ଣ କର ।।
ମୋହୋର ଦୋଷ କର କ୍ଷମା । ଚରଣେ ଭଗତି ଘେନିମା ।।
କହିଲ ହରେକୃଷ୍ଣ ମନ୍ତ୍ର । ଆବର କହ ବେନି ଯନ୍ତ୍ର ।।
ରାମ ଶବଦ କହ ମୋତେ । ତେବେ ସେ ଯିବଇ ପରତେ ।।
ସୁଭଦ୍ରା ଅଙ୍ଗ ରାଧା ପୁଣି । ନିତ୍ୟରେ କି ରୂପେ ବଖାଣି ।।
ସେ କିଂପା ନିତ୍ୟକୁ ଅଇଲେ । ପୁରୁଷ ସ୍ତିରୀ ଅଙ୍ଗ ତୁଲେ ।।
କୃଷ୍ଣ କହନ୍ତି ପାର୍ଥ ଶୁଣ । ତୋତେ କହିବା ତହିଁ ଗୁଣ ।।
ଯେ କାଳେ ବ୍ରହ୍ମା ବିଷ୍ଣୁ ହର । ଜାତ ହୋଇଲେ ବ୍ରହ୍ମାଣ୍ଡର ।।
ବ୍ରହ୍ମା ରହିଲେ ପୃଥ୍ୱୀ ସ୍ଥାପି । ବିଷ୍ଣୁ ରହିଲେ ସର୍ବେ ବ୍ୟାପି ।।
ରୁଦ୍ର ରହିଲେ ଯୋଗ ମତେ । ଯେମନ୍ତେ କେତେ କାଳ ଅନ୍ତେ ।।
ଭେଟିଲେ ମାତା ପୁତ୍ରେ ପୁଣ । ସେ ରୁଦ୍ର ସଙ୍ଗେ ବିଡ଼ମ୍ବଣ ।।
ତା' ଶୁଣି ଆମ୍ଭେ ପୁଣ ଗଲୁ । ବ୍ରହ୍ମାର ସହିତେ ମିଳିଲୁ ।।
ମାତା କହିଲେ ବିଡ଼ମ୍ବଣ । ପୁତ୍ର ସେ ମାତାଙ୍କ ସଙ୍ଗେଣ ।।
ଆମ୍ଭେ ବୋଇଲୁ ଶୁଣ ମାତ । ଧର୍ମ ସେ ଲଙ୍ଘିଲ ଯୁଗତ ।।
ବାଳ ସ୍ୱଭାବ ରୁଦ୍ର ସେହି । ତୁମ୍ଭେ ସେ ଗର୍ଭଧାରୀ ଥାଇ ।।
ତୁମ୍ଭେ କେମନ୍ତେ କଲ ଯେହା । ତା' ଶୁଣି କୋପେ ଯୋଗମାୟା ।।
ଶାପ ଆମ୍ଭଙ୍କୁ କୋପେ ଦେଲେ । ଯୋନି ତୁ ନିନ୍ଦିଲୁ ବୋଇଲେ ।।
ଯୋନିରେ ବିଷ୍ଣୁ ହୋଅ ଜାତ । ଯୁଗ ଯୁଗକୁ ସେ ସମ୍ଭୂତ ।।
ଯେ ବ୍ରହ୍ମା ସ୍ତିରୀ ଯୋନି ହୋଉ । ଅପୂଜା ହୋଇ ଦିନ ଯାଉ ।।
ଯେମନ୍ତ ବୋଲି ଶାପ ଦେଲେ । ସେ ଅନ୍ତର୍ଦ୍ଧାନ ହୋଇଗଲେ ।।
ତହୁଂ ସେ ଆମ୍ଭେ ତିନି ଭ୍ରାତ । ଯେକାନ୍ତେ ଭାଳିଲୁ ଗୁପତ ।।
କହିଲୁ ସେ ପୁରୁଷୋତ୍ତମ । ନିତ୍ୟ ରାହାସ ଅନୁପାମ ।।
ଯେ ରୁଦ୍ର ବଳଭଦ୍ର ରୂପ । ଅଟନ୍ତି ଅନନ୍ତ ସ୍ୱରୂପ ।।
ଆମ୍ଭେ ଶ୍ରୀ ଜଗନ୍ନାଥ ଦେହୀ । ବ୍ରହ୍ମା ସୁଭଦ୍ରା ହୋଇତହିଁ ।।
ରାଧା ଗୁପତ ଅଙ୍ଗ ହୋଉ । ଆମ୍ଭ ସଙ୍ଗତେ ପୂଜା ପାଉ ।।
ଗୁପତସ୍ତିରୀ ରୂପ ହୋଇ । ବ୍ରହ୍ମା ବୋଲିଣ ନ ବୋଲାଇ ।।
ନଥିବ ହସ୍ତ ପଦ ଚାରି । ସ୍ତିରୀ ସ୍ୱରୂପ ମାତ୍ର ଧରି ।।
ଯେମନ୍ତେ ଗଲୁ ଯେଝାସ୍ଥାନେ । ଅର୍ଜୁନ ଶୁଣ ମୋ ବଚନେ ।।
ସେ ବ୍ରହ୍ମା ସୁଭଦ୍ରା ହୋଇଲେ । ରାଧାଙ୍କ ଅଙ୍ଗେ ସମ୍ଭାଇଲେ ।।
ଆବର କହିବା ହୋ ଶୁଣ । ସେ ରାମନାମ ଯେ ନିର୍ଗୁଣ ।।
ଶ୍ରୀରାଧା କୃଷ୍ଣଙ୍କ ଯେକାନ୍ତ । କହିବା ଗୁପ୍ତ ହୋଇ ନିତ୍ୟ ।।

ପ୍ରଘଟ ନ କରିବୁ କାହିଁ । ଆମ୍ଭ ଚରଣ ଥାଅ ଛୁଇଁ ॥
ଶୁଣି ଅର୍ଜୁନ ସ୍ତମ୍ଭୀଭୂତ । ବୋଲଇ ଶୁଣ ଜଗନ୍ନାଥ ॥
ମୋ ଛାର ମନୁଷ୍ୟ ମାତର । ଛୁଇଁବି ବିଷ୍ଣୁଙ୍କ ପୟର ॥
ଯେକଥା ଉଚିତ ନୁହଇ । ସତ୍ୟ ମୁଂ ନ କହିବି କାହିଁ ॥
ଶୁଣି କହନ୍ତି ଭଗବାନ । ଅର୍ଜୁନ ଶୁଣ ବ୍ରହ୍ମଗ୍ୟାଂନ ॥
ଶ୍ରୀରାଧାକୃଷ୍ଣ ବେନିତତ୍ତ୍ୱ । ନିତ୍ୟରେ ଅଛନ୍ତି ଗୁପତ ॥
ଦେଖ ଯେ ଦେଉଳ ବିସ୍ତାର । ଅନନ୍ତ ଗର୍ଭ ଯେ ଉଦର ॥
ଦେଖ ଯେ ନିତ୍ୟ ନୀଳାଚଳୁଂ । ଯେ ରତ୍ନ ସିଂହାସନ ସ୍ଥଳୁଂ ॥
ଉପର ମୁଖଶାଳୀ ପାୟେ । ଅନନ୍ତ କଣ୍ଠ ଯେ ବୋଲାୟେ ॥
ସେଠାରୁ ମଧ୍ୟ ଫଣା କହି । ପରମ ନିତ୍ୟସ୍ଥଳ ଯେହି ॥
ତଳେ ସପତ ଆବରଣ । ଉପରେ ତାହା ନିତ୍ୟ ଶୁଣ ॥
ଅଂଅଳାଶାଳୀ ବୋଲି ପୁଣି । ଅନନ୍ତ ଚଉଷଠୀ ଫେଣୀ ॥
ଗୋଲୋକ ଚଉଷଠୀ ସେହି । ଆବର ଶୁଣ ମନଦେଇ ॥
ଦଧି ନଉତି ଯାହା କହି । ପ୍ରେମପଲଙ୍କ ସେ ବୋଲାଇ ॥
ତଥି ଉପରେ ବ୍ରହ୍ମଦେହା । ଶଯ୍ୟା ଅଟଇ ପ୍ରେମପ୍ରିୟା ॥
ତା'ପରେ କଳସ ଯେ ପୁଣି । ସେହି ସେ ରାଧା ଠାକୁରାଣୀ ॥
ତା'ପରେ ନୀଳଚକ୍ର ଥାପି । ସେ ପୁଣି କୃଷ୍ଣଚନ୍ଦ୍ରରୂପୀ ॥
ଗୁପତେ ଅଛନ୍ତି ସେ ରହି । କିଳୀଂ ଅକ୍ଷର ଶିଳୀଂ ଦୁଇ ॥
ହିଳୀଂ ଅନନ୍ତ ଫେଣାପରେ । ସେ ରାଧାକୃଷ୍ଣ ସେ ବିହରେ ॥
ଗୁପତେ ଲୀଳା ତାହାଙ୍କର । ସଙ୍ଗତେ କେହି ନାହିଁ ଆର ॥
ତହୁଂ ଛରୁଛି ମହାମନ୍ତ୍ର । ଶିକୁଳି ଛନ୍ଦରେ ସେ ଯନ୍ତ୍ର ॥
ଷୋଳନାମ ବତିଶ ଦଳେ । ଛଡ଼ ତ୍ରିତତ୍ତ୍ୱ ବେନି କ୍ଷରେ ॥
ଯେ ରାମନାମ ଯେ ବୋଲାନ୍ତି । ଯନ୍ତ୍ର ଯେ ରାଧାକୃଷ୍ଣ ସ୍ଥିତି ॥
ଅକ୍ଷର କିଳୀଂ ଶ୍ଳୀଂ ଯେ ଦୁଇ । କଳସ ଚକ୍ରରୂପ ସେହି ॥
ସେ ଚକ୍ର ଦିଶେ ଯେତେଦୂର । ଯମର ନାହିଁ ଅଧିକାର ॥
ପରମ ବଇକୁଣ୍ଠ ଯେହି । କ୍ଷେତ୍ରମାନଙ୍କ ରାଜା କହି ॥
ଯେହି ସେ ଗୋଲୋକ ଭୁବନ । ଅର୍ଜୁନ ଶୁଣ ମୋ ବଚନ ॥
ଏଥି ମଲେଣ ଦେବ ଦେହୀ । ଜନ୍ମଇ ଚତୁର୍ଭୁଜ ହୋଇ ॥
ଏ ଚକ୍ରେ କେତନ ଯେ ପୁଣ । ଅନନ୍ତ ଜିହ୍ୱାୟେ ପ୍ରମାଣ ॥
ସେ ଚକ୍ରେ ନେତ ବନ୍ଧାହୋଇ । ପତିତ ଜନଙ୍କର ପାଇଁ ॥
ବାନା ଉଡ଼ଇ ଫର ଫର । ପତିତ ଜନଙ୍କ ନିସ୍ତାର ॥

ଯେବେ ପ୍ରାସାଦ ଭାଙ୍ଗିଯାଇ । ପ୍ରତିମା ଅନ୍ୟ ଅନ୍ୟ ହୋଇ ॥
ତେବେ ମୋ ସତ୍ୟ ଧନଞ୍ଜୟେ । ୟେ ଥାନ ନଛାଡ଼ି ଉପାୟେ ॥
ଦେଖୟେ ନିତ୍ୟ ନୀଳାଚଳ । ସକଳ ତୀର୍ଥଙ୍କର ଆଳ ॥
ଗୋପ ମଥୁରା ବୃନ୍ଦାବନ । ଦ୍ୱାରକା ଆଦି ଯେତେ ସ୍ଥାନ ॥
ସକଳ ଯେହି ସ୍ଥାନେ ପାଇ । ଆବର କାଶୀ ମଧ ହୋଇ ॥
କୋଟିୟେ ତୀର୍ଥୟେ କ୍ଷେତ୍ରରେ । ମହିମା କହିଲେ ନସରେ ॥
ସ୍ୱର୍ଗୁଂ ସକଳ ଦେବଗଣ । ଖଟନ୍ତି ତିନି ଧୂପେ ପୁଣ ॥
ବ୍ରହ୍ମା ଶଂକର ପୁରନ୍ଦର । ଆବର ଶଶୀ ଦିବାକର ॥
ଖଟନ୍ତି ଧୂପ ଅବକାଶ । ସକଳ ଦେବତା ତ୍ରିଦଶ ॥
ପାଞ୍ଜି କହନ୍ତି ବୃହସ୍ପତି । କୁବେର ଭଣ୍ଡାର ରଖନ୍ତି ॥
ଯମ ନୈରତ ଦିଗପାଳ । ସକଳ ତପୀ ଯତି ମେଳ ॥
ବ୍ୟାସ ବଶିଷ୍ଠ ପରାଶର । ଭୃଗୁ ମାର୍କଣ୍ଡ ସିଦ୍ଧବର ॥
ଗାର୍ଗବ ଭାରଦ୍ୱାଜ ଶୁକ । ଅଗସ୍ତି ପୌଲସ୍ତି ଶୌନକ ॥
ଯେ ଥାନ୍ତି କୃଷ୍ଣ ପାରୁଶରେ । ମନ ଗମନ ନିରନ୍ତରେ ॥
ନିତ୍ୟେ ନାରଦ ବୀଣା ବା'ନ୍ତି । ଗନ୍ଧର୍ବେ ନୃତ୍ୟଗୀତ ଗା'ନ୍ତି ॥
ନାଚନ୍ତି ଅପଛରୀ ମାନେ । ଦୁନ୍ଦୁଭି ବାଦ୍ୟ ଅନୁପାମେ ॥
ଭେରୀ ମହୁରୀ ଆରତୁରୀ । କାହାଳ ଶଂଖ ସେ ଦୋସରି ॥
ସଜାଉବାଦ୍ୟ ଘଣ୍ଟାଟେକ । ଢାଳ ଝଞ୍ଜାଳ ସେ ତାନ୍ତେକ ॥
ଆବର ନାନା ବାଦ୍ୟ ଜାଣ । ଚର୍ମଜ ଆଦି ଯେତେ ପୁଣ ॥
ବ୍ରହ୍ମାଣ୍ଡେ ନର ଅଙ୍ଗ ଯେତେ । ଆସନ୍ତି ଦର୍ଶନ ନିମନ୍ତେ ॥
ହରି ଶବଦ ନିରନ୍ତରେ । ପଡ଼ଇ ଯେ ଚଉଦିଗରେ ॥
ସମୁଦ୍ର ପ୍ରାୟେ ଶୁଭେ ଘୋଷ । ନ ଜାଣି ରାତ୍ର ଯେ ଦିବସ ॥
ଏଥିରେ ନର ଦେବ ଦେହୀ । ଚତୁର ଭୁଜ ଜାଣି ମୋହି ॥
ଗନ୍ଧର୍ବ ପ୍ରାୟେ ସେ ଦିଶନ୍ତି । ବିଷ୍ଣୁ କୈବଲ୍ୟ ସେ ଭୁଞ୍ଜନ୍ତି ॥
ଯେଥି ନପଶେ ଯମ ତ୍ରାସ । ବିଷ୍ଣୁ ସେବକ ସର୍ବ ଦାସ ॥
ଯେ ସ୍ଥାନ ମୁକ୍ତି କ୍ଷେତ୍ର କହି । ପୃଥ୍ୱୀ ବୈକୁଣ୍ଠ ଯେ ବୋଲାଇ ॥
ଯେବେ ପୃଥ୍ୱୀରେ ଦୁଷ୍ଟ ହୋନ୍ତି । ଦେବତା ବ୍ରାହ୍ମଣେ କଷନ୍ତି ॥
ଧର୍ମ ନ ସ୍ଥାପି ଦୁଷ୍ଟଦେହୀ । ପୃଥ୍ୱୀ ନ ପାରେ ଭାର ସହି ॥
ତେବେ ସକଳ ଦେବମାନେ । ଗୁହାରି କରନ୍ତି ଯେ ସ୍ଥାନେ ॥
ବ୍ରହ୍ମାବଚନେ ହେତୁକରି । ଯେଥୁ ମୁଁ ଜାତ ଦେହ ଧରି ॥
ସେ ଦୁଷ୍ଟଗଣ ସଂହାରିଣ । ଆସଇ ନିତ୍ୟସ୍ଥାନେ ପୁଣ ॥

ଯେ ରୂପେ ଯୁଗ ଅନୁସାରେ । କହିଲି ତୋହୋର ଆଗରେ ॥
ଦେଖିଲୁ ନିତ୍ୟମଯେ ସ୍ଥାନ । ଗୁପତ ଆମ୍ଭର ଭୁବନ ॥
ଯେଥି ଗୁଣ୍ଡିଚା ଯାତ୍ରା ହୋଇ । ମିଥୁନ ମାସ ମଧ୍ୟେ କହି ॥
ଗୁମୁଟ ଅପସରେ ହରି । ବିଚିତ୍ର ଚିତ୍ର ବେଶ ଧରି ॥
ପହଣ୍ଡି ବିଜୟେ କରନ୍ତି । ତିନି ରଥରେ ତିନିମୂର୍ତ୍ତି ॥
ବିଜୟେ ଏ ବଡ଼ ଦାଣ୍ଡରେ । ଚତୁର୍ଦ୍ଧା ରୂପ ଧୀରେ ଧୀରେ ॥
ରଥ ଦିଶନ୍ତି ମେରୁ ଜାଣି । ଚନ୍ଦ୍ରମଣ୍ଡଳ ପରିମାଣି ॥
ପାଟପଡନୀ ମଣ୍ଡିଫେରା । ବର୍ଣ୍ଣେ ଝଲକ ଚନ୍ଦ୍ର ତାରା ॥
ଚାମର ପତାକା ବିଶେଷେ । ସିନ୍ଧୁ ଲହରୀ ପ୍ରାୟେ ଦିଶେ ॥
ରଥ ସେ ବାହାନ୍ତି ବାରଶ । ଗୁଣ୍ଡିଚାଘରେ ପରବେଶ ॥
ଚାଲି ନବର ନିତ୍ୟସ୍ଥାନ । ଅନନ୍ତ ପାଦେ ସିଂହାସନ ॥
ତହିଁରେ ନବ ଦିନ ରହି । ଭକ୍ତଙ୍କ ଭାବେ ଭାବଗ୍ରାହୀ ॥
ବାହୁଡ଼ି ନବ ଦିନେ ହରି । ତିନି ରଥରେ ବିଜେ କରି ॥
ବଡ଼ ଦେଉଳେ ପରବେଶ । ଲକ୍ଷ୍ମୀ ଖଟନ୍ତି ତାଙ୍କ ପାଶ ॥
ଯେମନ୍ତେ ଚତୁର୍ମାସ୍ୟା ହୋଇ । ଶୟନ ଯାତ୍ରା ସେ ଭିଆଇ ॥
ରହନ୍ତି ନିଜ ସୁଖ ଭରେ । ଅର୍ଜ୍ଜୁନ କହିଲୁ ତୋହୋରେ ॥
କୋଟିଯେ ତୀର୍ଥ ତୁନୋହେ ଶେଷ । ଯେତେ କହିଲୁ ଉପଦେଶ ॥
ଏ ସର୍ବ ଦର୍ଶନ ସାରିଣ । ଗଲା ସେ ଆପଣା ପୁରେଣ ॥
ହରି ଅର୍ଜ୍ଜୁନ ସେ ହରଷ । ଦ୍ୱାରକା ପୁରେ ପରବେଶ ॥
ଅର୍ଜ୍ଜୁନ ପାଇ ଦିବ୍ୟଜ୍ଞାନ । ଯେତେ ସେ କଲା ଦରଶନ ॥
ସେ କ୍ଷେତ୍ର ନୀଳାଚଳ ଧାମ । ନାମ ଯା ଶ୍ରୀପୁରୁଷୋତ୍ତମ ॥
ଯେ ବ୍ରହ୍ମ ପାଦେ ଧାଇଚିତ୍ତ । କହଇ ଦାସ ଯଶୋବନ୍ତ ॥
ଯେ ଦେଇ ପାର୍ଥେ ଉପଦେଶ । ସେ ପାଦେ ଯଶୋବନ୍ତ ଦାସ ॥
ଶରଣ ଗଲା ନିରନ୍ତରେ । ଯେ ମାୟା ସଂସାରସାଗରେ ॥
ରଖୁ ନ ରଖୁ ସେ ଜାଣନ୍ତି । ସେ ପାଦୁଂ ଅନ୍ୟେନାହିଁ ଗତି ॥

ଇତି ଶ୍ରୀପ୍ରେମଭକ୍ତି ବ୍ରହ୍ମ ଗୀତା କଥନେ ଶ୍ରୀକୃଷ୍ଣାର୍ଜ୍ଜୁନ
ସମ୍ବାଦେ ଶ୍ରୀ ପୁରୁଷୋତ୍ତମ ନିତ୍ୟଧାମ ଦର୍ଶନେ
ନାମ ପଞ୍ଚମ ଅଧ୍ୟାୟ (ସମାପ୍ତ)



ଶିଶୁ ଅନନ୍ତ

(ଅନନ୍ତ ଦାସ)

ହେତୁ ଉଦୟ ଭାଗବତ

# ହେତୁ ଉଦୟ ଭାଗବତ

## ପ୍ରଥମ ଅଧ୍ୟାୟ

ବନ୍ଦଇ ଶ୍ରୀଗୁରୁ ଚରଣ । ଗୁରୁ ଜୀବର ପରିତ୍ରାଣ ॥
ଗୁରୁଟି ଆପେ ବ୍ରହ୍ମରାଶି । କାଳ ସ୍ୱରୂପେ ତମ ଗ୍ରାସି ॥
ଶ୍ରୀଗୁରୁ ଆଦିଶକ୍ତି ହୋଇ । ଆଦି ଅନାଦି ନାମ ବହି ॥
ଅନାଦିଠାରୁ ଆଦି ହୋଇ । ଏଣୁ ତା ଆଦିଅନ୍ତ ନାହିଁ ॥
ଅନାଦି ପରମ ଈଶ୍ୱର । ଆଦି ଶକ୍ତିଟି କଳେବର ॥
ଦେଖ ଅନାଦି ଯୋଗଲୀଳା । ପରମ କାଳ ରୂପେ ଖେଳା ॥
ଅଘଟ ଘଟଣ ମୁରାରି । ଆଦି ଅନାଦି ରୂପେ ପୂରି ॥
ଏଣୁ ଅନାଦି ଈଶ୍ୱର ହିଁ । ଆଦି ଶକ୍ତିଟି ମହାମାୟୀ ॥
ଯେ ମହାମାୟୀ ଗୁରୁଦେବ । ସୁଜନେ ହେତୁ କରି ଭାବ ॥
ମହାମାୟାଟି ରାଧା ଅଙ୍ଗ । କୋଟି ଯୁଗରେ ନୁହେଁ ଭଙ୍ଗ ॥
ଶ୍ରୀରାଧା କୃଷ୍ଣ ବେନିଜନ । ଜୀବ ପରମରୂପେ ଜାଣ ॥
ଜୀବଟି ରାଧାଅଙ୍ଗ ହୋଇ । ପରମ କୃଷ୍ଣ ଅଙ୍ଗ ସେହି ॥
ପରମ ରୂପ ଗୁରୁଦେବ । ନାହିଁ ଯାହାର ପରାଭବ ॥
ପରମ ପୁରୁଷ ଈଶ୍ୱର । ଖେଳୁଛି ସଂସାର ଭାଗର ॥
ସଂସାର ସାଗର ମଧ୍ୟର । ଗୁରୁ ସ୍ୱରୂପୀ କଣ୍ଡିଆର ॥
ନାମ ନାବରେ ଛନ୍ତି ବସି । କେ ଚିହ୍ନି ପାରଇ ଭରସି ॥
ସେ ନାବେ ବସି ହୁଅ ପାର । ଶବଦ କାତ କେରୁଆଳ ॥
ଏମନ୍ତ ରୂପେ ଗୁରୁଦେବ । ପାରି କରନ୍ତି ପଶୁ ଜୀବ ॥
ଗୁରୁଟି ଜୀବର ଜୀବନ । ଗୁରୁର ବିନୁ ନାହିଁ ଆନ ॥
ସୁଜନେ ଗୁରୁ ଆଶ୍ରେ କର । ଭବ କୂପରୁ ହୁଅ ପାର ॥
ଏମନ୍ତ ଗୁରୁଙ୍କ ମହିମା । ଜାଣି ନ ଜାଣେ ହରବ୍ରହ୍ମା ॥
ମୋ ଛାର ମନୁଷ୍ୟଶରୀର । ମୁଁ କାହୁଁ କରିବି ଗୋଚର ॥

ମହିମା ସାଗର ଅଟଇ । ସାଗର ସମୁଦ୍ରକୁ କହି ॥
ଚୌରାଶୀ କାଠି ଯା ଗଭୀର । ଏଥି ଖୋଜଇ ନାମ ସାର ॥
ଯେମନ୍ତେ ଯେକ ଦିନକର । ନିଶାରେ ସାଗର ମଧର ॥
ନାମେ ବୁଡ଼ିଲି ତହିଁ ମୁହିଁ । ଦେଖିଲି ଥଳକୂଳ ନାହିଁ ॥
ଏମନ୍ତେ ମିଳିଲଇଁ ମୁହିଁ । ଦେଖିଲି ଏକ ଦ୍ୱୀପେ ତହିଁ ॥
ଦିବ୍ୟ ଶରୀର ଧରିମଳ । ଦିଶଇ ଚନ୍ଦ୍ରନ୍ତୁ ଉଜ୍ଜ୍ୱଳ ॥
ସେ ସ୍ଥଳେ ମୁହିଁ ହେଲି ଯାଇଁ । ଦେଖିଲି ଶ୍ରୀଗୁରୁଙ୍କୁ ତହିଁ ॥
ସାକ୍ଷାଙ୍କେ ଦଣ୍ଡବତ ହୋଇ । ଅନେକ କାର୍ପଣ୍ୟେ ଜଣାଇଁ ॥
ଶୁଣିବା ହେବେ ଗୁରୁଦେବ । ମୁଁ ହୀନ-ଅଟେ ପଶୁଜୀବ ॥
ପଶୁ ଜୀବନ ପରିତ୍ରାଣ । ଯେଣୁ ଶ୍ରୀଗୁରୁ ଦରଶନ ॥
ଏମନ୍ତ ବୋଲିଣ ବୋଇଲି । ଶ୍ରୀଗୁରୁ ଚରଣେ ପଡ଼ିଲି ॥
ଅନେକ ଶୋକଭର ହୋଇ । ନୟନୁଁ ଲୋତକ ଗଳଇ ॥
ଶୋକସନ୍ତାପ ଜଳେ ବୁଡ଼ି । ଶ୍ରୀଗୁରୁ ପାଦପଦ୍ମେ ପଡ଼ି ॥
ମୋହର ଦେଖି ଅଚେତନ । ତୋଳି ଧରିଲେ ଶ୍ରୀକରେଣ ॥
ସଚେତ କରି ବସାଇଲେ । ଶ୍ରୀମୁଖେ ଆଜ୍ଞା ମୋତେ ଦେଲେ ॥
ବୋଇଲେ ବାବୁ ଶୁଣ ତୁହି । ଏସ୍ଥାନେ ଅଇଲୁ କିମ୍ପାଇଁ ॥
ସୁର ଅସୁର ଗମ୍ୟ ନାହିଁ । ମନୁଷ୍ୟ ଦେହେ ଭେଦ କାହିଁ ॥
ଯେବେ ଅଇଲୁ ବାବୁ ତୁହି । ସୁଜ୍ଞାନ ଚିତ୍ତେ ମନ ଦେଇ ॥
ଯେମନ୍ତେ ବୋଲିଣ ବୋଇଲେ । ଶ୍ରୀକରେ ମୋ କର ଧଇଲେ ॥
ବୋଇଲେ ଆସ ବାବୁ ତୁହି । ଏ ସ୍ଥଳ ଆୟତ୍ତ ନୁହଇ ॥
ଦେଖାଇ ଆପଣ ବୋଲନ୍ତି । ବ୍ରହ୍ମା ଯା ବର୍ଣ୍ଣି ନ ପାରନ୍ତି ॥
ଦ୍ୱୀପର ନାମ ଧବଳାଙ୍ଗ । କୋଟିଯେ ଯୁଗେ ନୁହେଁ ଭଙ୍ଗ ॥
ସାଗର ଘୋଟି ଅଛି ରହି । ସପତ ଦ୍ୱୀପୁଁ ଶ୍ରେଷ୍ଠ ହୋଇ ॥
କିସ କହିବା ତହିଁ ଗୁଣ । ଇନ୍ଦ୍ର ସମ୍ପତ୍ତି ତୁଚ୍ଛ ମଣ ॥
ବ୍ରହ୍ମା ସମ୍ପତ୍ତି ନୁହେଁ ସରି । କୋଟିଏ ଶଙ୍କର ଗଉରୀ ॥
ଧବଳ ମଣ୍ଡପ ତହିଁରେ । ହୀରା ଯେ ନୀଳା ମୋତି ସାରେ ॥
ଅଟେ ଯେ ରତ୍ନ ବଇଦୁର୍ଯ୍ୟ । ଖଞ୍ଜିକି ଅଛି ପଦ୍ମରାଜ ॥
ହେମ ମୁକୁତା ସ୍ତମ୍ଭ ହୋଇ । ପ୍ରବାଳ ଖଞ୍ଜି ଅଛି ନେଇ ॥
କିଏ ସୁବର୍ଣ୍ଣ କେରା କେରା । ଲାଗିଛି ଦର୍ପଣର ଝରା ॥

ମଣିମଣ୍ଡପ ଶୋଭାପାଏ । ରସାଣ ସୁବର୍ଣ୍ଣ ପରାଏ ॥
ନାମ ଯେ ରତ୍ନମଣିମାନେ । ଝଟକୁ ଅଛନ୍ତି ସୁବର୍ଣ୍ଣେ ॥
ଶ୍ୱେତ ଯେ ମଣି ଶୀତ ମଣି । ରଙ୍ଗ ହରିତ ପୀତ ପୁଣି ॥
ଏମନ୍ତ ମଣିମାନେ ତହିଁ । ଝଲକ ଦିଶି ନ ଦିଶଇ ॥
କିଯେ ବ୍ରହ୍ମାଣ୍ଡମାନେ ତହିଁ । ବିଧାତା ଖଞ୍ଜିଅଛି ନେଇ ॥
ଦେଖିଲି ଅତ୍ୟନ୍ତ ଶୋଭନ । ସେ ପୁର ହୋଇଛି ନିର୍ମାଣ ॥
କାମିନୀଗଣେ ଶୋଭା ପାଇ । ପୁରୁଷ ଲେଶ ତହିଁ ନାହିଁ ॥
ଚନ୍ଦନ ପୁଷ୍ପ ଆସୋଦର । ଭ୍ରମରମାନେ କୋଳାହଳ ॥
ସମସ୍ତେ ବାରଙ୍ଗନା ରୂପ । ନବୀନ ସୁନ୍ଦର ସ୍ୱରୂପ ॥
ଏମନ୍ତେ ଏକୁଁ ଏକ ଜିଣି । ନବୀନ ସୁନ୍ଦର ତରୁଣୀ ॥
ଅପୂର୍ବ ବେଶ ଶୋଭା ପାଇ । ନୟନ ଗୋଚର ସେ ନୋହି ॥
ବିଚିତ୍ର ବେଶ ମନୋହାରୀ । ଦେଖି କେ ଚିତ୍ତ ଧରି ପାରି ॥
ଏମନ୍ତ ଦେଖି ମୋହମାନ । ନାହିଁ ମୋହର ଦେହେ ଜ୍ଞାନ ॥
ମୋହର ଦେଖି ଅଚେତନ । ଶ୍ରୀଗୁରୁ ହୋଇଲେ ପ୍ରସନ୍ନ ॥
ପ୍ରସନ୍ନ ହୋଇ ଆଜ୍ଞା ଦେଲେ । ଅଜ୍ଞାନ ତିମିର ନାଶିଲେ ॥
ଦେଖାଇ ଚର୍ମନୟନର । ମୋ ଶିରେ ଲଗାଇଣ କର ॥
ଶ୍ରୀଗୁରୁ କହନ୍ତି ମଧୁର । ସୁମନେ ଶୁଣ ମୋ ଉତ୍ତର ॥
ବେଳହୁଁ ଗୋବିନ୍ଦ ସୁମର । ତୋ ପଛେ ଗୋଡ଼ାଇଛି କାଳ ॥
ସେ କାଳ ଘଉଡ଼ିଣ ତୁହି । ସତ ଶାନ୍ତିରେ ରଖ ଦେହୀ ॥
ଭ୍ରୂଲତା ମଧ୍ୟେ ହେତୁ ରଖ । ସକଳ କଳୁଷ ଉପେଖ ॥
ଅମନ ସଙ୍ଗେ ମନ ଦେଇ । ନିଗମ ଭେଦ କର ତହିଁ ॥
ଶ୍ରୀଗୁରୁ ପାଦେ ଚିତ୍ତ ଥିଲେ । ଏ ସ୍ଥଳ ଲଭଇ ସେ ଭଲେ ॥
ଏମନ୍ତ କହି ଗଲେ କାହିଁ । ମୋ ପାଖେ ଆଉ କେହି ନାହିଁ ॥
ଚେତା ଯେ ହୋଇଲା ମୋହର । ଚିନ୍ତିଲି ଶ୍ରୀଗୁରୁ ପୟର ॥
ସେ ପାଦପଦ୍ମେ କରି ଆଶ । ଯେ ନର ପିଅଇ ପୀୟୂଷ ॥
ତାହାର ଦୁଷ୍କୃତମାନ । ତକ୍ଷଣେ ହୁଅଇ ଦହନ ॥
ଯେ ଜନ ସର୍ବସାରଗ୍ରାହୀ । ତା' ଅଙ୍ଗେ ପାପ ଥିବ କାହିଁ ॥
ଏମନ୍ତ ଜନେ ମୁଁ ଶରଣ । ମାଗି ରହିବି ଅନୁକ୍ଷଣ ॥
ଏ ବିନୁ ଆନ ଗତି ନୋହୁ । ହେ ସାଧୁ ସନ୍ଥ କୃପା ହେଉ ॥

 

ହେତୁ ଉଦୟେ ଭାଗବତ । ନବ ଅକ୍ଷରେ ପରାକୃତ ॥
ଶ୍ରୀଗୁରୁ ଚରଣ ଅମୃତ । ପିଇଣ ନରେ ହୁଅ ରତ ॥
ଏହି ରତରେ ଦିନକାଳ । ହରି ରହିବ ପାଦତଳ ॥
ଅଭୟ ନାମ ପାଦପଦ୍ମ । ଚିନ୍ତିଲେ ନ ଲାଗେ ପ୍ରମାଦ ॥
ଏ ପାଦ ପଦ୍ମେ କରି ଆଶ । ପାମର ଅନନ୍ତ ପ୍ରକାଶ ॥

ଇତି ଶ୍ରୀମଦ୍‌ଭାଗବତେ ହେତୁ ଉଦୟେ ଶ୍ରୀଗୁରୁପ୍ରସନ୍ନେ
ନାମ ପ୍ରଥମୋଽଧାୟଃ

## ଦ୍ୱିତୀୟ ଅଧ୍ୟାୟ

ହେତୁ କହଇ ମନ ଶୁଣ । ଶିଷ୍ୟ ଯେ ଶ୍ରୀଗୁରୁଚରଣ ॥
ଅନେକ ବିନୋଇ ବଚନ । କାକୁସ୍ତ କରେ ବିଦ୍ୟମାନ ॥
ବୋଲଇ ବିନୟ ବଚନ । ଶ୍ରୀଗୁରୁ କର ପରିତ୍ରାଣ ।।
ମୁଁ ମୂଢ଼ ନ ଜାଣଇ କିଛି । କେବଳ ଭରସା ମୋ ଅଛି ॥
ରଖ ନ ରଖ ତୁମ୍ଭେ ଜାଣ । ତୁମ୍ଭେ ଜୀବର ପରିତ୍ରାଣ ॥
ପଶୁ ଜନ୍ମରୁ କର ପାର । ପଡ଼ିଛି ଯେ ଅନ୍ଧକୂପର ॥
ଏ କୂପୁଁ ତରିବି କେମନ୍ତେ । ଭୋ ଗୁରୁଦେବ କହ ମୋତେ ॥
ଏ ଭବ ସଂସାରସାଗର । ମୋହେ ଜଡ଼ିତ କଳେବର ॥
କାମ ଯେ କ୍ରୋଧ ଅହଂକାର । ଶରୀରେ ମୋର ଜରଜର ॥
ସତ୍ତ୍ୱ ଯେ ରଜ ତମ ଗୁଣ । ଭିଡ଼ି ବାନ୍ଧିଛି ତିନି ଗୁଣ ॥
ଏଥୁଁ ତରିବି କି ଉପାୟେ । ଭୋ ଗୁରୁଦେବ ପୁଚ୍ଛୁଁ ପାୟେ ॥
ଦୁସ୍ତର ଏ ଭବସାଗରୁ । ତରିବି ତୁମ୍ଭ ପ୍ରସାଦରୁ ॥
ଏ ବିନୁ ଅନ୍ୟ ଗତି ନାହିଁ । ଦୁର୍ଗମ ପଥ ଭବ ନଈ ॥
ଅନେକ ବିଳାପି କହଇ । ହେତୁ ଯେ ମନ ଆଗେ କହି ॥
ଶୁଣ ହୋ ମନ ମୋ ଉତ୍ତର । ଗୁରୁଟି ଆପେ ନିରାକାର ॥
ଗୁରୁ ପରମବ୍ରହ୍ମ ହୋଇ । ଗୁରୁଟି ବୈଷ୍ଣବ ଗୋସାଇଁ ॥
ଗୁରୁ ସାକ୍ଷାତେ ନାରାୟଣ । ବେଦରେ ବ୍ରହ୍ମରୂପେ ପୁଣ ॥
ବେଦରେ ବ୍ରହ୍ମ ରୂପେ ଥାଇ । ସକଳ ସର୍ଜନା କରଇ ॥
ଯେମନ୍ତେ ହୋଇ ଗୁରୁଦେବ । ଜୀବ ଅଜୀବେ ଏକ ଭାବ ॥

 

ଗୁରୁ ରୂପେଣ ପଶୁ ଜାଣ । ନିସ୍ତାର କରନ୍ତି ଆପଣ ॥
ଏମନ୍ତେ ଗୁରୁ ପାଦେ ପଡ଼ି । ଶିଷ୍ୟ କହଇ କର ଯୋଡ଼ି ॥
ଭୋ ଗୁରୁ ହେବା ସାବଧାନ । ମୁହିଁ ତୁମ୍ଭର ଭୃତ୍ୟଜନ ॥
କହିବା ହେବେ ଆଦି ଅନ୍ତ । ଅନାଦି କି ରୂପେ ସମ୍ଭୂତ ॥
ଅନାଦିଠାରୁ ଆଦି ହୋଇ । କେମନ୍ତେ ହୋଇଲେ ଗୋସାଇଁ ॥
ବିରାଟ ଶେଷ ଦେବ କେହୁ । ଜନ୍ମ ହୋଇଲେ ଅବା କାହୁଁ ॥
ତା'ପରେ ଅର୍ଦ୍ଧମାତ୍ରା ରହି । ଏ କାହୁଁ ଜନ୍ମିଲେ ଗୋସାଇଁ ॥
କେମନ୍ତେ ଜୀବ ଉପୁଜିଲା । ବ୍ରହ୍ମାଣ୍ଡେ ସ୍ୱର୍ଜନା ହୋଇଲା ॥
ମନ୍ତ୍ର ଯେ ଯନ୍ତ୍ର ଆଦି ଯେତେ । ଛଡ଼ ଯେ ଚକ୍ର ଯେ ନିୟତେ ॥
ଚାରି ଯେ ବୀଜ ଚାରିକ୍ଷର । କେମନ୍ତେ ବେଦର ସଞ୍ଚାର ॥
ସପତ ଦୀପ ମହୀ ପୁଣ । ବେଢ଼ି ସପତ ସମୁଦ୍ରେଣ ॥
କିରୂପେ ହୋଇଲେ ଜଗତ । କହ ହେ ଗୁରୁ ଦଇବତ ॥
କହି ମୋ ଫେଡ଼ିବା ସଂଶୟେ । ଏଣୁ ନମଇ ତୁମ୍ଭ ପାୟେ ॥
ଶୁଣିଲେ ଶ୍ରୀମୁଖୁଁ ଉତ୍ତର । ଜୀବ ହୋଇବ ଭବୁଁ ପାର ॥
ସୁଗତି ଦିଶିବ ମୋହର । ସେବିବି ତୁମ୍ଭର ପୟର ॥
ଏମନ୍ତେ କହି ପଦେ ପଡ଼ି । ଶିରରେ ବେନି କର ଯୋଡ଼ି ॥
ଦେଖି ତାହାର ଶିଷ୍ୟପଣ । ଶ୍ରୀଗୁରୁ ହୋଇଲେ ପ୍ରସନ୍ନ ॥
ପ୍ରସନ୍ନ ହୋଇ ଆଜ୍ଞା ଦେଲେ । ଶୁଣ ହେ ବତ୍ସ ତୁହି ଭଲେ ॥
ଯାହା ପୁଚ୍ଛିଲୁ ମୋତେ ତୁହି । ସେ କଥା କହିବା ବୁଝାଇ ॥
ତୋ ଦେହେ ହସ୍ତ ମାରିଦେବା । ମନ୍ତ୍ରଯନ୍ତ୍ରାଦି ଯେତେ ଅବା ॥
ଯେ ଯହୁଁ ଏମନ୍ତ ହୋଇଲେ । ଏ ଭେଦ କହିଦେବା ଭଲେ ॥
ତୁ ମୋର ବୋଲ ବେଗେ ଶୁଣ । ଶ୍ରୀ ପୂଜାବିଧି ବେଗେ ଆଣ ॥
ମନ୍ତ୍ରଯନ୍ତ୍ରଙ୍କୁ ଭେଦାଇବା । ଦୃଷ୍ଟିଗୋଚରେ ଦେଖାଇବା ॥
ଶ୍ରୀଗୁରୁ ବାକ୍ୟ ବେଗେ ଶୁଣି । ଯେ ପୂଜାବିଧି ଲୋଡ଼ି ଆଣି ॥
ଶୀତଳ ନିମନ୍ତ୍ରେଣ ପୁଣ । ପଣା ପଇଡ଼ ବିଦ୍ୟମାନ ॥
କଦଳୀ ଅମୃତ ଯେ ପାଣି । ବହୁ ବିଧାନେ ତାହା ଆଣି ॥
ମଧୁ ଯେ ଘୃତ ଦୁଧ ଦହି । ଯେ ପଞ୍ଚାମୃତ ବିଧି ହୋଇ ॥
ନବାତ ଚେଣି ନାନା ଦ୍ରବ୍ୟ । ଶୀତଳ ସଞ୍ଜା ଏକ ଠାବ ॥
ଶ୍ରୀପୂଜା ନବୀନ ବସନ । ଯେଣେ ଶ୍ରୀଗୁରୁ ତୋଷମନ ॥

ସେ-ସର୍ବ ପୂଜାବିଧି ଆଣି । ଗୁରୁଚରଣେ ପରିମାଣି ॥
ଆଜ୍ଞା ମାଗଇ ଗୁରୁଦେବ । ଯେ ପୂଜାବିଧି ଲୋଡ଼ା ହେବ ॥
ସକଳ କରିବା ଗୋଚର । ଯେ ପୂଜା ହୋଇବ ତୁମ୍ଭର ॥
ପୂଜା ସଂକଳ୍ପ ଯେତେ ଦ୍ରବ୍ୟ । ଦେଖି ସାନନ୍ଦ ଗୁରୁଦେବ ॥
ଘୃତ ଦୀପେକ ଲଗାଇଲେ । ନବୀନ କଳସ ସ୍ଥାପିଲେ ॥
କଳସ ତଳେ ଯେ ତଣ୍ଡୁଳ । ନବୀନ ଥୋଇଲେ ଶ୍ରୀଫଳ ॥
ଚୂତ ଯେ ପତ୍ର ଡାଳେ ଆଣି । କଳସେ ଦେଲେ ଗୁରୁମଣି ॥
ପଇଡ଼ ତହିଁପରେ ଥୋଇ । ନବୀନ ବସନ ବେଢ଼ାଇ ॥
ମାର୍ଜନ କରି ଭୁଇଁଖଣ୍ଡ । ମୃତ୍ତିକା କରି ପୂର୍ଣ୍ଣପିଣ୍ଡ ॥
ଧୂଳି ପାଡିଣ ତହିଁ ଦେଲେ । ବିଚିତ୍ର କରି ନିବାଡିଲେ ॥
ଅନାଦି ଈଶ୍ୱର ସ୍ଥାପିଣ । ଆଦିମାତ୍ରାକୁ ବେଢ଼ାଇଣ ॥
ଅର୍ଦ୍ଧମାତ୍ରାକୁ ତହିଁ ତଳେ । ତା' ତଳେ ଓଁ ମତି ଅକ୍ଷରେ ॥
ଦ୍ୱିଜିହ୍ୱା କରିଣ ନିର୍ବାଣି । ନାମ ଓଁ ମିତି ତାର ଭଣି ॥
ତା' ତଳେ ସତ୍ୱ ରଜ ତମ । ହୋଇଣ ଅଛି ଅନୁପମ ॥
ମନ୍ତ୍ରେ ଶ୍ରୀମନ୍ତକୁ ଥାପିଣ । ଚନ୍ଦନ ଗନ୍ଧ ପୁଷ୍ପମାନ ॥
ଧୂପ ଯେ ଦୀପ ନଇବେଦ୍ୟ । ଦେଇଣ ଆପେ ଗୁରୁଦେବ ॥
ଶୀତଳ ପଞ୍ଚାମୃତ ଦେଲେ । ଭୋଗାଙ୍ଗେ ଆପେ ନିବେଦିଲେ ॥
ମଣୋହି ଦେଇ ତତପର । ବୋଇଲନ୍ତି ବଚନ ମଧୁର ॥
ଶୁଣ ହେ ବତ୍ସ ମନ ଦେଇ । କହିବା ହେତୁ କର ତୁହି ॥
ଆଦି ମାତ୍ରାଟି ଅଟେ ଯେହି । ମଣ୍ଡଳା ରୂପେ ବେଢ଼ି ରହି ॥
ତାହାର ମଧ୍ୟେ ଯେ ଅଛଇ । ଅନାଦି ଈଶ୍ୱର ବୋଲାଇ ॥
ଈଶ୍ୱର ନିରଞ୍ଜନ ହୋଇ । ଆଦିଶକ୍ତିଟି ମହାମାୟୀ ॥
ଶ୍ରୀଗୁରୁ ଚରଣ ଧରିଣ । ବତ୍ସ ବୋଲଇ ପୁଣ ପୁଣ ॥
ଯେବଣ ଦିନେ କିଛି ନାହିଁ । ଅନାଦି ରହିଥିଲେ କାହିଁ ॥
କାହୁଁ ହୋଇଲେ ଉତ୍ପନ୍ନ । କେ ମାତା ପିତା କହ ପୁଣ ॥
ଅନାଦିଠାରୁ ଆଦି ହୋଇ । ଏକଥା କହ ପ୍ରଭୁ ଫେଡ଼ି ॥
ଶୁଣି ସାନନ୍ଦ ଗୁରୁ ହୋଇ । ବୋଇଲେ ବତ୍ସ ଶୁଣ ତୁହି ॥
ଗୁରୁ ଯେ ଶିଷ୍ୟକୁ କହନ୍ତି । ଅନ୍ୟ ଯେ ଜନ ନ ପାଉନ୍ତି ॥
ଗୁରୁ ଶିଷ୍ୟଙ୍କ ଭାବ ଏହି । ଅନ୍ୟ ଯେ ଏହା ନ ଶୁଣଇ ॥

| | | | |
|---|---|---|---|
| କର୍ଣ୍ଣରେ କହି ଯେଉଁ ମନ୍ତ୍ର | । | ଏ ତ ତହିଁକି ବସ୍ତୁ ଅନ୍ତ | ॥ |
| ଯଦି ଶୁଣଇ ମୂଢ଼ ପଣେ | । | ବଧିର ଜନ୍ମ ଅକାରଣେ | ॥ |
| ଯଦି ଶୁଣଇ ମମତାରେ | । | ଅସୁର ଜନ୍ମ ଲଭେ ନରେ | ॥ |
| ଯଦି ଶୁଣଇ ଅହଂ ଗୁଣେ | । | ନର୍କ ଭୋଜନ ଅନୁଦିନେ | ॥ |
| ଯେ ଶୁଣି କରେ ଉପହାସ | । | ନର୍କରେ ଜନ୍ମ ତା ଅବଶ୍ୟ | ॥ |
| ଆଉ ନ ପାରେ ସେହୁ ତରି | । | ନର୍କରେ ନିବାସ ତାହାରି | ॥ |
| ଯାବତ ଚନ୍ଦ୍ର ସୂର୍ଯ୍ୟ ଥାଇ | । | ସେ ନର ତରି ନପାରଇ | ॥ |
| ଏବେ ହୋ ଶୁଣ ବତ୍ସ ତୁହି | । | ଆବର ଯେତେକ ଅଛଇ | ॥ |
| ସେ କଥା କହିବା ବୁଝାଇ | । | ହେତୁ ମତିରେ ଶୁଣ ତୁହି | ॥ |
| ଯେବଣ ଜନ ଏ ଦୀକ୍ଷାକୁ | । | ବିଖ୍ୟାତି କହଇ ଆନକୁ | ॥ |
| ଶ୍ୱାନ ଯୋନିରେ ଜନ୍ମହୋଇ | । | ସକଳ ଉଚ୍ଛିଷ୍ଟ ଭକ୍ଷଇ | ॥ |
| ଏମନ୍ତେ ସାତ ଜନ୍ମ ଗଲେ | । | ପୁଣି ଜନ୍ମଇ ଭାଟ ଘରେ | ॥ |
| ଭାଟ ବନିତା ପଣେ ପୁଣ | । | ଦିନ ବଞ୍ଚଇ ଅନୁଦିନ | ॥ |
| ଏହି ମତରେ ଦିନ ଯାଇ | । | ଜୀବ ଉଦ୍ଧରି ନ ପାରଇ | ॥ |
| ଯେଣୁ ଗୁପତ ଗୁରୁବାଣୀ | । | ବିଖ୍ୟାତ କଲା ମୂଢ଼ ପ୍ରାଣୀ | ॥ |
| ତେଣୁ ପାଇଲା ସେହୁ ଫଳ | । | ଜନ୍ମ ଲଭିଲା ଭାଟକୁଳ | ॥ |
| ଏବେ ତୁ ଶୁଣ ମୋର ବାଣୀ | । | ଯେବଣ ଜନ ଏହା ଘେନି | ॥ |
| ହୃଦରେ ଘେନିଣ ନ ପାରି | । | ବିଖ୍ୟାତ କରେ ନରନାରୀ | ॥ |
| ଦୀକ୍ଷା କହଇ ଗୁରୁ ହୋଇ | । | ମୁଁ ଗର୍ବ ବୋଲି ଗର୍ବ ବହି | ॥ |
| ଯେତେ କଷ୍ଟରେ ଥିଲା ପାଇ | । | ଆଉ ତାହାର ମନେ କାହିଁ | ॥ |
| ସାଧକ ଅଙ୍ଗ ସିଦ୍ଧ ନୋହି | । | ବିଅର୍ଥେ ହରାଇଲ ଦେହୀ | ॥ |
| ଗୁରୁଙ୍କ ଧନ ଖ୍ୟାତ କଲା | । | ଗୁରୁଙ୍କୁ ହତମାନ୍ୟ ହେଲା | ॥ |
| ଏଣୁ ଗୁରୁଙ୍କ ମନେ ଦୁଃଖ | । | କାହୁଁ ପାଇବ ଆଉ ସୁଖ | ॥ |
| ତାହାର ଯେତେକ ସନ୍ତାନ | । | ଚଳନ୍ତି ଯମର ଭୁବନ | ॥ |
| ପୁଣି ହୁଅନ୍ତି ଆପେ ନାଶ | । | ରୌରବ ନର୍କେ ହୁଏ ବାସ | ॥ |
| ନରକ କରଇ ଆହାର | । | କୀଟ କାଟନ୍ତି ତା ଶରୀର | ॥ |
| ନିର୍ମୂଳ ହୋଇ ତାର ବଂଶ | । | ଭୁବନେ ନ ରହନ୍ତି ଅଂଶ | ॥ |
| ଅନାଦି ଈଶ୍ୱର ଆଜ୍ଞାରୁ | । | ଶ୍ରୀଗୁରୁ କୃପା ନୋହିଲାରୁ | ॥ |
| ତେଣୁ ରୌରବେ ଊର୍ଦ୍ଧ୍ୱମୁଖ | । | ନରକ ଭକ୍ଷଣେ ତା ଶୋକ | ॥ |

ମମତା ଗୁଣେ ଯେ ତାହାର । ବିଧାତାଯୋଗେ ବଳିଆର ॥
ସେ ଯୋଗେ ପଡ଼ି ମୋହ ହୋଇ । ଶ୍ରୀଗୁରୁ ବୋଲି ନ ବୋଲଇ ॥
ଏମନ୍ତେ ନିବାସ ତାହାଁର । କାହୁଁ ତରିବ ତମ ଘୋର ॥
ତୁ ଏବେ ଘେନ ମୋ ବଚନ । ଏ ମୋହ ଦୁର୍ଗମ ଗହନ ॥
ଯେବେ ତୁ ନ ପାରିବୁ ଘେନି । ଜଡ଼ା ମଣ୍ଡନ ଭାବେ ପୁଣି ॥
କାହାରି ସଙ୍ଗେ ସମ୍ଭାଷଣ । ନୋହିବୁ ଆଉ କଦାଶ୍ଚନ ॥
ଏ କଥା ଯେବେ କରୁ ତୁହି । ମୋରେ ଚରଣ ଥାଅ ଛୁଇଁ ॥
ସତ୍ୟ କରିଣ ବାବୁ କହ । ତେବେ ତୋ ଫେଡ଼ିବା ସଂଶୟ ॥
ଶ୍ରୀଗୁରୁ ବାକ୍ୟ କର୍ଣ୍ଣେ ଶୁଣି । ସେ ବତ୍ସ କହେ ମନେ ଗୁଣି ॥
ଶୁଣିମା ହେବେ ଗୁରୁବ୍ରହ୍ମ । ମୁଁ ହୀନ ମୂଢ଼ ପାପୀ ଜନ ॥
ତରିବା ପାଇଁ ଶ୍ରୀଚରଣ । ଆଶ୍ରେ କରିଛି ଗୁରୁବ୍ରହ୍ମ ॥
ଅନ୍ୟାନ୍ୟ କଥାମାନ ଯେତେ । ମନେ ମୋ ନୋହୁ କଦାଶ୍ଚିତେ ॥
ଶ୍ରୀମୁଖ ଆଜ୍ଞା ମୋତେ ଦେବା । ଜନ୍ମ ଜନ୍ମାନ୍ତେ ତୁମ୍ଭ ସେବା ॥
ଏଥୁଁ ମୋ ଅନ୍ୟ ଗତି ନୋହୁଁ । ଭୋ ଗୁରୁ ଦେବା ଆଜ୍ଞା ହେଉ ॥
ସୁଗତି ଗତି ନାଥ ହୋଇ । ଏମନ୍ତ କହ କିସ ପାଇଁ ॥
ମୁଁ ଭୃତ୍ୟ ଭୃତ୍ୟ ଯେ ତୁମ୍ଭର । ମୋର ଅପ୍ରାଧ କ୍ଷମାକର ॥
ମୋ ସତ୍ୟ ସତ୍ୟ ତୁମ୍ଭ ପାଦ । ଛେଦିବି ସକଳ ପ୍ରମାଦ ॥
ଏବେ ପୁଚ୍ଛଇ ମୁହିଁ ଯାହା । ଭୋ ଗୁରୁଦେବ କହି ତାହା ॥
ଅନାଦି ଆଦି ସେ କେମନ୍ତ । ଅନାଦି କାହିଁରୁ ସମ୍ଭୂତ ॥
ଏହି ସନ୍ଦେଶ ଆଜ୍ଞା ହେଉ । ଶୁଣି ଦୁର୍ଗତି କ୍ଷୟେ ଯାଉ ॥
ହସି କହନ୍ତି ଗୁରୁଦେବ । ଶୁଣ ହେ ବତ୍ସ ଏଥି ଭାବ ॥
ଅନାଦି ପରେ ରେହ ରହି । ତା'ପରେ ଆଉ କେହି ନାହିଁ ॥
ସେହି ରୂପୀଟି ଜନାର୍ଦ୍ଦନ । ସକଳ ଯହିଁ ହୋଇଯେ ଲୀନ ॥
ସେହି ରୂପରେ 'ଥାଇ ରହି । ତା ଅନ୍ତ କେହି ନ ଜାଣଇ ॥
ତାହାଁ ତୁ ନିର୍ମଳ ଗଗନ । ଗଗନ ପରେ ଏହୁ ଲୀନ ॥
ଦେଖ ଏ ନିଗମ ଘୋଟିଛି । ନିଶି ଦିବସେ ନାହିଁ କିଛି ॥
ରେହରୁ ଅରେହ ହୋଇଲା । ଅନାଦି ଈଶ୍ୱରଙ୍କ ଲୀଳା ॥
ଈଶ୍ୱର ତେଜ ଅନ୍ତରାଳ । ତା ତହୁଁ ଜାତ ହେଲା କାଳ ॥
ଅ ଅ ଯେ ଈଶ୍ୱର ଅଟଇ । ଆଦିଶକ୍ତିଟି କାଳ ହୋଇ ॥

ମଣ୍ଡଳାହୋଇ ବେଢ଼ିଅଛି । କହିଲୁ ଥିଲୁ ଯାହା ପୁଛି ॥
ଏବେ କହିବା ତୋତେ ଆଉ । ଆଦି ଅନାଦି ବୋଲି ଯେହୁ ॥
ସେ ବେନିଜନ ପ୍ରୀତି କରି । ତହୁଁ ଜନ୍ମିଲେ ଚନ୍ଦ୍ରାବଳୀ ॥
ସେ ଚନ୍ଦ୍ରାବଳୀ ଗୁଣ ଶୁଣ । ହୋଇଛି ଅର୍ଦ୍ଧମାତ୍ରା ପୁଣ ॥
ସେ ଅର୍ଦ୍ଧମାତ୍ରାଠାରୁ ହୋଇ । ପ୍ରେମ ଯେ ରୂପୀ ବୋଲି କହି ॥
ଶ୍ରୀରାଧାକୃଷ୍ଣ ବେନି ଜନ । ତାଙ୍କ ଅଧରୁ ସୁଧାପାନ ॥
ସେ ରସ ଗଳିଣ ପଡ଼ିଲା । ତହୁଁ ଓଁ ମତି କ୍ଷର ହେଲା ॥
ସେହୁ ଓଁ ମତି ଶିର ପରେ । ପଲଙ୍କେ ପଡ଼ିଛି ତଥିରେ ॥
ପଲଙ୍କ ହୋଇ ଅଷ୍ଟସଖୀ । ତହିଁ ସେ ଯାଇ ପ୍ରେମାବତୀ ॥
ଶେଯା ଉପରେ ତିନି ଜଣ । ଏବେ ହୋ ଶୁଣ ନାମମାନ ॥
ଶ୍ରୀରାଧାକୃଷ୍ଣ ବେନି ଜନ । ସମ୍ମୁଖେ ଚନ୍ଦ୍ରାବଳୀ ପୁଣ ॥
ଏବେ କହିବା ଆନ ରୀତି । ମନକୁ କର ତୁ ଧୀରତି ॥
ଆକାଶୁ ବିନ୍ଦୁ ଯେ ହୋଇଲା । ବିନ୍ଦୁରୁ ମନ ଜନମିଲା ॥
ମନରୁ ମାୟା ହେଲା ଜାତ୍ । ମାୟାରୁ ସତ୍ୟ ଯେ ସମ୍ଭୂତ ॥
ସତ୍ୟ ଯେ ବିରାଟକୁ କହି । ବିରାଟ ଶେଷଦେବ ହୋଇ ॥
ଶେଷଟି ଅନନ୍ତ ପ୍ରମାଣ । ଅନନ୍ତ ବଳଦେବ ପୁଣ ॥
ଏଥିରେ ତଳେ ତିନି ଗୁଣ । ସତ୍ୱ ଯେ ରଜ ତମ ପୁଣ ॥
ଇଅଁଳା ପିଅଁଳା ବୋଲାଇ । ଶିଷୁମୁନା ଯେ ମଧ ରହି ॥
ଇଅଁଳା ବାମ ଭାଗେ ରହି । ପିଅଁଳା ଦକ୍ଷିଣେ ବସଇ ॥
ଶିଷୁମୁନାଟି ସତ୍ୱଗୁଣ । ବହୁଛି ବ୍ରହ୍ମାଣ୍ଡ ଭେଦିଣ ॥
ରଜଟି ବ୍ରହ୍ମା ବୋଲି ଜାଣ । ତମଟି ଈଶ୍ୱର ପ୍ରମାଣ ॥
ସତ୍ୱ ଯେ ଜଗନ୍ନାଥ ହୋଇ । ଶୁଣ ହେ ବସ ମନଦେଇ ॥
ଏବେ ତୋ ସଂଶୟ ଫେଡ଼ିବା । ହସ୍ତ ମାରିଣ କହିଦେବା ॥
ତୋ ଓଷ୍ଠ ଘେନି ବେନି କଣ । ଏ ଅର୍ଦ୍ଧମାତ୍ରା ବୋଲି ଜାଣ ॥
ଯେ ମୁଖ ବିଳ ଅଛି ତୋର । ଶବଦ ତହିଁରୁ ବାହାର ॥
ମୁଖ ଉପରେ ନାସା ଶୋଭା । କି ଅବା ପଟାନ୍ତର ଦେବା ॥
ପବନ ଦ୍ୱାର ଏହା କହି । ଏହା ଉପରେ ଯାହା କହି ॥
ଏ ବେନି ଲୋଚନ ତୋହର । ଚିତ୍ରପ୍ରତିମା ରୂପ ସାର ॥
ଏ ତିନି ବିନ୍ଦୁପରେ ଦେଖ । ବିରାଜି ବିଶେ ପଦ୍ମମୁଖ ॥

 

ବିଳଗ୍ନେ ଅଛି ସେହୁ ରହି । କାହାରି ସଙ୍ଗ ସେ ନୁହିଁଇ ॥
ଏହା ଭେଦିଣ ସୁଖାମ୍ବୁଦ । ପିଇଣ ହୁଅ ତୁ ଆନନ୍ଦ ॥
ହରଷେ କହିଲାଇଁ ମୁହିଁ । ହେ ବତ୍ସ ଶୁଣ ମନଦେଇ ॥
ହେତୁ କହଇ ମନ ଆଗ । ଏ ପରଂବ୍ରହ୍ମ ବେନି ଯୋଗ ॥
ଗୁରୁ ଯେ ଶିଷ୍ୟଙ୍କ ବିଚ୍ୱାର । ଅନ୍ୟକୁ ଦିଶେ ଅନ୍ଧକାର ॥
ଏହି ଭାବରେ ଯେ ରସଇ । ଦୁର୍ଲଭ ନର ଦେହ ବହି ॥
ଶ୍ରୀଗୁରୁ ଚରଣେ ବିଶ୍ୱାସ । ଯେ ନର ହୋଇବ ପୀୟୁଷ ॥
ସେହି ଚରଣେ କରି ଆଶ । ଖଣ୍ଡିବ ମୋହବନ୍ଧ ଫାଶ ॥
ସୁଜନେ ଦୋଷ ମୋ ନ ଧର । ପତିତ ଜନ ମୁଁ ତୁମ୍ଭର ॥
ପାରିଲେ ମୋତେ ସେ ଉଦ୍ଧାର । ନୋହିଲେ ଭାସିଲି ସାଗର ॥
ଶ୍ରୀସନ୍ଥ ସାଧୁଙ୍କ ଚରଣ । ଶ୍ରୀଗୁରୁ ଆଜ୍ଞା ପରମାଣ ॥
ବେଦ ଶାସ୍ତ୍ର ପଢ଼ିନାହିଁ । ଶ୍ରୀଗୁରୁ ସେବା ନ ଜାଣଇଁ ॥
କେମନ୍ତେ ସୁକୃପା ହୋଇଲା । ତେଣୁ ଲେଖିଲି ବ୍ରହ୍ମଲୀଳା ॥
ହେତୁ ଉଦୟ ଭାଗବତ । ଲେଖିଲା ପାମର ଅନନ୍ତ ॥

ଇତି ଶ୍ରୀମଦ୍‌ଭାଗବତେ ହେତୁ ଉଦୟେ ଶ୍ରୀଯନ୍ତ୍ର ବତ୍ସ
ଦରଶନେ ନାମ ଦ୍ୱିତୀୟୋଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

ନମଇ ଶ୍ରୀଗୁରୁ ଚରଣ । ବତ୍ସ ଧରିଣ ପାଦ ପୁଣ ॥
ଗାୟତ୍ରୀ ଫେଡ଼ି କହ ପୁଣ । ଚଉଦ ବ୍ରହ୍ମାଣ୍ଡରେ ପୁଣ ॥
ଏମନ୍ତ ଶୁଣି ଗୁରୁମଣି । ବୋଇଲେ ଶୁଣ ବ୍ରହ୍ମବାଣୀ ॥
ଯେ ବ୍ରହ୍ମ ଶୂନ୍ୟର ବିଚ୍ୱାର । ତୋର ଦେହରେ ହେତୁଙ୍କର ॥
ତୋ ଦେହେ ଦେଖ ମୋତେ ତୁହି । ସକଳ ଏହି ସିନା ହୋଇ ॥
ପ୍ରଥମେ ଏହୁ ଜନମିଲା । ଏକ ଯେ ଖଣ୍ଡ ହୋଇଥିଲା ॥
ନାଭି ଠାବରୁ ବେନି ଖଣ୍ଡ । କରିଣ ସୃଜିଲା ବ୍ରହ୍ମାଣ୍ଡ ॥
ପୁଣି ଯେ ତିନି ଖଣ୍ଡ କଲା । ପାଦ ଯେ କଟୀଯାଏ ଗଲା ॥
ସପତ ପାତାଳଟି ପୁଣ । ଏଥିରେ ହୋଇଲା ପ୍ରମାଣ ॥
କଟୀଠାବରୁ ପାଦ ଯାଏ । ମର୍ତ୍ତ୍ୟ ବୋଲିଣ ଜାଣ କହେ ॥

କଣ୍ଠଠାବରୁ ଶିଖ ସୂତ୍ର । ସ୍ୱର୍ଗଟି ହୋଇଅଛି ସତ୍ୟ ॥
ଏମନ୍ତେ ତିନି ଭାଗ କଲା । ତେବେ ହେଁ ବ୍ରହ୍ମାଣ୍ଡ ନୋହିଲା ॥
ଚଉଦ ଖଣ୍ଡ ପୁଣ କଲା । ଯହିଁରେ ଈଶ୍ୱରର ଲୀଳା ॥
ଉପର ସାତ ଲୋକ ଜାଣ । ତୋତେ ତା' କହିଦେବା ପୁଣ ॥
ଭୂଲୋକ ମୂଳାଧାର ହୋଇ । ଭୂଖଣ୍ଡ ବୋଲି ତାକୁ କହି ॥
ସ୍ୱର୍ଗ ଯେ ଲଭି ମଞ୍ଚ ହୃଦ । କଣ୍ଠ ଯେ ଦଳ ଲୋଭ ଭାବ ॥
ଲଲାଟ ତପ ଲୋକପରେ । ସହସ୍ର ଦଳ ଯେ ତଥିରେ ॥
ତଳ ସପତ ପାତାଳର । ଅତଳ କଟୀ ଯେ ଭାଗର ॥
ନିତଳ ନିସୂତ ନିର୍ବାଣ । ବିତଳ ଜାନୁ ବୋଲି ଜାଣ ॥
ସୂତାଳ ଜଙ୍ଘ ନିରିବାଣ । ଗଣ୍ଠି ଯେ ତଳାତଳ ପୁଣ ॥
ଗୁହ୍ୟ ଅଟଇ ରସାତଳ । ପାଦ ଯେ ଅଟଇ ପାତାଳ ॥
ଏମନ୍ତେ ଚତୁର୍ଦ୍ଦଶ କହି । ସର୍ବ ଜୀବରେ ପୂର୍ଣ୍ଣ ହୋଇ ॥
ଏବେ କହିବା ବାବୁ ତୋତେ । ପଞ୍ଚାଶ ପ୍ରକୃତି ଯେମନ୍ତେ ॥
ଜ୍ଞାନ ଯେ ଇନ୍ଦ୍ରୀ ପାଞ୍ଚ ଗୁଣ । କର୍ଣ୍ଣ ଯେ ଚକ୍ଷୁ ଚର୍ମ ଜାଣ ॥
ଜିହ୍ୱା ନାସିକା ପାଞ୍ଚ ହୋଇ । ଯେ ପାଞ୍ଚ ଜ୍ଞାନର ଅଟଇ ॥
କର୍ମ ଇନ୍ଦ୍ରିୟ ଶୁଣ ତୁହି । ଗୁହ୍ୟ ଯେ ଅଣ୍ଡ ହସ୍ତ ହୋଇ ॥
ପାଦ ବଚନ ମିଶି ପୁଣ । ଏ ପାଞ୍ଚ ଅଟଇ ପ୍ରମାଣ ॥
ମନ ଘେନିଣ ଏକାଦଶ । କହିଲୁ ତୋ ଆଗେ ବିଶ୍ୱାସ ॥
ଦୁଇ ଆଡ଼ରେ ସେହୁ ମନ । ଶୁଣ ହୋ ବସ ହେତୁ ଜ୍ଞାନ ॥
ପରମ ଅରୂପ ହୁଅଇ । ଜୀବ ରୂପକୁ ସେ ଧରଇ ॥
ତେଣୁ କରିଣ ଗତାଗତ । ଜନ୍ମ ଭଜଇ ଶୁଣ ସୁତ ॥
କର୍ଣ୍ଣର ଦେବତା ସେ ଦିଗ । ଚର୍ମର ଦେବତା ପବନ ॥
ଚକ୍ଷୁ ସୂର୍ଯ୍ୟଦେବତା ଜାଣ । ଜିହ୍ୱାଟି ଅଟଇ ବରୁଣ ॥
ଅଶନିବୀଜ ଏ ନାସାରେ । ଜ୍ଞାନଇନ୍ଦ୍ରିୟ ପଞ୍ଚ ସାରେ ॥
କର୍ମ ଇନ୍ଦ୍ରିୟ ପଞ୍ଚ ପୁଣ । ଦେବତା ନାମ କହି ଶୁଣ ॥
ଅଗ୍ନି ସେ ଉଦରେ ଦେବତା । ବାସବ ବାହୁରେଣ ଥିତା ॥
ପାଦରେ ନାରାୟଣ ରହେ । ଅଣ୍ଡରେଣ ପ୍ରଜାପତି ଏ ॥
ବଚନେ ରହେ ସରସ୍ୱତୀ । କର୍ମ ଇନ୍ଦ୍ରିୟ ପାଞ୍ଚ ଘେତି ॥
ମନର ଦେବତାଟି ଜାଣ । ଚନ୍ଦ୍ର ଯେ ଅଟଇ ପ୍ରମାଣ ॥

ବତ୍ସ ବୋଲଇ ମନେ ଭାଳି । ପଞ୍ଚମାତ୍ରା କାହାକୁ ବୋଲି ॥
ବସନ୍ତି କେଉଣ ସ୍ଥାନରେ । କହିବା ହୋଇବ ମୋହରେ ॥
ଶୁଣ ହୋ ବତ୍ସ ମନଦେଇ । ଲୋଚନ ରୂପେ ଯେ ଦେଖଇ ॥
ଶବଦ ଘେନଇ କର୍ଣ୍ଣରେ । ବାସନା ନାସିକା ବିମ୍ବରେ ॥
ରସଟି ଜିହ୍ୱା ବଗୁଣର । ସରସ ଚର୍ମରେ ବେହାର ॥
ଏହି ଯେ ଅଟେ ପଞ୍ଚମାତ୍ରା । କହିଲୁ ଶୁଣ ହୋଇ ଶ୍ରୋତା ॥
ଏ ପଞ୍ଚ ଭୃତ୍ୟଟି ନିକର । ଜାଣିବା ମାତ୍ରାର ଦୋସାର ॥
ସହସ୍ର ଦଳ ଯାହା କହି । କର୍ଣ୍ଣ ଆକାଶଟି ବୋଲାଇ ॥
କଣ୍ଠ ଠାବରୁ ସ୍ତନ ତଳ । ହୋଇଛି ପବନ ମଣ୍ଡଳ ॥
ନାଭିରେ ଅଗ୍ନି ଅଛି ରହି । ଶୁଣ ହୋ ବତ୍ସ ମନଦେଇ ॥
ଜାନୁ ଯେ ଯାଏ ତହିଁ ତଳ । ଅଟଇ ବରୁଣ ମଣ୍ଡଳ ॥
ତହିଁରୁ ପାଦ ତଳ ଯାଏ । ପୃଥିବୀ ବୋଲି ତାକୁ କହେ ॥
ପ୍ରକୃତି ଅଟେ ଏ ଶରୀର । ବୁଦ୍ଧି ମହତ ବୋଲି ତାର ॥
ଅନନ୍ତ ଉପରେ ଏ ମାନ । ଖଞ୍ଜି ରହିଛି ବତ୍ସ ଶୁଣ ॥
ଭ୍ରୂଲତା ମଧ୍ୟରେ ସେ ମନ । ବାର ଯୋଜନ ତା ଗମନ ॥
ଆସଇ ବାର କଳା ବାହି । ଶବଦ ବିଭଙ୍ଗ କରଇ ॥
ଯାହା ପଢ଼ାରୁ ବାବୁ ତୁହି । ସେ କଥା ଶୁଣ ମନ ଦେଇ ॥
ଅଜପା ଆଠ ଶବଦର । ପରମ ଲୀଳା ଯେ ତହିଁର ॥
ପର ଯେ ରଜ ସଶବଦ । ପାତିଛି ଅଜପାରେ ଛନ୍ଦ ॥
ଶବଦ ଦ୍ୱାଦଶ ତାହାର । ଏଥୁ ସେ ହୋଇଛି ବାହାର ॥
ଈ କାର ଠାବରୁ ଯେ ତା'ର । ଓ ଔ ପରେ ତା ବିହାର ॥
ଶବଦ ବାର ଯେ ପ୍ରକାର । ଯ ଯରୁ ହୋଇଛି ବାହାର ॥
ଜୀବ ପରମ ଅଟେ ଦୁଇ । ଅର୍ଦ୍ଧ ଊର୍ଦ୍ଧ୍ୱରେ ସେ ଖେଳଇ ॥
ଆସୁ ଯେ ଅଛି ଅଣାକ୍ଷରୁ । ପଶି ମିଶଇ ସେହିଠାରୁ ॥
ଅବିଦ୍ୟା ଅଣ ଯେ ଅକ୍ଷର । ସୁଅଙ୍ଗ ମୂର୍ଦ୍ଧ୍ନି ଉପର ॥
ତହିଁରୁ ହୋଇ ଏକାକ୍ଷର । ସୁଅଙ୍ଗ କୀଳନାମ ତାର ॥
ତହିଁରୁ ଦ୍ୱ୍ୟକ୍ଷର ଜାଣ । ରାମ ଯେ ନାମ ସ୍ୱରୂପେଣ ॥
ରା ଯେ ରାଧିକା ଅଟଇ । ମ ଶ୍ରୀକୃଷ୍ଣ ପତି ହୋଇ ॥
ତହିଁରୁ ଚାରିକ୍ଷଣ ହୋଇ । ଶୁଣ ହୋ ବତ୍ସ ମନଦେଇ ॥

 

ରାମ ଯେ କୃଷ୍ଣନାମ ସାର । ଅଟଇ ସେ ଚାରି ଅକ୍ଷର ॥
ତହିଁର ଅଷ୍ଟାକ୍ଷରଧ୍ୟାୟ । ହରି ଯେ ରାମ ଗୋବିନ୍ଦାୟ ॥
ଅପରୁ ହୋଇ ଷୋଳକ୍ଷର । ରଖ ହୋ ବତ୍ସ ତୋ ମନର ॥
ହରେ କୃଷ୍ଣ ଯେ ହରେ କୃଷ୍ଣ । କୃଷ୍ଣ ଯେ କୃଷ୍ଣ ହୋଇ ରସ ॥
ହରେ ଯେ ପୁଣି ହୋଇ ହରେ । ହରେ ରାମ ହରେ ରାମରେ ॥
ହରେ ଯେ ହରେ ଏ ଅଟଇ । ଏମନ୍ତେ ଷୋଳ ନାମ ହୋଇ ॥
ଷୋଡ଼ଶୁଁ ବତିଶ ଅକ୍ଷର । ମହାମନ୍ତ୍ରର ଯେ ବିଚାର ॥
ଏମନ୍ତ ପ୍ରକାରେ ହୋଇଲା । ବତିଶ ଅକ୍ଷର ଛନ୍ଦିଲା ॥
ମହା ଯେ ମନ୍ତ୍ର ବତିଶ ହିଁ । ମନ୍ତ୍ର ଯେ ରାଜ ଛବିଶ ହିଁ ॥
ବୀଜ ଯେ ଛଡ଼କ୍ଷର ହୋଇ । ଏମନ୍ତେ ଚୌଷଠୀ ବୋଲାଇ ॥
ବ୍ରହ୍ମ ଅକ୍ଷର ଦୁଇ ଯେହି । ହୀରଂ କୀଳଂ ଯେ ଦୁଇ ହୋଇ ॥
ଏମନ୍ତେ ପ୍ରକାରେଣ ତହିଁ । ଛ ଯେ ଷଠୀ ସେ ବୋଲାଇ ॥
ବତ୍ସ ବୋଲଇ ଗୁରୁଦେବ । ମନୁ ମୋ ସଂଶୟ ଫେଡ଼ିବ ॥
କହିବା ଏଥିର ବିଚାର । ଯେ କୃପା ହୋଇଛି ତୁମ୍ଭର ॥
ମହା ଯେ ମନ୍ତ୍ର ଷୋଳ ନାମ । କହିଲ ଯାହା ଅନୁପମ ॥
କେମନ୍ତେ ଚତୁର୍ଦ୍ଧାମୂରତି । କହିଣ ଦେବା ପ୍ରତି ପ୍ରତି ॥
ହରେକୃଷ୍ଣ ଯେ ରାମଶ୍ୟାମ । କହିବା ହେବ ଚତୁର୍ଦ୍ଧାମ ॥
କେବଣ ଅଙ୍ଗ ହରେ ହୋଇ । କୃଷ୍ଣ ଯେ କେଉଁ ରୂପ ତହିଁ ॥
ଶ୍ୟାମ ନାମ ଯେ କେଉଁ ମୂର୍ତ୍ତି । ରାମ କେବଣ କହ ଥିତି ॥
କେମନ୍ତେ ହୋଇଣ ଚତୁର୍ଦ୍ଧା । କହିଣ ଦେବା ପ୍ରତିବୋଧା ॥
ହୀରଂ ଯେ ଶୀରଂ ଧୀରଂ ହୋଇ । କିଲଂ କହିବା ତହିଁ ମୁହିଁ ॥
ବତ୍ସ ବଚନ ଗୁରୁ ଶୁଣି । ବୋଲନ୍ତି ଗୁରୁ ଚୂଡ଼ାମଣି ॥
ହରେ ଯେ କୃଷ୍ଣ ରାମଶ୍ୟାମ । ଏମନ୍ତେ ହୋଇ ଚତୁର୍ଦ୍ଧାମ ॥
ହରେ ଶିଷ୍ୟ ଯେ ଗୁରୁ ନାମ । କୃଷ୍ଣଟି ଜଗନ୍ନାଥ ନାମ ॥
ଶ୍ୟାମ ଯେ ଭକ୍ତି ମୁକ୍ତି ପୁଣ । ଯୁକ୍ତ ହୋଇଛି ବତ୍ସ ଶୁଣ ॥
ହରେ ଯେ ବଳଭଦ୍ର ହୋଇ । କୃଷ୍ଣ ଜଗନ୍ନାଥ ଅଟଇ ॥
ରାମଟି ସୁଭଦ୍ରାକୁ କହି । ଶ୍ୟାମ ସୁଦର୍ଶନ ବୋଲାଇ ॥
ଏମନ୍ତେ ଚତୁର୍ଦ୍ଧାଟି ଜାଣ । ଚତୁର୍ବିଧରେ ପରିମାଣ ॥
ହୀରଂ ଯେ ଧୀରଂ ଶୀରଂ ହୋଇ । କୀଳଂ ବୀଜଟି ଯାହା କହି ॥

ଶୀରଂ ସୋଭଦ୍ରିକା ହୋଇଣ । ଧୀରଂ ସୁଦର୍ଶନ ନାମେଣ ॥
ହୀରଂ ବଳଦେବ ବୋଲାଇ । କୀଲଂ ଗତିଟି କୃଷ୍ଣ ହୋଇ ॥
ହୀରଂ ଯେ ଧୀରଂ ଶୀରଂ ପୁଣ । କୀଲଂ ବୀଜ ସଙ୍ଗେ ମଶିଣ ॥
ଜଗନ୍ନାଥ ଯେ ବଳଭଦ୍ର । ସୁଭଦ୍ରା ସୁଦର୍ଶନ ଭାବ ॥
ଶ୍ୟାମ ଯେ ରକ ଯଜୁ ଅର୍ଥ । ଚତୁର୍ଦ୍ଧା ବିଧି ଏଟି ସତ୍ୟ ॥
ଚତୁର୍ଯେ ଦିଗ ବୋଲି ଜାଣ । ତୋ ମୁଖ ନାସା ଚକ୍ଷୁ କର୍ଣ୍ଣ ॥
ଶ୍ୟାମ ଯେ ବଳଭଦ୍ର ଜାଣ । ରାମ ଯେ ନିଜେ ବୋଲି ପୁଣ ॥
ଉତ୍ତର ଦିଗ ଧବଳଇ । ତୋ ବେନି ନୟନ ଅଟଇ ॥
ଶେଷ ଯେ ଅଙ୍ଗ ଅଟେ ସେହି । ଶୁଣ ହୋ ବତ୍ସ ମନଦେଇ ॥
ତ୍ରିକୂଟ ସ୍ଥାନରେ ଟି ବାଇଁ । ଓଁ କିତି ଅକ୍ଷରକୁ କହି ॥
ଯଜୁ ଯେ ଋକ୍ ଯେହୁ ପୁଣ । ଜଗନ୍ନାଥଟି ନାମ ଜାଣ ॥
ସଚରାଚର ଅଟେ ଯେହୁ । ଅନନ୍ତ ମୂରତିଟି ସେହୁ ॥
ମଣିକୂଟୀ ଉପରେ ଦେଖ । ପ୍ରରମହଂସ ଲୀଳା ସୁଖ ॥
ଋକ୍‌ବେଦ ବୋଲିଣ ଯେହୁ । ସୁଭଦ୍ରା ଅଙ୍ଗ ଅଟେ ସେହୁ ॥
ପ୍ରାଚୀ ଯେ ଦିଗ ବିଷ୍ଣୁଶ୍ୟାମ । ପ୍ରସର ହୋଇ ଅନୁପମ ॥
ହରିଦ୍ର ବର୍ଣ୍ଣ ସେ ଘେନିଣ । ବେଦାନ୍ତ ବେଦ ପରମାଣ ॥
ରଙ୍ଗ ଅଧର ଅଟେ ଯେହି । ଭୋଗ ଭୁଞ୍ଜଇ ନିତ୍ୟ ସେହି ॥
ମଣି ଯେ କୂଟି ଏ ରସନା । ଅନନ୍ତ ନୁହଇ ବର୍ଣ୍ଣନା ॥
ଅଶେଷ ବ୍ରହ୍ମାଣ୍ଡ ଯାକଇଁ । ବ୍ୟାପି ରହିଛି ଦେଖ ତୁହି ॥
ଅଥର୍ବ ବେଦ ବୋଲି ଯେହୁ । ସୁଦର୍ଶନଟି ଅଟେ ସେହୁ ॥
ଗିରି ଯେ କ୍ରୋଟ ପଶ୍ଚିମର । ଶ୍ରବଣ ହୋଇଛି ନିକର ॥
ସେ ରୂପଟି ମାଧ୍ୱ ଆଚାର୍ଯ୍ୟ । ଭୃଙ୍ଗର ବର୍ଣ୍ଣ ରୂପ ତେଜ ॥
ବିଳାସଟି ନିତ୍ୟ ନାଳିକା । ବିରାଟ ହୋଇଅଛି ଏକା ॥
ଶ୍ରୁତି ଯେ ପଥ ଗିରି କ୍ରୋଟ । ମୃଣାଳ ସୂତ୍ରରେଣ ବାଟ ॥
ବୈକୁଣ୍ଠ ବାଟ ତାକୁ କହି । ଆକାଶ ଭୂମିଟି ବୋଲାଇ ॥
ଲୟାଙ୍ଗ ଲୀଳାଙ୍ଗ ଯେ ଏହି । ଭୋଗାଙ୍ଗ ଯୋଗାଙ୍ଗ ବୋଲାଇ ॥
ରତି ଯେ ପ୍ରୀତି ଶ୍ରୁତିଯୁକ୍ତ । କେ କେଉଁଭାବେ ହୋଇ ରତ ॥
ଲୟାଙ୍ଗ ଅଟେ ପ୍ରୀତି ଶୁଣ । ହରେ ଯେ ହୀରଂ ଏ ପ୍ରମାଣ ॥
ନୀଳାଙ୍ଗ ଅଟେ ସୁଭଦ୍ରିକା । ରତି ଭାବରେ ସେ ନାୟିକା ॥

ଶ୍ରୁତିଟି ଭୋଗଅଙ୍ଗ କହି । ଯୋଗାଙ୍ଗଟି ସୁଦର୍ଶନ ହିଁ ॥
ଯୁକ୍ତ ବୋଲିଣ ଏକା କହି । ହେତୁରେ ଧର ତୁ ତନୟୀ ॥
ସତ୍ତ୍ୱ ଯେ ରଜ ତମ ଶାନ୍ତି । ଉର୍ମ ଯେ ଧୂର୍ମ ଜ୍ୱାଳା ଜ୍ୟୋତି ॥
ଅକାର ଉଂ'କାର ମ'କାର । ସ'କାର ରହିଛି ତଥିର ॥
ସତେ ଯେ ଉଂକାର୍ ତ୍ରା ନାମ । ଯଜୁର୍ବେଦ ଯେ କୃଷ୍ଣ ନାମ ॥
ପବନ ଜଗନ୍ନାଥ ଜାଣ । ବାଇକି ଘେନିବ ପ୍ରମାଣ ॥
ରଜ ଉର୍ମଟି ସେ ବୋଲାଇ । ଅ କାର ସେହୁ ଯେ ଅଟଇ ॥
ତମ ସ କାର ବୋଲି ଜାଣ । ଜ୍ୟୋତିଟି ହରେ ପରମାଣ ॥
ଶାନ୍ତି ଯେ ସୁଦର୍ଶନ ମାଳା । ଲ କାର ଘେନି ସେହୁ ମେଳା ॥
ପରୋକ୍ଷେ ରଜ ସଶବଦ । ଏହୁଁ ହୋଇଛି କର ଭେଦ ॥
ପର ଯେ ବିଷ୍ଣୁ ରଜ ବ୍ରହ୍ମ । ସଶ ଯେ ମହେଶ୍ୱର ନାମ ॥
ବଦ ଯେ ସୁଦର୍ଶନ ଲେଖି । ଅଗ୍ନି ସ୍ୱରୂପ ହୋଇଅଛି ॥
ପର ଯେ ବିଷ୍ଣୁ ବାୟୁ ହୋଇ । ରଜ ପୃଥିବୀଟି ବୋଲାଇ ॥
ସଶବଦ ଯେ ସିଦ୍ଧି ରସ୍ତୁ । ଏ ଚାରି ହୋଇଛି ପ୍ରଶସ୍ତୁ ॥
ଏହି ଯେ ଗୋପ ବୃନ୍ଦାବନ । ରାହାସ ସଦନର ସ୍ଥାନ ॥
କାଳନ୍ଦୀ ତଟ ଯେ କଦମ୍ବ । ମୂଳରେ ହୋଇଛି ବିଶ୍ରାମ ॥
ବେଣୁ ସିଂହା ସେ ବଂଶୀ ବେତ । ଏହି ଚତୁର୍ଦ୍ଧା ବିଧିମତ ॥
ଗୁଞ୍ଜାଗୁଞ୍ଜ ଯେ ଶିଖିପୁଚ୍ଛ । ଶୋଭିଛି ପ୍ରତ୍ୟକ୍ଷରେ ଦେଖ ॥
ଗଙ୍ଗାଯମୁନା ଏହୁ ଜାଣ । ସରସ୍ୱତୀ କାଳନ୍ଦୀ ନାମ ॥
ଲଅଁଳା ପିଅଁଳା ବୋଲାଇ । ଶିଶୁମୁନା ଯେ ବିଧି ଏହି ॥
ଏହି ଯେ ମଥୁରା ଅଯୋଧ୍ୟା । ଦ୍ୱାରିକା ନୀଳାଦ୍ରି ଯେ ସୁଦ୍ଧା ॥
ରାମ ଯେ ଲଇକ୍ଷଣ ପୁଣ । ଭରତ ଶତ୍ରୁଘନ ଜାଣ ॥
ଶଙ୍ଖ ଚକ୍ର ଯେ ଗଦାପଦ୍ମ । କଳି ଯେ ସତ୍ୟ ତ୍ରେତା ନାମ ॥
ବ୍ରହ୍ମ କ୍ଷତ୍ରୀ ଯେ ବୈଶ୍ୟ ଶୂଦ୍ର । ଏ ଚୀରି ବର୍ଣ୍ଣ କର ଭେଦ ॥
ଗୋପ ଯେ କୁଞ୍ଜ ଦ୍ୱାରକାଟି । ଶତ୍ରୁଘନ ଯେ ସରସ୍ୱତୀ ॥
ଯେ ଶିଶୁମୁନା ପଦ୍ମ ବେନୁ । ଦ୍ୱାପର ବଶ୍ୟ ଜାଣ ତେଣୁ ॥
ବ୍ରହ୍ମ ଯେ ଶଙ୍ଖ ସତ୍ୟ ବେତ । ବୃନ୍ଦାବନ ଯେ ଲକ୍ଷ୍ମଣ ତ ॥
ଗଙ୍ଗାରୁ ଯେ ଇଅଁଳା ହୋଇ । ମଥୁରା ଦେଶ ଯେ ବୋଲାଇ ॥
ଗୋପ ଯେ ପୁର ରକ୍‌ବେଦ । ଘେନିବ ବସ୍ସ ମନେ ଭେଦ୍ ॥

ସାମ ବେଦଟି ଅଟେ ଯେହୁ । ବଳଭଦ୍ର ନାମଟି ସେହୁ ॥
ରହାସ ସଦନଟି ଯାଗା । ଭରଥ ଅଟଇଟି ଗଙ୍ଗା ॥
ଅଯୋଧ୍ୟା କାଳନ୍ଦୀ ଯେ ହୋଇ । ଚକ୍ରଦଧିମୁଦ୍ରା ବୋଲାଇ ॥
ନିବିଡ଼ କଦମ୍ବ ଯେ ମୂଳ । ଶିଖଟି ନୀଳାଦ୍ରିଙ୍କ ସ୍ଥଳ ॥
ବଂଶୀ ଯେ ଯମୁନାଟି ହୋଇ । ଦ୍ୱାପର ଗଦାଟି ବୋଲାଇ ॥
ଯଜୁର୍ବେଦ ବୋଲିଣ ଏହି । ଶୁଣ ହୋ ବତ୍ସ ମନଦେଇ ॥
ଅଥର୍ବ ବେଦ ରାହାସହିଁ । ସଦନ ଠାବ ଯେ ବୋଲାଇ ॥
ଭାଣ୍ଡିର ଖାଦ୍ରିର ଯେ କାମ । ସାମ ବେଦ ଏହାରି ନାମ ॥
ବକୁଳ କଦମ୍ବ ଯେ ବନ । କୃଷ୍ଣ ଯେ ଯଜୁ ହୋଇ ପୁଣ ॥
ମଧୁ ବିଶାଖି ଅଥର୍ବହିଁ । ସାମ ନାମ ଯେ ଯେହୁ ହୋଇ ॥
ଏଣୁଟି ଏ ବେଦ୍ ବୋଲାଇ । ତେଣୁ ସେ ନିଗମ ଅଟଇ ॥
ଖାଣ୍ଡବ ଯଜୁକୁଟି କହି । ପଞ୍ଚବଟୀଟି ସାମ ହୋଇ ॥
ଅଥର୍ବ ଅଶୋକ ହୋ ଜାଣ । ଋକ୍ ଦଣ୍ଡକା ପରମାଣ ॥
ଯେଣୁଟି ବେଦବନ ସାଧ । ବନ ଯେ ନିଗମଟି ଭେଦ ॥
ବନ ଯେ ନିଗମ ଅଟଇ । ଭେଦ ନ ଜାଣେ ତା'ର କେହି ॥
ଚତୁର୍ବର୍ଣ୍ଣରେ ଚାରି ମୂର୍ତ୍ତି । କହିଣ ଦେଲୁ ବତ୍ସ ଖ୍ୟାତି ॥
ଏ ହେତୁ ଜାଣିଲା ଲୋକକୁ । ସାଧକ ବୋଲିଟି ତାହାକୁ ॥
ରାଧାକୁଣ୍ଡ ଯେ ଶ୍ୟାମକୁଣ୍ଡ । ମଣିକୁଣ୍ଡ ଯେ ଗୋପୀକୁଣ୍ଡ ॥
ମାନ ଯେ ସରୋବର ହୋଇ । ବିମ୍ବା ଯେ ସରୋବର କହି ॥
ଶୂନ୍ୟ ଯେ ସରୋବର କହି । ଜ୍ଞାନ ସରୋବର ବୋଲାଇ ॥
ବାସ ଯେ ସରୋବର କଥା । ବୁଝାଇ କହିବା ବ୍ୟବସ୍ଥା ॥
ରସନା କୁଣ୍ଡରୁଟି ଉଦେ । ଝରୁଛି ପରମ ଆସ୍ୱାଦେ ॥
ଏ ପୁଣି ଚାରି ସରୋବର । ଭେଦଟି ଏ ଚାରିକୁଣ୍ଡର ॥
ରାଧା ଯେ କୁଣ୍ଡ ଋକ୍ ହୋଇ । ଜ୍ଞାନ ସରୋବର ବୋଲାଇ ॥
ଶ୍ୟାମ କୁଣ୍ଡଟି ଅଥର୍ବର । ହୋଇଛି ବିଶ୍ୱାସ ଗୋଚର ॥
ମଣିକୁଣ୍ଡ ଯଜୁକୁ କହି । ଶୂନ୍ୟ ସରୋବର ବୋଲାଇ ॥
ଯେ ଗୋପୀକୁଣ୍ଡ ଅଟେ ସାର । ସେ ସାମ ନାମ ସରୋବର ॥
ଏହିଟି ହରେ କୃଷ୍ଣ ରାମ । ସାମଟି ଅଟଇ ହୋ ଜାଣ ॥
ସାମ ଯଜୁ ଋକ୍ ଅଥର୍ବ । ଏହା ହୋଇଛି ବାବୁ ସର୍ବ ॥

ରାଧା ଯେ ରାମ ହରେ ଦୂତୀ । କୃଷ୍ଣଟି ବିଷ୍ଣୁର ମୂରତି ॥
ବୃନ୍ଦାବତୀଟି ସାମ ହୋଇ । ହେ ବତ୍ସ ଶୁଣ ମନଦେଇ ॥
ଅମଣିହା ଯେ ରାଧା ଜାଣ । ପାତ୍ର ଯେ ରୂପ ଦୂତୀ ପୁଣ ॥
ନଇବେଦଟି ତ୍ରିପୁରାହି । ଏମନ୍ତ ବିଦ୍ୟା ସେ ବୋଲାଇ ॥
ମହାପ୍ରସାଦ ଅଟେ ତତ୍ତ୍ୱ । କୃଷ୍ଣ ମନପବନ ଆତ୍ମ ॥
ଚୈତନ୍ୟ ଘେନି ଚାରି ହୋଇ । ଏମନ୍ତ ଭାବ ସେ ଅଛଇ ॥
ବ୍ରହ୍ମା ଯେ ବିଷ୍ଣୁ ଶିବ କହି । କେତୁକା ଅଥର୍ବ ଅଟଇ ॥
ଏ ଚାରି ଏକତ୍ୱ ହୋଇଣ । ତ୍ରିପଦା ହୋଇଅଛି ପୁଣ ॥
ଗାୟତ୍ରୀଟି ଯେ ଶିବ ହୋଇ । ସାବିତ୍ରୀ ବିଷ୍ଣୁ ସେ ବୋଲାଇ ॥
ସରସ୍ୱତୀଟି ଯାହା କହି । ବ୍ରହ୍ମାର ପ୍ରାଣ କେତୁକାହିଁ ॥
ରେଚକ ଅଟେ ଯେ ପୂରକ । କୁମ୍ଭକ ତହିଁକି ଯେ ଦେଖ ॥
ଏ ସର୍ବ ଏକଇ ଠାବରୁ । ତରାଟ ହୋଇଲା ତହିଁରୁ ॥
ଏ ସର୍ବ ଏକତ୍ୱ ହୋଇଣ । ଓଁ ମତି ଅକ୍ଷରରେ ଲୀନ ॥
ଓଁ ମତି ରହିଛି ସାଥିରେ । ଯୋଗ ଯେ ମାୟା ପୃଷ୍ଠପରେ ॥
ତଥିଉତ୍ତାରେ ବିନ୍ଦୁ ବ୍ରହ୍ମ । ତାଂ ମଧ୍ୟେ ଉପାଧି ଯେ ନାମ ॥
ତଥି ଉପରେ ଅନାହତ । ନାହିଁ ତା ପୁରେ ଦେଖ ସୁତ ॥
ଏଣୁ ଯେ ସର୍ବେ ଏକ ବ୍ରହ୍ମ । ଅନାମୁଁ ନାମଟି ଜନମ ॥
ନାମ ବ୍ରହ୍ମରୂପୀ ହୋଇଣ । ସର୍ବେ ଏଥିରେ ହୋଇ ଲୀନ ॥
କହିଲୁ ତତ୍ତ୍ୱ ଯେ ବିଚାର । ଷୋଳ ନାମ ଯେ ବତିଶର ॥
ଏ ହେତୁ ବିନ୍ଧିଲେ ହେ ପୁଣ । ନିତ୍ୟ ଗୋଲକ ପାଇ ଜାଣ ॥
ଅଶେଷ ଅଛଇ ଯହିଁରେ । ନିତ୍ୟ ଯେ ଲୀଳା ନିରନ୍ତରେ ॥
ଷୋଳ ଯେ ନାମ ଚତୁର୍ବିଧି । ଏ ଯନ୍ତ ପାରିଲେ ହୋ ବିନ୍ଧି ॥
ସୁଜନ ଜନଙ୍କର ଲୀଳା । ଏ ଭବସାଗରକୁ ଭେଳା ॥
ପରମ ରସ ଭାଗବତ । ଶ୍ରୀଗୁରୁ ଆଜ୍ଞାରେ ଉକତ ॥
ହେତୁ ଉଦୟ ଲୀଳାରସ । ପାମର ଅନନ୍ତ ପ୍ରକାଶ ॥

ଇତି ଶ୍ରୀମଦ୍‌ଭାଗବତେ ହେତୁ ଉଦୟେ ଶ୍ରୀଗୁରୁପ୍ରସନ୍ନେ
ନାମ ତୃତୀୟୋଧ୍ୟାୟଃ ।

# ଚତୁର୍ଥ ଅଧ୍ୟାୟ

ହେତୁ କହଇ ଶୁଣ ମନ । ବତ୍ସ ପୁଚ୍ଛଇ ବ୍ରହ୍ମଜ୍ଞାନ ॥
ଶ୍ରୀଗୁରୁଚରଣେ ଶରଣ । ହୋଇ କାର୍ପୁଣ୍ୟ ମତି ପୁଣ ॥
ବୋଲଇ ଶୁଣିମା ଗୋସାଇଁ । କହ ସଂଶୟ ମୋର ଫେଇ ॥
ଶ୍ରୀଗୁରୁ ବୋଲନ୍ତି ବଚନ । ଶୁଣ ହେ ବତ୍ସ ଦେଇ ମନ ॥
ଏବେ ତୁ ଶୁଣ ମନଦେଇ । ଶିବଗାୟତ୍ରୀ ଦେବା କହି ॥
ଷୋଳ ନାମରୁ ବୀଜ ଆଠ । ଚବିଶ ଅକ୍ଷର ମୁରାଟ ॥
ଭୋ ବତ୍ସ ମନେ ହେତୁ କର । ତ୍ରିପଦା ନାମଟି ଯାହାର ॥
ଗାୟତ୍ରୀ ଛନ୍ଦ ତୁହି ଶୁଣ । ସୁଚିତ୍ତ ମନରେ ହୋ ଘେନ ॥
ଆଦ୍ୟପାଦ ଯେ ଅଷ୍ଟାକ୍ଷର । ସ୍ୱର୍ଗ ତହିଁରୁ ହୋ ବାହାର ॥
ଦ୍ୱୟ ପାଦ ଯେ କ୍ଷୀର ମର୍ତ୍ତ୍ୟ । ହୋଇଣ ଅଛଇ ହୋ ସୁତ ॥
ତୃତୀୟ ପାଦଟି ପାତାଳ । ତେଣୁ ତ୍ରିପାଦ ନାମ ତା'ର ॥
ଚତୁପାଦ ଯେ ଅଷ୍ଟାକ୍ଷର । ଅବଳା ହୋଇଛି ନିକର ॥
ଛନ୍ଦିଲେ ସାବିତ୍ରୀ ବୋଲାଇ । ଏଣୁ ସେ ବତିଶରେ ଥାଇ ॥
ପ୍ରଥମ ପାଦେ ବ୍ରହ୍ମା ବାସ । ଦୁଜେଣ ଅଛଇ ମହେଶ ॥
ତୃତୀୟେ ବିଷ୍ଣୁ ଛନ୍ତି ରହି । ବ୍ରହ୍ମା ଅଂଶରୁ ଜନ୍ମ ହୋଇ ॥
ତେଣୁ ଛପଦା ନାମ ତାର । ହେ ବତ୍ସ ହେତୁ ମନେକର ॥
ବତିଶ ଆଠରେ ଛନ୍ଦିଲା । ତେଣୁ ଗୋମାତା ସେ ହୋଇଲା ॥
ପର ଯେ ରଜଟି ଉପରେ । ତଳେ ସଶବଦ ବିହରେ ॥
ଲାଗିଣ ବତିଶ ଅକ୍ଷର । ଚରୁ ଯେ ଅଛି ନିରନ୍ତର ॥
ଏଣୁଟି ଗାୟତ୍ରୀ ବୋଲାଇ । ନାମ କହିଲି ତୋତେ ଫେଇ ॥
ଛପଦା କହିବା ହୋ ଶୁଣ । ଯେମନ୍ତ ପ୍ରକାରେଣ ପୁଣ ॥
ନିତ୍ୟେ ହୃଦରେ ଥିବ ଧରି । ଜପିବ ମନରେ ବିଚାରି ॥
ଦୁଇ ଯେ ପାଦରେ ଭଜନ । ଲୟେ ସେ ଲଗାଇ ବ୍ରହ୍ମେଣ ॥
ତୃତୀୟେ ହୋଇ ଅଧ୍ୟୟନ । ଚତୁର୍ଥେ କରଇ ଯାପନ ॥
ପଞ୍ଚମ ପାଦେ ଦାନ ଦେଇ । ଷଷ୍ଠମ ପାଦରେ ଘେନଇ ॥
ଏମନ୍ତ ଛପଦାରେ ଗୁଣ । ଶୁଣ ହୋ ବତ୍ସ ଦେଇ ମନ ॥
ନମଃ ଶିବାୟ ପଞ୍ଚାକ୍ଷର । ଜୀବର ଏହିଟି ବିହାର ॥

ଦ୍ୱାଦଶ ଅକ୍ଷରଟି ଏହି । ନମଃ ବାସୁଦେବାୟ କହି ॥
ସ୍ୱାହାସ୍ୱଧା ଯେ ଚାରିକ୍ଷର । ସର୍ବ ମନ୍ତ୍ରରେ ଏହି ସାର ॥
ସର୍ବମନ୍ତ୍ରଙ୍କ ମୁଖେ ଏହି । ତୁ ଏବେ ଶୁଣ ମନଦେଇ ॥
ସହସ୍ର ଦଳରେ କମଳ । ଫୁଟିଣ ଅଛି ଢଳ ଢଳ ॥
ନୀଳ ଜଳଧର ଜଳାହିଁ । ଏମନ୍ତ ଜ୍ୟୋତି ସେ ଦିଶଇ ॥
ବାମେଣ ଚନ୍ଦ୍ରାବଳୀ ତହିଁ । ଦକ୍ଷିଣେ ରାଧା ଯେ ଅଛଇ ॥
ବ୍ରହ୍ମାର ଆସନଟି ଏହି । ନିରକ୍ତ ବୋଲି ତାକୁ କହି ॥
ପାଞ୍ଚଶ ପାଖୁଡ଼ାର ଶିଖେ । ଢଳ ଯେ ଢଳ ଜ୍ୟୋତି ଦିଶେ ॥
ତାହାର ମଧ୍ୟେ ଭେଦି ଅଛି । ବ୍ରହ୍ମ ଯେ ନାଡ଼ରେ କଣ୍ଠିଛି ॥
ତିନି ଯେ ଶାସନରେ ତହିଁ । ପାଣି ଯେ ଦେଉଛି ବଳାଇ ॥
ବାର ଯେ ବାର କଳାରେଣ । ବାହାର ମରୁତ ହୋଇଣ ॥
ଯେଉଁଠାବରୁ ବ୍ରହ୍ମ ନାଡ଼ । ହୋଇଣ ଅଛଇ ନିବାଡ଼ ॥
ମହାଯୋଗୀଙ୍କ ଗମ୍ୟ ନାହିଁ । ଅଗମ୍ୟ ଭୂମି ସେ ଅଟଇ ॥
ବସ୍ତ୍ର ଚରଣ ଧରି କହି । ଶୁଣିବା ହୋଇବ ଗୋସାଇଁ ॥
ଗାଈର ଚାରି ପାଦ କହି । ନାସା କର୍ଣ୍ଣ ଚକ୍ଷୁ ମୁଖହିଁ ॥
ଲଲାଟ ଲାଞ୍ଜ ଅଛି ହୋଇ । କେବଣ ଦେବତା ସେ ତହିଁ ॥
ଗାଈର ବର୍ଣ୍ଣ ସେ କେମନ୍ତ । ବିଚାରି କହିବା ତଦନ୍ତ ॥
ସଂଶୟ ନ ରଖିବା ଆଉ । ଭୋ ପ୍ରଭୁ ଫେଡ଼ି ଆଜ୍ଞା ହେଉ ॥
କେଉଁ ଅକ୍ଷରେ ଗାଈ ଛନ୍ଦି । କେଉଁ ଅକ୍ଷରେ ବସା ବାନ୍ଧି ॥
କେଉଁ ଅକ୍ଷର ଅଟେ ଖୁଣ୍ଟ । ପଘା ଲଗାଇବାରେ ଆଣ୍ଟ ॥
କେଉଁ ଦିଗରେ ଗାଈ ଯାଇ । କେବଣ ଦିଗରେ ଚଳଇ ॥
କେଉଁ ତୁଠରେ ପାଣି ଖାଇ । କହିବା ହୋଇବ ବୁଝାଇ ॥
କେଉଁ ଠାବରେ ଗାଈ ଗୋଷ୍ଠ । କେମନ୍ତେ କ୍ଷୀର ଯେ ସ୍ରବିତ ॥
ଏକା ଦିନକେ ସେ ତ ପୁଣ । ବସ୍ତା ପ୍ରସବେ ଗାଈ ଜାଣ ॥
ମାଈ କେତେ ଅଣ୍ଡିରା କେତେ । ବୁଝାଇ କହିଦେବା ତୋତେ ॥
ତୁମ୍ଭେ ଯେ ପରମ ମୋ ଗୁରୁ । ସଂଶୟ ଫେଡ଼ିବା ମନରୁ ॥
ଗାଈକି କେବଣ ଗୋପାଳ । କେଉଁ ଠାବରେ ସେ ଗୁହାଳ ॥
ଗାଈ ସେ କେବଣ ମୁଖରେ । ଆହାର କରେ ନିରନ୍ତରେ ॥
ବସ୍ତର ମୁଖ ଗୁରୁ ଚାହିଁ । ବୋଇଲେ ବାବୁ ଶୁଣ ତୁହି ॥

ଗାଈର ବିଷୟ ଏମନ୍ତ । କହିବା ଶୁଣ ଦେଇ ଚିତ୍ତ ॥
ଗାଈ ଯେ ଗାୟତ୍ରୀ ହୋ ଜାଣ । ଚବିଶ ଅକ୍ଷର ନିର୍ବାଣ ॥
ଯେମନ୍ତ ପ୍ରକାରେ ଯେ ପୁଣ । ଗାଈର ଶରୀର ପ୍ରମାଣ ॥
ଗାଈ ଯେ ଚାରିଟି ପାଦର । ଅଟଇ ଚାରି ଯେ ଅକ୍ଷର ॥
ସିଦ୍ଧି ଯେ ରସ୍ତୁ ଚାରିକ୍ଷର । ପାଦ ସେ ହୋଇଛି ନିକର ॥
ତତ୍‌ସ ସେ ଦୁଇ ମୁଖ କହି । ବିନ୍ଦୁ ଯେ କର୍ଣ୍ଣ ସେ ଅଟଇ ॥
ବର ନାସା ଚକ୍ଷୁ ଭ୍ରୁଗୁଳ । ମୁଖଟି ବେଦକନ୍ୟା ଚଳ ॥
ବକସ୍ଥଳ ଯେ ଆଦିଲଇଁ । ସତ୍ୟ କମଳେ ପ୍ରପୁଚ୍ଛଇଁ ॥
ମହୀ ବୋଲି ବେନି ପଞ୍ଜରା । ଧିୟୋସେ ଦଣ୍ଡା ମଝିଶିରା ॥
ଯୋନ ଯେ ଲାଭି ପ୍ରାଚୋସ୍ତନ । ଦୟାତ୍ ରୂପମିବନ୍ଧ ପୁଣ ॥
ଅମନ ଅଟଇ ଯେ ଖୁଣ୍ଟ । ଜ୍ୟୋତି ସେ ପଘା ଅଟେ ଆଣ୍ଟ ॥
ତହିଁରେ ଗାଈକି ଛନ୍ଦିଛି । ଶୁଣ ହେ ଶୁଦ୍ଧ ଚିତ୍ତେ ବସି ॥
ମୃତ୍ୟୁ ଅକ୍ଷର ଉଟୀ ଗାଈ । ଅମନରୁ ଯେ ଉଦେ ହୋଇ ॥
ଶରୀର ତାହାର ହୋ ବତ୍ସ । ତିନି ଯେ ଭୁବନ ପ୍ରତ୍ୟକ୍ଷ ॥
ବନ୍ଧା ଯେ ଶରୀର ତାହାର । ସନ୍ଧ୍ୟା ମଧ୍ୟାହ୍ନ ତିନିକାଳ ॥
ଉଦ୍ଧାନ ସାୟଂରେ ନିତ୍ୟହିଁ । ବାହାର ହୁଅଇ ସେ ଗାଈ ॥
ଏକା ଦିନକେ ଗାଈ ପୁଣ । ଦ୍ୱାଦଶ ବିଆଇ ହୋ ଶୁଣ ॥
ପର ଯେ ରଜସ ଶବଦ । ସଙ୍ଗତେ ଘେନି କରେ ନାଦ ॥
ଭ୍ରୁରୁ ଯେ ଭବ ଚାରିମାଈ । ଶୁଣ ହୋ ବତ୍ସ ମନଦେଇ ॥
ଅଷ୍ଟାଙ୍ଗ ଯୋଗ ଭିତରେଣ । ଉତ୍ପତ୍ତି ପ୍ରଳୟ ଯେ ମନ ॥
ବ୍ରହ୍ମ ଯେ ଗାୟତ୍ରୀ ଅଟଇ । ଜୀବ ସ୍ୱରୂପ ସେ ବୋଲାଇ ॥
ଭୂରୁ ଯେ ଭବ ଲତା ପୁଣ । ଗୋପ୍ୟ ହୋଇ ଅକ୍ଷରେଣ ॥
ବ୍ରହ୍ମା ଯେ ବିଷ୍ଣୁ ଶିବ ତହିଁ । ତ୍ରିବିଧ ପ୍ରକାରେ ସେ ହୋଇ ॥
ଗାଈ ତହିଁରେ ନିତ୍ୟ ଗାଈ । ଗୋପ୍ୟେ ଚରଇ ସେହି ଭୂଇଁ ॥
ଚଉଷଠୀ ଯେ ସେ ଅକ୍ଷର । ଗାଈର ଅଟଇ ଶରୀର ॥
ପଚାଶ ଗାଈ ଅଙ୍ଗ ନାଶ । ଯହିଁରେ ହୋଇଛି ପ୍ରକାଶ ॥
ଅଣଚାଶରେ ଆତଯାତ । ହୋଇଣ ଅଛି ଶୁଣ ସୁତ ॥
ତ୍ରିକୂଟ ସ୍ଥାନେ ସ୍ଥାନ ହୋଇ । ତହିଁରେ ପ୍ରବେଶ ହୁଅଇ ॥
ଗାଈ ଯେ ଚାରି ଦିଗେ ଥାଇ । ଦିଗ ଯେ ବାରିଣ ଚରଇ ॥

ଆକାଶ ଗଙ୍ଗାରୁଟି ଜାଣି । ଗାଈ ସେ ଖାଉଅଛି ପାଣି ॥
ନିତି ସେ ହୁଡ଼ାର ଉପରେ । ଗୋଷ୍ଠ ସେ କରିଛି ନିର୍ଭରେ ॥
ପଘାକୁ ଧରିଣ ସେ ଗାଈ । ଦେଖ ରହିଛି ହୋ ତନୟୀ ॥
ତୃଣର ଅଗ୍ରୁ କ୍ଷୀର ଉଦେ । ପଘାରୁ ହୋଇ ଚାରି ଭାଗେ ॥
ମଳ ଯେ ମୂତ୍ର ଚାରି ଜାଣ । ଜଳ କ୍ଷୀର ସେହି ଘେନିଣ ॥
କ୍ଷୀର ଯେ ହୋଇଅଛି ଜାତ । ଶିଶିର ତୃଣରୁ ସମ୍ଭୂତ ॥
ପଘା ଧରିବା ଗୁଣରୁହିଁ । ଏମାନ ଆତଯାତ ହୋଇ ॥
କ୍ଷୀର ଭିତରୁ ସେ ଯେମନ୍ତ । ଲବଣୀ ହୋଇଅଛି ଜାତ ॥
ଏହି ସେହି ମତି ହୋଇଣ । ହେଉଣ ଅଛି ବସ୍ତ୍ର ଶୁଣ ॥
ଅନୁଭବରେ ଥାଇ ଗାଈ । ଗୁହାଳ ଶୟଳ ସେ ପାଇଁ ॥
ନିତ୍ୟେ ସେ ରହି ତହିଁ ଚରେ । ଏ ସେ ଅମନ ମନ୍ଦିରରେ ॥
ଆଠ ଯେ ତ୍ରିବେଣୀ ସେ ବିଧି । ଚବିଶ ହୋଇଅଛି ସିଦ୍ଧି ॥
ଘୋଷି ଭାସନ୍ତି ସେ ତହିଁର । ତୁଲ ସେ ହୋଇବ ଅକ୍ଷର ॥
ଗାଈ ସେ ସରସ୍ୱତୀ ସାର । ସାବିତ୍ରୀ ନାମଟି ଯାହାର ॥
ଓହ ଯେ ଭବସୋହ ହୋଇ । ମୋହ ଜଳ ଯେ ସେତୁ ତହିଁ ॥
ଶ୍ରୀବତ୍ସ ଗୋପାଳ ହୋ ତହିଁ । ଗାଈକି ଜଗିଣ ଅଛଇ ॥
ପଞ୍ଚ ଯେ ବର୍ଣ୍ଣ ଗାଈ ଠୂଳ । ହୋଇ ରହିଛି ତା ଶରୀର ॥
ଗାଈ ଛଡ଼ା ମୁଖରେ ଖାଇ । ଗିରି କ୍ରୋଟରେ ଗୁହାଳଇଁ ॥
ଇନ୍ଦୁ ଖୁରାଟି ଯାହା କହି । ଅବନାରୁ ଜାତ ଅଟଇ ॥
ସେ ଆତଯାତ କରୁଥାଇ । ସଂସାର ଯାକରେ ଚରଇ ॥
ତେଣୁଟି ସାବିତ୍ରୀ ଶରୀର । ବ୍ରହ୍ମ ଯେ ଭାଗର ବିଚାର ॥
ତୁ ଯେଣୁ ମୋହରଟି ପ୍ରାଣ । ମୋତେ ଯେ ଦେଲୁ ତନମନ ॥
ତେଣୁ କରି ମୁଁ କହିଲଇଁ । ଏ ଯେ ନିର୍ଗମ ଅଟେ ଭୂଇଁ ॥
ମୋହର ଅବତାରମାନ । ଅଂଶା ଅଂଶୁ ହୁଅନ୍ତି ଜନମ ॥
ଖେଳିଣ ଲୀଳା ସେ କରଇ । ସର୍ବଠାବରେ ଥାଇଁ ରହି ॥
ଆନନ୍ଦ ହୋଇ ବଛା ମନ । ପୁଣ ପୁଣ ସେ ପରିଣାମ ॥
ସଜ ଦଶ ପାଇଣ ତ୍ରିପୁଟି । ଭୋ ପ୍ରଭୁ ହୋଇଲଇଁ ଶାନ୍ତି ॥
ଆହୁରି କଥା ଏକ ଅଛି । ଫେଡ଼ିଣ କହ ମୋତେ କିଛି ॥
ଅବଧୂତର ଜନ୍ମଦୀକ୍ଷା । ଭୋ ଗୁରୁଦେବ କହ ଶିକ୍ଷା ॥

କେ କୁଳେ ଜନ୍ମ ସେହୁ ହୋଇ । ଦୀକ୍ଷା ପାଇଲେ କାହା ଠହିଁ ॥
ଚବିଶ ଗୁରୁଙ୍କର ଦୀକ୍ଷା । ଶୁଣିବି ବୋଲି ମୋର ଇଚ୍ଛା ॥
କେମନ୍ତ ପ୍ରକାରେ ସେ କହ । ମୋତେ ଦେଖାଇ ପ୍ରଭୁ ଦିଅ ॥
ଗୁରୁ କହନ୍ତି ବତ୍ସ ଶୁଣ । କହିବା ଅବଧୂତ ଜନ୍ମ ॥
ଚବିଶ ଗୁରୁଙ୍କର ବାଣୀ । ଶୁଣିଲେ ମୋକ୍ଷ ହେବୁ ପୁଣି ॥
ଏବେ ଦେହରେ ତୋର ସୁତ । ଶୁଣ କହିବା ସେ ଯେମନ୍ତ ॥
ମୋ ଅବତାର ମାନ କହି । ପଛେ କହିବା ଗୁରୁ ଫେଇ ॥
ଏଇ ପଥେଣ ଘେନି ମନ । ଅବଧୂତ ଯେ ପାଏ ଜ୍ଞାନ ॥
ପିଣ୍ଡ ବ୍ରହ୍ମାଣ୍ଡ ସେ ବୁଝିଲେ । ବୁଝିଣ ମୋକ୍ଷ ଗତି ହେଲେ ॥
ଅବତାର ଯେ ଆଗ କହି । ଶୁଣ ହେ ବତ୍ସ ମନ ଦେଇ ॥
ମୋ ଦଶ ଅବତାରମାନି । କହଇ ଶୁଣ ଦେଇ ମନ ॥
ପଛେଣ ଚଉବିଂଶ ଗୁରୁ । କହିବା ଆଗେ ଏହି ସରୁ ॥
ଯେମନ୍ତେ ଅବତାର ହୋଇ । ଶୁଣ ସୁଚିତ୍ତେ ବତ୍ସ ତୁହି ॥
ହେ ବତ୍ସ ହେତୁ ଦେଇ ଶୁଣ । କହିବା ଜନ୍ମର ଯେ ଗୁଣ ॥
ଜନ୍ମ ଯେମନ୍ତେ ହେଲେ ସେହି । ଦଶ ଯେ ଅବତାର ହୋଇ ॥
ଗୁରୁ କହନ୍ତି ବତ୍ସ ଠାରି । କହୁଣଛନ୍ତି ସ୍ନେହ କରି ॥
କାଳନ୍ଦୀ ନଦୀରେ ହେ ମୀନ । ହୋଇଲେ ଦେଖ ସ୍ୱରୂପେଣ ॥
ଶିଶୁ ବେଦ ବୋଲିଣ ଯେହି । ଜିହ୍ୱା ଅଟଇ ସୁତ ସେହି ॥
କୂର୍ମ ଯେ ଚାରିପାଦ ଯେହି । ଚାରି ଯେ ପାଦେ ଅଟେ ସେହି ॥
ବଚନ ଯେତି କୂର୍ମ ଜାଣ । ହେ ବତ୍ସ ସୁଚିତ୍ତେଣ ଶୁଣ ॥
ବରାହ ମୂର୍ତ୍ତି ଅଟେ ସେହି । ତୋ ଦନ୍ତ ଅଗ୍ରକୁଟି କହି ॥
ନୃସିଂହ ଜାଣ ହୋ ନାସିକା । ତିନି ଯେ ଭୁବନକୁ ଶାଖା ॥
ବାମନ କର୍ଣ୍ଣକୁ ହେ କହି । ଶୁଣ ହୋ ବତ୍ସ ମନ ଦେଇ ॥
ବାଇକି ଜାଣି ମୁଁ ତୋହର । ପର୍ଶୁରାମ ଯେ ଅବତାର ॥
ଲୋଚନ ଅଟେ ଏହୁ ପୁଣ । ଶ୍ରୀରାମ ରୂପଟି ପ୍ରମାଣ ॥
କହ୍ନା ଯେ ଅବତାର ଯେହୁ । ମୁଖମଣ୍ଡଳ ଅଟେ ସେହୁ ॥
ବଉଦ୍ଧ ଦେହୀ ତୋର ହୋଇ । ଶୂନ୍ୟେ ଯେ ସ୍ୱରୂପ ବୋଲାଇ ॥
ବିନ୍ଦୁ ଯେ କଳଙ୍କୀ ଯେ ଜାଣ । ଦଶ ଯେ ରୂପ ଏ ପ୍ରମାଣ ॥
ଏବେ ଅବଧୂତ ଜନମ । ତୋ ଆଗେ କହିବା ହୋ ଜାଣ ॥

ବାଙ୍କି ଗଡ଼ରେ ଏକ ରାଜା । ସୁଖେ ପାଳଇ ଜନ ପ୍ରଜା ॥
ତାହାର ନାମ ଶୁକ ସେନ । ତା କୋଳେ ଏକଇ ନନ୍ଦନ ॥
ଏମନ୍ତେ କିଛି ଦିନ ଅନ୍ତେ । ଜାଣି ଓଡ଼ିଶା ନରନାଥେ ॥
ବଳେ ବାହିଲା ସେହୁ ପୁର । ମାଇଲା ଶୁକ ନୃପବର ॥
ତାହାର ଏକଇ ନନ୍ଦନ । ତା ନାମ ଅଟେ କୃତସେନ ॥
ଜୀବନ ବିକଳେ ପଳାଇ । ପଶିଲା ଆନ ରାଜ୍ୟେ ଯାଇ ॥
ସେ ରାଜ୍ୟେ ଏକଇ ଗୋପାଳ । ଅନେକ ଧନରତ୍ନ ତା'ର ॥
ତାହାର କୋଳେ ପୁତ୍ର ନାହିଁ । ଅପୁତ୍ରୀ ହୋଇଣ ଅଛଇ ॥
ସୁବଳ ନାମ ଅଟେ ତାର । ଦୋହିତା ଏକଇ ତାହାର ॥
ଦେଖି ଗୋପାଳ କୃତସେନ । ଆନନ୍ଦ କଲା ତାର ମନ ॥
ଚାହିଁଲା କୁମର ବଦନ । ତୁ ଅଟୁ କାହାର ନନ୍ଦନ ॥
ଅତି ସୁନ୍ଦର ମନୋହର । ଦେଖିଲା ଦିବ୍ୟ କଳେବର ॥
ରୂପକୁ ପଟାନ୍ତର ନାହିଁ । ଦେଖି ଗୋପାଳ ବିଚାରଇ ॥
କେବଣ ରାଜାର ନନ୍ଦନ । କାହୁଁ ଆଇଲା ମୋ ଭୁବନ ॥
ଏସନେ ପଞ୍ଚ ସମ୍ବତ୍ସର । ଅଟଇ ରାଜାର କୁମର ॥
ସ୍ୱଭାବେ ବାଳକ ତା ମତି । ମୁଖେ ତା ଚନ୍ଦ୍ର ଜ୍ୟୋତି କାନ୍ତି ॥
ଦେଖି ଗୋପାଳ ପଚାରଇ । କହ ହୋ ବାଳୁତ ତନୟୀ ॥
କେବଣ ଦେଶରୁ ଅଇଲୁ । କେ ମାତା ପିତା ନ କହିଲୁ ॥
କେଣିକି କରୁଛୁ ଗମନ । ପୁଛିଲେ ନ କହୁ ବଚନ ॥
ସ୍ୱଭାବେ ବାଳକ ତନୟୀ । ପୁଛିଲେ ବଚନ ନ କହି ॥
ଶୁଣିଣ ବାଳକ ବୋଲଇ । ଶୁଣ ହୋ ବାବୁ ମନ ଦେଇ ॥
ମୁଁ ଅଟେ ରାଜାର କୁମର । ବିଦେଶୀ ରାଜା କଲା କ୍ରୁର ॥
ମୋ ପିତା ମାତାକୁ ମାଇଲା । ସେ ରାଜ୍ୟେ ରାଜା ସେହୁ ହେଲା ॥
ଜୀବନ ବିକଳରେ ମୁହିଁ । ପଳାଇ ଅଇଲି ବପାଇ ॥
ଯେ ଅବା ରଖିବଇଁ ମୋତେ । ତା ଘରେ ରହିବି ଯୁଗତେ ॥
ତା ଶୁଣି ସୁବଳ ଗୋପାଳ । ଆନନ୍ଦ ହୋଇ କଲା କୋଳ ॥
ବୋଲଇ ଆସ ଆମ୍ଭ ଘର । ହୋଇବୁ ଆମ୍ଭର କୁମର ॥
ଧର୍ମର ସୁତ ମୋର ହୋଇ । ଦୋହିତା ପ୍ରଦାନ ଦେବଇଁ ॥
ଏମନ୍ତ କହିଣ ଗୋପାଳ । କୋଳ କରିଣ ନେଲା ଘର ॥

ତାର ଘରଣୀ ପାଶେ ନେଇ । ଗୋପାଳ ଦେଲାକ ତନୟୀ ॥
ବୋଲଇ ଶୁଣ ଗୋପାଳୁଣୀ । ଏ ପୁତ୍ର ପାଳ ମନ ଜାଣି ॥
ଆମ୍ଭ ଦୁହିତା ବିଭା ଦେବା । ଆମ୍ଭର ଘରେ ଏ ରହିବା ॥
ଶୁଣିଣ ମନେଣ ହରଷ । ବଦନ ହରଷେ ପ୍ରକାଶ ॥
ପାଳଇ ଅତି ସ୍ନେହଭରେ । 'ଗୋପାଳ ତାହା ସଙ୍ଗତରେ ॥
ଏମନ୍ତେ କେତେ ଦିନ ଗଲା । ଦୋହିତା ବିଭା କରାଇଲା ॥
ଦୋହିତା ନାମ ସୁକୁମାରୀ । ସେ ସ୍ତିରୀ ଅଟଇ ଦୋଚାରୀ ॥
ପତି ଠାବରେ ସ୍ନେହ ନାହିଁ । ବିଟପେ ଦିନ କାଳ ନେଇ ॥
ଏମନ୍ତେ ନେଇ ଦିନ କାଳ । ବୃଦ୍ଧ ସେ ହୋଇଲା ଗୋପାଳ ॥
ଏମନ୍ତେ କେତେ ସ୍ନେହ ତହିଁ । କଷ୍ଟେଣ ଗାବ ସେ ରଖଇ ॥
ଯେବଣ ଆହାର କରଇ । ପତ୍ନୀ ସେ ସୁଖେ ନ ଦିଅଇ ॥
ଯେବଣ ଗ୍ରାସ ଦେଇ ପୁଣ । ଅକାଳେ କରଇ ଭୋଜନ ॥
ଏମନ୍ତ ଏକ ଦିନ କର । ଅନ୍ନ ଘେନିଣ ପତ୍ନୀ ତା'ର ॥
ଦିନ ଅଛି ଯେ ଦୁଇ ଘଡ଼ି । ଅନ୍ନ ଘେନିଣ ତା'ର ନାରୀ ॥
ଦେଖିଣ ବୋଲଇ ଉତ୍ତର । ତୁ ଅଟୁ ବଡ଼ ଦୁଷ୍ଟ ନର ॥
ବେଳ କାଳରେ ଅନ୍ନ ମୋତେ । ନ ଦେଉ ଆଉ କଦାଚିତେ ॥
ମୋ ପ୍ରାଣ ଯିବାକୁ ଅନାଉ । କି ଗତି ଲଭିବୁ ତୁ ଆଉ ॥
ଶୁଣି କୁମାରୀ ପରକ୍ଳି । ପିନ୍ଧିଲା ବସନକୁ ଚିରି ॥
ଗଳାରୁ ମାଳି ଛିଣ୍ଡାଇଲା । ନଖ ଘାତରେ ବିଦାରିଲା ॥
ଭୂମିରେ ହୋଇଲା କଚାଡ଼ି । ଆପଣା ଛାଏଁ ମୁଣ୍ଡ କୋଡ଼ି ॥
ଡାକ ପାଡ଼ିଣ ବେଗେ ଗଲା । ପିତାମାତାଙ୍କ ଆଗେ ହେଲା ॥
କାହୁଁ ଗୋଟାଏ ଆଣି ପୁଣ । ବିଭା ଯେ କଲ ଅକାରଣ ॥
ମୋର ଜୀବନ ନେଉଥିଲା । ଦଇବ ମତେ ଗୋ ରଖିଲା ॥
ଦେଖ ଗୋ ମୋର କଳେବର । ରୁଧିର ହୋଇଛି ବାହାର ॥
ଏମନ୍ତେ କହି ସେ କୁମାରୀ । କାନ୍ଦଇ ମାତା ପିତା ବୋଲି ॥
କାନ୍ଦଇ ହୋଇ ଉଚ୍ଚସ୍ୱର । ଶୁଣି କ୍ରୋଧିତ ତା ପିଅର ॥
କ୍ରୋଧରେ ହୋଇ ଜରଜର । ବୋଲଇ ଦୋଷ ନାହିଁ ମୋର ॥
ଏମନ୍ତ କହିଣ ବାହାର । କଣ୍ଟା କଟୁରୀ ଘେନି କର ॥
ଦେଖିଲା କୃତସେନ ଯାଇ । ଅନ୍ନ ଭୁଞ୍ଜୁଣ ଅଛି ସେହି ॥

ସେଠାରେ ହୋଇଲା ତୁରିତ । କ୍ରୋଧରେ ହୋଇଅଛି ମତ୍ତ
ଭୁଞ୍ଜିଲାଠାରେ ହାତ ଗୋଡ଼ । ହାଣିଲା ସେ ମୂର୍ଖ ଗଉଡ଼ ॥
ହାଣିଣ ପାଦ ଘେନିଗଲା । ଏମନ୍ତେ ରବି ଅସ୍ତ ଗଲା ॥
ବିକଳ କେ ପାରିବ ସହି । ଚଳିବା ସଖ୍ୟ ଆଉ ନାହିଁ ॥
ବସିଲା ଠାବରେ ବିକଳ । ଭୂମିରେ ମାରଇ କପାଳ ॥
ବୋଲଇ ଧିକ ମୋ ଜୀବନ । ମୋ ଜନ୍ମ ହେଲା ଅକାରଣ ॥
ମୋ ମାତା ପିତା ଗଲେ କାହିଁ । ମୁଁ ଜାତି ଭ୍ରଷ୍ଟେ ଥିଲି୍ ରହି ॥
ହେ ବିହି ଏତେ କୃତ୍ୟ କଲୁ । ଏ ଦୁଃଖେ ଏତେ କଷ୍ଟ ଦେଲୁ ॥
ମୁଁ ଏବେ ହୋଇଛି ଅନାଥ । ଭୋ ଧର୍ମ କରିବି କେମନ୍ତ ॥
ମୋତେ ତ ବୁଦ୍ଧି ଦିଶୁନାହିଁ । ଭୋ ଧର୍ମ କି କରିବି ମୁହିଁ ॥
ଏମନ୍ତେ କହନ୍ତେଣ ତହିଁ । ରଜନୀ ଅର୍ଦ୍ଧ ଆସି ହୋଇ ॥
ଏମନ୍ତ ସମୟରେ ଦେଖ । ବିଜୟେ କରିଛନ୍ତି ଗୋର୍ଖ ॥
ଶୁଣିଲେ ତାହାର ବିକଳ । ବିଜୟେ କଲେ ତପୀବର ॥
ପ୍ରବେଶ ହୋଇଲେ ସେ ଯାଇଁ । ବୋଇଲେ ଏ କିସ ଅଟଇ ॥
ଗୋରେଖ ପୁଚ୍ଛନ୍ତି ବଚନ । କିସ ଏ ବିପରୀତ ମାନ ॥
ଶୁଣିଣ କୃତସେନ ତହିଁ । ବୋଲଇ ଶୁଣିମା ଗୋସାଇଁ ॥
କିସ ହୋଇବ ବୋଲିଲେଣ । ଯାହା ଦେଖୁଛ ପ୍ରତ୍ୟକ୍ଷେଣ ॥
ଦେଖିଣ ତାହାର ବିକଳ । ଦୟା ବସିଲା ତପୀବର ॥
ଝିଙ୍କର ସାତଖଣ୍ଡ ଆଣି । ଦେଲେ ତାହାକୁ ତପୀମଣି ॥
ତା'ପରେ ତା'ପରେ ବସାଇ । ଠୁଳ କରିଲେ ମୁନିସାଇଁ ॥
ଯେବଣ ଦିନ ହେବ ସିଦ୍ଧି । ଆସିଣ ମିଳିବୁ ଅବଧି ॥
ଏମନ୍ତ କହୁଁ କହୁଁ ଗଲେ । ସେ କୃତସେନ ସାଧି କଲେ ॥
ଏମନ୍ତେ କେତେଦିନ ଅନ୍ତେ । ସସିଦ୍ଧ ହୋଇଲା ଯୁକତେ ॥
ଅନେକ କଷ୍ଟ ସାଧି କରି । ପ୍ରସନ୍ନ ହେଲେ ତପଚାରୀ ॥
ପ୍ରସନ୍ନ ହୋଇ ଆଜ୍ଞା ଦେଲେ । ଅଷ୍ଟାଙ୍ଗ ଯୋଗ ଭେଦାଇଲେ ॥
ଅନହତ ଅକ୍ଷର କହି । ଦୃଷ୍ଟି ଗୋଚରେଣ ଦେଖାଇ ॥
ଛତ୍ର ଯେ ଚକ୍ର ଭେଦାଇଲେ । ଉପରେ ଗୁରୁ ନାମ ଦେଲେ ॥
ସେ ନାମ ଭେଦାଇଣ କହି । ଏ ହେତୁ ସାଧି କର ତୁହି ॥
ଏମନ୍ତେ କହି ଗୁରୁ ନେଲେ । ବଟମୂଳରେ ବସାଇଲେ ॥

ବୋଇଲେ ବସ ଏହିଠାରେ । ଅମନ ମନ୍ଦିର ଉପରେ ॥
ହେତୁ ରଖିଣ ଥିବୁ ତୁହି । ଅବ୍ରହ୍ମ ବ୍ରହ୍ମକୁ ଭେଟାଇ ॥
ସାଧ୍ୟ ହୋଇବ ତୋ ବଚନ । ଲଭିବୁ ନିରାକାର ସ୍ଥାନ ॥
ସୂର୍ଯ୍ୟକୁ ଚନ୍ଦ୍ରରେ ଭେଟାଅ । ମନୁ ସଂଶୟ ତୋର ଫେଅ ॥
ଜୀବପରମ ଏକ କରି । ସାଧିବୁ ଏକ ଏକ କରି ॥
ସାଧନା ଦୃଢ଼ କର ତୁହି । ମନକୁ ନିମଗ୍ନେଣ ଥୋଇ ॥
ଅମନ ହେତୁ ରଖ ତୁହି । ଦେଖିବୁ କେମନ୍ତ ଦିଶଇ ॥
ଯେ ରୂପ ଦେଖିବୁ ନୟନ । ସେଟି ଅନାଦି ଭଗବାନ ॥
ଅରେଖ ଅବର୍ଣ୍ଣ ଅଟଇ । ଅବର୍ଣ୍ଣ ବର୍ଣ୍ଣ ସେ ନୁହଇ ॥
ଦେଖ ସକଳ ଅଛି ପୂରି । ସ୍ଥାବରୁ କୀଟ ଯାଏ ସରି ॥
ଦେଖ ହୋ ଦେଖ ତୋ ନୟନେ । କ୍ଷୀର ସମୁଦ୍ରେ ଶଶୀ ଯେହ୍ନେ ॥
କ୍ଷୀର ସମୁଦ୍ର ତୋ ନୟନ । ତହୁଁ ଚନ୍ଦ୍ରମା ଉଦେ ପୁଣ ॥
ଉଦେ ହୋଇଣ ଗଗନର । ନିଶ୍ଚଳ ଆସନ ତାହାର ॥
ସମସ୍ତ ଶସ୍ୟ ବୀଜ ଘେନି । ଅପର୍ଣ୍ଣା ନାମ ତେଣୁ ଭଣି ॥
ସମସ୍ତ ଜୀବଜନ୍ତୁଙ୍କର । ଏହିଟି ଅଟଇ ଠାକୁର ॥
ଦେଖ ସବୁରି ଏକ ପ୍ରାଣ । କେବେହେଁ ନୁହଇଁ ଅଭିନ୍ନ ॥
ଏବେ କହିବା ଆନ ରୀତି । ସେ ଅବଧୂତ ଜ୍ଞାନଖ୍ୟାତି ॥
ସେ ଜ୍ଞାନେ ମନ ନିରବଧି । ଦେଇଣ ରଖିବୁ ଅବଧି ॥
ଶୁଣ କହିବା ଆନ ରସ । ଶୁଣିଲେ ପାପ ହେବ ଧ୍ୱଂସ ॥
ସେ ଅବଧୂତ ଜ୍ଞାନ ସାର । ଶୁଣିଲୁ ଶ୍ରବଣେ ତୋହର ॥
ତେଣୁ ସେ ଅବଧୂତ ନାମ । ଶୁଣିଲୁ ଜ୍ଞାନର ମରମ ॥
ଏବେ ତୁ ଶୁଣ ଦେଇ ମନ । ଯେ କ୍ଷୀର ସମୁଦ୍ର ଆସନ ॥
କ୍ଷୀର ସମୁଦ୍ରେ ଯାହା କହି । ଅକାର ଅକ୍ଷର ଅଟଇ ॥
ବିନ୍ଦୁ ହ୍ରଦଟି ଅଟେ ସେହି । ଆଦି ଯେ ଶକ୍ତି ବେଢ଼ିଛଇଁ ॥
ତହିଁରୁ ଚନ୍ଦ୍ରମା ଉତ୍ପତ୍ତି । ଈଶ୍ୱର ଶିରେ କଳା ସ୍ଥିତି ॥
ଯେଣୁ ଈଶ୍ୱର ଶିରେ ରହି । ଚନ୍ଦ୍ରମଉଳି ତେଣୁ ହୋଇ ॥
ତେଣୁ ଶଶାଙ୍କ ଶୃଙ୍ଗ ହୋଇ । ବନ୍ଧ୍ୟା ଯେ ଶରୀର ଅଟଇ ॥
ବନ୍ଧ୍ୟାର ତହୁଁ ସୁତ ଜାତ । ନାମ ପରମ ରୂପେ ଖ୍ୟାତ ॥
ଏବେ କହିବା ଆନ ରୀତି । ଶୁଣ ହେ ଅବଧୂତ ଖ୍ୟାତି ॥

ବ୍ରାହ୍ମଣ କ୍ଷେତ୍ରୀ ଅଂଶୁ ତୁହି । ଜନ୍ମିଲୁ କୃତସେନ ହୋଇ ॥
ଏବେ ହୋଇଲୁ ଅବଧୂତ । ତୋ ପୂର୍ବ ପାପ ହେଲା ମୁକ୍ତ ॥
ଏବେ ହେ ଅବଧୂତ ଦୀକ୍ଷା । ପାଇଲୁ କର ମନବାଞ୍ଛା ॥
ଆହୁରି କହିବା ବୁଝାଇ । ହେତୁ ମତିରେ ରଖ ତୁହି ॥
ତିନି ଯେ ଶୂନ୍ୟ ଯାହା କହି । ତୋହର ନୟନ ଅଟଇ ॥
ଧବଳ କ୍ଷୀରଟି ଅଟଇ । ଲବଣ ତାପରେ ଅଛଇ ॥
ତାପରେ ଘୃତ ଯେ ବୋଲାଇ । ତିନି ସମୁଦ୍ର ଏକାଠେଇଁ ॥
କ୍ଷୀରରୁ ସୋମ ହେଲା ଜାତ । ଶଶୀ ଚନ୍ଦ୍ରମା ନାମେ ଖ୍ୟାତ ॥
ଈଶ୍ୱର ନିରଞ୍ଜନ ଯେହି । ମାୟାକୁ ନାନାରୂପ ହୋଇ ॥
ଏଣୁ ତୁ ଏକ ମନ କର । ସଙ୍କଟ ଫିଟିବ ତୋହର ॥
ଏମନ୍ତ କହିଣ ଗୋ ରଖ । ଚଳିଲେ ଆତ୍ମାମନ ସୁଖ ॥
ଏମନ୍ତେ ତହିଁ ଅବଧୂତ । ବସି ସାଧିଲେ ମନସୂତ୍ର ॥
ଶୁଣ ହୋ ବତ୍ସ ମନଦେଇ । ଏବେ ଚବିଶ ଗୁରୁ କହି ॥
ତୋ ଦେହେ ବତାଇଣ ଦେବା । ମନୁ ସଂଶୟ ତୋ ଫେଡ଼ିବା ॥
ପୃଥ୍ୱୀର ପ୍ରାୟ ଏକ ହୋଇ । ଯେବେ ସହିଣ ପାରୁ ତୁହି ॥
କରମ କ୍ଷଣରେ ତୋର । କିଛିହିଁ ବିଚାର ନ କର ॥
ପବନ ପ୍ରାୟେକ ହୋଇବୁ । ପଶିଣ କାହିଁ ନ ମିଶିବୁ ॥
ଉଦାସ ଚିତ୍ତରେ ତୋହର । ଲଭିବୁ ଭଗତିର ସାର ॥
ଅଗ୍ନି ଯେସନେ ପରକାରେ । ସମସ୍ତ ଦହିର୍ଯେ ସେ କରେ ॥
ଏ ହେତୁ ଜାଣିଲେ ହେ ପୁଣ । ସର୍ବ କରିବୁ ଏକତ୍ୱେଣ ॥
ଆକାଶ ପ୍ରାୟେକ ତୋହର । ତୋ ଚିତ୍ତ ବୁଦ୍ଧି ସମ କର ॥
ସର୍ବ ଠାବରେ ପରିପୂର୍ଣ୍ଣ । ଯେବେ ହୋଇବୁ ତୁହି ପୁଣ ॥
ସୂର୍ଯ୍ୟ ଯେସନ ପରକାର । ମାୟା ଯେ ଘୋଟିଛି ସଂସାର ॥
ନାନା ଠାବରେ ପଡ଼ିଥାଇ । କେବେହେଁ ବିକାର ତା ନାହିଁ ॥
ଚନ୍ଦ୍ର ଯେସନ ପରକାରେ । କ୍ଷୟ ଯେ ବୃଦ୍ଧିକୁ ବିଚାରେ ॥
ବିଚାର ନ ଥାଇ ତାହାର । ସର୍ବେ ଏକତ୍ୱ ମତି ଯାର ॥
ସିନ୍ଧୁଟି ସମୁଦ୍ରକୁ କହି । ହୃଦୟ ତୋହର ଅଟଇ ॥
ଗଭୀର ହୃଦୟକୁ ଜାଣ । ସମୁଦ୍ର ଅଟଇ ପ୍ରମାଣ ॥
କୁଞ୍ଜର ମନଟି ଅଟଇ । କରଇ ବାଦୀ ସଂସାରଇ ॥

ଅମନେଣ ତୁ ବନ୍ଦୀ କର । ସୁଖେଣ ତର ମନ ଘୋର ॥
ସର୍ପ ଯେ ଅଟଇ ହୋ ବାଇ । ବିଳ ଯା କର୍ଣ୍ଣକୁ ସେ କହି ॥
ଅହଗୁଣ ଜ୍ଞାନ ଘୋଟରେ । କରଇ ବିଜ୍ଞାନ ଯୋଗରେ ॥
ଭ୍ରମର ଅଟଇ ନାସିକା । ବାସନା ବାଗୁଥାଏ ଏକା ॥
ସୁଗନ୍ଧ ଦୁର୍ଗନ୍ଧ ସବୁହିଁ । ଏକତ୍ୱ କରିଣ ମଣଇ ॥
କପୋତ କକ୍ଷଣାଟି କାମ । ଦୁଇ ପିଛଡ଼ା ସେ ବିଶ୍ରାମ ॥
ପତଙ୍ଗ ଲୋଭକୁଟି କହି । ଲୋଭେ ବନ୍ଧନ ଅଛି ହୋଇ ॥
ବୃକ୍ଷରେ ରୋମ ଆଦି ପୁଣ । ଦେଖ ହୋ ବତ୍ସ ତୋ ନୟନ ॥
ହାଣିଲେ ଦଣ୍ଡିଲେ ତାହାକୁ । କ୍ଷୋଭ ଯେ ନ ଘେନେ ମନକୁ ॥
ରାଗ ବୋଲିଣ କହି ଯାହା । ଅଜଗରଟି ବୋଲି ତାହାଁ ॥
ଅରାଗ ରୂପରେ ତାହାକୁ । ଘେନିବୁ ବତ୍ସ ତୋ ମନକୁ ॥
ମୀନଟି ଜିହ୍ୱା ତୁହି ଜାଣ । କହଇ ନିଷ୍ଠୁର ବଚନ ॥
ଜିହ୍ୱାକୁ ଜିଣିଲେ ତୋହର । ଜୟେ ପାଇବୁ ହୋ କୁମର ॥
ପିଙ୍ଗଳା ଅଜ୍ଞାନକୁ ଦେଖ । ଜ୍ଞାନରେ ପାଇଲା ସେ ସୁଖ ॥
ଭବ ଭୟକୁ ତେଜ୍ୟା କରି । ମୋକ୍ଷ ହୋଇଲା ବେଶ୍ୟାନାରୀ ॥
ମାୟାକୁ କହିଟି କୁରୁର । ସୁମନେ ଶୁଣ ହୋ ତୋହର ॥
କାୟାକୁ ନ ଚିହ୍ନିଣ ଜାଣ । ଭକ୍ଷିଲା ପର ମାଂସ ପୁଣ ॥
କୁମ୍ଭାରୁଆ ଯେ କୀଟ ଜାଣ । ଅଚେତନଟି ବତ୍ସ ଶୁଣ ॥
ଚେତିଲେ ଏ ରୂପ ତୋହର । ତେଜି ଯେ ରୂପଟି ନିକର ॥
ବିପ୍ର କନ୍ୟାଟି କ୍ରୋଧଜ୍ଞାନ । ଏକାଙ୍ଗେ ଘେନିଲା ସେ ଜାଣ ॥
କଙ୍କଣ ତାର ଇନ୍ଦ୍ରିଗଣ । ହସ୍ତୁ ଫେଡ଼ିଲା ପୁଣ ପୁଣ ॥
ମୃଗ ବୋଲିଣ ଆଶା ଜାଣ । ଦେଖୁ ଦେଖୁଣ ହୁଏ ଭ୍ରମ ॥
ନିଆଶା ଘେନିଲେ ତୋହର । ପରମ ଗତି ହେବ ପାର ॥
ଊର୍ଣ୍ଣନାଭିଟି କାଳେ କାଳେ । ପାତିଛି ବିଷମର ଜାଳେ ॥
ଛିଣ୍ଡାଇ ପାରୁ ଯେବେ ତୁହି । ନିର୍ମଳ ଚିତ୍ତେ ମନଦେଇ ॥
ସରକାରକ ଜୀବ ହୋଇ । ଶର ଯେ ହୃଦେ ବାନ୍ଧୁଥାଇ ॥
ପଶ୍ଚିମେ ବାନ୍ଧିଲେ ତୁ ଶର । ହେ ବତ୍ସ ହୋଇବୁ ଅମର ॥
ଆପ ଜୀବନ ବତ୍ସ ଶୁଣ । ପୂରି ରହିଛି ସର୍ବସ୍ଥାନ ॥
ଚଣ୍ଡାଳୁ ବ୍ରହ୍ମପାଏ ପୁଣ । ଦେବେ ସରସ ରସ ଜାଣ ॥

ମଧୁମାଛିଟି ତୃଷା କହି । କହିଲୁ ସୁତ ଶୁଣ ତୁହି ॥
ଏ ଯେ ଚବିଶ ଗୁରୁ ତୋର । ଦେହେ ବିଚାର ହେ କୁମର ॥
ଶୁଣି ସନ୍ତୋଷ ହୋଇ ଚିତ୍ତ । ଆନନ୍ଦେ ହୋଇ କୃତକୃତ୍ୟ ॥
ଅମୃତ ପୟୋଧିରେ ରସ । ପାଇଁ ମୋହର ମନ ତୋଷ ॥
ଶ୍ରୀଗୁରୁ ହରଷ ଭାବରେ । କହିଲେ ଜ୍ଞାନ ସୁଲଭରେ ॥
ତୋ ପରା ସାଧକକୁ ବୋଲି । ଏ ଜ୍ଞାନ ବୁଝାଇ କହିଲି ॥
ଦେବତା ସୁର ଯେ ଅସୁର । ନାଗ କିନ୍ନର ବିଦ୍ୟାଧର ॥
ଏମାନେ ନ ପାଇଲେ ଲେଶ । ମାୟାବନ୍ଧନ ମୋହପାଶ ॥
ହେତୁ କହଇ ମନ ଶୁଣ । ଏମନ୍ତ ଶ୍ରୀଗୁରୁ ବଚନ ॥
ଶ୍ରୀଗୁରୁ ବିନୁ ଅନ୍ୟ ନାହିଁ । ଯେବେ ଶ୍ରୀଗୁରୁ ଆଶ୍ରେ ହୋଇ ॥
ଫିଟଇ ସ୍ୱର୍ଗର ଅର୍ଗଳି । ଦିଗ ଦିଶଇ ସର୍ବ ଜଳି ॥
ଏମନ୍ତ ଶ୍ରୀଗୁରୁ ମହିମା । ପ୍ରତ୍ୟକ୍ଷେ ଅଟେ ହରବ୍ରହ୍ମା ॥
ସୁଜନେ ଗୁରୁ ପାଦେ ରସ । ଘୋର କଳ୍ମଷ ହେତୁ ଧ୍ୱଂସ ॥
କହଇ ଦୀନ ଯେ ଅନନ୍ତ । ଶ୍ରୀଗୁରୁ ପାଦେ ଦେଇ ଚିତ୍ତ ॥

ଇତି ଶ୍ରୀମଦ୍‌ଭାଗବତେ ହେତୁ ଉଦୟେ ଦଶ ଅବତାର ଅବଧୂତ
ଜନ୍ମହେତୁ ଚବିଶ ଗୁରୁ ଉପଦେଶ ବର୍ଣ୍ଣନେ ନାମ ଚତୁର୍ଥୋଧ୍ୟାୟଃ ।

## ପଞ୍ଚମ ଅଧ୍ୟାୟ

ନମଇ ଶ୍ରୀଗୁରୁଚରଣ । ଅନାଦି ସୁତ ନିରଞ୍ଜନ ॥
ସେ ପାଦପଦ୍ମେ କରି ଆଶ । ହେଲେ ଖଣ୍ଡିବ ମୋହ ଫାଶ ॥
ହେତୁ ଯେ ମନ ଆଗେ କହି । ଗୁରୁଟି ଆପେ ଭାବଗ୍ରାହୀ ॥
ଗୁରୁ ବୈଷ୍ଣବ କୃଷ୍ଣ ଏକ । ଶୁଣ ହେ ସୁଜ୍ଞାନୀ ବିବେକ ॥
ଏମନ୍ତ ଶ୍ରଗୁରୁଚରଣ । ବସ କହଇ ପରିଣାମ ॥
ଶୁଣିବା ହେବ ଗୁରୁବ୍ରହ୍ମ । ପତିତପାବନ ଯା ନାମ ॥
ପତିତ ହୋଇଥିଲା ଜୀବ । ପ୍ରତ୍ୟକ୍ଷେ କଲି ମୁହିଁ ଠାବ ॥
ତୁମ୍ଭେ ପତିତ ଉଦ୍ଧାରଣ । ଜୀବର ହିତ କଥା ଶୁଣ ॥
ମୋ ଜୀବ ଲଭିଲା କାରଣ । ପଶିଲି ଚରଣେ ଶରଣ ॥

ଅଭୟ ଚରଣକୁ ଧ୍ୟାୟି । ମୋ ଜୀବ ଗଲା ମୋକ୍ଷ ହୋଇ ॥
ଏ ପାଦପଦ୍ମେ କରି ଆଶ । ଖଣ୍ଡିଲି ମୋହ ଜଡ଼ ପାଶ ॥
ଏବେ ସୁକୃପା ମୋତେ କର । ସେ ଅବଧୂତର ବିଚାର ॥
କେମନ୍ତେ ହେତୁ ମତି କଲା । ପୁଣି କି ରୂପେ ନିସ୍ତରିଲା ॥
ସେ କଥା କହ ଗୁରୁଦେବ । ଶୁଣ ହେ ବସ ଏଥି ଭାବ ॥
ସେ ଅବଧୂତର କାହାଣୀ । ଶୁଣିଲେ ମୋକ୍ଷ ହେବୁ ପୁଣି ॥
ସେ ଅବଧୂତ ଯାହା କଲା । ପରମ ରହସ୍ୟର ଲୀଳା ॥
ରାତ୍ର ଦିବସ ତାର ନାହିଁ । ବସିଣ ଏକାକ୍ଷର ଧ୍ୟାୟି ॥
ପରମ ରସେ ଭୋଳ ହୋଇ । ତା ଦେହ ବୁଦ୍ଧି ନ ଜାଣଇ ॥
ବାସ ଅଟଇ ବଟ ମୂଳ । ଏମନ୍ତେ ଏକ ଦିନକର ॥
ସାୟଂ ଯେ କାଳରେ ପଥରେ । ଯାଉଣ ଅଛି ଏ କାଳରେ ॥
ବଳଦ ଗୋଟିଏ ନଦିଣ । ତରସ୍ତେ କରଇ ଗମନ ॥
ବନରେ ଭୟ ଯେ ତାହାର । ଯାଉଣ ଅଛି ଖରତର ॥
ବଳଦ ଫାଟି ଯାଉଅଛି । ଦେଖିଣ ଅବଧୂତ ପୁଚ୍ଛି ॥
ବୋଇଲେ ଶୁଣ ଆରେ ବାବୁ । ଗୋରୁଙ୍କୁ କିମ୍ପାଇଁ ତୁ ମାରୁ ॥
କିସ ଲଦିଛୁ ତୁ ସମ୍ପଦ । ଚାଲି ତ ନ ପାରେ ବଳଦ ॥
ଖର ଯେ ତର କରି କହି । ଅଙ୍ଗାର ଲଦନ ଯେ ହୋଇ ॥
ହେଉ ବୋଇଲେ ଅବଧୂତ । ସେକ୍ଷଣି ହୋଇଲା ନିବୃତ ॥
ବଳଦ ଘେନି ଚଳିଗଲା । ଆପଣା ମନ୍ଦିରେ ମିଳିଲା ॥
ଏମନ୍ତେ ରାତ୍ର ଶେଷ କାଳେ । ଲଦନ ଫେଡ଼ଇ ନିରୋଳେ ॥
ଦେଖିଣ ଆଚମ୍ବିତ ହେଲା । ବଦନୁ ବାକ୍ୟ ନ ସ୍ଫୁରିଲା ॥
ତା ନାରୀ ଦେଖିକରି କାନ୍ଦି । ଆକୁଳେ ବିଧାତାକୁ ନିନ୍ଦି ॥
ପୁଣି ବୋଲଇ ଅହୋ ବିହି । ଏମନ୍ତେ କଲୁ କିସ ପାଇଁ ॥
ମୋହର କର୍ମ ଅବା ମନ୍ଦ । ତହିଁକି ତୁହି କଲୁ ଦ୍ୱନ୍ଦ ॥
ତୁହି ବିଚାର ହିଁ ନ କଲୁ । ଦୁଃଖ ଉପରେ ଦୁଃଖ ଦେଲୁ ॥
ତୁହି ତ ଜାଣିବା ପୁରୁଷ । ଜାଣିଣ ମୁଖେ ଦେଲୁ ବିଷ ॥
ଏମନ୍ତ କହିଣ ବୋବାଳି । ଉଚ୍ଚେ ପାଡ଼ଇ ଘୋର ରଡ଼ି ॥
ତା ଶୁଣି ଲୋକେ ଯେ ଅଇଲେ । କିସ ବୋଲିଣ ପଚାରିଲେ ॥
ଭାଇ ଯେ ବନ୍ଧୁ ତାର ଯେତେ । ଶୁଣି ହୋଇଲେ ଆଚମ୍ବିତେ ॥

ବୋଇଲେ ବିହି ବାମ ହେଲା । ନୋହିଲେ ଏ କିମ୍ପା ହୋଇଲା ।।
ବିରି ଅଙ୍ଗାର ହୋଇ ଦେଖ । ଦେଖିଣ ଆଚମ୍ବିତ ଲୋକ ।।
ଏମନ୍ତ ଦେଖିଲା ତ ନାହିଁ । ଏକ ଆରକେ କୁହାକୁହି ।।
କେ ବୋଲେ ବିଧାତାର କୃତ । ନୋହିଲେ କାହିଁ ହୋ ଏମନ୍ତ ।।
କାନ୍ଦଇ ଭାଇ ବନ୍ଧୁ ଚାହିଁ । କି ବୁଦ୍ଧି କରିବି ହୋ ଭାଇ ।।
ଯେତେ କଷ୍ଟରେ ଏତେ ଧନ । କଷ୍ଟରେ ରଖିଥିଲି ପୁଣ ।।
ବିଧାତା ଏହା ହରି ନେଲା । ଯମ କି ପାଞ୍ଜି ହୋ ପୋଛିଲା ।।
ଏବେ ମୁଁ କି ବୁଦ୍ଧି କରିବି । କେମନ୍ତେ ମୋ ପ୍ରାଣ ରଖିବି ।।
ଏମନ୍ତେ ହୋଇଣ ବିକଳ । ଭୂମିରେ ମାରଇ କପାଳ ।।
ଏମନ୍ତେ ଦୁଃଖ ଅପ୍ରମିତ । ଦେଖିଲା ଲୋକ ଆଚମ୍ବିତ ।।
କ୍ରୋଧ ତା ନ ପାରଇ ଧରି । ଆକୁଳେ ବିଧାତାକୁ ଗାଳି ।।
ବୋଲଇ ଧିକ ବିହି ପୁଣ । ଧିକ ତୋ ଧିକ ତୋ ସର୍ଜନ ।।
କେତେ କହିବା ତା କଷଣ । ଦେଖିଲା ନାହିଁ ତ୍ରିଭୁବନ ।।
ଦଶ ଯେ ଗୋଟି ପ୍ରାଣୀ ତାର । ଅତି କଷ୍ଟରେ ଦିନକାଳ ।।
ବଞ୍ଚଇ ଅତି ଦୁଃଖିତରେ । ଭରସା ନାହିଁଟି ତାହାରେ ।।
ଏମନ୍ତେ ଗଲା କେତେବେଳ । ପ୍ରବେଶ ହେଲା ପ୍ରାତଃକାଳ ।।
ମନେ ତା ସୁମରି ଚିନ୍ତିଲା । ବିଧାତା ସାହାପକ୍ଷ ହେଲା ।।
କାଲି ଯେ ଆସିବାର ବେଳେ । ପୁରୁଷେ ବୃକ୍ଷମୂଳେ ଥିଲେ ।।
ସେ ମୋତେ ପୁଛିଲେ ବଚନ । ମୁଁ ମୂଢ଼ ମତ୍ତଗର୍ବେ ପୁଣ ।।
କିସ ତୁ ଲଦିଛୁ ସମ୍ପଦ । ଚାଲି ତ ନ ପାରେ ବଳଦ ।।
ମୁଁ ମୂଢ଼ ଜାଣି ନ ପାରିଲି । ଅଙ୍ଗାର ବୋଲିଣ ବୋଇଲି ।।
ହେଉ ବୋଇଲେ ସେହୁ ପୁଣ । ମୁଁ ତାହା ଶୁଣିଛି ଶ୍ରବଣ ।।
କି ଅବା ତାଙ୍କ କହିବାରୁ । କି ଅବା କର୍ମ ଫଳିବାରୁ ।।
ଏମନ୍ତ ହୋଇଅଛି ପୁଣ । କହଇ ପତ୍ନୀର ଆଗେଣ ।।
ପତ୍ନୀ ବୋଲଇ ଶୁଣ ତୁମ୍ଭେ । ଦେଖି ବଳଦ ଲଦ ଏବେ ।।
କି ଅବା ସୁପୁରୁଷ ସେହି । ବଚନ ସିଦ୍ଧ ତା ଅଟଇ ।।
ତାହାଙ୍କ କହିବାରୁ ଅବା । ଆମ୍ଭର ଦୁଃଖେ ବିନାଶିବା ।।
ଏମନ୍ତ ପତ୍ନୀଠାରୁ ଶୁଣି । ବଳଦ ଭିଡ଼େ ତତକ୍ଷଣି ।।
ବଳଦ ନଦିଣ ବାହାର । ଗମନ ଅନ୍ୟ ଯେ ପଥର ।।

ତାହାଙ୍କୁ ବାମ ଭାଗ କରି । ଫେରି ଅଇଲା ରାହାଗିରି ॥
କାଲି ଯେ ବେଳ ଅଛି ହୋଇ । ମନ ଚଞ୍ଚଳ ଚାଲେ ସେହି ॥
ବଳଦ ଛାଟି ଅଡ଼ାଉଛି । ବେଳ ଉଛୁର ହେଉଅଛି ॥
ତପସ୍ୱୀ ଦେଖି ତାକୁ ପୁଛି । ଭାରୀ ତ ବଳଦ ହୋଇଛି ॥
ଭାରୀ ତ ହୋଇଛି ବଳଦ । କି ଅବା ଲଦିଛୁ ସମ୍ପଦ ॥
ଏମନ୍ତ ଶୁଣି ରାହାଗିରି । ବୋଲଇ ଶୁଣ ତପଚାରୀ ॥
ସୁବର୍ଣ୍ଣ ବଳଦ ଲଦିଛି । ବେଳ ଉଛୁର ହେଉଅଛି ॥
ତେଣୁ ମୁଁ ତତପର ହୋଇ । ଯାଉଛି ଉଛୁର ହୁଅଇ ॥
ହେଉ ସୁବର୍ଣ୍ଣ ବୋଲି କହି । ଶୁଣିଣ ରାହାଗିରି ଯାଇ ॥
ମିଳିଲା ଯାଇ ନିଜ ଘର । ବଳଦେ ପାଳ ପାତି ତତ୍ପର ॥
ଦୀପ ଲଗାଇ ପତ୍ନୀ ତାର । ସତ୍ୱରେ ହୋଇଲା ବାହାର ॥
ଫିଟାଇ ଲଦନ ଦେଖିଲେ । ସୁବର୍ଣ୍ଣ ଖଣ୍ଡ ଖଣ୍ଡ ତୁଲେ ॥
ଦେଖି ବିଭୋଳ ହେଲା ମତି । ବୋଲଇ ଧନ୍ୟ ମହାପତି ॥
ବଚନ ସିଦ୍ଧ ଅଟେ ତୋର । ଦୁର୍ଗତି ଖଣ୍ଡିଲୁ ଆମ୍ଭର ॥
ଆମ୍ଭର ଦୁଃଖ ଦଶା ଦୂର । ତୋର ପ୍ରସନ୍ନେ ତପୀବର ॥
ଦୋଷ ଯେ କୃତ ଦେହୁ ଗଲା । ଜନମ ସୁଫଳ ହୋଇଲା ॥
ତାହାର ସୁଖ ଜନମିଲା । ଦରିଦ୍ର ଧନ ଯେ ଲଭିଲା ॥
ମନ ସନ୍ତୋଷ ତାର ହୋଇ । ଧନ ରଖିଲା ଘରେ ନେଇ ॥
ପତ୍ନୀ ହରଷ ଚିତ୍ତ ହୋଇ । ସ୍ୱାମୀକି ବଚନ ବୋଲଇ ॥
ବୋଲଇ ଶୁଣ ସ୍ୱାମୀବର । କିସ ସ୍ୱରୂପ ତପୀବର ॥
ପତ୍ନୀ ବଚନ ପତି ଶୁଣି । ବୋଲଇ ଶୁଣ ଯେ ତରୁଣୀ ॥
ଅପାର ଦିନୁ ଅଛି ରହି । ସେ ବୃକ୍ଷମୂଳେ ବିଶ୍ରାମଇ ॥
ହସ୍ତ ଯେ ପାଦ ଦୁଇ ନାହିଁ । ଆହାର ଭକ୍ଷି ନ ପାରଇ ॥
ମୁଖରେ ଦେଲେ ଗୋ ତାହାର । ତେବେ ସେ କରଇ ଆହାର ॥
ନୋହିଲେ ଉପବାସେ ଥାଇ । କାହାକୁ କିଛି ନ ବୋଲଇ ॥
ଏମନ୍ତେ ଅପାର ଦିନର । ଦେଖିଲା ଅଛି ବୃକ୍ଷମୂଳ ॥
ଝାଡ଼ ଜଙ୍ଗଲ କିଛି ନାହିଁ । ମହୁ ପଟ ପଦା ଅଟଇ ॥
ତ୍ରିପଥ ଦାଣ୍ଡ ଗୋ ଅଟଇ । ଏକଇ ବଟ ବୃକ୍ଷ ତହିଁ ॥
ସେ ବଟ ବୃକ୍ଷମୂଳେ ରହି । କର ଚରଣ ନ ଚଳଇ ॥

ଯେ ଅବା କିନିଷ ଏ ଦେଇ । ମୁଖରେ ଦେଲେଣ ଭକ୍ଷଇ ॥
ନୋହିଲେ ନ କରେ ଆହାର । ଏମନ୍ତେ ଥାଇ ବୃକ୍ଷମୂଳ ॥
ଏମନ୍ତ ଗୁଣ ଗୋ ତାହାର । ନ ଜାଣେ କେହି ଆନ ନର ॥
ଏମନ୍ତେ ରଜନୀ ପାହିଲା । ଏକ ଆରକେଣ ଶୁଭିଲା ॥
ତୁଣ୍ଡ କବାଟ ଗଲା ଫିଟି । ଜାଣିଲେ ସର୍ବଜନ ସେଟି ॥
ଧାଇଁଲେ ଏକୁ ଆରକେଣ । ଯେ ଯାହା ବାଞ୍ଛା କରି ପୁଣ ॥
ଅନ୍ଧ କୁଷ୍ଠ ଯେ ଅପୁତ୍ରିକ । ଯେ ଯାହା ବାଞ୍ଛା ପାଇଲେକ ॥
ଏମନ୍ତେ ସର୍ବଜନେ ଜାଣି । ସେ ଅବଧୂତର କାହାଣୀ ॥
ଏମନ୍ତେ ରାତ୍ର ଦିବସର । ବିଶ୍ରାମ ନାହିଁ ସେ ଠାବର ॥
ଏମନ୍ତେ ଏକ ଦିନକର । ସମ୍ମୁଖ ହୋଇ ସର୍ବ ନର ॥
କେ ବୋଲେ ଶୁଣ ଆରେ ଭାଇ । ଏ କଥା ବିଚିତ୍ର ଅଟଇ ॥
ଯେ ଯାହା ବାଞ୍ଛା ସିଦ୍ଧି ହେଲା । ଅରୂପ ରୂପ ତ ନୋହିଲା ॥
କେ ବୋଲେ ଶୁଣ ଆରେ ଭାଇ । ନ ଶୁଣି କୋପ ସେ କରଇ ॥
କୋପ କଲେଣ ଆମ୍ଭେ ସବୁ । ଭସ୍ମ ହୋଇଣ ଯିବା ସବୁ ॥
କେ ବୋଲେ ଦୟାଳୁ ପୁରୁଷ । ସେ କିମ୍ପା କରିବେଟି ରୋଷ ॥
କେ କହେ ପଞ୍ଚଘୁଞ୍ଚା ଦେଇ । ଆମ୍ଭର ବଳ ପାଉନାହିଁ ॥
କେ ବୋଲେ ଶୁଣ ହେ ସଙ୍ଗାତ । ଚାଲ ପୁଛିବା ତା ଅଗ୍ରତ ॥
କେ ବୋଲେ ଡର ଡର ହୋଇ । ବଚନ ଫେଡ଼ିଣ କହଇ ॥
କେ ବୋଲେ ହୋଇ ଆଗୁସାର । ସମସ୍ତେ କହିବା ଆଗର ॥
ଏମନ୍ତେ ଏକମୁଖ ହୋଇ । ହରି ଶବଦ ମୁଖେ ଦେଇ ॥
ଯାଇଁ ବେଢ଼ିଲେ ବେନିପାଶ । କହିଲେ ବଚନ ସନ୍ଦେଶ ॥
ଶୁଣିମା ହୋଇବ ଗୋସାଇଁ । ଆମ୍ଭ ଭରସା ପାଉନାହିଁ ॥
ତୁମ୍ଭେ ତ ସର୍ବଜ୍ଞ ପୁରୁଷ । ଆମ୍ଭର ନ ଧରିବ ଦୋଷ ॥
ଅନ୍ଧ ଯେ ଚକ୍ଷୁଦାନ ପାଇ । ଅପୁତ୍ରୀ ପୁତ୍ର ଯେ ଲଭଇ ॥
ଖୋଢ଼ ଯେ କୁଷ୍ଠ ଯେତେ ଜନ । ସମସ୍ତେ ଲଭିଲେ କାରଣ ॥
ଦରିଦ୍ର ଧନବନ୍ତ ହେଲା । ନିଶ୍ଚଳ ଭକ୍ତି କେ ଲଭିଲା ॥
ଯାହାକୁ ଯେମନ୍ତ କହିଲ । ସବୁ ତ ହେଲା ସମତୁଲ ॥
ଏବେ ଆମର ମନେ ଯାହା । ହେ ତପୋବର ଶୁଣ ତାହା ॥
କହିବୁ କୋପ ନ କରିବ । ଦୋଷ ହୋଇଲେ କ୍ଷମା ଦେବ ॥

ତୁମ୍ଭର ହସ୍ତପାଦ ଯେହି । ଏମନ୍ତ କିମ୍ପା କହ ଫେଇ ॥
ଯାହାର ବଚନେଣ ଖୋଡ଼ୀ । ଭଲ ହୋଇଲା ପାଦେ ପଡ଼ି ॥
ତୁମ୍ଭ ଚରଣ ହସ୍ତ ଦୁଇ । କିମ୍ପା ନୋହୁଛି କହ ଫେଇ ॥
ବୋଲନ୍ତି ଶୁଣ ଅବଧୂତ । ଯାହା ପୁଛିଲ ଶୁଣ ତତ୍ତ୍ୱ ॥
ଆମ୍ଭର ହେବ ନାହିଁ ଯେହୁ । ଯେବେ ସୁଦୟା ହେବ ହେଉ ॥
ତୁମ୍ଭ ସମସ୍ତ ମୁଖେ ଅଛି । ଆମ୍ଭର ନୋହିବ ଏ କିଛି ॥
ଶୁଣି ସମସ୍ତେ ତୋଷ ହୋଇ । ହରି ଶବଦ ଉଚ୍ଚେ ଦେଇ ॥
ଚରଣ ହସ୍ତ ଦୁଇ ପୁଣ । ହେଉ ବୋଲନ୍ତି ସର୍ବଜନ ॥
ବୋଲିଣ ଆନନ୍ଦ ହୋଇଲେ । ରହି ସମସ୍ତେ ଦେଖୁଥିଲେ ॥
ସର୍ବେ ବୋଲନ୍ତି ହେଉ ହେଉ । କଅଁଳିଗଲା କହୁଁ କହୁଁ ॥
ଦେଖି ହରଷ ସର୍ବଜନ । ଧନ୍ୟ ହେ ଧନ୍ୟ ହେ ବଚନ ॥
ଚରଣ ହସ୍ତ ଯହୁଁ ହୋଇ । ସେ ଅବଧୂତ ବିଚାରଇ ॥
ଚବିଶ ଗୁରୁଙ୍କର ଦୀକ୍ଷା । ବସିଲାଠାରେ ସବୁ ଶିକ୍ଷା ॥
ସାଧୁଣ ସିଦ୍ଧି ସେ ହୋଇଛି । ଆନ ବିଚାର ନାହିଁ କିଛି ॥
ଏମନ୍ତେ କେତେବେଳ ଗଲା । ଆନନ୍ଦମୟ ଉପୁଜିଲା ॥
ଦେଖି ସମସ୍ତେ ତୋଷ ହୋଇ । ନମିଲେ ଦଣ୍ଡପ୍ରାୟ ହୋଇ ॥
ଚରଣ ଧରିଣ ପଡ଼ିଲେ । ଅନେକ ଶୋକଭର ହେଲେ ॥
ସମସ୍ତ ମୁଖ ଚାହିଁ ଭଣି । ବୋଇଲେ ଶୁଣ ସର୍ବପ୍ରାଣୀ ॥
ମୋତେ ତାରିଲ ସର୍ବ ହୋଇ । ଏବେ ମେଲାଣି ହେଲି ମୁହିଁ ॥
ସମସ୍ତେ ହରି ଧ୍ୱନି କଲେ । ସେଠାରୁ ଅବଧୂତ ଗଲେ ॥
ଗିରିଗହନ ବନ ଘୋର । ଆନନ୍ଦ ହୋଇଣ ମନର ॥
ଅନେକ ଭ୍ରମି ଅବଧୂତ । ଯାଇଁ ମିଳିଲା ଯଦୁନାଥ ॥
ଶୁଣ ହେ ବତ୍ସ ମନଦେଇ । ଏ ଅବଧୂତ ଦୀକ୍ଷା ଯେହି ॥
ଶ୍ରବଣେ ଶୁଣେ ଯେଉଁ ନର । ସକଳ ଦୋଷ କୃତ୍ୟୁ ପାର ॥
ଶୁଣିଲା ମାତ୍ରକେ କର୍ଣ୍ଣେଣ । ଦୁରିତ ହୁଅଇ ଦହନ ॥
ତୋତେ ମୁଁ କହିଲଇଁ ଯାହା । ହେ ବତ୍ସ ନୁହଁ ଅଚାଭୁଆ ॥
ଶୁଣି ବୋଇଲ ବତ୍ସ ପୁଣ । ହେ ଗୁରୁଦେବ ପରିତ୍ରାଣ ॥
ଏବେ ମୁଁ ପଚାରଇ ଯାହା । ଭୋ ଗୁରୁଦେବ କହ ତାହା ॥
ଏବେ ଯେ ଧୂତ ଜ୍ଞାନଦୀକ୍ଷା । କହି ଫେଡ଼ିଲେ ମନବାଞ୍ଛା ॥

କେମନ୍ତେ ଏ ମନ ମୋହର । ସେ ସ୍ଥାନେ ଗମିବ ସଧୀର ॥
ମହା ଅର୍ଗଳ ସ୍ଥାନ ସେହୁ । କେମନ୍ତେ ଯିବି ଆଜ୍ଞା ହେଉ ॥
ଅଗମ୍ୟ ଗମ୍ୟ ନୁହେଁ ବାଟ । ଲାଗିଛି ତିଳେକ କବାଟ ॥
ସେହି କବାଟ ଅଟେ କେହୁ । ଭୋ ଗୁରୁଦେବ ଆଜ୍ଞା ହେଉ ॥
ଏଡ଼େ ସମର୍ଥ ଅଟେ କେହି । କବାଟ ଫେଡ଼ିବ ଗୋସାଇଁ ॥
ଏଥିର କହିବା ସନ୍ଦେଶ । ଯେମନ୍ତେ ଫିଟେ ମୋହ ଫାଶ ॥
ଯେ ଆଜ୍ଞା ହୋଇବ ଗୋସାଇଁ । ଯେବେ ସୁକୃପା ମୋର ତହିଁ ॥
ବୋଲନ୍ତି ଗୁରୁଦେବ ଶୁଣି । ଶୁଣ ହେ ବତ୍ସ ନୃପମଣି ॥
ଯାହା ପୁଚ୍ଛିଲୁ ମୋତେ ତୁହି । ସେ କଥା ଶୁଣ ମନଦେଇ ॥
ବ୍ରହ୍ମା ଶଙ୍କରେ ଅଗୋଚର । ଦୁର୍ଗମ ପଥ ମହାଘୋର ॥
ସେ ପଥ ମନର ଆଦେଶ । ନୋହିଲେ ନୁହଇଁ ତ୍ରିଦଶ ॥
ମହା ଯେ ମାୟା ନାମେ ଘାଟ । ହୋଇଛି ତିଳକ କବାଟ ॥
ବିଷମ ଅର୍ଗଳ ଅଟଇ । କେହି ଗମ୍ୟ ତା ଆଉ ନୋହି ॥
ଯେମନ୍ତେ ଯିବୁ ତାହା ଶୁଣ । କହିବା ତହିଁରେ ଯେ ଗୁଣ ॥
ମନକୁ ସ୍ତିରୀ ବେଶ କରି । ହୋଇବୁ ନବୀନ କିଶୋରୀ ॥
ଲଲାଟେ ସିନ୍ଦୂର ରଚିତା । ରୂପେଣ ଜଗଜ୍ଜନଜିତା ॥
ହସ୍ତରେ ବଳୟ କଙ୍କଣ । ପାଦେ ନୂପୁର ରୁଣଝୁଣ ॥
ନାସାରେ ଖଞ୍ଜିବୁ ବସଣୀ । କଜ୍ଜ୍ୱଳ ନୟନରେ ପୁଣି ॥
ଗଳାରେ ମୁକୁତାର ହାର । କର୍ଣ୍ଣେ ତାଡ଼ିକି ହୀରାସାର ॥
କର୍ଣ୍ଣରେ କର୍ଣ୍ଣଫୁଲ ଦେଇ । ବିଚିତ୍ର ରୂପ ମନ ମୋହି ॥
ପିନ୍ଧିବା କଳା ମେଘ ଶାଢ଼ି । ଲୋଟଣି ଛନ୍ଦେ ଜୁଡ଼ା ବାନ୍ଧି ॥
କର୍ପୂର ଚନ୍ଦନ ମିଶାଇ । ସର୍ବାଙ୍ଗେ ଲେପନ ଯେ ହୋଇ ॥
ହସ୍ତରେ ମଦିରା ଘେନିଣ । ନବୀନ କିଶୋରୀ ହୋଇଣ ॥
ଏମନ୍ତେ ବେଶ ହୋଇକରି । ପ୍ରବେଶ ହୋଇବ ଅର୍ଗଳି ॥
ଯେବଣଠାରେଟି କବାଟ । ସେ ସ୍ଥାନେ ମାଇନାମେ ଘାଟ ॥
ତହିଁରେ ମନକୁ ନିବେଶି । ଦେଖିବ ଜ୍ୟୋତିର୍ମୟ ରାଶି ॥
ଜ୍ୟୋତିଅନ୍ତରେ ଦିବ୍ୟରୂପ । ଦେଖିବ ନୀଳ ଯେ ସ୍ୱରୂପ ॥
ବାଳମୁକୁନ୍ଦ ରୂପ ହୋଇ । ସେ ଯୋଗମାୟା କୋଳେ ଲଇଁ ॥
ଶୁଣ ହେ ବତ୍ସ ମନ ଦେଇ । ପୁରୁଷ ଲେଶ ତହିଁ ନାହିଁ ॥

ତହିଁରେ ଅଷ୍ଟସଖୀ ଛନ୍ତି । କହିଣ ଦେବା ପ୍ରତି ପ୍ରତି ॥
ଶ୍ୟାମଳା, ସେବା, ପ୍ରେମବତୀ । ବିମଳା, କମଳା, ଯୁବତୀ ॥
ତୁଙ୍ଗ ଯେ ଦେବୀ ନଳି ତହିଁ । ଶ୍ରୀରାଧା ଅଷ୍ଟସଖୀ ହୋଇ ॥
ଏମନ୍ତେ ମୂଳ ଅଟେ ଯେହୁ । ପୁରୁଷ ଅଙ୍ଗେ ସେବା କାହୁଁ ॥
ମନକୁ ସ୍ତିରୀ ବେଶ କଲେ । ସେ ସ୍ଥଳ ଲଭଇଟି ଭଲେ ॥
ବସ୍ତ ବୋଲଇ ଶୁଣ ତୁମ୍ଭେ । ମୁଁ ଭୃତ୍ୟ ଅଟଇଟି ତେବେ ॥
ପୁଚ୍ଛିବି ସଂଶୟ ନ ରଖ । ମନରୁ ତାପ ମୋର ପେଷ ॥
ମନ ଅଟଇ କେଉଁ ଅଙ୍ଗ । କହିବା ହେବ ମୋର ଆଗ ॥
ଶୁଣି ବୋଲନ୍ତି ଗୁରୁଦେବ । ଯାହା ପୁଚ୍ଛିଲୁ ଶୁଣ ଭାବ ॥
ସେ ମନ ଅଟଇ ଯେ ସ୍ତିରୀ । ଭୂଲତା ମଧ୍ୟରେ ବିହରି ॥
ସେହି ଠାବରେ ମନ ଥାଇ । ଜଗତ ମାୟାରେ ଭୁଲାଇ ॥
ସେହି ମନକୁ ସେହିଠାରେ । ଜଗାଇ ରଖିବୁ ହେତୁରେ ॥
ମନର କଳ୍ପନାଟି କାଳ । ବେଢ଼ି ରହିଛି ବିନ୍ଦୁ ସ୍ଥଳ ॥
ମନ ପ୍ରସନ୍ନ ଯେବେ ନୋହି । କୋଟିଏ କଷ୍ଟେ ଭେଟ କାହିଁ ॥
ମନଟି ଆପେ ଆପେ ହୋଇ । ମନ ବାହାରେ ଦିଅଁ କାହିଁ ॥
ମନ ପୂଜିଲେ ପୂଜା ପାଇ । ନୋହିଲେ ଅପୂଜ୍ୟ ସେ ହୋଇ ॥
ମନଟି ଅଟେ ଗୁରୁଦେବ । ମନଟି ଆପେ ବାସୁଦେବ ॥
ମନଟି ଅଟେ ମତ୍ତଗଜ । ତିନିଭୁବନେ ତାର ତେଜ ॥
ଏ ମତ୍ତଗଜକୁ ଆଙ୍କୁଶ । ହେତୁ ଅଟଇ ଶୁଣ ବସ୍ତ ॥
ମନ ସେ ଆୟତ୍ତ ନୋହିଲେ । କେ ଯୋଗ ସାଧିପାରି ଭଲେ ॥
ଚାରି ଯେ ଖାନି ଗତାଗତ । ମନର ସମସ୍ତେ ଆୟତ୍ତ ॥
ମନ ନ କଲେ ଆଉ କାହିଁ । ତରିବ ଭବସିନ୍ଧୁ ନଈ ॥
ମନ ସେ ଅଟଇ ହୋ ମୂଳ । ମନର ନାହିଁ ସ୍ଥଳ କୂଳ ॥
ମନପବନ ଦୁଇ ହୋଇ । ଜୀବ ପରମ ରୂପେ ସେହି ॥
ଖେଳୁଛି ସଂସାର ମଧ୍ୟରେ । କ୍ଷଣ ହେ ଭଙ୍ଗ ନାହିଁ ତାରେ ॥
ଜୀବଟି ଅଟେ ସ୍ତିରୀ ଅଙ୍ଗ । ପରମ ପବନ ସଂଯୋଗ ॥
ଏହି ସ୍ୱରୂପେ ଆତଯାତ । ହେଉଣ ଅଛି ଶୁଣ ସୁତ ॥
ଏହୁ ମତିରେ ହେତୁ କର । ଜୀବକୁ ପରମରେ ଭର ॥
ଯେ ଅବଧୂତ ଜନ୍ମଦୀକ୍ଷା । ଶୁଣି ଖଣ୍ଡିଲୁ ଭବଦୀକ୍ଷା ॥

 

ଯେ ଏହା କର୍ଣ୍ଣପଥେ ଶୁଣି । ତରନ୍ତି ଭବତରଙ୍ଗିଣୀ ॥
କହିଲୁ ତୋତେ ବ୍ରହ୍ମଭାଗ । ଯେ ଅନୁଭବ ଯୋଗମାର୍ଗ ॥
ହେତୁ କହଇ ମନ ଚାହିଁ । ଏ ରୂପେ ଗୁରୁଶିଷ୍ୟ ଦୁଇ ॥
କହି ବୋଧିଲେ ତାର ମନ । ଶୁଣି ସନ୍ତୋଷ ବତ୍ସ ପୁଣ ॥
ଯେ ହେତୁ ଉଦେ ଭାଗବତ । ନବ ଅକ୍ଷରେ କଲି ଗୀତ ॥
ଶ୍ରୀଗୁରୁ ପ୍ରସନ୍ନ ହୋଇଲେ । ମୋ ହୃଦେ ଥାଇ କହି ଦେଲେ ॥
ତେଣୁ ଲେଖିଲି ଏହି ଗୀତ । ଶ୍ରୀଗୁରୁ ପାଦେ ଦେଇ ଚିତ୍ତ ॥
କହଇ ପାମର ଅନନ୍ତ । ଶ୍ରୀଗୁରୁ ବଡ଼ ସାମରଥ ।

ଇତି ଶ୍ରୀମଦ୍‌ଭାଗବତେ ହେତୁ ଉଦୟ ଅବଧୂତ
ଜନ୍ମଉପଦେଶ କଥନେ ନାମ ପଞ୍ଚମୋଧ୍ୟାୟଃ ।

## ଷଷ୍ଠ ଅଧ୍ୟାୟ

ବତ୍ସ ପୁଚ୍ଛଇ ଗୁରୁଦେବ । ଚରଣ ଧରି ପରଣାମ ॥
କହିଲ ଯେତେ ବ୍ରହ୍ମଭାଗ । ଏ ଜ୍ଞାନ ଅଟଇ ଦୁର୍ଗମ ॥
ଏବେ କହିବା ମୋତେ ଆଉ । ଅସାଧନ ଯେ ଆଜ୍ଞା ହେଉ ॥
କହନ୍ତି ଗୁରୁ ଦେବବାଣୀ । ହେ ବତ୍ସ ଶୁଣିବା କାହାଣୀ ॥
କହୁ ମୁଁ ଅଛି ବ୍ରହ୍ମଲୀଳା । ମହାପୁରୁଷ ଯହିଁ ଲୀଳା ॥
ଦେଖ ଏ ଦିବ୍ୟ ରୂପଜ୍ୟୋତି । ବ୍ରହ୍ମାଣ୍ଡ ମଣ୍ଡଳା ଆକୃତି ॥
ବତ୍ସର ମୁଖ ଚାହିଁ କହି । ବୋଲନ୍ତି ଗୁରୁ ତୋଷ ହୋଇ ॥
ହେତୁ ବୋଲିଣ ମନ ଶୁଣ । କହନ୍ତି ଗୁରୁ ଦିବ୍ୟଜ୍ଞାନ ॥
ଏକ ଯେ ମନ ହୋଇ ଶୁଣ । କହିବା ଯେଉଁ ଅସାଧନ ॥
ଶୁଣ ତୁ ବତ୍ସ ଜ୍ଞାନସାର । ନିର୍ଗମ ଯୋଗର ବିଚାର ॥
ନିରାକାର ରୂପରୁ ତୋତେ । ବୁଝାଇ କହିବା ଯୁକତେ ॥
ପୃଥିବୀ ଚକ୍ର ତୋତେ ଯାହା । ବୁଝାଇ କହୁଅଛୁ ତାହା ॥
ଜୀବ ପରମ ସବୁ ଜାଣି । ହେତୁ କରିଣ ଥିବୁ ପୁଣି ॥
ଆକାଶ ଦୃଷ୍ଟି ନାହିଁ ତାର । ହେ ବତ୍ସ ଅଟେ ଅଗୋଚର ॥

ଅବ୍ରହ୍ମ ଅରୂପ ବୋଲାଇ । ଅଦୃଷ୍ଟ ଅଶ୍ରୁତ ଅଟଇ ॥
କାହୁଁ ଆସିଣ ଅଛି ବସି । ଅଶୂନ୍ୟ ଅଦେହ ବିନାଶି ॥
ଚାରି ଖାନିରେ ଆତଯାତ । କରିଣ ଅଛି ଶୁଣ ସୁତ ॥
ସେହି ଯେ ମହାପୁରୁଷଙ୍କୁ । ତୋତେ ଦେଖାଇବା ତାହାଙ୍କୁ ॥
ଅବ୍ରହ୍ମେ ବ୍ରହ୍ମଭାଗ କହି । ପ୍ରବୋଧ କରିବା ତା ନେଇ ॥
ଦେଖ ଅପୃତିଠାରୁ ତୁହିଁ । ଅସ୍ତମ୍ଭ ନିସ୍ତମ୍ଭରେ ରହି ॥
ତାହା ନ ବ୍ୟାପିଲା ହୋଇଣ । ଆନ କି ଅଛି ଆଉ ପୁଣ ॥
କେମନ୍ତ ପ୍ରକାରେ ହୋଇଣ । ଥାଇ ପଚାରିବୁ ତୁ ପୁଣ ॥
ଯେ ଛଡ଼ ଚକ୍ର ଅଟେ ତାର । କହିବା ହେତୁ ମନେକର ॥
ମହାଶୂନ୍ୟ ଯେ ବ୍ରହ୍ମାଣ୍ଡଇ । ଏକ ଚକ୍ରେକ ଏ ଅଟଇ ॥
ତହିଁ ଉପରେ ନିରଞ୍ଜନ । ଚକ୍ରେକ ହୋଇଛି ନିର୍ବାଣ ॥
ତହିଁର·ତଳେ ନିରଲମ୍ବ । ଚକ୍ରେକ ହୋଇଛି ଆରମ୍ଭ ॥
ତହିଁ ଉପରେ ଅଲେଖ ହିଁ । ଚକ୍ରେକ ବସିଣ ଅଛଇ ॥
ତହିଁର ତଳେ ନିରାଧାର । ଚକ୍ରେକ ବସଇ ସଧୀର ॥
ସହଜାନନ୍ଦ ବସ ପୁଣ । ଏମନ୍ତ ଛଡ଼ ଚକ୍ର ଜାଣ ॥
ତୁ ଅବା ବୋଲିବୁ ଏଥିରେ । ଜୀବ ପରମ କହ ମୋରେ ॥
ଯେ ବ୍ରହ୍ମଜ୍ଞାନ ଯେ ଦୁର୍ଗମ । ଅଟଇ ଅତି ଅନୁପମ ॥
ଏକ ଯେ କାର ଜୀବ ହୋଇ । ନିରା ଯେ କାର ପରମଇଁ ॥
ସବୁ ଠାବରେ ମିଶିପଶି । ବିଶ୍ରାମ କରୁଅଛି ବସି ॥
ବସ ବୋଲଇ ତୁମ୍ଭେ ଶୁଣ । କହିବା ବ୍ରହ୍ମଭାଗ ପୁଣ ॥
ଏ ବ୍ରହ୍ମେ ପଞ୍ଚଭୂତ କେହୁ । କହିବାହେବ ମହାବାହୁ ॥
ଶୁଣି ବୋଲନ୍ତି ଗୁରୁଦେବ । ଶୁଣ ହେ ବସ ଏଥି ଭାବ ॥
ପୃଥ୍ୱୀ ଯେ ଆପ, ତାପ ବାଇ । ଆକାଶ ବୋଲିଣ ଅଛଇ ॥
ପୃଥ୍ୱି ତାହାର ଅଟେ ଯେହି । କଳ୍ପନା ବୋଲି ଜାଣ ତୁହି ॥
ମେଘରୂପ ଧରିଣ ଦେଖ । ତାଙ୍କି ରହିଛି ସର୍ବଲୋକ ॥
ଆପ ବୋଲିଣ ଯାହା ପୁଣ । ଜଳଟି ଅଟଇ ପ୍ରମାଣ ॥
ତେଜଟି ସୂର୍ଯ୍ୟ ବୋଲି କହି । ହେ ବସ ଶୁଣ ମନଦେଇ ॥
ବାଇ ଯେ ପବନ ତହିଁରେ । ବହୁ ଯେ ଅଛି ନିରନ୍ତରେ ॥
ଆକାଶ ଉପରେଣ ସୁତ । ଘୋଟିଣ ରହିଅଛି ସତ୍ୟ ॥

ଏମନ୍ତ ପ୍ରକାରେଣ ତତ୍ତ୍ୱ । ପୂରିଣ ଅଛି ପଞ୍ଚଭୂତ ॥
ଓଁକାର ବୋଲି ଦଣ୍ଡ ତାର । ଅର୍ଦ୍ଧମାତ୍ରା ଯେ ଶିରପର ॥
ଏମନ୍ତ ଛପନଟି ହୋଇ । ବ୍ରହ୍ମ ସ୍ୱରୂପ ତୋତେ କହି ॥
ସତ୍ତ୍ୱ ସେ ରଜ ତମ ଘେନି । ନିର୍ବାଣ ହୋଇଅଛି ପୁଣି ॥
ତୋ ଆଗେ କହୁଅଛି ମୁହିଁ । ସ୍ୱରୂପ ନିର୍ଗୁଣ ବଢ଼ାଇ ॥
ସତ୍ତ୍ୱ ଯେ ବିଷ୍ଣୁ ବୋଲି ନାମ । ରେହ ରୂପଟି ତାର ବର୍ଣ୍ଣ ॥
ରଜଟି ଶିବ ଅଛି ହୋଇ । ନାମ ତା ପବନ ବୋଲାଇ ॥
ତମଟି ବ୍ରହ୍ମ ପରମାଣ । କାଳ ବୋଲିଣ ତାକୁ ଜାଣ ॥
ସେହି ଠାବରୁ କ୍ଷରି ସିନା । ସମସ୍ତ ସଖ ବୀଜପୂର୍ଣ୍ଣ ॥
ପଞ୍ଚାଶ ଅକ୍ଷର ତହିଁରେ । ଛଡ଼ ଯେ ଚକ୍ର ମିଶି ତାରେ ॥
ତାହାର ତୋତେ ଦେବା କହି । ଶୁଣ ହୋ ବସ ମନଦେଇ ॥
ସତାଇଶ ନକ୍ଷେତ୍ର ଘେନି । ସାତ ଯେ ବାର ତହିଁ ପୁଣି ॥
ଷୋଳ ଘଡ଼ିରେ ଉଇଁଅଛି । ଦିବା ରଜନୀ ଅହର୍ନିଶି ॥
ଚାରି ପ୍ରହର ଚାରି ବେଦ । ବୋଲିଣ ଜାଣି ମନେ ଭେଦ ॥
ଓଁକାର ବୋଲି ଯାହା ପୁଣ । ତା ଦଣ୍ଡ ଅର୍ଦ୍ଧମାତ୍ରା ଜାଣ ॥
ଏମନ୍ତ ଛପନଟି ହୋଇ । ହେ ସୁତ ଶୁଣ ମନ ଦେଇ ॥
ବ୍ରହ୍ମ ସ୍ୱରୂପ ତୋତେ ମୁହିଁ । କହିଣ ଦେଲଇଁ ବତାଇଁ ॥
ଅକ୍ଷର ହୋଇ ପାଦ ତାର । ଲାଗିଣ ଅଛି ନିରନ୍ତର ॥
ପ୍ରାଣୀମାନଙ୍କ ଅଙ୍ଗେ ଯାଇ । ବିଶ୍ରାମ କରିଣ ଅଛଇ ॥
ଏକା ଅକ୍ଷରେ ବୋଲି ପୁଣ । ତା ପାଦବିନ୍ଦୁ ବ୍ରହ୍ମ ଜାଣ ॥
ଅଣ ଅକ୍ଷର ଦେଖ ତୁହି । ଉଇଁଛି ନିର୍ମଳ ଯେ ହୋଇ ॥
ପରମବ୍ରହ୍ମ ମୁଖୁଙ୍ଗରେ । ପଡୁଣ ଅଛି ନିରନ୍ତର ॥
ଚନ୍ଦ୍ର ରୂପେଣ ଶିବ ତହିଁ । ବସିଣ ଅଛଇ ଚିତୋଇ ॥
ତାହା ଠାବରୁ ବୀଜଶସ୍ୟ । ହେଉଣ ଅଛଇ ପ୍ରକାଶ ॥
ପ୍ରକାଶ ହୋଇଣ ଏଥିରେ । ଲୋପ୍ୟ ହୋଇଛି ଦେଖଡ଼ୋଳେ ॥
ଚାହାଁ ତୁ କେମନ୍ତ ଦିଶୁଛି । କ୍ଷୀର ସମୁଦ୍ର କି ଘୋଟିଛି ॥
ତହିଁ ଉପରେ ଚନ୍ଦ୍ର ସୂର୍ଯ୍ୟ । ନାହିଁଟି ପବନର ତେଜ ॥
ନିଷ୍ଠଳେ ବସିଅଛି ସେହି । ନିରାକାର ଯେ ବ୍ରହ୍ମ ହୋଇ ॥
ସଚ୍ଚିଦାନନ୍ଦ ବ୍ରହ୍ମରାଶି । ନିର୍ମଳ ଦିଶେ ଅବିନାଶୀ ॥

ଅନହତ ଉପରେ ଅଛି । ନାଗ ଯେ ଦେବ ଶୂନ୍ୟେ ବ୍ୟାପି ॥
ଶୁକ୍ଳାମ୍ବର ଯେ ଦିବ୍ୟ ଜ୍ୟୋତି । ଶୋଭିତ ବିଶ୍ୱମ୍ଭର ମୂର୍ତ୍ତି ॥
ଅଲକ୍ଷ୍ୟ ପୁରୁଷକୁ ଦେଖ । କି ଶୋଭା ପାଉଛି ନିରେଖ ॥
ପିତା ହିଁ ଏହି ମାତା ଏହି । ଭୋକ୍ତା ହୋଇଣ ସର୍ବଠାଇଁ ॥
ଏ ବ୍ରହ୍ମ ଚିହ୍ନ ସୁତ ତୁହି । ତୁହି ଯେ ମୁହିଁ ଏକ ଦେହୀ ॥
ଏହା ନ ଜାଣି ଯେ ଅନ୍ୟକୁ । ସେବା କରନ୍ତି ବିଫଳକୁ ॥
ଏହି ପାଦରେ କର୍ମଯୋଗୀ । ଜନ୍ମ ଲଭନ୍ତି ସୁଖ ଭୋଗି ॥
ସାଧକ ଦିବ୍ୟସ୍ଥାନ ଏହି । ଏଥି ଉପ୍ରେ ଅନ୍ୟ ନାହିଁ ॥
ଯେହୁ ଚିହ୍ନିଲା ଏହି ସ୍ଥାନ । ତାହାର ନାହିଁ ମୃତ୍ୟୁ ଜନ୍ମ ॥
ଯେବେ ଜନ୍ମଇ ସେହି ନର । ଲଭଇ ମହାଯୋଗୀ ଘର ॥
ସେ ମହାଯୋଗୀ ଘରେ ପୁଣ । ଲଭିଣ କରେ ଯୋଗଧ୍ୟାନ ॥
ଲାଗିଣ ଥାଇ ଧାର ପୁଣ । ଯେ ଯେତେ ଏଥୁଟି ନେଇଣ ॥
ଯାଇ ଆସି ତରିଣ ଯେହି । ହୃଦରେ ସମ୍ପାଇ ମଣାଇ ॥
ଅରୂପୁଁ ରୂପ ହୁଏ ଜାତ । ଏହି ସେ ସ୍ଥାନ ତାର ସ୍ଥିତ ॥
ଚତୁର୍ଦ୍ଦଶ ବ୍ରହ୍ମାଣ ଏହି । ଅରୂପେ ଗୁପତ ଅଟଇ ॥
ସବୁ ଯେ ଧର୍ମସୁତ କହି । ଏ ଧର୍ମ କାହାକୁ ନ କହି ॥
ତୋହ ପରାୟେ ସାଧକ କୁ । ଏ ଧର୍ମ କହିବ ତାହାକୁ ॥
ଯେବଣ ଲୋକ ଧନଜନ । ସମର୍ପି କରିବ ଜୀବନ ॥
ଅକ୍ଷର ଏକାକ୍ଷର ଯେତେ । ବୁଝାଇ କହିବ ଗୁପତେ· ॥
ଏ ଯୋଗ କେର୍ବେ ନ କହିବ । କହିଲେ ବ୍ରହ୍ମଦୋଷ ହେବ ॥
ଏ ପଥ ଅଟଇ ଗହନ । ଏ ବ୍ରହ୍ମ ଯୋଗ ଗୁପ୍ତଜ୍ଞାନ ॥
ମୋହର ଦେହ ଥାଅ ଛୁଇଁ । ଏ କଥା ନ କହିବ ଫେଇ ॥
ଯେବେ ନ ମାନି ତୁ କହିବୁ । ଅନ୍ଧ କଷ୍ଟରେ ଦିନ ନେବୁ ॥
ଶ୍ରୀଗୁରୁ ଆଜ୍ଞା ଯେ ମେଣ୍ଟଇ । ସଂସାରେ ହୀନ ସେ ଅଟଇ ॥
ଶୁଣ ହେ ସୁତ ଦେଇ ଚିତ୍ତ । ଶ୍ରୀଗୁରୁ ଅଟନ୍ତି ଏମନ୍ତ ॥
କର୍ଣ୍ଣରେ ମନ୍ତ୍ର ଯେହୁ ଦେଲେ । ଗତି ଯେ ପଥ ନ କହିଲେ ॥
ଯେହୁ ବୁଝାଇ ଦେଲେ ତତ୍ତ୍ୱ । ଶ୍ରୀଗୁରୁ ଅଟନ୍ତି ନିୟତ ॥
କର୍ଣ୍ଣ ମନ୍ତ୍ରର ଦୂରେ ରହି । ଏଠାକୁ ଆସିବ ସେ କାହିଁ ॥
ଯେବେଣ ମନ୍ତ୍ର କର୍ଣ୍ଣେ ଦେଇ । ତୋ ଆଗେ କହିବା ବୁଝାଇ ॥

ଷୋଳ ଯେ ନାମ ବତିଶର । ଫେଡ଼ିଣ କହିବା ନିକର ॥
ଏମନ୍ତ କର୍ଣ୍ଣରେ କହିଲେ । ପୁଣି ଭଜନ କରାଇଲେ ॥
କର୍ଣ୍ଣରେ କହିଲାର ମନ୍ତ୍ର । ଗ୍ରହଣ ହୋଇଲା ତ୍ବରିତ ॥
ଶୂନ୍ୟ ଶବଦ ଶୂନ୍ୟେ ରହି । ଆଉ ତ ଲୋଡ଼ିଲେ ନ ପାଇ ॥
ଶିଷ୍ୟର କର୍ଣ୍ଣଯୋନି ହୋଇ । ଗୁରୁଙ୍କ ମନ୍ତ୍ର ବୀଜ ତହିଁ ॥
ଏମନ୍ତେ ମନ୍ତ୍ର ଯୋନିଗତ । ରହିଲା ଶିଷ୍ୟ ଗର୍ଭଗତ ॥
ଗର୍ଭ କେମନ୍ତେ ଫେରାଇଲେ । ପୁଣି ଶିଷ୍ୟର ମୁଖେ ଦେଲେ ॥
ଏକଥା କେମନ୍ତ ହୋଇଲା । ପୁଣି ତ ସଂଶୟ ଲାଗିଲା ॥
ଷୋଳ ଯେ ନାମ ବୋଲି ଯାହା । ଶୁଣ ହେ ବତ୍ସ କହୁ ତାହା ॥
ହରେ ଯେ କୃଷ୍ଣ ରାମ ତିନି । କର୍ଣ୍ଣେ କହିଲ ଗୁରୁମଣି ॥
ଷୋଳ ନାମରୁ ହେଲା ତିନି । ଆବର ତେର ନାମ ପୁଣି ॥
କାହିଁ ରଖିଲେ ଗୁରୁଦେବ । ଫେଡ଼ିଣ ନ କହିଲେ ଠାବ ॥
ଶୁଣ ହେ ବତ୍ସ ମନଦେଇ । ଏ କର୍ଣ୍ଣ ମନ୍ତ୍ରଟି ନୁହଇ ॥
ଶୁଣିଣ ବତ୍ସ ପାଦତଳେ । ପଡ଼ିଣ ଛୁଅଇଁ ବିକଳେ ॥
ଭୋ ଗୁରୁଦେବ ପରାୟଣ । ମୁଁ ମୂଢ଼ ପଶିଲି ଶରଣ ॥
ଅପ୍ରାଧ ନ ଧର ମୋହର । ମୁଁ ମୂଢ଼ ପତିତ ପାମର ॥
ଅନ୍ଧକୂପରେ ଅଛି ପଡ଼ି । ଶ୍ରୀଗୁରୁଦେବ କର ପାରି ॥
ଅନ୍ୟ ଭରସା ମୋର ନାହିଁ । ଯେମନ୍ତେ ତରିବି ଗୋସାଇଁ ॥
ଦୁସ୍ତର ଯେ ଭବସାଗର । ହେ ଗୁରୁବ୍ରହ୍ମ କୃପା କର ॥
ଶିଷ୍ୟର ଶୁଣି ଏ ଉତ୍ତର । ଶ୍ରୀଗୁରୁ କହନ୍ତି ବିଚାର ॥
ବୋଇଲେ ସୁତ ଶୁଣ ତୁହି । କହିବା ସର୍ବ ମନ ଫେଇ ॥
ଯେବଣ ମନ୍ତ୍ର ଷୋଳ ନାମ । ଷୋହ ଅକ୍ଷର ଅନୁପମ ॥
ଯେମନ୍ତେ ଷୋଳ ଷୋଳ ଜାତ । ଏ ତତ୍ତ୍ୱ ଗୁରୁଙ୍କ ଗୁପତ ॥
ଏହା ଯେ କର୍ଣ୍ଣ ଦୀକ୍ଷା ଦେଇ । ତାହାକୁ ଗୁରୁ ବୋଲି କହି ॥
ମନ୍ତ୍ର ଯେ ଚୂଡ଼ାମଣି ଏହି । ଗୁରୁଙ୍କ କୋଠଧନ ଏହି ॥
ବତିଶ ଅକ୍ଷର ଭଜନ । ହେ ସୁତ ଶୁଣ ଦେଇ ମନ ॥
ବତିଶକ୍ଷରୁ ଷଡ଼କ୍ଷର । ହୋଇଛି ତିନି ନାମ ସାର ॥
ହରେ ଯେ କୃଷ୍ଣ ରାମ ତିନି । ଏ ତିନି ନାମ ଅଟେ ପୁଣି ॥
ଆବର ଯେଉଁ ତେର ନାମ । କହିବା ତୋତେ ଅନୁପମ ॥

 

ପିଣ୍ଡ ବ୍ରହ୍ମାଣ୍ଡ ଏକମତ । ଯହିଁ ଯେମନ୍ତ ରୂପେ ସ୍ଥିତ ॥
ବେନି ନୟନ ନାସା ଦୁଇ । ଦୁଇ ଯେ କର୍ଣ୍ଣ ମୁଖ ଦେଇ ॥
ଦୁଇ ଯେ ହସ୍ତ ଦୁଇ ପାଦ । ଇନ୍ଦ୍ରିଗୁହ୍ୟରେ ସୁତ ଭେଦ ॥
ଏମନ୍ତେ ତେର ଯେ ହୋଇଲା । ଶୁଣ ଏ ତୋର ନାମ ଲୀଳା ॥
ଏମନ୍ତେ ଷୋଳ ନାମ ହୋଇ । ଶୁଣ ହେ ବତ୍ସ ମନଦେଇ ॥
ବତିଶ ଅକ୍ଷର ଭଜନ । ଶ୍ରୀଗୁରୁ ଆଜ୍ଞା ପରମାଣ ॥
ଷୋଳରୁ ବତିଶ ଅକ୍ଷର । ହୋଇଛି ଦନ୍ତପନ୍ତି ସାର ॥
ଏଣୁ ଭଜନ ସେ ଅଟଇ । ତୋତେ ସନ୍ଦେଶ କହିଲଇଁ ॥
ଶ୍ରୀଗୁରୁ ଆଜ୍ଞା ଉପଦେଶ । ଶ୍ରୀମନ୍ତ ରାଜ ଯେ ବିଶେଷ ॥
ଏ ହେତୁ ନ ଜାଣନ୍ତି ଯେହି । ଯଥାର୍ଥେ ସୁଜନ କହଇ ॥
ସୁଜନ ଜନଙ୍କର ଗତି । ସ୍ୱଭାବେ ମନ୍ତ୍ର ଦୀକ୍ଷା ଦ୍ୟନ୍ତି ॥
ଏମନ୍ତେ ଚୂଡ଼ାମଣି ଦୀକ୍ଷା । କର୍ଣ୍ଣେ କହିଣ କରେ ଶିକ୍ଷା ॥
ଏମନ୍ତ ଗୁରୁଙ୍କ ମହିମା । ହେ ବତ୍ସ ନ କରି ଗାରିମା ॥
ଯେବଣ ଜନ ଗୁରୁ ବାଣୀ । ହେଳା ନ କରି ମନେ ଗୁଣି ॥
ଗୌରବ ନ ଦିଅଇ ଠାବ । ଯମ କଷଣେ ପରାଭବ ॥
ପୁଣି ଜନ୍ମଇ ମହୀସ୍ଥଳେ । ଅନେକ କଷ୍ଟର ବ୍ୟାକୁଳେ ॥
କେ ସହିପାରେ ତା କଷଣ । ମୁଖେ କେ କହିପାରେ ପୁଣ ॥
କୃମି ପଡ଼ଇ ତା ଶରୀର । କଷ୍ଟେ ବଞ୍ଚଇ ଦିନ କାଳ ॥
ଯେ ମତ୍ତ ଗର୍ବେଣ ତାହାର । ଗୁରୁ ନିନ୍ଦିଲା ପାଇ ଫଳ ॥
ସେ ଫଳ ଭୁଞ୍ଜଇ ଶରୀର । ହେ ବତ୍ସ ଶୁଣ ନିରାଧାର ॥
ହେତୁ ଯେ ମନ ଆଗେ କହି । ଯେ ମତ୍ତଗର୍ବେ ଗୁରୁଦ୍ରୋହୀ ॥
ଶରଧା କରି ଗୁରୁ କରି । ସ୍ନେହେଁ ଘେନନ୍ତି ଦିନାଚାରି ॥
କାମିନୀ ସଙ୍ଗେ ବନ୍ଦୀ ହୋଇ । ଆଉ ସେ କଥା ମନେ ନାହିଁ ॥
ଏମନ୍ତେ ଜନେ ବ୍ରହ୍ମଜ୍ଞାନ । ଯେ ଦୀକ୍ଷା କହେ ଅନୁପମ ॥
କେଡ଼େ କଷ୍ଟରେ ଥିଲା ପାଇଁ । ସେ ପୁଣି ଗୁରୁ ରୂପ ହୋଇ ॥
ବୋଲଇ ଆସ ମୋର ପାଶ । କହିବି ସକଳ ସନ୍ଦେଶ ॥
ମୋଠାରୁ ଆଉ ବଡ଼ ନାହିଁ । ମୁଁ ସର୍ବଗୋଚର ଅଟଇ ॥
ଏମନ୍ତେ କହି ଗୁରୁ ସେହି । କାଳେ ଯେ ବ୍ରହ୍ମଜ୍ଞାନ କହି ॥
ଏମନ୍ତେ ଗୁରୁ ସେ ବୋଲାଇ । ସାଧକ ଅଙ୍ଗ ସିଦ୍ଧ ନୋହି ॥

ଏମନ୍ତେ ଜନଙ୍କର ଗତି । କେମନ୍ତେ ନୁହଇ ଭଗତି ॥
ଧୋଇ ମସ୍ତି ନ ଜାଣିଲା । ଅକାର୍ଯ୍ୟେ ବିହନ ବୁଣିଲା ॥
ସେ ନର ଅଧୋଗତି ହୋଇ । ଅନ୍ତେ ନରକେ ପଡ଼େ ଯାଇ ॥
ନରକ କରଇ ଆହାର । ଯମ କଷଣୁଁ ନୋହେ ପାର ॥
ଏମନ୍ତେ ଶତ ଜନ୍ମ ଯାଏ । ନରକ ଆହାର ତା ହୋଏ ॥
ଆଦି ଈଶ୍ୱର ଆଜ୍ଞା ଯେହୁ । ଏ ବାଣୀ ଅନ୍ୟ ହେବ କାହୁଁ ॥
ଶ୍ରୀଗୁରୁ ବାକ୍ୟ ଅନୁସରି । ସେ ହୃଦପଦ୍ମେ ଥିବ ଧରି ॥
ସେହି ଜନଙ୍କ ପାଶେ ଯାଇ । ସୁବୁଦ୍ଧି ମାଗିବା ହୋ ଯାଇ ॥
ଶ୍ରୀଗୁରୁ ଚରଣରେ ଦାସ । ଯେ ଥିବ ହୋଇଣ ବିଶ୍ୱାସ ॥
ସେହିଟି ସୁଜନ ଅଟଇ । ତା ପାଶେ ଥିବା ଆମ୍ଭେ ରହି ॥
କ୍ଷଣେ ନ ଛାଡ଼ି ତାର ପାଶ । ହୋଇଣ ଥିବା ତାର ବଶ୍ୟ ॥
ଏ ରୂପ ହେତୁ ସେ କହିଲା । ଶ୍ରୀଗୁରୁ ଆଜ୍ଞା ବଖାଣିଲା ॥
ଯେହେତୁ ଗୀତ ଭାଗବତ । ନବ ଅକ୍ଷରେ କଲି ଗୀତ ॥
ଶ୍ରୀଗୁରୁ ଆଜ୍ଞା ସେ ମାଗିଣ । ଲେଖିଲି ହେତୁ ଉଦେ ପୁଣ ॥
ଶ୍ରୀଗୁରୁ ପାଦେ କରି ଆଶ । ପାମର ଅନନ୍ତ ପ୍ରକାଶ ॥

ଇତି ଶ୍ରୀମଦ୍‌ଭାଗବତେ ହେତୁ ଉଦୟେ ବ୍ରହ୍ମଦୀକ୍ଷା ଆରୋପଣେ
ଗୁରୁଶିଷ୍ୟ ମୋକ୍ଷଣେ ନାମ ଷଷ୍ଠଅଧ୍ୟାୟଃ ।

## ସପ୍ତମ ଅଧ୍ୟାୟ

କହଇ ହେତୁ ମନ ଆଗ । ଶ୍ରୀଗୁରୁ ଆଜ୍ଞା ଅନୁରାଗ ॥
ସ୍ନେହ ଭରିଣ ମନ ଆଗ । କହିଲେ ଗୁରୁ ବ୍ରହ୍ମଭାଗ ॥
ଶୁଣି ଆନନ୍ଦ ବତ୍ସ ମନ । ପ୍ରଣମ୍ୟ ହୋଇ ଶ୍ରୀଚରଣ ॥
ବୋଲଇ ଶୁଣିମା ଗୋସାଇଁ । ଶ୍ରୀମନ୍ତ୍ରରାଜ କାହୁଁ ହୋଇ ॥
କହିବା ଏଥିର ସନ୍ଦେଶ । ଶ୍ରୀକାମ ବୀଜର ପ୍ରକାଶ ॥
ଶୁଣି ବୋଲନ୍ତି ଗୁରୁବ୍ରହ୍ମ । ହେ ବତ୍ସ ଶୁଣ ଦେଇ ମନ ॥
ହ୍ରୀଁ ଯେ ଶ୍ରୀଁ କ୍ଲୀଁ ହୋଇ । ନିୟତ ତତ୍ତ୍ୱ ଯେ ବୋଲାଇ ॥
ଦୁଇ ବାଡ଼ରେ ଯେହୁ ତିନି । ମଧ୍ୟରେ ଦଶ ଅଙ୍କ ପୁଣି ॥

ବତ୍ସ ବୋଲଇ ଶୁଣି ତାହା । ଭୋ ଗୁରୁ ମୋତେ ହୁଅ ସାହା ॥
କାହୁଁ ଏ ନିତ୍ୟ ବୀଜ ହେଲେ । ଦଶ ଅକ୍ଷର ଜନମିଲେ ॥
ଏଥର କହିବା ସନ୍ଦେଶ । ଫିଟିବ ମୋହ ବନ୍ଧପାଶ ॥
ଶ୍ରୀଗୁରୁ ବୋଲନ୍ତି ହେ ଶୁଣ । କହିବା ଏଥିର କାରଣ ॥
ଯାହାକୁ ନିତ୍ୟ ତତ୍ତ୍ୱ କହି । କହିବା ଶୁଣ ମନଦେଇ ॥
ବିନ୍ଦୁରୁ କାମ ବୀଜ ଜାଣ । ଏହିଟି ନିତ୍ୟ ତତ୍ତ୍ୱ ପୁଣ ॥
କାମବୀଜରୁ ଦଶକ୍ଷର । ହୋଇଣ ଅଛି ନିରାଧାର ॥
ଗୋପୀଜନ ବଲ୍ଲଭାୟ । ମଧ୍ୟରେ ରହିଲେ ନିର୍ଣ୍ଣୟ ॥
ଦୁଇ ବାଡ଼ରେ ଷଡ଼ ଶକ୍ତି । ହୋଇଣ ରହିଛନ୍ତି ମୂର୍ତ୍ତି ॥
ମଧ୍ୟରେ କାମ ଗର୍ଭ ହୋଇ । ପୁରୁଷ ଅଙ୍ଗ ଅଟେ ସେହି ॥
ଏହି ଶ୍ରୀକୃଷ୍ଣ ରୂପ ହୋଇ । ମଧ୍ୟେ ବିଜୟେ ଭାବଗ୍ରାହୀ ॥
ଚଉପାଶରେ ସଖୀଗଣ । ବେଢ଼ିଣ ରହିଛନ୍ତି ପୁଣ ॥
ଓଁ କ୍ଲୀଂ ଶ୍ଲୀ ହ୍ଲୁଁ ଟି ଏହା । ଗୋପୀଜନ ବଲ୍ଲବାୟ ସ୍ୱାହା ॥
ଏହିଟି ମନ୍ତ୍ରରାଜ ହୋଇ । ଗୋପନଭାବେ ଅଛି ରହି ॥
ମନ୍ତ୍ର ଯେ ଚୂଡ଼ାମଣି ଯେହି । ଶ୍ରୀଗୁରୁ ଆଜ୍ଞା ଏ ଅଟଇ ॥
ଯେବେ ହୁଅଇ ମନ୍ତ୍ରଗର୍ବୀ । ଖଣ୍ଡ କୁତର୍କୀ ଜ୍ଞାନେ ଭାବି ॥
ସାଧୁଙ୍କ ସଙ୍ଗେ ଗୋଷ୍ଠୀ କରେ । ନ ମାନେ ମନ୍ତ୍ରଗର୍ବଭରେ ॥
ସାଧୁଙ୍କୁ ନିନ୍ଦଇ ଦୂଷଣ । ଯେଣୁ ହୋଇଛି ବୀଜହୀନ ॥
ଏମନ୍ତ ଶିଷ୍ୟ ନ ତରଇ । ଗୁରୁଙ୍କୁ ତାରିବ ସେ କାହିଁ ॥
ଏମନ୍ତ ରାଜଦୀକ୍ଷା ପାଇ । ସଂସିଦ୍ଧ ଗତି ସେ ଲଭଇ ॥
ସେ ଶିଷ୍ୟ ତାରନ୍ତି ଗୁରୁଙ୍କୁ । ଗୁରୁହିଁ ତାରନ୍ତି ତାହାଙ୍କୁ ॥
ଯନ୍ତ୍ର ଯେ ମନ୍ତ୍ର ଭେଦାଇଣ । ଗୁରୁ ଦ୍ୱାରକୁ ଚିହ୍ନାଇଣ ॥
ପଡ଼ି ଚରଣେ ପଚାରଇ । ସଂଶୟ ନ ରଖ ଗୋସାଇଁ ॥
ଗୁରୁ ବୋଲନ୍ତି ଶୁଣ ତୁହି । ଏ ତ ପ୍ରଘଟ ବିଦ୍ୟା ନୋହି ॥
କହିବା ଗୁପତ କରିଣ । ରଖିଣ ଥିବୁ ତୋ ମନେଣ ॥
ଦେଖ ହୋ ଦେଖ ବତ୍ସ ତୁହି । ସଂସାର ଆତଯାତ ହୋଇ ॥
ସେହିଟି ଅଟେ ଗୁରୁଦ୍ୱାର । ହେ ବତ୍ସ ମନରେ ବିଚାର ॥
ଏହି ଦ୍ୱାରକୁ ଯେବେ ପୁଣ । ଜଗାଇ ରଖିବୁ ତୋ ମନ ॥
ତେବେ ସୁଗତି ହେବ ତୋର । କରିବୁ ଗୁରୁଙ୍କୁ ଉଦ୍ଧାର ॥

ଏହି ନିମନ୍ତେ ଶିଷ୍ୟ କରି । ଶିଷ୍ୟ ହିଁ ଭବୁ ହୁଏ ପାରି ॥
ଶ୍ରୀଗୁରୁ କୋଠ ଧନ ଏହି । ଗୁରୁ କହିଲେ ଏହା ପାଇ ॥
ନୋହିଲେ ଭ୍ରମ ହୋନ୍ତି ନର । କାହୁଁ ତରିବ ତମ ଘୋର ॥
ଏ ବିଦ୍ୟା କାହାକୁ ନ କହି । କହିଲେ ଶାପ୍ୟ ଯେ ପଡ଼ଇ ॥
ଶ୍ୱାନ ଯୋନିରେ ହେବ ଜାତ । ହେ ବତ୍ସ ଅଟେ ସତ୍ୟ ସତ୍ୟ ॥
ଶ୍ରୀଗୁରୁ ଆଜ୍ଞା ଅଛି ହୋଇ । ଏକଥା ଅନ୍ୟଥା ନୁହଇ ॥
ନୋହିଲେ ଖୋଡୀ କୋଷ୍ଠୀ ହୋଇ । ଅଜ୍ଞାନୀ ଜନେ ଯେବେ କହି ॥
ଏମନ୍ତେ ଯେବେ କର୍ଣ୍ଣେ କହି । ଶିଷ୍ୟ ପରମ ଗତି ପାଇ ॥
ନୋହିଲେ ରଣଭଣ ହୋଇ । ଜୀବ ଉଦ୍ଧରି ନ ପାରଇ ॥
ଯେସନେ ଶସ୍ୟ ବୀଜହୀନ । ଅଗାଡ଼ି ହୋଇ ଉଡ଼େ ପୁଣ ॥
ଏହିଟି ସେହି ମତ ହୋଇ । ବୀଜ ନ ପଶି ଅଛି ଯହିଁ ॥
ଯହିଁ ସେ ନ ପଶଇ ବୀଜ । କାହୁଁ ହୋଇବ ତାର ତେଜ ॥
ଦଗ୍ଧ ବୀଜ ଯେହ୍ନେ ବୃକ୍ଷ । ଅଙ୍କୁରି ଉଠଇ ପ୍ରତ୍ୟକ୍ଷ ॥
ଯତ୍ନ ନ କଲେ ନାଶ ଯାଇ । ଏହି ଯେ ସେହି ମତ ହୋଇ ॥
ଶ୍ରୀମନ୍ତ୍ରରାଜର ମହିମା । ଜାଣି ନ ଜାଣେ ବେଦବ୍ରହ୍ମା ॥
ଶୁଣ ହୋ ଏଥିର ତଦନ୍ତ । ଯେ ଗୁରୁ ଶିଷ୍ୟଙ୍କର ମତ ॥
ଦେଖ ସଂସାରେ ଯେତେ ଜନ । ତିନି ପୁରୁଷରେ ପ୍ରମାଣ ॥
ସ୍ତ୍ରୀ ଯେ କରି ପୁତ୍ର ଅର୍ଥେ । ଜୀବନ ପୋଷିବା ନିମନ୍ତେ ॥
ପିଣ୍ଡ ଯେ ଅର୍ଘ୍ୟ ପୂର୍ଣ୍ଣ ଦେଇ । ପିତୃଲୋକକୁ ସେ ତୋଷଇ ॥
ଏହି ସକାଶୁଁ ସ୍ତିରୀ କରି । ପୁତ୍ର ଯେ ବୋଲାଇ ତାହାରି ॥
ଏହି ନିମନ୍ତେ ଗୁରୁଶିଷ୍ୟ । କରନ୍ତି ସଂସାରେ ପ୍ରକାଶ ॥
ଗୁରୁ ବୁଝିଣ ଶିଷ୍ୟ କରି । ଯେ ଶିଷ୍ୟ ପାରଇ ଉଦ୍ଧରି ॥
ଶିଷ୍ୟ ଯେ ଗୁରୁଙ୍କୁ ତାରନ୍ତି । ଗୁରୁଟି ଶିଷ୍ୟ ଗତି ମୁକ୍ତି ॥
ଏଣୁଟି କର୍ଣ୍ଣେ ଗୁରୁ ବୀଜ । ଶ୍ରୀମନ୍ତ୍ରରାଜ ପଶି ତେଜ ॥
ଅନେକ ପ୍ରକାରେ ସଂସାରେ । ଶିଷ୍ୟ କରନ୍ତି ଗୁରୁବରେ ॥
ହରେ ଯେ କୃଷ୍ଣ ମନ୍ତ୍ର ପୁଣ । କହନ୍ତି ଶିଷ୍ୟର କର୍ଣ୍ଣେଣ ॥
ସେ ତ ନୁହଇ କିଛି ବୀଜ । କାହୁଁ ହୋଇବ ତାର ତେଜ ॥
ରମ୍ଭା ବାଲୁଙ୍ଗା ପ୍ରାୟ ହୋଇ । ଫଳ ନ ପାଚୁ ସେ ପଡ଼ଇ ॥
ହରାଦି ଆଦି ଅନ୍ତ ନାହିଁ । ହରି ବୋଇଲେ ତରି ଯାଇ ॥

ଏମନ୍ତେ ଏକମନେ ଶୁଣ । ହେ ବତ୍ସ ହୁଅ ସାବଧାନ ॥
ଏ ତିନି ବୀଜତ୍ରୟ ତତ୍ତ୍ୱ । ତୋତେ କହିଲୁ ବତ୍ସ ସତ୍ୟ ॥
ଦଶାକ୍ଷର ଯେ ଅଷ୍ଟାକ୍ଷର । ହରାଦି ଅଷ୍ଟାକ୍ଷର ସାର ॥
ଏମନ୍ତେ ଛବିଶ ଅକ୍ଷର । ହୋଇଲା ମନ୍ତ୍ରରାଜ ବର ॥
ମନ୍ତ୍ର ଯେ ରାଜ ଛବିଶଇଁ । ଶ୍ରୀଗୁରୁ ଆଜ୍ଞା ଛନ୍ତି ଦେଇ ॥
ଏବେ କହିବା ଆନ ରସ । ଯେମନ୍ତେ ହୋଇବୁ ହରଷ ॥
ବତ୍ସ ବୋଲଇ ଶୁଣ ତୁମ୍ଭେ । ମୋ ଇଷ୍ଟ ଗୁରୁଦେବ ଏବେ ॥
ଶରଣ ତୁମ୍ଭର ଚରଣ । ଆଉ କି ଅନ୍ୟେ ପ୍ରୟୋଜନ ॥
ସୁଜନେ ଗୁରୁପାଦେ ରସ । ଘୋର କଳୁଷ ଦେହୁଁ ନାଶ ॥
ଘୋର ତିମିର ଯାଉ ଫିଟି । ଗୁରୁ ଗୋବିନ୍ଦ ନାମ ରଟି ॥
ହୃଦପଦ୍ମରେ ମାଳା କର । ଭବଜଳରୁ ହୁଅ ପାର ॥
ଶ୍ରୀଗୁରୁ ନାମ ନାବ ହୋଇ । ରହିଣ ଅଛି ଭବନଈ ॥
ଯେ ନାବେ ଗୁରୁ କଣ୍ଡିଆର । ନାବେ ବସିଲ ହୁଅ ପାର ॥
ହେତୁ ଯେ ମନ ଆଗେ କହି । ଶ୍ରୀଗୁରୁ ବିନୁ ଅନ୍ୟ ନାହିଁ ॥
ଶ୍ରୀଗୁରୁ ଗୋବିନ୍ଦଚରଣ । ପଶିଲେ ଲଭିବ କାରଣ ॥
ସୁଜନେ ଗୁରୁପାଦେ ରସ । ଏ ପାଦପଦ୍ମେ ଅଛି ଯଶ ॥
ପାମର ଅନନ୍ତ ଶରଣ । ଶ୍ରୀଗୁରୁ କରିବେ କାରଣ ॥

ଇତି ଶ୍ରୀମଦ୍‌ଭାଗବତେ ହେତୁ ଉଦୟେ ଶ୍ରୀଗୁରୁ ଶିଷ୍ୟ
ମୋକ୍ଷଣେ ମନ୍ତ୍ରରାଜ ନିର୍ଣ୍ଣୟୋ ନାମ ସପ୍ତମୋଧ୍ୟାୟଃ ।

## ଅଷ୍ଟମ ଅଧ୍ୟାୟ

ତୁ ଏବେ ମୋର ବୋଲକର । ଏ ବିଦ୍ୟା ଗୁରୁଙ୍କ ଭଣ୍ଡାର ॥
ଅତି ଯତନେ ରଖ ତୁହି । ଅମୂଲ୍ୟ ରତ୍ନ ଏ ଅଟଇ ॥
ତୋ ପରା ସେବକ ଯେ ହୋଇ । ତେବେ ଏ ଜ୍ଞାନ ହିଁ ନ କହି ॥
କୁତର୍କୀ ଜ୍ଞାନୀ ଛନ୍ତି ଯେତେ । ବିଚାରି ବୁଝିବୁ ତୁରିତେ ॥
ତୋହର ମୁଖେ ତୁହି ତର । ଏ କଥା ପ୍ରଘଟ ନ କର ॥
କହିଲେ ସକଳ ସନ୍ଦେଶ । ହେ ବତ୍ସ ମୋର ନାହିଁ ଦୋଷ ॥
ତୋତେ ଅମୂଲ୍ୟ ଧନ ଦେଇ । ସକଳ କହିଲି ମଣାଇ ॥

ଯେବେ ନ ବୁଝି ଦେବୁ ଧନ । ସକଳ ଦୋଷେ ତୁହି ଲୀନ ॥
ହେ ବତ୍ସ କହୁଅଛି ତୋତେ । ଗୁପତ କର ତୁ ଯୁଗତେ ॥
ତୋ ମନ ଦ୍ୱାରେଣ ସୁମର । ଗୁପତୁଁ ପ୍ରଘଟ ନ କର ॥
ଏବେ କହିବା ଆନ ରୀତି । ଯେ ତୋତେ କହିବ ଭଗତି ॥
ତୁ ଯେ ପୁଚ୍ଛିଲୁ ତ୍ରୟ ବୀଜ । ଏବେ କହିବା ମନେ ହେଜ ॥
କାମବୀଜର ଦଶାକ୍ଷର । ହୋଇଣ ଅଛଇ ବାହାର ॥
ଗୋପୀ ଯେ ଜନ ବଲ୍ଲଭାୟ । ସ୍ୱାହା ନାଦ ବିନ୍ଦୁ ନିର୍ଣ୍ଣୟ ॥
ଶ୍ରୀରବି ପରୁ ଅଷ୍ଟାକ୍ଷର । ହୋଇଣ ଅଛି ବତ୍ସ ସାର ॥
ରାଧା ଯେ କୃଷ୍ଣ ରାଧା ସ୍ୱାହା । ଦେଇଣ ହେତୁ ମତି ତାହାଁ ॥
ଏବେ ହୋ ଶୁଣ ବତ୍ସ ତୁହି । ଏ ମନ୍ତ୍ର ଇଷ୍ଟ ଯେ ଅଟଇ ॥
ଗୁରୁ ଦ୍ୱାରକୁ ମନ୍ତ୍ର ଏହି । ଏ ମନ୍ତ୍ର କାହାକୁ ନ କହି ॥
ହର ବୀଜରୁ ଅଷ୍ଟାକ୍ଷର । ହରାଦି ନାମଟି ଯାହାର ॥
ହରେ ଯେ ରାମ ରାମ ହରେ । ଏମନ୍ତ ଏମନ୍ତ ପ୍ରକାରେ ॥
ଭକ୍ତି ଯେ ଅଙ୍ଗ ଅଟେ ଏହି । ହରାଦି ନାମ ଅଛି ବହି ॥
ସକଳ ମନ୍ତ୍ର ପରେ ସାର । ହରେ ଶବଦ ଅଷ୍ଟେ ଯାର ॥
ହରେ ଶବଦ ବ୍ରହ୍ମାଣ୍ଡରେ । ଘୋଟି ରହିଛି ତିନି ପୁରେ ॥
ହେତୁ କହଇ ମନ ଶୁଣ । ଶ୍ରୀଗୁରୁ ପାଦେ ଦେଇ ମନ ॥
ବତ୍ସ. ବୋଲଇ ପୁଣ ପୁଣ । ହେ ଗୁରୁଦେବ ମୁଁ ଶରଣ ॥
କାମ ଯେ ପଞ୍ଚାତ୍ମିକ କେହୁ । କହ ସଂଶୟ ମନୁ ଯାଉ ॥
କେମନ୍ତେ ହର ବ୍ରହ୍ମ ତହିଁ । ଲୋପ୍ୟ ହୋଇଲେ କହ ତୁହି ॥
ଶ୍ରୀକାମ ବୀଜ ହେଲା ଯହୁଁ । ଭୋ ଗୁରୁ ଫେଡ଼ି ଆଜ୍ଞା ହେଉ ॥
ବୋଲନ୍ତି ଗୁରୁଦେବ ଶୁଣି । ଶୁଣ ହେ ବତ୍ସ ମୋର ବାଣୀ ॥
ଯହା ପୁଚ୍ଛିଲୁ ମୋତେ ତୁହି । ହେ ବତ୍ସ ଶୁଣ ମନଦେଇ ॥
ଆଦ୍ୟରୁ କହିବା ବୁଝାଇ । ହେ ବତ୍ସ ଶୁଣ ମନଦେଇ ॥
ମହାଶୂନ୍ୟ ଯେ ନିରଞ୍ଜନ । ଅରୂପ ରୂପ ଭଗବାନ ॥
ଅରୂପ ଅଟଇଟି ଯେହି । ଶୁଣ ହୋ ସୁତ ମନଦେଇ ॥
ଯନ୍ତ୍ରକୁ ଦୃଷ୍ଟି ଦେଇ ତୋର । କହିବା ନିଗମ ବିଚାର ॥
ରେହ ଯେ ଅରୂପ ଅଟଇ । ତହିଁରୁ ରୂପ ଜନମଇଁ ॥
ରୂପଟି ଅଟଇ ଅକାର । ଅନାଦି ଅବିଦ୍ୟାରେ ଘର ॥

ବିନ୍ଦୁ ମଧ୍ୟରେ ଅଣାକ୍ଷର । କାମଟି ତହିଁରୁ ବାହାର ॥
ମାତ୍ରା ଯେ ହୋଇଣ ପଯର । ଲାଗିଣଛନ୍ତି ବ୍ରହ୍ମା ହର ॥
ଲ କାର ଈଶ୍ୱର ବୋଲଇ । ଇ କାର ବ୍ରହ୍ମ ଅଛି ହୋଇ ॥
ଯେମନ୍ତେ ହର ବ୍ରହ୍ମା ଲୋପ୍ୟ । କହିଲି ତୋ ଆଗେ ସ୍ୱରୂପ ॥
ଆବର ଶୁଣ ମନ ଦେଇ । ଗୋପୀ ଯେ ଜନ ବଲ୍ଲଭଇ ॥
ସ୍ୱାହା ବୋଲିଣ ବେନି ଯହିଁ । ଏ ଭେଦ ଶୁଣ ମନଦେଇ ॥
ଲ କାର ଗୋପୀ ଯେ ବୋଲାଇ । ଯନ୍ତ ଇ କାର ଅଛି ହୋଇ ॥
କ କାର ବଲ୍ଲଭାୟ ଜାଣ । ସ୍ୱାହା ଯେ ନାଦ ବିନ୍ଦୁ ପୁଣ ॥
ଯେମନ୍ତ ହୋଇ ଦଶାକ୍ଷର । କାମବୀଜରୁ ସେ ବାହାର ॥
ଏବେ କହିବା ଆନ ରୀତି । ଶୁଣି ସନ୍ତୋଷ କର ମତି ॥
କାମ ଯେ ପଞ୍ଚାତ୍ମିକ ଯେହି । ଶୁଣ ହେ ବତ୍ସ ମନଦେଇ ॥
ଲ କାରୁ ପୃଥ୍ୱୀ ହେଲା ଜାତ । କ କାରୁ ଜଳ ସେ ସମ୍ଭୂତ ॥
ଇ କାରୁ ପବନ ହୋଇଲା । ନାଦରୁ ତେଜ ଜନମିଲା ॥
ବିନ୍ଦୁରୁ ଆକାଶ ହୋ ଜାଣ । ଯେ ରୂପେ ପଞ୍ଚାତ୍ମିକ ପୁଣ ॥
ଏ ରୂପେ କାମ ପଞ୍ଚାତ୍ମିକ । ବିନ୍ଦୁଟି ହୋଇଅଛି ଦେଖ ॥
ଗୋପୀମାନଙ୍କ ଭାବ ଯେହି । ଏ ବିନୁ ଅନ୍ୟ ଗତି ନାହିଁ ॥
ସ୍ୱଭାବେ ସ୍ତିରୀ ଜନ୍ମ ହୋଇ । ମହତ ସେବା ନ ଜାଣଇ ॥
ବେଦ ଯେ ବିଦ୍ୟା ଆଦି ଯେତେ । ଗୋପୀ ତା ନ ଜାଣେ ଯୁକତେ ॥
ଯଜ୍ଞ ଯେ ଦେବ ଦେବୀଧାର । ଗୋପୀ ନ ଜାଣେ ନିରାଧାର ॥
ମନ୍ତ୍ର ଯେ ମୂର୍ତ୍ତି ଆଦି ପୁଣ । ତାହା ନ ଜାଣେ ଗୋପୀଗଣ ॥
ତୋ ଆଗେ କହିଲଇଁ ମୁହିଁ । ହେ ବତ୍ସ ଶୁଣ ମନଦେଇ ॥
ଶ୍ରୀଗୁରୁ ବାକ୍ୟ କର୍ଣ୍ଣେ ଶୁଣି । ବତ୍ସ ବୋଲଇ ମନେ ଗୁଣି ॥
ଭୋ ଗୁରୁଦେବ ସାରଧାର । କେମନ୍ତେ ଲଭିଲି ଶରୀର ॥
କି ରୂପେ ଲଭିଲେ ସେ ଗତି । କୃଷ୍ଣହୁଁ ଅନ୍ୟ ନ ଜାଣନ୍ତି ॥
ଏକଥା ମୋତେ ଫେଡ଼ି କହ । ମୋ ମନୁ ସନ୍ଦେଶ ଛିଣ୍ଡାଅ ॥
କପଟ ନ କର ଗୋସାଇଁ । ଶରଣ ମାଗୁଅଛି ମୁହିଁ ॥
ସୁତ ବୋଲନ୍ତି ଗୁରୁଦେବ । ହେ ବତ୍ସ କହିଦେବା ସର୍ବ ॥
ଯାହା ପଚ଼ାରୁଅଛୁ ମୋତେ । ସେ କଥା ଶୁଣ ଶୁଦ୍ଧଚିତ୍ତେ ॥
ଅ କାର ଉଁ କାର ମ କାର । ତ୍ରିତତ୍ତ୍ୱ ହୋଇ ଏକାକାର ॥

ମହା ନିତ୍ୟର ପରେ ଯାଇଁ । ରହିଛି ଏକାକାର ହୋଇ ॥
ଏକ ଯେ କାର ଏକାକ୍ଷର । ଶୁଣ ହୋ ତହିଁର ବିଚାର ॥
ସ୍ତିରୀ ପୁରୁଷ ଏକ ଅଙ୍ଗ । କେବେ ହେଁ ନୁହଇ ବିଭଙ୍ଗ ॥
ନିତ୍ୟ ବୃନ୍ଦାବନଟି ସେହି । ଶ୍ରୀରାଧାକୃଷ୍ଣ ଏକଦେହୀ ॥
ଅତି ପ୍ରେମରେ ଦୁଇ ଜଣ । ନିବିଡ଼େ ହୋଇଛି ବନ୍ଧନ ॥
ପ୍ରେମ ରହସ୍ୟେ ଦେଇ ମତି । ଅଧରେ ଅଧର ଚୁମ୍ବନ୍ତି ॥
ସେ ସୁଧା ରସ ପିବା ତୋଷ । ଦୁହେଁ ଦୁହିଁଙ୍କ ହୋନ୍ତି ବଶ ॥
ସେ ଦୁଇ ଜଣଙ୍କ ଅଧରୁ । ରସ ଗଳିଲା ସେହିଠାରୁ ॥
ଅମୀୟ ସୁଧାରସ ଲୀଳା । ଶ୍ରୀରାଧା ପାଦରେ ପଡ଼ିଲା ॥
ସେ ପାଦ ସୁଧାରସୁ ପୁଣ । ଜନ୍ମ ହୋଇଲେ କୃଷ୍ଣ ଜାଣ ॥
କୃଷ୍ଣର ପାଦେ ପଡ଼ି ଯେହୁ । ଗୋପୀ ଜନମ ହେଲେ ତହୁଁ ॥
ଏମନ୍ତେ ଗୋପୀକୃଷ୍ଣ ହୋଇ । ଶୁଣ ହେ ବତ୍ସ ମନଦେଇ ॥
ଶୁଣି ବୋଲନ୍ତି ବତ୍ସ ପୁଣ । ହେ ଗୁରୁଦେବ ପରିତ୍ରାଣ ॥
କହିଲ ନିତ୍ୟ ସ୍ଥୂଳ ପୁଣ । ଯେମନ୍ତେ ହୋଇଲା ଭିଆଣ ॥
ଏବେ କହିବା ଆନ ରୀତି । ଯେମନ୍ତେ ଫିଟିବ ଦୁର୍ଗତି ॥
ପୁଣି କେମନ୍ତେ ସୁତ ଜାତ । କହିବା ହୋଇବେ ତଦନ୍ତ ॥
ଗୁରୁ ବୋଲନ୍ତି ସୁତ ଶୁଣ । କହିବା ତହିଁର ଯେ ଗୁଣ ॥
ବ୍ରହ୍ମାର ବୀର୍ଯ୍ୟେ ହୋଇ ଜାତ । ହୋଇଲେ ଷୋଳସସ୍ତ୍ର ସୁତ ॥
ଦଇବିଯୋଗେ ଜାତ ପୁଣ । ଷୋଳ ଯେ ସସ୍ତ୍ର ଋଷିଗଣ ॥
ବତ୍ସ ବୋଲଇ ତାହା ଶୁଣି । କେମନ୍ତେ ଜାତ ହେଲେ ମୁନି ॥
କହନ୍ତି ଗୁରୁ ତୋଷ ହୋଇ । ଶୁଣ ହେ ବାଲୁତ ତନୟୀ ॥
ସମସ୍ତ ଦେବ ଏକମେଳେ । ବ୍ରହ୍ମା ସହିତେ ଦିଗପାଳେ ॥
ସୁଧର୍ମା ସଭା ମଧ୍ୟେ ବସି । ଥିଲେ ସମସ୍ତେ ଦେବଋଷି ॥
ଏମନ୍ତ ସମୟରେ ତହିଁ । ମଦନା ନାମେ ବେଶ୍ୟା ଯାଇ ॥
ପ୍ରବେଶ ହୋଇଲା ସଭାର । ମନେ ବିଚାରେ ବେଦବର ॥
ବୋଲଇ ବେଶ୍ୟା ମୁଖ ଚାହିଁ । କି କାର୍ଯ୍ୟେ ଅଇଲୁ ଏଠାଇଁ ॥
ଯେବେ ଅଇଲୁ ଏହି ସ୍ଥାନ । ଦେଖନ୍ତୁ ସର୍ବେ ଦେବଗଣ ॥
ତାଣ୍ଡବ ରାଗେ ନୃତ୍ୟ କର । ହସି ବୋଲନ୍ତି ବେଦବର ॥
ତା ଶୁଣି ମଦନା ସୁନ୍ଦରୀ । ନାଚଇ ହୋଇ ଫେରି ଫେରି ॥

ତାଣ୍ଡବ ରାଗେ ଗୀତ ଗାଇ । ହସି ହସାଇ ଜନ୍ ମୋହି ।।
ଦେଖି ହରଷ ବେଦବର । ମଦନେ ହୋଇ ଜରଜର ।।
ମଦନେ ଉଚ୍ଚାଟ ହୋଇଣ । ସମସ୍ତେ ଉଚ୍ଛନ୍ନ ହୋଇଣ ।।
ଯେ ଯାହା ମତେ ଗଲେ ଚଳି । ବ୍ରହ୍ମାର ଦେହୁ ରସ ଗଳି ।।
ସେ ବିନ୍ଦୁ ରସ ମହୀସ୍ଥଳ । ପଡ଼ିଣ ହୋଇଲା ଆଲୋଳ ।।
ତହୁଁ ଜନ୍ମିଲେ ଋଷିଗଣ । ଶୁଣ ହୋ ବତ୍ସ ଦେଇ ମନ ।।
ସେ ବାଳପୁଅ ଜନ୍ମ ହୋଇ । ଦେଖିଣ ବ୍ରହ୍ମା ବିଚାରଇ ।।
ପୋୟେ ଦେଖିଲେ ପିତାମହ । ଦେଖିଣ ହୋଇଲେ ସେନେହ ।।
ଦେଖି ହରଷ ବ୍ରହ୍ମା ହୋଇ । ବଦନୁ ବାକ୍ୟ ନ ସ୍ଫୁରଇ ।।
ବ୍ରହ୍ମାର ପାଦ ତଳେ ପଡ଼ି । ପୋୟେ ବୋଲନ୍ତି ଶିରେ ଯୋଡ଼ି ।।
ଭୋ ତାତ ଶୁଣ ମନ ଦେଇ । କହ କେମନ୍ତେ ତରିବଇଁ ।।
ଜୀବର ଗତି ତୁମେ ମୋତେ । ପୁଚ୍ଛିଲ କହିବି ଯୁଗତେ ।।
ମୋତେ ଶ୍ରୀକୃଷ୍ଣ କଲେ ଜାତ । ନାଭିରୁ ପଦ୍ମେକ ଉକତ ।।
ସେ ପଦ୍ମ ମୁହିଁ ଜାତ ହୋଇ । ମୋ ନାମ ପଦ୍ମଯୋନି ହୋଇ ।।
ଦେଖ ମୋହର ଚତୁର୍ମୁଖ । ସୃଷ୍ଟି ସର୍ଜନେ ପଦ୍ମମୁଖ ।।
ଯେ ଚତୁର୍ମୁଖ ମୋର ହୋଇ । ଶୁଣ ହୋ ବତ୍ସ ମନ ଦେଇ ।।
ପଶ୍ଚିମ ମୁଖ ସାମବେଦ । ଋକ୍ ଯେ ବେଦ ପୂର୍ବଦିଗ ।।
ଦକ୍ଷିଣ ଅଥର୍ବ ଅଟଇ । ଉତ୍ତରେ ଯଜୁର୍ବେଦ ରହି ।।
ଏ ଚାରି ବେଦ ମୋର ମୁଖ । ତେଣୁ ସର୍ଜଇ ସର୍ବଲୋକ ।।
ଆହୁରି ଶୁଣ ମନ ଦେଇ । ସାମ ଯେ ନୟନ ଅଟଇ ।।
ଯଜୁ ଯେ ବେଦ ନାସା ନାମ । ମୁଖରେ ଋକ୍ ଯେ ପ୍ରମାଣ ।।
କର୍ଣ୍ଣ ଅଥର୍ବ ଅଛି ହୋଇ । ଭୋ ସୁତ ଶୁଣ ମନ ଦେଇ ।।
ବେଦରେ ସୃଷ୍ଟି ମୁଁ କରଇ । ସୁଗତି ପଥ ନ ଜାଣଇ ।।
ଯେବେ ପୁଚ୍ଛିଲୁ ମୋତେ ପୁଣ । ଶୁଣ ହେ ସୁତ ଦେଇ ମନ ।।
ଯେ ଅଷ୍ଟାଦଶ ସିଦ୍ଧି ଯୋଗ । ମୁହିଁ ଜାଣଇ ବ୍ରହ୍ମଭାଗ ।।
ସେ ଯୋଗ ଶୁଣ ମନ ଦେଇ । ଆସନ ସିଦ୍ଧି ଯେଣୁ ହୋଇ ।।
ଆସନ ପାଦାସନ ଦୁଇ । ଏ ଦୁଇ ମନ୍ତ୍ର ହୃଦେ ଧ୍ୟାୟି ।।
ପୁରେକ କୁମ୍ଭେକଣ ଟେକ । ରେଚକ ହୋଇଅଛି ଦେଖ ।।
ପବନ ନିରୋଧ କରିଣ । ଜିହ୍ୱାକୁ ଲେଉଟାଇ ପୁଣ ।।

ଘଣ୍ଟିକାଠାରେ ଲଗାଇବ । ମନପବନ ଏକ ଭାବ ॥
ଅଙ୍ଗ ଯେ ନ୍ୟାସ କର ନ୍ୟାସି । ଏ ସର୍ବ ଯୋଗ ମୁଁ ଅଭ୍ୟାସି ॥
ହେ ସୁତ ଯୋଗ ଧ୍ୟାନ କର । ବାଲୁଙ୍କା ପୂଜି ତତପର ॥
ଏତେକ କହି ବ୍ରହ୍ମା ଗଲେ । ସେ ପୁତ୍ର ମନେ ବିଚାରିଲେ ॥
ଘୋର ଗହନ ବନେ ମିଳି । ବାଲୁଙ୍କା ପୂଜି ତପକରି ॥
ଷୋଳ ସହସ୍ର ବ୍ରହ୍ମମୁନି । ଘୋର ତପସ୍ୟା କଲେ ପୁଣି ॥
ଦେଖି ତପସ୍ୟା ତାହାଙ୍କର । ପ୍ରସନ୍ନ ହୋଇଲେ ଶଙ୍କର ॥
ବୋଇଲେ ମାଗ ଦେବା ବର । ଆମେ ପ୍ରତ୍ୟକ୍ଷେ ଉମାବର ॥
ଯାହା ମାଗିବ ଦେବା ଆମ୍ଭେ । ସ୍ୱରୂପ କହିଲ ଯେ ତୁମ୍ଭେ ॥
ଶୁଣି ବାଳକେ ତୋଷ ହୋଇ । ବୋଲନ୍ତି ଶୁଣ ଉମାସାଇଁ ॥
ଯେବେ ପ୍ରତ୍ୟକ୍ଷେ ତୁମେ ହର । ସୁମତି ଗତି ଦିଅ ବର ॥
ଜୀବନ ସଫଳ ହେଇବ । ଭକ୍ତିର ପଥ ଆଜ୍ଞା ହେବ ॥
ଶୁଣି ବୋଇଲନ୍ତି ଦେବକାଶୀ । ଶୁଣ ହେ ତୁମ୍ଭେ ସର୍ବ ଋଷି ॥
ସେ ପଥ ନାହିଁ ଅଧିକାର । ଯେ ଭକ୍ତି ମୁକତିର ଦ୍ୱାର ॥
ତହିଁକି ଉପମା କହିବା । ଯେବେ ଲଭିବ ଭକ୍ତି ସେବା ॥
ସେ କଥା ଶୁଣ ମନ ଦେଇ । ସୁବାହୁ ଦ୍ୱାପରରେ ଯାଇଁ ॥
ଯମୁନା କୂଳେ ଗୋପପୁର । ତୁମ୍ଭେ ହୋଇବ ଅବତାର ॥
ପୁରୁଷ ଅଙ୍ଗ ତେଜ୍ୟ କରି । ସର୍ବେ ହୋଇବ ଗୋପନାରୀ ॥
ମଥୁରା ବସୁଦେବ ଘରେ । ଜନ୍ମ ହୋଇବେ ଚକ୍ରଧରେ ॥
କଂସର ଡରେ ବସୁଦେବ । ଗୋପରେ ନେଇଣ ଛାଡ଼ିବ ॥
ନନ୍ଦ ଭୁବନେ ଥିବେ ରହି । ସେବା କରିବ ସର୍ବ ଗୋଇ ॥
ଏ କଥା ହୋଇବ ପ୍ରମାଣ । ଶୁଣ ହେ ସର୍ବ ଋଷିଗଣ ॥
ଏମନ୍ତ କହି ହର ଗଲେ । ଶୁଣି ହରଷ ଋଷି ହେଲେ ॥
ହେତୁ କହଇ ମନ ଆଗେ । ଗୁରୁ କହିଲେ ଅନୁରାଗେ ॥
ଶୁଣି ସନ୍ତୋଷ ମନ ହେଲା । ଆନନ୍ଦେ ପ୍ରଣମିତ ହେଲା ॥
ଗୋପୀ ଜନମ କର୍ଣ୍ଣେ ଶୁଣି । ଆନନ୍ଦ ହୋଇ ବସ୍ର ପୁଣି ॥
ଗୁରୁଙ୍କ ଆଗେ ପୁଣ ପୁଣି । ଆନନ୍ଦେ ବସ୍ର ପରଣାମି ॥
ଶୋକେ ହୋଇଣ ଗଦଗଦ୍ । ପଡ଼ି ଗଡ଼ଇ ପଦ୍ମପାଦ ॥
ତାହିଁ ବୋଲଇ ଗୁରୁ ମୁଖ । ଅଧମ ଅନନ୍ତକୁ ରଖ ॥

 

ତୁମ୍ଭ ଚରଣ ବିନୁ ଆନ । ନୋହିବ ଆଉ କଦାଚନ ॥
ହେ ଗୁରୁଦେବ ଆଜ୍ଞା ହେଉ । ଏ ବିନୁ ଅନ୍ୟ ଗତି ନୋହୁ ॥
ଏହି ପାଦକୁ କରି ଆଶ । ଅନନ୍ତ ଖଣ୍ଡିବ କଲ୍ମଷ ॥

ଇତି ଶ୍ରୀମଦ୍‌ଭାଗବତେ ହେତୁ ଉଦେ ଗୁରୁ ଶିଷ୍ୟ ମୋକ୍ଷଣେ
ଗୋପୀଜନ୍ମକଥନେ ନାମ ଅଷ୍ଟମୋଧ୍ୟାୟଃ ।

## ନବମ ଅଧ୍ୟାୟ

ଶୁଣ ହେ ହେତୁ ମନ ଦେଇ । ପୁଣି ଶ୍ରୀଗୁରୁ ଯାହା କହି ॥
ହେତୁ କହଇ ମନ ଶୁଣ । ଶ୍ରୀଗୁରୁ ଆଜ୍ଞା ଯେ ପ୍ରମାଣ ॥
ଶ୍ରୀଗୁରୁ ପାଦତଳେ ପଡ଼ି । ବତ୍ସ ପୁଚ୍ଛଇ କର ଯୋଡ଼ି ॥
କହିବା ହେବ ଗୁରୁ ବାଣୀ । କେମନ୍ତେ ଲଭେ ଚକ୍ରପାଣି ॥
ସେ କଥା ଫେଡ଼ି ମୋତେ କହ । ଯେମନ୍ତେ ନ ରୁହେ ସଂଶୟ ॥
ଶୁଣି କହନ୍ତି ଗୁରୁଦେବ । ଶୁଣ ହେ ବତ୍ସ ଏ ସୁଲଭ ॥
ନନ୍ଦ ମନ୍ଦିରେ ଭଗବାନ । ବେଢ଼ି ସକଳ ଗୋପୀଗଣ ॥
ଦେଖି ଆନନ୍ଦ କଲେ ମନ । ହରଷ କରିଣ ବଦନ ॥
ପୂର୍ବର ହେତୁ ମନେ କଲେ । ନୟନେ ସ୍ୱରୂପ ଦେଖିଲେ ॥
ବତ୍ସ ବୋଲଇ ମନେ ଗୁଣି । ହେ ଗୁରୁଦେବ କହ ପୁଣି ॥
ସେ ହେତୁ ଆଜ୍ଞା ମୋତେ କର । ଏ ଭବସାଗରୁ ଉଦ୍ଧାର ॥
ହେ ବତ୍ସ ଶୁଣ ମନ ଦେଇ । ଅନାଦି ଅବିଦ୍ୟା ଅଟଇ ॥
ବିନ୍ଦୁ ହୃଦରେ ହେତୁ ଦେଇ । ଅଚିନ୍ତେ ଛନ୍ତି ଗୋପ ଗୋଇ ॥
ମଣି ଯେ ମୟ ମଣ୍ଡପରେ । ରତ୍ନ ଯେ ପଲଙ୍କ ଉପରେ ॥
ତହିଁ ବସାଇ ଚକ୍ରପାଣି । ପିଛଡ଼ା ଚାମର ଖଟଣି ॥
ହେତୁକୁ ରଖି ସେହିଠାଇଁ । ଗୃହ କୀରତି କରେ ଗୋଇ ॥
ଖେଦ ସମାଧି ତାହାଙ୍କର । ଭୂଲତା ମଧ୍ୟେ କରି ଘର ॥
ନିତ୍ୟ ଯେ ବୃନ୍ଦାବନ ସେହି । ଯହିଁର କ୍ଷଣେ ଭଙ୍ଗ ନାହିଁ ॥

ଶ୍ରୀରାଧାକୃଷ୍ଣ ଏକ ଦେହୀ । ସେ କାମବୀଜଟି ଅଟଇ ॥
ଲ କାର କ କାର ଇ କାର । ଏ କାମବୀଜର ବିଚ୍ଚାର ॥
ଏ ତିନି ଅଟେ ଯେହ୍ନୁ ପୁଣ । ହେତୁ କରିଣ ମନେ ଶୁଣ ॥
ଧବଳ ଯେତେକ ନୟନ । ଲ କାର ଅଟଇ ପ୍ରମାଣ ॥
ଧବଳ ଘରେ ଯେ କ କାର । ଯୋଗ ଯେ ମାୟାର ଶରୀର ॥
ତଥିର ଉପରେ ଇ କାର । ବିନ୍ଦୁ ବ୍ରହ୍ମଟି ନାମ ତାର ॥
ତାପରେ ଅଛି ଯେହ୍ନୁ ପୁଣ । ଦେଖ ତୋ ନୟନ ଆଗେଣ ॥
ଯେହ୍ନୁ ହେତୁରେ ଗୋପୀଛନ୍ତି । ବେଦ ପୁରାଣ ନ ଜାଣନ୍ତି ॥
କ୍ଷୀର ସମୁଦ୍ରେ ଗୋପୀ ଦୂତୀ । ରହିଣ୍ଛନ୍ତି ନିରବଧି ॥
ଯେଣୁ ପଲକେ ଛଡ଼ା ନାହିଁ । ନିମଗ୍ନ ହୋଇ ଗୋପଗୋଇ ॥
ତୁ ଯେ ମୋହର ବୋଲକର । ହେତୁକୁ ଭୂଲତା ଉପର ॥
ରଖି ଶରଣ ପଶ ତୁହି । ମନ୍ତ୍ର ଯେ ଯନ୍ତ୍ର ଏଥି ନାହିଁ ॥
ବସ୍ତ ବୋଲଇ ଗୁରୁଦେବ । କେବଣ ଅଙ୍ଗ ଭକ୍ତଭାବ ॥
ଫେଡ଼ି ସୁକୃପା ମୋତେ କର । ଯେବେ ଶରଣ ତୋ ପୟର ॥
ହସି କହନ୍ତି ଗୁରୁଦେବ । ଭକ୍ତିର ଅଙ୍ଗ କର ଠାବ ॥
ହରେ ବୋଲିଣ ଯାହା କହି । ସେ ଅଙ୍ଗ ଭକ୍ତିଟି ବୋଲାଇ ॥
ଯେମନ୍ତେ ହେଲେ ଭକ୍ତି ଅଙ୍ଗ । କୋଟି କଷ୍ଟରେ ନୁହେଁ ଭଙ୍ଗ ॥
ହରେ ପ୍ରଧାନ ଶକ୍ତି ହୋଇ । ହରେ ସକଳ ବ୍ୟାପିଛଇଁ ॥
ହରେ ପ୍ରଧାନ୍ ଶକ୍ତି ଜାଣ । ହରେ ସର୍ବ ମଙ୍ଗଳ ପୁଣ ॥
ହରେ ଯେ ପ୍ରେମ ରୂପା ହୋଇ । ହରେ ଯେ ସେ ଶନି ଅଟଇ ॥
ହରେ ବିରାଟ ରୂପସାର । ହରେ ଯେ ଅଟେ ହରିହର ॥
ହରେ କୁଞ୍ଜଳା ଭୂମି ହୋଇ । ହରେ ଦୂତୀକା ବସେ ମୋହି ॥
ହରେଟି ଯୋଗ ମାୟାଅଙ୍ଗ । ତିଳେ ହେଁ ନାହିଁ ତା'ର ଭଙ୍ଗ ॥
ହରେ ଅନ୍ତର ରୂପୀ ହୋଇ । ହରେ ସକଳ ଘଟେ ଥାଇ ॥
ହରେ ଈଶ୍ୱର୍ ନିରଞ୍ଜନ । ମାୟା ଶୟନେ ଭିନ୍ନ ଭିନ୍ନ ॥
ହରେ ଯେ ସୁଦର୍ଶନ ନାମ । ହରେ ପରମ ବୀଜ ଜାଣ ॥
ହରେ ସକଳ ଅଛି ହୋଇ । ହରେ ବ୍ୟତୀତେ ଅନ୍ୟ ନାହିଁ ॥

ହରେ ନିୟତ ତତ୍ତ୍ୱ ହୋଇ । ଶ୍ରୀମନ୍ତ୍ରରାଜଟି ବୋଲାଇ ॥
ହରେ ଅଟଇ ଦଶାକ୍ଷର । ହରେ ଯେ କାମ ମନୋହର ॥
ହରେ ଅଷ୍ଟାକ୍ଷର ବୋଲାଇ । ଯେଣୁ ସେ ରାଧା ଅଙ୍ଗ ହୋଇ ॥
ହରେ ଯୁଗଳ ଅଙ୍ଗ ଜାଣ । ତେଣୁ ଯୁଗଳ ମନ୍ତ୍ର ପୁଣ ॥
ଯୁଗଳ ଅଙ୍ଗ ଭାବ ପୁଣ । କହିବା ତୋହର ଆଗେଣ ॥
ହରେ ଯେ ଶ୍ରୀରାଧା ଅଟନ୍ତି । ରେ' ଯେ ଶ୍ରୀକୃଷ୍ଣ ମୂରତି ॥
ଯୁଗଳ ମନ୍ତ୍ର ରାଧାଶ୍ୟାମ । ବତିଶ ଅକ୍ଷର ନିର୍ମାଣ ॥
ଆବର ଶୁଣ ମନଦେଇ । ଭଜନ ବତିଶ ଅଟଇ ॥
ହ'ଟି ଚନ୍ଦ୍ରମା ଅଟଇ । ଏଥିରୁ ଷୋଳକଳା ହୋଇ ॥
ରେ ଯେ ସୂର୍ଯ୍ୟ ହୋଇ ଜାଣ । ଷୋଳକଳା ଯେ ନିରିମାଣ ॥
ଚନ୍ଦ୍ରର ଷୋଳକଳା ଯେହୁ । ଉପର ଦନ୍ତପନ୍ତି ସେହୁ ॥
ଏ ଷୋଳକଳା ସୂର୍ଯ୍ୟଙ୍କର । ତା ତଳ ଦନ୍ତପନ୍ତି ସାର ॥
ଏମନ୍ତେ ବତିଶ ଅକ୍ଷର । ଭଜନ ଅଟେ ନିରାଧାର ॥
ଏଥିରେ ଦଶାକ୍ଷର ବୋଲ । ପରମ ବ୍ରହ୍ମ ଯେ ସୁଲଭ ॥
ଭଜନ କରିବ ମୁଖର । ମନ୍ତ୍ର ସୂତ୍ରରେ ଗଣ୍ଠି ପାର ॥
ଏହି ସେ ଭଜନ ଦୁର୍ଲ୍ଲଭ । ଶ୍ରୀସନ୍ଥ ସାଧୁଙ୍କର ଭାବ ॥
ଆବର ଅଷ୍ଟାକ୍ଷର ପୁଣ । ଗୁରୁଦେବଙ୍କ କୋଠଧନ ॥
ରାଧା ଯେ କୃଷ୍ଣ ରାଧା ସ୍ୱାହା । ଗୁପତ କରି ରଖ ଏହା ॥
ମନରେ ସୁମରଣା କର । ନୋହିବ ପ୍ରଘଟ ନ କର ॥
ଅତି ଗୁପତ ଧନ ଏହି । ପ୍ରଘଟ ନ କରିବୁ କାହିଁ ॥
ଯେବେ କରିବୁ ବାବୁ ତୁହି । ଚରଣେ ହାରିବୁ କହଇ ॥
ଯନ୍ତ୍ର ଯେ ମନ୍ତ୍ର ଆଦି ଯେତେ । ଏମାନ କହିବୁ ଯୁଗତେ ॥
ଏ ଅଷ୍ଟାକ୍ଷର ନ କହିବୁ । କହିଲେ ଚରଣେ ହାରିବୁ ॥
ଏବେ କହିବା ତୋତେ ଫେଇ । ଲୟାଙ୍ଗ ଲୀଳାଙ୍ଗ ବୁଝାଇ ॥
ଭୋଗାଙ୍ଗ ଅଟେ ତଥିପର । ବିଳାସୀ ଅଙ୍ଗ ଅଟେ ସାର ॥
ଏ ଭାବ ବୁଝି ଯେହୁ ଥାଇ । ଭଜନ ସିଦ୍ଧି ତାର ହୋଇ ॥
ଯେବେ ନ ଜାଣେ ସେହୁ ସାର । ଭଜିଲେ ହୁଅଇ ନିଷ୍ଫଳ ॥

ବିଳାସୀ ଅଙ୍ଗ ବୁଝିଥାଇ । ଭଜିଲେ ସଂସିଦ୍ଧ ହୁଅଇ ॥
ଏବେ ତୁ ଶୁଣ ମନଦେଇ । ବିଳାସୀ ଅଙ୍ଗ ଦେବା କହି ॥
ରାଧାବିଳାସୀ ନିଜ ଅଙ୍ଗ । କୋଟି ଯୁଗରେ ନୁହେଁ ଭଙ୍ଗ ॥
ଏ ଭାବ ଶୁଣି ବସ୍ତ ପୁଣ । ନମଇଁ ଶ୍ରୀଗୁରୁଚରଣ ॥
ଭୋ ଗୁରୁଦେବ ପରିତ୍ରାଣ । କରି ତାରିଲ ପଶୁ ଜନ୍ମ ॥
ଏବେ ଶରଣ ଗଲି ମୁହିଁ । ଅଗମ୍ୟ ଗମ୍ୟବୋଲି କହି ॥
ନିଗମ ବଚନ କହିଲ । କହି ମୋ ସଂଶୟ ଫେଇଲ ॥
ପିଣ୍ଡ ବ୍ରହ୍ମାଣ୍ଡ ମୁଁ ଜାଣିଲି । ସୁଗତି ପଥହିଁ ଦେଖିଲି ॥
ଯନ୍ତ୍ର ଯେ ମନ୍ତ୍ର ଆଦି ଯେତେ । ଫେଡ଼ି କହିଲ ସବୁ ମୋତେ ॥
ମୁଁ ଯେ ଅଧମ ଦୁରାଚାର । ସୁଗତି ହୋଇଲା ମୋହର ॥
ତୁମ୍ଭେ କରୁଣାମୟ ସିନ୍ଧୁ । ତାରିଲ ଭବ ପରମାଦୁ ॥
ଏ ଭବ ସଂସାର ଗହନ । ଫିଟିଲା ମୋହର ବନ୍ଧନ ॥
ଯେ ସୁକୃପା ତୁମ୍ଭ ହେଲା । ତେଣୁ ମୋ ବନ୍ଧନ ଫିଟିଲା ॥
ସାଗର ମଧ୍ୟରୁ ତାରିଲ । ନାମ ନାବରେ ବସାଇଲ ॥
ସେ ନାବେ ବସି ହେଲି ପାରି । ଖଣ୍ଡିଲି ଦୁର୍ଗତି ମୋହରି ॥
କେବଳ ତୁମ୍ଭର ଚରଣ । କି ପ୍ରୟୋଜନ ଅନ୍ୟେ ପୁଣ ॥
ଶ୍ରୀଗୁରୁ ଆଗେ ବସୁଦେବ । ସର୍ବ ଜୀବରେ ଏକ ଭାବ ॥
ସକଳ ଘଟେ ହୋଇ ପୂର୍ଣ୍ଣ । ନାହିଁ ତାହାର ବର୍ଣ୍ଣାବର୍ଣ୍ଣ ॥
ଅବର୍ଣ୍ଣ ବର୍ଣ୍ଣ ସେ ନୁହଇ । ଅଦୃଷ୍ଟି ଗୋଚରରେ ରହି ॥
ଏହା ଦେଖାଇ ଗୁରୁଦେବ । ଯେଣୁ ସେ ଗୁରୁ ବାସୁଦେବ ॥
ଗୁରୁ ବୈଷ୍ଣବ କୃଷ୍ଣ ଏକ । ଯେମନ୍ତ ଦେଖିଲି ପ୍ରତ୍ୟକ୍ଷ ॥
ଶ୍ରୀଗୁରୁ ଦେଖାଇଣ ଦେଲେ । ମୁଁ ଏହି ଏମନ୍ତ ବୋଇଲେ ॥
ମୁଁ ଦେଖି ହୋଇଲି ସନ୍ତୋଷ । ଫଳିଲା ମନର ବିଶ୍ୱାସ ॥
ମନ ପ୍ରସନ୍ନ ଯହୁଁ ହେଲା । ତେଣୁ ମୋ ଦୁର୍ଗତି ଫିଟିଲା ॥
ଦର୍ଶନ କଲି ଗୁରୁ ପାଦ । ଖଣ୍ଡିଲି ସକଳ ପ୍ରମାଦ ॥
ଏମନ୍ତ କହି ବସ୍ତମଣି । ଶ୍ରୀଗୁରୁ ପାଦେ ପରଣାମି ॥
ହେତୁ ଯେ ମନ ଆଗେ କହି । ଶ୍ରୀଗୁରୁବିନୁ (ଅନ୍ୟ) ଗତି ନାହିଁ ॥

ଗୁରୁ ପରମ ସୁଖଦାତା । ଗୁରୁ ସେ ଅଖିଳ କରତା ॥
ଏଣୁ ଗୁରୁଙ୍କ ପାଦେ ଭଜି । ମାୟା ସକଳ ଦୂରୁ ତେଜି ॥
ନ ଲାଗେ ମାୟାମୋହ ପାଶ । ଛେଦଇ ସକଳ କଲ୍ମଷ ॥
ଶ୍ରୀଗୁରୁ ପାଦ ହୃଦେ ଧରି । କହଇ ଅନନ୍ତ ବିସ୍ତାରି ॥
ଯେ ହେତୁ ଉଦେ ଭାଗବତ । ସୁଜନ ଜନଙ୍କର ହିତ ॥

ଇତି ଶ୍ରୀମଦ୍‌ଭାଗବତେ ଗୁରୁଶିଷ୍ୟ ମୋକ୍ଷଣେ ଭକ୍ତି ତତ୍ତ୍ୱ
କଥନେ ନାମ ନବମୋଧ୍ୟାୟଃ ।

## ଦଶମ ଅଧ୍ୟାୟ

ଏଥିଉତ୍ତାରୁ ହେଲା କିସ । ହେ ହେତୁ କହିବା ବିଶେଷ ॥
ହେତୁ କହଇ ମନ ଶୁଣ । ପୁଣି ପୁଚ୍ଛଇ ବସ୍ତୁ ଜାଣ ॥
ସେ ଗୁରୁ ପାଦେ ଦେଇ ଚିତ୍ତ । ବୋଲଇ ହେଇ କୃତକୃତ୍ୟ ॥
ଭୋ ଗୁରୁଦେବ ଶୁଣ ତୁମ୍ଭେ । ପୁଚ୍ଛଇ ତୁମ୍ଭ ପାଦପଦ୍ମେ ॥
ଶ୍ରୀନୀଳଗିରି କ୍ଷେତ୍ର ଧାମ । କହିବାହେବ ଅନୁପମ ॥
ଯେ କ୍ଷେତ୍ରବର ଶୁଣ ତୁହି । ବିରାଟ ଶେଷଦେବ ହୋଇ ॥
ଯେ ବଟପୁଟ ଅଛି ତହିଁ । ତା ମାୟା ଅନ୍ତ କରି ନୋହି ॥
ଯୋଗମାୟାଟି ତାର ନାମ । ସେ ବଟ ଶିଖେ ନାରାୟଣ ॥
ତେଣୁ ନୀଳାଦ୍ରି ନାମ ବହି । ଅନନ୍ତରୂପୀ ଭାବଗ୍ରାହୀ ॥
ପଞ୍ଚ ଯେ କୋଶ ପଞ୍ଚଜନ୍ୟ । ଶଙ୍ଖ ମଧ୍ୟରେ ପଞ୍ଚ ପୁଣ ॥
ପଞ୍ଚ ଆତ୍ମିକ ଯେ ବୋଲଇ । ଶୁଣ ସୁମନେ ସୁତ ତୁହି ॥
ଅପାନ ଶ୍ୱେତବର୍ଣ୍ଣ ମୂର୍ତ୍ତି । ସାମ ଯେ ନିରାକାର ଜ୍ୟୋତି ॥
ସମାନ ରଙ୍ଗ ବର୍ଣ୍ଣାସାର । ଯଜୁ ଯେ ଜୀବ ଆତ୍ମା ଘର ॥
ଉଦାନ ହେମ ବର୍ଣ୍ଣ ଶୋହି । ଋକରେ ଅମୃତ ଭାସଇ ॥
ବ୍ୟାନର ବର୍ଣ୍ଣ ଦିଶେ କଳା । ଅଥର୍ବ ବେଦ ସର୍ବ ମେଳା ॥
ଯେ ପଞ୍ଚ ଶଙ୍ଖ ନାଭିରେଣ । ମଧ୍ୟେ ବିହରେ ନାରାୟଣ ॥
ଯେ ପଞ୍ଚ ଶବଦେ କରନ୍ତି । ଶତ ଶବଦ ଉଚ୍ଚାରନ୍ତି ॥

 

ହରିତ ବର୍ଣ୍ଣ ଋକ୍ ବେଦ । ସୁସ୍ୱାଦ ସୁନାଦ ଶବଦ ॥
ଯୁଜର୍ବେଦ ଯେ ପୀତ ବର୍ଣ୍ଣ । ଶାନ୍ତି ଶବଦ ଉଚ୍ଚାରଣ ॥
ସୁଗନ୍ଧ ପ୍ରାଣ ସେ କରଇ । ଦୁର୍ଗନ୍ଧ ମାନ ଆବୋରଇ ॥
ସୁଗନ୍ଧେ ପ୍ରକାଶ ସୁମନ । ଦୁର୍ଗନ୍ଧ କରଇ ବିମନ ॥
ଦୁହିଁକି ଭିନ୍ନ୍ ନ କରଇ । ଶାନ୍ତି ପବନ ଉଚ୍ଚାରଇ ॥
ସାମ ବେଦ ଯେ ବର୍ଣ୍ଣ ଶ୍ୱେତ । ଦୟା ଶବଦ ହୃଦଗତ ॥
ଦଶମୀ ଘାଟେ ଯେଣୁ ରହି । ଦୟା ଶବଦ ଆବୋରଇ ॥
ଋକ୍ ସାମର ଏକ ଘର । ସୁମନେ ଶୁଣ ବତ୍ସ ମୋର ॥
ଅଥର୍ବ ବେଦ ଯେ ଲୋହିତ । କ୍ଷମା ଶବଦ ଅନୁବ୍ରତ ॥
କ୍ଷେତ୍ର ଆବୋରି ଅଛି ମାୟା । କ୍ଷମା ଶବଦ ହେବ କାୟା ॥
ପ୍ରଚଣ୍ଡ ଅଗ୍ନି ତହିଁ ଥାଇ । ଅଙ୍ଗକେ ଜଳିଣ ଉଠଇ ॥
ଶିଶୁ ବେଦ ଯେ ନୀଳ ସରି । ତେଣୁ ଯେ ନାମ ନୀଳଗିରି ॥
କରୁଣା ଶବଦ ବହଇ । କରୁଣାସିନ୍ଧୁ ସେ ବୋଲାଇ ॥
ସିନ୍ଧୁ କୂଳେ ବିଜେ ଗୋବିନ୍ଦ । ସେ ପୁର ହରଷ ଆନନ୍ଦ ॥
ପରମ ପୁରୁଷ ଦେଉଳ । ନୀଳଚକ୍ର ଯେ ଶୂନ୍ୟ ଠୁଳ ॥
ନେତ୍ର ଯେ ବ୍ରହ୍ମା ବିଷ୍ଣୁ ହର । ଉତ୍ତୁଣ ଅଛି ଚକ୍ର ପର ॥
ଦେଉଳେ ବ୍ରହ୍ମାଣ୍ଡ ଗୋସାଇଁ । ବୁଦ୍ଧ ସ୍ୱରୂପେ ବିହରଇ ॥
ମାୟାକୁ ଦିଶଇ ସ୍ୱରୂପ । ସକଳ ରୂପ ଯହିଁ ଗୋପ୍ୟ ॥
ଅରେଖ ଅରୂପ ଅଚୂତ । ଅକ୍ଷୟ କ୍ଷର ସର୍ବଜାତ ॥
ଏମନ୍ତ ନୀଳାଦ୍ରି ମହିମା । ଦେବାକୁ ନାହିଁ ନା ଉପମା ॥
ପୁରୁଷମାନଙ୍କ ଉତ୍ତମ । ନାମ ତା ଶ୍ରୀପୁରୁଷୋତ୍ତମ ॥
ଏମନ୍ତ ଶ୍ରୀଗୁରୁ ବଚନ । ଶୁଣି ସନ୍ତୋଷ ବତ୍ସ ମନ ॥
ପୁଣି ପୁଚ୍ଛଇ ଗୁରୁପାଦେ । ଆନନ୍ଦ ହୋଇ ଗଦଗଦେ ॥
ବୋଲଇ ଶୁଣିମା ଗୋସାଇଁ । ଚାରି ଆସନ କାହା କହି ॥
ଫେଡ଼ି କହିବା ଗୁରୁଦେବ । ଶୁଣି ସଂଶୟ ମନୁ ଯିବ ॥
ଗୁରୁ ବୋଲନ୍ତି ବତ୍ସ ଶୁଣ । କହିବା ଏଥିର ବିଧାନ ॥
ବଶ୍ୟ ଯେ କଲେ ଇନ୍ଦ୍ରିଗଣ । ତାହାକୁ ବୋଲିବ ଶାସନ ॥
କାମକୁ ଜିଣିଲେ ହୋ ତହିଁ । କୁଶାସନ ଯେ ବୋଲି କହି ॥

ତୃଷାକୁ ନାଶିଲେ ହେ ପୁଣ । ବ୍ୟାଘ୍ର ଯେ ଚର୍ମ ବୋଲିଜାଣ ॥
କଳ୍ପନା କଲେ ହୋ ନିଧନ । ଆସନ ଅଟେ କୃଷ୍ଣାଜିନ ॥
ଏମନ୍ତ ଚାରି ଯେ ଆସନ । ତୋ ଆଗେ କହିଦେଲୁ ପୁଣ ॥
ଶୁଣି ବୋଲଇ ଶିଷ୍ୟ ପୁଣ । ଭୋ ଗୁରୁଦେବ ପରିତ୍ରାଣ ॥
ମାଳାମାନଙ୍କ ଗୁଣ ଯେତେ । ଫେଡ଼ିଣ କହ ଶୁଦ୍ଧଚିତ୍ତେ ॥
ଗୁରୁ ବୋଲନ୍ତି ବତ୍ସ ଶୁଣ । କହିବା ଶୁଣ ଦେଇ ମନ ॥
ସୁବର୍ଣ୍ଣ ସ୍ଫଟିକ ମୁକୁତା । ଶଙ୍ଖ ତୁଳସୀ ଅହୋଲତା ॥
ରୁଦ୍ରାକ୍ଷପୂର୍ଣ୍ଣ ଚନ୍ଦ୍ରିକାହିଁ । ଶୁଣ ହୋ ବତ୍ସ ମନଦେଇ ॥
ଏଥିରେ ମାଳା ଲୋଡ଼ା ନାହିଁ । କି ମାଳ ଲୋଡୁଅଛୁ ତୁହି ॥
ସଂସାରେ ଦେଖ ଅଛି କିଛି । ନାନା ଯେ ବର୍ଣ୍ଣମାଳା ଅଛି ॥
କରମ କଲା ପ୍ରାଣୀଙ୍କର । ସେ ମାଳା ଲୋଡୁ ତୁ ମନର ॥
କାଷ୍ଠ ଯେ ପାଷାଣ ଫଳରେ । ମାଳା ରଞ୍ଜନା ଏ ସଂସାରେ ॥
ଏ ମାନ କିଛି କାର୍ଯ୍ୟ ନାହିଁ । ହେ ବତ୍ସ ଶୁଣ ମନଦେଇ ॥
ଏହି ମାଳାକୁ ବତ୍ସ ଘେନି । ଜପିବା ଯେ ଦିବାରଜନୀ ॥
ଆସୁ ଯେ ଅଛି ଏହି ମାଳ । ଯାଉଁଣ ଅଛି ଶୂନ୍ୟଧାର ॥
ଦ୍ୱାଦଶ ଭୁଜରେ ନିର୍ମିତ । ତିନି ଯେ ପାଦରେ ଶୋଭିତ ॥
ତାହା କହିବା ଶୁଣ ତୁହି । ଗଙ୍ଗାଯମୁନା ଯେ ଅଟଇ ॥
ସରସ୍ୱତୀ ଯେ ତିନି ହୋଇ । ହେ ବତ୍ସ ଶୁଣ ମନଦେଇ ॥
ମହା ଯେ ବ୍ରହ୍ମ ରୂପମାଳା । ଭଜଇ ପରମ ନିକର ॥
ପାଦ ଯେ ଠାରୁ ଶିଖ ଯାଏ । ଏ ମାଳା ଲୟ ହୋ ନିଶ୍ଚୟେ ॥
ଅନ୍ୟ ମାଳାରେ କାର୍ଯ୍ୟ ନାହିଁ । ଏହି ମାଳାକୁ ଲାଅ ତୁହି ॥
ଭଜନ ସୁଅଙ୍ଗ ମନ୍ତ୍ରର । ରହିଛି ତୋହରି ଆଗର ॥
ଏହି ମାଳାରେ ଦିଅ ଦୃଷ୍ଟି । ଭବ ଯେ ଭୟ ପକା କାଟି ॥
ଚାରି ଖାନିରେ ମାଳା ଉଦେ । ଲୟ ଲଗାଅ ବ୍ରହ୍ମ ପାଦେ ॥
ହେ ବତ୍ସ କହିଲୁ ନିକର । ସାକ୍ଷୀ ଯେ ଲକ୍ଷ ଦୃଷ୍ଟାନ୍ତର ॥
କହିଲୁ ହେତୁ କର ତୁହି । ଏ ବିନୁ ଅନ୍ୟ ଆଉ ନାହିଁ ॥
ଯେତେ ମୁଁ କହିଲି ବୁଝାଇ । ରଖ ତୁ ହୃଦପଦ୍ମେ ନେଇ ॥
ସେହି ଠାବରେ ଚିନ୍ତାକର । ଭୂଲତା ମଧ୍ୟରେ ସଂହର ॥

ତିନି ପୁରରେ ତେଜୋରାଶି । ଫୁଟିଣ ବିକାଶି ଦିଶୁଛି ॥
ଅତି ନିର୍ମଳ ଶୋଭାକର । ରହିଛି ନାସା ରନ୍ଧ୍ର ଦ୍ୱାର ॥
ସେହି ଠାବରେ ଅହୋନିଶି । ଜଗିଣ ରହ ଦିବାନିଶି ॥
ଶ୍ରୀଗୁରୁ ବାକ୍ୟ କର୍ଣ୍ଣେ ଶୁଣି । କହଇ ଗଦଗଦ ବାଣୀ ॥
ହେ ଗୁରୁଦେବ ତ୍ରାହି କର । ମୁଁ ତୁମ୍ଭ ଚରଣେ କିଙ୍କର ॥
ଶରଣ ଜନ ମୁଁ ଅଟଇ । ତେଣୁ ଶରଣ ଗଲି ମୁହିଁ ॥
ଅପ୍ରାଧ ନ ଧର ମୋହର । ମୁଁ ଛାର ପତିତ ପାମର ॥
ଯେତେ କଲ୍ମଷ ମୋ ରହିଲା । ତୁମ୍ଭ କୃପାରେ ନାଶ ଗଲା ॥
ମିଳିଲା ପୁଣ୍ୟ ଫଳ ମୋତେ । ତୋର ଚରଣ ହୃଦଗତେ ॥
ଧରି ହୋଇଲୁ ଭବୁ ପାର । ଫିଟିଲା ଘୋର ଯେ ଅନ୍ଧାର ॥
ନମୋସ୍ତୁ ତୁମ୍ଭର ଚରଣ । ଅନାଦି ପରମ କାରଣ ॥
ନମସ୍ତେ ପ୍ରଭୁ ଭାବଗ୍ରାହୀ । ତୋ ବିନୁ ଅନ୍ୟ ଗତି ନାହିଁ ॥
ମୁଁ ଯେ ଅଧମ ଦୁରାଚାର । କି ଯୋଗେ ଭେଟିଲି ପୟର ॥
କି ସ୍ମର ନ ଯିବ ମୋ ମନୁ । ଏମନ୍ତେ ଭାବିଣ ତୋ ତନୁ ॥
ତୁମ୍ଭେ ଅନାଦି ବ୍ରହ୍ମରାଶି । ଯେ ପଥେ ଯୋଗୀଜନେ ପଶି ॥
ତୁମ୍ଭ ପ୍ରସନ୍ନେ ଝଳଝଳ । ଦିଶିଲା ଅତ୍ୟନ୍ତ ନିର୍ମଳ ॥
ଏସନ ହୋଇଲା ସୁଫଳ । ଦେଖିଲି ପ୍ରଭୁ ଆଦିମୂଳ ॥
ସେ ଆଦିମୂଳ ପଦ୍ମଲାଭ । ସଂସାର ଜନଙ୍କ ସୁଲଭ ॥
ଯେ ପାଦପଦ୍ମେ କରି ଆଶ । ଯେ ଜନ କରିବ ବିଶ୍ୱାସ ॥
ଘୋର କଲ୍ମଷ ନାଶ ଯାଇ । ଅନ୍ତେଣ ବୈକୁଣ୍ଠେ ବସଇ ॥
ଏମନ୍ତ ହେତୁ ମନ ଆଗ । କହନ୍ତି ହୋଇ ଅନୁରାଗ ॥
ଏ ରୂପେ ବତ୍ସ ଯେ ପୁଚ୍ଛିଲେ । ଶ୍ରୀଗୁରୁ ପ୍ରସନ୍ନ ହୋଇଲେ ॥
ଶ୍ରୀଗୁରୁ ଆଜ୍ଞା ପରମାଣ । ଲଭିଲା ପରମ କାରଣ ॥
ପରମ ପୁରୁଷ ସେ ଗୁରୁ । ତାରିଲେ ସଂସାର ମଧ୍ୟରୁ ॥
ଗୁରୁ ପରମ ମୁକ୍ତିଦାତା । ଗୁରୁ ସେ ଅଖିଳ କରତା ॥
ଗୁରୁ ନ ସେବି ଯେଉଁ ଜନ । ଭବରେ ଜନ୍ମ ପୁନଃ ପୁନଃ ॥
ନିସ୍ତାର ଗତି ସେ ନୁହଇ । ଅନ୍ତେ ନରକେ ପଡ଼େ ଯାଇ ॥
ନରକୁ ନୁହଇ ସେ ପାର । କରଇ ନରକ ଆହାର ॥

ଏମନ୍ତେ ଆତଯାତ ହୋଇ । ଜୀବ ଉଦ୍ଧରି ନ ପାରଇ ॥
କେମନ୍ତେ ହୋଇବି କାରଣ । ଦିଶଇ ଦଶ ଦିଗ ଶୂନ୍ୟ ॥
ଶୂନ୍ୟ ଭିତରେ ଛନ୍ତି ରହି । ମୋହର ଗମାଗମ ନାହିଁ ॥
ଯେ ଗୁରୁ ରଷି ଆପେ ସେହି । ତା ତହୁଁ ଅନ୍ୟ ଗତିନାହିଁ ॥
ଶ୍ରୀସନ୍ଥ ସାଧୁଙ୍କ ଚରଣ । ମତ୍ତ ଗରବେ ଗର୍ବ ପୁଣ ॥
ନ ସେବି ହୋଇଲଇଁ ବଣା । ଶ୍ରୀଗୁରୁ କଲେକ କରୁଣା ॥
ଶ୍ରୀଗୁରୁ ପାଦେ ଚିତ୍ତ ଦେଇ । ଯେ ହେତୁ ଉଦେ ଲେଖିଲଇଁ ॥
ଶରଣ ତାହାଙ୍କ ଚରଣ । ପାମର ଅନନ୍ତ ବଖାଣ ॥
ମନ୍ତ୍ର ଯେ ଯନ୍ତ୍ରଆଦି ଯେତେ । ଏ ଗ୍ରନ୍ଥେ ଅଛନ୍ତି ସମସ୍ତେ ॥
ଭକ୍ତି ଯେ ମୁକ୍ତି ଏଥି ଅଛି । ଶ୍ରୀଗୁରୁ ପ୍ରସନ୍ନରେ ଲେଖି ॥
ଯେ ହେତୁ ଉଦେ ଭାଗବତ । ଶ୍ରୀସନ୍ଥ ସାଧୁଙ୍କ ଚରିତ ॥
ଗୁରୁ ସେବିଲେ ଏହା ପାଇ । ନୋହିଲେ କୋଟି କଷ୍ଟେ କାହିଁ ॥

ଇତି ଶ୍ରୀମଦ୍ ଭାଗବତେ ହେତୁ ଉଦୟେ ହେତୁ ମନ ପ୍ରସନ୍ନେ
ଗୁରୁଶିଷ୍ୟ ମୋକ୍ଷଣେ ଯନ୍ତ୍ରମନ୍ତ୍ର ବୀଜାଦି ସହିତେ ମୁକ୍ତିସାଯୁଜ୍ୟ
କଥନେ ନାମ ଦଶମୋଧ୍ୟାୟଃ ।



# ବ୍ରହ୍ମ କୁଣ୍ଡଳୀ ଗୀତା

## ପ୍ରଥମ ଅଧ୍ୟାୟ

ଶାଶ୍ୱତ ଅନନ୍ତ ଅନାଦି ଆଜ୍ଞାରୁ ବ୍ରହ୍ମକୁଣ୍ଡଳୀ ଉଦିତ
ଶରଣା ଗତ ଅନାଦିଙ୍କ ଚରଣେ ମାଗଇ ଶିଶୁ ଅନନ୍ତ ।
ଶ୍ରୀଖଣ୍ଡଗିରିରେ ବସିଣ ବାରଙ୍ଗ ପୁଚ୍ଛିଲେ ଶିଶୁଙ୍କୁ ଚାହିଁ
ବାରଙ୍ଗ ତାହା ଯେ ଉକତ କରନ୍ତି ଖଣ୍ଡିଆଙ୍କୁ ସଙ୍ଗେ ନେଇ ।
(ଭାରତ ବୋଲି ବାଣୀରେ ଗାଇବ)
ପରମ ଚେରଷ୍ଟା ଭକତ ଚରିତ ଯେଉଁଠାରୁ ଜୀବ ଜାତ
ଶିଶୁ ବେଦ ଯେଉଁଠାରୁ ଉତପତି ଯେଉଁଠାରୁ ଅନହତ ।
ହତ ହେଉଅଛି ଅଶେଷ ଯିହଁରେ ପଶୁଅଛି ବେଗେଁ ଯାଇଁ
ଅନାଇଲେ ସେହି ସବୁଠାରେ ଅଛି କାହାକୁଟି ଦୃଶ୍ୟ ନୋହି ।
ଗୁରୁଙ୍କ ଭଣ୍ଡାର କେହୁ ଅବା ପାଇ ସବୁ ଅଟେ ଅଣାକାର
ତତ୍ତ୍ୱବୋଧାମାନେ ତାହା ସେ ଜାଣନ୍ତି ଖୁଣ୍ଟିଆ ଶୁଣ ବିଚାର ।
କର୍ମାଦିଯୋଗ ଦକ୍ଷିଣରୁ ଭଜନ ଅନାଦିଙ୍କ ଆଜ୍ଞା ଯେହି
ଜୀବ ଭିତରୁ ଅଣମାତ୍ରା ଜନ୍ମିଲା ତୋତେ ତା ଦେବା ବୁଝାଇଁ ।
ଜୈଅ ଭିତରୁ ଆଠଗାର ବାହାର ହୋଇଅଛି ଅର୍ଦ୍ଧମାତ୍ରା
ଯେଉଁ ମାତ୍ରା ଗୋଟି ଅଶେଷ ବ୍ରହ୍ମାଣ୍ଡ କାରେଣୀ ଅଟେ କରତା।
ସେହି ମାତ୍ରା ଗୋଟି ଅଶେଷ ବ୍ରହ୍ମାଣ୍ଡ ଆତଯାତକୁ କାରଣ
ସାମବେଦ ତାର କ୍ଷରିଅଛି ପୁଣ ଶୁଣ ତୁ ତତ୍ତ୍ୱନିର୍ବାଣ ।
ବେଦମାନେ ଯହିଁ କାଙ୍ଗୁଲା ଅଟନ୍ତି ଗତ ଆଗତରେ ସ୍ଥିତି
ଏହି ଅଙ୍ଗକୁ ଶିରରେ ବହି ଧ୍ୟାନେ ରହିଣଛନ୍ତି ଓମତି ।
ଓମତି ଅକ୍ଷର ମହାତତ୍ତ୍ୱ ଘେନି କାଶୀ ଅଟେ କ୍ଷେତ୍ର ସେହି
କ୍ଷେତ୍ର ଘରକୁ ଯେ ଅଟେ ଏ କାରେଣୀ ଶୁଣସି ହୋ ମନ ଦେଇ ।
କ୍ଷେତ୍ରର ପାଞ୍ଚ ରମିବାରୁ ବାହାର ତାରକ ବ୍ରହ୍ମଟି ସେହି
ତତ୍ତ୍ୱ ନିରଞ୍ଜନ ତାରକୁ ବାହାର ତୋତେ କହିଲୁ ବୁଝାଇଁ ।

ଯେଉଁଠାରୁ ତତ୍ତ୍ୱ ଶିଶୁ ବେଦଠଣା ଜଗିଲେ ପରମ ସେହି
ସାମ, ଯଜୁ, ଋକ୍ ବାହାର କରିଛି ଜ୍ଞାନୀ ଏମନ୍ତ ମିଳାଇ ।
ବ୍ରହ୍ମ ଏକାକ୍ଷର ଜଗି ବସିଅଛି ମହାଶୂନ୍ୟ ଘରମାଡ଼ି
ଜୀବ ଅର୍ଦ୍ଧମାତ୍ରା ଘେନି ମହାମାୟା ଯୋଗୀଙ୍କି ନ ଦେଲା ଛାଡ଼ି ।
ଯୋଗୀଙ୍କି ଜଗିଣ ବରସେ ବସିଲା କେ ପାରିବ ତାକୁ ଜିଣି
ଚରଣେ ରସିଣ ବିଧାତା ସ୍ୱରୂପେ ବ୍ରହ୍ମାଣ୍ଡେ ହେଲା କାରେଣୀ ।
ତା ତହୁଁ ନିରତେ ବ୍ରହ୍ମାଣ୍ଡ ହୋଇଛି ସବୁ ତା ଗର୍ଭେ କାରେଣୀ
ସତ ରଜ ତମ ତିନି ପୁତ୍ରଜାତ କଲା ସେ ଶରୀର ଘେନି ।
ସତରୁ ସୁକୃତ ଫଳ ସେ ହୋଇଲା ତମରୁ ଅଜ୍ଞାନ ଜାତ
ରଜଗୁଣରୁ ମୋହ ଜାତ ହୋଇଣ ତେଣୁ ସଞ୍ଚିଲା ଜଗତ ।
ଜୀବ ଅର୍ଦ୍ଧମାତ୍ରା କରିଛି ବ୍ରହ୍ମାଣ୍ଡ 'ଙ' କାର ଶବଦ ଘେନି
ଚକ୍ର କୂଟମାୟା ପାଞ୍ଚିଛି ପାଞ୍ଚେଣୀ କେ ପାରିବ ତାକୁ ଜିଣି ।
ଙଃରୁ ଗାରେ କାଢ଼ନ୍ତେଣ ଶବଦ ଜାତ ହୋଯେ ନିରିବାଣ
ସେ ଚିତା ସ୍ୱରୂପେ ବ୍ରହ୍ମନାମ ଏକା ହୋଇଅଛି ହାଦେ ଶୁଣ ।
ବ୍ରହ୍ମ ଜ୍ୟୋତି ଯେ ଜାଗଇ ଦକ୍ଷିଣରୁ ତାକୁ ବୋଲି ବ୍ରହ୍ମଜ୍ଞାନୀ
ଜାଗିଛି ସେ ସ୍ଥାନ ସମୀରଣବାନ୍ଦୀ ନିରାକାରକୁଟି ଘେନି ।
ଯେଉଁ ପବନ ଆତଜାତ ହୁଅନ୍ତେ ଅସ୍ଥି ଟେକିଛି ମେଦିନୀ
ଟେକିଣ ସୂତ୍ରେ ଚାଲୁଅଛି ତାହାକୁ କର୍ମେ ଥିଲେ ତାକୁ ଚିହ୍ନି ।
ପବନ ଦେବତା ଆତଜାତ କରେ ଯେବେ ସାଧିବ ଯେହାକୁ
ଷୋଳ୍ୟଦ୍ମରୁ କୁଟେ କି ଉଜାଇଲେ ପବନ ଆୟେତ ତାକୁ ।
ରଜକୁ ଗଜବନ୍ଧରେ ବନ୍ଧାଇଲେ ଗଜ ହୁଅଇ ଆୟେତ
ଅନହତଧ୍ୱନି ଧ୍ୟାନପଦେ ଜଗି ଜିଣିଲେ ଜାଗଇ ତତ୍ତ୍ୱ
ଉତ୍ପତ୍ତି ଚେଷ୍ଟା ଯେଉଁଠାରୁ ହୋଇଛି ସେହିଟି ହୋ ତତ୍ତ୍ୱଜ୍ଞାନ
ଯେହି ସାଧନାରେ କପିଳଦେବ ଯେ ଲଭିଲେ ସୁଗତି ସ୍ଥାନ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ପରମହଂସ ସଂହିତାୟାଂ
ଖୁଣ୍ଟିଆ ବାରଙ୍ଗ ସମ୍ବାଦେ ନାମ ପ୍ରଥମ ଅଧ୍ୟାୟଃ ।

# ଦ୍ୱିତୀୟ ଅଧ୍ୟାୟ

ବାରଙ୍ଗ କହନ୍ତି ଜନଶ୍ରେଷ୍ଠ ତୁମ୍ଭେ ତୁମ୍ଭଙ୍କୁ କହିବା ଜ୍ଞାନ
ବାଇଶ ଜଣରେ ଶ୍ରେଷ୍ଠ ତୁମ୍ଭେ ଜ୍ଞାନବନ୍ତ ତୁମ୍ଭଙ୍କୁ କହିବା ଜ୍ଞାନ ।
(ଜଳକ୍ରୀଡ଼ା ବାଣୀରେ)

ଖୁଣ୍ଟିଆ ବୋଲନ୍ତି ଶୁଣିମା ସ୍ୱାମୀ । ଜଳତପର କେହୁ ପରିମାଣି ।
କେଉଁସ୍ଥାନେ ବସି କେମନ୍ତ ଜପ । କେମନ୍ତେ ଯେ ଜପ ହୋଏ ନିଷ୍ପାପ
କେଉଁ ସ୍ଥାନେଣ ବସିବାକ ଯାଇଁ । ସେ ସ୍ଥାନମାନ କହିବା ଗୋସାଇଁ ।
ସ୍ୱାମୀ ବୋଲନ୍ତି ଶୁଣସି ହୋ ଶିଷ୍ୟ । ଯେଉଁସ୍ଥାନରୁ କ୍ଷରୁଅଛି ହଂସ ।
ସେ ସ୍ଥାନ ନାମ ଅଟଇ ତ୍ରିକୂଟ । ବଟ ପୁଟ ସେହିଠାକୁ ନିକଟ ।।
ଅଖଣ୍ଡିତ ବ୍ରହ୍ମ ସେଠାରେ ଲୀଳା । ଜ୍ୟୋତିକ ଜାଗିରହେ ଅଷ୍ଟକଳା ।।
ବେଦ ପରମ ମିଶାଇଣ ଯାଗ । ଯେହିଟି ଜନମାନଙ୍କର ଯୋଗ ।।
ମନ୍ତ୍ର ପଢ଼ିବ ତ୍ରିକୂଟକୁ ଚାହିଁ । ଜଳରେ ପଶିବ ଉଲଗ୍ନ ହୋଇ ।।
ପାଦ ପକାଇବ ଜାନୁ ଉପରେ । ଆବର ପାଦ ରଖିବ ଜାନୁରେ ।।
ଯେହି ମନ୍ତ୍ର ପଢ଼ି ଅନାଦି ଚାହିଁ । ଯେମନ୍ତେ ଅଛନ୍ତି ଅନାଦି କହି ।।
ମନ୍ତ୍ର; ଓଂ ହ୍ରୀଂ ଶ୍ରୀଂ ସୂର୍ଯ୍ୟାୟ ନମଃ –
ସପତ ଅକ୍ଷର ଏ ଜଳତପ । ଯେହିମନ୍ତ୍ର ଜପି ତତ୍ତ୍ୱ ନିରେଖ ।।
ନିରଞ୍ଜନ ହେବ ତହିଁ ସାରିକ୍ଷ । ଏ ତତ୍ତ୍ୱ କହିଲେ ତୋଆଗେ ବସ ।।
ଏହି ତତ୍ତ୍ୱ ଭେଦିଣ ଲଭିବ ଭାବ । ଯେଉଁ ଭାବ ଯେ ନ କରଇ ଠାବ ।।
ସେଥିରୁ ଯେ ସତ ଥୟେ ହୋଇଲେ । ଜ୍ୟୋତି ଭେଦହେବ ମତି ଦେଲେ ।।
ଏମନ୍ତ ସାଧନା ଜ୍ୟୋତିରେ ଦିଅ । ଜ୍ୟୋତି ଉଦେ ହେଲେ ଛାଡ଼େ ସଂଶୟ ।
ସଂଶୟ ଛାଡ଼ିଲେ ଉଦେଶ୍ୟ କାହିଁ । ଉଦେଶ୍ୟ ଗଲେ ଭକ୍ତି ଦୂର ନୋହି ।
ସର୍ବ ଜିଣିବ ଯେ ନରଦେହରେ । ଆନନ୍ଦ ହୋଇ ଭ୍ରମିବୁ ସଂସାରେ ।।
ତୁ ଯେବେ ଖୁଣ୍ଟିଆ ପାରିବୁ ସାଧି । ନିର୍ମାଣ ହୋଇବୁ ସୁସ୍ୱତି ଯାଗି
ଜାଗିଲେ ପରମହଂସ ଭେଟିବୁ । ଭେଟିଲେ ଗତି ମୁକତି ଲଭିବୁ ।।
ଯେଭାବରେ ଯେ ଥିଲେ ସନକାଦି । ଭେଦିଲେ ବାକ୍ୟ ଶବ୍ଦ ଜ୍ଞାନ ଭେଦି ।।
ତୁ ଯେବେ ଖୁଣ୍ଟିଆ ପାରିବୁ ସାଧି । ସାଧିଲେ ଜ୍ଞାନ ହୋଇବ ପ୍ରସିଦ୍ଧି ।।
ସିଦ୍ଧିରସ୍ତୁ ଯେଉଁ ଚାରିଅକ୍ଷର । ଯେ ଚାରି ଅଟନ୍ତି ଜ୍ଞାନ ଭଣ୍ଡାର ।।

ଯେହା ଜାଣନ୍ତି ବ୍ୟାସମହାମୁନି । ତେଣୁ ସେ ତତ୍ତ୍ୱ ବଖାଣିଲେ ପୁଣି ॥
ତତ୍ତ୍ୱ ଜାଣିଣ ଧାରଣା ହୋଇଲେ । ଧାରଣା ପାଇ ନିବୃତ୍ତି ହୋଇଲେ ॥
ଧାରଣା ଅଟେ ଚୌଷଠୀ ପ୍ରକାର । ଶୁଣ ହୋ ଶିଷ୍ୟ ତହିଁର ବିଚାର ॥
ଅନାଦି ଆଜ୍ଞା କରିଥିଲେ ଯାହା । ସତ ଅନନ୍ତ ମୋତେ ଦେଲେ ତାହା ॥
ବେଲ ବରୁଣ ମୂଳେ ଗର୍ଭୁ ଜାତ । ଯେତେବେଳେ ହେଲେ ଶିଶୁଅନନ୍ତ ॥
କନକଚମ୍ପା ପ୍ରାୟେ ସ୍ୱାମୀ ବର୍ଣ୍ଣ । ଅନାଦି ଦେଇଥିଲେ ତତ୍ତ୍ୱଜ୍ଞାନ ॥
ସପ୍ତ ବରଷ ହେଲେ ନିରାହାର । ବସିଲେ ମଣି କୁଟୀର ଗୁମ୍ଫାର ॥
ସାତଶ ବାଆନେ ଗୁମ୍ଫାରେ ସାର । ସର୍ପିଣୀ ଗୁମ୍ଫା ଅଟେ ବଳିଆର ॥
ସେ ଗୁମ୍ଫାରେ ପଶି ଧାରଣା ଧରି । ତୋତେ ତା କହିବା ବିସ୍ତାର କରି ॥
ଆମ୍ଭ ଚରଣ ଛୁଇଁଥାଅ ତୁହିଁ । ତୋତେ ଏବେ ତାହାଦେବା ବୁଝାଇ ॥
ଧ୍ୟାନ ଧାରଣା ଧ୍ୱନିରୁ ଅନ୍ତର । ଜ୍ଞାନ ଧ୍ୟାନ ଅଟେ ଯୋଗ ବିଚାର ॥
ମଂତ୍ରୁ ଗାର କାଢ଼ି ମାତ୍ରା କାଟି । 'ଡ' ରୁମଣ୍ଡଳା ଫମ୍ପା ସେ ଖଟି ॥
ଓଁ ଭିତରେ ଅଙ୍କ ତିନି ଦିଅ । ମଂତ୍ରୁ ଅର୍ଦ୍ଧଛିନ୍ନ କରି ନିଅ ॥
ଓଷ୍ଠ ଦ୍ରୋଣାଦିବ ଚକାର ଘରେ । ହଂସକୁ ରଖିବ ବିନ୍ଦୁର ଘରେ ॥
ଉଷ୍ଣ ଜଳ ରଚନାର ଘରରେ । ସାଆକୁ ରଖିବ ବିନ୍ଦୁ ଭିତରେ ॥
ଦୁଇ କାଟିଣ ଏକରେ ରଖିବ । ଠାର ଜାଣିଲେ ଧାରଣା ପାଇବ ॥
ଶୂନ୍ୟ ଭିତରୁ ନିସୃତି ପୂରୋଇଁ । ମୃନାଳ ଭିତରୁ ଅନଳେ ନେଇ ॥
ଉଭବ ଶ୍ୟାମ ଏକତ୍ୱ କରିବ । ଏତେ ଗୁଣରେ ଧାରଣା ପାଇବ ॥
ଧାରଣା ପାଇଲେ ଜ୍ୟୋତି ଉଦିତ । ତତ୍ତ୍ୱ ବିଚାରେ କହିଦେଲୁ ସତ୍ୟ ॥
ଗରୁଡ଼ ଜାଣନ୍ତି ବାରଧାରଣା । ବିଶ୍ୱାବସୁ ଚଉଷଠୀରେ ପର୍ଣ୍ଣା ।
ବୃଷଭ ଅଠର ଧାରଣା ଜାଣି । ଚୌବିଂଶେ ନନ୍ଦୀକେଶର ନିର୍ବାଣି ॥
ବଳଦେବ ଯେ ଚଉଷଠୀ ଜାଣେ । ଏଣୁ ଧାରଣା ଅଟେ ତତ୍ତ୍ୱଜ୍ଞାନେ ॥
ଧାରଣା ଯୋଗରେ ପାଦୁକ ସାଧି । ନାରଦ କାଷ୍ଠ ଷଡ଼ାଙ୍ଗୁଳେ ସିଦ୍ଧି ॥
ଚନ୍ଦ୍ରଗ୍ରହଣ ନିଶୀରେ ଆଣିମ । ନାରଦ କାଷ୍ଠ ପାଦୁକା କରିବ ॥
ଧାରଣା ଯୋଗ ଆତ୍ମାର ପରଚେ । ତ୍ରିକୂଟ ଚାହିଁ ପବନ ଅଙ୍କୋଚେ ॥
ଏତେ ଗୁଣରେଟି ପବନ ସାଧି । ପକ୍ଷୀ ପ୍ରାୟେ ହୋଇ ଷୋଡ଼ଶେ ବିଧି ॥
ଶୂନ୍ୟ ଶବଦ ଜାଗିବ ନିର୍ଭରେ । ଜାଣି ଶବ୍ଦ କଲେ ପାଦୁକା ଧରେ ॥
ଖୁଣ୍ଟିଆ ବୋଲଇ ଶୂନ୍ୟ ଶବଦ । କେମନ୍ତେ ଶୂନ୍ୟ ହୋଇବାକ ଭେଦ ॥

 

ଯେକାନ୍ତ ନିଶି ତିରଣ ଶଯ୍ୟାରେ । ବସି ତିରଣ ମାଡ଼ି ଯେକାନ୍ତରେ ।।
ଦିବସୁ ସିଦ୍ଧ ସ୍ନାନ କରିଥିବ । ଯେକାନ୍ତ ହୋଇ ସ୍ଥାନ ନିବାଡ଼ିବ ।
ଗୋମୟ ଲିପି ଯେକାନ୍ତ ଆସନ । ପଶ୍ଚିମକୁ ମୁଖ କରିବ ପୁଣ ।।
ଦୀପରେ ଘୃତ ଲଗାଇ ଜାଳିବ । ପଞ୍ଚାଶକ୍ଷର ବାମେ ବସାଇବ ।।
ଓଁ ମାତାଭେ୍ୟା ଆଦି ।
ଯେ ପଞ୍ଚାଶକ୍ଷର ଦୀପେ ବସିବ । ବାମ ଅଙ୍ଗରେ ନେଇ ବସାଇବ ।।
ରାତି ପାହିବା ଯାଏ ଜଗିଥିବ । ଶୂନ୍ୟ ଶବଦ ସେ ତହିଁ ଶୁଭିବ ।।
ଯେତେବେଳେ ସେ ଶବଦ ଶୁଭିବ । ନିର୍ଭୟ ହୋଇ ଶୂନ୍ୟେ ଦୃଷ୍ଟି ଦେବ ।।
ନିରାଲମ୍ବ ଅକଳିକୁ ବାହାର । ରୂପ ନ ଦିଶଇ ଶବଦ ସାର ।।
ଶବ୍ଦ ଦୃଷ୍ଟିରେଣ ତାହା ଭେଦି ପାଇ । ନୋହିଲେ ଅଜ୍ଞାନ ହୋଇ ଭ୍ରମଇ ।।
ସାଧିଲେ ଆତ୍ମା ହୁଅଇ ମୁକତ । ଅନାଦି ଆଜ୍ଞାଯେ ଅଟଇ ତତ୍ତ୍ୱ ।।
ଯେ ଭାବେ ଶୂନ୍ୟ ଶବଦ ବିଚାର । ସିଦ୍ଧ ବାରଙ୍ଗ କହିଲେ ନିକର ।।
ସତ ଅନନ୍ତ ଚରଣ ଧରିଣ । ଶିଶୁ ବେଦୁଁ ଯେହା କଲେ ଭିଆଣ ।।
ଷଡ଼ାଙ୍ଗ ପାଠ ଚରିତ କହିବା । ଖୁଣ୍ଟିଆ ତୋତେ ବୁଝାଇଣ ଦେବା ।।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ପରମହଂସ ସଂହିତାୟଂ ଖୁଣ୍ଟିଆ
ବାରଙ୍ଗ ସମ୍ବାଦେନାମ ଦ୍ୱିତୀୟ ଅଧ୍ୟାୟଃ

## ତୃତୀୟ ଅଧ୍ୟାୟ

ପୀଢ଼ବନ୍ଧ-
ବେଲ ବରଣ ବୃକ୍ଷଠାରେ ବସିଣ କହନ୍ତି ତତ୍ତ୍ୱ ବିଚାର
ହେଜ ପାଠମାନ ମନରେ ପଡ଼ିଲା ଗୁପତ ଜ୍ଞାନ ଭଣ୍ଡାର ।।
(ଭୀଷ୍ମେକ ବାଣୀରେ ଗାଇବ)
ଖୁଣ୍ଟିଯା ମୁଖକୁ ଚାହିଁ, ହେଜ ପାଠହିଁ ବୁଝାଇଁ
ହେତୁ ତୁହି ଯେ ମନରେ ତୋ ପରମ ଆତ୍ମାକୁ ।।
ଆତ୍ମାକୁ ଯେହୁ ରମନ୍ତି, ବ୍ରହ୍ମବିଦ୍ୟା ସେ ଜାଣନ୍ତି
ଆତ୍ମ ବିଦ୍ୟା ଜାଣନ୍ତି ବୋଲନ୍ତି ଯାହାକୁ ।।
ଆତ୍ମାକୁ ରମିବା ଶାନ୍ତି, ଶାନ୍ତିରେ ମନ ନିବୃତ୍ତି

ତେବେ ସିନା ଗମିବୁ ଅନନ୍ତ ପଥକୁ ॥
ଷୋଳ୍ୟ ଡମ୍ବରକୁ ଭେଦି, ପାଇଲେ ତତ୍ତ୍ୱ ପ୍ରସିଦ୍ଧି
ଫିଟାଇ ଆତ୍ମା ମିଳିଲେ ଜିବୁ ମୁକତି ॥
ଶ୍ରବଣେ ଶୁଣିଛି ଯେହୁ, ଚକ୍ଷୁରେ ଚାହୁଁଛି ସେହୁ
କହୁଛି କହୁଛି ସେହୁ ମାୟା ଭଣ୍ଡାର ॥
ଯାମାୟା ଅଟଇ ଶୂନ୍ୟ, ମଧ୍ୟେ ନିରଞ୍ଜନ
ନିରଞ୍ଜନ ଆଦିନାଥ ଦେଖ ଆଗର ॥
ନିରଞ୍ଜନ ବୋଲି ଯେହୁଁ ସବୁ ତତ୍ତ୍ୱ ତାହା ତହୁ,
ଶ୍ରୀଗୁରୁଙ୍କୁ କହିଥିଲେ ରେବତୀବର ॥
ଗରୁଡ଼ ସାକ୍ଷି ନାହିଁକି, ଅନ୍ୟୋନ୍ୟ ଜଣେ ଅଟେକି
ତୋ ଆଗେ କହିଲୁ ଯେ ଗୁପତ ଭଣ୍ଡାର ॥
ନିରାଲମ୍ବ ଯେହୁ ଗୁଣ, ଜଗତେ ନାହିଁକି ପୁଣ ॥
ଅଗମ୍ୟ ଅସଂଖ୍ୟ କଥା କେହୁ ଜାଣଇ ॥
ଅକଳିତ ତହୁଁଜାତ, ଆଚମ୍ଭିତ ହୋଯେ ଜାତ
ରେହ ଅରେହକୁ ଘେନି ବିନ୍ଦୁ ହୁଅଇ ॥
ବିନ୍ଦୁ ବ୍ରହ୍ମ ବୋଲି ଯେହୁ, ଅଗମ୍ୟ ସ୍ଥାନଟି ସେହୁ
ଡିମ୍ବ ଧରି ସର ଗର୍ଭ କଳିବ କେହୁ ॥
କ୍ଷେତ୍ରଜ୍ଞ ଅଟଇ ସେହି, ହେଜେ ହେଜ ବନ୍ଧ ତୁହି
ତଥି ଭିତରେ ଅର୍ଦ୍ଧାସନେ ଦେବଗାର ॥
ଗାରେ ଚାରି ଅଙ୍କ ସାର, ସାତ ଅଙ୍କ କରି ମେଳ
କର ମାତ୍ରା ଦେଇଣ ଯେ ମନେ ବିଚାର ॥
ଯେ ଭାବେ ବିଚାର କରି, ବିନ୍ଦୁ ବ୍ରହ୍ମକୁ ଆଦରି
ସେହି ବ୍ରହ୍ମ ସ୍ୱରୂପଟି ଅନନ୍ତ ଘର ॥
ବିନ୍ଦୁ ପଞ୍ଚସ୍ୱର ଘେନି, ଆସ୍ୱାଦନ୍ତି ତାକୁ ଜ୍ଞାନୀ
ଯେହିଟି ପରମ ପଥ କର ଗୋଚର ॥
ବିନ୍ଦୁ ବ୍ରହ୍ମରେ ପଶିବୁ, ମକରନ୍ଦ ଆସ୍ୱାଦିବୁ
ଏହିଠାରେ ନାମ ରୂପ କରିବୁ ପ୍ରତେ ॥
ନାମ ରୂପ ଏହିଠାରେ, ଅଶେଷ ଶେଷ ହେବାରେ

ହେଜି ହନୁମାନ ସିଦ୍ଧ ଅଙ୍ଗ ପାଇଲେ ॥
ଦକ୍ଷିଣୁ ଯେହୁ ଭଜନ, ଭୁଜଙ୍ଗେ ଦୁଇ ଜନ୍ମିଣ
ଦୁଇରୁ ଚାରି ବେଦଟି ଜନ୍ମ ଲଭିଲେ ॥
କ୍ଷୟ ଅକ୍ଷୟ ବିଚାର, ଶୁକ୍ଳ କୃଷ୍ଣ ଭେଦିବାର
ସ୍ଥାପିଣ ଅଷ୍ଟାଙ୍ଗ ଯୋଗ ମେରୁ ଉପରେ ॥
ଅଷ୍ଟାଙ୍ଗକୁ କଳା ଷୋଳ୍ୟ, ଷୋଳ୍ୟ ବିତିଶରେ ମେଳ
ଦୁଇ ବସାଇଣ ସୂତ୍ର କଲା ସେଠାରେ ॥
ମୂଳ ଚକ୍ରରେ ଈଶ୍ୱର, ଦ୍ୱତୀୟେ ପବନ ଘର
ତୃତୀୟେ ହୋଇଲା ଯୋଗ ମାୟା କାରେଣୀ ॥
ମହାରାତ୍ରିମୋହ ରାତ୍ରି, କାଳ ରାତ୍ରି ଘେନି ଯୁକ୍ତି
ଅହଂକାରଯେହୁ ଷଡ ବିଚାର ଘେନି
ଗୋଲାହାଟକୁ ବସାଇ, ତ୍ରିକୂଟ ସୂତ୍ରରେ ନେଇ
ଅରୂପ ଅଣବାଷକୁ ଯେକ ସୂତ୍ରରେ ॥
ରାତ୍ରରେ ଯେବେ ଜାଗିବ, ନିଦ୍ରା ଉଜାଗର ହେବ
ଚନ୍ଦ୍ରକାଟ ଚାରିକଳା ମିଶାଇ କରେ ॥
ନିଦ୍ରାର ଉପବାସରେ, ଯାଗିପ୍ରିତି ତାହାଠାରେ
ତା ବାଟ ଛାଡ଼ିଲେ ମହାରାତ୍ରି ତୁଟଇ ॥
ସେ ଯେବେ ଯାକୁ ଛୁଇଁବ, ତନୁ ପାଲଟ କରିବ
ମହାରାତ୍ରି ଆଉ ତୋର ରହିବ ନାହିଁ ॥
ଅଗମ୍ୟେ ପଶିଲେ ମନ, କାଳରାତ୍ରି ଯିବ ପୁଣ
ତିନିରାତ୍ରି ତୁଟିଯିବ ଉଦେ ହୋଇଲେ ॥
କହନ୍ତି ସିଦ୍ଧ ବାରଙ୍ଗ, ଯେହିଟି ଜ୍ଞାନ ପ୍ରସଙ୍ଗ
ଦେହରେ ବ୍ୟାଧି ଜନ୍ମିବ ଆନେ କହିଲେ ॥
ଖଳ ଦୁଷ୍ଟ ଜନ ଯେତେ, ତାହାଙ୍କୁ ନ ଯିବ ପ୍ରତେ
ନିରାଳୟେ ଥିବୁ ବୁଦ୍ଧି ବିବେକ ବଳେ ॥

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ପରମହଂସ ସଂହିତାୟଂ ବାରଙ୍ଗ
ଖୁଣ୍ଟିୟା ସମ୍ବାଦେନାମ ତୃତୀୟ ଅଧ୍ୟାୟଃ ।

## ଚତୁର୍ଥ ଅଧ୍ୟାୟ

ଗ୍ରାହାପୀଢ଼ ବନ୍ଧ -
ସ୍ୱାମୀଙ୍କ ଆଜ୍ଞା ମୁଁ ତୋତେ ଯେ କହିଲି ପରମ ଯୋଗ ବିଚାର
ଯେବେହୋ ଉତ୍ତମ ସିଦ୍ଧ୍ୟ କଳ୍ପ ଦେବା ଯେଣେ ହେବୁ ଅଜ୍ରାମ୍ବର ।
ରୋଢ଼ା ବାଣୀରେ ଗାଇବ -
ଷାଠିଯେ ବରଷଠାରୁ ଯେଣିକି ଯେଉଁ ଲିମ୍ବ ବୃକ୍ଷ ଥିବ
ଆଦିତ୍ୟ ଦିନରେ ମହା ବିଧିମତେ ରନ୍ଧ୍ର ଗୋଟିଏ କରିବ ।
ଅମୃତ ପାଣି କଦଳୀ ଗୋଟି ନେଇ ସେହି ରନ୍ଧ୍ରେ ପୂରୋଇବ
ତିନି ସନ୍ଧ୍ୟାରେ ଯେକବିଂଶ ଦିନରେ ପାଚିଲା କଞ୍ଚା ହୋଇବ ।
ଜ୍ୟୋତି ଉଦେକାଳେ ମନର ନିର୍ମଳେ ସୁଖେ ତାହାକୁ ଖାଇବ
ଗୁରୁ ସେବା କରି ନିଶ୍ଚଳ ଚିତ୍ତରେ ଯେହିମନ୍ତ୍ରକୁ ଜପିବ ।
(ଓଂ ତତ୍ତ୍ୱ ନିରଞ୍ଜନ ହ୍ରୀଂ କ୍ଲୀଂ ଶ୍ଳୀଂ ହ୍ରୀଂ ହରେ ରାମକୃଷ୍ଣ ଜଗନ୍ନାଥ)
ଯେ ରୂପେ ବେଗୁନିଆ ଛେଳି ଆଣି ଗୁଆଦହିରେ ପିଇବ
ଯେକାନ୍ତ ହୋଇଣ ବିଞ୍ଝଗିରିରେ ଯେ ଦୃଢ଼େ ଆସନ କରିବ ।
ଅଯୁତେକ ଶରୀର କଞ୍ଚା ହୋଇବ କେଶ ପାଚଲା ନୋହିବ
ଅନାଦିଙ୍କ ଆଜ୍ଞା ତୋତେ ବୁଝାଇଁ କହଇ ପ୍ରଘଟ କେବେ ନୋହିବ ।
ବିନ୍ଦୁକୁ କଠିନ ପାରୁ ପରିଯନ୍ତେ କଲେ ଯେ ଭାବ ପାଇବୁ
ଯେହି ଭାବରେ ସିଦ୍ଧକଳ୍ପ କଲେଣ କନ୍ଧ ଅଜ୍ରାମ୍ବର ହୋଇବୁ ।
ଯେହି କଳପ ଶ୍ରୀଗୁରୁଙ୍କୁ କହିଲେ ଦୀନକର ନାଥ ଯେହି
ଯେ ଭାବକୁ ତୁ ଗୁପତ କରିଥିବୁ ନ କହିବା ବାରେ କାହିଁ ।
ଯେହି ସିଦ୍ଧକଳ୍ପ ପରମ ଚରିତ.ତୋତେ ବୁଝାଇଲୁ ଶିଷ୍ୟ
ସିଦ୍ଧବାରଙ୍ଗ ଯେ ଦୟାରେ କହିଲେ ଯେହୁ ଭାବର ବିଶ୍ୱାସ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ପରମହଂସ ସଂହିତାୟାଂ ଖୁଣ୍ଟିୟା
ବାରଙ୍ଗ ସମ୍ବାଦେ ନାମ ଚତୁର୍ଥ ଅଧ୍ୟାୟଃ ।

# ପଞ୍ଚମ ଅଧ୍ୟାୟ

ସିଦ୍ଧ ବାରଙ୍ଗଙ୍କ ଚରଣ ଧରିଣ ଖୁଣ୍ଟିଆ କହେ ଗୁପତେ
କହ ସ୍ୱାମୀ ଯେବେ ଛାୟାଚକ୍ର ଭେଦ ଯେମନ୍ତେ ଯିବି ପରତେ ।
କହନ୍ତି ବାରଙ୍ଗ ଶୁଣସି ହୋ ଶିଷ୍ୟ ଗରୁଡ଼ ସମ୍ବାଦ କଥା
ପୂର୍ବେ ଯେହା ମୁହିଁ ଶୁଣିଅଛି ଯାହା ନ ଜାଣନ୍ତି ଚଉମଥା ।
ତତ୍ତ୍ୱତାରକ ଯେ ରାମନାମ ଧ୍ୱନି ଧ୍ୱନିର ଅନ୍ତରେ ମନ
ମନେ ଅନ୍ତ ଶୂନ୍ୟ ଶୂନ୍ୟ ଅନ୍ତେ ତ୍ରିଶୂନ୍ୟ ସେହି ସେ ଜ୍ଞାନୀଙ୍କ ସ୍ଥାନ ।
ଛାୟାର ଭେଦ ଯେ ପୁଚ୍ଛା କଲ ବଛ ପରମରସ ବିଚାର
ଛାଇ ଛିଦ୍ର ହେବ ସାଧନା ବଳିଲେ ତେବେ ହେବ ଅକ୍ରାମ୍ବର ।
ଦ୍ୱାଦଶ ଦୀପ ଲଗାଇ ପ୍ରହଲାଦ ଛାୟାପଛ ଯହୁଁ କଲା
ମନ ପ୍ରସନ୍ନ ଯେ ହୋଇଲା ତାହାକୁ ଅବାଡ଼ ଦୃଶ୍ୟ ହୋଇଲା ।
ପୂର୍ବେ ଯେ ଚରିତ ମୁନିଙ୍କ ସଭାରେ ପଡ଼ି ପ୍ରଛନ୍ନ ହୋଇଲା
ଆଦିରେ ସୌନକଙ୍କର ଯେ ଚରିତ ଛାୟାରେ ପ୍ରଛିନ୍ନ ହେଲା ।
ସନକାଦି ସପ୍ତଭାଇ ପୁଛିଲେ ଯେ ଅରଣ୍ୟରେ ସପ୍ତମୁନି
କହଟି ସ୍ୱାମୀ ଛାୟାଚକ୍ର ଭେଦିବା କେଉଁ ତତ୍ତ୍ୱ ମନେ ଘେନି ।
ଦେହ ରହିଥିବ ଛାୟାହିଁ ନ ଥିବ ସାଧିବ କେଉଁ ସାଧନା
ଦକ୍ଷିଣକୁ ଛାୟା କେମନ୍ତେ ପଡ଼ିବ ଯେହା ମତେ କହକିନା ।
ଚନ୍ଦ୍ରରେ ଛାୟାକୁ କେମନ୍ତେ ବାରିବା ସୂର୍ଯ୍ୟେ ବାରିବା କେମନ୍ତେ
କେମନ୍ତେ ଅରୂପ ରୂପେକ ଦିଶିବ ରହିବ ଦୃଷ୍ଟି ଅଗ୍ରତେ ।
କେମନ୍ତେ ଜାଣିମା କେଉଁ ରୂପ ଧରି ଆଗରେ ଉଭା ହୋଇବ
କେମନ୍ତ ଭାବେଣ ଭୋ ଗୁରୁଦେବୟେ ହୋଇବ ସିଦ୍ଧ କରିବ ।
ବାରଙ୍ଗ କହନ୍ତି ଶୁଣସିହୋ ବସ ତୋତେ ବୁଝାଇଁ କହିବା
ପରମ ତତ୍ତ୍ୱତୋ ଆଗେଣ କହିଣ ପ୍ରତି ବୁଝାଇଣ ଦେବା ।
ପ୍ରତି ପ୍ରତି କରି ବୁଝାଇଁ ଲେଖିବା ହେତୁରେ ରଖ ତୁ ଘେଇ
ଯେହୁ ଛାୟାଭେଦ ପାଇଲେ ସୁଗତି ଅମୃତ ରସ ମିଳଇ
ପ୍ରଥମ ସ୍ୱରୂପ କଣ୍ଠ ଦୃଷ୍ଟି ସ୍ଥିତି ଶୂନ୍ୟକୁହିଁ ଦୃଷ୍ଟି ଦେଲେ
ପରମ ପୁରୁଷ ଆଗରେ ଦିଶିବ ଦୃଷ୍ଟି ତୋ ଥୟେ ହୋଇଲେ ।

ସେହି ପୁରୁଷ ଅର୍ଦ୍ଧେଉର୍ଦ୍ଧ୍ୱେ କାରେଣୀ ହେତୁ ରଖିବୁଟି ମନ ।
ଧବଳ ସ୍ୱରୂପ ଦିଶଇ ସମୀପେ ସେହିଟି ଅଖଣ୍ଡ ଜ୍ଞାନ ।
ଚନ୍ଦ୍ରଜ୍ୟୋତିବର୍ଣ୍ଣ ଅଲୋକ ଦିଶିବ ସାଧନା ସିଦ୍ଧି ହୋଇବ
ଯେହୁ ଜ୍ୟୋତିରୁଟି କିରଣ ଫାଟିବ ଅମୃତ ଆସ୍ୱାଦ ହେବ ।
ଜ୍ୟୋତିର ଦ୍ରଶନେ ଛାୟା ଗୋଟି ତୋର ପଡ଼ିବ ଯେ ଦକ୍ଷିଣରେ
ତାହାର ସଙ୍ଗରେ ପରଚେ ହୋଇଲେ ସିଦ୍ଧ ହୋଯେ ଅକ୍ରାମ୍ବରେ ।
ଛାୟା ସିନା ନିଦ୍ରା କରାଉଁ ଅଛଇ କାଳ ସ୍ୱରୂପଧରିଣ
ସେହି ଛାୟା ସଙ୍ଗେ ପରଚେ ହୋଇଲେ ତୁଟଇ ଭବ ବନ୍ଧନ ।
ନିଦ୍ରା ସିନା ଛାୟା ଛାୟା ନିଦ୍ରା ଦୁଇ ରୂପ ଧରିଣ ସେ ଅଛି
ସ୍ଥାବର ଜଙ୍ଗମ କୀଟରେ ବ୍ୟାପିଣ ତିଳେ ଛାଡ଼ି ନ ଦେଉଛି ।
ନିଦ୍ରା ଜାଗ୍ରତ ଜାଣିଣ ହନୁମାନ ତା ସଙ୍ଗେ ପରଚେ ହେଲେ
ହ୍ୱାଇ ବାଇ ଛାଇ ତିନିଙ୍କି ଲୁଚାଇ ଗତାଗତକୁ କାଟିଲେ ।
ତୁ ଯେବେ ପାରିବୁ ଯେକାନ୍ତେ ବସିଣ ଶୂନ୍ୟ ଦୃଷ୍ଟି ନିଶାକାଳେ
ଅନାହତ ଧ୍ୱନି ଚିଆଁ ଚଇତନ ରହୁ ଶିଶୁବେଦପରେ ।
ତ୍ରିବେଣୀରେ ପଶି ପାଇଲେ ସାଧନା ଏ ଭାବେ ରହିଲେ ତୁହି
ତୋହର ହେତୁ ଯେ ତୁହିଁ ସିନା ଅଟୁ ମନେ ତୁ ଘେନ ଗୋସାଇଁ ।
ଲିଙ୍ଗ ଚକ୍ର ଧରି ଅଣଚାଷ ଛନ୍ଦି ତିନିଙ୍କି-ଯେକ କରିବୁ
ଯେକତ୍ୱ ଭାବରେ ମିଶାଇ ନେଇଣ ବଙ୍କୁନାଳେ ଉଠାଇବୁ ।
ମନରେ ମନ ଯେକତ୍ୱ ହୋଇଲେଯେ ମିଳିବ ଅଲେଖ ଦ୍ୱାର
ହେତୁକୁ ନେଇ ଚଇତନେ ରଖିଲେ ଦିଶିଯିବ ଅଣାକାର ।
ଚିଆଂ ଚଇତନ ହେତୁଧ୍ୱନି ତୋର ଯେକତ୍ୱ ହେଲେ ଯୁଗତ
ଚନ୍ଦ୍ର ଜ୍ୟୋତିରୂପେ କିରଣ ଫିଟିବ ବହିବ ତହୁଁ ଅମୃତ ।
ସେ ଅମୃତ ପାଇ ମତ୍ତ ହୋଇବୁ ତୁ ମକରନ୍ଦ ରସ ପାଇ
ଛାୟା ସଙ୍ଗେ ତୁହି ପରତେ ହୋଇବୁ ହେତୁ ମତିରେ ମଜାଇ ।
ଯେବେ ତୁହିଁ ସେହି ଛାୟାର ସଙ୍ଗତେ ପରଚେ ହେବୁ ସୁଚିତ୍ତେ
ନିଦ୍ରାକୁ ଜିଣିବୁ ତାହାର ଆଜ୍ଞାରେ ସେହୁ ଦୟାକରେ ତୋତେ ।
କାୟାଠାବରୁ ଯେଉଁ ଛାୟା ଜନ୍ମିଲା ସେହିଟି ଆଦି ପ୍ରକୃତି
ପ୍ରକୃତି ଦେବତା କ୍ଷୟ ଅକ୍ଷୟରୁ ସାକ୍ଷୀ ହୋଯେ ତହିଁ ପ୍ରୀତି ।
ଜ୍ୟୋତି ଚକ୍ର ଅବାଡ଼ କ୍ଷଣ ମତି ହଜ ସହଜ

ଯୁଗେ ଯୁଗେ ମନ ଆୟତ୍ତ ହୋଇବ ଅମର ପଦକୁ ହେଙ୍କ ।
ଯେତେ ସ୍ଥାନ ଭେଦି ତୁରୀୟ ଭୁସୂତି ତମ ଘରେ କଲା ମେଳ
ଜାଣିଲା ହେଜିଲା ସୁଗତି ଲଭିଲା ସିଦ୍ଧ ବାରଙ୍ଗଙ୍କ ମେଳ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ପରମହଂସ ସଂହିତାୟାଂ
ଜ୍ୟୋତି ଷଟ୍ଚକ୍ର ପ୍ରବୋଧନେ ନାମ ପଞ୍ଚମୋଽଧ୍ୟାୟଃ ।

## ଷଷ୍ଠ ଅଧ୍ୟାୟ

ଗ୍ରନ୍ଥପୀଢ଼ ବନ୍ଧ –
ପରମ ରହସ୍ୟ ଛାଡ଼ ଚକ୍ର ବାଣ୍ଟ ଶୁଣି ଖୁଣ୍ଟିଆ ସନ୍ତୋଷ
କହନ୍ତି ସ୍ୱାମୀ ଷଡ଼ଚକ୍ର କେମନ୍ତେ ଜିଣି ମନ ହୋଯେ ତୋଷ ।
କଳସା ବାଣୀରେ ଗାଇବ –
କହନ୍ତି ସିଦ୍ଧବାରଙ୍ଗ ଶୁଣସି ହୋ ଶିଷ୍ୟ
ପୁଚ୍ଛିଲୁ ସାଧନା ଯେ ଅମୃତମୟେ ରସ ।
ଧ୍ୟାନେଣ ଭେଦିବୁ ନାଦନାଦ ଅନ୍ତେ ଜ୍ୟୋତି ରହେ
ଓଂକାର ସ୍ଥାନରେ ଜ୍ୟୋତି ହୁଅଇ ଉଦୟେ ।
ମୁଖ ନାଶିକାର ମଧ୍ୟେ ଯେଉଁ ପଥ ଅଛି
ନିରାଲମ୍ବ ରୂପକୁ ସେ ମୁଦ୍ରିତ କରିଛି ।
ନାଦ ବିନ୍ଦୁ ଜୀବ ପରମକୁ ଯେକ କଲେ
ନାରାୟଣ ପାରାୟେଣ ହୋଇବୁ ତୁ ଭଲେ ।
ଗାନ ଉପଦେଶ ଯେ ହୋଇବ ସବୁ ତୁଟି
ଅପ୍ରତେ ନ କର ଶିଷ୍ୟ ତତ୍ତ୍ୱ ଯେ ଯେହିଟି ।
ପ୍ରଣବରେ ଭେଦି ନିତ୍ୟେ ରଞ୍ଜନ ଯେ ହୁଅ
ଶେଷେ ସହଜ ଆତ୍ମାରେ ନିଶବଦେ ରହ ।
ଧ୍ୱନି ଅନ୍ତେ ମନ ଦେଖ ଶାନ୍ତିରେ ମିଶାଇ
ଦ୍ୱାଦଶ ପାଖୁଡ଼ା ମଞ୍ଜି କଢ଼ି ତହୁଁ ନେଇ ।
କଳା ଲିମ୍ବ ବୀଜଟି ବୃକ୍ଷ ଅଙ୍କରାନ୍ତି
କଳା ଏରି ମୂଳ ସେଯେ କଳା ବିନ୍ଦୁଆତି ।

ଖଣ୍ଡଗିରି ଉତ୍ତର ପାଖରେ ଯେ ମିଳିବ
ଯେ ସପ୍ତ ପଦାର୍ଥ ଯେକ କରିଣ ଭକ୍ଷିବ ।
ଯେହି ମତେ ସାଧନା ଦ୍ୱାଦଶେ ମିଳିଥିବୁ
ସୁଚିତ୍ତରେ ଖୋଜିଲେ ତୁ ଅବଶ୍ୟ ପାଇବୁ ।
ତେବେ ତୁ ପାଇବୁ ତତ୍ତ୍ୱ ଭିତରେ ମଜାଇ
ହେଜି ସିଦ୍ଧ ବାରଙ୍ଗଙ୍କୁ ଶିଶୁ ଥିଲେ କହି ।

ଇତିଶ୍ରୀ ବ୍ରହ୍ମ-ବିଦ୍ୟାୟାଂ ବୟାସିକ୍ୟାଂ ପରମହଂସ
ସଂହିତାୟାଂ ନାମଷଷ୍ଠ ଅଧ୍ୟାୟଃ

## ସପ୍ତମ ଅଧ୍ୟାୟ

ପରମ ତତ୍ତ୍ୱ ଶୁଣିଣ ତୋଷ ହେଲେ ବାରଙ୍ଗଙ୍କ ମୁଖୁଁ ଶୁଣି
ଯେବେ କହ ସ୍ୱାମୀ ଶ୍ରୀ ସତ ଅନନ୍ତ ଯାହା କହିଥିଲେ ପୁଣି ।
ଗାଈ ମରିଥିବ ତାକୁ ଉଠାଇବା ପୁଣି
ଯେହି ସାଧନାରେ ଉଠି ହୋଇ ତତ୍ତ୍ୱ ଜାଣି ।
ଲାଞ୍ଜ ମୁଖ ଗୁହ୍ୟ ଯୋନି ଯେ ତାର ବାଜିବ
ସିଦ୍ଧ କଳ୍ପ ଭକ୍ଷି ଆଗ ସିଦ୍ଧ କରିଥିବ ।
ସିଦ୍ଧ ହେଲେ ଗାଇତ୍ରୀ ଯେ କରିବ ସାଧନ
ବସ୍ତ୍ର ଘୋଡ଼ାଇଣ ଦେଲେ ଉଠିବ ସେ ପୁଣ ।
ଯେତେ ଦୂର ନୈମ ତେତେ ଦୂର ଗୋଡ଼ାଇବ
ହଂସ ଦୀକ୍ଷା ଜାଣି ଗାଈ ଚିହ୍ନି କରିଥିବ ।
ଆଗମନ ଖୁଣ୍ଟି ଜ୍ୟୋତି ପଘାରେ ରହିଛି
ରସ ଛନ୍ଦ ମୃତ୍ୟୁରୁ ସେ ଗାଈ ନିର୍ମାଣିଛି ।
ଶରୀର ଯେଉଁ ଭିତରେ କରିଛି ନିର୍ମାଣ
ତ୍ରିକାଳରେ ଗାଈ ସେ ଧରିଛି ତ୍ରିୟ ବର୍ଣ୍ଣ ।
ପିଣ୍ଡି ଲାଞ୍ଜ ଓଁକାରରୁ ବନ୍ଦୀ ଆଣ ଯେ ଅକ୍ଷର
ମଧ୍ୟାହ୍ନ ସନ୍ଧ୍ୟାହ୍ନ ପ୍ରତେ କରଇ ସଧୀରେ ।

କଙ୍କାଳ ବାବୁ ବାହାର ବନ୍ଧାକୁ କରୁଛି
ଦ୍ୱାଦଶ ବନ୍ଧା ପ୍ରସବ ନିତ୍ୟାନି କରୁଛି ।
ସିଦ୍ଧରସ୍ତୁ ତଚ୍ଛସିର କର୍ଣ୍ଣବିତୁ ଭେଦ
ବରେଣୀୟ ଚକ୍ଷୁ ଭର୍ଗୋମୁଖ ଦେବ କନ୍ଧ ।
ତୂଳ କମଳ ସକୁକ୍ଷି ଧୀୟୋୟନ ଗୁହ୍ୟ
ମହୀ ପଞ୍ଜରାକୁ ଘେନିଯେତେ ସ୍ଥାନହେଜ ।
ଲାଭିରେ ପ୍ରଚୋଦୟାତ୍ ସ୍ତନରୁ ଚାମୁଖିନି
ଉର୍ମ ଧୂର୍ମ ଜ୍ୟୋତି ଜ୍ୱାଳା ଚାରିମାଇ ପୁଣି
ପରରଜ ସଶବଦ ଅଣ୍ଡିର ପ୍ରମାଣ ।
ଗାଇ ଜୀବନ୍ ବ୍ରହ୍ମ ଭୁବନ ଯହୁଁ କଲା
ବ୍ରହ୍ମା ବିଷ୍ଣୁ ମହେଶ ତା ଗର୍ଭରେ ରଖିଲା ।
ପଞ୍ଚ ବାୟୁ ନ୍ୟାସ କରି ଚୌଷଠି ଧରିଛି
ଅଣଚାଷ ଘାତେ ସେ ଯେ ତ୍ରିକୂଟେ ରହିଛି ।
ଚାରି ଦିଗେ ଆକାଶ ଗଙ୍ଗାରୁ ପାଣି ଖାଇ
ତିନି ତିହୁଡ଼ି ଗୋଷ୍ଠରେ ତପସ୍ୟା କରିଥାଇ ।
ପଞ୍ଚାରୁ ତା ଚାରି ଭାଗ କରିଛି ନିର୍ମାଣ
କ୍ଷୀର, ମଳ, ମୂତ୍ର ନାଳ ଚାରି ଭାଗ ପୁଣ ।
ଶିଶିର ତୃଣରୁ ସମ ଧରିବା ଗୁଣରୁ
ଅନଭୂତ ବସିଣ ଅମନ ଗୁହାଳରୁ ।
ଆଠ ତିନି ଚବିଶିରେ ରାବ ଦିୟେ ପୁଣ
ସରସ୍ୱତୀ ସାବିତ୍ରି ଯେ ଗାଇତ୍ରୀ ପ୍ରମାଣ ।
ଭୂ ଭୂବସ୍ୱ ମହ ଜନ ଆଦି ତପ ସତ୍ୟ
ଆବର ସ୍ତୁ ପଞ୍ଚବର୍ଣ୍ଣ ମଣ ପୁଣ ସ୍ଥିତ ।
ଷଡ଼ ମୁଖେ ଆହାର ଗିରି କ୍ରୋଟରେ ଗୁହାଳ
ଇନ୍ଦ୍ରି ଖୁରା ଅବନା ଆଠରେଣ ଯେ ମେଳ ।
ଯେ ଭାବ ମିଶାଇ ଗାଇ ଦେହରେ ପ୍ରମାଣ
ମନ୍ତ ବାଣ୍ଟ କର ଗାଈ ରୂପକୁ ଚାହିଁଣ ।
ଯେକାନ୍ତେ ଶ୍ମଶାନେ ଅବା ଖଣ୍ଡଗିରିଠାରେ
ସାଧିବୁ କି ଖୁଣ୍ଟିଆ ହୋ ହେବୁ ଅକ୍ରାମରେ ।
ବନ୍ଧାରେଣ ପଞ୍ଚ ପୁଷ୍ପ ଲାଞ୍ଜ ତାର ଘରେ

ଲାଞ୍ଜ ତାର ନିରଞ୍ଜନ ବୁଝ ତୁ ହେତୁରେ ।
ଭୃଗୁ ମୁଖ ରାମ ଅଙ୍ଗ ବେହାର କରିଛି
ତସ ସୁଦ୍ରଶନ ଅଙ୍ଗେ ଆପେ ନିର୍ଭାଇଛି ।
ବତାରେଣ ହରେନାମ ରଖିବ ନିର୍ଭରେ
କୃଷ୍ଣ ନାମ ରଖିଅଛି ଭାବନା ଭିତରେ ।
ଚୌବିଂଶ ଅକ୍ଷରକୁ ଯେ ଚବିଶ ଋଷି ଜାଣ
ଯେ ଚବିଶ ଋଷି ଚିହ୍ନି ଜିଆଇଁଲେ ପୁଣ ।
ଅନାଦି ଆଜ୍ଞାରୁ ଯେ ଗୁରୁଙ୍କ ପ୍ରସନ୍ନେ
ଶୁଣିଥିଲୁ ତୋତେ ଏହା କହିଲୁ ସୁମନେ ।
ବାରଙ୍ଗ ଯେ ପୁଂସା ରୋଗାସସ୍ୱା ସଭାଆଦି
ପାୟ ଗଦକ ଦୟାଯେଦି ଆସୁକୁଦି ।
ଯେ ଚବିଶ କୁକାଟିକା ମାତା ସାର ପୁଣ୍ଡରିକ
ବକ ତୁ ଦକ୍ଷ କରି ଯେ ଯମଦଗ୍ନି ହାକ ।
ଆତ୍ରିୟ ବିଷ୍ଣୁ ଅଙ୍ଗିରା କାର୍ତିକ କୁମ୍ଭଜ
ସୁଖ ବିଶ୍ୱାମିତ୍ର ଘେନି ଚବିଶ ଯେ ହେଜ ।
ଏହି ଚଉବିଂଶ ଋଷି ମାଗିଥିଲେ ଯେହା
ଗାୟତ୍ରୀ ସାଧନା ବଛ କହିଦେଲୁ ତାହା ।
ଯେହି ଭାବ ଜାଣି ତାକୁ କଳ୍ପ ଧ୍ୟାନ କର
କହଇ ବାରଙ୍ଗ ଗାଇ ଉଠିବ ନିକର ।
ଯେବେ କଳ୍ପ –
ଶ୍ୱେତ ବିଷ୍ଣୁକ୍ରାନ୍ତା ଢ଼ୁମୁଢ଼ୁମା ମୂଳ ପୁଣ
ଗୋରଚନା ଯେହାଃମୁଳ ରସେ କର ପନ ।
ଶ୍ୱେତ ଚିତା ଲାଗି ଯେହା ଯେ କରେ ଅପ୍ୟାନ
ଉଲଟ ମତ ସେ ଯେ ଶବଦ ଶର ମନ ।
ଯେହି ମନ୍ତ୍ର ଓଲଟାଇ ପୁଣି ସେ ଜପିବ
ତତକ୍ଷଣେ ସେ ଶବ ସେଇ ପୁଣ ନ ଉଠିବ ।
ଅନାଦିଙ୍କ ଆଜ୍ଞା ଯେହୁ କହିଲୁ ଖୁଣ୍ଟିଆ
କହଇ ସିଦ୍ଧ ବାରଙ୍ଗ ନ କହିବୁ ଯେହା ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବୟାସିକ୍ୟାଂ ପରମହଂସ ସଂହିତାୟାଂ ଖୁଣ୍ଟିଆ ବାରଙ୍ଗ ସମ୍ବାଦେ ନାମ ସପ୍ତମ ଅଧ୍ୟାୟଃ ।

# ଅଷ୍ଟମ ଅଧ୍ୟାୟ

ସ୍ୱାମୀଙ୍କ ଚରଣ ଧରିଣ ପୁଚ୍ଛଇ ପରମ ତତ୍ତ୍ୱ ବିଚାର
ଯେଉଁ ସ୍ଥାନରୁ ଯେ ଉତ୍ପତି ହୋଇଛି ସେହିଟି ଜ୍ଞାନ ଭଣ୍ଡାର ।
ଛନ୍ଦିଲେ ବ୍ରହ୍ମ ମୁକତ ଦୁଆର ।ଏ ରୂପେ ଶୁଣ ମନର ବିଚାର ।
କହନ୍ତି ମନ୍ତ୍ର ଶୁଣ ଆହେ ଶିଷ୍ୟ ।ଏଭାବେ ହରେ ରାମକୃଷ୍ଣ ଅଂଶ ।
'ରା' ଅକ୍ଷର ଲକ୍ଷ୍ମୀ ଛନ୍ତି ଧରି ।'ରା' ଶବଦର ତତ୍ତ୍ୱ ବିଚାରି ।
'ରା' ଶବଦୁ ଶିଶୁ ବେଦ ଜାତ ।'ମ' ଅକ୍ଷର ଅଟେ ବେଦତତ୍ତ୍ୱ ।
'ମ' ଯେ ପଞ୍ଚମାତ୍ରାକୁ ତାରଣ ।'ମ' ଅକ୍ଷରୁ ବ୍ରହ୍ମାଣ୍ଡ ନିର୍ମାଣ ।
'ମ'ରୁ ମୋହଜାତ କରି ମାୟା ।'ନ'କୁ ସାଧିଲେ ଲୁଟଇ କାୟା ।
ମମତା କରିଛି 'ମ' ଅକ୍ଷର ।'ମ'କୁ ରଖି 'ରା'କୁ ଭଣ୍ଡାର ।
'ମ' ଅକ୍ଷରେ 'ନ' ଅକ୍ଷର ମିଶି ।ମନ ବୋଲିଟି ଜଗତେ ପ୍ରଶଂସି ।
ମନ 'ହ' ଅକ୍ଷର କରିଛି ବାସ ।ବିନ୍ଦୁ ଭିତରେ ହୋଇଛି ପ୍ରକାଶ ।
ବିନ୍ଦୁ ନାଦ ନୁହେଂ ଏକତ୍ୱ ଅଙ୍ଗ ।ବିନ୍ଦୁକୁ ଭେଦୁଛି ସିଦ୍ଧ ବାରଙ୍ଗ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ
କଥନେ ନାମ ଅଷ୍ଟମ ଅଧ୍ୟାୟଃ

# ନବମ ଅଧ୍ୟାୟ

ପୀଢ଼ ବନ୍ଧ ଅନନ୍ତ ଚରିତ -
ସ୍ୱାମୀ କହନ୍ତି ପରମ ରସ ଅବ୍ୟୟ ଅମୃତ କଥା
ଗୁପତ ଚରିତ କାହିଁ ନ କହିବୁ ଛୁଅଁଟି ମୋର ମଥା ।
ତାଣ୍ଡବ ବାଣୀରେ -
ସ୍ୱାମୀ ବୋଲନ୍ତି ସେ ଅନନ୍ତ ମୂର୍ତ୍ତି ।ଦୃଶ୍ୟ ହେଲେ ଛାଡ଼େ ଭବ ଦୁର୍ଗତି
ଯେଉଁ ଅନନ୍ତ ସ୍ୱୟଂ ଜ୍ୟୋତିର୍ମୟେ ।ଉଦେହେଲେ ପାପ ହୁଅଇ କ୍ଷୟେ
ଅନନ୍ତୁ ଅନନ୍ତ ଜାହ୍ନ ହୁଅନ୍ତି ।ଅନନ୍ତ ଅବ୍ୟୟ ପରମ ଜ୍ୟୋତି ।
ଅନନ୍ତ ମୂରତି ଦେଖିବୁ ଯେବେ ।ପଦ ଛୁଇଁଥାଅ ପରମ ଭାବେ ।

କଳାଶ୍ରୀ ପୁଷ୍ପ ପ୍ରାୟେ କାନ୍ତିମାନ । ଧବଳ କୋଷ ବିଶେ ଶ୍ୱେତବର୍ଣ୍ଣ ।
ଦେଖିଣ କାହିଁ ନ କହିବୁ ତୁହି । ଅନନ୍ତ ଦ୍ରଶନେ ପାପ ନାଶଇ ।
ଶୁଣ ଖୁଣ୍ଟିଆ ପବିତ୍ର ଚରିତ । ଦିନେ ବିଜେକଲେ ଛାୟାର କାନ୍ତ ।
ଉଭୟ ରୂପ ଶୂନ୍ୟରେ ରଖିଲେ । ଶିଷ୍ୟଙ୍କୁ ପ୍ରସନ୍ନେ ଯାହା କହିଲେ
ଶିଶୁ ବିଚାରିଲେ ପ୍ରସନ୍ନ ପାଇଁ । ନୟନ ଟେକିଲେ ସୂର୍ଯ୍ୟଙ୍କୁ ଚାହିଁ ।
ମୂଳ କମଳ ଗୁହ୍ୟ ଦ୍ୱାରେ ଦେଇଁ । ଦେଖିଲେ ଅର୍ଦ୍ଧ ଊର୍ଦ୍ଧ୍ୱରେ ମିଶାଇ
ମନ ପବନ ଯେ ଏକତ୍ୱ କଲେ । ଉଦେଗିରିର ଉପରେ ବସିଲେ ।
ସୂର୍ଯ୍ୟ ଗାୟତ୍ରୀ ଧରି କଲେ ଲୟେ । ଦୃଶ୍ୟହିଁ ହେଲା ଶୂନ୍ୟମୟେ ଦେହେ
ଦକ୍ଷିଣାୟନ ଭଜନ ପ୍ରତାପ । ଜାଗିଲେ ପ୍ରଭୁ ସର୍ବଦା ପ୍ରତାପ ।
ସାଧନା ଯୋଗ ବ୍ରହ୍ମ ଲୟେ ପାଇ । ଦେଖିଲି ସ୍ୱାମୀଙ୍କ ଚେତନା ପାଇ ।
ଶୂନ୍ୟ ଶିର କାହୁଁ ଏକ ହୋଇଲା । ଶୂନ୍ୟରେ ସ୍ୱାମୀ ଆନନ ଦିଶିଲା ।
ଅରୁଣ ସଙ୍ଗେ ଅଗ୍ନି ଯେକ ରୂପ । ଥଇଲେ କୋଟୀବ୍ରହ୍ମାଣ୍ଡ ଅଧିପ ।
ଯେତେବେଳେ ସ୍ୱାମୀ ଖଣ୍ଡଗିରିରେ । ପ୍ରବେଶ ହେଲେ କପିଳଙ୍କଠାରେ
ନିଷ୍ଠୁତି ଯୋଗୀ ଅଛନ୍ତି ଗୋସାଇଁ । ଉଭା ହୋଇଲେ ଛାୟାଦେବୀ ସାଇଁ ।
ବୋଇଲେ ପ୍ରସନ୍ନ ହେବ ଅନନ୍ତ । ଶୁଣି ପ୍ରଣିପତ୍ୟ କପିଳସୁତ ।
କପିଳ ମୁନି ଆଦି ନାରାୟଣ । ଗୁପତଭାବେ ବସିଲେ ସେ ପୁଣ ।
ଚାମର ଧରି ମୁଁ ଉଭା ହୋଇଲି । ଯାହା କହିଲେ ତାହା ମୁଁ ଶୁଣିଲି ।
ସେ କଥା ଯେବେ ଶୁଣିବୁ ହୋ ଶିଷ୍ୟ । ଆମ୍ଭ ମଥା ଛୁଇଁଥାଅ ବିଶେଷ
ଗୁରୁ ଭଣ୍ଡାର ନ କହିବୁ କାହିଁ । ଅନ୍ୟେ କହିଲେ ଯେ ଖୋଜି ହୁଅଇ ।
ଅନ୍ୟ ଲୋକଙ୍କୁ ନ କହିବୁ ଯେହା । ଖୁଣ୍ଟିଆ ନାହିଁ ନୋହିବ ଉତ୍ସାହା
ଶୁଣ ତୁ ଯାହା ଶୁଣିଅଛି ମୁହିଁ । ମୋତେ ତା ଶ୍ରୀଗୁରୁ ଅଛନ୍ତି କହି ।
ପ୍ରଥମେ ମନ ନିର୍ବତ କରିବୁ । ନିର୍ମାଣ ମନକରି ଭେଦୁଥିବୁ ।
ଶୂନ୍ୟକୁ ଦୃଷ୍ଟି ଦେବ ସ୍ଥିର ହୋଇ । ପ୍ରଥମେ ଉଦେ ବିନ୍ଦୁ ରୂପ ହୋଇ ।
ମନ୍ତ୍ର – ହଂ କ୍ଷଂ
ଏ ଦୁଇ ଅକ୍ଷର ଶୂନ୍ୟରେ ଦେବ । ମଧ୍ୟକୁ ଚାହିଁ ବିରାଟ ହୋଇବ ।
ବିରାଟୁ ଉତ୍ପତ୍ତି ସଚରାଚର । ଯେ ଭାବେ ଜ୍ଞାନୀଜନଙ୍କୁ ଗୋଚର ।
ଅନନ୍ତ ସ୍ୱରୂପ ଯହୁଁ ଦେଖିବ । ଶୂନ୍ୟରୁ ଦୃଷ୍ଟି ଟୋଳି ନ ହୋଇବ ।
ଶୂନ୍ୟମୟେ ରୂପ ଅରୂପ ସ୍ଥାନ । ଅଜପା ବୋଲିଟି ଏହୁ ସାଧନ ।
ଅଜପା ଘେନିଟି ଯେହି ବିଚାର । ଯେ ଭାବ ସାଧିଥିଲେ ହନୁବୀର ।

ପରମ ତତ୍ତ୍ୱଟି ଏହାକୁ କହି । ଆଦି ବ୍ରହ୍ମ ଘର ଯେହାକୁ କହି ।
ଯେଭାବେ ଥିଲେ ବଇଗୁନ ନାହିଁ । କାମକ୍ରୋଧ ତେଜି ଯେଭାବ ଭାଇ ।
ଯେଉଁମାନେ କାମକ୍ରୋଧ ତେଜନ୍ତି । ଯେ ଦୁଇ ତେଜିଲେ ମୋକ୍ଷ ଲଭନ୍ତି ।
ମୋକ୍ଷ ଭିତରୁ ବାହାର ଅନନ୍ତ । ଅନନ୍ତ କଳା ଶୂନ୍ୟମଯେ ସ୍ଥିତ ।
ଆଦି ପୁରୁଷକୁ ଦେଖ ନୟନ । ଯେହିଟି ଅଟଇ ଅଣସାଧନ ।
ଯେଭାବ ସତ ଅନନ୍ତଙ୍କୁ କହି । ଉଦେଗିରିରେ ଯେମନ୍ତ ବୁଝାଇ ।
ସୂର୍ଯ୍ୟାଯେଣବେଳେ ଏହା ସାଧିବ । ଅନନ୍ତ ମୂର୍ତ୍ତି ନୟନେ ଦେଖିବ ।
କାତିଗୋଟିକେ ବ୍ରହ୍ମାଣ୍ଡ କୋଟିଯେ । ଉତ୍ପତି ସ୍ଥିତି ଜ୍ଞାନମଯେ ଦେହେ ।
ହଅ ଶୂନ୍ୟ ଶୂନ୍ୟ ପୁରୁଷ ବ୍ରହ୍ମ । ଅହ ନାମଟି ଅବ୍ୟୟ ସୁଧାମ ।
ବ୍ରହ୍ମାଣ୍ଡ ନାଶିଲେ ତହିଁରେ ପଶେ । କୋଟି ବ୍ରହ୍ମାଣ୍ଡ ଯାର ରୋମଦେଶେ ।
ଜୀବକୁ କରତା ସର୍ବ ଅଙ୍ଗରେ । ମିଶାଇ ନାହିଁ କାହାର ସଙ୍ଗରେ ।
ପରମ ତତ୍ତ୍ୱ କହିଲୁ ତୋ ଆଗେ । ଅନନ୍ତ ଦେବ ପ୍ରସନ୍ନ ସୁଭାଗ୍ୟେ ।
କହେ ସିଦ୍ଧ ବାରଙ୍ଗ ରସାମୃତ । ନିରନ୍ତରେ ପିଇ ହୁଅ ଉନ୍ନତ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ ଅନନ୍ତ ଚରିତ
କଥନେ ନାମ ନବମ ଅଧ୍ୟାୟ ।

## ଦଶମ ଅଧ୍ୟାୟ

ପୀଢ଼ବନ୍ଧ - ବ୍ରହ୍ମ ପ୍ରଚ୍ଛିନ୍ନ
ପୁଣ ଯାହା କୃପା କରିଣ କହିଲେ ଖୁଣ୍ଟିଆ ତୋତେ କହିବା ।
ପୃଥିର ସଞ୍ଚାର ବ୍ରହ୍ମରୁ ଯେମନ୍ତ ତାହା ତୋତେ ବୁଝାଇବା ।
ରେଢ଼ା ବାଣୀରେ -
ଅବ୍ୟୟ ବ୍ରହ୍ମ ଚରିତ ଯେ କହିବା ପରମ ରସ ବିଚାର
ଯେଉଁ ବ୍ରହ୍ମରୁ ଯେ ଷୋଡ଼ଶ ଘେନିଣ କରିଛି ସଚରାଚର ।
ସେହି ବ୍ରହ୍ମ ଜ୍ୟୋତି ବ୍ରହ୍ମାଣ୍ଡେ ପୂରିଣ ପୂର୍ଣ୍ଣ ପ୍ରକାଶ ହୋଇଛି
ଯେଉଁ ବ୍ରହ୍ମ ମହାଶୂନ୍ୟ ଆତଜାତ ଭେଦି ବ୍ରହ୍ମଣ୍ଡେ ପୂରିଛି ।
କାମ କ୍ରୋଧ ଧ୍ୱଂସି ସେ ସ୍ଥାନେ ପଶିବା କଳ୍ପଜ୍ଞାନ ଆଶ୍ରେ କରି
ଉତ୍ପତ୍ତି ଚେଷ୍ଟା ସେହି ଜ୍ଞାନ ଭେଦିଣ ତତ୍ତ୍ୱ ବିଚାର ସୁମରି ।

ଅବ୍ୟୟ ବ୍ରହ୍ମତତ୍ତ୍ୱମଯେ ପୂର୍ଣ୍ଣ ତାର କିରଣଟି ଜ୍ୟୋତି
ଜ୍ୟୋତି କିରଣ ପରମ ଅଟଇ ଯେ ପୂରି ପ୍ରକାଶୁଛି ନିତି ।
ଯେକା କିରଣରୁ ପୁଣି ଜନମିଲା ପରମ କିରଣ ବାୟୁ
ବାୟୁର କିରଣ ଶବଦ ଅଟଇ ବଚନ କହୁଛି ଯେହୁ ।
ପ୍ରାଣ, ଅପାନ ଯେ ଉଦାନ ସମାନ ବ୍ୟାନ ଏ ପାଞ୍ଚ ପ୍ରକାର
ପାଞ୍ଚେ ଠୁଳ ହୋଇ ବଚନ କହନ୍ତି ଯେହିଟି ଜ୍ଞାନ ଭଣ୍ଡାର ।
ଯେହି ବଚନଟି ବ୍ରହ୍ମ ଯେ ଅଟଇ ଯେକ କାରଟି ତହିଁରେ
ଓଁ କାର ବାହାରୁ ବାହାର ହୋଇଣ କହୁଛି ବେଦ ସଙ୍ଗରେ ।
ଶବଦ ଭିତରେ ସରସ୍ୱତୀ ବିଜେ ଅଣାକାରଟି ଶବଦ
ଅସମାୟ ରୂପ ନ ଦିଶଇ ସେହୁ ଯେହିଟି ଜ୍ଞାନର ଭେଦ ।
ଶବଦ ସଙ୍ଗେ ପରଚେ ଯେବେ ହେବୁ ଆଉ ତୋର ମିଥ୍ୟା କାହିଁ
ଶବଦ ବ୍ରହ୍ମ ପୂର୍ଣ୍ଣ ଜ୍ୟୋତି ସେହିଟି ତ୍ରିକୂଟ ସ୍ଥାନେ ଉଦ୍ଭଇ ।
ଧାର ତିନିରୁ ଯେ ସରସ ପଡ଼ିଣ ପାଣି ପବନ ଯେକତ୍ୱ
ଦୁହେଁ ମିଶିକରି ଶବଦ କହନ୍ତି ଯେହିଟି ହୋ ଅନହତ ।
ଅନହତ ଜୀବ ହତରେ ପଶିବ କି କରିବୁଟି ହୋ ତୁହି
ଥାଉଁ ଅନହତ ପରଚେ ହୋଇଲେ ସୁଜ୍ଞାନ ପରଚେ ହୋଇ ।
ଜ୍ୟୋତି ଚନ୍ଦ୍ର ଉଦେ କରିଣ ହୋ ଶିଷ୍ୟ ସମ୍ଭାଳି ହୋଇଣ ଦେଖି
ଚନ୍ଦ୍ର ଜ୍ୟୋତି ରସେ କିରଣ ବାଜିଣ ନିତ୍ୟେ ହୋଇବୁ ତୁ ସୁଖୀ ।
ଭାବିଲେ ଭାବ ଯେ ଭାବନା ରହଇ ପ୍ରକୃତି କର ନିବୃତ୍ତ
ସିଦ୍ଧ ବାରଙ୍ଗ ଯେ ଭାବରେ ଭଣିଲେ ସୁଦୟା ଶିଶୁ ଅନନ୍ତ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ପରମହଂସ
ସଂହିତାୟାଂ ବ୍ରହ୍ମ ପ୍ରଚ୍ଛିନ୍ନେ ନାମ ଦଶମ ଅଧ୍ୟାୟଃ ।

## ଏକାଦଶ ଅଧ୍ୟାୟ

ପୀଢ଼ବନ୍ଧ –

ଚନ୍ଦ୍ରଜ୍ୟୋତି ଉଦୟ-ଅନ୍ତପଖାଲ-ମହୁଲ ମନାଙ୍ଗ ସିଦ୍ଧି
ଚନ୍ଦ୍ର ଉଦେ ହେବା ପ୍ରାୟେ ହୋଇବଟି ଜ୍ୟୋତି ପ୍ରମାଣ ଏହି ।
ତୋ ଆଗେ କହିବା ଯେ ତତ୍ତ୍ୱପ୍ରସଙ୍ଗ ଆଗତ ତାହା ବୁଝାଇ ।

ଅନ୍ତପଖାଳ-ପ୍ରଥମେ ପ୍ରାତୁ ଉଠି ସ୍ନାନ ସାରି ଗୋମୟ ଲିପି ସ୍ଥାନ କରି
ଯେକାଙ୍ଗ ଯୋଗ ତତ୍ତ୍ୱ କରି ।
ରାତ୍ର ଉତ୍ତାରେ ମୁଖରେ ସୂର୍ଯ୍ୟରେ ସାଧିଲେ ଭିତରେ ଯାଇଁ ପଶିବ ।
ଉର୍ଦ୍ଧ୍ୱେ ପରଂବ୍ରହ୍ମ ଯେକାକ୍ଷର ଜପି ସୂର୍ଯ୍ୟଙ୍କୁ ଅନାଇ ନୟନ ଟେକିବ
ହୃଦ ପଦ୍ମେ ବାଜିବ ସେ ସତ୍ର ପଥେ ତହୁଁ ଫିଟିଯିବ ।
ଓଁ ସୂତ୍ରଭଙ୍ଗ ତହୁଁ କିରଣ ଫାଟି ଅମୃତ ବହିବ ।
ସେ ଅମୃତ ପିଇଲେ ଖଣ୍ଡଗିରି ଆସନ ଦୃଢ଼ ହେବ
ମନ ଦୃଢ଼କର ହୋଇବୁ ଅମର ଏକଥା ଅଟଇ ଧ୍ରୁବ ।
ଆହେ ଖୁଣ୍ଟିଆ ଏ ଚଉଦ ମାସରେ ଯୋଗ ଯେ ସିଦ୍ଧି ହୁଅଇ
ସତ ଅନନ୍ତଙ୍କ ଆଜ୍ଞା ଏହି ସିଦ୍ଧ ବାରଙ୍ଗ କହେ ବୁଝାଇ ।
ଯେକାନ୍ତରେ ବସି ତିରଣ ଶଯ୍ୟା କରି ତ୍ରିକୂଟ ଉପରକୁ
ଚାହିଁଲେ ଘର ଆଲୋକ ହୁଅଇ ସେ ଘରେ କେହି ନ ଥିବ ।
ଯେ ଚନ୍ଦ୍ରଜ୍ୟୋତି । ଓଁ ହ୍ରୀଂନିଂ ପ୍ରାଂ ଓ ସନବିଧାତ୍ରି ନମଃ
ଏ ମନ୍ତ୍ର ରୁଦ୍ରାକ୍ଷ ମାଳିରେ ଜପିବ । ଚଉଦଲକ୍ଷ ନାମରେ ସିଦ୍ଧ ହୁଅଛି ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ଚନ୍ଦ୍ରଜ୍ୟୋତି ଉଦୟେ
ନାମ ଏକାଦାଶ ଅଧ୍ୟାୟଃ ।

## ଦ୍ୱାଦଶ ଅଧ୍ୟାୟ

ମନ୍ତ୍ର -
ଓଁ ଅଉମ କ୍ଲୀଂ ପ୍ଲୀଂ ହ୍ଲୀଂ ଓଁ କ୍ଲୀଂ କୃଷ୍ଣାୟ ନମଃ
ଏ ମନ୍ତ୍ରକୁ ସୂତା ସିଦ୍ଧ କରି ରୁଦ୍ରାକ୍ଷର ମାଳିରେ ଜପିବ
ଚଉଦ ଲକ୍ଷ ନାମରେ ଯେବେ ଜପୁ ତେବେ ଏ ସିଦ୍ଧ ହୋଇବ ।
ତିନି ହାତ ସୂତା ନିତି ଆତଜାତ ନାଭିଚକ୍ରକୁ ଲାଗିବ
ଡମ୍ବରୁ ଖଣ୍ଡରେ ଗୁହ୍ୟ ପଦ୍ମ ଫୁଟି ଅନ୍ତ ଯେ ବାହାର ହେବ ।
ଏକାନ୍ତ ଜଳେ ଅନ୍ତ ପଖାଳିବୁ ଆଉ ତୋର ଭୟ କାହିଁ ।
ସେ ଦ୍ୱାର ବାଟରେ ପୁଣି ସଂହାରିବୁ ଉଲଟ ଯନ୍ତ୍ର ଲଗାଇ ।
ଯେମାନଙ୍କୁ ଅନ୍ତ ପଖାଳ ଯୋଗୀଟି ବୋଲନ୍ତି ଶୁଣ ସଂସାରେ

ଗୋରେଖଯୋଗୀ ମଲ୍ଲିକ ବୀର ସିଦ୍ଧ ବାରଙ୍ଗ ଏଥି ସଙ୍ଗରେ ।
ସାଧନା ସିନ୍ଧି ବାନ୍ଧିଲେ ବିଧି ହୋଇ ଯମକୁ ଜିଣିମା ପଥ
ଯେହି ପତରେ ଅନନ୍ତ ଘରେ ଝାସିଣ ହୋଇଲେ ସବୁ ମୁକତ ।
ଲାଭିରେ ଗୋଇଠି ଦେଲାକ୍ଷଣି ମଧ୍ୟେ ଅନ୍ତ ବାହାର ହୋଇବ
ଗୁହ୍ୟକୁ ବାମହସ୍ତରେ ଧଇଲେ ସେ ଭିତରୁ ପଶିଯିବ ।
ଭିତରେ ପଶିଣ ଫେରିଆସି ସେ ବାରଙ୍ଗ ହୋଇ ଅନନ୍ତ ।
ବ୍ରହ୍ମକୁଣ୍ଡଳୀ ବ୍ରହ୍ମଗ୍ୟାନ ଚରିତ ଖୁଣ୍ଟିଆ କହେ ଭକତ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ନାମ ଦ୍ୱାଦଶ ଅଧ୍ୟାୟଃ ।

## ତ୍ରୟୋଦଶ ଅଧ୍ୟାୟ

ଗ୍ରହପୀଢ଼ ବନ୍ଧ- ଗୁପ୍ତ ସାଧନ ପ୍ରସଙ୍ଗ

ଖୁଣ୍ଟିଆକୁ ବାହିଁ ସିଦ୍ଧ ବାରଙ୍ଗ । କହନ୍ତି ସାଧନ ଗୁପ୍ତ ପ୍ରସଙ୍ଗ ।
ଇନ୍ଦ୍ରିୟ ବାଟେ ଚଳାନ୍ତି ଯେ ପାଣି । ସେହି ଅଟଇ ପବନ ଉଜାଣି ।
ଷୋଳ ଡମ୍ବରୁ ଭେଦିପାରେ ହେଲେ । ଅଳପ ଅନ୍ନ ବହୁତରେ ବୋଲେ
ଏ ବେନି ସାଧନା ପାରିଲେ ସାଧ । ଉଭରା ସହି ନାମରେ ପ୍ରବୋଧ ।
ସାଧିଲେ ସିନା ଯେ ଭାବ ବିଚାରି । ନ ସାଧିଲେଟି ସବୁ ବ୍ୟର୍ଥ କରି ।
ଏ ଅର୍ଣ୍ଣପୂର୍ଣ୍ଣା ମନ୍ତ୍ର- ଓଁ କ୍ଲୀଂ ଭଗବତେ ମହେଶ୍ୱରୀ ଅର୍ଣ୍ଣପୂର୍ଣ୍ଣାୟ ସ୍ୱାହା ।
ସିଦ୍ଧି କଲେ ଅନ୍ନ ଭୋଗ ବିଚାର । ମନରେ ବିଅର୍ଥ ଭ୍ରମଣ ତାର ।
ଦୁଇପ୍ରକାରେ ଯେ ଅଟଇ ସିଦ୍ଧି । ମହୁଲ ମଲାଙ୍ଗ ଉଭରେ ସାଧି ।
ରବିବାର ସେ ମଲାଙ୍ଗକୁ ଆଣ । ଦୟେଣା ମିଶ୍ରିତ କରିବ ପୁଣ ।
ଯେ ଦୁଇ ଏକତ୍ୱ ହୋଇବ ଯହୁଁ । ନବତନ ହାଣ୍ଡି କରିବ ତହୁଁ ।
ହାଣ୍ଡିରେ କେବେହେଂ ବାଜିବ ନାହିଁ । ନାସ୍ତି ନକର ଯେ ଯେତେ ମାଗଇ
ଯେ ଯେତେ ମାଗିଲେ ଦେଉଣ ଥିବ । ପଦାର୍ଥ ଥୋଇ ଜଳ ପକାଇବ ।
ଛଡ଼କାନ ଯେହା କରିବ ନାହିଁ । ସୁଷେଣ ବିହରୁ ଥିବ ଯେ ମହୀ ।
ଖୁଣ୍ଟିଆ କରପତ୍ର ଯୋଡ଼ି କହି । ଆଉ ପ୍ରକାରେ ଯେ କହ ଗୋସାଇଁ ।
କହନ୍ତି ସ୍ୱାମୀ ପରମ ଗୁପତ । ଆଉ ପ୍ରକାରେ ଯେ କହିବା ତତ୍ତ୍ୱ ।

 

ସେହି ମଲାଙ୍ଗକୁ ଧାନ ରାଶିରେ । ପୋତି ରଖିବ ଶୁକଳ କନାରେ ।
ରାତ୍ର ଦିବା ଗୁଆଘୃତ ଦେଉଥିବ । କେବେହେଁ ଏହା ପରେ ନ କହିବ ।
ବିକିବ ନାହିଁ ସେ ରାଶିରୁ ପୁଣ । ନିଷ୍ଠିନ୍ତେ ରଖିବ ଗୃହରେ ଜାଣ ।
ବ୍ୟୟରେ ଅସରନ୍ତି ଏହୁ ଧାନ । ତୋ ଆଗେ କହିଲୁ ଏହା ପ୍ରମାଣ ।
ସାଧିଲେ ସିଦ୍ଧି ଏ ଗୁପ୍ତ ପ୍ରସଙ୍ଗ । ଭାବରେ ଭଣିଲେ ସିଦ୍ଧ ବାରଙ୍ଗ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ନାମ
ତ୍ରୟୋଦଶ ଅଧ୍ୟାୟଃ ।

# ଚତୁର୍ଦ୍ଦଶ ଅଧ୍ୟାୟ

ପୀଢ଼ ବନ୍ଧ-ବୀଜତତ୍ତ୍ୱ
କହିବା ଏବେ ଜ୍ଞାନର ଉପଦେଶକୁ ଶୁଣ ତୁ ତତ୍ତ୍ୱବିଚାର
ଯେଉଁ ଜ୍ଞାନରେ ମୋହ ତୋର ତୁଟିବ କହିବା ତହିଁ ବିଚାର ।
ଜଳକ୍ରୀଡ଼ା ବାଣୀରେ -

ଦାସହୋ ପ୍ରଥମେ ବ୍ରହ୍ମବିଚାର । ଅନାଦି ତହୁଁଟି ଯେହୁ ବିଚାର ।
ଦାସହୋ ଅନାଦିରୁଟି ବିରାଜ । ଦାସହୋ ମହ ତହିଁରୁଟି ହେଜ ।
ଦାସହୋ ମହାପୁରୁଷ ତହିଁରୁ । ଦାସହୋ ବୁଦ୍ଧି ଜାଗ୍ରତ ସେ ଅଙ୍ଗରୁ
ଦାସହୋ ଚେତନା ତହିଁରୁ ଜାତ । ଦାସହୋ ତହିଁ ଅହଂକାରଯୁକ୍ତ ।
ଦାସହୋ ତହିଁରୁ ମନ ମଜିଲା । ଦାସହୋ ମନଶୂନ୍ୟ ପବନ କଲା
ଦାସହୋ ମନଟି ଶୂନ୍ୟ ଗମନ । ଦାସହୋ ତହିଁରୁ ଅନଳ ଜଳ ଜନମ ।
ଦାସହୋ ବସୁମତି ତହିଁରୁ ହୋଯେ । ଦାସହୋ ତହୁଁ ଜୀବ ପରମ ହୋଯେ
ଦାସହୋ ଏହିଟି ଅଟେ ଷୋଡ଼ଶ । ଦାସହୋ ଏଥୁଟି ହେଲା ଅଶେଷ ।
ଦାସହୋ ଏହି ଅଶେଷରୁ ରୂପଟି ଦୃଶ୍ୟ । ହୋଇ କରିଛି ଜଗତ ପ୍ରକାଶ
ଦାସହୋ ଅକଳିତୁ ବ୍ରହ୍ମ ବାହାର । ଆଚମ୍ବିତ ଅନାଦିଙ୍କ ବିଚାର ।
ଦାସହୋ ବିରାଜ ଅରେହ ଜାଣ । ମହାତତ୍ତ୍ୱଟି ଅଟଇ ସେ ପୁଣ ।
ଦାସହେ ମହାପୁରୁଷଟି ବିନ୍ଦୁ । ବିନ୍ଦୁଟି ମଣ୍ଡଳାକାରଟି ସିନ୍ଧୁ ।
ଦାସହୋ ଚେତନାଟି ଅର୍ଦ୍ଧମାତ୍ରା । ଅହଂକାର ଯେ ଚେତନା ସୁଭକ୍ତା ।

ମନ ଅହଂକାର ଚେତନା ଜାଣ । ମନ ବିଯୋଗୀର ଚିର ପ୍ରମାଣ ।
ଶୂନ୍ୟ ପବନ ତ୍ରିଘର ଘେନିଛି । ସିଦ୍ଧ ଲୋଡ଼ିବାକୁ ନାହିଁ ନା କିଛି ।
ଅନଳ ଯେ କ୍ଲୀଂ ଅଂ ବୀଜ ଧରିଛି । ଜଳଶ୍ରୀଂ ଅଂ ବୀଜରୁ ଜନମୁଛି ।
ହ୍ରୀଂ ଜଳ ଜୀବ ପରମ ଏକତ୍ୱ । ହ୍ରୀଂ ଅଂ ବୀଜକୁ ଘେନି ଏକତ୍ୱ ।
ଯେହି ପ୍ରକାରେ ଯେହୁ ଘେନିଅଛି । ସିଦ୍ଧ ହୋଇବାକୁ ନାହିଁ ନା କିଛି ।
'ହ' ଅକ୍ଷର ଉତ୍ପତ୍ତି ସ୍ଥାନ । 'ହ'ଅକୁ ନ ଚିହ୍ନି ଜ୍ଞାନ ବଖାଣ ।
ଦାସହୋ ଅକ୍ଷର ଅଶେଷ କର୍ତ୍ତା । ଦାସହେ 'ହ'ଅଟି ଅଶେଷ ପିତା ।
ଦାସହୋ ହଂସଟି ଅଖଣ୍ଡ ଘର । ଦାସ 'ହ' ଆଟି ଗେନି ବ୍ରହ୍ମ ଏକାକ୍ଷର ।
ଦାସହୋ 'ହ' ଅଶେଷ କାରେଣୀ । ଦାସ ହୋ 'ହ'କ୍ଷରୁ ବ୍ରହ୍ମ ଜନ୍ମି ।
ଦାସହୋ 'ହ'କ୍ଷର ଚିହ୍ନିଲେ ଗତି । 'ହ'କ୍ଷର ସିଦ୍ଧ ବାରଙ୍ଗ ଗତି ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ଜୀବତତ୍ତ୍ୱ
କଥନେ ନାମ ଚତୁର୍ଦ୍ଦଶ ଅଧ୍ୟାୟଃ

## ପଞ୍ଚଦଶ ଅଧ୍ୟାୟ

କାଳନ୍ଦୀ ହ୍ରଦ ବିଚାର, ଅକ୍ଷର ବର୍ଣ୍ଣଭେଦ-
ବ୍ରହ୍ମନାଦ ଭେଦିବାର, ମନକୁ ବୁଝାଇ ତୁରୀ ଅତୀତରେ ପଶିବା ବେଢ଼ା ଭିତର ।
ଚେତକୁ ମଣିମ ଅନନ୍ତ ଫଣୀ ମଣିରେ ରଖିବ ନେଇଁ ମନ ବୁଝାଇ ତହିଁରେ ।
ହଜରେ ପଶ କେଶରେ ପରମ ଆତ୍ମା ସୁହଂସ ।
'ହ' ଅକ୍ଷର ପରେ ସେ ମହାଶୂନ୍ୟ । ସେଠାରେ କାଳନ୍ଦୀ ହ୍ରଦ ଜନନ
ଶତ ଦଳ ଫୁଟିଅଛି ସେଠାରେ । ପରମ ଆତ୍ମା ବସିଣ ନିର୍ଭରେ ।
ଥିତଂ ନମାମି ବୋଲି ଧ୍ୟାନ କର । ବ୍ରହ୍ମ ମନ୍ତ୍ରକୁ ଏ ପ୍ରମାଣ ଧର ।
ବର୍ଣ୍ଣଭେଦ ଅକ୍ଷରକୁ ଅକ୍ଷର । କୁମତି ବର୍ଣ୍ଣ ସଅର ବିଚାର ।
ବନ୍ଧୁକ ପୁଷ୍ପ ବର୍ଣ୍ଣ 'ଷ' ଅକ୍ଷର । ବଅ ଅମୃତ ବର୍ଣ୍ଣର ବିଚାର ।
ମାଧବ ମ ଅକ୍ଷର ପ୍ରକାର । ମ ଭିତର ପୁଷ୍ପ ସଦୃଶ ଜର ।
ରଙ୍ଗ ଶିବ ବର୍ଣ୍ଣ 'ର' ଅକ୍ଷର୍ । ରତି କାମେ କଟି ଏହି ବିଚାର ।
ଉନ୍ମୁକା ବା ପୁଷ୍ପ ଲକ୍ଷ ଯେ ରଅର । 'ଣ' କାର ତୁଳସୀ ବର୍ଣ୍ଣ ଆକାର ।
ତ କାର ସୁଗନ୍ଧ ପୁଷ୍ପ ପରାଏ । ଥ କାର ଶୃଙ୍ଗ ସଦୃଶ ଯେ ହୋଯେ

ଦ ଦୟେଣା ପୁଷ୍ପର ଆକାର । ଧ କାର ଧରଣୀ ପୁଷ୍ପ ଆବର ।
ନ କାର ନୀଳ ପୁଷ୍ପର ସାଦୃଶ୍ୟ । ପ ଅକ୍ଷର ଦ୍ୱିତ ପଦ୍ମ ଦୃଶ୍ୟ ।
ଫ ଅକ୍ଷରି ପାରିଜାତ ପୁଷ୍ପ ପ୍ରାଏ । କ କାର କଦମ୍ବ ପୁଷ୍ପ ଦୃଶ୍ୟଏ ।
ଚାଖତା ସ୍ୱର ବର୍ଣ୍ଣ ପୁଷ୍ପ ଜାଣି । ଗଃକେତକୀ ବର୍ଣ୍ଣ ପରିମାଣି ।
ଘ ଘଟଣ ଶ୍ୱେତ ପୁଷ୍ପ ପ୍ରାୟେ । ଙ କାର ଆଦ୍ରକ କଦଳୀ ପ୍ରାୟେ ।
ଚ ଚମ୍ପା ପୁଷ୍ପ ପ୍ରାୟେ ଦିଶଇ । ଛ କାର ଛତି ଅନା ପ୍ରାୟେ ହୋଇ
ଜ କାର ଜଳଦ ପୁଷ୍ପ ସମାନ । ଝ କାର ଝୁମ୍ପୁରି ପୁଷ୍ପ ସମାନ ।
ଓଁକାର ଅକ୍ଷର ତରାଟ ପ୍ରାୟେ । ଟେକଣୀ କେତକୀ ସାଦୃଶ୍ୟ ହୋୟେ
ଠ ଅକ୍ଷର କାଳିକାଙ୍କ ଦୃଶ୍ୟ । ଅ କାର ଅମ୍ବୁଜର ସାଦୃଶ୍ୟ ।
ଆକାର ବର୍ଣ୍ଣ ଯେ ଆ ଅକ୍ଷର । ଇ କାର କୁସୁମ ବୋଲି ବିଚାର
ଉଜାଣି ଉକାର ବର୍ଣ୍ଣ ଭେଦିବୁ । ଉଜାଣି ଉଠିଲେ ସିଦ୍ଧି ଲଭିବୁ ।
ଋକାର ରଜନୀ ବର୍ଣ୍ଣ ୟେ ଜାଣ । ରାଜିବ ଆର ଋରେଣ ପ୍ରମାଣ ।
ଌ କାର ମରଆ ରୂପ ପ୍ରକାଶ । ଌ କାର କୁନ୍ଦ ପୁଷ୍ପର ସାଦୃଶ୍ୟ ।
ଏ କାର କୁଞ୍ଜ ପୁଷ୍ପ ପ୍ରାୟେ ଶୋଭା । ଐ ଅକ୍ଷର ଯେ ମନ୍ଦାର ଆଭା
ଓ ଅକ୍ଷର କୁମୁଦର ବର୍ଣ୍ଣ । ଔ ଓସକ ପୁଷ୍ପର ସମାନ ।
ଅଂ କାର ରଙ୍ଗିକା ପୁଷ୍ପ ଖୁଣ୍ଟିଆ । ସେ ପୁଷ୍ପ ହମ ଅଙ୍ଗ ବିନୋଦିଆ ।
ହଂହଂସ ବର୍ଣ୍ଣପ୍ରାୟେକ ଶୋଭା । କ୍ଷଃର ଚନ୍ଦ୍ରମା ପ୍ରାୟେକ ଆଭା ।
ଯେ ରୂପେ ବର୍ଣ୍ଣ ଅକ୍ଷରକୁ ଧରି । ରାତ୍ରରେ ୟେକାନ୍ତ ଆସନ କରି ।
ସଶ୍ରଦଳପଦ୍ମ କେଶର ମଧ୍ୟରେ । ଧ୍ୟାନ ରଖିବ ଅନନ୍ତ ଶିରରେ ।

ଏଠାରେ କଥିତା -

ପ୍ରଥମ ବେଢ଼ ପାଖୁଡ଼ା ମଞ୍ଜିର ବର୍ଣ୍ଣ । ଦ୍ବିତୀୟ ବେଢ଼ ପାଖୁଡ଼ା ହରିତାଳ । ଅର୍ଦ୍ଧବର୍ଣ୍ଣ ତୃତୀୟ ବେଢ଼ । ପାଖୁଡ଼ା ନୀଳବର୍ଣ୍ଣ । ଯେମନ୍ତ ଜାଣି ସହସ୍ର ଦଳପଦ୍ମ ଧ୍ୟାନକର । ଯେ ଧ୍ୟାନ କଲେ ହଂସ ଦିଶଇଟି । ଯେ ପଦ୍ମ ସରୋବରରେ ପରମାତ୍ମା ବିଜେ କରିଅଛି ।

ମନ ହୋ ସଦଗୁରୁ କୃପା ଜାଣି । ତେବେ ସିନା ବ୍ରହ୍ମନାଦକୁ ଶୁଣି ।
ପବନ ଦ୍ୱାଦଶ ଶଢ ଭିତର । ବ୍ରହ୍ମନାଦ ଯେ ଶୁଭଇ ସେଠାର ।
ମନ ଶୁଣିଲେ ଯେ ମୁକତି ପାଇ । ସିଦ୍ଧ ବାରଙ୍ଗ ସେ ୟେହା ଭାବଇ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ପରମହଂସ ସଂହିତାୟାଂ କାଳନ୍ଦୀହ୍ରଦ ବିଚାର ଅକ୍ଷର ବର୍ଣ୍ଣଭେଦକଥନେ ନାମ ପଞ୍ଚଦଶ ଅଧ୍ୟାୟଃ ।

 

# ଷୋଡ଼ଶ ଅଧ୍ୟାୟ

## ପୀଢ଼ବନ୍ଧ-ପବନ ଭେଦ

ନିସ୍ତରିଲି ସ୍ୱାମୀ ଅମୃତ ପାଇ ମୁଁ ନିଶ୍ଚୟ ଗତି ହୋଇଲା ।
ଭବବନ୍ଧ ମୋର ସକଳ ତୁଟିଲା ତତ୍ତ୍ୱଗୁରୁ ଭେଟ ହେଲା ।
କହ ସ୍ୱାମୀ ଏଥି ଚରିତମାନ । କେଉଁ ଅଂଶରୁଟି କେଉଁ ପବନ ।
ଯେ ଅମୃତ ରସ ପାଇବି କାହିଁ । ଛୁଆଁଇ ପାଦ ନ କହିବୁ କାହିଁ ।
ନିୟମ ଯେ ସ୍ୱାମୀ କରାଇଥାଅ । ଯେବେ ସେ ପବନର ଭେଦ କହ ।
ସ୍ୱାମୀ କହନ୍ତି ତାହା ବୁଝାଇବା । ତୋତେ ରହସ୍ୟ ଜ୍ଞାନ କହିଦେବା ।
ପ୍ରଥମେ ଆଧାର ଦ୍ୱିତୀୟେ ମନ । ହେମନ୍ତ ବସନ୍ତ ଚାରି ପବନ ।
ରସ ଶଷ ଏହି ମୂଳ ଆଧାର । ପବନ ସୂତ୍ର ଏ ବାଦି ପ୍ରଭୁର ।
ହ’ ପ୍ରାଣ ପବନ ଖେଦ ପବନ । ଚ ଦିନ ପବନ ଛ ସମାନ ।
ରା ଯେ ପବନ ‘ଯ’ ପବନ । ବ୍ୟାନ କ୍ଷୟଡ଼ ଆଉ ଯେ ପବନ ।
ବିମଳ ପବନ ‘ଅ’ ଅଟଇ । ଅନୁସତି ନାମ ପବନ କହି ।
ତ କାମଦେବ ପବନ ନାମ । ଅ ଟି ନାଗାନ୍ତ ଯୋଗାନ୍ତ ପୁଣ ।
ଥ’ଟି ବେଦାନ୍ତ ନ’ ସିଦ୍ଧାନ୍ତ । ଗଜବନ୍ଧନାମ କହିଲି ସତ ।
ଅଗ୍ନିନାଳ ଫ ପବନ । ଜ୍ଞାନ ପବନଟି ଅଟେ ପ୍ରମାଣ ।
ଘ ଟି ସମାନ ପବନ ହୋଇ । ଅ’ ଉଦାନ ପବନ ବୋଲାଇ ।
ଚ ଯେ ଚଞ୍ଚଳ ଜ୍ଞାନ ପବନ । ଛ ଅନାହତ ପବନ ନାମ ।
ତ କଣ୍ଠ ଉର ପବନ ବହି । ଓଁକାର ପବନ ମଣିନାଗହିଁ ।
ଟ ନୀଳ ଯେ ଉତ୍ତାନ ପବନ । ଏକା ର ଜାଣ ଅନାମ ପବନ ।
କାଳ ଘୋଟ ଅଟେ ପବନ ଯହିଁ । ଅ’ବୋଲି ନାମ କହିଲି ତହିଁ ।
ଅ’ ହଂସରାଜ ଶୁଣ ଖୁଣ୍ଟିଆ । ସୁହଂସ ପବନ ଇକାର ତାହା ।
ଇକାର ପରମହଂସ ପ୍ରକାଶ । ଚୌତ୍ରିଂଶ ପବନହଂସ ଯେ ଦୃଶ୍ୟ ।
ଉକାର ଶିଶୁ ଦେବତା ପବନ । ଉମନ ସ୍ଥିତ ପବନ ପୁଣ ।
ର ହଂକାର ଯେ ପବନ ହେଲା । ଠ ବୀଜଦାନ ପବନ ହେଲା ।
ଠ ମନରାମ ପବନ ଅଟେ । ଏ ପ୍ରାଣ ପବନ ତହିଁ ନିକଟେ ।
ଐ ଧ୍ୟାନ ପବନ ଚାଳିଶ ଭାଗ । ଓ ମନ ପବନ ସେହି ବୈରାଗ୍ୟ ।
କୁଟୀଳ ପବନ ଔ ଅଟଇ । ଅ ସୁଲଳିତ ପବନ କହି ।

 

ଅଂ ସିଦ୍ଧି ପବନ କହେ ବାରଙ୍ଗ । ପଞ୍ଚ ଚାଳିଶରେ ବ୍ରହ୍ମର ଭାଗ ।
ଏ ରୂପେ ଅକ୍ଷରମାନଙ୍କୁ ଘେନି । ପବନକୁ ଚିହ୍ନି ଭଜିଲେ ପୁଣି ।
ଘଟ ଯୋଗ କରି ବିଚାର କର । ଏ ଘଟ ବିଚାର ସବୁରି ସାର ।
ସଦଗୁରୁ କୃପା କଲେ ମିଳଇ । ପରିବାରୀ ଜୀବ ପ୍ରହରୀ ଦୁଇ ।
ଅର୍ଦ୍ଧ, ଉର୍ଦ୍ଧ୍ୱ ଧରି ତ୍ରିକୂଟ ସ୍ଥାନ । ଚିଦାନନ୍ଦ ଷୋଳ ଡମ୍ବରୁ ଶୂନ୍ୟ ।
ଷୋଳ ଡମ୍ବରୁକୁ ଫୁଟାଇ ଚଳ । ପବନ ଚିତା ଚକ୍ରର ଉପର ।
ଶ୍ରୀ ସତ ଅନନ୍ତଙ୍କ ଆଜ୍ଞା ଏକକ୍ଷ । ଅତସି ମୂଳ ବେଲପତ୍ରି ଅକ୍ଷ ।
ଜମ୍ବିଳ ଛେଲି ଯେ ଅଛ ପଦାର୍ଥ । ଏକ ଠାବ କରି ଖାଇ ବସତ ।
ଖାଇ ସିଦ୍ଧି କର ବ୍ରହ୍ମ ତତ୍ତ୍ୱକୁ । ଚନ୍ଦନ ଶୀତଳ ଅନହତକୁ ।
ଅନହତ ସାଧ ହୁଅଇ ବ୍ରହ୍ମ । ସିଦ୍ଧ ବାରଙ୍ଗଙ୍କ ଏହୁ ସାଧନ ।

ଇତିଶ୍ରୀ ବ୍ରହ୍ମ କୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ
ଅନହତ ବ୍ରହ୍ମ ପବନ ଭେଦ କଥାୟାଂ ନାମ ଷୋଡ଼ଶ ଅଧ୍ୟାୟଃ ।

## ସପ୍ତଦଶ ଅଧ୍ୟାୟ

ଗ୍ରହ ପୀଡ଼ବନ୍ଧ-ଷୋଳକଳା ବର୍ଣ୍ଣନ
ଆନନ୍ଦେ ପ୍ରମୋଦ ହୋଇଣ ଖୁଣ୍ଟିଆ ଗୁରୁଙ୍କୁ ତତ୍ତ୍ୱ ପୁଛଇ
ଅନାଦିଙ୍କୁ ନିରାକାର ଯେ ବୋଲନ୍ତି କେମନ୍ତେ ଚିହ୍ନିବି ମୁହିଁ ।
କହ କହ ସ୍ୱାମୀ କଳା ଆତଜାତ ସୁଦୟା କରିଣ ମୋତେ
ଗରୁଡ଼ ସମ୍ବାଦ ରେବତୀ ରମଣ ଯାହା କହିଲେ ଯୁକତେ ।
ତୁମ୍ଭଙ୍କୁ ଯାହା କହିଥିଲେ ଶ୍ରୀଗୁରୁ ଷୋଳ କଳାର ବ୍ୟବସ୍ଥା ।
ମୁହିଁ ଲେଖିବାକୁ ଭାର୍ଜନ ହୋଇଲି ପରମ ରହସ୍ୟ କଥା ।
କହନ୍ତି ବାରଙ୍ଗ ଖୁଣ୍ଟିଆକୁ ଚାହିଁ ବାର କଳାର 'ବିଚାର
ହେତୁ କରି ତୁହି ମନେ ରଖିଥିବୁ ନ କହିବୁ କା' ଆଗର ।
ତପନ ତାପନୀ ଧୂମ୍ରାର ମାରତ ଜାଳିନୀ ଭୋଗ ଧାରିଣୀ ।
ର କାର ବୋଧନ ଯେମାଙ୍ଗ ପୁଷ୍ପ ଧାରେଣୀ ଶିଶୁ ମୁନା ଘେନି ।
ଉର୍ମ୍ମି, ଧୂର୍ମ୍ମି, ଜ୍ୟୋତି ଜ୍ୱାଳାକୁ ଘେନିଣ ଷଷଦଶ ଏହୁ ସ୍ଥିତ ।
ଏତେ କାଳରେଟି ଆଦିତ୍ୟ ଦେବତା ଶୂନ୍ୟେ ହୁଏ ଆତଯାତ ।

ଗତାଗତ ତୋତେ କହିଲୁ ବୁଝାଇ ମନେ ରଖିଥିବୁ ତୁହି ।
ସିଦ୍ଧ ବାରଙ୍ଗ ଯେ ଏହିମତି ଧାନ ନିତ୍ୟରେ ସେ ଥିଲେ ଧାୟୀ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ ଷଷ୍ଠଦଶ
କଳା ବର୍ଣ୍ଣନଂ ନାମ ସପ୍ତଦଶ ଅଧ୍ୟାୟଃ ।

## ଅଷ୍ଟାଦଶ ଅଧ୍ୟାୟ

ଗ୍ରହୀ ପୀଢ଼ବନ୍ଧ-ଚନ୍ଦ୍ରକଳା
ଯେମନ୍ତେ ଖୁଣ୍ଟିଆ ପ୍ରତେ ଯାଇ ମନ ତୋତେ ବୁଝାଇ କହିବା ।
ତୁହି ମୋର ଶିଷ୍ୟ ଏଣୁ କଥା ଆଦ୍ୟ ଅନ୍ତରୁ ଫେଡ଼ି କହିବା ।
ଶିଷ୍ୟର.ବାଣୀ ଶୁଣିଣ । ଶ୍ରୀଗୁରୁ କହନ୍ତି ପୁଣ ।
ତୋତେ ଯା ଦେବା ବୁଝାଇଁ । ହେତୁ କରି ଘେନ ତୁହି ।
ପାଦଠାରୁ ଶିର ଯାଏ । ବସିଅଛି ତୋ ହୃଦୟେ ।
ବାର କଳା ଆତଯାତ । ଚାରି ମିଶନ୍ତେ ଭକତ ।
ଯେ କାନ୍ତେ ଚନ୍ଦ୍ରକଳାକୁ । ଭେଦିବୁ ତୋର ମନକୁ ।
କହିବା ତୋତେ ବୁଝାଇ । ଯେ ପରମର ହେତୁ ତୁହି ।
ତୁ ଯେବେ ପାରିବୁ ସାଧି । ସ୍ଥିର କର ତୋର ବୁଦ୍ଧି ।
ମନ ନିବୃତ୍ତି କରିବୁ । ଜାନୁକୁ ଜାନୁ ଛନ୍ଦିବୁ ।
କଳା ହେଜୁଥିବୁ ମନ । କଳା ଅଙ୍ଗରେ ସାଧନ ।
ସୂର୍ଯ୍ୟ ଅଙ୍ଗରେ ମିଶାଇ । ତୋହ କଳାକୁ ଅନାଇଁ ।
କାଟ ଆଠ କଳା ଛାଡ଼ି । ଚବିଶରେ ଦେବୁ ଧାଡ଼ି ।
ଉର୍ମି, ଧୂର୍ମି, ଜ୍ୟୋତି ଜ୍ୱଳା । ଆହାର ନିଦ୍ରା ସୁମେଳା ।
ମୈଥୁନ ବାଇକି ଘେନି । ଆଠ କଳା ଘୋଟି ପୁଣି ।
ଯେବେ ଚନ୍ଦ୍ରକଳା ଶୁଣ । ଯେ ଦିନ ଯେ କଳା ପୁଣି ।
ସାନନ୍ଦିକା ହୃଦି ସ୍ଥିତି । ପୁଷ୍ପା ଦ୍ୱିତୀୟାରେ ହୋଇ ।
ଯସ୍ୟ ଚତୁର୍ଥ ବୋଲାଇ । ପୁଣି ବୋଲଇ ପଞ୍ଚମୀ ।
ଷଷ୍ଠେ କୃତ୍ତିକା ଯେ ପୁଣି ।
କାଳାଦୀ ଅଷ୍ଟମୀ ପୁଣ । ଧୃତିକା ସପ୍ତମୀ ଦିନ ।

ନବମୀ ଚନ୍ଦ୍ର ବୋଲାଇ । ସେ ସ୍ୱାଦସମୀରେ ହୋଇ ।
ସଦା ଏକାଦଶ ଜାଣ । ଶ୍ୱେତ ଦ୍ୱାଦଶୀରେ ପୁଣ ।
ତେରରେ ସଙ୍ଗୀ ବୋଲାଇ । ହେମାଙ୍ଗୀ ଚତୁର୍ଦ୍ଦଶ ହି ।
ପୂର୍ଣ୍ଣମୀରେ ପୂର୍ଣ୍ଣ କଳା । ଏ ରୂପେ କଳାର ଲୀଳା ।
ଉର୍ମ, ଧୂର୍ମ ଜ୍ୟୋତି ଜ୍ୱାଳା । ନିରଞ୍ଜନ ସଙ୍ଗେ ମେଳା ।
ଏହାକୁ ବାହାର କରି । ଛପନରେ ତା ବିସ୍ତାରି ।
ଭେଦିଲେ କଳାର ଗତି । ମିଶାଇଲେ ସେ ନିବୃତ୍ତି ।
ମିଶାଇଲେ ଗତି ପାଇ । ପୂର୍ଣ୍ଣ ଚନ୍ଦ୍ର ଦୃଶ୍ୟ ହୋଇ ।
ଷୋଳ୍ୟ କଳାର ନିର୍ମାଣ । ଅଏ ଷୋଳକ୍ଷର ପୁଣ ।
ଓଁ ତତ୍ତ୍ୱ ତାରକ ବ୍ରହ୍ମ । ଅଭାନୁ ବାୟୁ ଯେ ନମଃ ।
ଏ ଚନ୍ଦ୍ର କଳା କରିବୁ । ଯେକାନ୍ତ ସ୍ଥାନେ ବସିବୁ ।
ଯେମନ୍ତେ ଜପ କରିବୁ । ବିନ୍ଦୁ ସାଗରେ ପଶିବୁ ।
ତହିଁ କରିବୁ ସ୍ନାହାନ । କପିଳ ଋଷିଙ୍କ ସ୍ଥାନ ।
ସେ ସ୍ଥାନରେ ତୁ ବସିଣ । ଅଗ୍ନି କୁମାରୀ ଭକ୍ଷଣ ।
କଳାକୁ କଳା ଛନ୍ଦିବୁ । ଚଉଷଠୀ ମିଶାଇବୁ ।
ତେର ବରଷରେ ପୁଣ । ଯେ ସିଦ୍ଧ ହୋଇବ ଜାଣ ।
ଯେହି ପ୍ରମାଣ ପଢ଼ିବୁ । ଧାମ ନିଷ୍କଳ କରିବୁ ।
ମହା ତତ୍ତ୍ୱ ବ୍ରହ୍ମ ଏହି । ନାରାୟଣ ଦେବତା ହିଁ ।
ଲକ୍ଷ୍ମୀ ଅଙ୍ଗରେ ସେବନ । ଶ୍ୱେତ ଗଙ୍ଗା ଆରୋପଣ ।
ଅଚଳ ମୁନି ସ୍ୱରୂପ । ତାରକ ଚନ୍ଦ୍ର ଅଧିପ ।
ଓଁ ହ୍ରୀଂ ହରେ ଚନ୍ଦ୍ର । ନ ର ଜନ୍ମଟି ଆନନ୍ଦ ।
ଏ ଭାବେ ଭାବିଲେ ମନେ । ଚନ୍ଦ୍ରକଳା ଦିନେ ଦିନେ ।
ଯାଗିବ ତହୁଁ ତ୍ୱରିତ । କଳାପୂର୍ଣ୍ଣ ହେବ ଯୁକ୍ତ ।
ଯେ ଭାବେ କର ସାଧନ । ଏହି ଭାବେ ଅନ୍ତର୍ଦ୍ଧାନ ।
ତୋତେ ଦେଲୁଟି ବୁଝାଇ । କାହିଁ ନ କହିବୁ ତୁହି ।
ଅନ୍ତର୍ଦ୍ଧାନର ଏ ଗତି । ଯେ ଭାବେ ଭେଦ ସୁଗତି ।
ବସାଇବୁ ତା ଯେମନ୍ତେ । ତାହି କହିଦେବା ତୋତେ ।
ଅଙ୍ଗୁଷ୍ଠୀ ଅଗ୍ରେ ବସିବ । ପାଦ ତଳେ ବସାଇବ ।
ଉର୍ଦ୍ଧ୍ୱ ଗତି ଅଟେ ନାମ । ଜଘନ ଦେଶ ପ୍ରମାଣ ।

ଗୁହ୍ୟ ଦେଶେ ଏକ କଳା । ଇନ୍ଦ୍ରି ଦେଶେ ତହିଁ ମିଳା ।
କଟୀ ଦେଶ ନାଭି ଦେଶ । ହୃଦ ଦେଶ କଣ୍ଠ ଦେଶ ।
କଳା ହେଜିଥିବୁ ମନେ । କଳା ଆଗରେ ସାଧନେ ।
ତହିଁ କଳାକୁ ଅନାଇଁ । ପାଦ ଦେଖିବୁ ଯେ ତୁହି ।
କୃଷ୍ଣ ଆଠ କଳା ଛାଡ଼ି । ଚବିଶରେ ଦେବୁ ଧାଡ଼ି ।
ଉର୍ମି, ଧୂର୍ମି, ଜ୍ୟୋତି, ଜ୍ୱାଳା । ଆହାର ନିଦ୍ରା ସୁମେଳା ।
ବଦନେ ନାଶା ନୟନ । କର୍ଣ୍ଣ ଲଲାଟରେ ପୁଣ ।
କେଶର ଏମନ୍ତ କଳା । ଷୋଳ କଳା ବସି ମିଳା ।
ଶରୀରେ ଧ୍ୟାନ କରିବ । ଅନାଦିଙ୍କ ଆଜ୍ଞା ଧ୍ରୁବ ।
କହଇ ବାରଙ୍ଗ ଦାସ । ଷୋଳ କଳା ବ୍ରହ୍ମ ରସ ।

ଇତିଶ୍ରୀ ବ୍ରହ୍ମ କୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ ଚନ୍ଦ୍ରକଳା
ଶରୀର ଧ୍ୟାନ କଥନଂ ନାମ ଅଷ୍ଟାଦଶ ଅଧ୍ୟାୟଃ ।

## ଊନବିଂଶ ଅଧ୍ୟାୟ

ଗ୍ରହପୀଡ଼ ବନ୍ଧ -
ହଂସ ବର୍ଣ୍ଣ ଚରିତ । ରାହୁ ଚନ୍ଦ୍ର ଘୋଟିବା ଯୋଗ ।
ପରମ ରହସ୍ୟ ଚରିତ କହିବା ହେଜକୁ ତୋର ମନକୁ
ମନଚନ୍ଦ୍ରକୁ ରାହୁ ଘୋଟିଅଛି ଯେ ଏବେ କହିବା ତୁମ୍ଭକୁ ।
ସକଳ ଜ୍ଞାନ ଆତ୍ମାକୁ ଚିହ୍ନି ଦୟାକର
ଆତ୍ମାର ସହସ୍ର ଫଣି·ଉପରେ ବିହାର ।
କଳଙ୍କ ଛଡ଼ାଇ ଦେବ ରାହୁ ଘୋଟିବାକୁ
ନିତି ନିତି ଅଚେତ ସେ କରୁଛି ଜୀବକୁ ।
କୁଆର ମାଡ଼ିଲା ପ୍ରାୟେ ରାହୁ ଘୋଟିଅଛି
ପରମ ଯୋଗୀମାନଙ୍କୁ ବଣା ସେ କରୁଛି ।
ତୁହି ଯେବେ ହେଜିବୁ ପବନ ବନ୍ଧ ବାନ୍ଧ
ସାଧିଲେଣ ଅଜ୍ଞାମ୍ବର ହୋଇବ ତୋ କାନ୍ଧ ।
ସର୍ବଦ୍ୱାରେ ସଙ୍ଗମିଣ ମନ ପଛ କର
ଉତ୍ପତ୍ତି ଦ୍ୱାରକୁ ବାନ୍ଧି ହୁଅ ଉଜାଗର ।

ତୁ ତୋତେ ଜାଣିବୁ ସୁନିଦ୍ରା ଜାଗ୍ରତ ସନ୍ଧିରେ
ହେଜକୁ ରଖିବ ନେଇ ସୁସ୍ମୃତି ଦୁଆରେ ।
ମନ ଯେଉଁଠାରେ ଯାଇ କରିଅଛି ବାସ
ମନ ଦୁଆରକୁ ଚାହିଁ ଜାଗ୍ରତରେ ପଶ ।
ମନ ବୁଦ୍ଧି ଚିଆଁ ଚୈତନ ଏକ କଲେ
ରାହୁ ନ ପଶିବ ତୁହି ଯେଥି ମନ ଦେଲେ ।
ଧ୍ୟାନଯେ ଶବଦ ବର୍ଣ୍ଣ ବର୍ଣ୍ଣ ମନେ ଭେଦି
ଅପରେ ପଞ୍ଚମ ଭେଦ ଅନନ୍ତ ଧାମରେ ।
ଓଁକାର ଯେ ନାଦ ଶକ୍ତି ଶବଦକୁ ବଣ୍ଡ
ଜୀବନ୍ତ ଜୀବ ଏହାକୁ ସିଦ୍ଧ ଅଟେ ପିଣ୍ଡ ।
ତ୍ରିଗୁଣ ସ୍ୱରୂପେ ରାହୁ ଚନ୍ଦ୍ରକୁ ଘୋଟିଛି
ନିଶା ଅନ୍ତ ତିନି ଦଣ୍ଡଠାରେ ସେ ଯାଗିଛି ।
ରବି ଚନ୍ଦ୍ର ଘୋଟିବାର କେହି ନ ଜାଣଇ
ଶୂନ୍ୟ ଗୁମ୍ଫା ଭିତରେ ପଶିଣ ସେହୁ ପାଇ ।
ପରମ ଶୂନ୍ୟ ଗୁମ୍ଫା ଚରିତ ଏବେ ଶୁଣ
ଯେଉଁ ଘରେ ଭ୍ରମର ଗୁମ୍ଫା ପଶୁ ସୁମନ ।
ମଧ୍ୟ ଶୂନ୍ୟ ଗୋଲାହାଟ ପରମ ସେ ସ୍ଥାନ
ଚଉକଣ ଦ୍ୱାର ସେ ତ୍ରିବେଣୀ ଘାଟ ପୁଣ ।
ଭ୍ରମର ଗୁମ୍ଫାଟି ସେହୁ ଗୋଲାହାଟ ସେହି
ପରମ ଗୁମ୍ଫାରେ ଦେବ ନାଶନଟି ଯହିଁ ।
ସେ ଦ୍ୱାରେ ପଶିବୁ ତାକୁ ମଣାଇ ତୁରିତେ
ପରମକୁ ପରଚେ ହୋଇବୁ ଏହି ମତେ ।
ସେ ପରମ ପୁରୁଷ ଅନାଦି ଅବ୍ୟଗତ
ଗୁଣାତୀତ ହେଲେ ତହିଁ ହୋଇବୁ ତୁ ମୁକ୍ତ ।
ମହାଗିରି ମଧ୍ୟରେ ପରମ ଗୁମ୍ଫା ଦ୍ୱାର
ଆଉ ଗିରିମାନ ତାଙ୍କୁ ଅଳପ ଅନ୍ତର ।
ଶିକୁଳି ଛନ୍ଦିଛି ଅଷ୍ଟ ଗିରି ମଧ୍ୟରେ
ଲହରି ରଖିଣ ଚାହାନ୍ତି ତ୍ରିକୂଟରେ ।
ନୀଳୋତ୍ପଳ ଗୁମ୍ଫାମାନ ଶୂନ୍ୟ ଗୁମ୍ଫା ସେହୁ

ଯେ ଗୁମ୍ଫାମାନଙ୍କ ପଶିବାକୁ କ୍ଷମ କେହୁ ।
କାଉଁରୀମଣ୍ଡଳ ଯେହ୍ନୁ ଶ୍ରୀହଟ ପାଟଣା
ଶୂନ୍ୟ ଗିରି କହିଦେବା ନୃହସିଂ ହୋ ବଣା ।
ଦକ୍ଷିଣେଣ ଶୂନ୍ୟ ଗିରି ବିରାଜ ଦିଶୁଛି
ପୁଣ୍ୟ ଗିରି ବାମେ ବ୍ରହ୍ମ ଗୁମ୍ଫା ଆବୋରିଛି ।
ଯେ ଦୁଇ ମଧ୍ୟରେ ରୁଦ୍ର ଗୁମ୍ଫା ଶୋଭାବନ
ତତ୍ତ୍ୱଜ୍ଞାନୀମାନେ ସିନା ଜାଣନ୍ତି ଏମାନ ।
କହନ୍ତି ସିଦ୍ଧବାରଙ୍ଗ ଜ୍ଞାନୀଙ୍କ ବିଚାର
ସୁହୃଦ ଭାବରେ ଯେହା ଦୃଢ଼ ଚିତ୍ତେ ଧର ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ ହଂସ ବର୍ଣ୍ଣ ଚରିତ
ରାହୁ ଚନ୍ଦ୍ର ଘୋଟିବା ଯୋଗ କଥନେ ନାମ ଊନବିଂଶ ଅଧ୍ୟାୟଃ

## ବିଂଶ ଅଧ୍ୟାୟ

ଗ୍ରହପୀଢ଼ବନ୍ଧ-ସାଧନା ଯୋଗ ବିଚାର
ଚିତ୍ରକେଳୀ ବାଣୀରେ –

କହନ୍ତି ବାରଙ୍ଗ ମୁଦ୍ରାସାଧନ । ଭୈରବୀ ଚକ୍ର କୁଣ୍ଡଳିନୀ ଜ୍ଞାନ ।
ଅର୍ଦ୍ଧ ମାତ୍ରାରେ ହଂସ ବସିଛି । ଭୈରବୀ ପରେ ଦକ୍ଷିଣ ମାଡୁଛି ।
ଅର୍ଦ୍ଧମାତ୍ରାରେ ଶୁଶୁମ୍ନା ଦ୍ୱାର । ଏଥିରେ ରହି ତୁ ଭଜନ କର ।
ରାତ୍ରରେ ବାମ ପାଦେ ରହିଥାଇ । ବାମ ଦକ୍ଷିଣ ଯେଣୁ ପାଦ ଦୁଇ ।
ମୁରତ ପବନ ଭାସ୍କର ସୂର୍ଯ୍ୟ । ମସି ଯେ ଚନ୍ଦ୍ର ସେହି ଆତ୍ମା ହେଯ
ପ୍ରଚଣ୍ଡ ଅଗ୍ନି ମରୁତଟି ଆତ୍ମା । ଏଣୁ ପ୍ରଣବ ଅର୍ଦ୍ଧମାତ୍ରା ସୀମା ।
ସହସ୍ର ଅଂଶ ପ୍ରମାଣ ବିଂଶତି । ଭୁବନ ଅର୍ଦ୍ଧମାତ୍ରା ଅଙ୍ଗେ ସ୍ଥିତି ।
ଭୁଜଙ୍ଗ ବୋଲି ଯେ ତିନି ଅକ୍ଷର । ସର୍ପ ଆକାର ତହିଁ ନିତ୍ୟେ ସ୍ଥିର ।
ସେହି ସ୍ଥାନରେ ହଂସ ବସିଅଛି । ତ୍ରିକାଳରେ ତିନି ବର୍ଣ୍ଣ ଧରିଛି ।
ପୂର୍ବ ପାଞ୍ଚ ଘଡ଼ି ହଂସର ବର୍ଣ୍ଣ । ପୀତ ବର୍ଣ୍ଣରେ ଦିଶେ ଶୋଭାବନ ।
ବେନି ପ୍ରହରେ ରକ୍ତବର୍ଣ୍ଣ ଦିଶେ । ତିନି ପ୍ରହରକୁ ଶ୍ୱେତ ଆଦୃଶେ ।

ପ୍ରଥମ ନିଶୀ ପାଞ୍ଚ ଘଡ଼ି ପ୍ରାୟ । ରକ୍ତ ବର୍ଣ୍ଣ ସେହୁ ଦିଶୁ ଯେ ଥାଏ ।
ଆର ପାଞ୍ଚ ଘଡ଼ିରେ ସ୍ୱେତ ବର୍ଣ୍ଣ । ଦାନ ଶୁକ୍ଳ ବର୍ଣ୍ଣ ତାହାର ଘେନ
ଯେବର୍ଣ୍ଣ ଘେନି ହଂସ ଧ୍ୟାନ କର । ଧ୍ୟାଅ ଅକ୍ଷର ନିର୍ଗୁଣ ବିଚାର ।
ସିଦ୍ଧିରସ୍ତୁ ତିନି ଯେହୁ ନିର୍ଗୁଣ । ବାର ଅକ୍ଷର ତ୍ରିଗୁଣ ତଳେଣ ।
ବାର ବାର ଦୁଇ ମଧ୍ୟେ ଅଜପା । ବର୍ଣ୍ଣ ଜାଣିଣ ଭଜିବୁ ଅମପା ।
ପର ପୀତବର୍ଣ୍ଣ ପ୍ରକାଶ ହୋଇ । ରଜ ନୀଳୋତ୍ପଳ ବର୍ଣ୍ଣ ଦିଶଇ ।
ସୋ ହଂସ ଶବଦ ଘେନିଣ ପୁଣି । ଅବର୍ଣ୍ଣ ବର୍ଣ୍ଣ ଏହି କୁଣ୍ଡଳିନୀ ।
ପରଂବ୍ରହ୍ମ ଅଟେ ରଜଟି ବିଷ୍ଣୁ । ମହେଶ୍ୱର ତାର ସମ ପ୍ରକାଶୁ ।
ବଦଟି ବେଦ ରୂପ ପ୍ରକାଶୁଛି । ଯେଉଁ ବେଦଟି ପୃଥିରେ ବ୍ୟାପୁଛି ।
ଋକ୍ ଶ୍ୟାମ ଯଜୁ ଅଥର୍ବ ପୁଣ । ଅବ୍ୟକ୍ତ ଅଟେ ଶିଶୁ ବେଦ ଜାଣ ।
ପ୍ରଣବ ପଞ୍ଚ ବୟବ୍ୟଟି ସେହି । ଚାରିବେଦ ତିନି ଗୁଣରେ ଥାଇ ।
ଶିଶୁ ବେଦଟି ନିର୍ଗୁଣ ହୋଇଛି । ଚାରିବେଦ ତ୍ରିଗୁଣରେ ପୂରିଛି ।
କାଳରାତ୍ରି ମୋହ ଏ ମହାରାତ୍ରି । ତ୍ରିବେଣୀ ଘରେ ଯେକାକ୍ଷର ସ୍ଥିତି ।
ଏହୁ କାଳ ରାତ୍ରି ଦଶ ଦଣ୍ଡ ବିଚାରି । ମହାରାତ୍ରି ଦଶ ଦଣ୍ଡ ବିହରି ।
ମୋହା ରାତ୍ରି ଦଶ ଦଣ୍ଡ ଦିବସ । ଯେମନ୍ତେ ହୋଯେ ତିରିଶ ଦିବସ ।
ଦିବସ ତିରିଶ ଦଣ୍ଡଟି ଯେହି । ଜାଣି ଜାଗିଲେ ସୁମୁହ୍ରାଟି ଯେହି ।
ଋକ୍ ପ୍ରଣବ ଜ୍ଞାନ ସାମବେଦ । ସମାନ ଯଜୁର୍ବେଦକୁ ଯେ ଭଜ ।
ଉଦ୍ଦାନ ଅର୍ଥ 'ବ' ବେଦ ଅଟଇ । ଚାରିବେଦ ବାଦେ ଏମନ୍ତ ହୋଇ ।
ପ୍ରାଣ ଆତ୍ମାଟି ଅଟେ ଋକ୍ ବେଦ । ଜ୍ଞାନ ଆତ୍ମା ସାମ ବେଦ ଆସ୍ୱାଦ ।
ସମାନ ଉଦ୍ଦାନ ବେଦ ଅଥର୍ବ । ଶିଶୁ ବେଦର ଯେ କହିବା ଭାବ ।
ଅବ୍ୟକ୍ତ ଶିଶୁ ବେଦକୁ ଯେ କହି । ପଞ୍ଚ ବେଦ ପଞ୍ଚ ବାୟୁ ହୁଅଇ ।
ନିର୍ମଳ ନିରାକାରକୁ ଦ୍ରଶନ । ଦ୍ରଶନେ ଛଡ଼ାଅ ଭବବନ୍ଧନ ।
ଓଁ ପ୍ଲୀଂ ଶ୍ୱେତ ବର୍ଣ୍ଣକୁ ଧର । କୁଶଳ ନିର୍ମଳ ଶ୍ରୀନିରାକାର ।
ଧବଳାଙ୍କ ଯୋତି ପରମ ନାମ । ପରମ ଓଁକାର ଜ୍ୟୋତି ନିର୍ଗୁଣ ।
ଆତ୍ମା ଶକ୍ତି ଗୁଣଚକ୍ରର ଭେଦ । ରଜବୀର୍ଯ୍ୟ ମୂଳେ ଶ୍ୱେତ ପଙ୍କଜ ।
ରସ ପଙ୍କଜରେ ଝର ନିର୍ଝର । ଓଁ ଶୁକ୍ଳଶ୍ୱେତ ଶୁଦ୍ଧ ନିରାକାର ।
ପରମର ଶୂନ୍ୟ ଯେ ଓଁ କାର ସ୍ୱାହା । ଦନ୍ତେ ଶିଶୁମୁନା ଧରେଟି ଯେହା ।
ଏ ଚାରି ଅକ୍ଷର ଜାଣନ୍ତି ବ୍ୟାସ । ବ୍ୟାସ ମହାମୁନି ପରମହଂସ ।

ଚାରି ଜ୍ଞାନ ଚିହ୍ନି ପୁଚ୍ଛ ତୁ ଜ୍ଞାନ । ଚାରି ଅକ୍ଷରଙ୍କ ମନ୍ତ୍ର ବିଧାନ ।
ଜପ କରିବ ଯେମନ୍ତ ପାହାନ୍ତି । ଭୈରବୀ ଚକ୍ରକୁଣ୍ଡଳୀ ମୁଦ୍ରାଟି ।
ମୁଦ୍ରା ସାଧନକୁ ସାଧ କରିବ । ସିଦ୍ଧବାରଙ୍ଗ ଗୁପତେ ଭଜିବ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମ ଶାସ୍ତ୍ରେ କଥନଂ
ନାମ ବିଂଶ ଅଧ୍ୟାୟଃ ।

## ଏକବିଂଶ ଅଧ୍ୟାୟ

ପୀଢ଼ବନ୍ଧ-ଚଉଦ ଭୁବନ ବାଣ୍ଟ
ଓଁକାର ଘେନିଣ ଶରୀର ଧରିଣ ଜପେ କରିଛ ଧାରଣେ
ଆତଜାତକୁ ଚୌରାଶିରେ କରତା ଜାଣନ୍ତି ସୁଜ୍ଞାନୀମାନେ
ରାଗ-କଳସା
ହେଜ ହେଜ ଜ୍ଞାନୀ ରାମତାରେକ ଅଙ୍ଗରେ
ରାମ ନାମ ଧରି ବାବୁ ଭୁଷଣ୍ଡ ଅମରେ ।
ଧ୍ରୁବ ପହଲ୍ଲାଦ ବିନ୍ତି ଚତୁର୍ଦ୍ଦଶ ପୁର
ହେଜ ହେଜ ଅଜପାରେ ହନୁବୀର ।
ହେଜି ବୁଡ଼ିଲେ ପାଇବ ଭ୍ରମର ଗୁମ୍ଫାରେ
ହେଜିଣ ଗରୁଡ଼ଦେବ ହୋଇଲେ ଅମରେ ।
ଚତୁର୍ଦ୍ଦଶ ଭୁବନ କହିଦେବା ଯେ ଶୁଣ
ତାଳୁ କର୍ଣ୍ଣ ଚକ୍ଷୁ ନାଶା ମୁଖଟି ପ୍ରମାଣ ।
କଣ୍ଠହୃଦ ନାଭି ଗୁହ୍ୟ ଲିଙ୍ଗ ହେତୁ କର
ଏମନ୍ତ ଚଉଦପୁର ବାରଙ୍ଗ ବିଚାର ।

ଏ କଥିତା-ସୁତଳ ଅଙ୍ଗୁଳି, ତଳାତଳ ଆଣ୍ଠୁ, ଅତଳଜାନୁ । ମହାତଳଜଂଘ, ରସାତଳ ଗୁହ୍ୟ, ପାତାଳଲିଙ୍ଗ, ବିତଳ କଟୀ, ସପ୍ତ ପାତାଳ ଏ ଭୁବଃ ବକ୍ଷି, ସ୍ୱଇତିଭୁବି ହୃଦ, ମହଃ-ବକ୍ଷ, ଜନଃ କଣ୍ଠ, ତପଲୋକ-ଲଲାଟ, ସତ୍ୟଲୋକ-ମୁର୍ଦ୍ଧନି, ଇତ୍ୟଇତି ସ୍ଥାନଂ, ଯେଇଁ ଚତୁର୍ଦ୍ଦଶ ଭୁବନଯେ ।

ଇତିଶ୍ରୀ ବ୍ରହ୍ମ କୁଣ୍ଡଳୀ ବ୍ରହ୍ମ ବିଦ୍ୟାୟାଂ ଚଉଦ ଭୁବନ
ବର୍ଣ୍ଣନେ ନାମ ଏକବିଂଶ ଅଧ୍ୟାୟଃ ।

# ଦ୍ୱାବିଂଶ ଅଧ୍ୟାୟ

ଗ୍ରହପୀଢ଼ବନ୍ଧ-ପବନ ବିଚାର

ଅକାଶ ଶୂନ୍ୟ ଆତ୍ମା ଶୂନ୍ୟ ଜାଣ । ଶୂନ୍ୟର ବୀଜ ଆଉ ନାହିଁ ପୁଣ ।
ଶୂନ୍ୟକୁ ଧ୍ୟାୟ ସୁମନ ହୋଇଣ । ରୂପ ପ୍ରକାଶ ହୋଇବ ନିର୍ଗୁଣ ।
ମେଘ ଗୋଟିକ ପ୍ରାୟେ ସେ ଘୋଟିବ । ପରମ ଆତ୍ମା ଯେହି ମତି ହେବ ।
ଦୃଷ୍ଟି ରଖିଥିବୁ ଶୂନ୍ୟକୁ ଜାଣ । ପରଂବ୍ରହ୍ମ ରୂପ ଦିଶିବ ପୁଣ ।
ଯେହି ଶୂନ୍ୟ ଚାହିଁ ଧ୍ରୁବ ଆକାଶେ । ବସିଅଛି ଯାଇଁ ଶୂନ୍ୟ ପୁରୁଷେ ।
ଯେହି ଶୂନ୍ୟକୁ ଧ୍ୟାଇଣ ଶଙ୍କର । ବାସୁଦେବ ଧ୍ୟାୟୁଛନ୍ତି ଶୂନ୍ୟର ।
ବାସୁଦେବର ସ୍ୱରୂପୀ ଯେ ହୋଇ । ପବନ ମନଟି ଏକତ୍ୱ ହୋଇ ।
ମନପବନ ଭ୍ରମ ଯେଣୁ ହୋନ୍ତି । ତେଣୁ ଟି ଥୟେ ହୋଇ ନ ରହନ୍ତି ।
ପବନ ଥୟେ ନିରଞ୍ଜନ ଧ୍ୟାନ । ମନରଥ ଯେ ଦୃଷ୍ଟି ସେହି ଧ୍ୟାନ ।
ଇନ୍ଦ୍ରିୟ ପ୍ରାୟେ ଜିହ୍ୱାକୁ ମଣିଲେ । କାମୁ ଥୟେ ହେବ ଗିରିଶ ମୂଳେ ।
ଭୋଗ ନ ବର୍ଜିବ ଦୟାରେ ପୁଣ । ବିଶ୍ୱାସେ ନିଦ୍ରା କରିବ ନାଶନ ।
ପ୍ରସ୍ର ଗିରିରେ ଆୟୁଷ ନିବୃତ୍ତି । ପ୍ରେମ କଜ୍ଜର ଶୂନ୍ୟକୁ ଚିନ୍ତି ।
ହେତୁ ହୋଇବ ମାତୃଗର୍ଭଧ୍ୟାୟ । ପୂର୍ବ ହେତୁ ପାଇ ଉଦୟ ହୁଅ ।
ହେତୁଟି ହେଜ ହେଜଟି ପରମ । ପରମଟି ବ୍ରହ୍ମ କହିଲୁ ପୁଣ ।
ପର୍ମ ମଙ୍ଗଳ ଶୂନ୍ୟରେ ଲେଖିବୁ । ଝର ଝର ମାନ ତହିଁ ଦେଖିବୁ ।
ଯିହଁରୁ ଝରୁଛି ପରମ ସେହି । ଶୂନ୍ୟ ବିଦ୍ୟା ଆଉ ସ୍ଥାନହିଁ ନାହିଁ ।
ସବୁ ଭାଙ୍ଗିଲେ ନୁହଁଇଟି ଶୂନ୍ୟ । ଶୂନ୍ୟ କରତା ଅଟେ ନିରଞ୍ଜନ ।
ନିରଞ୍ଜନ ଶୁଣୁଅଛିଟି ସବୁ । ସେହି ନିରଞ୍ଜନ ଦେଖୁଛି ତାବୁ ।
ବହନ୍ତା ପବନ ସେହିଟି ଶୂନ୍ୟ । ଠୁଳ ଭିତରେ ରହିଅଛି ଶୂନ୍ୟ ।
ନାମଟି ଶୂନ୍ୟ ସମସ୍ତ ଧରିଛି । ରୂପ ନାଶ ଯାଇ ନାମ ରହିଛି ।
ଶୂନ୍ୟ ଗଲେ ରୂପ ରହିବ କାହିଁ । ଅନାମ ବିନ୍ଦୁ ଭିତରେ ସମ୍ଭାଇ ।
ଅନାମୟ ବୋଲି ଯେଉଁ ଅକ୍ଷର । ଗୁପତ ଜ୍ଞାନ ଗୁରୁଙ୍କ ଭଣ୍ଡାର ।
ସେହୁ ବିନ୍ଦୁ ଯେହୁ ଶୂନ୍ୟେ ଦେଖଇ । ଥୟେ ହୋଇ କେବେ ରହଇ ନାହିଁ ।
ସେହିଟି ଆଦି ବ୍ରହ୍ମରୂପ ଜାଣ । ବିନ୍ଦୁ ଭିତରେ ତତ୍ତ୍ୱ ଅଛି ଜାଣ ।
ବିନ୍ଦୁଟି ଶକ୍ତି ଭିତରେ ପୁରୁଷ । ଭିତରେ ଯେହୁ ସେ ପରମହଂସ ।

ଇନ୍ଦ୍ରାଦି ଯହିଁକି ଜଗିଆ ହୋଇ । ଅଷ୍ଟାଙ୍ଗ ଈଶ୍ୱର ଅଛନ୍ତି ଧାୟି ।
ମଉଳିରେ ବ୍ରହ୍ମ ଧାୟି ରହିଛି । ଅଶେଷ ଶେଷ ଜାତନା କରୁଛି ।
ଅନେକ ଦିନେ ଚରଣ ବାହାର । ବଦନ ହେଲା ଓଲଟ ଓଂକାର ।
ହଂସ ଶବଦ ପ୍ରକାଶିଲା ତହିଁ । ହଂସ ଉଦେ ହୋଇ ଚାହଇଁ ତହିଁ ।
ଅର୍ଦ୍ଧମାତ୍ରା ଚାହିଁ ହସିଲା ଯହୁଁ । ଦୁହେଁ ଏକତ୍ୱ ହୋଇ ଚାଲେ ତହୁଁ ।
ହଂସ ତିଳ ପୁଷ୍ପ କାନ୍ତି ପ୍ରକାରେ । ଅମୃତପାନ କରୁଛି ସେଠାରେ ।
ଅଶେଷ କାରେଣୀ ହଂସକୁ ଘେନି । ଜଳ ଶୁଖିଲେ ଉଡ଼ିବ ସେ ପୁଣି ।
ହଂସ ଦ୍ରଶନେଦୁରିତ ଭଙ୍ଗ । କୃପାରୁ କହିଲେ ସିଦ୍ଧବାରଙ୍ଗ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ ପବନ ବିଚାର
କଥନେ ନାମ ଦ୍ୱାବିଂଶ ଅଧ୍ୟାୟଃ ।

## ତ୍ରୟବିଂଶ ଅଧ୍ୟାୟ

ପୀଢ଼ବନ୍ଧ-
ଓଲଟ ସାଧନ ଓ ହରେ ରାମ କୃଷ୍ଣ ଜପିବା ଗୁଣ ।
ଯେମନ୍ତ ପରମ ପୁରୁଷ ଚରିତ ଯେତେକ କଲେ ବଖାଣ ।
ରାମ ନାମ ସ୍ମରଣେ ସର୍ବ ହୋଇଲା ଯେ ଉତ୍ପନ୍ନ ।
କାଳିରାଗେ-
ଶୂନ୍ୟରୁ ରା ଜନ୍ମି ରାମ ନାମ ହୋଇଅଛି
ରା ଅକ୍ଷର ଅକ୍ଷରୁ ବାହାର ହୋଇଛି ।
ହରେ ରାମକୃଷ୍ଣ ଜଗନ୍ନାଥ ଦଶାକ୍ଷର ।
ଜପ ହରି ପୁଣ ସବୁ ଯେଥିର ଭିତର ।
ହରିଙ୍କି ଚିହ୍ନି ଭଜିଲେ ଦୂରିତ ତୋ ଜାହିଁ
'ହ' ଅକ୍ଷରରୁ ନାମ ଅନେକ ଜନ୍ମଇ ।
ହରାଦି ରାମାଦି ଘେନି କୃଷ୍ଣାଦିରେ ମିଶ
ହଜାଇଛି ହେତୁ ଯହିଁ ଶେଷ ଯେ ଅଶେଷ ।
ହକାର ଶୂନ୍ୟ ସ୍ୱରୂପ ବେହାର କରିଛି
ହଅ ଘେନି ତ୍ରିକୂଟରୁ ଜଳ ଯେ ଖସୁଛି ।

ହରେ ଶବଦରୁ ସୁଦର୍ଶନ ହୋଏ ଜାତ
ହରିମୟେ ତେଣୁ କରି ବୋଲନ୍ତି ଜଗତ ।
ହଜାଇ ତୁ ହେତୁ ରଖ ପ୍ରସର ଗିରିର
ହରେ ଉଦେହେଲେ ତୋର ଛିଡ଼ିବ ସଂସାର ।
ହଂ ଗର୍ଭେ ଶଶୀ ଅଛି ନିରଞ୍ଜନ ଜାଣ
ହ ଟି ନିରାକାର ତୋତେ କରିଛି ଗୋପ୍ୟାନ ।
ହଜାଇଲେ ଦୃଷ୍ଟିରେ ଦିଶୁଛି ସେହୁ ଗୁଣ
ହରିମୟେ ଜଗତରେ ହୋଇଅଛି ପ୍ରାଣ ।
ଯାହା ଘେନି ହରେ ସବୁ କର୍ମ ଯେ ନିର୍ମଳ
ହ'ଅ ଘେନି ବହୁଅଛି ପବନ ନିଶ୍ଚଳ ।
ହ'ଅ ଘେନି ବହୁଅଛି ନାଶାରେ ପବନ
ହ' ଅକ୍ଷର ଘେନି ସିନା ଶୁଣିଛି ବଚନ ।
ହ' ଅକ୍ଷରେ ବହୁଛିଟି ମୁଖରେ ଶବଦ
ହ' ଅକ୍ଷର ଘେନି ସିନା ବିନ୍ଦୁ ଘରୁ ନାଦ ।
ଯହିଁ କିଛି ନାହିଁ ବ୍ରହ୍ମ ଅଟଇଟି ସେହି
ରୂପରେଖ ବର୍ଣ୍ଣ ଚିହ୍ନ କିଛି ନ ଦିଶଇ ।
ଶିର ଯଦି ଧୂର୍ମଜ୍ୟୋତି ରଅ ଯେ ଅକ୍ଷର
ସ୍ତଂଜ୍ୱାଳା ଘେନି ବଟପୁଟ ଚାରି ଦ୍ୱାର ।
କଳା ଚାରି ଉଦେ ଅସ୍ତ କରୁଛନ୍ତି ଜାଣ
ସଂସାରେଟି ଉଦେ ଅସ୍ତ କରନ୍ତି ନିର୍ମାଣ ।
ପ୍ରଘଟ ନୁହଁଇ ଯେଟି ଏକାକ୍ଷର ସେହି
ବଟପୁଟ କ୍ଷୟ ଗଲେ କଳା ସେ ଅଛଇ ।
ସିଦ୍ଧିରସ୍ତୁ ଚାରି ଅନ୍ତେ ଯେବଣ ଅକ୍ଷର
ଅକ୍ଷୟେ କଳା ବଟଟି ନାମ ସେ ତାହାର ।
ଏକାକ୍ଷର ଭାବୁଥିଲେ କଳିକାଳ କାଟି
ତେଣୁ କରି ଯେକାକ୍ଷର ନାମ ବୋଲାଇଟି ।
ଓଂ ଅଂ ଓଁ
ଓଷ୍ଠ ନ ହଲିବ ଯଦି କରିବ ଭଜନ

ଜିହ୍ୱା ନ କମ୍ପିବ ଯେ ରହିବ ନିଶ୍ଚିନ୍ତେଣ ।
ଶବଦ ଶୁଣିବ ଦେହ କରିଣ ସେ କାଲ
ଜିହ୍ୱା ନେଇ ରଖିବ ଯେ ତାଳୁକାର ମୂଳ ।
ଉପରକୁ ପାଦ ଦୁଇ ଯେକାନ୍ତେ ସାଧନ
ଶିରକୁ ରଖିବ ତଳେ ଉଲଟ ହୋଇଣ ।
ମୁରଲୀ ପ୍ରାୟେକ ନାଦ ଶୁଭିବ ଯେ ପୁଣି
ବାଳମୁକୁନ୍ଦଙ୍କ ରୂପ ଦିଶିବ ଯେ ପୁଣି ।

ଯେ କଥିତା- ଶ୍ୱେତ ଅରଖ, ଡୁମୁଡୁମା ମୂଳ, ଶ୍ୱେତକାଇଁଅ ମୂଳ, ହରିଡ଼ା, ଯେତେ ପଦାର୍ଥ ଏକଠାବ କରି ଭକ୍ଷିବ । ଯେତେବେଳେ ଦ୍ୱାରମାନଙ୍କରୁ ବାମ ବନ୍ଧନ ଟଳଇ । ଏହାକୁ ନ ପାରିଲେ ନିପତୁରିଆ ମୂଳ ଖାଇଲେ କେଶ ନ ପାଚିବ । ଓଲଟ ସାଧନା ହୋଇ, ଅଷ୍ଟି ସନ୍ଧି ମାନଙ୍କରୁ ପବନ ତୋଳି ଯେକ ଠାବେ କରିବ ପୁଣ । ଯେଭାବେ ଯେହା ସାଧନା ସେ ସତ ଅନନ୍ତଙ୍କ ଆଜ୍ଞାରୁ ସିଦ୍ଧ ବାରଙ୍ଗ କହିଲେ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ ଓଲଟ ସାଧନ ହରେ
ରାମକୃଷ୍ଣ ମନ୍ତ୍ର ଜପ କଥନେ ନାମ ତ୍ରୟୋବିଂଶ ଅଧ୍ୟାୟଃ ।

## ଚୌବିଂଶ ଅଧ୍ୟାୟ

ବୃକ୍ଷ ଗୋଟାଯେକ ଅରୂପ ରୂପରେଖ ଶ୍ରୀ ବ୍ରହ୍ମ ବ୍ରହ୍ମାଣ୍ଡେ ହେଲା ଉକତ ।
ସ୍ତିରୀ ପୁରୁଷ ରୂପ କରି ନାଥ କରିଣଛନ୍ତି ଯୁକତ ।

କଳସା ରାଗେ-

ଗାଇତ୍ରୀ ଚବିଶ ଯେକ ଠାବ କରନ୍ତେଣ ।
ବୀଜ ଆଠକ୍ଷର ଯୋଗମାୟା ସେ ଭକ୍ଷିଣ ।
ଗର୍ଭରେ ପଶିଣ ସେ ବତିଶ କଳା ହୋଇ ।
ସାବିତ୍ରୀ ରୂପେଣ ତହୁଁ ସଂହରିଣ ଯେହି ।
ମହାମାୟାଠାରୁ ଜାତ ବ୍ରହ୍ମାଦି ବିଷ୍ଣୁ ହର
ଷଡ଼୍ ଋତୁ ଘେନି ଜନ୍ମ ହୋଇଲେ ସେଠାରେ ।
ଚାରି ବେଦ ଅବତାର ହୋଇଲାକ ତହୁଁ ।

ଯେକଠାବ ରହି ସେହି ଡିମ୍ବରୂପ ଯହୁଁ ।
ବାଆ ନ ଲାଗିଣ ଡିମ୍ବ ଗୋଟିଏ ଫୋଡ଼ିଲା ।
ଆଗତ ଡିମ୍ବର କେହି ଜାଣିଣ ନ ଥିଲା ।
ସେହି ଡିମ୍ବ ଶୂନ୍ୟରୁ ଯେ ହୋଇଥିଲା ଜାତ ।
ନୀଳ ବୀଜ ଘରୁ ଡିମ୍ବ ଆଦ୍ୟ ଜନ୍ମ ସ୍ଥିତ ।
ନୀଳ ଘେନି ରାମନାମ ଅକଳିତ ହେଲା ।
ଅକଳିତରୁ ତ କିଛି ଭାବନା ନ ଥିଲା ।
ଅକଳିତୁ ଆଚମ୍ବିତ ହୋଇଲା ବାହାର ।
ଆଚମ୍ବିତ ଦ୍ୱାରୁ ଜନ୍ମ ହୋଇଥିଲା ଗାର ।
ଗାର ଗୋଟି ଅଟଇ ଯେ ଗୁପତ ଭଜନ ।
ଗାର ଗୋଟି ଚିହ୍ନିଣ ଅମର ହନୁମାନ ।
ଗାର ଚିହ୍ନ ଅଗସ୍ତି ଯେ ସପ୍ତ ସିନ୍ଧୁ ଧରି ।
ଗାର ସିନା ଅଟଇ ହୋ ବ୍ରହ୍ମ ଯେକାକ୍ଷରି ।
ସଳଖ ହୋଇଥିଲେ ସେ ବ୍ରହ୍ମ ହୋଇଥାଇ ।
ବକ୍ରଭାବ ହେଲେ ତହୁଁ ଅକ୍ଷର ଜନ୍ମଇ ।
ଅକ୍ଷର ହୋଇଲେ ଯେ ଜନ୍ମଇ ଚରାଚର ।
ତେଣୁ ନାମ ଧରେଟି ଯେ ବୋଲାଇ ସଂସାର ।
ଗାରରୁ ବାହାର ରେହ ତିନି କଳା ସ୍ଫୁରେ ।
ଖ' ସିଦ୍ଧ ବିନ୍ଦୁ ଡିମ୍ବ ହୋଇଲା ଯେ ବାହାର ।
ବିନ୍ଦୁ ଭିତରେଣ ରସ ପୂର୍ଣ୍ଣ ଯହୁଁ ହେଲା ।
ରସ ଗଳିବାରୁ କୋଟି ବଛର ଯେ ଗଲା ।
ସେହୁ ଡିମ୍ବ ଭାସିଲାଟି ଅଗାଦ ଜଳର ।
ଜ୍ୟୋତି ତେଜ ଲାଗି ଡିମ୍ବ ହେଲା ବେନି ଫାଳ ।
ଡିମ୍ବର ଶବଦ ଘଡ଼ଘଡ଼ି ପ୍ରାୟେ ହୋଇ ।
ବ୍ରହ୍ମାଣ୍ଡର ଭେଳା ନାଦ ହୋଇଲାଟି ସେହି ।
ସେ ଡିମ୍ବ ଭିତରୁ ବ୍ରହ୍ମା ହୋଇଲେଟି ଜନ୍ମ ।
ଅଶେଷ ବ୍ରହ୍ମାଣ୍ଡ କଲା ଚାରିକ୍ଷରରେଣ ।
ଚାରି ଚକ୍ଷୁ ଆଠକ୍ଷର କଲାକ ବାହାର ।

କହଇ ସିଦ୍ଧ ବାରଙ୍ଗ ଗୁରୁଙ୍କ ବିଚାର ।
ଯେ ଅମୃତ ରସ କଥା କାହାକୁ ନ ଦେବୁ ।
ଆନକୁ କହିଲେ ମୋର ଚରଣେ ହାରିବୁ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ ଆଦି ପୁରୁଷ
ଚରତ ଚୌଷଠୀ କଥନେ ନାମ ଚତୁର୍ବିଂଶ ଅଧ୍ୟାୟଃ ।

## ପଞ୍ଚବିଂଶ ଅଧ୍ୟାୟ

ପୀଢ଼ବନ୍ଧ-ନାରାୟଣ ଦ୍ରଶନ
ଯେବେ ନାରାୟଣ ମୂର୍ତ୍ତି ଦ୍ରଶନ । କହିବା ବ୍ରହ୍ମଚାରୀଙ୍କ ବିଧାନ ।
ଯେମନ୍ତେ ତୁହି ପରତେ ଯିବୁ । ଦାସ ହେତୁ ରଖ ମନେ ମନେ ।
ଭୀଷ୍ମେକ ବାଣୀରେ ଗାଇବ -

ହୃଦ ପଦ୍ମେ ଚାରି ଘେନି ଉଲଟାଇବୁ ତୁ ପୁଣି
ଅର୍ଦ୍ଧ ଊର୍ଦ୍ଧ୍ୱ ଘେନିଣ ଯେ ତତ୍ୱ ବିଚାର ।
ଯେକାଦଶେ ଇନ୍ଦ୍ରି ସାଧି ମନ ପବନ ନିରୋଧି
ପ୍ରଣବ ସ୍ଥାନରେ ଭେଦିଣ ପଶେ ଭିତର ।
ପ୍ରଣବକୁ ଜିଣିଗଲେ ଚଇତନ ରୂପୀ ହେଲେ
ସେ ସ୍ଥାନରେ ପଶ ହେଲେ ଜ୍ୟୋତି ଦେଖିବୁ ।
ପ୍ରଭାତ ସୂର୍ଯ୍ୟର ପ୍ରାୟେ ଭାନୁ ହୋଇଛି ଉଦୟେ
ସେହି ବର୍ଣ୍ଣେ ମନ ମଜ୍ଜି ସ୍ଥିର ହୋଇବୁ ।
ତୁହି ସେ ଦେଖିବୁ ଭାବେ ସେ ଶିରେ ବସନ୍ତି ଯେବେ
କହନ୍ତି ଭାବରେ ପ୍ରଭା ଦିବସ ପୁଣ ।
ନିର୍ଦ୍ଧୂମ ଅଗ୍ନି ପ୍ରାୟେତ ଦିଶିବ ପ୍ରଭାତେ ଯେତ
ଜୁଳୁଜୁଳା ପ୍ରାୟେ ଦିଶେ ମଧର ସ୍ଥାନ ।
ସେହିଟି ବ୍ରହ୍ମ ସ୍ୱରୂପ ତହିଁ ମଧ୍ୟେ ବ୍ରହ୍ମ ଗୋପ୍ୟ
ପ୍ରଭା ଫାଟିଲେ ଅମୃତ ଅପ୍ୟାନ ହୋୟେ ।
ଯଦି ଅମୃତ ପାଇବୁ ଗୁମ୍ଫା ସାଧନା କରିବୁ

ପ୍ରକାଶ ହେବ ମହିମା ହେବୁ ଉଦୟେ ।
ହେଜିଲେ ହେବୁ ମୁକତ ସେହି ଗତି ଗର୍ଭସ୍ଥିତ
ସେହି ପ୍ରଭାବାଟେ ଗଳି ଶରୀର ହୋୟେ,
ତେଣୁଟି ଯେହ୍ମା କରିବୁ କ୍ଷେତ୍ରହିଁ ତୁ ତ ଦେଖିବୁ
ଯେହି ପଥେ ଗମିଲେଟି ସୁଗତି ପାୟେ ।

ଅଧିକ ପଦ –

ଏମନ୍ତେ ବ୍ରହ୍ମର ଭାଗ ଜଳ ଭିତରେ ସରାଗ
ସ୍ନାନବେଳେ ମୁଖେ ହସ୍ତ ଦେଇ ଦେଖିବୁ,
ଚକ୍ଷୁ ଫେଡ଼ି ଜଳ ମଧ୍ୟେ ଭିତରକୁ ଚାହିଁ ସଧେ
ଯେଉଁ ମୂର୍ତ୍ତି ଦିଶିବ ତାହାକୁ ଜାଣିବୁ ।
ଶ୍ରୀସତ୍ୟ ଅନନ୍ତ ସେହି ଆଜ୍ଞାରୁ ଉଦେ ହୁଅଇ
ଏହି ରୂପେ ଧ୍ୟାନ କରି ଫଳ ପାଇବୁ,
ସ୍ଫୁଟ କଲେ ମନ୍ତ୍ରୀ ହୀନ ଅନନ୍ତ ମୂର୍ତ୍ତି ଗୋପ୍ୟାନ
ଏଣୁ ନାରାୟଣଙ୍କର ଧ୍ୟାନ ଦୁର୍ଲଭ ।

ଇତିଶ୍ରୀ ବ୍ରହ୍ମ କୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ ଅନନ୍ତ ମୂର୍ତ୍ତି
ଦର୍ଶନେ ନାମ ପଞ୍ଚବିଂଶ ଅଧ୍ୟାୟଃ ।

## ଷଡ଼ବିଂଶ ଅଧ୍ୟାୟ

ଗ୍ରହ ପୀଡ଼ବନ୍ଧ–ଅଙ୍କ ଗଣନା
ଦ୍ବିତୀୟ ଶିବର ପଥ ଧରିଅଛି ଯହୁଁ ତହିଁ ଚରିତ କହିବା ।
ସଂଶୟ ଫେଡ଼ାଇ ଦେଇ ସେ କହିବା ଯେମନ୍ତେ ସେବା ।
କଳଶା ରାଗେ –
ଯେଠାରେ ଯେତେକ ସେବା କରୁଅଛ ସାର,
ଆଦି ମନ୍ତ୍ରୀ ଅଛନ୍ତି ଯେ ଏହାର ସଙ୍ଗର ।
ଷଡ଼ଗୋଟା ପୁଷ୍ପ ଦେଇ ଶଙ୍କର ପୂଜୁଛି,
ସେ ଶଙ୍କର ପ୍ରସନ୍ନେ ସେଠାରେ ରହିଅଛି ।

ତୁ ଯେବେ ତାହାର ପଛ କରିବୁ ସୁମନେ,
କାମଦେବ ସେବା ତୁଛ ସେହି ସ୍ଥାନେ ।
ତା ସେବା ଛଡ଼ାଇ ଯେବେ ତୁ ସେବା କରିବୁ,
ଆଉ କିମ୍ପା କାମନାରେ ଆତୁର ହୋଇବୁ ।
ଧାରାଚକ୍ର ବୁଝିବୁ ପ୍ରଭାତୁ ଉଠିକରି,
ବାମ ଭାଗେ ପଡ଼ିଲେ ଆହାର ନୋହେ ହରି ।
ଦକ୍ଷିଣକୁ ମିଳିଲେ ତାର ଆହାର ମିଳଇ,
ମଧ୍ୟରେ ଚଳିଲେ ସେ ଯେ କଳହ ଜନ୍ମଇ ।
ପାଦକୁ ପଡ଼ିଲେ ବିନ୍ଦୁ ମିଳଇ ପଦାର୍ଥ,
ସର୍ପପ୍ରାୟେ ପଡ଼ିଲେ ଅବଶ୍ୟ ହୁଏ ହତ ।
ନାଗ ଫେର ପ୍ରାୟେ ଯେବେ ସେହୁ ସେ ପଡ଼ଇ,
ତେର ଦିନେ ଅବଶ୍ୟ ସେ ମୃତ୍ୟୁ ଯେ ହୁଅଇ ।
ଯେହି ଧାରାଚକ୍ର ଘେନି କର ଅନକୂଳ,
କହେ ସିଦ୍ଧ ବାରଙ୍ଗ ସର୍ବ ଦିଗକୁ ମଙ୍ଗଳ ।
ନିତି ଧାରାଚକ୍ର ଭେଦୁଥିବ ମନେ ମନେ,
ଗୁପତେ ରଖିବୁ ଯେହା ନ କହିବୁ ଆନେ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ଅଙ୍କ ଗଣନା
କଥନେ  ନାମ ଷଡ଼୍‌ବିଂଶ ଅଧ୍ୟାୟ ।

## ସପ୍ତବିଂଶ ଅଧ୍ୟାୟ

ଗ୍ରହ ପୀଡ଼ବନ୍ଧ-ଅଷ୍ଟ ବିନ୍ଦୁ ଚରିତ
ମନ ଆନନ୍ଦେ କହନ୍ତି ବାରଙ୍ଗ ୀ ଶୁଣ ଖୁଣ୍ଟିଆ ବିନ୍ଦୁ ଆଠଭାଗ ।
ଅତୁଳି ତୁଳିବ ଶାସ୍ତ୍ର ଗଢ଼ା ଗଡିରେ ନେବ ।
ଦୁହିଁଙ୍କି ତହିଁ ଛାଡ଼ିବ ଚାରି ସଙ୍ଗେ ଘେନିଥିବ
ଅତଉଳା ଚାରି ଧରି ଛଡ଼କୁ ଆଗ କରିବ ।
ଅତଉଳା ଚାରି ଧରି ଚୌରାଶି ମଧ୍ୟରେ ଭରି,
ତିନିରେ ନେଇଁ ସାଧିବ ନବଟିଯାକ ବାନ୍ଧିବ,

ତିନିସେ ମିଶାଇ ଦେବ ଯେକସ୍ତରିରେ ଭାବ ।
ଷୋଳ୍ୟକୁ ଯେକ ଯେକ କରିବ । ପାଞ୍ଚ ସଙ୍ଗେ ମିଳାଇବ ।
ଚଉଦକୁ ଚିହ୍ନିଥିବ ତିନି ଅଙ୍ଗରେ ।
ଆଠ ବିନ୍ଦୁ ଯାକ ଯେକ ସ୍ୱରୂପ,
ଚିଆଁ ଚଇତନ ବିନ୍ଦୁ ଅରୂପ ।
ଆଠ ବିନ୍ଦୁ ଅଷ୍ଟ ବକ୍ର ହୋଇଛି,
ଆଠରୁ ଚୌଷଠୀ ଭିତରେ ଅଛି ।
ଆଠରୁ ଚୌଷଠୀକ୍ଷର କେମନ୍ତେ ହୋଇବ,
ଚଉଷଠୀ ଭିତରୁ ଯେ ଅଶେଷ ହୋଇବ ।
ଗାୟତ୍ରୀ ସାବିତ୍ରୀ ସରସ୍ୱତୀ କି ଯେ ଘେନି,
ତତ୍ତ୍ୱ ବେତ୍ତା ଜାଣିବେ ଯେ ଯେହା ହେଜି ପୁଣି ।
ସୂତା କ୍ଷିଅପ୍ରାୟେ ଯେଥୁ ହୋଇବ ବାହାର,
ଆବର ହୋଇବ ଯେଥୁ ଯେ ସରୋବର ।
ଦ୍ୱାଦଶ ସହସ୍ର ଯେଥୁ କେମନ୍ତେ ହୋଇବ,
ତେର ଯେ ଶଚିଦାନନ୍ଦ କେମନ୍ତେ ଜନ୍ମିବ ।
ଓ ଔ ରସଜ ଶବଦ –
ଯେ ଆଠ ଅକ୍ଷର ଆଠ ବିନ୍ଦୁ ରୂପେ ହୋୟେ,
ଆଠ ବିନ୍ଦୁ ଘେନି ଜାତ ହେଲେ ଘେନ ଯେ ଉଦୟେ ।
ଅନାଦିଙ୍କ ଆଜ୍ଞା ଅଟଇ ଯେହୁ,
ସିଦ୍ଧବାରଙ୍ଗ ସିଦ୍ଧ କଲେ ତହୁଁ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ଅଷ୍ଟବିନ୍ଦୁ
କଥନେ ନାମ ସପ୍ତବିଂଶ ଅଧ୍ୟାୟଃ ।

## ଅଷ୍ଟବିଂଶ ଅଧ୍ୟାୟ

ଯେତେ ଜୀବ ତେତେ ଶିବ କହନ୍ତି ଯେ ଜ୍ଞାନୀ,
କାଶୀ କ୍ଷେତ୍ର ବାରାଣସି ସ୍ଥାନ ଯେହୁ ତିନି ।
ତତ୍ତ୍ୱ ଯେଥୁ ନିରଞ୍ଜନ ତାରକ ଯେ ରାମ,

ତେଣୁକରି ଯେହୁ ସ୍ଥାନ ପୁରୁଷ ଉତ୍ତମ ।
ଠାବେ ଠାବେ ଶରୀର ଯେ ଶିବଶକ୍ତି ଘେନି,
ତେଙ୍କରେଣ ବୁଝିବ ହୋ ପରମ ସୁଜ୍ଞାନୀ ।
ଯେହି ଦେହ ଗୋଟିକି ଯେ କ୍ଷେତ୍ର ବୋଲି ଜାଣ,
ଠାବେ ଠାବେ ଶିବଶକ୍ତି ଯେହୁଟି ପ୍ରମାଣ ।
ଦଶ ଗୋଟି ତୁମ୍ଭେ ଯେଥି ଶିବ ବୋଲି ଜାଣି,
ଯେ ଭାବରେ ବୁଝିବାରେ ତତ୍ତ୍ୱରେ ବଖାଣି ।
ଶିବଙ୍କୁ ଜାଗିଲେ ପୁଣ ଦେବଗଣମାନେ,
ରହିଣ ଅଛନ୍ତି ଦେବେ ପୂଜାର ବିଧାନେ ।
ପ୍ରଥମ ଶକ୍ତି ଯେ ଶିବ ଅନ୍ଧ କୁଢ଼ିଅଛି,
ସେହୁ ଅନ୍ଧ ବ୍ରହ୍ମାଣ୍ଡଯାକରେ ଯାଗିଅଛି ।
ପ୍ରଥମ ଶିବଙ୍କୁ ଗଣେଶ୍ୱର ଯେ ଦୁଆରି
ରହି ଯେ ଅଛନ୍ତି ଶିବ କ୍ଷେତ୍ର ଦ୍ୱାର ଧରି ।
ଓଁ କାର ଯେ ନାରାୟଣ ମନ୍ତ୍ରରୂପ ଧରି,
ଶିବ ପୂଜୁଅଛି ଜାଣ ଅତି ଯତ୍ନ କରି ।
ନମାମି ବ୍ରହ୍ମ ବୋଲିଣ ବୋଲି ଜ୍ଞାନମତ,
ସିଦ୍ଧ ବାରଙ୍ଗ କହିଲେ ଯେ ପରମ ତତ୍ତ୍ୱ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ଦେବତାସ୍ଥିତି
କଥନେ ନାମ ଅଷ୍ଟବିଂଶ ଅଧ୍ୟାୟଃ ।

## ଊନତ୍ରିଂଶ ଅଧ୍ୟାୟ

ଗ୍ରହ ପୀଢ଼ବନ୍ଧ-ପବନ ବିଚାର
ଦାସ ହେଜ ତୁ ଯେବେ ନାଭି ଚକ୍ରରେ ତୋହର
ବିଶ୍ୱେଶ୍ୱର ଲିଙ୍ଗ ଯେ ଅଛଇ ସେହିଠାର ।
ତାଣ୍ଡେକ ବାଣୀରେ –
ସେ ବିଶ୍ୱନାଥଙ୍କୁ ବ୍ରହ୍ମ ପୂଜଇ । ପୂଜୁଛନ୍ତି ଦଶ ଦିଗପାଳହିଁ ।
ତୁ ଯେବେ ସେଠାରେ ରଖିବୁ ମନ । ତତ୍ତ୍ୱ ତାରକ ତାହାର ପ୍ରସନ୍ନ ।

ତାହା ପ୍ରସନ୍ନେ ଯେ ମୁକତି ଦ୍ୱାର । ବ୍ରହ୍ମା ପୂଜୁଛନ୍ତି ସେଠାରେ ହର ।
ତାହା ସଙ୍ଗ କରି ତାହାଙ୍କୁ ଧ୍ୟାୟ । ଗତାଗତି କରି ସୁଗତି ପାଅ ।
ଚେତନା ସୁଖୀ ହୁଅ ସଦା ସୁଖୀ । ଅଚେତ ହୋଇଲେ ତୁ ହେବୁ ଦୁଃଖୀ
କଳା ବାସଙ୍ଗ ବେଲ ଦୁବ ଲିମ୍ବ । ଯେତେକ ଏକତ୍ର କରି ପିଇଲେ
ଇାଭିରୁ ରୋଗମାନେ ଛାଡ଼ିବେ ।
ମନେ ହୋ ଶକ୍ତି ରୂପ ମୁଖ । ତାକୁ ସାକ୍ଷାତରେ ଦେଖ ।
ଜିହ୍ୱା ଲିଙ୍ଗର ରୂପ । ତହୁଁ ଝରେ ରସକୂପ ।
ଯଥା ଶକ୍ତି ତହିଁ ରୂପ । ପବନ ଲିଙ୍ଗ ସ୍ୱରୂପ ।
ଚକ୍ଷୁପିଛଡ଼ା ଶକ୍ତି ହୋଇ । ଭିତରେ ଲିଙ୍ଗ ସେ ଦିଶଇ ।
ଯେ ଠାରେ ବଡ଼ଇ ଗହନ । ଯେହି ହେତୁ ନିରଞ୍ଜନ ।
ଝଟକ ତହିଁ ଭିତର । ସେହିଟି ଜ୍ଞାନଭଣ୍ଡାର ।
ଶିବ ଶକ୍ତି ରୂପ ଜାଣ । ଦିଶୁଅଛି ସେ ବାରଣ ।
ବିନା ଜଳରେ ସେ ଜଳ । ବିନା ଝରେ ଝର କୂଳ ।
ପୋଖରୀ ଚାରିକଣିଆ । ଭିତରେଣ ତାର ଛୁଆ ।
ଶ୍ୱେତ ଅଣ୍ଡଜ ଭିତରେ । ନିରଞ୍ଜନ ସେହିଠାରେ ।
ପ୍ରଥମେ ଯେକ ବ୍ରହ୍ମାଣ୍ଡ । ଦିତୀୟେ ଦିଶୁଛି ଅଣ୍ଡ ।
ତୃତୀୟେ ଧବଳ ଜ୍ୟୋତି । ଚତୁର୍ଥେ ଶୂନ୍ୟ ମୂରତୀ ।
ପଞ୍ଚମେ ନିଶୂନ୍ୟେ ସ୍ଥିତି । ତହିଁ ଭିତରେ ସୁମତି ।
ପଶିଲେ ହଜିବୁ ତୁହି । ହଜିଲେ ନାଶିବୁ ନାହିଁ ।
ଯେକୋଇଶ ପୁର ଜାଣ । ଭିତରେ ପଶିବୁ ପୁଣ ।
ସେହିଟି ନୀଳ କନ୍ଦର । ସେ ସଦାନନ୍ଦଙ୍କ ଘର ।
ହରେ ରାମ କୃଷ୍ଣ ଜାଣ । ସେହି ଠାବରେ ପ୍ରମାଣ ।
ଯୋଗୀଜ୍ଞାନଗମ୍ୟ ଭୂଇଁ । ତୋତେ ତା ଦେବା ବୁଝାଇଁ ।
ତୁ ଯେବେ ତହିଁ ପଶିବୁ । ନାରାୟଣଙ୍କୁ ଦେଖିବୁ ।
ନିରାକାର ସେହିପରେ । ନୀଳ କନ୍ଦର ବାହାରେ ।
ନୀଳ ବର୍ଣ୍ଣ ହୋଇଲାକୁ । ନୀଳଗିରି କହି ତାକୁ ।
ପବନଟି ଜଗନ୍ନାଥ । ଚାରି ବେଦରେ ଗୁପତ ।
ମୋକ୍ଷ ଅଙ୍ଗ ଦେହ ଜାଣ । ବ୍ରହ୍ମ ଅଙ୍ଗଟି ପବନ ।
ପବନଟି ଶିଶୁ ବେଦ । ଯେଠାବରୁ ସିନା ନାଦ ।
କର୍ଣ୍ଣ ଦୁଇ ସିନା ଶକ୍ତି । ଲିଙ୍ଗମାନେ ଯେଥି ଛନ୍ତି ।

ଶବଦ ଅଗାଦ ଦ୍ୱାର । ଯେହିଟିହୋ ବିଶ୍ୱମ୍ବର ।
ଯେମନ୍ତେ ତୁଯେହୁ ଶରୀର । କାଶୀକ୍ଷେତ୍ର ନାମ ଆର ।
ଯେହାକୁ ଚିହ୍ନି ଧ୍ୟାୟୀବ । ଗତାଗତ ବିନାଶିବ ।
ବାରାଣସୀ ସ୍ଥାନ ଯେହି । ଯେ ତୀର୍ଥେ ଝାସିବୁ ତୁହି ।
ବେଦ୍ୱାର ନବନାଥ । ତ୍ରିବେଣୀରେ ଜଗନ୍ନାଥ ।
ତ୍ରିବେଣୀ ସ୍ନାହାନ ଛାଡ଼ି । ଅନ୍ୟ ତୀର୍ଥେ ଯାଉ ବଢ଼ି ।
ଯେ ଭାବେ ଭାବନା ବର । ନିଦ୍ରାହେତୁ ଉଜାଗର ।
ସେ ସ୍ଥାନେ ପଶିଲେ ମନ । ହେତୁରେ ରହେ ଚୈତନ୍ୟ ।
ମନେ ଯେହାର କରତା । ମନଟି ମୁକତିଦାତା ।
ମନମଯେ ଯେ ସଂସାର । ମନଟି ଯେକାଅକ୍ଷର ।
ମନକୁ ମନ ଖୋଜିଲେ । ଜ୍ଞାନ ପ୍ରସରିବ ଭଲେ ।
କହଇ ସିଦ୍ଧ ବାରଙ୍ଗ । ଗାନର ଯେହି ପ୍ରସଙ୍ଗ ।

ଇତିଶ୍ରୀବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ନାଭିରନ୍ଧ୍ର ବିଚାର
କଥନେ ନାମ ଊନତ୍ରିଂଶ ଅଧାୟଃ ।

## ତ୍ରିଂଶ ଅଧାୟ

ପୀଡ଼ବନ୍ଧ-ଏକାକ୍ଷର ନିରଞ୍ଜନ ଘର
ପୂର୍ବେ ଦେଖି ଅଗ୍ନି ଶେଷକୁ ଅସୁରୀ ଯୋଗ ଆମ୍ଭେ କଲେ ଥୟେ
ତୋ ଆଗେ ଆମ୍ଭେ ତା କହିବା ବିଶେଷି ଅନାଦି ଦେବ ଆଜ୍ଞାୟେ ।
ବଚନ ଶୁଣଇ ଦେହ କରିଥାଇ କାଳ, ତୁମ୍ଭ ନାମ ଗଳାରେ ସେ କରିଥାଇ ମାଳ ।
ଦରପୋଡ଼ା କାଠ ତା ହସ୍ତକୁ ଶୋଭାବନ, ବାଙ୍କେଣ ଗଳଇ ସେହୁ ଦାଣ୍ଡରେ ଯେ ପୁଣ ।
ଥୋକାଯେକ ଲୋକ ତାକୁ ଯାଚିବାକୁ ଅର୍ଣ୍ଣ
ସମ୍ମତ କରିଣ ତାହା ନ କରେ ଭକ୍ଷଣ ।
ଯାଚିଲା ଅନ୍ନ ସେ ସବୁ ଫିଙ୍ଗିଣ ଦିଅଇ
ତଳରେ ଅନ୍ନ ପଡ଼ିଲେ ସାଉଁଟି ଭକ୍ଷଇ ।
ଡରେଣ କେ ତାର ପାଶକୁ ନ ଆସନ୍ତି
ଉନ୍ମତ୍ତ ଜଡ଼ ବୋଲି ତାହାକୁ ବିଚାରନ୍ତି ।

ମନ ଯହୁଁ ପ୍ରସନ୍ନ ଯେ ହୋଇଛି ତାହାକୁ
ତେଣୁ ଭୟ ନାହିଁ ତାର ଯେ ନିତ୍ୟ ଲୋକକୁ ।
ଗତାଗତ କାଟିଲା ଭୈରୋବୀ ପନ୍ଥ କରି
ଇନ୍ଦ୍ରହିଁ ତାହାକୁ ପୁଣ ଦିଶୁଛି ଭିଖାରି ।
କୁବେର ତାହାକୁ ରଙ୍କ ପ୍ରାୟେକ ଦିଶଇ
ସପ୍ତସିନ୍ଧୁ ତାକୁ ବିନ୍ଦୁପ୍ରାୟ ଦୃଶ୍ୟ ହୋଇ ।
ବେଲୁ ସାଧୁଅଛି ସେ ପରମ ହଂସ ଧ୍ୟାନ
ସେ ଲୋକଙ୍କୁ ଦିଶଇ ସକଳ ବନ୍ଧମାନ ।
ନିଶ୍ଚଳ ଚିତ୍ତଯେ ତାର ପୂର୍ଣ୍ଣକୁମ୍ଭପ୍ରାୟେ
ୟେକାକ୍ଷର ଭଜନରେ ମନ ତାର ଥୟେ ।
ଅନାଦିଆଦିଙ୍କି ସେହି ପ୍ରସନ୍ନ କରାଇ
ୟେକାକ୍ଷର ଭଜିବାକୁ ଦ୍ରଶନ ସେ ପାଇ ।
ହଜ ସହଜ ଶିଶୁ ଚାରି ବେଦରେ ମିଶାଇ
ଇଚ୍ଛା କଲେଣ ଚାରିର ଦୁଇ ରୂପ ହୋଇ ।
ଛାଇ ବାଇ ହାଇ ତିନି ଯେଣୁ ସେ ସାଧୁଛି
ତେଣୁକରି ଇଚ୍ଛା ସୁଖେ ସଂସାର ଭ୍ରମୁଛି ।
ଛାଇ ଯାଆୟେତ ଦୁଇ ଅଙ୍ଗ ତାକୁ କିସ
ଇଚ୍ଛାହେଲେ ହୋଇପାରେ ପାଞ୍ଚ ସେ ପୁରୁଷ ।
ୟେକ ଅଙ୍ଗୁ ୟେକ ଅଙ୍ଗ ବାହାର ହୋଅଇ
ଦୁଇ ଅଙ୍ଗ ୟେକତ୍ୱ ସେ ମିଶିଣ ମିଳଇ ।
ଦୁଇ ଅଙ୍ଗ ଚରିତ ଯେ ଶୁଣ ତୁହିଁ ୟେବେ
ତୋହର ଆଗରେ ୟେହା କହିବା ପ୍ରସ୍ତାବେ ।
ଉତ୍ପତ୍ତିଦ୍ୱାର ବାନ୍ଧିବ କାମାଦି ପବନେ
ସ୍ୱପନ ମାରିବ ନିରଞ୍ଜନ ଅନୁଧ୍ୟାନେ ।
ସହଜେ ରହିବ ମନଜ୍ୟୋତିକି ଆବୋରି
ଦ୍ୱାଦଶ ବାହାରୁ ଯାଇଁ ଭିତରରେ ଭରି ।
ଆଦି ଅନାଦି ଦୁହିଁଙ୍କି ୟେକମନ୍ତ୍ର ଜାଣ
ସିଦ୍ଧ କରିଥିବ ଯେ ତାରକ ରାମ ନାମ ।
ବେଦବ୍ୟାସ ନାରଦ ଯେ ସନକାଦି ପୁଣ
ବ୍ରହ୍ମାଙ୍କର ହଂସଗୁରୁ ଜାଣନ୍ତି ୟେମାନ ।

ହଂସଙ୍କର ଗୁରୁଆଦି ନାରାୟଣ ଜାଣି
ଆଦି ନାରାୟଣ ଗୁରୁ ଅନାଦି ଯେ ପୁଣି ।
ଅନାଦିଙ୍କ ଗୁରୁ ଯେ ମହାତତ୍ତ୍ୱ ତତ୍ତ୍ୱଗୁରୁ
ଓଙ୍କାରଙ୍କ ଗୁରୁବ୍ରହ୍ମା ଯେଭାବେ ବିଚାରୁ ।
ଆଦ୍ୟ ଅନ୍ତ ଉପାସନେ ଦୁଇ ଅଙ୍ଗ ହୋଇ
ସେହି ମନ୍ତ୍ର ଆମ୍ଭେ ଯେ ବେଦେ ଅଛୁ କହିଁ ।
ଓଂ ଅଂ ସ୍ୱଂ ହଂସ ନାମ ଯେ ଜପନ୍ତେଣ ଶିବ
ଶିବ ହଂସ ଦୀକ୍ଷା ହଂସ ମନ୍ତ୍ରଟି ଦୁର୍ଲଭ ।
ଅଲେଖ ଯେ ନିରଞ୍ଜନ ପ୍ରଚୋ ଯେ ଦୟାତ
ମନ୍ତ୍ର ସାଧି ଜପ ସିଦ୍ଧି କରନ୍ତି ମହେଶ ।
ମନ୍ତ୍ର ସିଦ୍ଧନ୍ତେ ସିଧି କରନ୍ତି ଥୋକେ ପୁଣ
ହୃଦପଦ୍ମେ ଭଜିଲେ ସନ୍ତୋଷ ନାରାୟଣ ।
ଯେହି ମନ୍ତ୍ର ପାଇବାକୁ ତିନି ଯେ ବରଷ
ସେବା କରି ଖଣ୍ଡଗିରିରେ ଶ୍ରୀଗୁରୁଙ୍କ ପାଶ ।
ସବୁ ମନ୍ତ୍ରମାନଙ୍କର ତତ୍ତ୍ୱ ବିଚାରିଲେ
ମୋହରେ ସେ ହାରିବଟି ଆନକୁ କହିଲେ ।
ଯେ ପାରିବ ଶିଖାଉ ନିରଞ୍ଜନ ମନ୍ତ୍ର
ବିବେକ ସାଧୁଙ୍କୁ ଯେ ଯେ ହୋଇବ ଅମୃତ ।
ଆନ ପ୍ରସଙ୍ଗ ରେଚକ ପୂରକ ତାଟକ
କୁମ୍ଭକାଦି ଓଁକାର ଯେ ଘର ଚାରି ଦେଖ ।
ଏ ଐ ନିଦ୍ରା ଅଣତ୍ରିଂଶ ମାତ୍ରା ଚନ୍ଦ୍ର ଘର
ପର ରଜ ସଶବଦ ଭଜନ ଈଶ୍ୱର ।
ଅନନ୍ତ ଋଷି ବରାହ ଏତେକ ଭାବନା
ଶିଶୁମୁନା ଧ୍ୟାନ ସରସ୍ୱତୀ ଗୁରୁ ସିନା ।
ବ୍ରହ୍ମ ଆଚାର୍ଯ୍ୟ ଚେତନା ବ୍ରହ୍ମଚାରୀ ସ୍ଥାନ
ମହୋଦଧି ସାଧନ ଯେ ତତ୍ତ୍ୱ ନିରଞ୍ଜନ ।
ଶ୍ରୀ ସିଦ୍ଧ ବାରଙ୍ଗଙ୍କର ଭଜନ ଯେମନ୍ତ
ହରେ ରାମକୃଷ୍ଣ ନାମ ଯେଣୁ ଜଗନ୍ନାଥ ।

ଇତିଶ୍ରୀ ବ୍ରହ୍ମ କୁଣ୍ଡଳୀ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ନିରଞ୍ଜନ
ମନ୍ତ୍ର ସାଧନ କଥନେ ନାମ ତ୍ରିଂଶ ଅଧ୍ୟାୟଃ ।

# ଏକତ୍ରିଂଶ ଅଧ୍ୟାୟ

ପୀଢ଼ବନ୍ଧ-ମୃଣାଳ ପଥରେ ଜୀବ ଗମନ
ଭ୍ରମେକ ସାଧନ କଲେଯେ ଶରୀର ବୃଦ୍ଧ ବାଳକ ହୋଇବ
ଗୁପତେ ରଖି ଯୁଗତେ ଭେଦିଥିଲେ ତତ୍ୱ ମନରେ ମଜ୍ଜିବ ।
ଭାରଥ ବାଣୀରେ ଗାଇବ –
କାଳକ୍ରିୟା ଦ୍ରବ୍ୟ ଆତ୍ମାକୁ ପୂରୋଇ ଅହଙ୍କାର ଆଦି ଘେନି
ମୃନାଳ ପଥରେ ଟେକିବ ଆତ୍ମାକୁ ଯୁଗତ ଭାବରେ ପୁଣି ।।
ନିଶ୍ୱାସ ପାଖର ସଲଖ ରଖିବ ଅମନେ ଆହାର ଜିଣି
ଚାହଁ ଚାହଁ ଧ୍ୱନି ଦ୍ୱାଦଶ ବାରିବୁ ଶବଦ ଶୁଣି ନିର୍ବାଣି ।।
ମନ୍ତ୍ର- ଓଁ ହ୍ରୀଂ ଧ୍ରୀଂ ସୁଦର୍ଶନ ଓଁ କ୍ଲୀଂ ଶ୍ରୀଂ ବ୍ରହ୍ମ ନିର୍ମଳ ନିରାକାର
ଯେମନ୍ତ ଭାବିବୁ ଏକାନ୍ତେ ବସିବୁ ନିଗମ ଘୋର ବନସ୍ତେ
ସଙ୍ଗ ନ କରିବ ଜାଗ୍ରତ ସୁସପ୍ତି ବିଭୁ ମନ୍ତ୍ର ଉପାସିକେ ।।
ନିଶ୍ଚଳରେ ଥିବ ଯେହ୍ନେ ବକ ପକ୍ଷୀ ନ କରି ଚଞ୍ଚଳ ଚିତ୍ତ
ଅନୁଜ୍ଞା ହୋଇଲେ ଧ୍ୟାନକୁ ମଜ୍ଜିବ ହୋଇଥିବୁ ସ୍ତମ୍ଭୀଭୂତ ।।
ନର୍ବିକଳ୍ପ ହୋଇ ଦାଢ଼୍ୟ ଥିବ ମନେ ଅନ୍ୟ ଆଶ୍ରୟେ ନ ଥିବ
କଳ୍ପଣା ଘରରେ ପ୍ରବର୍ତ୍ତି ହୋଇଣ ଚିତ୍ତ ନିବର୍ତ୍ତି କରିବ ।।
ଗୁମ୍ଫାସ୍ଥାନ କରି ସାତ ବରଷରେ ଆସର ଯେ ଷଡ଼ ମାସ
ତେବେ ଶିଷ୍ୟ ଶୁଭାଶୁଭ ଯେ ହୁଅଇ ହୋଇବ ସେ ସୁପୁରୁଷ ।।
ଚିତ୍ତ ପ୍ରସନ୍ନ ହୋଇଲେଣ ପୁଣ ଯେ ଦୁର୍ଗତିମାନ ଛାଡ଼ଇ
ବାଳକ ବୃଦ୍ଧା ଯେ ତରୁଣ ଅବସ୍ଥା ଯେ ତିନି ମୂର୍ତ୍ତି ହୁଅଇ ।।
ଯେତେବେଳେ ତାର ଯେ ଇଚ୍ଛା ହୁଅଇ ତହିଁ କିସ ପୁଣ ଯାଇ ।
କହନ୍ତି ଶିଷ୍ୟଙ୍କୁ ଦେବ ଅନାଦିଙ୍କ ଆଜ୍ଞାରୁ ସିଦ୍ଧ ବାରଙ୍ଗ
ଯେହି ଭାବରେ ଯେ ସାଧନା ପ୍ରମାଣ ହେଲେ ହୋଯେ ଶିଷ୍ୟ ଅଙ୍ଗ ।।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ ମୃଣାଳ ପଥେ
ଜୀବଗମନଂ ନାମ ଏକତ୍ରିଂଶ ଅଧ୍ୟାୟଃ ।

# ଦ୍ୱାତ୍ରିଂଶ ଅଧ୍ୟାୟ

ପୀଢ଼ବନ୍ଧ-ଅନନ୍ତ ଶଯ୍ୟା-
ବାରଙ୍ଗ କହନ୍ତି ଶୁଣସି ହେ ଶିଷ୍ୟ ଅପୂର୍ବ ରହସ୍ୟ ବାଣୀ
ଯେହୁ ଦାଣ୍ଡେ ଯେବେ ମନ ପୂରାଇବୁ ନିଶ୍ଚୟେ ତରିବୁ ପୁଣି ।
ତାଣ୍ଡବ ବାଣୀରେ-

ତାଲୁକା ସିନା ବୋଲନ୍ତି । ତହିଁ ଭେଦ ନ ଜାଣନ୍ତି
ଯେ ଜାଣନ୍ତି ନ କହନ୍ତି । ଗୁପତେ ରଖିଣ ଥାନ୍ତି ।।
ଅଠାଇଶରେ ଅନନ୍ତ । ଶଯ୍ୟା କରିଛନ୍ତି ଯୁକ୍ତ ।।
ତାଲୁକା ତାହାକୁ ବୋଲି । ତେଣୁ ମୁଁ ଯେହା କହିଲି ।।
ହରେ ଯେଉଁ ଦୁଇଅକ୍ଷର । ସହସ୍ର ଦଳ ଯେହାର ।।
ଯାକୁ ବେନି ଚକ୍ଷୁ କହି । ତୋତେ ଦେଲୁ ଯେହା ଫେଇ ।।
ଅଲେକ ଦ୍ୱାରଟି ଯେହୁ । ନିରଞ୍ଜନ ଘର ସେହୁ ।।
କାଳ ଅଛି ସେହିଠାରେ । କମଳ କାଳ ଗର୍ଭରେ ।।
ଯେ ଯେତେକ ରହିଛନ୍ତି । ଭିନ୍ନ ସେ ଏଥୁ ନୁହନ୍ତି ।।
ଭେଦିଲେ ପାଇବୁ ତହିଁ । ନିର୍ବାତ ମନ୍ଦର ଭୂଇଁ ।।
ଘର ତିନି ବଖରାରେ । ପବନ ଜୀବନ ଧରେ ।।
ଗଣ୍ଡି ମୁଣ୍ଡ ପାଦ ଘେନି । କୁଟୁମ୍ବ ପାଖ ପରାଣି ।।
ମନ ଅମନ ବିମନ । ସୁମନ ଆଦି କୁମନ ।।
ଯେ ପାଞ୍ଚେ ପାଞ୍ଚ ପ୍ରକାର । ଇନ୍ଦ୍ରିମାନଙ୍କ ଠାକୁର ।।
ଚୋପି ଚୋପି ଅଟେ ଯେହୁ । ମନଟି ଅଟଇ ସେହୁ ।।
ଜଳ ଭିତରେ ବେହାର । ବୁଲେ ଯେହୁ ବନ ଘୋର ।।
ତ୍ରିକୂଟ ଅମନ ଘର । କୂଟ ପାଞ୍ଚେଣି ଯେହାର ।।
ଭେଦ ଯେହାର ବହୁତ । ଝର ଦ୍ୱାରର ସାମନ୍ତ ।।
ବିମନ ତାର ନାଶିକା । ବାସ ଘେନୁଥାଇ ଯେକା ।।
ଯେହା ସଙ୍ଗେ ପ୍ରୀତି କର । ଉକାର ଘର ଯେଠାର ।।
ସୁମନ ଯେହୁ ଜିହ୍ୱାଟି । ଇନ୍ଦ୍ରିୟଙ୍କର କର୍ତ୍ତାଟି ।।
ଯେହାକୁ ନିବର୍ତ୍ତି କଲେ । ସ୍ୱାଦ ପ୍ରସରିବ ଭଲେ ।।
କୁଜନ କର୍ଣ୍ଣକୁ କହି । ଅହଙ୍କାର ଯେହା ତହିଁ ।
ଯେହାକୁ ନିବର୍ତ୍ତି କଲେ । ନିର୍ଭୟେ ବୁଲେ ସଂସାରେ ।।

ରସର ଗୁମ୍ଫାରେ ପଶି । ଟୋପି ମଧ୍ୟେଣ ବିଶେଷି ।
ବିମନ ଘରରେ ଥାଇ । କେଣିକି ଛାଡ଼ି ନ ଯାଇ ।।
ନିଦ୍ରାଗଲେ ଜୀବ ଯାଇ । ଟୋପି ମଧ୍ୟରେ ସମ୍ଭାଇ ।
ସମ୍ଭାଇବା ହେତୁ ନାହିଁ । ଆସିଲେ ତା ହେତୁ କାହିଁ ।।
ଆକାଶ ଗଙ୍ଗା ପୟାଣ । ଡାହାଣ ଚକ୍ଷୁ ପରେଣ ।
ଇଅଁଳା ପିଅଁଳା ମଧ୍ୟେ । ଶିଶୁମନା ରହେ ସାର୍ଦ୍ଧେ ।।
ଶଙ୍ଖନି ନାଳଟି ଅଣ୍ଡ । ତହୁଁ ସଞ୍ଚରେ ବ୍ରହ୍ମାଣ୍ଡ ।।
ସେ ଦ୍ୱାର ରସ ଧାରଣ । ଯେହିଟି ଗୁପଦ ଧ୍ୟାନ ।।
କାଳ ଯେହାକୁ ମାଡୁଛି । ନିଦ୍ରାରୂପେ ଘୋଟିଅଛି ।।
ଫେଡ଼ିବା କମଳ ବୋଲି । ଯେଥି ମଦେଣ ଯେ ହେଲି ।।
ଅଣଚାଳିଶ ତ୍ରିବେଣୀ । ନିଦ୍ରାକୁ ଆହାରେ ଜିଣି ।।
ଯେକାଦଶ ଇନ୍ଦ୍ରି ଜିଣି । ଅଣଚାଶରେ ପଶଣି ।।
ମନଟି ଅଟେ ଯମୁନା । ଗଙ୍ଗାୟେ ପ୍ରକୃତି ସିନା ।।
ସରସ୍ୱତୀ ସଦଗୁରୁ । ଯେହା ବିଚାର ନ କରୁ ।।
ଯେହା ସାଧ ନିରନ୍ତରେ । ପୟାଣ ଘାଟ ସନ୍ଧିରେ ।।
ନୟନ ଚରେ ପଶିଣ । ସାଧନ କର ଧିଆନ ।।
ନରେନ୍ଦ୍ର ସଙ୍ଗେ ମିଳିବୁ । ଅନ୍ୟ କଥା ନ ଘେନିବୁ ।
ଉଦ ଅସ୍ତ ଯାଏ ଥିର । ଆସନକୁ ଥୟେ କର ।।
ଯେ ଭାବେ ଥିଲେ ଯୁଗତେ । ଯେ ସାଧ କହିଲୁ ତୋତେ ।।
କହନ୍ତି ବାରଙ୍ଗ ଦାସ । ଶିଶୁବେଦରୁ ପ୍ରକାଶ ।।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ଅନନ୍ତ ଶଯ୍ୟା
କଥନେ ନାମ ଦ୍ୱାତ୍ରିଂଶ ଅଧ୍ୟାୟଃ ।

## ତ୍ରୟତ୍ରିଂଶ ଅଧ୍ୟାୟ

ପୀଢ଼-ମାତୃଗର୍ଭ ହେତୁ
ପରମପଦକୁ ଭଜି ଯୋଗୀଜନେ ଚିନ୍ତା କରି ନ ପାଇଲେ
ତୁମ୍ଭଙ୍କୁ ଏବେ ତା ପ୍ରସଙ୍ଗ କହିବା ଗୁରୁକୃପା କଲେ ଭଲେ ।

ତାଣ୍ଡେକ ବାଣୀରେ -

ମାତୃଗର୍ଭ ହେତୁ ଯେବେ ବୁଝାଇଁ । ମନରେ ରଖ ତୋ ମନ ମଜାଇ ।
କଳ୍ପଣାର ଘର ହୃଦୟ ସ୍ଥାନ । ତହିଁରୁ କାମନା ହେଲା ଜନମ ।
ଘାତ ପାଇଲା ସଙ୍ଗମ କାଳରେ । ବୀଜ ଯେ ଥିଲା ଶୂନ୍ୟ ମନ୍ଦିରରେ ।
ଘାତ ପାଇଣ ତତପର ହୋଇଲା । ଲହରୀ ଲାଗି ବୀଜ ଉଛୁଳିଲା ।
ମୃଣାଳ ସୂତ୍ରରେ ଗଲା ସେ ଜାଣ । କାଉଁରି ମଣ୍ଡଳେ ହେଲା ବହନ ।
ମଣ୍ଡଳରେ ଯେ ବହୁ ସ୍ତୁତି କଲେ । ମଣ୍ଡଳରୁ ବୀଜ ସେ ଟଳିଲେ ।
ଖଣ୍ଡଗିରି ଜିଣି ସୁସୁମ୍ନାରେ । ତହୁଁ ପଡ଼ିଲେ ସୂର୍ଯ୍ୟମଣ୍ଡଳରେ ।
ଚନ୍ଦ୍ର ମଣ୍ଡଳ ଜିଣି ଧ୍ରୁବଆଦି । ପ୍ରବେଶ କଣ୍ଠଚକ୍ରରେ ସୁଭେଦି ।
କଣ୍ଠ ବଇକୁଣ୍ଠ ବାହାର ହେଲା । କାମନା ଘରୁ ବାହାର ହୋଇଲା ।
ନାଭିଚକ୍ରଭେଦି ଅଣ୍ଡକୋଷରେ । ସମ୍ଭବ ହେଲା ମାତାର ଗର୍ଭରେ ।
ପଦ୍ମଜ ଜଳୁଥିଲା ଜଳ ପାଇଁ । ପଙ୍କଜ ଲାଗିଣ ଦୀପ ଲିଭଇ ।
ପଞ୍ଚ ମହାଭୂତେ ରଙ୍ଗବିଶେଷ । ତମ ଗୁଣରୁ କଳା ଯେକାଦଶ ।
ଯେ ଯାହା ସ୍ଥାନ ଆବୋରି ରହିଲା । ଅନନ୍ତ ବିନ୍ଧାଣି ତାହା ଗଢ଼ିଲା ।
ବହୁତ ଜଗତ ଜୀବ ଅଜୀବ । ଯେକା ସୂତ୍ରେ ଭିନ୍ନ କକୃତି ଭାବ ।
ସୁକୃତ ଦୁଷ୍କୃତ ଯେ ଆଦି କରି । ହରଇ ଚାଳଇ ବାଦ ଆଚରି ।
ଯେ ଭାବେ କରି ଆଜ୍ଞା ଆତଯାତ । ସିଦ୍ଧ ବାରଙ୍ଗ କହିଲେ ସିଦ୍ଧାନ୍ତ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ ମାତୃ
ଗର୍ଭହେତୁ କଥନେ କାମ ତ୍ରୟୋତ୍ରିଂଶ ଅଧ୍ୟାୟଃ ।

## ଚତୁତ୍ରିଂଶ ଅଧ୍ୟାୟ

ପୀଢ଼ବନ୍ଧ-ଅନନ୍ତ ବାସୁଦେବଙ୍କ ଆଖ୍ୟାନ
ହଂସର ଚରିତ ଶୁଣହୋ ଖୁଣ୍ଟିଆ ଏକାମ୍ବରର ବିଚାର
ଯେକାମ୍ବର ବନକୁ ଯାଇ ବୁଝିଟି ହେଜୁଥିବୁଟି ମନର ।
ଭାରଥ ବୋଲି ବାଣୀରେ -
ବଉଦ ରୂପରେ ଭୁବନେଶ୍ୱରଟି ଶେଷଦେବର ଆସନ
ରହସ୍ୟ କେଳିରେ ସେଠାରେ ଅଛନ୍ତି ଆପେଟି ସେ ଭଗବାନ ।

ରାମତାରକ ମନ୍ତ୍ର ଜପ ଲଗାଇ ତହିଁରେ ଯାଇଁ ବସିବୁ
ଆକାର ବ୍ରହ୍ମ ଉକାର ବିଷ୍ଣୁରୂପମକାରେ କାଶୀ ଚିହ୍ନିବୁ ।
ନିରଞ୍ଜନଟି ତାରକ ବ୍ରହ୍ମରାମ ଯେ ଲୟ ସେଠାରେ
ମାରକଣ୍ଡ ସିଦ୍ଧ ଅନନ୍ତ ଭଜନ ନିରାକାର ବ୍ରହ୍ମହରେ ।
ବିନ୍ଦୁସାଗର ଯେ ପାତାଳ ଗଙ୍ଗା ସେ ମଙ୍ଗଳ ସ୍ନାନ ଯୁକତ
କେଶରୀ ଗୋପ୍ୟ ଅଟେ ଖଣ୍ଡଗିରିରେ ତୋତେ କହିଲୁ ସିଦ୍ଧାନ୍ତ ।
ଆଢ଼ୋ ଶବଦ ଯେଉଁ କାଳେ ପଡ଼ିବ କେଶରୀ ଉଦେ ହୁଅଇ
ବିନ୍ଦୁସାଗର ଯେ ହିରଣ୍ୟଗର୍ଭ ହେବ ତୋତେ କହିଲୁ ବୁଝାଇ ।
ଧ୍ୱଂସିବେ ମ୍ଳେଛ ପୃଥିବୀ ଉସ୍ୱାସ କରିବେ ଆଗ ବିଚାରି
ମଲ୍ଲ ମହାମଲ୍ଲ ମାନେହେଁ ପଡ଼ିବେ ହେତୁରେ ଥାଅ ତୁ ଧରି
ଆମ୍ଭେ ଖଣ୍ଡଗିରି ପୂର୍ବରେ ଜନ୍ମିବୁ ଲୀଳାମାନନ୍ତ ଦେଖିବୁ ।
କେଶରୀ ଉଦୟେ ସମୟକୁ ଆମ୍ଭେ ନିତ୍ୟ ସେବା କରୁଥିବୁ
ତୋ ଆଗେ କହିଲୁ ପରମ ରହସ୍ୟ ଫେଡ଼ି ନ କହିବୁ କାହିଁ
ସିଦ୍ଧ ବାରଙ୍ଗ ଯେ କହିଲେ ଉତ୍ତମ ହେଙ୍କ ପାଠରୁ ବୁଝାଇଁ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମ ବିଦ୍ୟାୟାଂ ଅନନ୍ତ
କେଶରୀ ଗୋପ୍ୟାନ୍ୟ ନାମ ଚତୁତ୍ରିଂଶ ଅଧ୍ୟାୟ ।

## ପଞ୍ଚତ୍ରିଂଶ ଅଧ୍ୟାୟ

**ପୀଢ଼ବନ୍ଧ-ଶେଷଦେବ ତତ୍ତ୍ୱ**

ଆହେ ସୁମନ, ଭେଦ ସୁମନେ ଶେଷଦେବଙ୍କ ଆଖ୍ୟାନ ।
ଶେଷ ଭେଦିଲେ ଅଶେଷ ଦିଶିବ ଶେଷଙ୍କୁ କରାଅ ପ୍ରସନ୍ନ ।
ଶେଷ ଅଟଇ ହାଦେ ମଣ୍ଡଳା । ଶେଷ ଅଶେଷ ବ୍ରହ୍ମାଣ୍ଡ ଭେଳା ।
ଶେଷ ଶିରପରେ ଦେଖ ନିତ୍ୟ । ଶେଷ ଲାଙ୍ଗୁରେ ନିଳା ତ୍ରିନାଥ ।
ଶେଷ ଗର୍ଭ ନ ଗଲା କଳନା । ଶେଷ ଅଶେଷ କରୁଛି ବଣା ।
ଶେଷ କାତି ଗୋଟିକେ ବ୍ରହ୍ମାଣ୍ଡ । ଶେଷ ଅଶେଷ ହୃଦୟ ପିଣ୍ଡ ।
ଶେଷ କଣ୍ଠତଟ ଦିଶେ ବ୍ରହ୍ମା । କିସ ସେ ସବୁ ଦେବି ଉପମା ।
ଶେଷ ଯେ ଭାବରେ ଆଭରଣ । ଶେଷ ଠାବରେ ଯେ ବିରାଟ ଜନ୍ମ ।
ଶେଷ ଅଷ୍ଟାଙ୍ଗ ଯୋଗ କରତା । ଶେଷ ଗାଇତ୍ରୀ ରୂପ ଧରନ୍ତା ।

ଶେଷ ଦେବତାମାନଙ୍କର ଧ୍ୟାନ । ମହାର୍ଣ୍ଣବ ପୁରରେ ଯେ ଆସନ ।
ଶେଷଦେବ ଗରୁଡ଼ାସନ । ଦେଖ ଶେଷଦେବ ସର୍ପାସନ ।
କୁଣ୍ଡଳିନୀ ମୁଦ୍ରା ଏ ତିନି କହି । ସାଧନାରେ ଶେଷ ଆସନ କହି ।
ଯେହାଙ୍କର ପ୍ରସନ୍ନ ମନ୍ତ୍ର-ଓଁ ହ୍ରୀଂ ଧ୍ରୀଂ ନିରାମୟ ଧବଳ ହ୍ରୀଂ
ଯେରୂପେ ଧ୍ୟାନ କରି ଡାହାଣ ପାଦ ବାମ କନ୍ଧେ ବାମ ପାଦ
ଡାହାଣ କନ୍ଧେ ଯେରୂପେ ଆସନ କରି ଶେଷଦେବଙ୍କୁ ଧ୍ୟାନ
କଲେ କେନ୍ଦୁଲି ପୁଷ୍କର ପ୍ରାୟ ହୋଇ ଦିଶିବ ।
ଦୁଇ ପ୍ରକାର ରୂପ ଦିଶିବ । ଦୁଇ ଚକ୍ଷୁ କୋଣେ ହସ୍ତ ଦେବ ।
ତହିଁ ଭାବନା ଦିଶଇ ସିନା । ସିଦ୍ଧବାରଙ୍ଗଙ୍କ ଗୁପ୍ତ ଭଜନା ଯେ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ଶେଷଦେବ
ତତ୍ୱ କଥନେ ନାମ ପଞ୍ଚତ୍ରିଂଶ ଅଧ୍ୟାୟଃ

## ଷଟ୍ତ୍ରିଂଶ ଅଧ୍ୟାୟ

ଠିକ୍‌ବର୍ଣ୍ଣନା-ପୀଢ଼ବନ୍ଧ
ପ୍ରଥମଠାରୁ ଠିକ ତୋତେ କହିବା ଛତିଶରେ ପରିଯନ୍ତେ
ବିନ୍ଦୁ ଭିତରୁଟି ଯେ ବ୍ରହ୍ମ କୁଣ୍ଡଳୀ ହୋଇଲା ଆଦ୍ୟେ ଯେମନ୍ତ ।
ତାଣ୍ଡେବ ବାଣୀରେ ଗାଇବ-
ପ୍ରଥମେ ସତ ଅନନ୍ତ ଉଦିତ । ଖଣ୍ଡଗିରିର ପୁଚ୍ଛିବା ଚରିତ ।
ବାରଙ୍ଗ ଯାହା ତହୁଁ ଶୁଣିଥିଲେ । ଖୁଣ୍ଟିଆକୁ ଯାହା ବୋଧି କହିଲେ ।
ପରମ ଚେଷ୍ଟା ଶିଶୁ ବେଦ ଆଦି । ଗୁରୁଭଣ୍ଡାର ଅଣାକାର ଭେଦି ।
ଅକ୍ଷରୁ ଅର୍ଦ୍ଧ ମାତ୍ରା ଜାତ ପୁଣି । ବ୍ରହ୍ମ ଯେକାକ୍ଷର ଶୂନ୍ୟ ନିଶାଣି ।
ପ୍ରଥମ ଅଧ୍ୟା ସିଦ୍ଧାନ୍ତ କାହାଣୀ । ସସଙ୍ଗ ହୋଇଲେ ଯେ ଭାବ ଜାଣି ।
ଦ୍ୱିତୀୟ ଅଧ୍ୟା ଜଳତପ ବିଧାନ । ଯେମନ୍ତେ ନିରଞ୍ଜନ କରି ଧ୍ୟାନ ।
ଯେହାର ଚରିତ ଦ୍ୱିତୀୟ ଜାଣ । ବଟପୁଟର ଯେମନ୍ତ ବିଧାନ ।
ଶ୍ରୀ ସତ ଅନନ୍ତ ଜନମ ଯେମନ୍ତ । ବେଲ ବରୁଣ ବୃକ୍ଷ ମୂଳେ ସ୍ଥିତ ।
ପାଦୁକା ମନ୍ତ୍ର ସାଧନା ବିଧାନ । ଶୂନ୍ୟ ଶବଦର ଯେ ବିଧି ମାନ ।
ତୃତୀୟ ତମ୍ବରୁ ସାଧନାମାନ । ଆତ୍ମା ବିଦ୍ୟାଟି ପ୍ରକାଶିତ ଜ୍ଞାନ ।
ମହାରାତ୍ରି କାଳରାତ୍ରି ମୋହରାତ୍ରି । ଯେମାନ ଯେଉଁ ଭାବରେ ତୁଟନ୍ତି ।
ଏ ଆଦି ସାଧନା କହିଲେ ଯେତେ । ତୃତୀୟ ଅଧ୍ୟା ଚରିତ ଯେମନ୍ତେ ।

ଚତୁର୍ଥ କଳ୍ପସାଧିବା ବିଚାର । ଲିମ୍ବ ବୃକ୍ଷାଦି ରମ୍ଭା ଫଳ ସାର ।
ପଞ୍ଚମେ ଅଟେ ଛାୟାର ବିଧାନ । ସନକାଦିଙ୍କର ହେଲା ପ୍ରଛିନ୍ନ ।
ଛାୟା ପଡ଼ିବ ଦକ୍ଷିଣ ଦିଗକୁ । ଛାଇ ଯେମନ୍ତେ ପ୍ରଛିନ୍ନ ଯେହାକୁ ।
ଅମପା ଅଜପା ଆଦିସବୁପା । ପ୍ରଛିନ୍ନ ସବୁଯେ ଛାୟା ଚକ୍ରପା ।
ଅମୃତ ପିଇବା ଜ୍ୟୋତିରୁ ପୁଣ । ଯେମନ୍ତେ ପଞ୍ଚମ ଅଧ୍ୟା ସମ୍ପୂର୍ଣ୍ଣ ।
ଓଁକାର ଆଦି ଜ୍ୟୋତିର ସାଧନ । କଳ୍ପ ସାଧିବାର ଯେଉଁ ପବନ ।
ଚରଚିବଟି ସପ୍ତ ପଦାର୍ଥରେ । ଯେମନ୍ତ କଳ୍ପ କରିବା ବିଚାରେ ।
ଘଟାଇ ତା ଯୋଗ ସପ୍ତମେ ଜାଣ । ହରେ ରାମକୃଷ୍ଣ ମନ୍ତ୍ର ପ୍ରମାଣ ।
ଘଟଇ ତା ଯୋଗ ପ୍ରଛିନ୍ନମାନ । ଅତାଟି ବତାଟି କଲେ ପ୍ରମାଣ ।
ଓଁ କାର ସ୍ଥାନ ଶିବକୁ ଠାରିବା । 'ରା' ଅକ୍ଷର ଶିବ ବିଶମିବା ।
ମନ ଦୁଇକ୍ଷର ଯେମନ୍ତ ଭାବ । ତହିଁରେ ଯେଉଁ ଚରିତ ପ୍ରସ୍ତାବ ।
ଗାବକୁ ଯେମନ୍ତେ ଜିଆଁଇ ଦେବା । ଗାଈର ରୂପ ଅକ୍ଷର ଚିହ୍ନିବା ।
ବାରିବା ଯହୁଁ ନାଶା ପୁଣ୍ୟ ଗୁଣ । ଯେମନ୍ତେ ଗାଈ ସ୍ୱରୂପ ନିର୍ବାଣ ।
ଚବିଶ ଋଷି ସିଦ୍ଧ କରିଥିଲେ । ଯେଉଁ ଅକ୍ଷର ଯେମନ୍ତେ ଜନ୍ମିଲେ ।
ନବମେ ଚରିତ ଯେମନ୍ତ ରସ । ଯେମନ୍ତେ ଯେମୂର୍ତ୍ତି ହୋଇବ ଦୃଶ୍ୟ ।
କନାଶ୍ରୀ ପୁଷ୍ପ ବର୍ଣ୍ଣ ଭେଦ । ଧବଳ କୋଷାଦି ଏଥି ବର୍ଣ୍ଣନ ।
ଅନାଦି ଆସି ଖଣ୍ଡଗିରି ସ୍ଥାନ । ଯେଉଁ ଭାବରେ ହୋଇଲେ ପ୍ରସନ୍ନ ।
ଶ୍ରୀ ଖଣ୍ଡଗିରିରେ ଆପଣେ ବସି । ଯେହୁ ଚରିତ କହିଲେ ବିଶେଷି
ହଥରୁ ଯେମନ୍ତେ ବ୍ରହ୍ମାଣ୍ଡ ହୋଇ । ହଥରୁ ଅଶେଷ ଯେଣୁ ଜନ୍ମଇ ।
ନବମେ ଯେମନ୍ତ ଭାବ ବହିଲେ । ଦଶମେ ବ୍ରହ୍ମ ପ୍ରଛିନ୍ନ କହିଲେ ।
ବ୍ରହ୍ମରୁ କିରଣ ହେଲା ଯେମନ୍ତେ । ଜ୍ୟୋତି କିରଣେ ପରମ ହୁଅନ୍ତେ ।
ପରମ କିରଣୁ ପବନ ଜାଣ । ପବନ କିରଣୁ ଶବଦ ଘେନ ।
ସର୍ବ ପରଚେ ହେବାର ବାଟ ତ । ଅନହତ ଯେଉଁ ପ୍ରକାରେ ହତ ।
ଏକାଦଶେ ଚନ୍ଦ୍ର ଜ୍ୟୋତି ଉଦୟେ । ଯେଉଁ ପ୍ରକାରେ ଜ୍ୟୋତି ଉଦେ ହୁୟେ ।
ଅନ୍ତ ପଖାଳ ଯୋଗର ଚରିତ । ମହୁଲ ମନାଙ୍ଗ ସିଦ୍ଧିର ମତ ।
ଦ୍ୱାଦଶ ତ୍ରୟୋଦଶ ଅଧ୍ୟାରେ । x x x
ଚତୁର୍ଦ୍ଦଶରେ ବ୍ରହ୍ମାଣ୍ଡ ବିଧାନ । ଷୋଡ଼ଶ ଯହୁଁ ହୋୟେ ଉତପନ ।
ଅକଳିତ ରସେ ଯେମନ୍ତେ ଭାବ । ଅରେହ ଚରିତ ଯେମନ୍ତ ଭାବ ।
x x x । ହ ଚିହ୍ନିବାର ଯେମନ୍ତ ଗତି ।
ପଞ୍ଚଦଶେ କାଳନ୍ଦୀର ବିଚାର । ଚଉବନକ୍ଷର ବର୍ଣ୍ଣ ଭେଦର ।
ଅଣଚାଶ ବାୟୁ ଯେମନ୍ତ ହୋଇ । x x x
ସହସ୍ର ଦଳର ଯେଉଁ ଚରିତ । ସୁଦଶେ ପବନ ଖେଦିବା ମତ ।

 

ସଚ୍ଚିଦାନନ୍ଦ ଦର୍ଶନ ବିଚାର । କଜ୍ଜ ଆଦି ଭକ୍ଷି ହେବା ଅମର ।
ସପ୍ତଦଶରେ ସୂର୍ଯ୍ୟ କଳାମାନ । ବିଶେଷ କହିଲୁ ତହିଁ ବିଧାନ ।
ଚନ୍ଦ୍ରକଳାକୁ ଅଷ୍ଟାଦଶ ସ୍ଥିତି । ଯେମନ୍ତେ ଉଦୟେ ଚନ୍ଦ୍ରମା ଜ୍ୟୋତି ।
ଅନ୍ତର୍ଦ୍ଧାନ ଗତି ଊନବିଂଶରେ । ଯେମନ୍ତ ବୁଝ ସୃଜନ ଗୋପ୍ୟରେ ।
ଭଣଇ ସେ ହଂସ ବର୍ଣ୍ଣ ଚରିତ । ରାହୁ ଚନ୍ଦ୍ରକୁ ଘୋଟିବା ଯୋଗ ତ ।
ବିଂଶରେ ସାଧନା ଯୋଗ ବିଚାର । ଯେମନ୍ତ ବର୍ଣ୍ଣଭେଦ ପଢ଼ିବାର ।
ଯେକୋଇଶେ ଚୌଦ ଭୁବନବାଣ୍ଡ । ଶରୀର ଘେନି ଯେମନ୍ତ ମୁରାଟ ।
ଦ୍ୱାବିଂଶେ ଘେନ ପବନ ବିଚାର । ପରମ ଅଙ୍ଗ ଯେମନ୍ତ ପ୍ରକାର ।
ତ୍ରୟବିଂଶରେ ଉଲଟ ସାଧନ । ହରେ ରାମକୃଷ୍ଣ ଜପିବା ପୁଣ ।
ଚବିଂଶ ଆଦି ପୁରୁଷ ଚରିତ । ଯେମନ୍ତେ ଚୌଷଠୀ ହୋଇଲା ଜାତ ।
ପଞ୍ଚବିଂଶ ନାରାୟଣ ଦ୍ରଶନ । ଛବିଶଠାରେ ଅଙ୍କର ସାଧନ ।
ସତାଇଶେ ଅଷ୍ଟ ବିନ୍ଦୁ ଚରିତ । ଦ୍ୱାଦଶ ଅଂଶ ଯେମନ୍ତ ଯେ ମତ ।
ଅଠାଇଶେ ଯେକାଦଶ ଚରିତ । ଯେଉଁ ଦେବତା ଯେଉଁଭାବେ ସ୍ଥିତ ।
ଊନତ୍ରିଂଶେ ନାଭିରନ୍ଦ୍ର ଚରିତ । ଯେଉଁ ଦେବତା ଯେଉଁଭାବେ ସ୍ଥିତ ।
ତରଶେ ନିରଞ୍ଜନ ଚିହ୍ନିବାର । କାଳ କମଳ ନିରଞ୍ଜନ ଘର ।
ଯେକତ୍ରିଂଶରେ ବୁମ୍ବକ ସାଧନ । ମୃଣାଳ ପଥରେ ଜୀବ ଗମନ ।
ବତିଶେ ଅନନ୍ତ ଶଯ୍ୟା ଚରିତ । ତେତିଶେ ମାତୃ ଗର୍ଭେ ଆଦିସ୍ଥିତ ।
ଚଉତ୍ରିଂଶରେ ଖଣ୍ଡଗିରି ସ୍ଥାନ । ଅନନ୍ତ ବାସୁଦେବଙ୍କ ଆଖ୍ୟାନ ।
ଶେଷଙ୍କ ଚରିତ ପଞ୍ଚତ୍ରିଂଶରେ । ଦ୍ରଶନ ମତ ଯେ ଦୁଇ କୋଣରେ ।
ଆ ଆ ର ଯୋଗ ପଞ୍ଚତ୍ରିଂଶେ ଜାଣ । ଛତିଶେ ଠିକ ହୋଇଲା ବର୍ଣ୍ଣନ ।
ଶ୍ରୀସତ ଅନନ୍ତ ଏମନ୍ତ କହି । ମୋତ ପୂର୍ବେ ଯାହା ଦେଇଥିଲେ କହି ।
ଖଣ୍ଡଗିରିରୁ ପାଇଥିଲୁ ଏହା । ଏବେ ଯେତେକ କହିଲୁ ଖୁଣ୍ଟିଆ ।
ପଞ୍ଚ ବେଦରୁ ଉବୁରିଲା ରସ । ସନ୍ତୋଷେ କହିଲେ ବାରଙ୍ଗଦାସ ।

ଇତିଶ୍ରୀ ବ୍ରହ୍ମକୁଣ୍ଡଳୀ ଗୀତାୟାଂ ପରମବ୍ରହ୍ମ ସଂହିତାୟାଂ ପରମବ୍ରହ୍ମ ଆଚ୍ଛାଦନେ ଷଟ୍ତ୍ରିଂଶ ଅଧ୍ୟାୟଃ ।



# ମହୀମଣ୍ଡଳ ଗୀତା

## ପ୍ରଥମ ଅଧ୍ୟାୟ

ମନ ଚୈତନ୍ୟକୁ ଦେଖିଣ । ଅତି ଆନନ୍ଦ ସେ ହୋଇଣ ।।
ଏ ମହୀମଣ୍ଡଳରେ ମୁହିଁ । ତୁମ୍ଭଙ୍କୁ ଖୋଜି ନ ପାରଇ ।।
ତୁମ୍ଭର ଦୟା ଥିଲା ଯେଣୁ । ଦ୍ରଶନ ଦେଲେ ମୋତେ ତେଣୁ ।।
ଏବେ ମୋ ସର୍ବ ଦୁଃଖ ଗଲା । ତୁମ୍ଭର ଦ୍ରଶନ ମିଳିଲା ।।
ଏବେ ମୁଁ କଥାଏ ଜଣାଇ । କହିବ ମୋତେ ଦୟା ବହି ।।
ମହୀମଣ୍ଡଳ ଗୀତା କହ । ମୋ ମନୁ ସଂଶୟ ଫିଟାଅ ।।
ଏ ମହୀ ସ୍ଥିତିରେ ଯେ ଗୁଣ । ଶୁଣିଲେ ନିସ୍ତରିବି ପୁଣ ।।
ପ୍ରକୃତି ସଙ୍ଗରେ ଭ୍ରମଇ । ତୁମ୍ଭଙ୍କୁ ସେବି ନ ପାରଇ ।।
ହେ ପ୍ରଭୁ ମୋର ପ୍ରାଣପତି । ତୋ ବିନୁ ନାହିଁ ମୋର ଗତି ।।
ନମସ୍ତେ ପିତା ଗୁରୁ ଦାତା । ନମସ୍ତେ ଗୁରୁ ଜଗତ୍ କର୍ତ୍ତା ।।
ନମସ୍ତେ ଗୁରୁ ସର୍ବ ଦେହୀ । ତୋ ବିନୁ ଅନ୍ୟ ନାହିଁ କେହି ।।
ନମସ୍ତେ ଗୁରୁ ସର୍ବଦେବ । ମୋତେ ଦୟାଟି ସଦା ଥିବ ।।
ନମସ୍ତେ ଗୁରୁ ମାୟାଧର । ମୋତେ ତୁ ମାୟା ଯେ ନକର ।।
ନମସ୍ତେ ଗୁରୁ ଅନ୍ତର୍ଯ୍ୟାମୀ । ତୋ ମାୟା କେ ପାରିବ ଜାଣି ।।
ନମସ୍ତେ ଗୁରୁ ଦୟା ଯାକୁ । ତୋ ମାୟା ନ ଲାଗଇ ତାକୁ ।।
ନୋହିଲେ ତୋ ଦୟା କେ ତରେ । ବ୍ରହ୍ମାଦି ଦେବାସୁର ନରେ ।।
ନମସ୍ତେ ଗୁରୁ ସର୍ବଦେହୀ । ତୋହର ରୂପ ବର୍ଣ୍ଣ ନାହିଁ ।।
ନମସ୍ତେ ଗୁରୁ ତୁ ଅନନ୍ତ । ନମସ୍ତେ ଗୁରୁ ଜଗନ୍ନାଥ ।।
ନମସ୍ତେ ସର୍ବ ଜୀବ ଗୁରୁ । ନମସ୍ତେ ବାଞ୍ଛା କଳ୍ପତରୁ ।।
ନମସ୍ତେ ଗୁରୁ ମୋକ୍ଷଦାତା । ନମସ୍ତେ ଗୁରୁ ପିତାମାତା ।।
ନମସ୍ତେ ଗୁରୁ ଦୟାକର । ଥୋକାଏ ଜଣାଏ ଛାମୁର ।।

ପଞ୍ଚଭୂତଙ୍କ ଆତ୍ମା କହ । ମୋ ମନୁ ସଂଶୟ ଫିଟାଅ ॥
ଏହି ଦେହରେ ମୁହିଁ ଥାଇ । ପଞ୍ଚଭୂତଙ୍କୁ ନ ଚିହ୍ନଇ ॥
ଏ ଦେହେ ପଞ୍ଚଭୂତ କେହୁ । ଏହା କହିବ ମହାବାହୁ ॥
ପୃଥିବୀ କାହୁଁ ଜାତ ହେଲା । ତୁମ୍ଭ ମାୟାକୁ ନ ଜାଣିଲା ॥
ଯେବେ ତୋ ଦୟା ମୋତେ ହେବ । କିମ୍ପା ପୃଥ୍ୱୀରେ ଏହୁ ଥିବ ॥
ହେ ଦେବ ଗୁରୁ ତ୍ରାହି ତ୍ରାହି । ଏ ଦେହ ପାର କର ତୁହିଁ ॥
ଏ ଦେହେ କିଛି କାର୍ଯ୍ୟ ନାହିଁ । ଯେବେ ତୁମ୍ଭଙ୍କୁ ନ ସେବଇ ॥
ମନ ମୁଖରୁ ଏହା ଶୁଣି । ଚୈତନ୍ୟ କହେ ମଞ୍ଜୁ ବାଣୀ ॥
ହେ ମନ ଜାଣି ନ ପାରୁଛୁ । ପୃଥ୍ୱୀକୁ କିମ୍ପାଇ ନିନ୍ଦୁଛୁ ॥
ପଞ୍ଚଭୂତଙ୍କ କଥା ଏହି । ପଚାରିଲୁ ଯେ ଶୁଣ ତୁହି ॥
ପୃଥ୍ୱୀର ମହିମା କହିବା । ତୋ ମନୁ ସଂଶୟ ଦହିବା ॥
ପୃଥ୍ୱୀ ନ ଥିଲେ ତହିଁ ମୁହିଁ । କା ଘେନି ଲୀଳା କରିବଇଁ ॥
ପୃଥ୍ୱୀ ନ ଥିଲେ ଲୀଳା କାହିଁ । ଦେହ ଥିଲେଟି ଶୂନ୍ୟହୋଇ ॥
ଶୂନ୍ୟରେ କି ଲୀଳା କରିବା । ଏକ ଅଙ୍ଗହୋଇ ରହିବା ॥
ସେଠାରେ ଲୀଳା ନାହିଁ ଜାଣ । ପଞ୍ଚଭୂତ ହିଁ ଅଗଣନ ॥
ପଞ୍ଚଭୂତଟି ଏ ପୃଥ୍ୱୀରେ । ଲୀଳା କରନ୍ତୁ ଏ ସଂସାରେ ॥
ପୃଥ୍ୱୀ ନ ଥିଲେ ଲୀଳା କାହିଁ । କା ଘେନି ବିହରିବୁ ତୁହି ॥
ନାନାଦି ଭୋଗ ତୁ କରିବୁ । ଯେବେ ପୃଥ୍ୱୀକୁ ରଖିଥିବୁ ॥
ନାନାଦି ଲୀଳା ମୋର ଯେତେ । ପୃଥ୍ୱୀ ରଖିଣ ଦେଖ ନିତେ ॥
ପୃଥ୍ୱୀ ଗଲେ କାହିଁ ରହିବୁ । କା ଘେନି ଭୋଗ ତୁ କରିବୁ ॥
ପୃଥ୍ୱୀ ଥିଲେଟି ମୋର ନାମ । ଚିନ୍ତା କରିବୁ ତୁହି ପୁଣ ॥
ପୃଥ୍ୱୀ ଥିଲେଟି ସର୍ବ କରି । ନାନାଦି କୌତୁକେ ବିହରି ॥
ପୃଥ୍ୱୀ ଥିଲେଟି ସର୍ବ ସୁଖ । ନାନାଦି ଲୀଳା ମୋର ଦେଖ ॥
ନାନାଦି ଦ୍ରବ୍ୟ ତୁ ଭୁଞ୍ଜିବୁ । ଖଟ ପଲଙ୍କେ ପହୁଡ଼ିବୁ ॥
ନାନାଦି ଅଳଙ୍କାର ଯେତେ । ନାନାଦି ପୁଷ୍ପ ଅଛି କେତେ ॥
ନାନାଦି ବାହନ ଯେ ଚଢ଼ି । ନାନାଦି ବସ୍ତ୍ର ଯେ ପହୁଡ଼ି ॥
ନାନାଦି ଚୂଆ ଚନ୍ଦନ ହିଁ । କର୍ପୂର କସ୍ତୁରୀ ଅଛଇଁ ॥
ପୃଥ୍ୱୀ ଥିଲେ ଭୋଗ କରିବୁ । ପୃଥ୍ୱୀ ଥିଲେ ସବୁ ଦେଖିବୁ ॥
ସ୍ୱର୍ଗ ପୁର ବୈକୁଣ୍ଠପୁର । ଏ ଦେହ ଭୋଗ କାହିଁ ସାର ॥

ପୃଥ୍ୱୀ ଥିଲାକୁ କର୍ମ ଧର୍ମ । ପାପ ପୁଣ୍ୟକୁ ଯେ ଜାଣିବ ॥
ପୃଥ୍ୱୀ ଥିଲେ ସକଳ ଜାଣି । ପୃଥ୍ୱୀ ଥିଲେଟି ସର୍ବ ମଣି ॥
ପୃଥ୍ୱୀ ଘେନିଣ ତୁ ରହିଛୁ । ହସୁଛୁ ବସୁଛୁ ଶୋଉଛୁ ॥
ଦେହ ଗଲେ କାହିଁ ରହିବୁ । କା ଘେନି ସଂସାର କରିବୁ ॥
ଛପନ କୋଟି ଜୀବଗଣ । କି ଘେନି ଗଲା କିଏ ପୁଣ ॥
ପୃଥ୍ୱୀ ନ ଥିଲେ ଲୀଳା କାହିଁ । ହେ ମନ ଚେତ ଏବେ ତୁହିଁ ॥
ନାମକୁ ଚିତ୍ତେ ଚିନ୍ତା କର । ତୋ ପୃଥ୍ୱୀ ହେବ ଅଜାମର ॥
ପୃଥ୍ୱୀ ଘେନି ଅମରେ ଥିବୁ । ବ୍ରହ୍ମାଣ୍ଡ ଯାକରେ ଭ୍ରମିବୁ ॥
ପୃଥ୍ୱୀ ସଙ୍ଗତେ ପୃଥ୍ୱୀ ହେବୁ । ସକଳ ସମାନ ଦେଖିବୁ ॥
ଭକତି ଭାଗେ ମନ ଦିଅ । ପୃଥ୍ୱୀ ଘେନିଣ ବୁଲୁଥାଅ ॥
ପୃଥ୍ୱୀ ଥିଲେଟି ସବୁ ଅଛି । ପୃଥ୍ୱୀ ଗଲେ କିଛି ନ ଗଛି ॥
ପୃଥିବୀ ବ୍ରହ୍ମାଣ୍ଡ ଯାକରେ । ଘୋଟି ରହିଛି ପୃଥିବୀରେ ॥
ଜଳରୁ ପୃଥିବୀ ଜନ୍ମିଲା । ଶୁଣ ସୁମନେ ତାର ଲୀଳା ॥
ମେରୁ ଆଦି ଯେତେ ପର୍ବତ । ପୃଥ୍ୱୀରେ ଅଛନ୍ତି ସମସ୍ତ ॥
ଅଶ୍ୱତ୍ ଆଦି ଯେତେ ବୃକ୍ଷ । ପୃଥ୍ୱୀରେ ଅଛନ୍ତି ପ୍ରତ୍ୟକ୍ଷ ॥
ଚଣ୍ଡାଳୁଁ ବ୍ରହ୍ମଯାଏ ପୁଣ । ପୃଥ୍ୱୀରେ ସର୍ବେ ଛନ୍ତି ଜାଣ ॥
ସିଂହରୁ ଦଂଶିପୋକ ଯାଏ । ପୃଥ୍ୱୀରେ ସିନା ସତ ରହେ ॥
ଇନ୍ଦ୍ରଙ୍କଠାରୁ ଯେତେ ଦେବ । ପୃଥ୍ୱୀରେ ଅଛନ୍ତି ଏ ସର୍ବ ॥
ଉଡ଼ା ବୁଡ଼ା ଚଳେ ନିଚଳ । ଏ ଚାରିଖାନି ଏ ସକଳ ॥
ପୃଥ୍ୱୀ ଥିଲାକୁ ସର୍ବ ରହି । ନୋହିଲେ ସର୍ବ ନାଶ ଯାଇ ॥
ସପ୍ତ ସମୁଦ୍ର ତୁହି ଜାଣ । ପୃଥ୍ୱୀ ଥିଲାକୁ ରହେ ପୁଣ ॥
ଚଉଦ ବ୍ରହ୍ମାଣ୍ଡ ସହିତେ । ପୃଥ୍ୱୀ ଥିଲାକୁ ଏ ସମସ୍ତେ ॥
ସପ୍ତ ପାତାଳ ସପ୍ତ ଦ୍ୱୀପ । ପୃଥ୍ୱୀ ଘେନିଣଟି ଅବ୍ୟକ୍ତ ॥
ପୃଥ୍ୱୀ ଥିଲାକୁ ସର୍ବ ରହେ । ପୃଥ୍ୱୀ ଗଲେଟି କିଛି ନୋହେ ॥
ପୃଥ୍ୱୀରେ ଯେତେ ଜନ୍ମିଛନ୍ତି । ଏହା ତ କେହି ନ ଜାଣନ୍ତି ॥
ପୃଥ୍ୱୀ ନ ଥିଲେ ଜଳ କାହିଁ । ରହନ୍ତା ଶୁଣ ମୁଁ କହଇ ॥
ପୃଥ୍ୱୀ ଥିଲାକୁ ଜଳ ପୁଣ । ତେଣୁ ଦେହରେ ସର୍ବ ଜାଣ ॥
ପୃଥିବୀରୁ ଜଳ ମେଘ ନେଇ । ବ୍ରହ୍ମାଣ୍ଡ ପାଳୁଛନ୍ତି ରହି ॥
ପୃଥିବୀ ନ ଥିଲେ ଜଳ ନାହିଁ । ମେଘ ଆଣନ୍ତା ଜଳ କାହିଁ ॥

ପୃଥ୍ୱୀ ଥିଲାକୁ ଜଳ ଜାଣ । ନୋହିଲେ ଜଳ କାହିଁ ପୁଣ ।।
ପୃଥ୍ୱୀ ନ ଥିଲେ ମେଘ କାହୁଁ । ଜଳ ଆଣନ୍ତା ଶୁଣ କାହୁଁ ।।
ପୃଥ୍ୱୀ ଥିଲାକୁ ଜଳ ରହି । ଖାଇ ବଞ୍ଚନ୍ତି ସର୍ବ ଦେହୀ ।।
ପୃଥ୍ୱୀ ଥିଲାକୁ ଜଳ ରହେ । ତେଣୁଟି ସର୍ବ ଜାତ ହୋଏ ।।
ଛପନ କୋଟି ଜୀବ ଯେତେ । ପୃଥିବୀରେ ଅଛନ୍ତି ସମସ୍ତେ ।।
ପୃଥ୍ୱୀରେ ଯେତେ ରୂପ ହୋଇ । ତୋ ଦେହେ ଛନ୍ତି ତେତେତୁହି ।।
ପୃଥ୍ୱୀ ଭୂତଙ୍କ କଥା ଶୁଣି । ମନ ଆନନ୍ଦ ହୁଏ ଗୁଣି ।।
କହଇ ଅରକ୍ଷିତ ଦାସ । ପୃଥ୍ୱୀ ଭୂତଙ୍କ କଥା ରସ ।।
ଆହେ ସୁଜନମାନେ କହି । ପୃଥ୍ୱୀ କି ରଖ ନାମ ଧାୟି ।।
ନୋହିଲେ ପୃଥ୍ୱୀ ନାଶଯିବ । ଆଉ ତ ଦେହ ନ ପାଇବ ।।
କେ ବୋଲେ ମଲେଜନ୍ମ ହୋଇ । ଏ ମିଛ ସତ କେବେ ନୋହି ।।
ପୃଥ୍ୱୀ ଭୂତଙ୍କ କଥା ଶୁଣ । ବୟାନବେ ପଦରେ ପୂର୍ଣ୍ଣ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା କଥନେ
ପୃଥିବୀଭୂତମହିମା ବର୍ଣ୍ଣନେ ନାମ ପ୍ରଥମୋଽଧ୍ୟାୟଃ ।

## ଦ୍ୱିତୀୟ ଅଧ୍ୟାୟ

କହଇ ମନ ଶୁଣ ତୁହି । ପୃଥ୍ୱୀ ମହିମା ଶୁଣିଲଇଁ ।।
ଜଳର ମହିମା କହିବ । ମୋ' ମନୁ ସଂଶୟ ତୁଟିବ ।।
ମୁହିଁ ତୋ ଚରଣେ ଶରଣ । ମାୟା ନ କରି କହ ପୁଣ ।।
ତୁମ୍ଭର ମାୟା ମୋରେ ନୋହୁ । ତୋ ନାମେ ମୋର ମନରହୁ ।।
ତୋ ନାମ ନିତ୍ୟେ ଚିନ୍ତୁଥିବି । ତୋ ଭାବେ ମନ ମୋ ରଞ୍ଜିବି ।।
ଏହି ଦଶାଟି ମୋରେ ଥିବ । ତୋମାୟା କେବେ ନ ଲାଗିବ ।।
ଚୈତନ୍ୟ କହେ ମନ ଶୁଣ । ତୁ ଯାହା ପଚାରିଲୁ ପୁଣ ।।
ଜଳ ଭୂତଙ୍କ କଥା କେହି । ବ୍ରହ୍ମାଣ୍ଡେ ଜାଣି ପାରେ ନାହିଁ ।।
ଜଳର ମହିମା କିଞ୍ଚିତେ । କହିବି ଶୁଣ ଶୁଦ୍ଧ ଚିତ୍ତେ ।।
ଅଗ୍ନିରୁ ଜଳ ଜାତ ହୋଇ । ଏହା ଯେ ନ ଜାଣନ୍ତି କେହି ।।
ଜଳର ମହିମା ତୁ ଶୁଣ । ଯେ ସର୍ବ ଘଟେ ଥାଇ ଜାଣ ।।

ସ୍ୱର୍ଗ ମର୍ତ୍ତ୍ୟ ପାତାଳ ହୋଇ । ଜଳଟି ଅଛି ଜାଣ ତୁହି ॥
ସପ୍ତ ବ୍ରହ୍ମାଣ୍ଡ ଦ୍ୱୀପ ସାତ । ଜଳଟି ଘୋଟିଛି ସମସ୍ତ ॥
ଆକାଶୁ ମହୀଯାଏ ସେହି । ପୂରିଛି କେହି ନ ଜାଣଇ ॥
ଜୀବେ ଅଜୀବେ ପୂରିଥାଇ । ଜାତ କରୁଛି ସବୁ ଦେହୀ ॥
ଛପନ କୋଟି ଜୀବ ଯେତେ । ଜଳରୁ ଜାତ ଏ ସମସ୍ତେ ॥
ହେ ମନ ତୁହି ପଚାରିଲୁ । ଜଳର ମହିମା ଶୁଣିଲୁ ॥
ଜଳଟି ସର୍ବ ଜାତକରେ । ଜଳଟି ସମସ୍ତ ସଂହରେ ॥
କୀଟ ପତଙ୍ଗ ତରୁ ତୃଣ । ଜଳରୁ ଜାତ ଏ ପ୍ରମାଣ ॥
ସୁନାରୁ ହୀରା ପରିଯନ୍ତେ । ଜଳରୁ ଜାତ ଏ ସମସ୍ତେ ॥
ନୀଳରୁ ରଙ୍ଗ ଯାଏ ଜାଣ । ଜଳରୁ ସମସ୍ତ ଭିଆଣ ॥
ଷଡ଼ ଋତୁଟି ଜଳୁଁ ଜାତ । ଶୁଣ ସୁମନ ଦେଇ ଚିତ୍ତ ॥
ନାନାଦି ପୁଷ୍ପ ଜଳୁଁ ଜାଣ । ନାନାଦି ଫଳ ଜଳୁଁ ପୁଣ ॥
ରକ୍ତ ମାଂସ ଯେ ଅସ୍ଥି ଚର୍ମ । ଜଳରୁ ସମସ୍ତ ଭିଆଣ ॥
ଜଳ ଶୁଖିଲେ ହଂସ ଉଡ଼ି । ମଜ୍ଜା ଶୂନ୍ୟରେ ଜୀବ ଛାଡ଼ି ॥
ଜଳ ଥିଲେଟି ହଂସ ଖେଳେ । ମୀନ ବି ଥାଇ ଜଳତଳେ ॥
ବକ ଯେ ମୀନକୁ ଟାଣିଣ । ଜଗି ଯେ ବସିଥାଇ ଜାଣ ॥
ପୋଖରୀ ଶୁଖିଲେ ଯେ ତିନି । ଚଳନ୍ତି ଯେଝା ଗୁଣ ଘେନି ॥
ଜଳ ଥିଲେଟି ସର୍ବେ ଥାନ୍ତି । ଆନନ୍ଦେ ଜଳେ ବିହରନ୍ତି ॥
ଜଳ ଯେବେ ମନେ ପାଞ୍ଚଇ । ଏମାନେ ଥିବେ କିସ ପାଇଁ ॥
ଏମନ୍ତ ବୋଲି ପ୍ରଳୟରେ । କେହି ନ ରହନ୍ତି ଜଳରେ ॥
ଚାରି ମେଘ ବୃଷ୍ଟି କରନ୍ତି । ପ୍ରଳୟେ ପୃଥ୍ୱୀ କି ହରନ୍ତି ॥
ଅଣଚାଶ ମୂରତି ଧରି । ପବନ ବହେ ତିନି ପୁରୀ ॥
ପ୍ରଚଣ୍ଡ ଘୋର ନାଦ କରେ । ଅଗ୍ନି ଜଳଇ ତିନି ପୁରେ ॥
କାରୁଣ୍ୟ ଜଳ ତେଜ ଘାତେ । ସମସ୍ତେ ହୁଅନ୍ତି ନିପାତେ ॥
ଏମନ୍ତେ ପୃଥ୍ୱୀ ନାଶ ଯାଇ । ଶୁଣ ସୁମନ ଚିତ୍ତ ଦେଇ ॥
ଜଳ ଯେବେ ମନେ ପାଞ୍ଚଇ । ପୃଥିବୀ ରଖିଥିବି ମୁହିଁ ॥
ପୃଥିବୀ ସଦା କାଳେ ଥାଇ । ଆନନ୍ଦେ ସମସ୍ତେଟି ରହି ॥
ନୋହିଲେ ଯଶ ନାହିଁ ଜାଣ । ଜଳର ଏମନ୍ତଟି ଗୁଣ ॥
ଜଳ ଭୂତଙ୍କ କଥା ମୁହିଁ । କିଛି ଯେ ତୋତେ କହିଲଇଁ ॥

ତାହାଙ୍କ ଗୁଣ ତିନିପୁରେ । କେ ଜାଣେ ଦେବାସୁର ନରେ ।।
ଜଳ ସଙ୍ଗତେ ଜଳ ହେବୁ । ସକଳ ସମାନ ଦେଖିବୁ ।।
ତେବେ ଅମର ହେବ ଜାଣ । କହିଲି ତୋତେ ମୁଁ ପ୍ରମାଣ ।।
ମନ ଶୁଣି ଆନନ୍ଦ ହୋଇ । ବୋଲଇ କର ତ୍ରାହି ତ୍ରାହି ।।
କହଇ ଅରକ୍ଷିତ ଦାସ । ଜଳରୁ ମହିମା ଅଶେଷ ।।
ଆହେ ସୁଜନମାନେ ଶୁଣ । ଜଳରୁ ସର୍ବ ଜାତ ଜାଣ ।।
ତାହାକୁ ମନେ ଭାବି ରଖ । ତେବେ ପୃଥ୍ୱୀରେ ନାହିଁ ଦୁଃଖ ।।
ଜଳଭୂତ ମହିମା ମୁହିଁ । ଅଠଚାଳିଶ ପଦେ କହି

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳଗୀତାୟାଂ ଜଳଭୂତ
କଥା ବର୍ଣ୍ଣନେ ନାମ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

ମନ କହୁଛି ପ୍ରଭୁ ଶୁଣ । ମୋ ଦୋଷ ନ ଘେନିବ ପୁଣ ।।
ଜଳର ମହିମା ଶୁଣିଲି । ମନେ ମୁଁ ଆଶ୍ଚର୍ଯ୍ୟ ହୋଇଲି ।।
ଅଗ୍ନିଭୂତଙ୍କ କଥା କହ । ଯେବେ ତେଜିବି ମାୟାମୋହ ।।
ଅଗ୍ନିର ମହିମା ଶୁଣିବି । ତେବେ ମୁଁ ଭ୍ରାନ୍ତି ଯେ ଛାଡ଼ିବି ।।
ନୋହିଲେ ଭ୍ରାନ୍ତି ମୋ ନ ଯାଇ । କହ ତୁ ମୋତେ ଦୟା ବହି ।।
ହେ ପ୍ରଭୁ ମୁଁ ତୁମ୍ଭ କିଙ୍କର । ମୋହର ଦୋଷ କ୍ଷମାକର ।।
ମୁହିଁ ତ ସଦା ଅପରାଧି । ତୁମ୍ଭେ ତ କରୁଣା ବାରିଧି ।।
ହେ ପ୍ରଭୁ ମାୟା ତୁ ନ କର । କହ ଅଗ୍ନିର ସମାଚାର ।।
ଯେବେ ମୋଠାରେ ଦୟା ଥିବ । ଅଗ୍ନିଭୂତକୁ ଯେ କହିବ ।।
ମନ ମୁଖରୁ ଏହା ଶୁଣି । କିମ୍ପା ବିଷାଦ ହେଉ ପୁଣି ।।
ତୁହି ମୁହିଁଟି ଏ ଦେହରେ । ବିହରୁ ରାତ୍ର ଦିବସରେ ।।
ଆମ୍ଭରୁ ଦୟା ତୋର ତହିଁ । ତୋ ଇଚ୍ଛା ମୋତେ ଛାଡ଼ି ତୁହି ।।
ପ୍ରକୃତି ସଙ୍ଗରେ ଭ୍ରମିଲୁ । ମୋତେ ତୁ ସେବି ନ ପାରିଲୁ ।।
ତେଣୁ ସିନା ମୁଁ ମାୟା କରେ । ନୋହିଲେ ଦୟା ତୋହଠାରେ ।।

 

ଏବେ ତୁ ମୋର ନାମ ଧର । ତେବେ ତୁ ହେବୁ ଅକ୍ରାମର ॥
ନୋହିଲେ ଯିବୁ ଭିନ୍ନ ହୋଇ । ମନ ବୋଲଇ ତ୍ରାହି ତ୍ରାହି ॥
ତୁମ୍ଭର ଦୟା ଯେବେ ହେବ । ତେବେ ଏ ନାମ ଚିହ୍ନିଯିବ ॥
ନୋହିଲେ ମୁଁ କିସ ଚିହ୍ନିବି । ତୁମ୍ଭ ଦୟା ହେଲେ ଜାଣିବି ॥
ହେ ପ୍ରଭୁ ମୋତେ ଦୟାକର । ଜଣାଉଅଛି ମୁଁ ଛାମୁର ॥
ଅଗ୍ନି ଭୂତଙ୍କ କଥା କହ । ହେ ପ୍ରଭୁ ମୋତେ ଦୟାବହ ॥
ହେ ମନ ଶୁଣ ସ୍ଥିର ହୋଇ । ଅଗ୍ନିଭୂତଙ୍କ କଥା ଏହି ॥
ପବନ ଅଗ୍ନି ଜାତ ହୋଇ । ଶୁଣ ସୁମନ ଚିତ୍ତ ଦେଇ ॥
ଅଗ୍ନି ଟି ସର୍ବ ଭୂତେ ପୂରି । ଜୀବେ ଅଜୀବେ ସମ ସରି ॥
ସକଳ ଜୀବ ହୃଦେ ଥାଇ । ତେଜ ସ୍ୱରୂପ ପ୍ରକାଶଇ ॥
ତାହାଙ୍କ ତେଜ୍ ନ ଲାଗିଲେ । କେ ନ ପାରଇ ବଞ୍ଚି ଭଲେ ॥
ଅଗ୍ନିଙ୍କ ତେଜ ଲାଗି ପୁଣ । ସକଳ ପାପ ହୁଏ ଜାଣ ॥
ଅଗ୍ନିଟି ସର୍ବଘଟେ ଥାଇ । ତା ଭାବ କେହି ନ ଜାଣଇ ॥
ଛପନ କୋଟି ଜୀବ ଯେତେ । ଅଗ୍ନି ବିହରେ ସର୍ବ ଗାତ୍ରେ ॥
ଅଗ୍ନି ସଙ୍ଗତେ ଜଳ ଥାଇ । ଅଗ୍ନିଟି ଜଳେ ଗୋପ୍ୟହୋଇ ॥
ପୃଥ୍ୱୀ ସଙ୍ଗତେ ଅଗ୍ନି ମିଶି । ବିହରେ ଜାଣ ଦିବାନିଶି ॥
ଅଗ୍ନି ସକାଶେ ପୃଥ୍ୱୀ ରହେ । ନୋହିଲେ ଜଳେ ବୁଡ଼ିଯାଏ ॥
ଅଗ୍ନିଙ୍କ ତେଜବଳ ଘାତେ । ଜଳ ଯେ ଶୁଖଇ ତୁରିତେ ॥
ଜଳ ଚଳିଲେ ଅଗ୍ନିଛପେ । ପୃଥ୍ୱୀଟି ଲସେ ତା'ର କୋପେ ॥
ଏ ଦୁହେଁ ଯଦି ସମ ଥାନ୍ତି । ପୃଥ୍ୱୀକୁ କେହି ନ ନାଶନ୍ତି ॥
ଏ ଦୁହେଁ ବାଦ ଯେବେ କଲେ । ପୃଥ୍ୱୀଟି ନାଶ ଯାଇ ଭଲେ ॥
ଏ ଦୁହେଁ ପୃଥ୍ୱୀର କାରେଣି । ଏହା ନ ଜାଣେ ମୂର୍ଖ ପ୍ରାଣୀ ॥
ହେ ମନ ପଚାରିଲୁ ତୁହି । ଅଗ୍ନି ମହିମା ଦେଲି କହି ॥
ଅଗ୍ନିଟି ସର୍ବଭୂତେ ଥାଇ । ଜୀବେ ଅଜୀବେ ବିହରଇ ॥
ଛପନକୋଟି ଜୀବ ଯେତେ । ଅଗ୍ନିଟି ବିହରେ ଜଗତେ ॥
ଜଳ ନିବଳ ଉଡ଼ା ବୁଡ଼ା । ନାହିଁ କେ ହୋଇ ଅଗ୍ନିଛଡ଼ା ॥
ନବଖଣ୍ଡ ପୃଥିବୀ ଜାଣ । ଅଗ୍ନି ଘୋଟିଛି ସର୍ବ ସ୍ଥାନ ॥
ଚଉଦ ବ୍ରହ୍ମାଣ୍ଡ ସହିତେ । ଅଗ୍ନି ବିହରେ ସେ ଗୁପତେ ॥
ହେ ମନ ଅଗ୍ନିର ମହିମା । କେ କହିପାରେ ତାର ସୀମା ॥

ହେ ମନ ପଚାରିଲୁ ତୁହି । ଅଗ୍ନି ମହିମା କହିଲଇଁ ।।
ଅଗ୍ନି ସଙ୍ଗତେ ମିଶିଥିବୁ । ତେବେ ଅକ୍ରାମରେ ରହିବୁ ।।
ହେ ମନ ଅଗ୍ନି ଭାବେ ରସ । କହଇ ଅରକ୍ଷିତ ଦାସ ।।
ଆହେ ସୁଜନମାନେ କହି । ଅଗ୍ନିଟି ସର୍ବଭୂତେ ଥାଇ ।।
ଏ ଘେନି ସମାନ ଦେଖିବ । ଭୟକୁ କାହିଁ ନ ରଖିବ ।।
ଅଗ୍ନିଙ୍କ ମହିମା ଯେ ଶୁଣି । ତରିବି ଭବ ତରଙ୍ଗିଣୀ ।।
ତାହାଙ୍କ ଗୁଣ ତିନିପୁରେ । କେହି ନ ଜାଣନ୍ତି ସଂସାରେ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଗୀତାୟାଂ ଅଗ୍ନିଭୂତ
ମହିମା ବର୍ଣ୍ଣନେ ନାମ ତୃତୀୟୋଽଧ୍ୟାୟଃ ।

## ଚତୁର୍ଥ ଅଧ୍ୟାୟ

ମନ କହଇ ହେ ଚୈତନ୍ୟ । ଅଦ୍ଭୁତ ଅଗ୍ନିର ଆଖ୍ୟାନ ।।
ତାହାର ଏମନ୍ତ ମହିମା । କେହି ନ ଜାଣେ ଗୁଣସୀମା ।।
ଶୁଣି ମୁଁ ଅସମ୍ଭବ ମଣି । ଆଉ କଥାଏ କହ ପୁଣି ।।
ପବନ ଭୂତ କାହୁଁ ଜାତ । ମୋତେ କହିବା ପ୍ରାଣନାଥ ।।
ପବନ ଭୂତଙ୍କ ମହିମା । ଶୁଣିବି ତୁମ୍ଭ ମୁଖୁ ସିନା ।।
ମନ ମୁଖରୁ ଏହା ଶୁଣି । ତାର ମହିମା କେ ନ ଜାଣି ।।
ବ୍ରହ୍ମାଦି ଦେବାସୁର ନରେ । ତାଙ୍କୁ କେ ଜାଣିବ ସଂସାରେ ।।
ଯାହାର ରୂପ ବର୍ଣ୍ଣ ନାହିଁ । ତା ବା ଜାଣିବଟି କେହି ।।
ତୁ ଯେବେ ପଚାରିଲୁ ଶୁଣ । କିଛି କହିବା ତାଙ୍କ ଗୁଣ ।।
ପବନ ଭୂତ କଥା ତୁହି । ଶୁଣ ତୁ ସାବଧାନ ହୋଇ ।।
ଆକାଶୁଁ ପବନ ଜନ୍ମିଲା । ବ୍ରହ୍ମାଣ୍ଡ ଯାକରେ ଘୋଟିଲା ।।
ସକଳ ଜୀବ ହୃଦେ ଥାଇ । ରାତ୍ର ଦିବସ ବିହରଇ ।।
ଛପନକୋଟି ଜୀବ ପୁଣ । ପବନୁ ଜନ୍ମିଲେ ସେ ଜାଣ ।।
ସକଳ ଜୀବ ଦେହେ ଥାଇ । ନ ଲାଗି ବିଲରେ ଖେଳଇ ।।

 

ସକଳ ଜୀବର କରତା । ଏହାକୁ ଲାଗି ନାହିଁ ଚିନ୍ତା ॥
ସକଳ ଜୀବ ପିତା ସେହି । ଏହାକୁ ଭାବ ମନେ ତୁହି ॥
ପୃଥିବୀ ଜଳ ଅଗ୍ନି ତିନି । ପବନ ଅଂଶେ ଚଳେ ପୁଣି ॥
ଚନ୍ଦ୍ର ସୂର୍ଯ୍ୟ ଯେ ତାରାଗଣ । ପବନ ବଳେ ବଳେ ଜାଣ ॥
ଚାରି ମେଘ ଚାରି ବେଦହିଁ । ପବନ ବଳେ ଚଳେ ସେହି ॥
ଇନ୍ଦ୍ରଙ୍କୁ ଆଦି ଯେତେ ଦେବ । ପବନ ଆଶ୍ରେ ଚଳେ ସର୍ବ ॥
ମେରୁ ଆଦି ଯେତେ ପର୍ବତ । ପବନ ସବୁଠାରେ ସ୍ଥିତ ॥
ଅଶ୍ୱତ୍ଥାଦି ଯେତେକ ବୃକ୍ଷ । ପବନ ରହଇ ପ୍ରତ୍ୟକ୍ଷ ॥
କାକରୁ ଗରୁଡ଼ ପର୍ଯ୍ୟନ୍ତ । ପବନ ରହଇ ପ୍ରତ୍ୟକ୍ଷ ॥
ସିଂହରୁ ଦଶିପୋକ ଯାଏ । ପବନ ସର୍ବସ୍ଥାନେ ରହେ ॥
ଚଣ୍ଡାଳୁ ବ୍ରହ୍ମଯାଏ ଜାଣ । ପବନ ରହେ ସର୍ବସ୍ଥାନ ॥
ସ୍ଥାବର କୀଟ ପତଙ୍ଗହିଁ । ଜଙ୍ଗମ ସହିତେଣ କହି ॥
ଏ ଚାରିଖାନି ଜୀବଗଣ । ପବନ ସବୁ ଦେହେ ଜାଣ ॥
ପିତୃଗଣ ଯମଗଣ ହିଁ । ପବନ ବଳେ ଜାଣ ରହି ॥
ଦେବଗଣ ରାକ୍ଷସଗଣ । ପବନ ବଳେ ଚଳେ ଜାଣ ॥
ଯେ ଇନ୍ଦ୍ରଗଣ ନାଗ କହି । ପବନ ବଳେ ଚଳେ ଏହି ॥
ଯୋଗୀଗଣ ଯେ ପିତୃଗଣ । ପବନ ବଳେ ଚଳେ ଜାଣ ॥
ଚଳନ୍ତା ଚୌଦକୋଟି ଜୀବ । ପବନ ଆଶ୍ରେ ଚଳେ ସର୍ବ ॥
ଜୀବ ଚଉଦକୋଟି ଛନ୍ତି । ପବନ ଆଶ୍ରେ ସେ ଉଡ଼ନ୍ତି ॥
ବୁଡ଼ା ଚଉଦକୋଟି ଜୀବ । ପବନ ଆଶ୍ରେ ବୁଡ଼ି ସର୍ବ ॥
ନିଶ୍ଚଳ ଚୌଦକୋଟି ଛନ୍ତି । ପବନ ଆଶ୍ରେ ସେ ରହନ୍ତି ॥
ଏମନ୍ତେ ଛପନ କୋଟି ହିଁ । ପବନ ଆଶ୍ରେ ସର୍ବ ରହି ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ପୁଣ । ପବନ ଆଶ୍ରେ ରହେ ଜାଣ ॥
ଚଉଦପୁର ଚାରିଖାନି । ପବନ ସବୁଠାରେ ଭ୍ରମି ॥
ଜଳ ଅନଳ ଯେ ପୃଥିବୀ । ପବନ ସବୁଠାରେ ଦ୍ରବି ॥
ଖେଦଇ ବ୍ରହ୍ମାଣ୍ଡ ମଧ୍ୟରେ । ବହୁଛି ସବୁରି ଦେହରେ ॥
ଜୀବେ ଅଜୀବେ ସେ ପବନ । ଘୋଟିଛି ବ୍ରହ୍ମାଣ୍ଡରେ ଜାଣ ॥
ରେଣୁ ପଡ଼ିବା ଛାଡ଼ ନାହିଁ । ସପ୍ତ ବ୍ରହ୍ମାଣ୍ଡେ ଘୋଟି ରହି ॥

ଷଡ଼ ଋତୁଟି ଷଡ଼ ରସ । ପବନ କରଇ ପ୍ରକାଶ ।।
ନବ ରତ୍ନଟି ଅଷ୍ଟ ଧାତୁ । ପବନ ସବୁଠାରେ ହେତୁ ।।
ବାର ମାସଟି ସାତବାର । ପବନ ସବୁଠାରେ ସାର ।।
ବାର ଚନ୍ଦ୍ର ଯୋଗ କରଣ । ପବନ ସବୁଠାରେ ଜାଣ ।।
ନକ୍ଷତ୍ର ନବଗ୍ରହ କହି । ପବନ ସବୁଟି କରଇ ।।
ଲୀଳା ନିମନ୍ତେ ଯେତେ ଜାତ । ସବୁଟି ପବନ ସମ୍ଭୂତ ।।
ହସ୍ତ ପାଦ ଶିର କର୍ଣ୍ଣହିଁ । ନୟନ ନାସା ମୁଖ କହି ।।
ହୃଦାଦି କଟି ନାହିଁ ଜାଣ । ଅଜ୍ୟୋତି ଅବର୍ଣ୍ଣ ସେ ପୁଣ ।।
ରୂପ ବର୍ଣ୍ଣ ଚିହ୍ନହିଁ ନାହିଁ । ବ୍ରହ୍ମାଣ୍ଡେ ଘୋଟିଅଛି ସେହି ।।
ଏହି ଦେହରେ ଯେ ପବନ । ବିହରେ ରାତ୍ର ଦିବସେଣ ।।
ଖଞ୍ଜାକୁ ଖଞ୍ଜା ଚାଳେ ସେହି । ଦଣ୍ଡେ ବିଶ୍ରାମ ତାର ନାହିଁ ।।
ଭ୍ରମି ଭ୍ରମକେ ବିହରୁଛି । ଏ ରୂପ ପୃଥିବୀ ଧରିଛି ।।
ହସି କାନ୍ଦିଣ ଖେଳେ ସେହି । ଶୁଆଇ ଉଠାଇ ଚଳାଇ ।।
ବସାଇ ଖେଳାଇ ଉଠାଇ । ବୁଡ଼ାଇ ଖେଳାଇ ଜୀଆଇ ।।
ଯେବେ ଏ ଦେହ ଛାଡ଼ିଯିବ । ପୃଥ୍ୱୀ ରସାତଳେ ପଡ଼ିବ ।।
ପବନ ବିନା ପାଶେ ଧରି । ଚାଲିଛି ଯନ୍ତ୍ର କୂଟ କରି ।।
ପବନ ବଳେ ଜନ୍ମ ହୋନ୍ତି । ପବନ ଛପିଲେ ମରନ୍ତି ।।
ବିଚିତ୍ର କୂଟ ମାୟା କରି । ସମସ୍ତେ ଅଛନ୍ତି ଆବୋରି ।।
ମାୟାରେ ସର୍ବ ଜୀବ ଖେଳେ । ନ ଜାଣେ ବ୍ରହ୍ମା ଦିଗପାଳେ ।।
ଏହାଙ୍କଠାରୁ ବଡ଼ ନାହିଁ । ତା ମାୟା କେ ପାରିବ କହି ।।
ପବନ ଭୂତ କଥା ତୋତେ । ମୁଁ କିସ କହିବି ଯୁକତେ ।।
ତା କଥା ଅତି ଅଗୋଚର । ଲଜ୍ଜା ସ୍ୱରୂପ ବର୍ଣ୍ଣିବାର ।।
ଏଡ଼େ ସେଡ଼େ ସେ ବଳି ନୋହେ । ବ୍ରହ୍ମାଣ୍ଡେ ଲୁଚି ସେହୁ ଥାଏ ।।
ପବନ ସଙ୍ଗେ ମିଶି ଥିବୁ । ତେବେ ଅକ୍ରାମରେ ରହିବୁ ।।
ପବନ ଥିଲେ ଦେହ ରହି । ହେ ମନ ଚେତ ଏବେ ତୁହି ।।
ମନ ଚୈତନ୍ୟ ମୁଖୁ ଶୁଣି । ବୋଲଇ ମନେ ମନେ ଗୁଣି ।।
ପବନ ଭୂତଙ୍କ ଚରିତ । ଶୁଣି ମୁଁ ହେଲି ଆଚମ୍ଭିତ ।।
ହେ ପ୍ରଭୁ ମାୟା କର ନାଶ । ଭଣାଇ ଅରକ୍ଷିତ ଦାସ ।।

ଆହେ ସୁଜନମାନେ ଶୁଣ । ପବନ ଭାବ ମନେ ଗୁଣ ।।
ତା ଭାବ ମନରେ ଭାବିବ । ଏ ଘୋର ସଂସାରୁ ତରିବ ।।
ନୋହିଲେ କେବେ ନ ତରିବ । ତା ଭାବ ମନେ ଧାୟୁଥିବ ।।
ପବନ ଭୂତଙ୍କୁ ଭାବିବ । ହେଳା କଳେଟି ମାରିଦେବ ।।
ପବନ ଭୂତଙ୍କର ଗୁଣ । ସତସ୍ତରୀ ପଦେ ସମ୍ପୂର୍ଣ୍ଣ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତାୟାଂ
ପବନଭୂତ ମହିମା ବର୍ଣ୍ଣନେ ନାମ ଚତୁର୍ଥୋଽଧ୍ୟାୟଃ ।

## ପଞ୍ଚମ ଅଧ୍ୟାୟ

ଆହେ ଚୈତନ୍ୟ ବ୍ରହ୍ମ ତୁମ୍ଭେ । କଥାଏ ଜଣାଉଛି ଏବେ ।।
ପବନ ଭୂତଙ୍କୁ କହିଲ । ମନୁ ମୋ ସଂଶୟ ଦହିଲ ।।
ଏବେ ଆକାଶଭୂତ କଥା । ଶୁଣି ମୋ ମନୁ ଛାଡୁ ବ୍ୟଥା ।।
ଆକାଶ କାହୁଁ ଜାତ ହୋଇ । ମୋ ମନୁ ଭ୍ରାନ୍ତି ଫେଡ଼ ତୁହି ।।
ଆକାଶ କଥା ଅଗୋଚର । କହ ମୋ ଭ୍ରମ ହେଉ ଦୂର ।।
ହେ ମନ ଆକାଶ ମହିମା । କହିଲେ ନ ସରଇ ସୀମା ।।
ଆକାଶ ଭୂତ କଥାକହି । କେ ତାହା ମିଳି ନ ପାରଇ ।।
ତାଙ୍କୁ କେ ଜାଣିବ ମର୍ତ୍ତ୍ୟରେ । ଶୁଣ କହିବା କିଛି ତୋରେ ।।
ମହାଶୂନ୍ୟରୁ ଯେ ଆକାଶ । ଜାତ ହୋଇଲାଟି ଅଶେଷ ।।
ଆକାଶ ଅଦ୍ଭୁତ ମହିମା । କହିଲି ତାଙ୍କୁ ଭାବ ସିନା ।।
ଆକାଶ ବ୍ରହ୍ମାଣ୍ଡେ ଘୋଟିଛି । କାହିଁ ନ ଲାଗେ ସର୍ବେ ଗଛି ।।
ମହାଶୂନ୍ୟରୁ ଯେ ଆକାଶ । ଜାତ ହୋଇଲାଟି ଅଶେଷ ।।
ଆକାଶଭୂତଙ୍କ ମହିମା । କହିଲି ଭାବ ତାଙ୍କୁ ସିନା ।।
ଆକାଶ ଅନ୍ଧାର ଅଟଇ । ତା ଗର୍ଭେ ସର୍ବ ଅଛି ରହି ।।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଜାଣ । ତା ଗର୍ଭେ ସର୍ବେ ଛନ୍ତି ପୁଣ ।।
ଚଉଦ ବ୍ରହ୍ମାଣ୍ଡ ସହିତେ । ତା ଗର୍ଭେ ଅଛନ୍ତି ସମସ୍ତେ ।।
ସପ୍ତ ସମୁଦ୍ର ସ୍ୱର୍ଗ ସପ୍ତ । ତା ଗର୍ଭେ ଅଛନ୍ତି ସମସ୍ତ ।।

ନବଦ୍ୱୀପ ସର୍ବ ପୃଥିବୀ । ତା ଗର୍ଭେ ସର୍ବେ ଛନ୍ତି ଭାବି ।।
ଜଳ ପବନ ଅଗ୍ନି ମହୀ । ତା ଗର୍ଭେ ଆତଯାତ ହୋଇ ।।
ଚାରିମେଘ ଯେ ତାରାଗଣ । ତା ଗର୍ଭେ ଆତଯାତ ଜାଣ ।।
ଚାରିବେଦ ଷଡ଼ ରତୁହିଁ । ତା ଗର୍ଭେ ଆତଯାତ ହୋଇ ।।
ଚନ୍ଦ୍ର ସୂର୍ଯ୍ୟଟି ଦୁଇ ଦୀପ । ତା ଗର୍ଭେ ଜଳଇ ଅମାପ ।।
ସଂସାରରେ ସେ ପାଇଁ ଜାଣ । ଚନ୍ଦ୍ର ସୂର୍ଯ୍ୟ ତହିଁ ଭ୍ରମଣ ।।
ଜଳ ପବନ ଅଗ୍ନି ମହୀ । ଲୀଳା ନିମନ୍ତେ ଭ୍ରମେ ସେହି ।।
ଆକାଶ ଗର୍ଭେ ଲୀଳା କରି । ସମସ୍ତ ଅଛଇ ଆବୋରି ।।
ଛପନ କୋଟି ଜୀବ ଯେତେ । ତା ଗର୍ଭେ ଅଛନ୍ତି ସମସ୍ତେ ।।
ଇନ୍ଦ୍ରଙ୍କ ଠାରୁ ଯେତେ ଦେବ । ତା ଗର୍ଭେ ଅଛନ୍ତି ଏ ସର୍ବ ।।
ମେରୁ ଆଦି ଯେତେ ପର୍ବତ । ତା ଗର୍ଭେ ଅଛନ୍ତି ସମସ୍ତ ।।
ଅଶ୍ୱତ୍ଥ ଆଦି ଯେତେ ବୃକ୍ଷ । ତା ଗର୍ଭେ ଅଛନ୍ତି ପ୍ରତ୍ୟକ୍ଷ ।।
ଚଣ୍ଡାଳୁ ବ୍ରହ୍ମ ଯାଏ ପୁଣ । ତା ଗର୍ଭେ ଅଛନ୍ତିଟି ଜାଣ ।।
ସିଂହରୁ ଦଂଶିପୋକ ଯାଏ । ତା ଗର୍ଭେ ଆତଯାତ ହୁଏ ।।
ଉଡ଼ା ବୁଡ଼ା ଚଳ ନିଚଳ । ତା ଗର୍ଭେ ହୁଅନ୍ତି ପ୍ରବଳ ।।
ଅକାଶ ଭୂତ କଥା ଯେତେ । କହିଲେ ନ ସରେ କିଞ୍ଚିତେ ।।
ଆକାଶ ଭୂତ କଥା ଶୁଣ । ତା ଗର୍ଭେ ଜନ୍ମ ମୃତ୍ୟୁ ଜାଣ ।।
ମହାଶୂନ୍ୟରୁ ଜାତ ସେହି । ଆକାଶୁ ପବନ ଜନ୍ମଇ ।।
ପବନୁ ଅଗ୍ନି ଜାତ ପୁଣ । ଅଗ୍ନିରୁ ଜଳ ଜାତ ଜାଣ ।।
ଜଳରୁ ପୃଥିବୀ ଜନ୍ମିଲା । ସଂସାର ଖେଳ ଲଗାଇଲା ।।
ମହାଶୂନ୍ୟରୁ ପଞ୍ଚଭୂତ । ଜାତ ହୋଇଛି ଏ ସମସ୍ତ ।।
ଏ ପଞ୍ଚଭୂତ ଭିନ୍ନ ଭିନ୍ନ । ନୁହେଁଟି ଶୁଣ ହୋ ସୁମନ ।।
ଲୀଳା ନିମନ୍ତେ ଭିନ୍ନ ହେଲେ । ସଂସାରେ ଖେଳ ଲଗାଇଲେ ।।
ଖେଳ ସରିଲେ ସର୍ବେ ଯାନ୍ତି । ଏକା ଅଙ୍ଗରେ ସେ ଚଳନ୍ତି ।।
ମହାଶୂନ୍ୟରେ ସେ ମିଶାଣ । ଏକ ଅଙ୍ଗରେ ସେ ଗୋପ୍ୟାନ ।।
ହେ ମନ ପଞ୍ଚଭୂତ ପୁଣ । କେହି ନ ଜାଣନ୍ତି ତା ଗୁଣ ।।
ତୋଠାରେ ମୋର ଦୟା ଯେଣୁ । ପଚାରିଲେ ଯେ କହେ ତେଣୁ ।।
ତୁମ୍ଭ ଆତ୍ମର ଭୟ ନାହିଁ । ତେଣୁ ମୁଁ ତୋତେ କହିଲଇଁ ।।
ଆକାଶଭୂତ ସଙ୍ଗେ ମିଶ । ତେବେ ପାଇବ ସିନା ଯଶ ।।

 

ଏ ପଞ୍ଚଭୂତ ସଙ୍ଗେ ଦେହ । ମିଶାଇ ଆନନ୍ଦରେ ରହ ।।
ତେବେ ଅମର ହେବ ଜାଣ । ହେ ପୃଥ୍ୱୀ ଥିବ ସଦା ଦିନ ।।
ପୃଥ୍ୱୀ ସଙ୍ଗତେ ପୃଥ୍ୱୀ ହେବୁ । ଜଳ ସଙ୍ଗତେ ଜଳ ଥିବୁ ।।
ଅଗ୍ନି ସଙ୍ଗତେ ଅଗ୍ନି ହୋଇ । ରହିବୁ ଶୁଣ ମନ ତୁହି ।।
ପବନ ସଙ୍ଗତେ ପବନ । ମିଶିଣ ରହିଥିବୁ ଜାଣ ।।
ଆକାଶ ସଙ୍ଗତରେ ତୁହି । ମିଶି ଆକାଶେ ଥିବୁ ରହି ।।
ଏ ପଞ୍ଚଭୂତ ସଙ୍ଗେ ମିଶି । ଖେଳୁଥିବ ହୋ ଦିବାନିଶି ।।
ଏହାଙ୍କ ସଙ୍ଗେ ଖେଳୁଥିବୁ । ମହାଶୂନ୍ୟରେ ତୁ ରହିବୁ ।।
ତେବେ ତୋହର ନାହିଁ ଭୟ । ଅଜାମର ତୋ ହେବ କାୟ ।।
ମହାଶୂନ୍ୟରେ ନିଜ ନାମ । ହେତୁ କରିଣ ଭାବ ମନ ।।
ସଂସାରେ ଯେତେ ନାମ ଶୁଣ । ଭକତେ ଦେଇଥାନ୍ତି ଜାଣ ।।
ହେ ମନ ନିଜ ନାମ ବ୍ରହ୍ମ । ଆଉଟି ସବୁ ମିଛ ଜାଣ ।।
ବ୍ରହ୍ମରୁ ପୃଥ୍ୱୀ ଆତଯାତ । ବ୍ରହ୍ମରେ ଅଛନ୍ତି ସମସ୍ତ ।।
ବ୍ରହ୍ମରୁ ସର୍ବେ ଜନ୍ମିଛନ୍ତି । ସଂସାରେ ଲୀଳା ସେ କରନ୍ତି ।।
ବ୍ରହ୍ମରୁ ପଞ୍ଚଭୂତ ଜନ୍ମ । ଲୀଳା ନିମନ୍ତେ ଭିନ୍ନ ଭିନ୍ନ ।।
ହେ ମନ ବ୍ରହ୍ମରୁଟି ସର୍ବ । ଜାତ ହୁଅନ୍ତି ଅସମ୍ଭବ ।।
ମଲେ ସେ ବ୍ରହ୍ମରେ ପଶନ୍ତି । ବ୍ରହ୍ମରେ ଲୀନ ଯେ ହୁଅନ୍ତି ।।
ପଞ୍ଚଭୂତରେ ସେ ଗୋଟିଏ । ନଥିଲେ ଲୀଳା କେବେ ନୁହେଁ ।।
ଆକାଶ ନ ଥିଲେ ପବନ । କାହିଁ ଏ ଜାତ ହୋନ୍ତା ଜାଣ ।।
ପବନ ନ ଥିଲେଟି କେହି । ଅଗ୍ନିଟି ଜାତ ହୋନ୍ତା କାହିଁ ।।
ଅଗ୍ନି ନ ଥିଲେ ଜଳ ପୁଣ । କାହିଁ ଏ ଜାତ ହୋନ୍ତା ଜାଣ ।।
ଜଳ ନ ଥିଲେ ପୃଥ୍ୱୀ କାହିଁ । ଜାତ ହୁଅନ୍ତା କହ ତୁହି ।।
ଏ ପଞ୍ଚଭୂତରୁ ଗୋଟିଏ । ନ ଥିଲେ ଜନ୍ମ ଜନ୍ମ ହୋଏ ।।
ଏ ପଞ୍ଚଭୂତରୁ ସଂସାର । ଜାତ ହୁଅନ୍ତି ଚରାଚର ।।
ଏ ପଞ୍ଚଭୂତ ଭିନ୍ନ ନୋହି । ଏକା ଅଙ୍ଗଟି ଜାଣ ତୁହି ।।
ଏ ପଞ୍ଚଭୂତ ସତ୍ୟ ଜାଣ । ଆଉଟି ସବୁ ମିଥ୍ୟା ମଣ ।।
ଏମନ୍ତେ ପଞ୍ଚଭୂତ କଥା । ଶୁଣି ସୁମନ ହୁଅ ଚେତା ।।
ଚୈତନ୍ୟ ମୁଖୁ ଏହା ଶୁଣି । ବୋଲଇ ନିସ୍ତରିଲି ପୁଣି ।।
ପଞ୍ଚଭୂତଙ୍କ କଥା ଯେତେ । କହିଣ ଦେଲେ ଯେ ଗୁପତେ ।।

ମୋଠାରେ ଦୟା ଥିଲା ଯେଣୁ । ଆପଣ କହିଦେଲେ ତେଣୁ ।।
ମୁଁ ଯେ ମହାପାପୀ ଅଟଇ । ମୋଠାରେ ଦୟା ଥିବ କହି ।।
କହଇ ଅରକ୍ଷିତ ଦାସ । ନିଜ ନାମ ବ୍ରହ୍ମକୁ ଅଂଶ ।।
ଆକାଶ ଭୂତଙ୍କ ମହିମା । କହିଲେ ନ ସରଇ ସୀମା ।।
ଆହେ ସୁଜନ ଜନେ ଶୁଣ । ପଞ୍ଚଭୂତଙ୍କ ଯେତେ ଗୁଣ ।।
ଭୂତ ଗୋଟିଏ ଯେ ଅଧ୍ୟାୟେ । କହିଲି ପୁଣି ସୁଜନେ ହେ ।।
ଏମନ୍ତ ପାଞ୍ଚ ଅଧ୍ୟା ହୋଇ । ପଞ୍ଚଭୂତଙ୍କ କଥା ଏହି ।।
ଏ ପଞ୍ଚଭୂତଙ୍କ ମହିମା । କେ କରିପାରେ ଗୁଣସୀମା ।।
ଆକାଶ ଭୂତଙ୍କ ଚରିତ । ପଞ୍ଚାଶି ପଦରେ ଭଣିତ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳଗୀତାୟାଂ ଆକାଶ
ଭୂତ ବର୍ଣ୍ଣନେ ନାମ ପଞ୍ଚମୋଽଧ୍ୟାୟଃ ।

## ଷଷ୍ଠ ଅଧ୍ୟାୟ

ମନ ଚୈତନ୍ୟ ପାଦେ ପଡ଼ି । ଶିରରେ ବେନି କର ଯୋଡ଼ି ।।
ତୁମ୍ଭେ ଯେ ପ୍ରାଣ ଗୁରୁ ମୋର । କିମ୍ପାଇ ମୋତେ ମାୟା କର ।।
ଏହି ଦେହରେ ମୁହିଁ ଥାଇ । ତୋତେ ମୁଁ ଚିହ୍ନି ନ ପାରଇ ।।
ହେ ପ୍ରଭୁ ମାୟା ତୁ ନ କର । କଥାଏ ଜଣାଏ ଛାମୁର ।।
ଏ ଦେହ କାହୁଁ ଜାତ ହେଲା । ତୁମ୍ଭ ମାୟାକୁ ନ ଚିହ୍ନିଲା ।।
ଛପନ କୋଟି ଜୀବ ଯେବେ । ଜାତହୋଇଲେ କେ କେମନ୍ତେ ।।
ମନ ମୁଖରୁ ଏହା ଶୁଣି । ଚୈତନ୍ୟ କହେ ହେତୁ ବାଣୀ ।।
ମହା ଶୂନ୍ୟରୁ ସର୍ବ ଜାତ । ତୋତେ ମୁଁ କହିଦେଲି ସତ୍ୟ ।।
ଛପନ କୋଟି ଜୀବ ମୁହିଁ । ମୋ ସୁଖେ ବିହାର କରଇ ।।
ଲୀଳା ନିମନ୍ତେ ଜାତ ହେଲି । ନାନା ରୂପଟି ମୁଁ ଧଇଲି ।।
ନାନାଦି ଜୀବଜନ୍ତୁ ମୁହିଁ । ନାନା ନାମଟି ମୋର ହୋଇ ।।
ଚଣ୍ଡାଳୁ ବ୍ରହ୍ମଲୋକ ଯାଏ । ନାନା ନାମଟି ମୋର ହୁଏ ।।
ଇନ୍ଦ୍ରଙ୍କୁ ଆଦି ଦେବ ଯେତେ । ନାନା ନାମଟି ବହି କେତେ ।।

ମେରୁ ଆଦି ଯେତେ ପର୍ବତ । ନାନା ନାମଟି ମୁହିଁ ସତ୍ୟ ।।
ଅଶ୍ୱତ୍ଥ ଆଦି ଯେତେ ବୃକ୍ଷ । ନାନା ନାମ ମୁହିଁ ପ୍ରତ୍ୟକ୍ଷ ।।
କାକରୁ ଗରୁଡ଼ ପର୍ଯ୍ୟନ୍ତେ । ନାନା ନାମ ମୋର ଜଗତେ ।।
ସିଂହରୁ ଦଶିପୋକ ଯାଏ । ନାନା ନାମଟି ମୋର ହୁଏ ।।
ଚଳନ୍ତା ଚୌଦକୋଟି ଜୀବ । ମୁହିଁଟି ହୋଇଅଛି ସର୍ବ ।।
ନିଶ୍ଚଳ ଚୌଦକୋଟି ଜୀବ । ମୁହିଁଟି ହୋଇଅଛି ସର୍ବ ।।
ଉଡ଼ା ଚଉଦ କୋଟି ମୁହିଁ । ମୁଁ ସର୍ବ ରୂପ ହୋଇଛଇଁ ।।
ବୁଡ଼ା ଚଉଦ କୋଟି ହେଲି । ମୁଁ ସର୍ବ ରୂପ ବୋଲାଇଲି ।।
ଛପନ କୋଟି ଜୀବ ମୁହିଁ । ନାନା ନାମଟି ମୋର ହୋଇ ।।
ମୁଁ ଦଶ ଅବତାର ହେଲି । ନାନା ନାମଟି ମୁଁ ବହିଲି ।।
ମନ କହୁଛି ପ୍ରଭୁ ଶୁଣ । ତୋ ନାମ କହ ହେ ବହନ ।।
ସଂସାରେ ଯେତେ ନାମ ତାର । କହନ୍ତି ଦେବ ମୋ ଆଗର ।।
ମନ ମୁଖରୁ ଏହା ଶୁଣି । ଚୈତନ୍ୟ କହେ ମୃଦୁ ବାଣୀ ।।
ମୁଁ ନାନା ଅବତାର ହୋଇ । ମୁଁ ତୋତେ ନାମଟି ଦିଅଇ ।।
ମୁହିଁଟି ଭକ୍ତବୃନ୍ଦ ହେଲି । ମୁହିଁଟି ନାନା ନାମ ଦେଲି ।।
କିଛି ନାମ ହିଁ କହିଦେବା । ତୋ ମନୁ ସଂଶୟ ଫେଡ଼ିବା ।।
ମୁଁ ବ୍ରହ୍ମା ବିଷ୍ଣୁ ମହେଶ୍ୱର । ତୋତେ କହିଲି ମୁଁ ନିକର ।।
ଶଙ୍ଖାସୁରର ଅରି ମୁହିଁ । କଂସ ଅଇରି ମୁଁ ବୋଲାଇ ।।
କଳପତରୁ ମୁହିଁ ହେଲି । ମୁଁ ଭଗବାନ ବୋଲାଇ ।।
ନିରଞ୍ଜନଟି ମୋର ନାମ । ନାରାୟଣଟି ହେଲି ପୁଣ ।।
ଅତ୍ରାହି ଭଞ୍ଜନ ହୋଇଲି । ଗୋପୀ ଜୀବନ ବୋଲାଇଲି ।।
ବସୁଦେବ ସୁତଟି ମୁହିଁ । ହରି ନାମଟି ମୁଁ ବୋଲାଇ ।।
ବନମାଳୀଟି ମୁହିଁ ଜାଣ । କମଳାବିଳାସ ପ୍ରମାଣ ।।
ମୁଁ ନାଥ ଦର୍ପଗଞ୍ଜା ହେଲି । ଅର୍ଜ୍ଜୁନଭଞ୍ଜା ବୋଲାଇଲି ।।
ପୀତବସନ ମୁହିଁ ହେଲି । ଯାଦବପତି ବୋଲାଇଲି ।।
ଅନନ୍ତ ନାମ ମୋର ହୋଇ । ବୈକୁଣ୍ଠସାଇଁ ମୁଁ ବୋଲାଇ ।।
ଦୈତାରି ଅଚ୍ୟୁତଟି ହେଲି । ରାମ ନାମଟି ବୋଲାଇଲି ।।
କେଶୀସୂଦନ ନାମ ବହି । କୃପାସିନ୍ଧୁ ନାମ ବୋଲାଇ ।।
ଚାଣୁରମର୍ଦ୍ଦନ ମୁଁ ପୁଣ । ଜଗଜୀବନ ମୁହିଁ ଜାଣ ।।

ଶଙ୍ଖଚକ୍ରଧାରୀଟି ମୁହିଁ । ସୁପର୍ଣ୍ଣସାଇଁ ମୁଁ ବୋଲାଇ ॥
ମୁକୁନ୍ଦ ବିଦ୍ୟାଧର ହେଲି । ପୁରୁଷୋତ୍ତମ ବୋଲାଇଲି ॥
ଗରୁଡ଼ ଆସନଟି ମୁହିଁ । ପତିତପାବନ ବୋଲାଇ ॥
ପରାପର ନାଥଟି ହେଲି । ପରମାନନ୍ଦ ବୋଲାଇଲି ॥
ପୁଣ୍ଡରୀକାକ୍ଷ ଭାବଗ୍ରାହୀ । ଚିନ୍ତାମଣିଟି ମୁଁ ବୋଲାଇ ॥
ନୀଳାଦ୍ରୀ ଦାଶରଥି ହେଲି । ଗୋବର୍ଦ୍ଧନଟି ବୋଲାଇଲି ॥
ମାଧବ ଜନାର୍ଦ୍ଦନ ମୁହିଁ । ଜଗତନାଥ ମୁଁ ବୋଲାଇ ॥
ଆତଙ୍କ ନାଶନଟି ପୁଣ । ବନମାଳୀଟି ମୁହିଁ ଜାଣ ॥
ବୈକୁଣ୍ଠ ବିହାରୀଟି ମୁହିଁ । ଶ୍ରୀଜଗନ୍ନାଥ ମୁଁ ବୋଲାଇ ॥
ଶ୍ରୀରାମ ନାମ ବହି ମୁହିଁ । ରଘୁପତି କେଶବ ମୁହିଁ ॥
ବାଞ୍ଛାନିଧିଟି ମୁହିଁ ହେଲି । କରୁଣାନିଧି ବୋଲାଇଲି ॥
ଶ୍ରୀହରି ଶ୍ରୀପତିଟି ମୁହିଁ । ଶ୍ରୀକୃଷ୍ଣଚନ୍ଦ୍ର ମୁଁ ବୋଲାଇ ॥
ଶୂନ୍ୟ ପୁରୁଷ ମୁହିଁ ଜାଣ । ଆତଙ୍କ ନାଶନ ପ୍ରମାଣ ॥
କୃପା ଜଳଧି ମୁହିଁ ହେଲି । ଗୋବିନ୍ଦଚନ୍ଦ୍ର ବୋଲାଇଲି ॥
ଗିରିଧାରୀଟି ମୁହିଁ ଜାଣ । ନିତ୍ୟାନନ୍ଦଟି ମୁହିଁ ପୁଣ ॥
ଘନଶ୍ୟାମଟି ମୁହିଁ ହେଲି । ଗୋବିନ୍ଦ ଚନ୍ଦ୍ର ବୋଲାଇଲି ॥
ଚତୁର୍ଭୁଜଟି ମୁହିଁ ଜାଣ । କଞ୍ଜଲୋଚନ ମୁହିଁ ପୁଣ ॥
ଅନାଥବନ୍ଧୁ ନାମ ମୋର । ଅଟଇ ମୁଁ କରୁଣାକର ॥
କ୍ଷମା କରୁଣା ସିନ୍ଧୁ ମୁହିଁ । ଜଗତ ସୋଦର ଅଟଇ ॥
ଗୁରୁ ଶିଷ୍ୟଟି ମୁହିଁ ହେଲି । ମୁଁ ତୋତେ ବୁଝାଇ କହିଲି ॥
ମୁହିଁଟି ମୋତେ ନାମ ଦେଇ । ମୁଁ ତୋତେ ବନ୍ଧ୍ୟା ସେ ସାଧଇ ॥
ତୁ ଯାହା ପଚାରିଲୁ ମୋତେ । ଇଚ୍ଛା ନାମ କହିଲି ତୋତେ ॥
କହଇ ଅରକ୍ଷିତ ଦାସ । ଏମନ୍ତେ ମୋ ନାମ ପ୍ରକାଶ ॥
ସୁଜନ ଜନମାନେ ଶୁଣ । ନିଜ ନାମ ନ କହି ଜାଣ ॥

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ଷଷ୍ଠୋଽଧ୍ୟାୟଃ ।

# ସପ୍ତମ ଅଧ୍ୟାୟ

ମନ ଚୈତନ୍ୟ ମୁଖ ଚାହିଁ । ବୋଲଇ ନିସ୍ତରିଲି ମୁହିଁ ।।
ଏହି ଦେହରେ ଯେତେ କଥା । ଫେଡ଼ିଣ କହ ସେ ବ୍ୟବସ୍ଥା ।।
ଚୈତନ୍ୟ କହେ ମନ ଶୁଣ । ତୋତେ କହିବି ସେ ଫେଡ଼ିଣ ।।
ମନ ଚେତନ୍ୟ ମୁହିଁ ହେଲି । ଜୀବ ପରମ ବୋଲାଇଲି ।।
ନଖ ମୁଖ ନାସିକା ହୋଇ । ମୁଁ ହାଡ଼ ଚର୍ମ ଯେ ବୋଲାଇ ।।
ରକ୍ତ ମାଂସ ଯେ ମୁହିଁ ଜାଣ । ମୁଁ ଷୋଳ ଡମ୍ବରୁ ପ୍ରମାଣ ।।
ପଞ୍ଚମନଟି ହେଲି ମୁହିଁ । ପଚିଶ ପ୍ରକୃତି ଅଟଇ ।।
ତ୍ରିଗୁଣ ତ୍ରିକୂଟଟି ହେଲି । ଷଡ଼ ଗୁଣଟି ବୋଲାଇଲି ।।
ସାତଶ ବାସ୍ତରୀ ଯେ ନାଡ଼ୀ । ମୁଁ ଯେତେ ହୋଇଅଛି ଜଡ଼ି ।।
ଚୌଷଠି ଯୋଗ ମୁହିଁ ହେଲି । ନାନା ବ୍ୟାଧି ଯେ ବୋଲାଇଲି ।।
ମୁଁ ସତ୍ୱ ରଜ ତକ ଜାଣ । କ୍ରୋଧ ଲୋଭଟି ମୁହିଁ ପୁଣ ।।
କୂଟ କପଟ ମୁହିଁ ହେଲି । ମୁଁ ଦୟା ଶାନ୍ତି ବୋଲାଇଲି ।।
ମୁଁ ପ୍ରେମ ଆସ୍ୱାଦନ ଜାଣ । ଭଲ ମନ୍ଦଟି ମୁହିଁ ପୁଣ ।।
କୁବୁଦ୍ଧି ସୁବୁଦ୍ଧିଟି ମୁହିଁ । କୃପଣ ଅହଂକାରୀ ହୋଇ ।।
ଆହାର ନିଦ୍ରା ମୁହିଁ ହେଲି । ମୈଥୁନ ମୁହିଁ ବୋଲାଇଲି ।।
ଗୁରୁଜନ ବିଶ୍ୱାସ ମୁହିଁ । ନିର୍ମଳ ଉଦାସ ବୋଲାଇ ।।
ହାନି ଲାଭଟି ମୁହିଁ ଜାଣ । ଏବେ ମୁଁ କହୁଅଛି ଶୁଣ ।।
ମୁଁ ସ୍ତିରୀ ପୁରୁଷଟି ହେଲି । ଜନନେନ୍ଦ୍ରିୟ ବୋଲାଇଲି ।।
ମାତା ପିତାଟି ହେଲି ମୁହିଁ । ଜାତ କରୁଛି ସର୍ବଦେହୀ ।।
ଗୃହସ୍ଥ ଭାରିଯାଟି ମୁହିଁ । ପୁଅ ଝିଅଟି ମୁଁ ବୋଲାଇ ।।
ପୁତୁରା ମଉଳାଟି ହେଲି । ମାଇଁ ଭଣଜା ବୋଲାଇଲି ।।
ନାତି ଅଜା ହେଲି ମୁହିଁ । ଜୁଆଇଁ ପିଉସା ବୋଲାଇ ।।
ଖୁଡ଼ୁତା ଭାଇବନ୍ଧୁ ମୁହିଁ । ମୁଁ ଦେଢ଼ଶ୍ୱଶୁର ଶଳା ହୋଇ ।।
ଆଈ ମାଇଁଟି ବୋଲାଇଲି । ଶାଶୂ ଶ୍ୱଶୁର ମୁଁ ହୋଇଲି ।।
ଅଷ୍ଟପାଟକ ଜାତି ମୁହିଁ । ଲୀଳା ନିମନ୍ତେ ଭିନ୍ନ ହୋଇ ।।
ଅନ୍ଧ କାଲଟି ମୁହିଁ ହେଲି । ଜଟା କବାଟ ବୋଲାଇଲି ।।
କୁଜା ଛୋଟା ଯେ ମୁହିଁ ଜାଣ । ରୋଗୀ ଭୋଗୀଟି ମୁଁ ପ୍ରମାଣ ।।

 

ରାଜା ପରଜା ହେଲି ମୁହିଁ । ସେବକ ସାଆନ୍ତ ଅଟଇ ।।
ବ୍ରାହ୍ମଣ ହାଡ଼ି ମୁହିଁ ଜାଣ । ନାନା ଜାତିଟି ମୁହିଁ ଶୁଣ ।।
ତୁ ଏହା ଅନୁଭବ କର । ମୋ ମାୟା ହୋଇଯିବୁ ପାର ।।
ରୂପଗୋଟାକୁ ଭାଙ୍ଗି ଦେବା । ଅରୂପ ହୋଇଣ ରହିବା ।।
ତୁ ତୋତେ ଚିହ୍ନି ଯେ ପାରିଲେ । ଏ ଦେହ ରହିବଟି ଭଲେ ।।
ମୋହର ଏ ଖେଳ ନିମନ୍ତେ । ମାୟା ଦେଖାଉଥାଇ ତୋତେ ।।
ମୁଁ ତୋତେ ଖୁଆଇ ପିଆଇ । ମୁଁ ତୋତେ ଶାନ୍ତି ଯେ କରଇ ।।
ହିଂସା ରାଗଟି ହେଲି ମୁହିଁ । ମୁଁ ତୋତେ କପଟ କରଇ ।।
ଭଲ ମନ୍ଦଟି ମୁହିଁ ଜାଣ । ହସି ଟାପରା କରେ ପୁଣ ।।
ମୁହିଁଟି ମୋତେ ରତି କରି । ରକ୍ତ ବୀର୍ଯ୍ୟର ରୂପ ଧରି ।।
କାଳ ଅକାଳ ମୁହିଁ ହେଲି । ଧର୍ମ ଅଧର୍ମ ବୋଲାଇଲି ।।
ମୋର ଗୁଣ ମୋତେ ଡରିଣ । ମୁଁ ତୋତେ ବାନ୍ଧିରଖେ ପୁଣ ।।
ମୁଁ ତୋତେ ପାଳିଣ ମାରଇ । ମୁଁ ତୋତେ ଆଶ୍ରୟ କରଇ ।।
ଦୁଃଖ ସୁଖ ଯେ ହେଲି ମୁହିଁ । ଶାନ୍ତି ଅଶାନ୍ତି ମୁଁ ବୋଲାଇ ।।
ଭୟ ନିର୍ଭୟ ମୁହିଁ ହେଲି । ଦୟା ନିର୍ଦ୍ଦୟା ବୋଲାଇଲି ।।
ଜ୍ଞାନ ଅଜ୍ଞାନ ହେଲି ମୁହିଁ । ସାଧୁ ଅସାଧୁ ମୁଁ ଅଟଇ ।।
ହେତୁ ଅହେତୁ ମୁହିଁ ଜାଣ । ଯୋଗୀ ଅଯୋଗୀ ହେଲି ପୁଣ ।।
ବିକାର ଅବିକାର ମୁହିଁ । ପାପ ପୁଣ୍ୟଟି ମୁଁ ଅଟଇ ।।
ତୀର୍ଥ ବାରବ୍ରତଟି ହେଲି । ଉପାସ ଓଷା ବୋଲାଇଲି ।।
ଦାନୀ ଅଦାନୀ ମୁହିଁ ଜାଣ । କର୍ମ ଅକର୍ମ ଅଟେ ପୁଣ ।।
ଦାନୀ ବିଦ୍ୟାଟି ମୁଁ ଅଟଇ । ବିଶ୍ୱାସଘାତକଟି ମୁହିଁ ।।
ସର୍ବ ସମଟି ମୁହିଁ ହେଲି । ଶୁଦ୍ଧ ଅଶୁଦ୍ଧ ବୋଲାଇଲି ।।
ତର୍କ ବିତର୍କ ମୁହିଁ ଜାଣ । ସୁର ଅସୁର ମୁହିଁ ପୁଣ ।।
ବଳବନ୍ତଟି ମୁହିଁ ହେଲି । ନିର୍ମଳ ମୁହିଁ ବୋଲାଇଲି ।।
ପ୍ରତାପୀ ସାହସୀ ମୁଁ ଜାଣ । ଏବେ କହିବି ତୁହି ଶୁଣ ।।
କ୍ଷୟ ଅକ୍ଷୟ ମୁଁ ବୋଲାଇ । ମୁହିଁଟି ଜୀଅଇ ମରଇ ।।
ରୂପ ଅରୂପ ବୋଲାଇଲି । ଜୀବ ଅଜୀବ ମୁହିଁ ହେଲି ।।
ଜପା ଅଜପା ମୁହିଁ ଜାଣ । ମୁଁ ହର୍ତ୍ତାକର୍ତ୍ତା ଯେ ପ୍ରମାଣ ।।
ନିର୍ଦ୍ଧନୀ ଧନୀ ମୁହିଁ ହେଲି । କାୟା ଅକାୟା ବୋଲାଇଲି ।।

 

ସ୍ଥାନ ଅସ୍ଥାନ ହେଲି ମୁହିଁ । ସୁଖ ଅସୁଖ ମୁଁ ଅଟଇ ।।
ମୁଁ ପରାପର ମୁହିଁ ଜାଣ । ଏହା ତୁ ହେତୁ କରି ଘେନ ।।
ଆବର ଖେଳଇ ଯେମନ୍ତେ । ମୁଁ ଏବେ କହିଦେବି ତୋତେ ।।
କହଇ ଅରକ୍ଷିତ ଦାସ । ପ୍ରଭୁଙ୍କ ମାୟାଟି ଅଶେଷ ।।
ଆହେ ସୁଜନମାନେ କହି । ତା ମାୟା କେହି ନ ଜାଣଇ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ସପ୍ତମୋଽଧ୍ୟାୟଃ ।

## ଅଷ୍ଟମ ଅଧ୍ୟାୟ

ଚୈତନ୍ୟ କହେ ମନେ ଚାହିଁ । ତୁ ତୋର ଅର୍ଦ୍ଧ ଅଙ୍ଗ ହୋଇ ।।
ଛପନ କୋଟି ଜୀବ ହେଲି । ତୋତେ ମୁଁ ଘେନି ବିହରିଲି ।।
ମୁଁ ଯେଣୁ ନାନା ରୂପ ଧରି । ତେଣୁ ମୁଁ ବ୍ରହ୍ମ ମାୟା କରି ।।
ମାୟାକୁ ସତ୍ୟ ତୁ ମଣିଲୁ । ତୁ ମୋତେ ଚିହ୍ନି ନ ପାରିଲୁ ।।
ମୁଁ ଏବେ କହିଦେବି ପୁଣ । ଯେତେରୂପ ଏ ମୋ ଭିଆଣ ।।
ନାନା ବୃକ୍ଷଟି ହେଲି ମୁହିଁ । ନାନା ପୁଷ୍ପଟି ମୁଁ ବୋଲାଇ ।।
ନାନା ଫଳଟି ମୁହିଁ ହେଲି । ନାନା ମୂଳଟି ବୋଲାଇଲି ।।
ନାନା ବସ୍ତୁଟି ମୁହିଁ ଜାଣ । ନାନା ଧର୍ମଟି ମୁହିଁ ପୁଣ ।।
ନାନା ପତ୍ର କର୍ଣ୍ଣଟି ମୁହିଁ ଶୁଣ । ନାନା ଔଷଧ ମୁଁ ବୋଲିଣ ।।
ନାନା ଭଜନ ମୁହିଁ ହେଲି । ନାନା ଉପାୟ ବୋଲାଇଲି ।।
ବିଷ ଅମୃତ ହେଲି ମୁହିଁ । ନାନା ଜନ୍ତୁଟି ମୁଁ ବୋଲାଇ ।।
ନାନା ମଂସଟ ହେଲି ମୁହିଁ । ଗେଣ୍ଡା କୋଚିଆ ମୋତେ କହି ।।
ନାନା ପୋକ ଯେ କୀଟ ମୁହିଁ । ନାନା ପକ୍ଷୀ ଜନ୍ତୁ ବୋଲାଇ ।।
ନାନା ମାଛି ଡାଆଁଶ ବୋଲି । ବ୍ୟାଘ୍ର ଭାଲୁ ରୂପ ଧଇଲି ।।
ହସ୍ତୀ ଘୋଡ଼ାଟି ହେଲି ମୁହିଁ । ଗୋରୁ ମଇଁଷି ମୁଁ ବୋଲାଇ ।।
ବରାହ ମୃଗ ହେ ମୟୂର । ବିରାଡ଼ି ମୂଷା ଯେ କୁକ୍କୁର ।।
ଇତ୍ୟାଦି ଜୀବଜନ୍ତୁ ଯେତେ । ମୁଁ ହୋଇଅଛି ଜାଣ ନିତ୍ୟେ ।।

ନାନାରୂପଟି ହେଲି ମୁହିଁ । ସୁଗନ୍ଧ ଦୁର୍ଗନ୍ଧ ବୋଲାଇ ।।
ବିଷ୍ଠା କୃମିଟି ମୁହିଁ ଜାଣ । ବାସ ଅବାସ ହେଲି ପୁଣ ।।
ନାନା ପଦାର୍ଥ ହେଲି ମୁହିଁ । ନାନା ରଙ୍ଗଟି ମୁଁ ବୋଲାଇ ।।
ଆମ୍ଳିଳ ପିତା ମୁହିଁ ହେଲି । କଷା ମଧୁର ବୋଲାଇଲି ।।
ଛପନ କୋଟି ଜୀବ ମୁହିଁ । ମୋ ବିନୁ ଆନ ନାହିଁ କେହି ।।
ସକଳ ଏକତ୍ୱ ମଣିବୁ । ଭୟ ଯେ କାହିଁ ନ ରଖିବୁ ।।
ସକଳ ଏକତ୍ୱ ମଣିଲେ । ଯୁଗ ଯୁଗାନ୍ତେ ଥିବୁ ଭଲେ ।।
ଅକ୍ଷୟ ଅମରେ ତୁ ରହି । ଆଉ କଥାଏ ଶୁଣ କହି ।।
ସର୍ବ ଦେବଟି ମୁହିଁ ଜାଣ । କିଛି କହିବି ମୁଁ ଫେଡ଼ିଣ ।।
ତେତିଶ କୋଟି ଦେବ ମୁହିଁ । ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ବୋଲାଇ ।।
ଯମ ନଇରତ କୁବେର । ଆଇରାବତ ନାମ ମୋର ।।
ବରୁଣ ବୃହସ୍ପତି ମୁହିଁ । ଦଶ ଦିଗପାଳ ବୋଲାଇ ।।
ବହନ୍ତା ଜଳ ମୁଁ ପବନ । ର ନବଗ୍ରହ ବୋଲି ଜାଣ ।।
ଏଗାର କାରଣଟି ମୁହିଁ । ବାର ଚନ୍ଦ୍ରଟି ମୁଁ ବୋଲାଇ ।।
ସତାଇଶ ନକ୍ଷତ୍ର ହେଲି । ଅପ୍ସରାବୃନ୍ଦ ବୋଲାଇଲି ।।
ଦୁନ୍ଦୁଭି କିନ୍ନରଟି ମୁହିଁ । ଚାରଣ ସୁସିନ୍ଧୁ ବୋଲାଇ ।।
ଦ୍ୱାଦଶ ବିଶ୍ୱଦେବା ଜାଣ । ରୁଦ୍ରଗଣଟି ମୁଁ ପ୍ରମାଣ ।।
ରାକ୍ଷସ ଗଣ ମୁହିଁ ହେଲି । ପିତୃଗଣଟି ବୋଲାଇଲି ।।
ସର୍ବ ଦେବଟି ମୁହିଁ ଜାଣ । କିଛି କହିବ ଫେଡ଼ି ଶୁଣ ।।
ତେତିଶ କୋଟି ଦେବ ମୁହିଁ । ଇନ୍ଦ୍ର ଚନ୍ଦ୍ର ମୂଳ ବୋଲାଇ ।।
ମଙ୍ଗଳା ଦୁର୍ଗା ହେଲି ମୁହିଁ । କାଳୀ କପାଳୀ ମୁଁ ବୋଲାଇ ।।
ଚଣ୍ଡି ଚାମଣ୍ଡା ମୁହିଁ ହେଲି । ଭୂତ ପ୍ରେତଟି ବୋଲାଇଲି ।।
ଡାହାଣୀ ଡାକିନୀଟି ମୁହିଁ । ଦେବ ଦେବଟି ମୁଁ ବୋଲାଇ ।।
ବାଦ୍ୟ ମୃଦଙ୍ଗ ମୁହିଁ ଜାଣ । ଢୋଲ ଚମକ ମୁଁ ପ୍ରମାଣ ।।
ବୀଣା ମହୁରୀ ମୁହିଁ ହେଲି । ତୁରୀ କାହାଳୀ ବୋଲାଇଲି ।।
ଦୁନ୍ଦୁଭି ବାଦ୍ୟ ନାଦ ଜାଣି । ନାନା ଶବଦ ହେଲି ପୁଣି ।।
ଊନକୋଟି ବାଦ୍ୟଟି ମୁହିଁ । ନୃତ୍ୟ ଗୀତ ନାଦ ବୋଲାଇ ।।
ଯାହାକୁ ଯେମନ୍ତେ ଶବଦ । ପୂରାଇଅଛି ସର୍ବଠାବ ।।
ସର୍ବଠାବଟି ମୁହିଁ ହେଲି । ଶବଦ ରୂପେ ବିହରିଲି ।।

ଶିଳା ଦାରୁ ଯେ ରୂପେ ହେଲି । ନାନା ପ୍ରତିମା ବୋଲାଇଲି ॥
ମୁଁ ତୋତେ ପୂଜା ଯେ କରଇ । ଶୁଣ ସୁଜନେ ମନ ଦେଇ ॥
ଏହା ତୁ ମନେ ହେତୁ କର । ସର୍ବ ଦେଖିବୁ ମୋ ଶରୀର ॥
କହଇ ଅରକ୍ଷିତ ଦାସ । ହେ ପ୍ରଭୁ ମାୟା କର ନାଶ ॥

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ଅଷ୍ଟମୋଽଧ୍ୟାୟଃ ।

## ନବମ ଅଧ୍ୟାୟ

ମନଚୈତନ୍ୟ ପାଦେ ପଡ଼ି । ଭୋ ସ୍ୱାମୀ କହ ସବୁ ଫେଡ଼ି ॥
ପୃଥ୍ୱୀରେ ଯେତେ ରୂପ ତୁହି । କହିବୁ ସବୁ କଥା ଫେଇ ॥
ମୁଁ ତୁମ୍ଭ ଚରଣେ ଶରଣ । ମୋତେ ଉଦ୍ଧାର ଭଗବାନ ॥
ଏ ଦେହ ଗୋଟିକି ରଖିବ । ତୁମ୍ଭର ମାୟାରୁ ତାରିବ ॥
ଚୈତନ୍ୟ କହେ ମନ ଶୁଣ । ମୁଁ ଯେତେ ରୂପ ଅଛି ପୁଣ ॥
ସଂସାର ଗୋଟି ମୁଁ ହୋଇଲି । ତହିଁରେ ବିହାର ମୁଁ କଲି ॥
ପୃଥିବୀ ବୋଲି ମୁହିଁ ଜାଣ । ମାଟି ରୂପରେ ମୁଁ ଭିଆଣ ॥
ଗୋଡ଼ି ବାଲିଟି ମୁହିଁ ଦେଲି । ପଥର ରୂପଟି ଧଇଲି ॥
ଖାଲ ଢିପଟି ମୁହିଁ ହେଲି । ମୁଁ ନଦୀ ନାଳ ବୋଲାଇଲି ॥
କୂଅ ପୋଖରୀ ମୁହିଁ ହେଲି । ଲତା ବନସ୍ତ ବୋଲାଇଲି ॥
ନବ ଦ୍ୱୀପଟି ମୁହିଁ ଜାଣ । ଚାରିଖାନିଟି ମୁଁ ପ୍ରମାଣ ॥
ଚାରିଦିଗଟି ହେଲି ମୁହିଁ । ଚାରି ବାଟଟି ମୁଁ ବୋଲାଇ ॥
ବାସୁକୀ ସର୍ପ ହେଲି ମୁହିଁ । ପୃଥିବୀ ଶିରେ ଅଛି ବହି ॥
ଝାଡ଼ ପର୍ବତ ମୁହିଁ ଜାଣ । ବୃକ୍ଷ ତିରଣ ମୁଁ ପ୍ରମାଣ ॥
ଜଳ ପାଷାଣ ମୁଁ ଅଟଇ । ଅନଳ ପବନଟି ମୁହିଁ ॥
ନକ୍ଷତ୍ର ରୋମାବଳୀ ମୁହିଁ । ନବଗ୍ରହଟି ମୁଁ ଅଟଇ ॥
ଚାରିଦ୍ୱାର ମୁହିଁ ହୋଇଲି । ଚାରି ସମ୍ପ୍ରଦା ବୋଲାଇଲି ॥
ଅନନ୍ତ କୋଟି ସାଧୁ ମୁହିଁ । ବାଳକ ବୃଦ୍ଧ ମୁଁ ଅଟଇ ॥

ଚୌରାଶୀ ସିଦ୍ଧି ମୁହିଁ ହେଲି । ନରନାଥ ମୁଁ ବୋଲାଇଲି ।।
ଚୌରାଶୀ କାଠି ଗଙ୍ଗା ମୁହିଁ । ଚୌରାଶୀ ଜନ୍ତୁ ମୁଁ ବୋଲାଇ ।।
ଚାରି ଧାମଟି ମୁଁ ହୋଇଲି । ମୁଁ ହର୍ତ୍ତା କର୍ତ୍ତା ବୋଲାଇଲି ।।
ବେଦ ପୁରାଣ ମୁହିଁ ଜାଣ । ମୁଁ ଗୀତା ଅର୍ଥ କଲି ପୁଣ ।।
ଅଷ୍ଟାଦଶ ଗ୍ରନ୍ଥଟି ମୁହିଁ । ଦ୍ୱାଦଶ ସ୍କନ୍ଧଟି ବୋଲାଇ ।।
ମୁଁ ସାତଖଣ୍ଡ ରାମାୟଣ । ତୋତେ କହିଲି ଏବେ ଶୁଣ ।।
ମୁଁ ସପ୍ତଖଣ୍ଡ ହରିବଂଶ । ମୁଁ ବାଦ୍ୟବିଦ୍ୟା ଜଉତିଶ ।।
ନବ ନାଟକ ମୁହିଁ ହେଲି । ମୁଁ ବାଦ୍ୟବିଦ୍ୟା ବୋଲାଇଲି ।।
ସୂତ୍ର ମାତ୍ରଟି ମୁହିଁ ପୁଣ । ଜପ ସମର୍ପଣ ମୁହିଁ ଜାଣ ।।
ଭକ୍ତି ପ୍ରେମଟି ମୁହିଁ ହେଲି । ନବଧା ଭକ୍ତି ବୋଲାଇଲି ।।
ଶୀତ ଗ୍ରୀଷମ ମୁହିଁ ଜାଣ । କୁହୁଡ଼ି ଜାକର ମୁଁ ପୁଣ ।।
ଝଡ଼ି ବରଷା ମୁଁ ବୋଲାଇ । ଘଡ଼ଘଡ଼ି ଶବଦ ମୁଁ ହୋଇ ।।
ଭୂଲୋକ ବ୍ରହ୍ମଲୋକ ପୁଣ । ସୁରଲୋକଟି ମୁହିଁ ଜାଣ ।।
ଜନଲୋକଟି ହେଲି ମୁହିଁ । ତପଲୋକଟି ମୁଁ ବୋଲାଇ ।।
ସ୍ଥାବର ଜଙ୍ଗମଟି ଜାଣ । ମୁଁ କୀଟପତଙ୍ଗ ପ୍ରମାଣ ।।
ଚଳନ୍ତା ଚୌଦକୋଟି ମୁହିଁ । ଶୁଣ ସୁମନ ଚିତ୍ତ ଦେଇ ।।
ନିଶ୍ଚଳ ଚୌଦକୋଟି ହେଲି । ତୋତେ ମୁଁ ଗୁପତ କହିଲି ।।
ଉଡ଼ା ଚଉଦ କୋଟି ପୁଣ । ମୁଁ ହୋଇଅଛି ସର୍ବଜାଣ ।।
ବୁଡ଼ା ଚଉଦ କୋଟି ମୁହିଁ । ମୁଁ ସୁଖେ ବିହାର କରଇ ।।
ଛପନ କୋଟି ଜୀବ ହେଲି । ମୁଁ ନାନା ରୂପେ ଲୀଳାକଲି ।।
ମୁହିଁଟି ସଂସାରେ ପୂରିଛି । ମୋ ବିନୁ ଅନ୍ୟ ନାହିଁ କିଛି ।।
ବ୍ରହ୍ମାଣ୍ଡେ ଯେତେ ବିଧିମତ । ତୁଣ୍ଡରେ ଅଛଇ ସମସ୍ତ ।।
ପିଣ୍ଡ ବ୍ରହ୍ମାଣ୍ଡ ମୁହିଁ ହେଲି । ମୁଁ ତୋତେ ଗୁପତେ କହିଲି ।।
ତୁ ଏବେ ଶୁଣ ମୋ ବଚନ । ସକଳ ଦେଖ ତୁ ସମାନ ।।
ଛପନ କୋଟି ଜୀବ ମୁହିଁ । ତୁ ଏବେ ଡରୁ କାହିଁପାଇଁ ।।
ମୁଁ ଏବେ କହୁଅଛି ତୋତେ । ଡର ଭୟ ନ କର ଚିତ୍ତେ ।।
ସଂସାର ଦେଖ ଏକୋକାର । ତେବେ ହୋଇବୁ ଅଜ୍ରାମର ।।
ମନ ଚୈତନ୍ୟ ମୁଖ ଚାହିଁ । ମୁଁ ଏବେ ଜାଣିଲି ଗୋସାଇଁ ।।
ତୁମ୍ଭ ସୁଦୟା ମୋରେ ହେଉ । ଏ ମାୟା ବେଗ ଦୂର ଯାଉ ।।

ଏ ସପ୍ତ ବ୍ରହ୍ମାଣ୍ଡ ମଧରେ । ତୋ ତହୁଁ ଅନ୍ୟନାହିଁ ପରେ ।।
କିମ୍ବା ତୁ ମୋତେ ମାୟା କଲୁ । ଗୁପତେ ମୋତେ ନ କହିଲୁ ।।
ଚୈତନ୍ୟ କହେ ମନ ତୁହି । ମୋହର ଖେଳ ରସ ଏହି ।।
ଏ ମୋହ ମାୟାରେ ପଡ଼ିଲି । ତୋତେ ମୁଁ ଗୁପତେ କହିଲି ।।
ଏବେ ମୁଁ ତୋତେ କହିଦେବି । ତୋ ମନୁ ସଂଶୟ ଫେଡ଼ିବି ।।
ସର୍ବସମାନ ଦେଖ ଚିତ୍ତେ । ଅମରେ ରଖିବି ମୁଁ ତୋତେ ।।
ଏ ଘେନି ତୋତେ କହିଲଇଁ । ସମ ହୋଇଣ ମୁହିଁ ଥାଇ ।।
ସମାନ ଦେଖିଲେ ତୁ ଥିବୁ । ନୋହିଲେ ଅବଶ୍ୟ ମରିବୁ ।।
ଏହି ଦେହକୁ ଛାଡ଼ିଯିବୁ । ଯେବେ ତୁ ଚିହ୍ନି ନ ପାରିବୁ ।।
ଏହି ଦେହରୁ ତୁହି ଯିବୁ । ମୋର ଦେହରେ ସମ୍ଭାଇବୁ ।।
ତୋ ଦେହ ମୋ ଦେହ ଏକତ୍ୱ । ଭିନ୍ନଟି ନାହିଁ କଦାଚିତ ।।
ମୁଁ ତୋତେ ଜୀବ ଅତ୍ମା କଲି । ସଂସାରଯାକ ବିହରିଲି ।।
ଚୈତନ୍ୟ କହେ ମନ ଶୁଣ । ତୁ ଏବେ ଦେଖ ହେ ସମାନ ।।
କହଇ ଅରକ୍ଷିତ ଦାସ । ମହୀମଣ୍ଡଳ ଗୀତା ରସ ।।
ଏ ଗୀତା ସାଧି ଯେ ପାରିବ । ସଂସାରେ ଅମର ହୋଇବ ।।
ମୋ ବିନୁ ଅନ୍ୟ ଗତି ନାହିଁ । ଶୁଣ ସୁଜନ ଚିତ୍ତ ଦେଇ ।।
ପାରିଲେ ଏହା ସାଧ କର । ଯେବେ ହୋଇବୁ ଅଜ୍ରାମର ।।
ସୁଜନେ ନ ଘେନିବ ଦୋଷ । ମୁଁ ତୁମ୍ଭ ଦାସଙ୍କର ଦାସ ।।
ସେବଇ ସୁଜନ ପୟର । ଏ ଦୋଷ କ୍ଷମାକର ମୋର ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ନବମୋଽଧ୍ୟାୟଃ ।

## ଦଶମ ଅଧ୍ୟାୟ

ମନ ଚୈତନ୍ୟ ମୁଖ ଚାହିଁ । ଜୟ ଶବଦେ ଗୀତ ଗାଇ ।।
ନମୋ ନମସ୍ତେ ଯୋଗେଶ୍ୱର । ମୋର ଅପ୍ରାଧ କ୍ଷମାକର ।।
ନମୋ ନମସ୍ତେ ଦେବସ୍ୱାମୀ । ନମୋ ନମସ୍ତେ ଅନ୍ତର୍ଯ୍ୟାମୀ ।।
ନମୋ ନମସ୍ତେ ଭକ୍ତବନ୍ଧୁ । ନମୋ ନମସ୍ତେ କୃପାସିନ୍ଧୁ ।।

ନମୋ ନମସ୍ତେ ଦୀନବନ୍ଧୁ । ନମୋ ନମସ୍ତେ ମହାସିନ୍ଧୁ ।।
ନମୋ ନମସ୍ତେ ହେ ଜୀବନ । ନମୋ ନମସ୍ତେ ହେ ପରମ ।।
ନମୋ ନମସ୍ତେ ନାରାୟଣ । ନମୋ ନମସ୍ତେ ଭଗବାନ ।।
ନମୋ ନମସ୍ତେ ପରଂବ୍ରହ୍ମ । ମହାଶୂନ୍ୟ ଯେ ତୋ ଆଶ୍ରମ ।।
ନମୋ ନମସ୍ତେ ଦଇତ୍ୟାରି । ନମୋ ନମସ୍ତେ ନରହରି ।।
ନମୋ ନମସ୍ତେ ହେ ରାଘବ । ନମୋ ନମସ୍ତେ ହେ ମାଧବ ।।
ନମୋ ନମସ୍ତେ ଦାଶରଥି । ନମୋ ନମସ୍ତେ ଜୀବପତି ।।
ନମୋ ନମସ୍ତେ ହର୍ତ୍ତା କର୍ତ୍ତା । ନମୋ ନମସ୍ତେ ମୋକ୍ଷଦାତା ।।
ନମୋ ନମସ୍ତେ ହେ ମୁକୁନ୍ଦ । ନମୋ ନମସ୍ତେ ରାମଚନ୍ଦ୍ର ।।
ନମୋ ନମସ୍ତେ ବିଷ୍ଣୁ ହର । ନମୋ ନମସ୍ତେ ଦେବବର ।।
ନମୋ ନମସ୍ତେ ଗୋବର୍ଦ୍ଧନ । ନମୋ ନମସ୍ତେ ଘନଶ୍ୟାମ ।।
ନମୋ ନମସ୍ତେ ଦାମୋଦର । ନମୋ ନମସ୍ତେ ପୀତାମ୍ବର ।।
ନମୋ ନମସ୍ତେ ଚିନ୍ତାମଣି । ନମୋ ନମସ୍ତେ ଚକ୍ରପାଣି ।।
ନମୋ ନମସ୍ତେ ନିରଞ୍ଜନ । ନମୋ ନମସ୍ତେ କଳ୍ପଦ୍ରୁମ ।।
ନମୋ ନମସ୍ତେ ବିଶ୍ୱଗୁରୁ । ନମୋ ନମସ୍ତେ କଳ୍ପତରୁ ।।
ନମୋ ନମସ୍ତେ ବାଞ୍ଛାନିଧି । ମୋ ବାଞ୍ଛା କରହେ ପ୍ରସିଦ୍ଧି ।।
ନମୋ ନମସ୍ତେ ମହାପ୍ରଭୁ । ଏ ଦେହ କିମ୍ପାଇଁ ରଖିବୁ ।।
ଏ ଦେହ ଯେବେ ତୁ ରଖିବୁ । ଭକତି ଯୋଗମାର୍ଗେ ଦେବୁ ।।
ଆନେ ମୋହର କାର୍ଯ୍ୟ ନାହିଁ । ମୁଁ ସତ୍ୟ କହିଲି ଗୋସାଇଁ ।।
ଭକତି ଯୋଗ ମୁଁ ସାଧିବି । ଝାଡ଼ ପର୍ବତେ ବିହରିବି ।।
ଝାଡ଼ ପର୍ବତେ ମୁହିଁ ଥିବି । ଭକତି ଯୋଗ ମୁଁ ସାଧିବି ।।
ଏମନ୍ତ ମନେ ମୁଁ ପାଞ୍ଚିଲି । ପାଞ୍ଚି ମୁଁ ଘରକୁ ଅଇଲି ।।
ସେ ପାଞ୍ଚ ନ ରଖିଲୁ ତୁହି । ମୋହର କିଛି ଦୋଷ ନାହିଁ ।।
ତୋହର ଦୟା ଯେବେ ହୋନ୍ତା । ଏ କିମ୍ପା ଗୃହରେ ବୁଲନ୍ତା ।।
ତୋର ନିର୍ଦ୍ଦୟା ମୋତେ ହୋଇ । ମୁଁ ଏବେ ସାଧି ନ ପାରଇ ।।
ତୋର ସୁଦୟା ହେବ ଯେବେ । କିଛିତେ ସାଧିବି ମୁଁ ତେବେ ।।
ମୋହର ଦୋଷ ତୁ ନ ଘେନ । ମୁଁ ତୁମ୍ଭ ଚରଣେ ଶରଣ ।।

ତୋର ମାୟାରେ ମୁଁ ଭ୍ରମଇ । ଭକତି ସାଧି ନ ପାରଇ ।।
ଏବେ ମୁଁ କହୁଅଛି ଶୁଣ । ମୋତେ ଉଦ୍ଧାର ଭଗବାନ ।।
ଖଣ୍ଡଗିରିରେ ମୁଁ ରହିଲି । ଭକତି ସାଧି ନ ପାରିଲି ।।
ଖଣ୍ଡଗିରିରୁ ମୋତେ ନିଅ । ଭକତି ମୋର ଯେ ସଧାଅ ।।
ଝାଡ଼ ପର୍ବତରେ ବୁଲାଅ । ମୋ ମନ ଶାନ୍ତି ଯେ କରାଅ ।।
ଆହାର ନିଦ୍ରା ମଇଥୁନ । ଏମାନ ଦୂର ଯାଉ ପୁଣ ।।
କ୍ଷୁଧା ତୃଷାହିଁ ଦୂରେ ଯାଉ । ଶୁଣ ହେ ପ୍ରଭୁ ମହାବାହୁ ।।
ଖରା ବରଷା ଶୀତ ମୁହିଁ । କେମନ୍ତେ ସହିବି ଗୋସାଇଁ ।।
ଭୟ ଛାଡ଼ି ନିର୍ଭୟ ହେବି । ତେବେ ମୁଁ ତୁମ୍ଭକୁ ଚିହ୍ନିବି ।।
ତୁମ୍ଭର ଦୟା ମୋତେ ହେଉ । ଏମାନ ବେଗେ ଦୂରେ ଯାଉ ।।
ଚୈତନ୍ୟ କହେ ମନ ଶୁଣ । ସକଳ ଦେଖ ତୁ ସମାନ ।।
ଖରା ବରଷା ଶୀତ ମୁହିଁ । ତୁ ଏବେ ଡରୁ କାହିଁ ପାଇଁ ।।
ଚୌଷଠି ରୋଗ ମୁହିଁ ଜାଣ । ତୁ ଏବେ ନ ଡର ହେ ପୁଣ ।।
ମୋତେ ଯେ ଚିହ୍ନି ନ ପାରଇ । ମୋ ମାୟା ତାକୁ ଯେ ଘାରଇ ।।
ଭକତି ଯୋଗ ସାଧ କର । ମୋ ମାୟା ହୋଇଯିବ ପାର ।।
ଭକତି ଯୋଗ ତୁ ସାଧିଲେ । ଯୁଗଯୁଗାନ୍ତେ ଥିବୁ ଭଲେ ।।
ଅଜର ଅମର ତୁ ହେବୁଁ । ଯେବେ ତୁ ଏ ଯୋଗ ସାଧିବୁ ।।
ନାନା ଯୋଗଟି ମୁଁ ହୋଇଛି । ନାନା ଭଜନେ ମୋର ଅଛି ।।
ନାନା ମନ୍ତ୍ରଯନ୍ତ୍ରଟି ମୁହିଁ । ନାନା ତୀର୍ଥଟି ମୁଁ ବୋଲଇ ।।
ନାନା ଔଷଧ ମୁହିଁ ଦେଲି । ତୋତେ ମୁଁ ବୁଝାଇ କହିଲି ।।
ଏ ସର୍ବ ସତ୍ୟ ତୁ ନ ମଣ । ମୋ ମାୟା ବୋଲି ସବୁ ଜାଣ ।।
ଏ ସର୍ବ ମାୟାର ସଂସାର । ଭକତି ଭାବେ ତତ୍ତ୍ୱ ଯାର ।।
ମୋ ନାମ ହୃଦେ ଦୃଢ଼ କର । ସର୍ବ ଦେଖିବୁ ଏକାକାର ।।
କହଇ ଅରକ୍ଷିତ ଦାସ । ମହୀମଣ୍ଡଳ ଗୀତା ରସ ।।
ଆହେ ସୁଜନମାନେ ମୁହିଁ । ଖଣ୍ଡଗିରିରେ ଯେ ଭ୍ରମଇ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ଦଶମୋଽଧ୍ୟାୟଃ ।

# ଏକାଦଶ ଅଧ୍ୟାୟ

ଆହେ ଚୈତନ୍ୟ ଶୁଣ କହି । ଖଣ୍ଡଗିରିରେ ଥାଇ ମୁହିଁ ।।
କେଡ଼େକ ଅନ୍ୟାୟ ମୁଁ କଲି । ତୁମ୍ଭର ସେବା ମୁଁ ଛାଡ଼ିଲି ।।
ଏକାନ୍ତ ହୋଇବି ବୋଲିଣ । ବିଚାର କଲି ମନେ ମନ ।।
ସେ ମନ ତୁହି ହରି ନେଲୁ । ମାୟା ମୋହରେ ନାଶକଲୁ ।।
ନିର୍ଦ୍ଦୋଷ ଜୀବଙ୍କୁ ମାରିଲି । ଗୁମ୍ଫା ଗୁଡ଼ାଏ ଓଗାଇଲି ।।
ଗଛ ବୃକ୍ଷ ଗୁଡ଼ାଏ ହାଣି । ଅପ୍ରାଧ ଅର୍ଜିଲି ମୁଁ ପୁଣି ।।
ପାଷାଣ ଗୁଡ଼ାଏ କାଟଇ । ଲୋକଙ୍କୁ ବଡ଼ କଷ୍ଟ ଦେଇ ।।
ନିଶ୍ଚୟ କିଛି ନ ଜାଣିଲି । ତୋର ମାୟାରେ ମୁଁ ଭ୍ରମିଲି ।।
ତୋର ମାୟାରେ ମୁଁ ଭ୍ରମଇ । ସଙ୍ଗତେ କେବେ ନ ଛାଡ଼ଇ ।।
ଏବେ କିଞ୍ଚିତେ ଦୟା କର । ଆୟତ୍ତ ନାହିଁ ଯେ ମୋହର ।।
ତୁମ୍ଭର ଦୟା ହେଲେ ମୁହିଁ । ଖଣ୍ଡଗିରିକି ଛାଡ଼ିବଇଁ ।।
ନୋହିଲେ ଛାଡ଼ି ନ ପାରିବି । ଅପ୍ରାଧୀ ହୋଇଣ ମରିବି ।।
ମିଛ ସତରେ ଘାଣ୍ଟି ହେଲି । ପେଟର ଜ୍ୱାଳା ନ ସହିଲି ।।
ଖରା ବରଷା ଶୀତ ମୁହିଁ । ଏହା ତ ସହି ନ ପାରଇ ।।
କ୍ଷୁଧା ତୃଷା ଯେ ନିଦ୍ରା ଭୟ । ଚୌଷଠି ରୋଗ ଅଛି ଦେହ ।।
ଏ ସର୍ବେ ମୋତେ ଯେ ବାନ୍ଧିଲେ । ତୋର ଭକତି ଛଡ଼ାଇଲେ ।।
ଏହାଙ୍କ ସଙ୍ଗେ ବଶ ହେଲି । ତୋତେ ମୁଁ ଜାଣି ନ ପାରିଲି ।।
ତୁହିଁ ତୁ ମୋତେ ମାୟା କଲୁ । ପାପ ପୁଣ୍ୟରେ ପକାଇଲୁ ।।
ମୋହର କିଛି ଦୋଷ ନାହିଁ । ମୋତେ ନିର୍ଭୟ କଲୁ ତୁହି ।।
ତୋହର ଦୟା ଯେବେ ହୋନ୍ତା । ଏ କିମ୍ପା ଗ୍ରାମରେ ରହନ୍ତା ।।
ତୁହି ତ ମୋତେ ବାନ୍ଧିଅଛୁ । ସର୍ବ ପ୍ରକୃତି ସେ ହୋଇଛୁ ।।
ତୋ ବିନୁ ଏ ଦେହରେ କେହି । ନାହାନ୍ତି ବାରେ ମୁଁ ଜାଣଇ ।।
ଜଳ ପବନ ଅଗ୍ନି ହେଲି । ରକତ ମାଂସ ହାଡ଼ କଲି ।।
ଏ ତିନି ରୂପୁଁ ସର୍ବଜାତ । ଏ ତିନି ସର୍ବତିରେ ହତ ।।
ଏ ତିନି ଜୀଅନ୍ତି ମରନ୍ତି । ତିନି ଭୁବନ ହୋଇଛନ୍ତି ।।
ଏ ତିନିରୁ କେ ମରଇ । ଏହା ଜାଣନ୍ତା କେହି କାହିଁ ।।

 

ତୁହି ସୁଦୟା ଯାରେ କରୁଁ । ଜନ୍ମ ମୃତ୍ୟୁରୁ ତାକୁ ତାରୁ ।।
ନୋହିଲେ ଗତି ଆଉ ନାହିଁ । ପାପ ପୁଣ୍ୟରେ ସେ ମରଇ ।।
ପାପ ପୁଣ୍ୟକୁ ଏକ କଲେ । ସେ ପିଣ୍ଡ ନାଶନୋହେ ଭଲେ ।।
ପାପକୁ ଯେହ୍ନୁ ଜାତ ହେଲା । ପୁଣ୍ୟଟି ଜଗତେ ଘୋଟିଲା ।।
ପାପରେ ବେଗେ ଆଶ୍ରେକର । ପୁଣ୍ୟକୁ ଘେନି ସଙ୍ଗତର ।।
ଏ ଦୁଇ ଏକ ବୋଲି ମୁହିଁ । ନ ଜାଣେ ତୋର ମାୟାହୋଇ ।।
ଏ ଦୁଇ ଏକ ମନେ କଲି । ତୋତେ ମୁଁ ଛାଡ଼ି ନାଶ ହେଲି ।।
ତୋହର ଦୟା ଯେବେ ହେବ । ଏ ଦୁଇ ଏକ ଯେ ରହିବ ।।
ନୋହିଲେ କେବେ ସଙ୍ଗ ନାହିଁ । ଭିନ୍ନା ଭିନ୍ନ କରି ସରଇ ।।
ଭିନା ଭିନ୍ନଟି କରେ ଏହୁ । ତୋତେ ପାଇବି ଅବା କାହୁଁ ।।
ଯେବେ ସୁଦୟା ତୁମ୍ଭେ କର । କିଛି ନ ମାଗଇ ପାମର ।।
ରଖିଲେ ରଖ ମୁଁ ଜାଣଇ । ତୁମ୍ଭ ବ୍ୟତୀତ କେ ଅଛଇ ।।
ଦୁର୍ଲ୍ଲଭ ଶରୀର ପାଇଲି । ଏହାକୁ ଏବେ ନ ଚିହ୍ନିଲି ।।
ଏହାକୁ ଏହି ଯେ ଚିହ୍ନଲେ । ଏ ଦେହ ରହନ୍ତା ଯେ ଭଲେ ।।
ଏହାକୁ ଏହି ନ ଚିହ୍ନଇ । ଖୋଜିଲେ ପାଇବଟି କାହିଁ ।।
କାଷ୍ଠ ପାଷାଣ ରୁଦ୍ରାକ୍ଷରେ । ଖୋଜିଲେ ନାହିଁଟି ତହିଁରେ ।।
ମନ୍ତ୍ର ଯନ୍ତ୍ରେ ଧାନରେ ନାହିଁ । ତୀର୍ଥ ବ୍ରତରେ ସେହୁ କାହିଁ ।।
ଜଳ ଆହାର ନାହିଁ ଜାଣେ । କ୍ଷୀର ପବନ କାହୁଁ ପୁଣ ।।
ଗୁମ୍ଫା ଭିତରେ ପଶି ରହୁ । ତୋତେ ପାଇବେ କାହିଁ ସେହୁ ।।
ଉଲଗ୍ନ ହୋଇ ଭ୍ରମୁଥାଇ । ବଚନ କାହାକୁ ନ କହଇ ।।
ସେହିଟି ଅନଙ୍ଗ ଅଟଇ । ତୋତେ ପାଇବ ଅବା କାହିଁ ।।
ଏ ତୋ ବିଚିତ୍ର ମାୟା କଲୁ । ନାନା କର୍ମରେ ଭୁଲାଇଲୁ ।।
ତେଣୁଟି ଅଜ୍ଞାନ ହୋଇଲେ । ନାନାଦି ଦେବତା ପୂଜିଲେ ।।
ତେଣୁ ହୋଇଲେ ଅଳ୍ପାୟୁଷ । ତୋତେ ନ ସେବି ଗଲେ ନାଶ ।।
ମୁଁ ଏବେ କଥାଏ ମାଗୁଛି । ଦିଅ ବା ନ ଦିଅ କହୁଛି ।।
ଦୟାଟି ମୋରେ ଯେବେ ଥିବ । ଭକତିଯୋଗ ମୋତେ ଦେବ ।।
ଏ ବିନୁ ଅନ୍ୟ ନ ମାଗଇ । ନ ଦେଲେ ବେଗେ ନାଶଯାଇ ।।
ସଂସାରେ ଏହୁ କିମ୍ପା ଥିବ । ନାନା କଷ୍ଟଟି ସେ ପାଇବ ।।
ଏ ଯେତେ ପ୍ରକୃତିମାନେ । କଷ୍ଟ ଦିଅନ୍ତି ଅନୁକ୍ଷଣେ ।।

 

ଏହାଙ୍କ ଦାଉ କେ ସହିବ । ଦେହ ଛାଡ଼ିଲେ ସର୍ବ ଯିବ ॥
କହଇ ଅରକ୍ଷିତ ଦାସ । ହେ ପ୍ରଭୁ ଖଣ୍ଡ ମାୟା ତ୍ରାସ ॥
ସୁଜନ ଜନମାନେ ଶୁଣ । ମୋ ଦୋଷ ନ ଘେନିବ ପୁଣ ॥
ଏ ମହୀମଣ୍ଡଳରେ ଭ୍ରମିଲି । ପ୍ରଭୁଙ୍କୁ ସେବି ନ ପାରିଲି ॥

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ଏକାଦଶୋଧ୍ୟାୟଃ ।

## ଦ୍ୱାଦଶ ଅଧ୍ୟାୟ

ହେ ଦେବଦେବ ଚଇତନ୍ୟ । ତୁମ୍ଭ ବ୍ୟତୀତ ଏହୁ ମନ ॥
ଆଉ କାହାକୁ ନ ସେବଇ । ହେ ଦେବଦେବ ଭାବଗ୍ରାହୀ ॥
ହେ ଦେବଦେବ ଜଗତ୍‌କର୍ତ୍ତା । ହେ ଦେବଦେବ ଜଗତ୍‌ପିତା ॥
ହେ ଦେବଦେବ ବ୍ରହ୍ମା ଶିବ । ହେ ଦେବଦେବ ସର୍ବ ଦେବ ॥
ହେ ଦେବଦେବ ବିଷ୍ଣୁ ତୁହି । ତୋହର ରୂପବର୍ଣ୍ଣ ନାହିଁ ॥
ହେ ଦେବଦେବ ଶୂନ୍ୟନାଥ । ତୋର ଶରୀରୁ ଏ ଜଗତ ॥
ହେ ଦେବଦେବ ଶୂନ୍ୟଦେହୀ । ସକଳ ଘଟେ ଅଛୁ ରହି ॥
ହେ ଦେବଦେବ ମହୀପତି । ତିନି ଭୁବନେ ତୋର ସ୍ଥିତି ॥
ହେ ଦେବଦେବ ମହୀଧର । ପୂରି ରହିଛି ପରାପର ॥
ହେ ଦେବଦେବ ତୋ ମହିମା । କେହି ନ ଜାଣେ ତାର ସୀମା ॥
ହେ ଦେବଦେବ ଅନ୍ତର୍ଯ୍ୟାମୀ । ସବୁରି ମନ ତୁମ୍ଭେ ଜାଣି ॥
ହେ ଦେବଦେବ ଭଗବାନ । ଜଳରୂପରେ ତୋ ଭିଆଣ ॥
ହେ ଦେବଦେବ ଦାଶରଥି । ପବନ ରୂପେ ତୋର ସ୍ଥିତି ॥
ହେ ଦେବଦେବ ନାରାୟଣ । ଅଗ୍ନି ରୂପରେ ତୋ ଭିଆଣ ॥
ହେ ଦେବଦେବ ଚନ୍ଦ୍ର ତୁହି । କାଳ ରୂପରେ ନାଶୁ ମହୀ ॥
ହେ ଦେବଦେବ ନିରଞ୍ଜନ । ସୂର୍ଯ୍ୟ ରୂପରେ ତୋ ପାଳନ ॥
ହେ ଦେବଦେବ ମୃତ୍ୟୁକାଳ । ନାଶ କରତା ତୁ ସକଳ ॥
ହେ ଦେବଦେବ କଳ୍ପଦ୍ରୁମ । ପାପ ପୁଣ୍ୟରେ ତୋ ଆଶ୍ରୟ ॥

ହେ ଦେବଦେବ ହୃଷୀକେଶ । ସ୍ୱର୍ଗ ନରକେ ତୋର ବାସ ।।
ହେ ଦେବଦେବ ଘନଶ୍ୟାମ । ଧର୍ମ ଅଧର୍ମେ ତୋ ବିଶ୍ରାମ ।।
ହେ ଦେବଦେବ ନିରାକାର । ସୁର ଅସୁରେ ତୋ ବିହାର ।।
ହେ ଦେବଦେବ ସର୍ବ ତୁହି । ତୋ ବିନୁ ଅନ୍ୟ ନାହିଁ କେହି ।।
ହେ ଦେବଦେବ ଖେଳ ତୋର । ଅନେକ ରୂପ ତୋ ଶରୀର ।।
ହେ ଦେବଦେବ ଜୀବ ତୁହି । ସର୍ବ ଘଟରେ ପୂରି ରହି ।।
ହେ ଦେବଦେବ ତୁ ପରମ । ସର୍ବ ଘଟରେ ତୋ ବିଶ୍ରାମ ।।
ହେ ଦେବଦେବ ଜଗନ୍ନାଥ । ହେ ଦେବଦେବ ଜଗତ୍ତାତ ।।
ହେ ଦେବଦେବ ବ୍ରହ୍ମ ତୁହି । ତୋ ଠାରୁ ସର୍ବେ ପଡ଼ିଖାଇ ।।
ଛପନକୋଟି ଜୀବ ଯେତେ । ତୋହ ଶରୀର ଏ ସମସ୍ତେ ।।
ଉଡ଼ା ବୁଡ଼ା ଯେ ତୁହି ହୋଇ । ଚଳ ନିଚଳ ତୋର ଦେହୀ ।।
ଏ ସପ୍ତଯୁଗ ବ୍ରହ୍ମାଣ୍ଡରେ । ପୂରିଛୁ ଜୀବ ଅଜୀବରେ ।।
ତୋହର ରୂପ ବର୍ଣ୍ଣ ନାହିଁ । ଅଜ୍ୟୋତି ଅବର୍ଣ୍ଣ ଯେ ତୁହି ।।
ହେ ଦେବ ପୁରାଣ ପୁରୁଷ । ତୋହର ମହିମା ଅଶେଷ ।।
ଭକତି କଷଣ ନ ସହି । ରୂପ ଯେ ଧରୁ ଭାବଗ୍ରାହୀ ।।
ନୋହିଲେ ରୂପ ନାହିଁ ତୋର । ମହାଶୂନ୍ୟରେ ତୋ ବିହାର ।।
ହେ ଦେବ ସର୍ବଜ୍ଞ ପୁରୁଷ । ତୋତେ ନ ସେବି ଗଲି ନାଶ ।।
ହେ ଦେବ ଶରଣସୋଦର । ଅନ୍ୟ ଭରସା ନାହିଁ ମୋର ।।
ହେ ପ୍ରଭୁ ଦୟାଶୀଳ ତୁହି । ନିର୍ଦ୍ଦୟା କଲୁ ଭାବଗ୍ରାହୀ ।।
ହେ ପ୍ରଭୁ ପତିତପାବନ । ତରିଲେ ତର ତୁ ବହନ ।।
ନୋହିଲେ ଦେହ ଛାଡ଼ିଯାଅ । ଶୂନ୍ୟରେ ଶୂନ୍ୟ ହୋଇ ରହ ।।
ହେ ଦେବଦେବ ଶୁଣ ତୁହି । ଏ ଦେହେ କିଛି କାର୍ଯ୍ୟ ନାହିଁ ।।
ଏ ଦେହ ଛାଡ଼ି ମୁହିଁ ଯିବି । ତୋ ଦେହେ ଯାଇ ସମ୍ଭାଇବି ।।
ଏ ଦେହ ଅଜ୍ଞାନ ମୁଁ ହୋଇ । ତୋତେ ଯେ ଚିହ୍ନି ନ ପାରଇ ।।
ଏହି ଦେହରୁ ମୁହିଁ ଗଲେ । ତୋ ଅଙ୍ଗେ ମିଶିବଇଁ ଭଲେ ।।
ଏ ଦେହେ କିଛି ନ ଜାଣିଲି । ପାପ ପୁଣ୍ୟରେ ଘାଣ୍ଟିହେଲି ।।
ହେ ଦେବଦେବ ଅନ୍ତର୍ଯ୍ୟାମୀ । କଥାଏ ମାଗୁଅଛି ପୁଣି ।।
ହେ ଦେବଦେବ ଭକ୍ତି ଦିଅ । ନୋହିଲେ ଦେହ ଛାଡ଼ିଯାଅ ।।
ଏ ମହୀମଣ୍ଡଳରେ ମୁହିଁ । ଭ୍ରମୁ ଯେ ଥିବି କାହିଁପାଇଁ ।।

ଏ ମହୀମଣ୍ଡଳେ ନ ଥିବି । ଅକ୍ଷୟ ବ୍ରହ୍ମରେ ମିଶିବି ॥
ଏହି ଦୟା ତୁ ମୋତେ କର । ଜଣାଉଅଛି ବାରମ୍ବାର ॥
କହଇ ଅରକ୍ଷିତ ଦାସ । ମହୀମଣ୍ଡଳ ଗୀତା ରସ ॥
ସୁଜନ ଜନମାନେ ଶୁଣ । ଏତେ ରୂପରେ ମୋ ଭ୍ରମଣ ॥
ଆଉ ଏଣିକି କି କରିବ । ସେ କଥା ଜାଣେ ବାସୁଦେବ ॥
ଖଣ୍ଡଗିରିରେ ମୁହିଁ ରହି । ମହୀମଣ୍ଡଳ ଗୀତା କହି ॥

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ଦ୍ୱାଦଶୋଽଧ୍ୟାୟଃ ।

## ତ୍ରୟୋଦଶ ଅଧ୍ୟାୟ

ଆହେ ଚୈତନ୍ୟ ଶୁଣ ତୁହି । କିସ ମାଗିବି ତୋତେ ମୁହିଁ ॥
ଆହେ ଚୈତନ୍ୟ ଅନ୍ତର୍ଯ୍ୟାମୀ । ସବୁରି ମନ ତୁମ୍ଭେ ଜାଣି ॥
ଆହେ ଚୈତନ୍ୟ ଭଗବାନ । ଭକତି ଯୋଗ କର ଦାନ ॥
ଆହେ ଚୈତନ୍ୟ ବାସୁଦେବ । ଭକତି ଯୋଗେ ମୋତେ ଦେବ ॥
ଆହେ ଚୈତନ୍ୟ ତୁ ଈଶ୍ୱର । ଭକତି ମାଗୁଛି ପାମର ॥
ଆହେ ଚୈତନ୍ୟ ବ୍ରହ୍ମ ତୁହି । ଭକତି ଯୋଗ ଦିଅ କହି ॥
ଆହେ ଚୈତନ୍ୟ ବିଷ୍ଣୁ ଶୁଣ । ଭକତି ମାଗୁଅଛି ପୁଣ ॥
ଆହେ ଚୈତନ୍ୟ ଜଗତ୍‌କର୍ତ୍ତା । ଭକତି ଦିଅ ତୁହି ଦାତା ॥
ଆହେ ଚୈତନ୍ୟ ସର୍ବଦେହୀ । ଭକତି ଯୋଗ ଦିଅ କହି ॥
ଆହେ ଚୈତନ୍ୟ କଳ୍ପଦ୍ରୁମ । ଭକତି ମାଗୁଅଛି ହୀନ ॥
ଆହେ ଚୈତନ୍ୟ ରଘୁନାଥ । ଭକତି ମାଗୁଅଛି ନିତ୍ୟ ॥
ଆହେ ଚୈତନ୍ୟ ଚକ୍ରଧର । ଭକତି ମାଗୁଛି କିଙ୍କର ॥
ଆହେ ଚୈତନ୍ୟ ହୃଷୀକେଶ । ଭକତି ଦିଅ ପୀତବାସ ॥
ଆହେ ମହିମା ମହାବାହୁ । ଭକତି ଯୋଗ ଆଜ୍ଞା ହେଉ ॥
ଆହେ ବ୍ରହ୍ମାଣ୍ଡର ଠାକୁର । ଭକତି ମାଗୁଛି ପାମର ॥
ଆହେ ହେ ଅନନ୍ତ ଶୟନ । ଭକତି ଯୋଗ ଦିଅ ପୁଣ ॥

ଆହେ ଚଉବର୍ଗର ଦାନୀ । ଭକତି ଯୋଗ ଦେବ ସ୍ୱାମୀ ।।
ଆହେ ହେ ଅନନ୍ତ ମୂରତି । ଭକତି ଦିଅ ପ୍ରାଣପତି ।।
ତୁହି ଭକତି ଯୋଗ ଧରି । ସକଳ ଘଟେ ଅଛୁ ପୂରି ।।
ତୋ ବିନୁ କେହି ନ ଜାଣନ୍ତି । ବ୍ରହ୍ମା ଶିବ ହିଁ ଭ୍ରମି ହୋନ୍ତି ।।
ଆଉ କେ ଜାଣିବ ସଂସାରେ । ଏ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ।।
ନାନା ଉପାୟମାନ କଲେ । ତୋର ଭକତି ନ ଜାଣିଲେ ।।
ଭକତି ଗୁପତେ ରହିଛି । ତୋ ମାୟାଘୋଟି ଯେ ମାରୁଛି ।।
ତୋହର ନିଜ ଧର୍ମ ତୁହି । କାହାକୁ ନ ଦେଲୁଟି କହି ।।
ସ୍ୱଭାବେ ଦୁର୍ଗମ ଭଜନ । ଦୟା ତୁ କର ମୋତେ ପୁଣ ।।
ଏ ବିନୁ ଅନ୍ୟ ନ ମାଗଇ । ଭକତି ଯୋଗ ଦିଅ କହି ।।
ଭକତି ଯୋଗ ମୋତେ ଦେବୁ । ଯେବେ ତୁ ସଂସାରୁ ତରିବୁ ।।
ନୋହିଲେ କେଉଁ ଗତି ନାହିଁ । ସଂସାରେ ଥିବି କାହିଁ ପାଇଁ ।।
ରଖିଲେ ଭକ୍ତି ମୋତେ ଦିଅ । ନୋହିଲେ ଦେହ ଛାଡ଼ିଯାଅ ।।
ମୋହର କିଛି ଦୋଷ ନାହିଁ । ଦିଅଁ ବା ନ ଦିଅଟି କହି ।।
ଏ ମହୀମଣ୍ଡଳେ ଭ୍ରମିଲି । ତୋର ମାୟାକୁ ସତ୍ୟ କଲି ।।
ଏ ମାୟା ବେଗେ ଦୂରକର । ଜଣାଉଅଛି ମୁଁ ଛାମୁର ।।
ଖଣ୍ଡଗିରିରୁ ବେଗେ ନିଅ । ଭକତି ଯୋଗ ମୋତେ ଦିଅ ।।
ଏ ବିନୁ ଅନ୍ୟ ନ ମାଗଇ । ଏକାନ୍ତେ ଭଜୁଥିବି ମୁହିଁ ।।
ତୁମ୍ଭରି ନାମ ସଙ୍ଗେ ଘେନି । ଭକତି ସାଧୁଥିବି ପୁଣି ।।
ଏହି ଦୟା ଯେ ତୁମ୍ଭେ କର । କ୍ଷୁଧା ତୃଷାକୁ ମୋର ମାର ।।
କହଇ ଅରକ୍ଷିତ ଦାସ । ମହୀମଣ୍ଡଳ ଗୀତା ରସ ।।
ଆହେ ସୁଜନମାନେ ଶୁଣ । ଏ ଗୀତା କଲି ମୁଁ ବଖାଣ ।।
ଏଥିରେ ଯେତେ ଦୋଷକର । କ୍ଷମା କରିବେ ଚକ୍ରଧର ।।
ଭକତି ଯୋଗରେ ମୋ ଆଶ । ସୁଜନେ ନ ଘେନିବ ଦୋଷ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ତ୍ରୟୋଦଶୋଽଧ୍ୟାୟ ।

## ଚତୁର୍ଦ୍ଦଶ ଅଧ୍ୟାୟ

ଆହେ ଚୈତନ୍ୟ ଶୁଣ ତୁହି । କ୍ଷୁଧା ତୃଷା ମୋ ନ ଛାଡ଼ଇ ।।
କ୍ଷୁଧା ତୃଷା ହୋ ଘୋଟୁଅଛି । ଭୟ କରାଇ ଯେ ମାରୁଛି ।।
ହିଂସା ମାୟା ମୋହ ରାଗରେ । ତୁ ଭ୍ରମାଇଲୁ ଏ ସଂସାରେ ।।
ତୁହି ଯେ ସତ୍ତ୍ୱ ରଜ ତମ । ଲୋଭ କାମ ଯେ ତୁହି ଭ୍ରମ ।।
ପାଞ୍ଚ ମନ ଯେ ତୁହି ଜାଣ । ପଚିଶ ପ୍ରକୃତି ଯେ ପୁଣ ।।
ଷଡ଼ ଐରି ଯେ ତୁହି ହେଲୁ । ଚୌଷଠି ରୋଗରେ ନାଶିଲୁ ।।
ତୋ ବିନା ଦେହରେ କେ ରହି । ନାଶୁଛି ମୋର ଦୋଷ ନାହିଁ ।।
ସର୍ବ ପ୍ରକୃତି ତୁମ୍ଭେ ହେଲ । ସଂସାର ଯାକରେ ଘୋଟିଲ ।।
ତୋ ବିନା ବ୍ରହ୍ମାଣ୍ଡ ଭିତରେ । ଅଛି କେ କହିଲି ମୁଁ ତୋରେ ।।
ସପ୍ତ ସମୁଦ୍ର ବୋଲାଇଲୁ । ନବ ଖଣ୍ଡ ମେଦିନୀ ହେଲୁ ।।
ବନ ପର୍ବତ ତୁହି ଜାଣ । ଇକ୍ଷ ପାଷାଣ ହେଲୁ ପୁଣ ।।
ଖାଲ ଟିକର ନଦୀ ନାଳ । ଏ ତୋର ଶରୀରୁ ସକଳ ।।
କୀଟ ପତଙ୍ଗ ତରୁ ତୃଣ । ତୋହର ଶରୀରୁ ଭିଆଣ ।।
ଛପଂନ କୋଟି ଜୀବ ଯେତେ । ତୋହର ଶରୀରୁ ଏ ସମସ୍ତେ ।।
ପୃଥ୍ୱୀ ଯେ ଆକାଶ ମଣ୍ଡଳ । ତୋହର ଶରୀର ସକଳ ।।
ଜଳ ପବନ ଅଗ୍ନି ହୋଇ । ତୋର ଶରୀରୁ ଜାତ ହୋଇ ।।
ମେଘ ଜନ୍ମଇ ତୋ ଶରୀରୁ । ବିଜୁଳି ତେଜ ତୋ ଦେହରୁ ।।
ହେ ପ୍ରଭୁ ଜ୍ୟୋତିରୂପ ଧର । କେତେ ଭଙ୍ଗିରେ ଲୀଳା ତୋର ।।
ମନ୍ତ୍ର ଯନ୍ତ୍ର ଯେ ତୁହି ହେଲୁ । ଗୁହ୍ୟ ପୁତ୍ର ଯେ ବୋଲାଇଲୁ ।।
ଚଣ୍ଡି ଚାମଣ୍ଡି ଭୂତ ପ୍ରେତ । ତୋର ଶରୀରୁ ସର୍ବେ ଜାତ ।।
ଏ ସର୍ବ ତୋର ଦେହୁଁ ଜାତ । ଭୂଷଣ ହୋଇଛୁ ତୁହି ତ ।।
ନାନାଦି ପକ୍ୱ ଫଳ ତୁହି । ନାନାଦି ଭୋଗ ତୋର ଦେହୀ ।।
ନାନାଦି ପୁଷ୍ପ ତୁମେ ହେଲ । ନାନାଦି ନାମ ପ୍ରକାଶିଲ ।।
କାଷ୍ଠରେ ଅଗ୍ନି ରୂପେ ରହି । ତିଳରେ ତେଲ ରୁଅ ତୁହି ।।
ଏକା ପୁରୁଷ ସର୍ବ ହେଲୁ । କେତେ ରଙ୍ଗରେ ଲୀଳା କଲୁ ।।
ସ୍ତିରୀ ପୁରୁଷ ହେଲୁ ତୁହି । ଜାତ କରିଲୁ ସର୍ବ ଦେହୀ ।।

ଏ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ । ତୋ ତହୁଁ ଅନ୍ୟ ନାହିଁ ପରେ ।।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତୁହି । ତୋର ଶରୀରୁ ଜାତ ହୋଇ ।।
ଆକାଶ ମହାଶୂନ୍ୟ ହେଲୁ । ଏ ଅନ୍ଧକାର ଯେ ଘୋଟିଲୁ ।।
ତେତିଶ କୋଟି ଦେବ ତୁହି । ନକ୍ଷତ୍ରଗଣ ତୁମ୍ଭେ ହୋଇ ।।
ଅନନ୍ତ କୋଟି ସାଧୁ ହେଲ । ପୁରାଣମାନ ତୁମ୍ଭେ କଲ ।।
ଅକ୍ଷର ମାନ ହେଲୁ ତୁହି । ନକ୍ଷତ୍ରଗଣ ତୁମ୍ଭେ ହୋଇ ।।
ଯାହାକୁ ଯେମନ୍ତ ଶବଦ । ଅକ୍ଷର ଲାଗି ତୁ ଯେ ନାଦ ।।
ଅକ୍ଷର ଶବଦ ଭିତରେ । ଘେନି ରହିଛୁ ଚରାଚରେ ।।
ଅଣଅକ୍ଷରେ ଜାତ ତୁହି । ନାମ ଅନାମ ତୋର ଦେହୀ ।।
ସଂସାରେ ଯେତେ ଜାତ କଲୁ । ସମସ୍ତ ନାମ ତୁହି ଦେଲୁ ।।
ଏକ ନାମଟି ଭିନ୍ନ ଭିନ୍ନ । କରି ଯେ ଅଛୁ ତୁହି ପୁଣ ।।
ସଂସାରେ ଘେନିର୍ବାର ପାଇଁ । କେତେ ରୂପ ଯେ ଧରୁ ତୁହି ।।
ଛପନ କୋଟି ଜୀବ ହେଲୁ । ଭିନ୍ନ ଭିନ୍ନ ରୂପ ଧଇଲୁ ।।
ମେରୁ ଆଦି ଯେତେ ପର୍ବତ । ତୋର ଶରୀରେ ଏ ସମସ୍ତେ ।।
କାକରୁ ଗରୁଡ଼ ପର୍ଯ୍ୟନ୍ତେ । ତୋର ଶରୀରେ ଏ ସମସ୍ତ ।।
ଚଣ୍ଡାଳୁ ବ୍ରହ୍ମା ଯାଏ ଜାଣ । ତୋର ଶରୀରୁ ଏ ଭିଆଣ ।।
ବାସବ ଆଦି ଯେତେ ଦେବ । ତୋର ଶରୀରୁ ଏ ସମ୍ଭବ ।।
କୀଟରୁ ବ୍ରହ୍ମଯାଏ ତୁହି । ଜାତ ହୋଇଛୁ ସର୍ବଦେହୀ ।।
ନିଶ୍ଚଳ ଚୌଦକୋଟି ହୋଇ । ତୋର ଶରୀରୁ ଜାତ ହୋଇ ।।
ଛପନ କୋଟି ଜୀବ ପୁଣ । ପଡ଼ି ଯେ ଦେଉଛ ଆପଣ ।।
ଆପଣେ ପଡ଼ି ରୂପ ହୋଇ । ନିଜରୁ ନିଜେ ନେଉ ତୁହି ।।
ଜୀବକୁ ଜୀବ ଖୁଆଉଛ । ପାପ ପୁଣ୍ୟହିଁ ସବୁ ମିଛ ।।
ଜୀବକୁ ଜୀବ ହିଂସା କରୁ । ଜୀବକୁ ଜୀବ ଧରି ମାରୁ ।।
ଜୀବକୁ ଜୀବ ଖଟି 'ଥାଇ । ଏମନ୍ତେ ତୋର ମାୟା ହୋଇ ।।
ହେ ପ୍ରଭୁ ସକଳ ଶରୀରେ । ପୂରି ରହିଛ ପରାପରେ ।।
ଆକାଶ ମହୀଯାଏ ପୂରି । ଜୀବେ ଅଜୀବେ ସମ ସରି ।।
ତେଣୁ ପଡ଼ିବା ଠାବ ନାହିଁ । ସପ୍ତ ବ୍ରହ୍ମାଣ୍ଡେ ପୂରି ରହି ।।
ଏମନ୍ତ କୋଟି ଯେ ରହିଛ । ଉତ୍ପତ୍ତି ପ୍ରଳୟ କରୁଛ ।।
ଜାତ ହୋଇଛୁ ତୁହି ପୁଣ । ମଲେ କରୁଛୁ ଯେ ଆପଣ ।।

ତୋ ମାୟା କେହି ନ ଜାଣନ୍ତି । ପାପ ପୁଣ୍ୟକୁ କଲେ ଭୀତି ।।
ଏବେ କିଞ୍ଚିତେ ଦୟାକର । ସକଳ ଶରୀରୁ ବାହାର ।।
ସକଳ ସମାନ ଦେଖିବି । ଭକତି ଯୋଗ ସାଧୁଥିବି ।।
ଏହି ସୁଦୟା ମୋତେ କର । ଅନ୍ୟ ଭରସା ନାହିଁ ମୋର ।।
କହଇ ଅରକ୍ଷିତ ଦାସ । ଦୋଷ ନ ଧର ପୀତବାସ ।।
ସୁଜନ ଜନଙ୍କ ପୟରେ । ଦୋଷ ମୁଁ ମାଗେ ନିରନ୍ତରେ ।।
ସୁମନେ ଏହି ରସେ ରସ । ନ ଥିବ କାମ ଦଣ୍ଡ ପାଶ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

## ପଞ୍ଚଦଶ ଅଧ୍ୟାୟ

ଆହେ ଚୈତନ୍ୟ ଆପେ ତୁହି । ଦୁଃଖ ସୁଖରେ ଘାଣ୍ଟି ହୋଇ ।।
ନାନାଦି ଭୋଗ ତୁହି କରୁ । ନାନାଦି କଷ୍ଟ ଦେଇପାରୁ ।।
ନାନାଦି ଜୀବ ଜନ୍ତୁ ହେଉ । ନିଜକୁ ନିଜେ ଧରି ଖାଉ ।।
ନିଜକୁ ନିଜେ ଯେ ଖାଉଛ । ପାପ ପୁଣ୍ୟହିଁ ସବୁ ମିଛ ।।
ଧର୍ମ ଅଧର୍ମ ତୋର ନାହିଁ । ଶୁଭ ଅଶୁଭ ତୋର କାହିଁ ।।
ସ୍ୱର୍ଗ ନରକ ନାହିଁ ପୁଣ୍ୟ । ମିଛ ସତ୍ୟହିଁ ନାହିଁ ଜାଣ ।।
ନିଜକୁ ନିଜେ ଧନ୍ଦି ହେଲୁ । ନିଜକୁ ନିଜେ ନାଶ କଲୁ ।।
ଆପକୁ ଆପେ ପିତା ମାତା । ଆପକୁ ଆପେ ପିତା ମାତା ।।
ଆପକୁ ଆପେ ବିଭା ହେଉ । ଆପକୁ ଆପେ ଖଟି ଥାଉ ।।
ଆପକୁ ଆପେ ବନ୍ଧୁ ବାନ୍ଧି । ଆପକୁ ଆପେ ଛନ୍ଦାଛନ୍ଦି ।।
ଆପକୁ ଆପେ ଦେଢ଼ଶୁର । ଆପକୁ ଆପେ କନ୍ୟାବର ।।
ଆପକୁ ଆପେ ଶଳା ମାଇଁ । ଆପକୁ ଆପେ ଶାଶୂ ହୋଇ ।।
ଆପକୁ ଆପେ ଭାଇବୋହୂ । କେତେ ଭଙ୍ଗିରେ ରହିଥାଉ ।।
ଆପକୁ ଆପେ ଗୁଳିକାଣ୍ଡ । ଆପକୁ ଆପେ କାଟୁ ମୁଣ୍ଡ ।।
ଆପକୁ ଆପେ ଗୁରୁ ଶିଷ୍ୟ । ଖଟି ଯେ ଥାଉ ତୋର ପାଶ ।।

ଆପକୁ ଆପେ କ୍ଷୁଧା ତୃଷା । ଆପକୁ ଆପେ ତୋ ଭରସା ।।
ଆପକୁ ଆପେ ନିଦ୍ରା ଭୟ । ଚୌଷଠି ରୋଗ ତୋର ଦେହ ।।
ସାତଶ ବାସ୍ତରୀ ଯେ ନାଡ଼ୀ । ଆପକୁ ଆପେ ଥାଉ ଜଡ଼ି ।।
ଆପକୁ ଆପେ ଶିର ଚର୍ମ । ରକ୍ତ ମାଉଁସ ହାଡ଼ କାଣ ।।
ଆପକୁ ଆପେ ରୋଗୀ ହେଲୁ । କଷ୍ଟ ପାଇଣ ପୁଣି ମଲୁ ।।
ଆପେ ମରୁଛୁ ଜୀଇଁଅଛୁ । ଆପେ ଦେଖିଣ ଶୁଣୁଅଛୁ ।।
ଆପେ ବାସନା ଆପେ ଖାଉ । ଆପେ ଦୁର୍ଗନ୍ଧ ବିଷ୍ଠା ହେଉ ।।
ଆପେ ଆକାଶ ରୂପ ହୋଇ । ଅନ୍ଧକାର ଯେ ଘୋଟିଥାଇ ।।
ଆପେ ଯେ ଚନ୍ଦ୍ର ସୂର୍ଯ୍ୟ ହେଲୁ । ରାତ୍ର ଦିବସ ତୁ ହୋଇଲୁ ।।
ଆପକୁ ଆପେ ଚିହ୍ନି ରହ । ତେବେ ସଂସାରେ ସୁଖ ପାଅ ।।
ଆପକୁ ଆପେ ଚିହ୍ନି ରହ । କେବେହେଁ ନ ଯାଉ ଏ ଦେହ ।।
ଆପକୁ ଆପେ ଦୟା କର । ଲୀଳା ଦେଖିବୁ ଯେ ତୋହର ।।
ସର୍ବ ଶରୀରେ ମୁଁ ଅଛଇ । ଏହା ଜାଣିଛୁ ପ୍ରଭୁ ତୁହି ।।
କି ରୂପେ ଲୀଳା ତୁ କରୁଛୁ । ଜଗତ କି ରୂପେ ଘୋଟିଛୁ ।।
ଏହା ଦେଖିବି ମୁହିଁ ହୀନ । ଭକତି ଯୋଗ ଦିଅ ପୁଣ ।।
ଏ ବିନୁ ଅନ୍ୟ ନ ମାଗଇ । ଭୋ ପ୍ରଭୁ ମୋତେ କର ତ୍ରାହି ।।
ଏ ମହୀମଣ୍ଡଳେ ତୋ ଲୀଳା । କେମନ୍ତେ କରୁଅଛୁ ଖେଳା ।।
ଏହା ଦେଖିବାକୁ ମୋ ଆଶ । କହଇ ଅରକ୍ଷିତ ଦାସ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ପଞ୍ଚଦଶୋଽଧ୍ୟାୟଃ ।

## ଷୋଡ଼ଶ ଅଧ୍ୟାୟ

ମନ ମୁଖରୁ ଏହା ଶୁଣି । ଚୈତନ୍ୟ ମନେ ମନେ ଗୁଣି ।।
ତୁ ଯାହା କହିଲୁ ହୋ ସତ୍ୟ । ଏ ମୋର ମାୟା ବିମୋହିତ ।।
ମାୟାକୁ ସତ୍ୟ ତୁ ମଣିଲୁ । ତୁ ମୋତେ ଚିହ୍ନି ନ ପାରିଲୁ ।।
ତୁ ମୋର ଜୀବ ଆତ୍ମା ହୋଇ । ମୋର ସଙ୍ଗତେ ତୁହି ରହି ।।
କିମ୍ବା ତୁ ମୋତେ ମାୟା କଲୁ । ନାନା କର୍ମରେ ଭୁଲାଇଲୁ ।।

କିମ୍ବା ତୁ ମୋତେ ମାୟା କଲୁ । ନାମହିଁ ମୋର ଛାଡ଼ି ଦେଲୁ ।।
ଯେଣୁ ମାୟାରେ ତୁ ଭ୍ରମିଲୁ । ତେଣୁ ତୁ ଚିହ୍ନି ନ ପାରିଲୁ ।।
ଏବେ ମୁଁ କହୁଅଛି ଶୁଣ । ନାମ ତୁ ଚିହ୍ନ ଅନୁକ୍ଷଣ ।।
ମାତା ପିତା ସଙ୍ଗମ କାଳେ । ରଜ ବୀର୍ଯ୍ୟ ଏକତ୍ର ବେଳେ ।।
ସେକାଳେ ତୋତେ କହିଥିଲି । ନାମ ତୁ ଚିନ୍ତି ହେ ବୋଇଲି ।।
ତୋତେ ମୁଁ ନାମ ଦୀକ୍ଷା ଦେଇ । ଶୂନ୍ୟରେ ମୁହିଁ ବୁଡ଼ି ରହି ।।
ଗର୍ଭେ ରହିଲୁ ଦଶ ମାସ । ନାମରେ ଥିଲା ତୋ ବିଶ୍ୱାସ ।।
ପୃଥ୍ୱୀରେ ପଡ଼ି ପାଶୋରିଲୁ । ହସ କୌତୁକେ ଦିନ ନେଲୁ ।।
ଏବେ ତୁ ସେହି ନାମ ଚିନ୍ତ । ମୋ ନାମେ ସକଳ ଆୟତ୍ତ ।।
ଏହି ଦେହରେ ତୁହି ରହି । ଭ୍ରମିଲୁ ମାୟାଚିତ୍ତ ହୋଇ ।।
ପ୍ରକୃତିଗଣ ସଙ୍ଗ କଲୁ । ତୋ ନିଜ ନାମ ପାଶୋରିଲୁ ।।
ଏହାଙ୍କ ପାଞ୍ଚ ତୁ ନାଶିଣି । ଦେହକୁ ସତ୍ୟ ପ୍ରାୟ ମଣି ।।
ଏ ଦେହ କ୍ଷଣକୋଟି ଯିବ । ନାମେ ନିରାଶ ଯେବେ ହେବ ।।
ନାମକୁ ନିତ୍ୟେ ସେବା କର । ଏ ଦେହ ରହିବ ନିକର ।।
ନୋହିଲେ ଏ ଦେହ ନ ରହି । ନାମ ଛାଡ଼ିଲେ ପ୍ରାଣ ଯାଇ ।।
ନାମକୁ ହୃଦେ ଲୟ କର । ତେବେ ହୋଇବୁ ଅଜାମର ।।
ଯେ ନାମ ମାତା ଗର୍ଭେ ଥାଇ । ସେ ନାମ ଚିନ୍ତା କର ତୁହି ।।
ସଂସାରେ ଯେତେ ନାମ ଜାଣ । ସେ ନାମ ଚିନ୍ତିବୁ ତୁ ପୁଣ ।।
ଭକତେ ପିତା ମୋ ଅଟନ୍ତି । କେତେ ନାମଟି ଦେଇଛନ୍ତି ।।
ସେ ନାମ ନ ଚିନ୍ତିବୁ ତୁହି । ନିଜ ନାମକୁ ଭାବ କହି ।।
ନିଜ ନାମ ନ ଜାଣି ମରେ । ନିନ୍ଦା କରନ୍ତି ଏ ସଂସାରେ ।।
ସେ ନାମ ନ ଜାଣନ୍ତି କେହି । ଯେତେ ସଂସାରେ ଦେହ ବହି ।।
ସଂସାର ମଧ୍ୟରେ ପୂରିଛି । ସେ ନାମ ଗୁପତେ ରହିଛି ।।
ସେ ନାମ ମୁହିଁ ଜାଣିଥିଲି । ଚଉଦ ଭୁବନେ ଘୋଟିଲି ।।
ସେ ନାମ ଈଶ୍ୱର ପାଇଲେ । ଅମର ହୋଇଣ ରହିଲେ ।।
ସେ ନାମ ବାରାନିଧି ପାଇ । କ୍ଷୟ ବୃଦ୍ଧିଟି ତାର ନାହିଁ ।।
ସେ ନାମ ବାସୁକୀ ଜାଣିଛି । ପୃଥିବୀ ଭାର ଶିରେ ଅଛି ।।
ସେ ନାମ ଚନ୍ଦ୍ର ସୂର୍ଯ୍ୟ ଜାଣି । ରାତ୍ର ଦିବସ କଲେ ପୁଣି ।।
ସେ ନାମ ବ୍ରହ୍ମାଦି ଜାଣନ୍ତି । ସକଳ ସୃଷ୍ଟି ସେ କରନ୍ତି ।।

ସେ ନାମ ବିଷ୍ଣୁ ଯେ ଜାଣନ୍ତି । ସକଳ ସୃଷ୍ଟି ସେ ପାଳନ୍ତି ।।
ସେ ନାମ ଈଶ୍ୱର ଜାଣିଲେ । ସକଳ ସୃଷ୍ଟି ସଂହାରିଲେ ।।
ସେ ନାମ ଯମ ଯେ ଜାଣଇ । ସକଳ ଘଟେ ପୂରିଥାଇ ।।
ସେ ନାମ ଅଗ୍ନି ଜାଣିଛନ୍ତି । ସକଳ ଘଟେ ପୂରିଛନ୍ତି ।।
ସେ ନାମ ପବନ ଜାଣଇ । ସେ ସର୍ବଘଟେ ପୂରିରହି ।।
ସେ ନାମ ପୃଥିବୀ ଜାଣିଛି । ସକଳ ଭାର ସେ ସହିଛି ।।
ସେ ନାମ ତାରାଗଣ ଜାଣି । ଛାତ୍ର ଦିବସ ଭ୍ରମେ ପୁଣି ।।
ସେ ନାମ ମୁହିଁ ଆଶ୍ରେ କଲି । ସର୍ବଦା ଘଟକୁ ଧଇଲି ।।
ସର୍ବ ଘଟରେ ଯେଣୁ ମୁହିଁ । ତେଣୁ ବିଜ୍ଞାନ ମୋର ଦେହୀ ।।
କିମ୍ଵା ଅଜ୍ଞାନ ମୁହିଁ ପୁଣ । ଏବେ କହିବା ତାହା ଶୁଣ ।।
ମୁଁ ଯେବେ ଅଜ୍ଞାନ ନୁହନ୍ତି । ସଂସାରେ କି ଲୀଳା କରନ୍ତି ।।
ସେ ନାମ ଶିବ ଯେ ଜାଣନ୍ତି । ଅମର ହୋଇ ରହିଛନ୍ତି ।।
ତେଣୁ ଅଜ୍ଞାନ ମୁହିଁ ହେଲି । ସଂସାର ଖେଳ ଲଗାଇଲି ।।
ସେ ନାମ ବ୍ରହ୍ମାଣ୍ଡେ ଘୋଟିଛି । ସେହି ନାମକୁ ଭାବୁଅଛି ।।
ନାମ ଜଳ ସ୍ଥଳ ଅନଳ । କେହି ନ ପାନ୍ତି ତାର ମୂଳ ।।
ସେହି ନାମକୁ ମୁଁ ଭାବଇ । କ୍ଷୟ ବୃଦ୍ଧିଟି ମୋର ନାହିଁ ।।
ଜଳରେ କେବେ ନ ବୁଡ଼ଇ । ଥାଇ ନ ଥାଇ ନ ଦିଶଇ ।।
ଶୁଖଇ ନାହିଁ ମୁହିଁ ଜାଣ । ଖଡ଼ଗେ ନ ଛିଡ଼ଇ ପୁଣ ।।
ଅନଳେ କେବେ ନ ପୋଡ଼ଇ । ପବନେ କେବେ ନ ଉଡ଼ଇ ।।
ସଂସାର ଖେଳ ପାଇ ମୁହିଁ । ଉତ୍ପତ୍ତି ପ୍ରଳୟ କରଇ ।।
ଏବେ ତୁ ସେହି ନାମ ଧର । ସଂସାରେ ହୋଇବୁ ଅମର ।।
ଆଉ କାହାକୁ ଭୟ ନାହିଁ । ସେ ନାମ ଭାବିଲଇଁ ମୁହିଁ ।।
ସେ ନାମ ସର୍ବ ଭାବେ ଅଛି । ଭବଭୟ ଯେ ନାହିଁ କିଛି ।।
ସର୍ବ ସମାନ ଦେଖ ଚିତ୍ତେ । ମୁହିଁଟି ଅଛି ସର୍ବଭୂତେ ।।
ଏବେ ତୁ ସେହି ନାମ ରସ । ନମଇଁ ଅରକ୍ଷିତ ଦାସ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ଷୋଡ଼ଶୋଽଧ୍ୟାୟଃ ।

# ସପ୍ତଦଶ ଅଧ୍ୟାୟ

ହେ ମନ ଶୁଣ ମୋର ବାଣୀ । ଖଣ୍ଡଗିରିକି ଛାଡ଼ି ପୁଣି ।।
ଏକାନ୍ତ ହୋଇଣ ରହିବୁ । ସେ ନାମ କ୍ଷଣେ ନ ଛାଡ଼ିବୁ ।।
ସେ ନାମ ପ୍ରସନ୍ନ ହୋଇବ । ଯେଣେ ଚାହିଁଲେ ତେଣେ ଥିବ ।।
ସର୍ବ ଘଟରେ ନାମ ଦେଖ । ତେବେ ପାଇବ ମହାସୁଖ ।।
ସେ ନାମ ଦୟା ଯାକୁ କରେ । କ୍ଷୁଧା ତୃଷାହିଁ ରହେ ଦୂରେ ।।
ଖରା ବରଷା ଶୀତ ଯେହି । ତୋତେ ନ କାଟିବେଟି କେହି ।।
ଚୌଷଠି ରାଗ ସେହି ନାମେ । ଦୟା କରିବେ ସେହି ଜାଣ ।।
ରୋଗ ବ୍ୟାଧିହିଁ ନ କରିବ । ଦେହ ତୋ କଞ୍ଚା ହୋଇଥିବ ।।
ନିଦ୍ରା ଭୟଟି ତୋ ଶରୀର । ତୋ ଦେହୁଁ ହୋଇବଟି ଦୂର ।।
ରାତ୍ର ଦିବସ ନ ଜାଣିବୁ । ଯାହା ପାଞ୍ଚିଲେ ତୁ ପାଇବୁ ।।
ତୋତେଟି ନ ଦେଖିବେ କେହି । ତୁହି ଦେଖିବୁ ସର୍ବଦେହୀ ।।
ପବନ ଯେମନ୍ତେ ବହୁଛି । ତା ରୂପ ନ ଦିଶଇ କିଛି ।।
ତୁହିଟି ସେହି ରୂପ ହେବୁ । ଯେବେ ତୁ ଯେ ରୂପ ଚିନ୍ତିବୁ ।।
ବାଳକ ରୂପକୁ ପାଞ୍ଚିଲେ । ବାଳକ ରୂପ ହେବୁ ଭଲେ ।।
ବୃଦ୍ଧ ରୂପକୁ ଇଚ୍ଛା ଯେବେ । ବୃଦ୍ଧ ରୂପ ହୋଇବୁ ତୁ ତେବେ ।।
ନବ ଯୁବାକୁ ଇଚ୍ଛା ଯେବେ । ସେ ରୂପ ହୋଇବୁ ତୁ ତେବେ ।।
ସେ ନାମ ଜାଣିଥିଲେ ତୁହି । ଯେତେ ରୂପ ପାଞ୍ଚିଲେ ହୋଇ ।।
ସେ ନାମ ଏମନ୍ତ ମହିମା । କିସ କହିବି ତାର ସୀମା ।।
ସେ ନାମେ ଭକତିଟି କର । ଯେବେ ରଖିବୁ ଏ ଶରୀର ।।
ଭକତି ଯେବେ ତୁ କରିବୁ । ତୋତେ କହିବି ମୁହିଁ ସବୁ ।।
ଦେଖ ଆକାଶ ଶୂନ୍ୟ ଥାଇ । ସେ ଭାବେ ରହ ମୁଁ କହଇ ।।
ଦେଖ ଏ ସୂର୍ଯ୍ୟ ଘୋଟିଅଛି । ତେତେହେଁ କାହିଁ ନ ଗଡ଼ିଛି ।।
ତୁହିଟି ସେହି ଭାବେ ରହ । ତେବେ ରହିବ ସିନା ଦେହ ।।
ଦେଖ ଏ ପବନ ବହୁଛି । ସକଳ ସମାନ ଦେଖୁଛି ।।
ତୁହିଟି ସମାନ ଦେଖିବୁ । ଉତ୍ପତ୍ତି ପ୍ରଳୟ ନୋହିବୁ ।।
ଦେଖ ଏ ଅଗ୍ନି ସର୍ବ ଖାଇ । ପାପ ପୁଣ୍ୟହିଁ ତାର ନାହିଁ ।।

ତୁହିଟି ଏହି ଭାବେ ଧର । ପାପ ପୁଣ୍ୟକୁ ନାହିଁ ଡର ।।
ଜଳ ଯେହ୍ନେ ସମ ଦେଖିବୁ । ସ୍ୱର୍ଗ ନରକ ନ ମାନିବୁ ।।
ଦେଖ ପୃଥିବୀ ରହିଅଛି । ସକଳ ସମାନ ଦେଖୁଛି ।।
ତୁହି ସେ ଭାବେ ହୃଦେ ଧରି । ସକଳ ସହ ସମ କରି ।।
ମହୀଟି ସର୍ବ ଭୂତେ ଥାଇ । ପର ଅପର ନ ଜାଣଇ ।।
ମୁହିଁଟି ଜଗତେ ଘୋଟିଛି । ଧର୍ମ ଅଧର୍ମ ନ ଜାଣୁଛି ।।
ତୁହିଟି ସମାନ ଦେଖିବୁ । ଧର୍ମ ଅଧର୍ମ ନ ଗଣିବୁ ।।
ସଂସାରେ ଖେଳଘର କଳି । ଧର୍ମ ଅଧର୍ମ ବିଚାରିଲି ।।
ନୋହିଲେ ଏ ଦୁହେଁ ସମାନ । ତୁ ଏବେ ଶୁଣ ମୋ ବଚନ ।।
ଭକତି ଭାବ ଶୁଣ ଏହି । ତୋତେ ମୁଁ ଫେଡ଼ି କହିଲଇଁ ।।
ଏ ଭାବ ଯେହ୍ନୁ ନ ଜାଣଇ । ଜନ୍ମ ମୃତ୍ୟୁରେ ଘାଣ୍ଟି ହୋଇ ।।
ଧ୍ୟାନ ସୂତ୍ରରେ କ୍ଲେଶ ଥାଇ । ସେ ଭାବ ନ ଜାଣନ୍ତି କେହି ।।
କେ ଅବା ତୀର୍ଥ କରିଯାନ୍ତି । କେ ଅବା ଦେବତା ପୂଜନ୍ତି ।।
କେ ଅବା ନାନା ଯୋଗ କରି । ମରନ୍ତି ସେ ଭାବ ପାଶୋରି ।।
ଏମନ୍ତ ନାନାମତେ ଭ୍ରମି । ତେଣୁ ଅଜ୍ଞାନୀ ହୋନ୍ତି ପ୍ରାଣୀ ।।
ଏଣୁ ତୁ ସର୍ବ କର୍ମ ଛାଡ଼ । ଭକତି ଭାବ କର ଦୃଢ଼ ।।
ଭକତି ଭାବେ ତୁ ପଶିଲେ । ସକଳ ଦୂର ହେବ ଭଲେ ।।
ନିର୍ମାୟା ହୋଇଣ ରହିବୁ । ଚିତ୍ତକୁ ଦୃଢ଼ ତୁ କରିବୁ ।।
ମନ ଆନନ୍ଦ ତାହା ଶୁଣି । ବୋଲଇ ନିସ୍ତରିଲି ପୁଣି ।।
ଏ ଦେହେ କିଛି କାର୍ଯ୍ୟ ନାହିଁ । ତୋ ଅଙ୍ଗେ ମିଶିବିଟି ମୁହିଁ ।।
ଏହି ସୁଦୟା ମୋରେ ହେଉ । ତୋର ଭକତି ହୃଦେ ଥାଉ ।।
ଏ ମହୀମଣ୍ଡଳରେ ରହି । କିମ୍ପାଇଁ ଭ୍ରମୁଥିବି ମୁହିଁ ।।
ଏ ଦଶ ଅବତାର ହେଲୁ । କେତେ କେତେ ମାରି ତାରିଲୁ ।।
ଯେତେ ଦିନେଟି ରଖିଥିବ । ତୋ ଭାବ ଅନ୍ତର ନୋହିବ ।।
ଏତେକ ମୁହିଁ ଯେ ମାଗଇ । ତୋ ନିଜ ନାମ ଦିଅ କହି ।।
ଆହେ ସୁଜନ ଜନେ ଶୁଣ । ମହୀମଣ୍ଡଳ ଗୀତା ଗୁଣ ।।
ଯାହାର ଅନୁଭବ ଥିବ । ଏ ଗୀତା ସାଧି ସେ ଭେଦିବ ।।
ଏ ଗୀତା ଭେଦି ନ ପାରିଲେ । କି ଜ୍ଞାନ ଲଭିବ ସେ ଭଲେ ।।
ଏ ଗୀତାରେ ଭାକ୍ତି ଅଛି । କି ଜ୍ଞାନ ଲଭିବ ସେ ଭଲେ ।।

ଏହି ଗୀତାରେ ଭକ୍ତି ଅଛି । ଭେଦିଲା ଲୋକ ଜାଣେ କିଛି ।।
ଯେବେ ସେ ସାଧିଲା ନିକର । ଅମର ହେବ ତା ଶରୀର ।।
ନୋହିଲେ କେଭେଁ କ୍ଷତି ନାହିଁ । ସଂସାରେ ଥିବ ସେ କିମ୍ପାଇ ।।
ଯେହୁ ସେ ନାମ ନ ଚିନ୍ତଇ । ପ୍ରଭୁରେ ଦୋରେହାଟି ସେହି ।।
ଯା ଲାଗି ଦେହ ରଖିଅଛି । ତା ନାମ ନ ଭଜେ ଯେ କିଛି ।।
ସଂସାର ସୁଖ ସେ ପାଇଲା । ନିଜ ସ୍ୱାମୀକି ଛାଡ଼ି ଗଲା ।।
ହେ ପ୍ରଭୁ ଶରଣ ସୋଦର । ମୋ ଅପରାଧ କ୍ଷମା କର ।।
ଏବେ କିଞ୍ଚିତେ ଦୟା ହେଉ । ଏ ମହୀମଣ୍ଡଳେ ନ ଥାଉ ।।
କହଇ ଅରକ୍ଷିତ ଦାସେ । ତ୍ରାହି ତୁ କର ପୀତବାସ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ସପ୍ତଦଶୋଽଧ୍ୟାୟ ।

## ଅଷ୍ଟାଦଶ ଅଧ୍ୟାୟ

ଆହେ ଚୈତନ୍ୟ ଶୁଣ ତୁହି । ଅଜ୍ଞାନ ଅଟଇ ଯେ ମୁହିଁ ।।
ଆଜ୍ଞା ନୋହିଲେ ମୁଁ ନ ଯାଇ । ଭୟ ତ କରୁଛି ଗୋସାଇଁ ।।
ତୁମ୍ଭର ଆଜ୍ଞା ଯେବେ ହେବ । ଭୟ କେବେହେଁ ମୋ ନୋହିବ ।।
ମନ ମୁଖରୁ ଏହା ଶୁଣି । ଚିତ୍ତ ନିର୍ମଳ ତାର ଜାଣି ।।
ହେ ମନ ଭୟ କାହିଁ ପାଇଁ । ଆଜ୍ଞା ମୁଁ ଦେଲି ଯାଅ ତୁହି ।।
ଖଣ୍ଡଗିରିରୁ ବେଗେ ଯାଅ । ଏମନ୍ତ ହୋଇ ତୁହି ରହ ।।
ଲୋଭ ମୁହାଁସ ଛାଡ଼ ତୁହି । ଏଥିରେ କିଛି କାର୍ଯ୍ୟ ନାହିଁ ।।
ଏକାନ୍ତ ହୋଇଣ ରହିବୁ । କାହାରି ସଙ୍ଗ ନ କରିବୁ ।।
ଏକା ହୋଇଣ ବନେ ରହ । ଆଜ୍ଞା ମୋହରି ମାନିଥାଅ ।।
ଆଜ୍ଞାରୁ ଦେହ ହୋଇଅଛି । ମାୟାରେ ନ ଜାଣଇ କିଛି ।।
ଏବେ ମୁଁ କହୁଅଛି ଶୁଣ । ଆଗେ ଆଜ୍ଞା ପଛେ ଜନମ ।।
ସ୍ଥାବର ଜୀବଜନ୍ତୁ ଯେତେ । ଆଜ୍ଞାରୁ ଜନ୍ମିଲେ ସମସ୍ତେ ।।
ଆଜ୍ଞାକୁ ବ୍ରହ୍ମା ଯେ ପାଇଲେ । ସକଳ ସୃଷ୍ଟି କି ସର୍ଜିଲେ ।।
ଆଜ୍ଞାକୁ ବିଷ୍ଣୁ ଯେ ପାଇଲେ । ସକଳ ସୃଷ୍ଟିକି ପାଳିଲେ ।।

ଆଜ୍ଞା ଯେ ଶଙ୍କର ପାଇଲେ । ସକଳ ସୃଷ୍ଟି ସଂହାରିଲେ ।।
ଆଜ୍ଞାକୁ ଚନ୍ଦ୍ର ସୂର୍ଯ୍ୟ ପାଇ । ରାତ୍ର ଦିବସେ ଭ୍ରମେ ସେହି ।।
ଆଜ୍ଞାକୁ ପାଇ ତାରାଗଣ । ଅମରେ କରନ୍ତି ଭ୍ରମଣ ।।
ଆଜ୍ଞାକୁ ଦେବତା ପାଇଲେ । ଅମୃତ ପାନେ ସେ ରହିଲେ ।।
ଆଜ୍ଞାକୁ ଶିବ ଯେ ପାଇଲେ । ଅମର ହୋଇଣ ରହିଲେ ।।
ଆଜ୍ଞାକୁ ଇନ୍ଦ୍ର ପାଇକରି । ସ୍ୱର୍ଗେ ହୋଇଛି ଅଧିକାରୀ ।।
ଆଜ୍ଞାକୁ ବୃହସ୍ପତି ପାଇ । ସକଳ ବେଦ ସେ କହଇ ।।
ଆଜ୍ଞାକୁ କୁବେର ପାଇଛି । ଭଣ୍ଡାର ଘର ସେ ଜଗିଛି ।।
ଆଜ୍ଞାକୁ ଯମ ଯେ ପାଇଲା । ପାପ ପୁଣ୍ୟକୁ ସେ ବୁଝିଲା ।।
ଆଜ୍ଞାକୁ ଚାରିମେଘ ପାଇ । ପୃଥିବୀ ପାଳୁଛନ୍ତି ସେହି ।।
ତେତିଶ କୋଟି ଦେବ ଯେତେ । ଆଜ୍ଞାରେ ଅଛନ୍ତି ସମସ୍ତେ ।।
ଏମନ୍ତ କୋଟି ଦେବଗଣ । ଆଜ୍ଞାକୁ ଧରିଣ ଭ୍ରମଣ ।।
ଆଜ୍ଞାକୁ ଧ୍ରୁବ ଯେ ପାଇଲେ । ଧ୍ରୁବ ମଣ୍ଡଳେ ସେ ରହିଲେ ।।
ଆଜ୍ଞା ଯେ ମୁନିଗଣେ ପାଇ । ଗୋପରେ ସ୍ତିରୀ ରୂପ ହୋଇ ।।
ଆଜ୍ଞାକୁ ବାସୁକୀ ପାଇଣ । ପୃଥିବୀ ରହିଅଛି ଜାଣ ।।
ପୃଥ୍ୱୀ ନିମନ୍ତେ ଦେବଗଣ । ଗୁହାରି କରନ୍ତି ଯେ ପୁଣ ।।
ତାଙ୍କର ବଚନ ଶୁଣନ୍ତି । ଦଶ ଅବତାର ହୁଅନ୍ତି ।।
ଆଜ୍ଞାରୁ ମୀନ ରୂପ ହୋଇ । ଶୁଣ ସୁଜନେ ଚିତ୍ତ ଦେଇ ।।
ଆଜ୍ଞାରେ କୂର୍ମ ରୂପ ଧରି । ସଂସାରେ ଖେଳେ ନରହରି ।।
ଆଜ୍ଞାରେ ବରାହ ଯେ ରୂପ । ଅବନୀ ଉଦ୍ଧାରଣେ ଧାପ ।।
ନରସିଂହ ଆଜ୍ଞା ରୂପରେ । ହିରଣ୍ୟ ନାଶି ଭାରା ହରେ ।।
ବାମନ ରୂପ ଆଜ୍ଞା ପାଇ । ବଳିକି ଚାପିଲ ଯେ ମହୀ ।।
ବଳିକି ପାତାଳେ ରଖିଲେ । ଆଜ୍ଞାରେ ଦ୍ୱାରପାଳ ହେଲେ ।।
ଆଜ୍ଞାରେ ପର୍ଶୁରାମ ରୂପ । ଦୁଷ୍ଟଙ୍କୁ ହରିଲେ ସେ ଦର୍ପ ।।
ଆଜ୍ଞାରୁ ରାମ ରୂପେ ଜାଣ । ରାବଣ ନାସିଲେ ଯେ ପୁଣ ।।
ଆଜ୍ଞାରୁ ବଳରାମ ରୂପ । ଅବନୀ ଭାରା ହରେ ଦର୍ପ ।।
ଆଜ୍ଞାରେ ବୌଦ୍ଧରୂପ ହେଲେ । ନୀଳକନ୍ଦରେ ବିଜେ କଲେ ।।
ଆଜ୍ଞାରେ କଲ୍‌କୀ ରୂପ ହେଲେ । ଦୁଷ୍ଟଯାକ ଯେ ସଂହାରିଲେ ।।
ଏମନ୍ତ ଦଶ ଅବତାର । ଅବନୀ ଭାରା କରେ ସ୍ଥିର ।।

 

ଏମନ୍ତ ଆଜ୍ଞାର ମହିମା । ମୁଁ କିସ କହିବି ତା ସୀମା ॥
ମୁହିଁଟି ଆଜ୍ଞା ପାଇଅଛି । ସକଳ ଘଟେ ବିହରୁଛି ॥
ତୁହିଟି ମୋର ସଙ୍ଗେ ଥିବୁ । ଆଜ୍ଞାକୁ ତୁ ଯେବେ ଜାଣିବୁ ॥
ନୋହିଲେ କେବେ ନାହିଁ ଯଶ । ନମଇଁ ଅରକ୍ଷିତ ଦାସ ॥

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ଅଷ୍ଟାଦଶୋଽଧ୍ୟାୟଃ ।

## ଊନବିଂଶ ଅଧ୍ୟାୟ

ହେ ଅନ୍ତର୍ଯ୍ୟାମୀ ବ୍ରହ୍ମ ତୁହି । ଦୟାକର ହେ ଭାବଗ୍ରାହୀ ॥
ହେ ଅନ୍ତର୍ଯ୍ୟାମୀ ଚନ୍ଦ୍ର ସୂର୍ଯ୍ୟ । ଦୟା ତୁ କର ଦେବରାଜ ॥
ହେ ଅନ୍ତର୍ଯ୍ୟାମୀ ବ୍ରହ୍ମା ଶିବ । ଦୟା ତୁ କର ମୋତେ ଦେବ ॥
ହେ ଜୀବ ପରମ ପୁରାଣ । ଦୟା ତୁ କର ମୋତେ ପୂର୍ଣ୍ଣ ॥
ହେ ଶୂନ୍ୟ ଶୂନ୍ୟ ଶୂନ୍ୟ ତୁହି । ଦୟା ତୁ କର ମୋତେ କହି ॥
ହେ ଜଳ ଅଗ୍ନି ହେ ପବନ । ଦୟା ତୁ କର ବଂଶଦାତା ॥
ହେ ଦେବ ଅନନ୍ତ ମୂରତି । ଦୟା ତୁ କର ପ୍ରାଣପତି ॥
ଆହେ ଆକାଶ ମହୀଧର । ଦୟା ତୁ କର ପୀତାମ୍ବର ॥
ଏମନ୍ତେ ନାନା ରୂପ ଧର । ଭକ୍ତଙ୍କୁ କଷଣରୁ ତାର ॥
ଭକତ ଆତଙ୍ଗେ ଡାକିଲେ । ରୂପ ଯେ ଧରୁ ସେତେବେଳେ ॥
ନୋହିଲେ ରୂପ ନାହିଁ ତୋର । ହେ ପ୍ରଭୁ ମୋତେ ଦୟା କର ॥
ଆହେ ଅଗମ୍ୟ ନାଥ ତୁହି । କରଣ କାରଣ ଯେ ହୋଇ ॥
ତୁମ୍ଭ ବ୍ୟତୀତ ମୋତେ କେହି । କାରଣ କରିପାରେ ନାହିଁ ॥
ମୋ ମନ ଉଚ୍ଛିନ୍ନ କରିବୁ । ଏ ସ୍ଥାନ ବେଗେ ଛଡ଼ାଇବୁ ॥
ତୁମ୍ଭର ଦୟା ଯେ ନୋହିଲେ । ଏ ସ୍ଥାନ ନ ଛାଡ଼ଇ ଭଲେ ॥
ତୁହି ପ୍ରସନ୍ନ ହେଲେ ସିନା । ସେ ଭାବ ନ କରି ଭାବନା ॥
ତେବେ ମୁଁ ଯୁଗେ ଯୁଗେ ଥିବି । ନୋହିଲେ ଏ ଦେହ ଛାଡ଼ିବି ॥
ହେ ପ୍ରଭୁ କର୍ତ୍ତା ଯେ ପୁରୁଷ । ନମଇଁ ଅରକ୍ଷିତ ଦାସ ॥

ଆହେ ସୁଜନମାନେ ଶୁଣ । ଏ ଗୀତା କଳି ମୁଁ ବଖାଣ ॥
ମୂର୍ଖ ପଣରେ ଏହା କଲି । ଏ ଦୋଷ ତୁମ୍ଭଙ୍କୁ ମାଗିଲି ॥
ଅମୃତ ପ୍ରାୟ ଗୀତା ରସ । ସୁଜନେ ଏହି ଭାବେ ରସ ॥
ଏ ଗୀତା ଭେଦ ଯେ ରସିବ । ଜନ୍ମ ମୃତ୍ୟୁକୁ ସେ ଜିଣିବ ॥
ଅକ୍ଷୟ ପିଣ୍ଡ ସେହୁ ଜାଣ । ପ୍ରଳେ ନ ଲାଗିବ ପୁରାଣ ॥
ନୋହିଲେ କେଉଁ ଗତି ନାହିଁ । ଏ ଭାବ ଯେବେ ନ ଜାଣଇ ॥

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା
କଥନେ ନାମ ଊନବିଂଶୋଽଧ୍ୟାୟଃ ।

## ବିଂଶ ଅଧ୍ୟାୟ

ଆହେ ଚୈତନ୍ୟ ଦୟା କର । ସପ୍ତାଙ୍ଗ ଯୁଗର ବିଚାର ॥
ଏହା ଶୁଣିବାକୁ ମୋ ମନ । ପୁଚ୍ଛଇ ତୁମ୍ଭ ପାଦେ ପୁଣ ॥
ମନ ମୁଖରୁ ଏହା ଶୁଣି । ସପ୍ତାଙ୍ଗ ଯୋଗ କହେ ପୁଣି ॥
ଚନ୍ଦ୍ର ସୂର୍ଯ୍ୟ ଜୀବ ପରମ । ଏ ଦୁଇଘଡ଼ି ବହେ ବାମ ॥
ଜୀବ ପରମ ଦୁହେଁ ହୋଇ । ଦେହକୁ ଧରିଛନ୍ତି ସେହି ॥
ଓଁ କାର ଚନ୍ଦ୍ର ସୂର୍ଯ୍ୟ ହେଲେ । ନାସିକା ପଥେ ବିହରିଲେ ॥
ବାମ ପୁଡ଼ାରେ ଯେବେ ବହି । ଜୀବ ଚନ୍ଦ୍ରଟି ସେ ବୋଲାଇ ॥
ଡାହାଣ ପୁଡ଼ାରେ ବହିଲେ । ପରମ ସୂର୍ଯ୍ୟ ଅଟେ ଭଲେ ॥
ଦୁଇଘଡ଼ି ଯେ ବାମେ ବହି । ପୁଣ ସେ ଦକ୍ଷିଣକୁ ଯାଇ ॥
ଦ୍ୱିଘଡ଼ି ଦକ୍ଷିଣ ପୁଡ଼ାରେ । ଓଲଟ ପାଲଟ ବିହରେ ॥
ଦକ୍ଷିଣ ପୁଡ଼ାରେ ବହିଲେ । ସ୍ନାନ ଭୋଜନ କରି ଭଲେ ॥
ନାନାଦି ଦ୍ରବ୍ୟ ତୁ ଭୁଞ୍ଜିବୁ । ନିରୋଗ ଶରୀର ଧରିବୁ ॥
ସୂର୍ଯ୍ୟଙ୍କ ତେଜ ଲାଗି ଜାଣ । ଆହାର ପରେ ତତ୍‌କ୍ଷଣ ॥
ଆହାର ପାକ ଯେବେ ହୋଇ । ରୋଗଟି କେବେ ନ ପଶଇ ॥
ସୂର୍ଯ୍ୟ ଉଇଁବ ଯେତେବେଳେ । ନିଦ୍ରାକୁ ଜାଗିଥିବୁ ଭଲେ ॥
ଏ ଦୁଇ ଘଡ଼ିରେ ନ ଶୋଇ । ତେବେ ରଖିବୁ ତୋର ଦେହୀ ॥

 

ରବି ଶନି ଗୁରୁ ମଙ୍ଗଳ । ଏ ଚାରି ବାର ସୂର୍ଯ୍ୟ ସ୍ଥଳ ॥
ଏ ଚାରିବାରେ ସ୍ନାନ କର । ଜନ୍ମ ମୃତ୍ୟୁକୁ ତୁ ନ ଡର ॥
ବାମ ପୁଡ଼ାରେ ବହୁଥିଲେ । କିଛି ନ ଖାଅ ତୁହି ଭଲେ ॥
ଚନ୍ଦ୍ରମା ଶୀତଳ ଅଟଇ । ଆହାର ପାକ ଯେ ନୁହଇ ॥
ଆହାର ପାକ ଯେ ନୋହିଲେ । ନାନା ରୋଗଟି ହୁଏ ଭଲେ ॥
ତେଣୁ ଅଳପେ ନାଶ ଯାଇ । ତାକୁ ନ ରଖିପାରେ କେହି ॥
ବାମ ପୁଡ଼ାରେ ବହୁଥିବ । ସ୍ନାହାନ କେଭେଁ ନ କରିବ ॥
ଏ ଦୁଇ ଘଡ଼ିରେ ଶୋଇବୁ । ଯୋଗ ନିଦ୍ରାଟି ତୁହି ଯିବୁ ॥
ସୋମ ଶୁକ୍ର ଯେ ବୁଧବାରେ । ସ୍ନାହାନ ନ କର ତହିଁରେ ॥
ଏହା ଜାଣିଲେ ଅକ୍ରାମର । ଏ ତିନିବାର ଚନ୍ଦ୍ରଙ୍କର ॥
ସୂର୍ଯ୍ୟଙ୍କ ବାର ହୋଇଥିବ । ଏହି ବାରେ ଯେ ଦିଗେ ଯିବ ॥
ଚନ୍ଦ୍ରଙ୍କ ବାର ହୋଇଥିଲେ । ଗଲେଟି ନାଶ ଯାଇ ଭଲେ ॥
ସୂର୍ଯ୍ୟଙ୍କ ବେଳା ହୋଇଥିଲେ । ଚନ୍ଦ୍ର ବାସରେ କେଣେ ଗଲେ ॥
ଶୁଭ ସେ ବେଳ ଯେ ଅଟଇ । ତେଣେ ଗଲେଟି ଯଶ ପାଇ ॥
ଚନ୍ଦ୍ର ସୂର୍ଯ୍ୟଙ୍କୁ ଜଗିଥିଲେ । ଏ ଦେହ ରଖିବୁଟି ଭଲେ ॥
ଏହାଙ୍କୁ ନିତ୍ୟେ ଜଗିଥିବୁ । ଦୁଇ ଦୁଇ ଘଡ଼ି ଛିଡ଼ିବୁ ॥
ଏ ଦୁହେଁ ଦେହ ଧରିଛନ୍ତି । ଏହାଙ୍କୁ ଜାଗିଥିବୁ ନିତି ॥
ଉଦେ ଅସ୍ତକୁ ଜଗିଥିବୁ । ତିଳାର୍ଦ୍ଧେ ବଳାଇ ନ ଦେବୁ ॥
ଚନ୍ଦ୍ରମା ତେଜ ଯେ ବଳିଲେ । ଜଳ ଘୋଟିବ ତତ୍‌କାଳେ ॥
ସୂର୍ଯ୍ୟଙ୍କ ତେଜ ଯେବେ ବଳେ । ଅଗ୍ନି ଉଠିବ ଅସମ୍ଭାଳେ ॥
ଦୁଇ ଘଡ଼ି ଦୁଇ ଦୁଆରେ । ଉଲଟ ପାଲଟ ଯେ କରେ ॥
ରୋଗ ବ୍ୟାଧିହିଁ ନ ପଶନ୍ତି । ଅମର ହୋଇ ସେ ରହନ୍ତି ॥
ନୋହିଲେ କେବେ ଯଶ ନାହିଁ । ଏହାକୁ ଯେବେ ନ ଜଗଇ ॥
ସାତ ବାରଟି ଯେବେ ଯାଇ । ବାମ ପୁଡ଼ାରେ ତେବେ ରହି ॥
ଆଠ ଦିନଟି ମୃତ୍ୟୁ ହେବ । ଡାହାଣେ ସେ ଯେବେ ନ ଯିବ ॥
ଡାହାଣ ପୁଡ଼ା ସାତ ବାର । ଯେବେ ରହିବ ସେ ନିଜର ॥
କେଭେ ମୃତ୍ୟୁଟି ନ ଘଟିବ । ବାମଭାଗେ ଯେବେ ନ ଯିବ ॥
ସାତ ବାର ଯେ ଲେଉଟାଇ । ମୃତ୍ୟୁକୁ ଜିଣି ସେ ରହଇ ॥
ଗଙ୍ଗା ଯମୁନା ସ୍ନାନ କର । କାଳ ମୃତ୍ୟୁକୁ ତୁ ନ ଡର ॥

ଏକାବେଳେଟି ସ୍ନାନ କଲେ । କୋଟିଏ ଅର୍ଥ ଫଳ ମିଳେ ॥
ଚନ୍ଦ୍ର ସୂର୍ଯ୍ୟେଟି ଦୁଇ କହି । ଏକା ଓଁକାର ସଙ୍ଗେ ହୋଇ ॥
ଏହା ନ ଜାଣେ ମୂର୍ଖପଣେ । ମିଛେ ଭ୍ରମଇଁ ଏଣେ ତେଣେ ॥
ନାନା ତୀର୍ଥରେ ସ୍ନାନ କରେ । ଘର ତୀର୍ଥକୁ ସେ ପାଶୋରେ ॥
ନାନା ଦିଅଁକୁପୂଜା କରି । ଘର ଦିଅଁକୁ ସେ ପାଶୋରି ॥
ନାନାଦି ଧ୍ୟାନ ମନ୍ତ୍ର ସ୍ମରେ । ନିଜ ଦେହ ପାଶୋରି ମରେ ॥
ଏକା ଓଁକାର ଦେଖ ତୁହି । କେତେ ପ୍ରକାର ସେ ବହଇ ॥
ଆଜ୍ଞା ପାଇଣ ସେ ରହୁଛି । ରାତ୍ର ଦିବସ ନ ଜାଣୁଛି ॥
ଏଣୁ ସେ ମାରଇ ତେଣିକି । ତେଣୁ ସେ ମାରଇ ଏଣିକି ॥
ଦଣ୍ଡେ ବିଶ୍ରାମ ତାର ନାହିଁ । ଆଜ୍ଞାକୁ ଶିରେ ବହିଥାଇ ॥
ଆଜ୍ଞା ହୋଇଲେ ଦେହ ଛାଡ଼େ । ମାଟି ପିଣ୍ଡଟି ଝଡ଼ି ପଡ଼େ ॥
ଏମନ୍ତେ ଆଜ୍ଞା ମାନିଛନ୍ତି । ତିଳାର୍ଦ୍ଧେ ବିମୁଖ ନୁହନ୍ତି ॥
ଏବେ ସୁମନ ଶୁଣ ତୁହି । ସାତ ବାରଙ୍କ ଗୁଣ ଏହି ॥
ରବିବାରର କଥା ଶୁଣ । କହିବା ହେତୁ କରି ଘେନ ॥
ଚନ୍ଦ୍ର ସୂର୍ଯ୍ୟ ଯେ ଏକ କରି । ତୋଳି ତ ମିଶାଇଣ ଭରି ॥
ତ୍ରିକୂଟ ସନ୍ଧିରେ ଭରିବୁ । ଉଜାଣି ବାୟୁ ବୁଲାଇବୁ ॥
ଏ ଦିନ ସ୍ତିରୀସଙ୍ଗ ନୋହି । ନ କରି ନ ଛୁଇଁବୁ ତୁହି ॥
ତେବେଟି ଏ ଦେହ ରହିବ । ଯମ ଦେଖି ଭୟ କରିବ ॥
ସୋମବାରରେ ସ୍ତିରୀସଙ୍ଗ । ରତି କରିବୁ ନାନା ରଙ୍ଗ ॥
ଦକ୍ଷିଣ ପୁଡ଼ାରେ ପବନ । ବହୁଥିବ କହୁଛି ଜାଣ ॥
ତେତେବେଳେ ରତି କରିବୁ । ତିଥି ଲଗ୍ନକୁ ଜାଣିଥିବୁ ॥
ମଙ୍ଗଳବାରେ ସ୍ତିରୀସଙ୍ଗ । ଦୂରୁ କରିବୁ ପରିତ୍ୟାଗ ॥
ଏ ବାରେ ପବନ ଉଜାଣି । ତୋଳିବ ତ୍ରିକୂଟକୁ ପୁଣି ॥
କାଳଗଣଙ୍କୁ ତୁ ଜିଣିବୁ । ତେବେଟି ଏ ଦେହ ରଖିବୁ ॥
ବୁଧବାରରେ ରତି କରି । ତିଥିବାରକୁ ତହିଁ ଧରି ॥
ଗୁରୁବାରରେ ସ୍ତିରୀ ତହିଁ । ତେବେହେଁ ନ ଛୁଇଁବୁ ତୁହି ॥
ନାମକୁ ଚିନ୍ତା କରୁଥିବୁ । ତେବେ ଅକ୍ରାମରେ ରହିବୁ ॥
ଯମ ଦେଖିଣ ଡରିଥିବ । ମୃତ୍ୟୁ ତୋତେ କେଭେ ନୋହିବ ॥
ଶୁକ୍ରବାରେ ରତି ତୁହି । କର ହୋ କିଛି ଭୟ ନାହିଁ ॥

ଦକ୍ଷିଣ ପୁଡ଼ାରେ ପବନ । ରହିବ ଯେତେବେଳେ ପୁଣ ।।
ତେତେବେଳେ ସ୍ତିରୀ ସଙ୍ଗେ । ରତି କରିବୁ ନାନା ରଙ୍ଗେ ।।
ସେ ବୀର୍ଯ୍ୟ ଯାଇ ପଦ୍ମେ ରହି । ପୁରୁଷ ଅଙ୍ଗେ ଜାତ ହୋଇ ।।
ଶନିବାରରେ ତୁହି ପୁଣ । ସ୍ତିରୀଙ୍କୁ ନ ଛୁଇଁବୁ ଜାଣ ।।
ଏ ବାରେ ପବନ ତୋଳିବୁ । ଅବାୟୁ ମଣ୍ଡଳେ ଭରିବୁ ।।
ତେବେ ଅମର ହେବୁ ଜାଣ । ସାତ ବାରକୁ ଜାଗ ମନ ।।
ତିନିବାରଟି ସ୍ତିରୀ କହି । ଚାରିବାର ପୁରୁଷ ହୋଇ ।।
ଏ ସାତ ବାର ଜଗିଥିବୁ । ତିଳାର୍ଦ୍ଧେ ହେଳା ନ କରିବୁ ।।
ହେଳା କଲେଟି କାଳମୃତ୍ୟୁ । ମାରି ନେବଟି ଜାଣ ହେତୁ ।।
ରାତ୍ର ଦିବସ ସାତ ବାର । ଜଗିଥିବୁଟି ତୁ ନିକର ।।
ଏ ସାତ ବାର ଜଗିଥିଲେ । କେବେହେଁ ନ ମରିବୁ ଭଲେ ।।
ହେ ମନ ଏ ସାତ ବାରକୁ । ଜଗ ହୋ କହିଲି ତୁମ୍ଭକୁ ।।
ନ ଜଗିଲେଟି ଯଶ ନାହିଁ । ଏବେଟି ନିତ୍ୟ ଜାଗ କହି ।।
ନ ଜଗିଲେଟି ନାହିଁ ଯଶ । କହଇ ଅରକ୍ଷିତ ଦାସ ।।
ଆହେ ସୁଜନମାନେ ଶୁଣ । ସପ୍ତାଙ୍ଗ ଯୋଗର ବିଧାନ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା
କଥନେ ନାମ ବିଂଶୋଽଧ୍ୟାୟଃ ।

## ଏକବିଂଶ ଅଧ୍ୟାୟ

ହେ ମନ ଶୁଣ ଏବେ ତୁହି । ସହିବୁ ଗୋରୁ ପ୍ରାୟ ହୋଇ ।।
ସବୁ ଜୀବଜନ୍ତୁଙ୍କ କ୍ରୋଧ । ସହିବୁ ସମ କରି ବୋଧ ।।
କେ ଅବା ମାଡ଼ ଯେ ମାରିବେ । କେ ଅବା ଭର୍ତ୍ସନା କରିବେ ।।
ଜୀବଜନ୍ତୁଙ୍କ ହିଂସାମାନ । ସବୁ ବୋଲିବୁ ନାରାୟଣ ।।
ବୋଲିବୁ ପ୍ରଭୁ କୋପ ହୋଇ । ନମିବୁ ତାର ପାଦେ ତୁହି ।।
ମୋର ଅନ୍ୟାୟ ସେ ଦେଖିଲେ । ତେଣୁଟି ମୋତେ କୋପ କଲେ ।।
ଏମନ୍ତ ବୋଲି ମନେ ମନେ । ସର୍ବ କହିବୁ ସମାଧାନେ ।।

ବୃକ୍ଷ ପାଷାଣ ପରି ସହ । ତେବେ ରଖିବୁ ସିନା ଦେହ ।।
ଦେଖ ନାସା ପବନ ବହି । ବାସ ଦୁର୍ଗନ୍ଧ ସେ ନିଅଇ ।।
ସେହି ପ୍ରକାରେ ତୁ ହୋଇବୁ । ଗନ୍ଧ ଦୁର୍ଗନ୍ଧ ଉପେକ୍ଷିବୁ ।।
ଦେଖ କର୍ଣ୍ଣଟି ସର୍ବ ଶୁଣେ । ପାପ ପୁଣ୍ୟଟି ସେ ନ ଗଣେ ।।
ଏହି ପ୍ରକାରେ ତୁହି ହୁଅ । ତେବେ କରିବୁ ମାୟାମୋହ ।।
ଦେଖ ଚକ୍ଷୁ ସର୍ବ ଦେଖଇ । ସବ୍ୟେ ଅସବ୍ୟେ ଦୃଷ୍ଟି ଦେଇ ।।
ସେହି ପ୍ରକାରେ ତୁହି ହୁଅ । ତେବେ ସଂସାରେ ସୁଖେ ଥାଅ ।।
ଦେଖ ଜିହ୍ୱାଟି ସର୍ବ ଖାଇ । ସ୍ୱାଦୁ ଅସ୍ୱାଦୁ ସେ ବାରଇ ।।
ଏହାକୁ ଜିଣି ସମ କରି । ତେବେ ତରିବୁ ଭବବାରି ।।
ମିଛ ସତଟି ତୁହି ଜାଣ । ଏ ଦୁହେଁ ଅଟନ୍ତି ସମାନ ।।
ଛୁଆଁ ଅଛୁଆଁ ନ ବାରିବୁ । ଏହାକୁ ସମାନ ଜାଣିବୁ ।।
ଶଙ୍ଖୁଡ଼ି ନିଶଙ୍ଖୁଡ଼ି ଦୁଇ । ସମାନଟି ଦେଖିବୁ ତୁହି ।।
ମନ ତୁ କିଛି ନ ବାରିବୁ । ସର୍ବ ସମାନ ତୁ ଦେଖିବୁ ।।
ଏକା ଓଁକାର ସର୍ବ କରେ । ତା' ଦେହ ସର୍ବ ଗନ୍ଧ ହରେ ।।
ସ୍ୱାଦୁ ଅସ୍ୱାଦୁ ସେ ବିଚାରି । ନୟନେ ଦେଖି ଶୁଣି କରି ।।
ସ୍ୱାଦୁ ଅସ୍ୱାଦ ନ ବାରିବୁ । ଏ ଦୁଇ ସମାନ ଦେଖିବୁ ।।
ଦେଖ ଓଁ କାରେ ସର୍ବ ଅଛି । ଏ ଦୁଇ ସମାନ ଦେଖୁଛି ।।
ତୁହିଟି ଏହିଭାବେ ରହ । ଓଁକାର ଭାବ ଦେଖିଥାଅ ।।
କର୍ମ ଅକର୍ମ ଦେଖ ସମ । ଏ ଦୁହେଁ ଅଟନ୍ତି ସମାନ ।।
ଶୁଭ ଅଶୁଭ ନ ମଣିବୁ । ଏ ଦୁଇ ସମାନ ଦେଖିବୁ ।।
ଭଲ ମନ୍ଦଟି ନାହିଁ ଜାଣ । ଏ ଦୁହେଁ ଅଟନ୍ତି ସମାନ ।।
ଦୁଃଖ ସୁଖହିଁ ନ ଗଣିବୁ । ଏ ଦୁଇ ସମାନ ଦେଖିବୁ ।।
ଚିନ୍ତା ଅଚିନ୍ତା ତୁ ନ କର । ଏ ଦୁହେଁ ସମାନ ନିକର ।।
ଭୟ ଅଭୟ ନ କରିବୁ । ଏ ଦୁଇ ସମାନ ଦେଖିବୁ ।।
ସାଧୁ ଅସାଧୁ ତୁ ନ ମଣ । ଏ ଦୁହେଁ ଅଟନ୍ତି ସମାନ ।।
ଧର୍ମ ଅଧର୍ମ ନ ବାରିବୁ । ଏ ଦୁଇ ସମାନ ଦେଖିବୁ ।।
ପାପ ପୁଣ୍ୟ ତୁ ନ ବିଚାର । ଏ ଦୁହେଁ ସମାନ ନିକର ।।
ସ୍ୱର୍ଗ ନରକ ନ ତାରିବୁ । ଏ ଦୁଇ ସମାନ ଦେଖିବୁ ।।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନି । ଏ ତିନି ଏକ ବୋଲି ଜାଣି ।।

ବ୍ରହ୍ମାବିଷ୍ଣୁ ଶିବଟି ଜାଣ । ଏ ତିନି ଏକ ବୋଲି ଗଣ ।।
ଜଳ ପବନ ଅଗ୍ନି ଯେହି । ଏ ତିନି ଏକ ଅଙ୍ଗ ହୋଇ ।।
ଏକା ଓଁକାର ସର୍ବ ଜାଣ । ଭିନ୍ନାଭିନ୍ନଟି କରେ ପୁଣ ।।
ଲୀଳା ନିମନ୍ତେ ଭିନ୍ନ ହୋଇ । ତା ମାୟା କେହି ନ ଜାଣଇ ।।
ନବଦ୍ୱାରେ ସେ ବିହରିଲା । ଖଞ୍ଜାକୁ ଖଞ୍ଜା ଯେ ଚାଳିଲା ।।
ରୋମ ରୋମକେ ବିହରଇ । ଅନନ୍ତ ରୂପ ତାକୁ କହି ।।
ଆଜ୍ଞାକୁ ଶିରେ ଘେନିଅଛି । ଦୁଃଖ ସୁଖହିଁ ପାଉଅଛି ।।
ଜନ୍ମୁଛି ମରୁଛିଟି ସେହି । ଏ ଦୁଇ ସମାନ ଅଟଇ ।।
ପର ଘରରେ ତୁ ରହିନ୍ତୁ । ଆପଣା ଘର ନ ଜାଣୁନ୍ତୁ ।।
ଆପଣା ଦେହେ ହେତୁକର । ପର ଘରରେ ତୁ ବିହର ।।
ଏହା ତୁ ଜାଣି ନ ପାରୁନ୍ତୁ । ଦେହକୁ ମୋହର ବୋଲୁନ୍ତୁ ।।
ଓଁକାର ପରମ ପୁରୁଷ । କହଇ ଅରକ୍ଷିତ ଦାସ ।।
ଆହେ ସୁଜନମାନେ ଶୁଣ । ଘର ଘରଟି ଏହୁ ମନ ।।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା
କଥନେ ନାମ ଏକବିଂଶୋଽଧ୍ୟାୟଃ ।



# ଅନନ୍ତ ଗୁପ୍ତ ଟୀକା

## ପ୍ରଥମ ଅଧ୍ୟାୟ

ନମସ୍ତେ ନମସ୍ତେ ଗିରିଜା ଈଶ୍ୱରୀ ଗଉରା ଯେ ଠାକୁରାଣୀ ।
ଉତ୍ପତ୍ତି ପ୍ରଳୟ ସଂହାରକୁ ମା'ତ ତୋହରି ବିଷୟା ପୁଣି ।।
ତୁମ୍ଭେ ଯାହା ରଖ ତୁମ୍ଭେ ଯା ଉପେକ୍ଷ ତୁମ୍ଭରି ମହିମା ସର୍ବ ।
ତୁମ୍ଭବିନୁ ଭବ ସମୁଦ୍ରକୁ ମାତ ଅଛି ପୁଣି କାହିଁ ନାବ ।।
ତୁମ୍ଭେ କୃପା କଲେ ମୂର୍ଖ ଯେ ପଣ୍ଡିତ ନମସ୍ତେ ଈଶ୍ୱରୀ ମାତା ।
ତବ କୃପାରୁଟି ଶକ୍ତି ଅନୁକ୍ରମେ ଯେ ଯେତେ ହୋ'ଛି ଶକତା ।।
ତବ କୃପାରୁଟି ପଙ୍ଗୁ ଗିରି ଲଙ୍ଘେ ଜଡ଼ା କହେ ଦିବ୍ୟ ବାଣୀ ।
ତବ କୃପାରୁଟି ଦୁଃଖୀ ହୋଏ ସୁଖୀ ଅପାର ମହିମା ପୁଣି ।।
ତବ କୃପାରୁଟି କୋଢ଼ି ଯେ କନ୍ଦର୍ପ ମୂର୍ଖ ହୋଏ ଜଗଜିତା ।
ତୁମ୍ଭକୃପା କଲେ ମଲା ଲୋକ ଜୀଏ ଆଚମ୍ଭିତ ଏହୁ କଥା ।।
ତବ କୃପା କଲେ ପାପୀ ଯେ ତରନ୍ତି ମୁଖେ ବୋଲି ରାମ ନାମ ।
ତୁମ୍ଭ କୃପା କଲେ ଦୁର୍ଭିକ୍ଷ ଯେ ପୁଣି ଦେଇପାରେ ଅନ୍ନଦାନ ।।
ନମସ୍ତେ ନମସ୍ତେ ନମୁ ତ୍ରିପୁରାରି ନମଇଂ ଗୋ ଆଦିମାତ ।
ସଖା ସୋଦର କେହି ନାହିଁ ମୋ ପୁଣି ଅଟଇଟି ଅରକ୍ଷିତ ।।
ତୁମ୍ଭବିନୁ ମୋର ନାହିଁଟି ସୋଦର ତିନି ଭୁବନରେ ପୁଣି ।
ତୁମ୍ଭ ଆଜ୍ଞା ପାଇ ଗୁପ୍ତ ଟୀକା ସାର ଲେଖିବି ଜାଣି ନ ଜାଣି ।।
ଶ୍ରୀ ନୀଳକନ୍ଦରେ ସିଂହାସନ ପରେ ବସିଛନ୍ତି ଚଉବାହା ।
ଅଶରଣ ଲୋକଶରଣ ମାଗନ୍ତେ ଆପେ ଟେକିଛନ୍ତି ବାହା ।।
ଛାମୁରେ ବିନତା ନନ୍ଦନ ଯେ ପୁଣି କରପତ୍ର ଯୋଡ଼ି ସ୍ତବ ।
ଶ୍ରୀମୁଖକୁ ଚାହିଁ କହନ୍ତି ବିନୋଇ ଭୋ ନାଥ ଲକ୍ଷ୍ମୀ ବଲ୍ଲଭ ।।

ରେବତୀ ବଲ୍ଲଭ ହଳାୟୁଧ ଦେବ ଆବର ବିଜୟେ ବ୍ରହ୍ମ ।
ଏମନ୍ତେ ବିଜୟେ ତ୍ରିବିକ୍ରମ ଦେବ ଜୟ ଜୟ ପ୍ରୁଷୋତ୍ତମ ।।
ତବ ପାଦ ପଙ୍କଜର ମୂଳେ ମୁଁ ଯେ ନିବେଶିଣ ଅଛି ମନ ।
ନମସ୍ତେ ନମସ୍ତେ ନମସ୍ତେ ଭୋ ନାଥ ଜୟ ରତ୍ନ ସିଂହାସନ ।।
ଜୟ ଜଗଜ୍ୟୋତି ଅଶେଷଙ୍କୁ ଗତି ଜୟ ଶ୍ରୀ ଜଗମୋହନ ।
ତୁ ସିନା ଅଶେଷ ଅତ୍ରାହି କି ତ୍ରାହି ଦରିଦ୍ର ଲୋକଙ୍କ ଧନ ।।
ଜୟ ଜୟ ଜଗନ୍ନାଥ ଦୀନବନ୍ଧୁ ଜୟ ଶ୍ରୀ ଜଗମୋହନ ।
ତୁ ସିନା ଅଶେଷ ଘଟେ ପ୍ରାଣରୂପୀ ନାମ ରୂପୀ ପୂର୍ଣ୍ଣବ୍ରହ୍ମ ।।
ଛାମୁରେ ଯେ ଉଭା ହୋଇକରି ସେବା ଜଣାଇ ବିନତା ବଛିଁ ।
ବୋଲଇ ଭୋ ଦେବ ତ୍ରିବିଧି ସୁଲଭ ଶ୍ରୀପାଦେ ଆଶ୍ରେ କରିଛି ।।
ଯେମନ୍ତେ ଯେ ପୁଣି ଛାମୁରେ ଜଣାଇ ମଉନାବତୀ ବିଳାସ ।
ଅଶେଷ ବ୍ରହ୍ମାଣ୍ଡେ ପୂରି ପୂର୍ଣ୍ଣବ୍ରହ୍ମ ନୀଳାଞ୍ଚଳେ ନିଜ ବାସ ।।
ବିନତା ନନ୍ଦନ ହୋଇଣ କାର୍ପଣ୍ୟ ଛାମୁରେ ଅତି କିଙ୍କର ।
ନାଥଙ୍କ ଛାମୁରେ ମହାଲକ୍ଷ୍ମୀ ଛନ୍ତି ବିମଳା କମଳା ଆର ।।
ଅଷ୍ଟପାଟବଂଶୀ ପ୍ରୁଷୋତ୍ତମବାସୀ ଏକ ଠବେ ଛନ୍ତି ପୁଣ ।
ଆବର ସଙ୍ଗତେ ସୁଭଦ୍ରା ଅଛନ୍ତି ବଳଦେବ ସୁଦର୍ଶନ ।।
ଆବର ଯେତେକ ଗହଣର ଲୋକ ଛାମୁରେ ଅଛନ୍ତି ଖଟି ।
ଦୟଣା ଭୂଷଣ କରଡ଼ିଆମାଳ ଧଣ୍ଟାମାଳ ଯାୟେ ଲୋଟି ।।
ହସି ମହାପ୍ରଭୁ ଲକ୍ଷ୍ମୀ ମୁଖ ଚାହିଁ କହନ୍ତି ସାରଙ୍ଗ ପାଣି ।
କଳା ବଦନକୁ ବିମ୍ବା ଅଧରକୁ କି ଉପମା ଦେବି ପୁଣି ।।
କନେକବରନୀ କୋଟି ଚନ୍ଦ୍ର ଜିଣି ଶ୍ରୀମୁଖ ଅତି ଉଜ୍ଜ୍ୱଳ ।
ଶ୍ରୀ ନୀଳକନ୍ଦରେ ଜଗନ୍ନାଥ ପ୍ରଭୁ ଘେନି ବସିଛନ୍ତି କୋଳ ।।
ଢଳହଳ ଦିଶେ କିଶୋରୀ ଶ୍ରୀମୁଖ କମଳା ସିନ୍ଧୁ ଦୁହିତା ।
ଶ୍ରୀମୁଖ ଦର୍ଶନେ କାଳଦେବ ଧ୍ୱଂସେ ରବି ଚନ୍ଦ୍ର ଜିତା ଚିତା ।।
ପୟରେ ନୂପୁର ବ୍ୟାଘ୍ରଲଖ ଉର କନ୍ଧେ ସୁବର୍ଣ୍ଣ ପଇତା ।
ନାସାରେ ବସଣୀ କର୍ଣ୍ଣେ କାପ ପୁଣି ମୋହର ସରି ମୁକୁତା ।।
କଟଟି ବାହୁଟି ସର୍ବାଙ୍ଗରେ ଘୋଟିଅଛି ଅଳଙ୍କାର ମାନ ।
ଅଙ୍ଗୁଷ୍ଠିରେ ମୁଦିମାନ ଛନ୍ତି ଭେଦି ଲେଖିତେ କେବା ଭାର୍ଜନ ।।
ଶତେ ଚନ୍ଦ୍ରଶେଖର ଯେଉଁ ଚରଣେ କିଶୋରୀ ବିଷ୍ଣୁଂ ବଲ୍ଲଭ ।

ଅଶେଷକୁ ସେ ଯେ ସୁନ୍ଦର ଅଟନ୍ତି ବିଷ୍ଣୁଂ ଚରଣକୁ ଶୋଭା ॥
ଶୁଣ ଯେବେ ବାଣୀ ବିଚିତ୍ର କାହାଣୀ ନୀଳଗିରି ଠାବ ଗତି ।
ଶ୍ରୀୟା କାନ୍ତ ଶ୍ରୀୟା କୋଳେଣ ଧରିଣ କେ ନେତ୍ରେ ଦୃଷ୍ଟି ହୋଅନ୍ତି ॥
ଅମ୍ବୁଜ ନେତ୍ର ଯେ ତେରିବା ମାତ୍ରକେ ଅଶେଷ ନୟନ କତି ।
ତାହାନ୍ତେ ଗରୁଡ଼ କରି ଅତି ଦୃଢ଼ ଛାମୁରେ ଉଭା ଅଛନ୍ତି ॥
କହନ୍ତି ଗରୁଡ଼ ଜୟ ଯୋଗାରୂଢ଼ ଜୟ ଜୟ ଜଗୁବାନା ।
କି ରୂପେ ଅଶେଷ ବ୍ରହ୍ମାଣ୍ଡକୁ ନାଥ କାହିଁ ଥାଇ ହୁଅ ସ୍ନେହା ॥
ଗରୁଡର ବାଣୀ ଶୁଣି ଚକ୍ରପାଣି ହସନ୍ତି ରଙ୍ଗାଅଧର ।
ଜ୍ୟେଷ୍ଠ ଭାଇ ମୁଖ ଚାହିଁଣ କହନ୍ତି ଶୁଣ ଭାଇ ହଳଧର ॥
ଛାମୁରେ ଗରୁଡ଼ କରି ଅତି ଦୃଢ଼ ପଚାରୁଛି ଯେଉଁ ଭାବ ।
ଶ୍ରୀହରି କହନ୍ତି ଭାଇ ବଳେବର ଏହାକୁ ବୋଧ କରିବ ॥
ତହୁଁ ହଳପାଣି ଶେଷଦେବ ପୁଣି କହନ୍ତି ମହିଁମା ଗତି ।
ରେବତୀ ରମଣ ସପ୍ତଫଣୀ ପୁଣ ହସି ବୟାନ କରନ୍ତି ॥
ପୀତାମ୍ବର ଖଦି ଶ୍ରୀଅଙ୍ଗରେ ଭେଦି ଭୁଜେ ଲମ୍ବେ ଧଣ୍ଡାମାଳ ।
ଆବର ଯେ ବିଧି ଶୋଭା ଅଷ୍ଟନିଧି ଶିରେ ଶୋହେ ଶିଖୀଚୂଳ ॥
ଶେଷ ଯୋଗାରୂଢ଼ କହନ୍ତି ଗରୁଡ଼ ତୁ ପୁଛିଲୁ ଯେଉଁ ବାଣୀ ।
ଅଶେଷ ବ୍ରହ୍ମାଣ୍ଡେ ବିଷ୍ଣୁର ମହିଁମା ପୂରିଛି ଜାଣି ନ ଜାଣି ॥
ଅପାର ମହିଁମା ଅଶେଷ ଯେ ସୀମା ପବିତ୍ର ସେହୁ ଅଟନ୍ତି ।
ସ୍ଥାବର ଜଙ୍ଗମ କୀଟପତଙ୍ଗରେ ସବୁଠାରେ ଜଗୁଜ୍ୟୋତି ॥
ଯେ ଯେଡ଼େ ଭାବଇ ସେ ତେଡେ ଲଭଇ ବିଷ୍ଣୁଗତି ଅସମ୍ଭବ ।
ଅଶେଷ ବ୍ରହ୍ମାଣ୍ଡେ ଯେ ଯେଡ଼େ ଭାବନ୍ତି ତାଙ୍କୁ ତେଡ଼େ ପଦ୍ମନାଭ ॥
ତୁ ଯେ ପଚାରିଲୁ ମହିଁମା ସୁଗତି କାହିଁ କି ରୂପେ ବିଳାସ ।
ଅଶେଷରେ ଥାଇ ଲାଗି ବିଲଗ ସେ ମାୟାଧର ହୃଷୀକେଶ ॥
ଯହିଁ ଯେତେ ସୀମା ତହିଁରେ ମହିଁମା ପ୍ରକାଶ ହୋଇ ଅଛନ୍ତି ।
ଅଭୟ ଚରଣ ଆଶ୍ରେ ଅନୁଭବ ଥିଲାଲୋକେ ଯା ଜାଣନ୍ତି ॥
କି ଉପମା ପୁଣି ଦେବି ମୁହିଁ ଜାଣି ଅଶେଷକୁ ପରା ଗତି ।
ମନ ଚଇତନେ ଭାବନ୍ତି ଯେ ଜନେ ନିକଟେ ହୋନ୍ତି ପ୍ରାପତି ॥
ଶୁଣ ହୋ ଗରୁଡ଼ ଯୋଗଘର ଦୃଢ଼ ଶାହାସ୍ତରେ ଶୁଣାଅଛି ।
ଏ ଯେଉଁ ଶ୍ରୀଧର ଅତି ମାୟାଧର କାହିଁ ବାରଣ ନୋହୁଛି ॥

କେବଳ ଯେ ଯେତେ ଭକ୍ତ ଭାବ ପଥେ ପ୍ରସନ୍ନ ହୋନ୍ତି ମୁରାରି ।
ଅଶେଷ ବିଷ୍ଣୁ ଉଦରେ ପରିପୂର୍ଣ୍ଣ ସେ ଧରେ ଭକତ ଘୋରି ।।
ଘୋରଣା ସେ ଗୁଣ କରୁଥାନ୍ତି ପୁଣ ହୃଦୟପଦ୍ମେ ଭାବି ତାହା ।
ଅଶେଷର ନୀତି ଯେ ପୁଣ ଜାଣନ୍ତି ସେ ହୃଦେ ହୁଅନ୍ତି ସାହା ।।
ତେଣୁ କରି ଜାଣ ଭକ୍ତ ଭଗବାନ ଭିନ୍ନା ଭିନ୍ନରେ ନ ବାଛି ।
ତେଣୁ କରି ସିନା ଅଶେଷ ମହିଁମା ସ୍ମରୁଣାରେ ଭକ୍ତବାଞ୍ଛି ।।
ଛାମୁରେ ବିନତା ନନ୍ଦନ ଯେ ପୁଣି ବୋଲେ ରେବତୀଙ୍କ ନାହା ।
କି ରୂପେ ଭଜନ କରନ୍ତି ଯେ ପୁଣ ପ୍ରଭୁ ହୋନ୍ତି ତାଙ୍କୁ ସାହା ।।
ଶୁଣି ବଳେବର କହନ୍ତି ଯେ ସାର ଶାନ୍ତି ସୁକୃତ ବଚନ ।
ଭଜନ ନୁହଇ ଭକ୍ତ ଜନଙ୍କର ଅଟଇ ଅଣ ଭଜନ ।।
ତୁ ଯେ ପଚାରିଲୁ ତହିଁର ସୁଗତି କହିବା ବିନତା ବଛି ।
ଜପ ଯୋଗ ଯଜ୍ଞ ତପ ଧ୍ୟାନ ବିଧି ସବୁ ଭକ୍ତ ମର୍ମେ ଅଛି ।।
ରାମ ନାମ ଗୋଟି ଅଶେଷରେ ଘୋଟିଅଛି ପରିପୂର୍ଣ୍ଣ ହୋଇ ।
ସେ ନାମକୁ ଭକ୍ତ କରି ଅତି ତତ୍ତ୍ୱ ନିଗମରେ ଥାନ୍ତି ଧ୍ୟାଇ ।।
ତୁ ଯେ ପଚାରିଲୁ ଭକତଙ୍କ ଗୁଣ ଭକତ ଅବାଣୀ ଜନ ।
ପ୍ରଭୁ ଭୃତ୍ୟେ ବୋଲି ନ ମଣଇଁ ଯହିଁ ଅନୁଭବ ଥିଲେ ଚିହ୍ନ ।।
ସକଳରେ ଥାଇଁ ସର୍ବରେ ମିଶଇ କରିଣ ଏକତ୍ୱ ଭାବ ।
ହାରିବା ଜିଣିବା ଦୁଇ ନ ମଣଇଁ ସେ ଲୋକଙ୍କୁ କେ ଚିହ୍ନିବ ।।
ମଣ୍ଡିଲେ ହେଁ ପୁଣ ହରଷ ନୁହଇ ଦଣ୍ଡିଲେ ନୋହେ ବିରସ ।
ସର୍ବ କଥା ଶୁଣି ମୋର ଗୁଣ ଗୁଣି ଚାହିଂ ଟହ ଟହ ହସ ।।
ଦେବାଦେବୀ ଦେଖି ଆଳସ ଉପେଖି ଅଧିକେ ନ କରି ମାନ୍ୟ ।
ହୃଦ ପଦ୍ମେ ରାମ ନାମ ଚିନ୍ତୁଥାଇ ସର୍ବରେ ଥାଇ ଅଧୀନ ।।
ଅଧୀନ ହୋଇଣ ନାଥ ନାମରେଣ ସଦା ଚିତ୍ତ ବୃତ୍ତି ରଖି ।
ଧନ ସମ୍ପଦ ବଡ଼ପଣ ଗୁଣାଧି ମନରୁ ଥାଇ ଉପେକ୍ଷି ।।
ଆବର ଯେ ଗତି କହିବା କୀରତି ମନବାଞ୍ଛା ଶୁଣ ତା'ର ।
କାଟୁ ବ୍ରହ୍ମ ଯାଏ ଯେକତ୍ୱ ମଣଇ ମତି ଅତି ଅବିକାର ।।
ଅଶେଷକୁ ହରି ଏକତ୍ୱେ ସୁମରି ଠୁଳ ବ୍ରହ୍ମପରେ ଆଶା ।
ଠୁଳ ବ୍ରହ୍ମ ଚିନ୍ତି ଶୂନ୍ୟ କରି ସ୍ଥିତି ବିଷ୍ଣୁଠାରେ ତାର ଦିଶା ।।
ଆବର ଯେ ସଜ ଶୁଣ ପକ୍ଷୀରାଜ ସୁଗତି ଭାବନା ପଥ ।

ଭକ୍ତଙ୍କର ଗୁଣ ହୃଦଲିଙ୍ଗ ପୁଣ ସଦା ଶ୍ରଦ୍ଧା ଜଗନ୍ନାଥ ॥
ସେ ଜଗନ୍ନାଥ ଯେ ଅଶେଷ କୃତାର୍ଥ ସତ ସୁକୃତ ଗୋସାଇଁ ।
ତା' ତହିଁ ଶ୍ରଦ୍ଧା ଯାହାର ଅଚି ତାକୁ ଡାଳେ ଯମଦଣ୍ଡ ନାହିଁ ॥
ଯା ଶୁଣି ନମୁଛି ବଳଦେବ ପାଦେ ମଉନାବତୀ ବିଳାସ ।
ବୋଲଇ ଭୋ ଦେବ ନିରାକାର ବ୍ରହ୍ମ ଯମ ହୋଇ କି ପୁରୁଷ ॥
ତୁ ସିନା ଅଶେଷ ଅତ୍ରାହି ଭଞ୍ଜନ ଜୟ ଜୟ ବଳେବର ।
ନମସ୍ତେ ନମସ୍ତେ ହଳ ଶୂଳପାଣି ଭବ ସମୋଦ୍ରୁଂ ଉଦ୍ଧର ॥
ଏମନ୍ତ କହିଣ ବିନତା ନନ୍ଦନ ସ୍ତବ କରେ ଅପ୍ରମିତ ।
ବୋଲଇ ଭୋ ଦେବ ଦେବ ପରେ ଦେବ ରେବତୀଙ୍କ ନିଜ କାନ୍ତ ॥
ନମସ୍ତେ ନମସ୍ତେ ନମ୍ରୁ ନୀଳାମ୍ବର ନମସ୍ତେ କରୁଣାରାଶି ।
ନମସ୍ତେ ନମସ୍ତେ ଧବଳାଙ୍ଗ ରୂପ ରତ୍ନ ସିଂହାସନ ବାସୀ ॥
ଏମନ୍ତ କହିଣ ବିନତା ନନ୍ଦନ ଛାମୁରେ ଅତି କିଙ୍କର ।
ସନ୍ତୋଷ ହୋଇଣ ରେବତୀ ରମଣ କହନ୍ତି ଯେ ନୀଳାମ୍ବର ॥
ବିନତା ନନ୍ଦନ ଶୁଣ ଦିବ୍ୟଜ୍ଞାନ ପାପ ପୁଣ୍ୟ ଯେଉଁ କଥା ।
ଯମ ଧର୍ମ ବାଣୀ ପୁଛିଲୁ ତୁ ପୁଣି କହିବା ଶାହାସ୍ର କଥା ॥
ଶାହାସ୍ର ବର୍ଣ୍ଣୁଛି ପାପୀ ଲୋକମାନେ ବୈକୁଣ୍ଠ ପୁରକୁ ବଣା ।
ପାପ ପୁଣ୍ୟ ବୋଲି ଯେଉଁ ବେନି କଥା ଏକ ଠାବେ ତାଙ୍କ ଠଣା ॥
ଯମ ଧର୍ମ ଜାଣ ଏକଇ ପ୍ରମାଣ ଜଗତ ଯାକକୁ ସେହି ।
ଧର୍ମ ଧ୍ୟାନୀ ଲୋକ ଯମ ନାସ୍ତି ଦେଖ ଶାହାସ୍ତ୍ରରେ ଛନ୍ତି କହି ॥
ଜନ୍ମରୁଟି ଅଙ୍ଗ ହେଲା ମୃତ୍ୟୁ ସଙ୍ଗ ମୃତ୍ୟୁଟି ପୁଣ୍ୟ ବ୍ୟବସ୍ଥା ।
ପୁଣ୍ୟ ଆଶ୍ରେ କଲା ଲୋକେ ଯା ଜାଣନ୍ତି ଅନ୍ୟ ନ ଜାଣେ ଯେ କଥା ॥
ଏମନ୍ତେ ଯେ ଜାଣ ଜନ୍ମୁରାଏ ପୁଣ ଜନ୍ମ ବିଷୟେଟି ଉଛ ।
ଯମର ଯେ ଅଙ୍ଗ ଅଟଇଟି ରଙ୍ଗ ଉଦେଶୁଂ ଏଣିକି ବାଛ ॥
କହିଂ ନୀଳାମ୍ବର ସୁଧର୍ମା ବିଚାର ହୋଇଲେ ଆନନ୍ଦମନା ।
କହନ୍ତି ଗରୁଡ଼ କରନି ତୁ ଦୃଢ଼ ବାନାଇଁ ସବୁଙ୍କ ସ୍ନେହା ॥
ଭବ ସମୋଦ୍ରକୁ ଶ୍ରୀ ଭଗବାନଙ୍କୁ ଯେ ଲୋକ କରଇ ଧ୍ୟାନ ।
ଶୁଣ ହୋ ଗରୁଡ଼ ଯୋଗଘର ଦୃଢ଼ ତାହାକୁ ନାହିଁ ସାମାନ୍ୟ ॥
ବିନତା ନନ୍ଦନ ଶୁଣ ଦିବ୍ୟ ଜ୍ଞାନ ପାପ ପୁଣ୍ୟର ବ୍ୟବସ୍ଥା ।
ସନ୍ତୋଷ ହୋଇଣ ବିନତା ନନ୍ଦନ ପାଦେ ସମର୍ପିଲେ ମଥା ॥

କାର୍ପୁଣ୍ୟ ହୋଇଣ କହଇ ବଚନ ଭୋ ଦେବ ଅଲେଖ ବ୍ରହ୍ମ ।
ଅଶେଷ ବ୍ରହ୍ମାଣ୍ଡେ ପୂରି ପୂର୍ଣ୍ଣବ୍ରହ୍ମ ଘଟାଶ୍ରମରେ ଯେ ମର୍ମ ।।
ଏମନ୍ତ କହିଣ ଜଗମୋହନରେ ନମେ ବିନତା ନନ୍ଦନ ।
ହସି ବଳେବର କହନ୍ତି ଯେ ସାର ଉଦ୍ଧାର ଯେଉଁ ବଚନ ।।
ଏ ସର୍ବ ଯେ ଜାଣ ବିଷ୍ଣୁମାୟା ପୁଣ ଅଶେଷ ଆଚ୍ଛାଦି ଥାଇ ।
ଯୋଗୀ ଜନେ ଯେଉଁ ମୋହମାୟା ଗତି ନ ପାଉନ୍ତି ପୁଣ ଧାଇ ।।
କହୁଂ କହୁଂ ମାୟା ରହୁ ରହୁ ମାୟା ହଉଂ କ୍ଷଉଂ ମାୟା ଗତି ।
ମାୟା ପୁଣି ଛାୟା ମାୟାଇଟି କାୟା ମାୟାହିଂ ସର୍ବ ଆକୃତି ।।
ମାୟାଇଟି ପୁଣି କିଛି ନୋହେ ଜାଣି ବିଷ୍ଣୁଗତି ଅସମ୍ଭବ ।
ମାୟାହିଂ ସିନା ରଞ୍ଜିଲେ ବିଷ୍ଣୁନାଥେ ଯମ ରୂପେଟି ସମ୍ଭବ ।।
ଯମ ଧର୍ମ ସେହି ଇନ୍ଦ୍ରାଦି ଯା କହି ଦିଗପାଳ ସେହି ଜାଣ ।
ନାଗ ନର ସୁର ଆବର କୁବେର ସେହିଟି ଅଟେ ବରୁଣ ।।
ଶିବ ସେହି ଦେଖ ସେହି ବ୍ରହ୍ମଲୋକ ସେହି ଚନ୍ଦ୍ର ଦିବାକର ।
ଅଶେଷକୁ ସେହି ଅଟନ୍ତି ଅତ୍ରାହି ସେହି ସିନା ତ୍ରାହିକାର ।।
ସିଦ୍ଧଇଟି ସେହି ଗନ୍ଧର୍ବ ବୋଲାଇ ସେହି ସିନା ଋଷିଗଣ ।
ସେ ସିନା ଅଶେଷ ପବିତ୍ର ଅଟନ୍ତି ସେହି ବାରଣ କାରଣ ।।
ଅଶେଷକୁ ସେହି ସୁକୃତ ଅଟଇ ସତ ଶାନ୍ତି ଦୟା କ୍ଷମା ।
ସତ ଲୋକମାନେ ସତରେ ଭାବନ୍ତି ରଖିବାରେ ପୁରୁଷୋତ୍ତମା ।।
ସତଇଟି ଜାଣ ସୁଧର୍ମା ସଭାରେ ଅଟଇ ସିନା ପ୍ରମାଣ ।
ସତ ସୁକୃତ ବିନୁ ସଂସାରେ ଗତି ନାହିଁଟି ଆଉ ପ୍ରମାଣ ।।
ସେ ଯେଉଁଟି ସଭା ସର୍ବପରେ ଶୋଭା ବିଷ୍ଣୁଙ୍କ ମହିମା ଗୁଣ ।
ସତ ରଜ ତମ ଏକତ୍ୱରେ ଗୁଣ ସେହିଠାରେ ଅବାରଣ ।।
ଅବାଡ଼ାରୁ ସିନା ବାଡ଼ କ୍ଷରିଅଛି ଏ ଆଦିମାତାଙ୍କ ଗତି ।
ହିଂସା ରାମ ତମ କ୍ରୋଧ ଯା କହନ୍ତି ସେ ସଭାରେ ଯେ ନାହାନ୍ତି ।।
ନାହିଁ ଯେ ମୁହାଂସ ମୋହ ନାହିଁ ଆଶ ନାହିଁ ତହିଁ ପାପ ପୁଣ୍ୟ ।
ମନକୁ ଯେ ସେହି ଦୁର୍ଗମ ଅଟଇ ଅଣାକାର ସେ ବିଶୂନ୍ୟ ।।
ସେ ସିନା ଆଶ୍ରମ ସେହିଠାରୁ ଧର୍ମ ଯମ ସମନ ବାସନା ।
ତହୁଂଟି ଅଶେଷ ହୋଇଣ ପ୍ରକାଶ ଯେ ଯେତେ ଆକୃତି ସିନା ।।
ଶୁଣିଲୁଟିକି ବିବେକ ପକ୍ଷୀରାଜ ପାପ ପୁଣ୍ୟର ବ୍ୟବସ୍ଥା ।

ଶୁଣିଣ ଗରୁଡ଼ କରି ଅତି ଦୃଢ଼ ପୁଣି ପୁଚ୍ଛେ ଦିବ୍ୟକଥା ॥
ବୋଲଇ ଭୋ ଦେବ ରେବତୀ ବଲ୍ଲଭ ତୁମ୍ଭ ବିନୁ ନାହିଁ ଅନ୍ୟ ।
ଅଶେଷ ବ୍ରହ୍ମାଣ୍ଡେ ଯେକଇ ପୁରୁଷେ ସ୍ତିରୀ ପୁରୁଷ ବୋଲିଣ ॥
ତୁମ୍ଭେ ଯେ ବୋଲଇ ସେ ସଭାରେ ପୁଣ ନାହିଁ ହିଂସା ରାଗ ତମ ।
କେମନ୍ତ କରିଣ ଜନ୍ତୁରାଏ ପୁଣ ବାଛଇ ଯେ ପାପ ପୁଣ୍ୟ ॥
ତୁ ଦେବ ଅଶେଷରେ ପରିପୂର୍ଣ୍ଣ ଯେ ଦେବ ପରେ ଯେବେ ଦେବ ।
ତୁମ୍ଭେ ସିନା ଶେଷ ଅନାଦି ପୁରୁଷ ଜାଣ ସର୍ବ ଅସମ୍ଭବ ॥
ସନ୍ତୋଷ ହୋଇଣ କହୁଣ ଅଛନ୍ତି ଜଗନ୍ନାଥ ଜ୍ୟେଷ୍ଠ ଭାଇ ।
ଅପ୍ରମିତ କଥା ପୁଚ୍ଛ ପକ୍ଷୀରାଜ କେ ପାରିବ ତାହା କହି ॥
ସେ ଯେ ପୁଣ୍ୟପଥ ଅତି ଆଚମ୍ବିତ ସୁତୁଳ ଗତି ବିଚାର ।
ତହିଁରେ ଯେ ସେହ୍ନା କରିଣ ସୋରେହା ଲଭନ୍ତି ଦେହ ସଂସାର ॥
ପାପ ପୁଣ୍ୟ ଗତି ବେନି ଯେ ଆକୃତି ଯେ କରଇ ଯେଉଁ କର୍ମ ।
ଶେଷ ଭାଇ ଫଳ ହେତୁ ଯାର ମୂଳ ବେନି କଥା ପାପଧର୍ମ ॥
ତୁ ଯେ ପଚାରିଲୁ ପାପପୁଣ୍ୟ କଥା ଶାହାସ୍ତ୍ରରେ ଅଛି ଶୁଣ ।
ପୁଣ୍ୟ କଲା ଲୋକ ପବିତ୍ର ହୁଅଇ ପାପୀ ପବିତ୍ରକୁ ବଣା ॥
ପୁଣ୍ୟକଲା ଲୋକଙ୍କୁ ଦାଣ୍ଡ ପଡ଼ିଛି ଉହାଡ଼ ନଦିଶେ କିଛି ।
ପାପୀଙ୍କ ଯେ ପଥ ବଣା ଦିଶୁଅଛି ଅଘ ଅନ୍ଧାର ଘୋଟିଛି ॥
ଶୁଣ ଯେବେ ପକ୍ଷୀରାଜ ଏକମନେ ବୁଝାଇଂ ଦେଉଛି ତୋତେ ।
ଅଶେଷ ଲୀଳା ଯେଉଁଠାରେ ଲାଗିଛି ଆଦିମାତା ଘେନି ମର୍ତ୍ତ୍ୟେ ॥
ତାହା ଯେବେ ଜାଣ ସଂସାରର ଗୁଣ ଦେହ ବୋଲିବା ଯାହାକୁ ।
ମନ ଚଇତନେ ଭାବନି ତୁ ମନେ ଦୂରଟି ନୋହେ ମନକୁ ॥
ତେଣୁ ପାପଧର୍ମ ମନମୂଳେ ଜାଣ ମନଇଟି ସର୍ବଗତି ।
ମନକୁ ଯେ ଜନେ ଅମନେ ମିଶାନ୍ତି ସେହି ଜାଣନ୍ତି ଯେ ଗତି ॥
ମନ ତ ବିବେକ ଧଉର୍ଯ ସେ ଲୋକ ଦୟାପଣେ ମହାବଳ ।
ଧନବନ୍ତ ପଣେ କୁବେରକୁ ବଳି ପାଣିରୁ ପୁଣି ପାତଳ ॥
ଧୂମରୁ ଯେ କ୍ଷୀନ ଶୂନ୍ୟରୁ ବିଶୂନ୍ୟ ବାତରୁ ସିନା ନିର୍ବାତ ।
ସୁଶୀଳ ପଣକୁ ମହୀଗତି ପ୍ରାୟେ ସତକୁ ଥାଇ ନିସତ ॥
ନାମ ଆଶ୍ରେ କରି ଅନାମକୁ ଲୟେ ଶୁଣ ବିନତା ନନ୍ଦନ ।
ତିନି ଯେକ କରି ଲେଖରେ ଲେଖିଲେ ଅଲେଖ ହୋନ୍ତି ପ୍ରସନ୍ନ ॥

 

ଶୁଣିଲୁ ଯେ ପୁଣ ଭକ୍ତଙ୍କ ଲକ୍ଷଣ କି ଉପମା ଦେବା ତହିଁ ।
ପୁଣି ବଳେବର କହନ୍ତି ଯେ ଭାବ ରତ୍ନ ସିଂହାସନେ ରହି ॥
ଶୁଣ ହୋ ଗରୁଡ଼ ଯୋଗଘର ଦୃଢ଼ ବିଷ୍ଣୁଙ୍କ ନିଗମ ବାଣୀ ।
ଅଶେଷରେ ଦେଖ ଉଦୟେ ହୋଇଣ ଅନାଦି ମହିଁମା ପୁଣି ॥
ରାତ୍ର ଦିବସ ଯେ ରଞ୍ଜୁଣ ଅଛନ୍ତି ଅଣ ଆୟତରେ ରହି ।
ଉଦେ ହୋଇ ଅସ୍ତ ହୁଅନ୍ତି ଯେ ନାଥ ମାୟାଗତିଟି ଭିଆଇ ॥
ଚାହାନି ତୁ ଦିନକର ଦିବ୍ୟଆଲେ ନିନ୍ଦା କରଇ ଅଶେଷ ।
ସର୍ବଠାରେ ଲାଗି ବିଲଗେ ଅଛନ୍ତି ନିରଞ୍ଜନ ଶ୍ରୀନିବାସ ॥
ନିର୍ଲେପ ଅଟଇ ନିରାକାର ସ୍ୱାମୀ ନିଗମରେ ଦୃଶ୍ୟ ହୋନ୍ତି ।
ନର ମାନେବ ଦେହେ ତାହା ଜାଣନ୍ତି ଆଉ ଅନ୍ୟ ନ ଜାଣନ୍ତି ॥
ଫଳଚକ୍ର ଜଳଚକ୍ର ଦଳଚକ୍ର କମଳରେ ଲିଙ୍ଗ ଜାଣ ।
କାଳଚକ୍ର ପରେ ନିରାଳ ଯେ ଚକ୍ର ଉଦେ ତହିଁ ନିରଞ୍ଜନ ॥
ନିରାଇ ଚକ୍ରଟି ଲିଙ୍ଗ ଶାସ୍ତ୍ରଗତି ବିହି ବିଧାନ ଯେମାନ ।
ନିରଞ୍ଜନ ତହିଁ ପ୍ରକାଶ ଯେ ହୋଇ ପାଳନ୍ତି ଯେ ରାତ୍ର ଦିନ ॥
ରାତ୍ର ଦିବା କରି କଳାମାତ୍ରେ ହରି ଉଦେ ଅସ୍ତ ବେନି ଗତି ।
ରାତ୍ର ଦିବାକରି ମହାବିଷ୍ଣୁ ନାଥେ ଜଗତକୁ ପାଳୁଥାନ୍ତି ॥
ପରମବ୍ରହ୍ମ ଯେ ଉଦୟ ହୋଇଣ ପାଳନ୍ତି ସଚରାଚର ।
ସେହି ପରମବ୍ରହ୍ମ ଜଗତ କରତା ସବୁତ ତାହାରି ଖେଳ ॥
ସଦା ସର୍ବଦା ଯେ ଉଦୟେ ହୋଇଛି ଉଦେ ଅସ୍ତ ଯାର ନାହିଁ ।
ଉଦେ ଅସ୍ତ ବୋଲି ଯେଉଁ ବେନି ଗତି ମାୟା ଅଛଇ ଭିଆଇ ॥
ତେଣୁ ଚନ୍ଦ୍ର ସୂର୍ଯ୍ୟ ବେନି ହୋଇଛନ୍ତି ବିଲଗରେ ଏକ ମୂର୍ତ୍ତି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗରେ ଲାଗି ବିଲଗ ଅଛନ୍ତି ॥
ତେଣୁ ଏବେ ଦେଖ ବିଲଗ ସେ ରୂପ ସ୍ଥାବର ଜଙ୍ଗମ କୀଟ ।
ପତଙ୍ଗାଦି ଘେନି'ଯେ ଚାରିଖାନି ଦେଖାଇ ପୁଣି ଅଭେଟ ॥
ଯେ ସର୍ବ ଦେଖଇ ତା' ଦେଖି ନୁହିଁଇ ବିଷ୍ଣୁଗତି ଅଗୋଚର ।
କ୍ଷମା ନାହିଁ ପୁଣି ଉଦେ ଦିନମଣି ପୁଣ୍ୟପରେ ନିରାକାର ॥
ସାକ୍ଷାତେ ବିରାଜଇ ସେ ପୁଣି ଝଳହଳ ସେଇ ତେଜ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗକୁ ଦେଖିତେ ହେଲା ଅସଜ ॥
ହସ୍ତ ନ ପାଉଛି ବ୍ରହ୍ମାଶିବଙ୍କର ଧରିତେ କେବା ଭାଜନ ।

ଅଣ ଆକାର  ଅଣାକାର ପୁରୁଷ ଉଦୟେଟି ମହାଶୂନ୍ୟ ॥
ଧରି କେ ପାରିବ ଅଣାକାର ପ୍ରଭୁ ଅଣଆୟତ ଗୋସାଇଁ ।
ଅଣସାଧନା କଳା ଲୋକେ ଯା ଚିନ୍ତି ତନମନେ ଛନ୍ତି ପାଇ ॥
ହସିଣ କହନ୍ତି ନିରାକାର ମୂର୍ତ୍ତି ଜଗନ୍ନାଥ ଜ୍ୟେଷ୍ଠ ଭାଇ ।
ଅନନ୍ତ ଶିଶୁ ଯେ ଭାବରେ ଭଣିଲେ ନୀଳଗିରି ନାଥ ପାଇଁ ॥

## ଦ୍ୱିତୀୟ ଅଧ୍ୟାୟ

ମୁଁ ଯେ ସେହିଠାକୁ ଶରଣ ରହିଛି ଜୟ ଭକ୍ତ ଭଗବାନ ।
ଅତ୍ରାହି କି ତ୍ରାହି ଅଟ ଦୀନବନ୍ଧୁ ମୁଁ ମୂଢ଼ ପାଖାଣ୍ଡି ଜନ ॥
ଜୟ ଜୟ ଜଗନ୍ନାଥ ପୂର୍ଣ୍ଣବ୍ରହ୍ମ ଜୟଦେବ ନିରାକାର ।
ତବ ଆଶ୍ରେ କଲା ଲୋକକୁ ଭୋ ନାଥ ନାହିଁଟି ଅଘ ଅନ୍ଧାର ॥
ନମସ୍ତେ ନମସ୍ତେ ନମସ୍ତେ ଭୋ ନାଥ ମଚ୍ଛ କୂର୍ମ ଅବତାର ।
ବାମନ ନୃସିଂହ ପର୍ଶୁ ଭୃଗୁପତି ଦଶରଥଙ୍କ କୁମର ॥
ନମୁ ରାମଚନ୍ଦ୍ର ଦଶଗ୍ରୀବ ନାଶି ଉଶ୍ୱାସିଲ ମହୀଭାର ।
ପୁଣି ଦ୍ୱାପରରେ ବସୁଦେବ କୋଳେ ହେଲ ରଙ୍ଗା ଅବତାର ॥
କୃଷ୍ଣ ଅବତାରେ କଂସ କେଶୀ ହତ ଅଷ୍ଟମଲ୍ଲ ନାଶ କରି ।
ବୈକୁଣ୍ଠ ଗତି ମର୍ତ୍ତ୍ୟରେ ଭିଆଇଲ ପୁଣି ଗଲ ନିଜ ପୁରୀ ॥
ଶ୍ରୀ ନୀଳକନ୍ଦରେ ବଉଦା ଯେ ବ୍ରହ୍ମ ପତ୍ୟକ୍ଷ ଅଛ ବିଳାସୀ ।
ଅଶେଷ ତୀର୍ଥ ଘେନିଣ ବିଷ୍ଣୁବ୍ରହ୍ମ ରତ୍ନସିଂହାସନବାସୀ ॥
ନମସ୍ତେ ନମସ୍ତେ ଭୋ କଳଙ୍କୀବ୍ରହ୍ମ ମ୍ଳେଚ୍ଛ ସଂହାରଣ କରି ।
ମହା କଲୁଷ ସଂହାରି ବିଷ୍ଣୁବ୍ରହ୍ମ ପୁଣି ଯିବ ନିଜ ପୁରୀ ॥
ନମସ୍ତେ ନମସ୍ତେ ଦଶ ଅବତାର ସଂକ୍ଷେପି କେ କହିପାରୁ ।
ନମଇ ନୀଳଗିରି ପରେ ବିଜୟେ ଯେ ଯେଉଁ ଚତୁର୍ଧାଦାରୁ ॥
ନମସ୍ତେ ନମସ୍ତେ ନମଇଁ ଗୋସାଇଁ କରଡ଼ିଆ ଧଣ୍ଟାମାଳ ।
ନମସ୍ତେ ନମସ୍ତେ ନାନା କୁସୁମରେ ଶିରେ ଶୋହେ ଶିଖୀଚୂଳ ॥
ନମସ୍ତେ ନମସ୍ତେ ନମୁ ବିଷ୍ଣୁନାଥ ନନ୍ଦିଘୋଷ ଯେ ବିହାରୀ ।
ନମସ୍ତେ ନମସ୍ତେ ନମୁ ବିଷ୍ଣୁନାଥେ କୁବୁଜା ଯେ ଉଦ୍ଧକାରୀ ॥
ନମସ୍ତେ ନମସ୍ତେ ନମୁ ବିଷ୍ଣୁନାଥ କମଳାଦେବୀ ବଲ୍ଲଭ ।

ଶୂଦ୍ରକୁଳରେ ମୋହର ଜନ୍ମ ସିନା କାହୁଁ ଜାଣିବି ତୋ ଭାବ ॥
ପିତା ମୋ ବିନ୍ଧାଣୀ ନାରାୟଣ ନାମ ଜଗତେ ଟେମ ବୋଲାନ୍ତି ।
ମାତା ନାମ ମୋର ଦଇବକୀ ପୁଣ ଭଗ୍ନୀ ଚନ୍ଦମା ବୋଲାନ୍ତି ॥
ଏ ସର୍ବ ସମ୍ଭାଇ ସ୍ୱର୍ଗାରୋଣ ହୋଇ ମୁଁ ପୁଣି ରହିଛି ଯେକା ।
ଶ୍ରୀ ନୀଳଗିରି ନାଥ ବ୍ୟତ୍ରକେ ମୋର ଅନ୍ୟ କାହିଁ ଅଛି ଶାଖା ॥
ଶ୍ରୀ ଗୁରୁ ମୋହର ମସ୍ତରାମ ଦାସେ ଶ୍ରୀପୁରୁଷୋତ୍ତମେ ନିବାସ ।
ତାଙ୍କ ଆଜ୍ଞା ଘେନି ନୀଳଗିରି ନାଥ ଚରଣେ ଅତି ମୁହାଁସ ॥
ସେ ଚରଣେ ଆଶ ଯହୁଁ ପ୍ରତିଆଶ ଦୂରିତେ କରନ୍ତି ତରା ।
କେଉଁ ଅବଧୂତ ଜନ୍ମିଲା ଉତ୍ପାତ ପୁଣି ତେଜିଅଛି ଦାରା ॥
ସତେ ଯେବେ ତୁମ୍ଭ କରୁଣା ହୋଇବ ଦର୍ଶନ ପାଇବି ସର୍ବ ।
ବନ୍ଧୁ ବାନ୍ଧବ ଦାରା ସୁଦ୍ଧା ଦେଖିଣ ବାନାକୁ ମଣିବି ଧ୍ରୁବ ॥
ଜାଣିବି ଯେ ବାନା ଅଶେଷକୁ ସେହ୍ନା ସତ ସୁକୃତ ଗୋସାଇଁ ।
ମୁଁ ସିନା ନିସତ ଲୋକ ମୂଢ଼ମତି ତହିଁକିଟି ଅଛି ଧାଇ ॥
ଏବେ କୃପାକର କମଳାର ବର ଗରୁଡ଼ ପୁଚ୍ଛଇ ଯାହା ।
ପ୍ରସନ୍ନ ହୋଇଲେ ମୁଁ ତାହା ଲେଖଇ ପ୍ରଭୁ ଯେବେ ହୁଅ ସାହା ॥
ପୁଣି ପଚାରିଲେ ବିନତା ନନ୍ଦନ ଶୁଣିମା ହେଉ ଗୋସାଇଁ ।
ଶ୍ରେଷ୍ଠ କନେଷ୍ଠ ବେନି ଗତି ଶ୍ରୀପତି ସର୍ବଠାରେ ଛନ୍ତି ହୋଇ ॥
କାହିଁ କେ ଶ୍ରେଷ୍ଠ କାହିଁ କେ କନେଷ୍ଠ କାହିଁ କି ରୂପେ ଭାବନା ।
କାହାକୁ କେମନ୍ତେ ହୋଇ ଜଗନ୍ନାଥେ କାହିଁ ଥାଇ ହୋନ୍ତି ସେହ୍ନା ॥
କେଉଁଠାରେ ଥାଇ କେତେ ଭୋଗପାଇଁ କୌଠାରେ କେତେ ଭଜନା ।
ଅଶେଷରେ ପୂରି ପ୍ରକାଶ ହୋଇଛି ନୀଳଚକ୍ରେ ଉଡ଼େ ବାନା ॥
ସନ୍ତୋଷ ଯେ ହୋଇ ବଳେବର କହି ଶୁଣ ତୁ ହୋ ପକ୍ଷୀବର ।
ତୁ ଯେ ପଚାରିଲୁ କେଉଁଠାରେ ଶ୍ରେଷ୍ଠ ହୋଇଛନ୍ତି ଚକ୍ରଧର ॥
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଚାରିଖାନି ବୋଲି ଯାହା ।
ଅଶେଷରେ ଶ୍ରେଷ୍ଠ କନେଷ୍ଟ ଅଛନ୍ତି ଘଟାଶ୍ରମ କହି ଯାହା ॥
ଶ୍ରେଷ୍ଠ କନେଷ୍ଟ ଯେ ଅଶେଷରେ ସତ ହୋଇଛନ୍ତି ଚକ୍ରପାଣି ।
ମାନବଙ୍କ ଶ୍ରେଷ୍ଠ ପଶୁଙ୍କର ଶ୍ରେଷ୍ଠ ଗୋ ବିପ୍ର ଯାହା ବଖାଣି ॥
ଜଳର ଯେ ଶ୍ରେଷ୍ଠ ଗଙ୍ଗା ବୋଲି ଜାଣ ଥଳ ଶ୍ରେଷ୍ଠ ଗୟା କାଶୀ ।
ବୃକ୍ଷଙ୍କର ଶ୍ରେଷ୍ଠ ଅଟଇ ସଂପୂଷ୍ଟ ଯେ ଯେଉଁ ବେଲ ତୁଳସୀ ॥

ବଇଷ୍ଣବ ଶ୍ରେଷ୍ଠ ବ୍ରହ୍ମଚାରୀ ଜାଣ ଆବର ଶ୍ରେଷ୍ଠ ସନ୍ନ୍ୟାସୀ ।
ବ୍ରହ୍ମଇଟି ଜାଣ ଅଶେଷଙ୍କ ଶ୍ରେଷ୍ଠ ହୋଇଅଛନ୍ତି ବିଳାସୀ ।।
ପକ୍ଷୀଜନ୍ତୁ ଶ୍ରେଷ୍ଠ ଶାରୀ ଶୁକ ପିକ ପବିତ୍ରଟି ଜାଣ ହଂସ ।
ତୃଣରେ ଯେ ଜାଣ ପବିତ୍ରଟି ପୁଣ ବିପ୍ରେ ଘେନନ୍ତି ଯେ କୁଶ ।।
ଜଳଜନ୍ତୁ ଶ୍ରେଷ୍ଠ ରୋହି ବୋଲି ଜାଣ ମୀନ ଶ୍ରେଷ୍ଠ ସିନା ଯେହି ।
ଆବର ଯେ ପୁଣ କୂର୍ମ ଯେହୁ ଜାଣ ଶ୍ରେଷ୍ଠ ଗୋଟିଏଟି ସେହି ।।
ଶିଳାରେ ଯେ ଜାଣ ଶ୍ରେଷ୍ଠ ଶାଳଗ୍ରାମ ପାଷାଣ ଶ୍ରେଷ୍ଠ ମୁଗୁନି ।
ନଦୀଙ୍କର ଶ୍ରେଷ୍ଠ ଚିତ୍ରୋତ୍ପଳା ଜାଣ ବଇତ୍ରଣୀ ଯେ ବ୍ରାହ୍ମଣୀ ।।
କ୍ଷେତ୍ରଙ୍କର ଶ୍ରେଷ୍ଠ କଇଳାସ ଜାଣ ଦେବଶ୍ରେଷ୍ଠ ଶୂଳପାଣି ।
ଦେବାଦେବୀ ଶ୍ରେଷ୍ଠ ସର୍ବପରେ ଜ୍ୟେଷ୍ଠ ଅଟନ୍ତି ଗଇରୀ ରାଣୀ ।
ପୁଷ୍ପଙ୍କର ଶ୍ରେଷ୍ଠ ଚମ୍ପା ଯେବେ ଜାଣ ଆବର ଶ୍ରେଷ୍ଠ ଦୟଣା ।।
ସ୍ୱରଙ୍କର ଶ୍ରେଷ୍ଠ ଶଙ୍ଖ ବୋଲି ଜାଣ ବାଦ୍ୟ ଶ୍ରେଷ୍ଠ ଅଟେ ବୀଣା ।
ଫଳ ଶ୍ରେଷ୍ଠ ସିନା ଶ୍ରୀଫଳ ହରିଡ଼ା ଚୂତ ଶ୍ରେଷ୍ଠ ଆର ଜାଣ ।।
କୁଶଙ୍କର ଶ୍ରେଷ୍ଠ ରାଶି ତିଳ ଜାଣ ସର୍ବଶ୍ରେଷ୍ଠ ଅଟେ ଧାନ ।
ଅଷ୍ଟରତ୍ନ ଶ୍ରେଷ୍ଠ ସୁବର୍ଣ୍ଣ ଯେ ଜାଣ ନୀଳା ଶ୍ରେଷ୍ଠଟି ପୋଏଳା ।
ଆବର ଶ୍ରେଷ୍ଠ ମାଣିକ୍ୟ ବୋଲି ଜାଣ ଦେବୀ ଶ୍ରେଷ୍ଠଟି ଶାରୋଳା ।।
ଦିଗଙ୍କର ଶ୍ରେଷ୍ଠ ଉତ୍ତର ଦକ୍ଷିଣ ଭୋଗ ଶ୍ରେଷ୍ଠ ହରିକଥା ।
ଜ୍ଞାନଙ୍କର ଶ୍ରେଷ୍ଠ ଅଟଇ ସମ୍ପୂର୍ଣ୍ଣ ବ୍ରହ୍ମଜ୍ଞାନେ ଯେହୁ ନିଷ୍ଠା ।।
ଏମନ୍ତେ ଯେ ଶ୍ରେଷ୍ଠ ସଂସାରରେ ଅଛି ଏଥୁ କି ହୋଇବ ଜାଣି ।
ଅଶେଷ ପରେଟି ପୂର୍ଣ୍ଣବ୍ରହ୍ମ ଶ୍ରେଷ୍ଠ ନୀଳଗିରି ଶିରୋମଣି ।।
ଶ୍ରେଷ୍ଠ ସପ୍ତାଙ୍ଗ ଭାବନା ଯେ କରନ୍ତି ତାଙ୍କୁ ହୁଅନ୍ତି ପ୍ରସନ୍ନ ।
ଯେ ଯାହା ଭୁଞ୍ଜଇ ପ୍ରଭୁରେ ମଜାଇ ଦେଖାଇ କରେ ଭୋଜନ ।।
ଏମନ୍ତେ ଯେ ଶ୍ରେଷ୍ଠ କହିଲେ କି ହେବ ଶୁଣ ତୁ ବିନତା ଛିଛି ।
ଅଶେଷପରେ ପରିମିଷ୍ଟ ଉତ୍ତମ ପୁରୁଷୋତ୍ତମରେ ଯେ ଅଛି ।।
ସେ ପ୍ରସନ୍ନ ହୋନ୍ତି ବ୍ରହ୍ମଜ୍ଞାନ ଚିନ୍ତି ଯେ ପାରେ ସେ ପଥେ ଧାଇ ।
ବ୍ରହ୍ମଜ୍ଞାନୀ ଲୋକ ଅଟନ୍ତି ବିବେକ ପାପ ପୁଣ୍ୟ ତାଙ୍କୁ ନାହିଁ ।।
ଭଜିବା ବ୍ରହ୍ମରେ ପୂଜିବା ବ୍ରହ୍ମରେ ବ୍ରହ୍ମେ ବ୍ରହ୍ମ ତା'ର ନୀତି ।
ଦେହରେ ଯେ ଗୁଣ କ୍ଷେତ୍ରିଙ୍କ ଲକ୍ଷଣ ପାପ ଥିଲେ ନଲାଗନ୍ତି ।।
ପ୍ରକୃତି ଲକ୍ଷଣ ଇନ୍ଦ୍ରଙ୍କର ଗୁଣ ଦେହ ଥିଲେ ସର୍ବ ଅଛି ।

ଛଡ଼ ଅଇରି ଯେ ମୋହ ଶତ୍ରୁ ପୁଣି ଜୀବକୁ ବାଦେ ଲାଗିଛି ॥
ଥିଲେ ବ୍ରହ୍ମଜ୍ଞାନ ଯେ ଯେ ପାପ କର୍ମ ନ ପଶଇ ତାର ପାଶ ।
ବ୍ରହ୍ମେ ଧ୍ୟାନଥିଲେ ତୂଳେ ଯେହ୍ନେ ଅଗ୍ନି ତେହ୍ନେ ପାପହୋୟେ ନାଶ ॥
ପାପୀ ଲୋକମାନେ ବିଷ୍ଣୁଙ୍କୁ ଭଜିଲେ ବୈକୁଣ୍ଠ ଲଭନ୍ତି ପୁଣ ।
ତେଣୁ ପ୍ରାଣୀମାନେ ସନ୍ଥ ସାଧୁଜନେ ଭଜିଲେ ଜାଣି ନ ଜାଣି ॥
ଯେହ୍ନୁ ଜ୍ଞାନ ଗତି କହିଲେ ଶ୍ରୀପତି ଅର୍ଜ୍ଜୁନ ଆଗରେ କିଛି ।
ତହୁଁ ଟୀକାୟେ ମୁଁ ତୋ ଆଗେ କହିଲି ଶୁଣ ତୁ ବିନତା ବଛି ॥
ତୋ ଆଗେ କହୁଛି ଶୁଣ ପକ୍ଷୀରାଜ ଦେହ ସର୍ବଫଳ ଦାତା ।
ଦେହଇଟି ଅଟେ ଜୀବକୁ ସୁଗତି ଦେହ ଘେନି ସର୍ବକଥା ॥
ଦେହ ଭିରରେଟି ସର୍ବ ପୂରିଅଛି ସୁଗତି କୁଗତି ଭାବ ।
ଦେହ ଭିତରେଟି ବିଶ୍ରାମି ଅଛନ୍ତି ଅଜରା ଅମରା ଦେବ ॥
ଦେହଇଟି ଜାଣ ସର୍ବ ଶୁଭକର୍ମ ଦେହଟି ପୁଣ୍ୟ ଭଣ୍ଡାର ।
ଦେହ ଘେନି ସିନା ମହା ବିଷ୍ଣୁନାଥେ ଭାବନା କରେ ଅପାର ॥
ଦେହ ଭିତରେଟି ଅଦେହ ମୂରତି ସାକ୍ଷାତେ ବିଜେ ଅଚ୍ୟୁତ ।
ଦେହକୁଟି ଚିହ୍ନ ଦେହରେ ଯେ ଜ୍ଞାନ ନ ଜାଣନ୍ତି ପଞ୍ଚଭୂତ ॥
ସେ ସିନା ସର୍ବ ହୋଇଛନ୍ତି ଜୀବ ଅଜୀବ ସହିତେ ପ୍ରମାଣ ।
ତୋ ଆଗେ କହିଲି ଶୁଣ ପକ୍ଷୀରାଜ ଅଚିହ୍ନାକୁ ଦେହେ ଜାଣ ॥
ଯା ଶୁଣି କହନ୍ତି ଗରୁଡ଼ ଯେ ବାଣୀ ଶୁଣ ତୁମ୍ଭେ ହଳଧର ।
ଅଜୀବ ବୋଲିଣ କାହିଁ ଅଛି ପୁଣ ଶୁଣ ତୁମ୍ଭେ ହଳଧର ॥
ଅଶେଷରେ ପରମାନନ୍ଦ ଅଛନ୍ତି ଜୀବଶକ୍ତି ଗୁଣ ଘେନି ।
କେଉଁଠାରେ ପୁଣି ଅଜୀବ ରହିଛି ଏହା କହ ଶୂଳପାଣି ॥
ହସି କହୁଛନ୍ତି ରେବତୀ ରମଣ ଶୁଣ ବିନତା ନନ୍ଦନ ।
ତୁ ଯେ ପଚାରିଲୁ ଜୀବ ଅଜୀବର କେମନ୍ତ ଅଟେ ବିଧାନ ॥
ଜ୍ଞାନହିଁଟି ସେହି ଅଜ୍ଞାନ ବୋଲାଇ କର୍ମ ଅକର୍ମଟି ସେହି ।
ତୋ ଆଗେ କହୁଛି ଶୁଣ ପକ୍ଷୀରାଜ ସର୍ବ ସେହି ଭାବଗ୍ରାହୀ ॥
ପୋଷନ୍ତାଇ ସେହି ସେହି ପୋଷାହୋଇ ଦେଇଣ ଦିଆଇ ସେହି ।
ଅଜ୍ଞାନ ହୋଇଣ ମୋହ ଜଡ଼େ ପୁଣ ମୋହ ମୁହାଂସ କରଇ ॥
ସେହି କରେ ପାପ ସେହି କରେ ତପ ଯୋଗ ଶାସ୍ତ୍ର ସିନା ସେହି ।
ସେହି ବ୍ୟାଧି ହୋଇ ଔଷଧ ବୋଲାଇ ସେହି ବୈଦ୍ୟ ହୋଇଥାଇ ॥

ସେହି ସିନା ପୁଣି ଗୁରୁ ରୂପେ ଜାଣ ଉପଦେଶ ସେହି ଦ୍ୟନ୍ତି ।
ଉପଦେଶ ମାତ୍ରେ ଭବ ସମୋଦ୍ରରୁ ପ୍ରାଣୀ ନିଶ୍ଚିନ୍ତେ ତରନ୍ତି ।।
ଯେହ୍ନେ ଦାବାନଳ ଦହଇ ସକଳ ବନଗିରି ତୃଣ ଘାସ ।
ପ୍ରାଣୀଙ୍କ ଦେହରେ ଜ୍ଞାନ ଉପୁଜିଲେ ତେହ୍ନେ ପାପ ହୋୟେ ନାଶ ।।
ତୁ ଯେ ପଚାରିଲୁ ଅଜୀବର ଗତି ଅଜୀବ କାହିଁ ନାହାଁନ୍ତି ।
ଜୀବ ଅଜୀବ ବୋଲି କରି ସଂସାରେ ବେନି କଥା ବୋଲୁଥାନ୍ତି ।।
ଜୀବର ଯେ ଶକ୍ତି ସଂଗତେ ଅଛନ୍ତି ବହୁତ କୁଟୁମ୍ବ ପୁଣି ।
ତା' ସଙ୍ଗେ ଯୁବତୀ ବହୁତ ଅଛନ୍ତି ସେହି କରନ୍ତି ଭ୍ରମଣି ।।
ତା ସଙ୍ଗେ ଅବଳା କରନ୍ତି ଯେ ଖେଳା ଶୁଣ ବିନତା ନନ୍ଦନ ।
ସପ୍ତକନ୍ୟା ତହିଁ ସେବାରେ ଅଛନ୍ତି ଜୀବର ସେ ନିଜ ପ୍ରାଣ ।।
ଏକଗୋଟି ତହିଁ ପତିବ୍ରତା ଅଛି ଛଡ଼ଗୋଟି ବିଡ଼ମ୍ବଣ ।
ସାତଙ୍କର ମୂଳେ ସତେ ଯେ ଅଛନ୍ତି ବିନତା ନନ୍ଦନ ଶୁଣ ।।
ଏସନ ବିନତିଦେହର ପ୍ରକୃତି ଅଶେଷ ମହିମା ଘର ।
କେହି କାହାକୁ ଯେ ଲାଗି ବିଲଗ ସେ ଆପଣାର ହୋଇ ପର ।।
ଜୀବକୁ ଆବୋରି ପରମ ଅଛନ୍ତି ଛଡ଼ବାରେ ଏକଗଣ୍ଠି ।
ଆୟେ ହୋଇଲେ ଯେ ଗଣ୍ଠି ଫିଟିଯାଇ ଯୋଗମାୟା ହାଥେ ମୁଷ୍ଟି ।।
ସ୍ତିରୀ କର୍ମେ ଧନ ପୁରୁଷରେ ଜନ ବେନି ଗୁଣ ଘେନି ବୋହୂ ।
କହୁଛି ବହୁଛି ରହୁଛି ହେଉଛି ବୋହୂ ସଙ୍ଗ କେବା ପାଉ ।।
ଘରବୋହୂ ସଙ୍ଗେ ଯେ ପ୍ରୀତି କରଇ ଜୀବନ୍ତା ବୋଲିବା ତାକୁ ।
ତା' ସଙ୍ଗେ ଯେ ସଙ୍ଗ ନ କରଇ ଖଗ ଅଜୀବ ବୋଲି ତାହାକୁ ।।
ତା' ସଙ୍ଗେ ଯେ ପ୍ରୀତି ଲଗାଇ ଅଛନ୍ତି ନିସ୍ତାରେ ତାକୁ ଅନାଦି ।
ଛଡ଼ଚକ୍ର ପରେ ଉଦେ ନିରଞ୍ଜନ ପ୍ରକାଶ ଯାହାର ବୁଦ୍ଧି ।।
ଏହା ନ ଜାଣନ୍ତି ସଂସାରରେ ଜନ ତା ତହୁଁ ଦେବତା ନାହିଁ ।
ସେ ସିନା ଅଶେଷ ଦେବାଦେବୀଯାକ ଶ୍ରୀଅଙ୍ଗରୁ ଛନ୍ତି ଧାଇଂ ।।
ସେ ସିନା ଯାହାକୁ ଭାବରେ ପୂଜଇ ସେହି ସେ ଦେବତା ଜାଣ ।
ଏକକୁ ଯେମାନେ ଆଶା ଲଗାବନ୍ତି ଅନ୍ୟ ନ ଜାଣନ୍ତି ପୁଣ ।।
ସେ ଲୋକକୁ ସିନା ପ୍ରସନ୍ନ ହୁଅନ୍ତି ଏ ଯଉଂ ପରମାନନ୍ଦ ।
ସ୍ତିରୀ ସଙ୍ଗରେ ପୁରୁଷ ରହିଅଛି ପୁରୁଷରେ ସ୍ତିରୀ ଛନ୍ଦ ।।
ଗୁହ୍ୟ ଲଲାଟ ପର୍ଯ୍ୟନ୍ତେ ଦେଖ ରହି ଲୀଳାମାନଙ୍କ ଆଶ୍ରୟେ ।

 

ଏଣେ ଅବିକାର ତେଣେ ଅବିକାର ବଧ୍ୟରେ ନାନା ସଂଶୟେ ॥
ତୋ ଆଗେ କହୁଛି ଶୁଣ ପକ୍ଷୀରାଜ ବିଚିତ୍ର ଭାବନା ପନ୍ଥ ।
ଅଶେଷ ବ୍ରହ୍ମାଣ୍ଡେ ଶ୍ରୀହରି ମହିମା କୋଟି କୋଟି ଯୁଗେ ସତ ॥
ଯା ଶୁଣି ନମୁଛି ବଳଦେବ ପାଦେ ବିନନ୍ତା ଯେ ପକ୍ଷୀରାଜ ।
ଅନନ୍ତ ଶିଶୁ ଯେ ତହୁଁକି ଶରଣ ହରିହର ମଧେ ବୀଜ ॥

## ତୃତୀୟ ଅଧ୍ୟାୟ

ମୁଁ ଯେ ତହିଁକି ଶରଣ ଶିଶୁ ଅନନ୍ତ ଚରଣ
ଭବଜଳେ ଭଲା ଲାଭ ଶ୍ରୀହରି କଥା ।
ସୁଜନଜନେ ଶୁଣ । ଗରୁଡ଼ ପୁଚ୍ଛନ୍ତି ଯେବେ ଭଜନ ଗୁଣ ॥
କେଉଁ ଭଜନେ ପ୍ରସନ୍ନ ହୁଅନ୍ତି ଯେ ନିରଞ୍ଜନ
କାହାଠାରେ କେତେ ଦୟା ଶ୍ରୀହରିଙ୍କର ।
ମୋତେ କହ ଗୋସାଇଁ । ଶ୍ରୀମୁଖରୁ ଶୁଣିଲେ ତାପ ଖଣ୍ଡିବଇଁ ॥
ତୁ କହ ଗୋସାଇଁ ସତ ଯେଉଁକଥା ଅଟେ ତତ୍ତ୍ୱ
ଯେମନ୍ତେ ପ୍ରାଣୀ ନିସ୍ତାର ଏ ଭବଜଳୁଁ ।
ଶୁଣି ହସନ୍ତି ରାମ । ଶୁଣ ପକ୍ଷୀରାଜ ଦେହେ ସକଳ ଧର୍ମ ॥
ଦେହ ବିନୁ ଆଉ କାହିଁ ତିନି ଭୁବନରେ ନାହିଁ
ଦେହଇ ଥିଲେଟି ସର୍ବ ଅଛନ୍ତି ଜାଣ ।
ଦେହ ସିନା କାରଣ । ଦେହର ଭାବନା କେ ସଂସାରେ ନଜାଣ ॥
ତେଣୁ ତୁ ଏମନ୍ତ ଜାଣ ଦେହ ବୁଦ୍ଧିରେ ଯେ ପୁଣ
ସନ୍ଥ ସାଧୁଜନମାନେ କଲେ ଦର୍ଶନ ।
ଅନୁମାନରେ ଅଛି । ଅଣାକାର ବୋଲି ଯାହା ଶାସ୍ତ୍ର ବର୍ଣ୍ଣୁଛି ॥
ତୁ ଯେ ପଚାରୁ ଭଜନ କେଉଁ ଦ୍ରବ୍ୟ ନିବେଦନ
କେଉଁ ଦ୍ରବ୍ୟ ଦେଇଣ କରିବି ସେବନ ।
ଅଣାକାର ଅଟନ୍ତି । ବିରଞ୍ଚି ଯେଉଁ ପ୍ରସଙ୍ଗ ନ ପାଆନ୍ତି ଚିନ୍ତି ॥
ଛଡ଼ ଚକ୍ର ଭେଦି ଠଣା ବ୍ରହ୍ମା ଶିବ ହୋନ୍ତି ବଣା
ସହସ୍ର ଦଳ କମଳ ପରେ ଯା ବାସ ।
ପୁଣି ନିତ୍ୟ ରାହାସ । ଷୋଳ ସହସ୍ର ଗୋପୀ ସଙ୍ଗେ ପ୍ରେମ ରହସ୍ୟ ॥

କି ଉପମା ଦେବି ତହିଁ ରାତ୍ର ଦିନ ଯହିଁ ନାହିଁ
ନାହିଁ ଯହିଁ ପାପ ପୁଣ୍ୟ ଅଟେ ଅପାର ।
କେ ତାହା କହୁ ପୁଣି । ବାଣୀରେ ଥାଇଣ ସେ ଯେ ଅଟେ ଅବାଣୀ ॥
ପୁଣ୍ୟ ଗିରି ଶିଖେ ଦେଖ ଅଣାକାରଟି ଅଲେଖ
ଯେଉଁ ଦ୍ୱାରେ ତ୍ରିପୁରା ଅଟେ ଆଧିପତି ।
ବାଟେ କାଳିନ୍ଦୀ ହ୍ରଦ । କାଳୁଆ ଡଂଶିବା ମାତ୍ରେ ସରଇ ପଦ ॥
କାଳିନ୍ଦୀ ହ୍ରଦରେ ଝାସି ତ୍ରିପୁରା ମାତାଙ୍କୁ ଘୋଷି
ତୁ ବିନତା ନନ୍ଦନ ଅଛୁ ସେହିଠାରେ ।
ତୋତେ ଯେ କରଇ ଆଶ । ସେ କାଳିନ୍ଦୀ ହ୍ରଦେ କରିପାରେ ସାହସ ।
ତୁ ନୋହୁ ସାମାନ୍ୟ ଗତି ତୋହ ବିନୁ ଖଗପତି
ଅଶେଷ ବ୍ରହ୍ମାଣ୍ଡ ପୂରି ଫେରି ଆସନ୍ତି ।
ଏହା ଜାଣନ୍ତି ସନ୍ଥ । ଏକାକ୍ଷର ଆଶ୍ରେ କଲେ ଦିଶେ ସେ ପଥ ॥
ସେ କଳିନ୍ଦୀ ପଦ୍ମବନ କିଶୋରୀ ଶ୍ରୀୟା ଉତ୍ପନ୍ନ
ଶ୍ରୀୟା ଗୁଣ ସିନା ବିଧି ବିଧାନ ଗୁଣ ।
ସେହୁ ବିଷ୍ଣୁ ବଲ୍ଲଭା । ଅଶେଷକୁ ଆଚ୍ଛାଦିଛି ତାଙ୍କରି ପ୍ରଭା ॥
ମୁଁ ଏବେ କହୁଛି ଶୁଣ ଗୁଣ ନୋହେ ସେ ନିର୍ଗୁଣ
ପୂର୍ବ ଜନ୍ମ ଭାଗ୍ୟ ଥିଲେ 'ଏ ଗତି ପାଇ ।
ଶୁଣ ତୁ ହୋ ପକ୍ଷୀରାଜ । ସଜରେ ଥାଇଣ ପୁଣ ମହା ଅସଜ ॥
ସହସ୍ର ଦଳ କମଳେ ମଣିକର୍ଣ୍ଣିକାର ପରେ
ସହସ୍ର ପାଖୁଡ଼ା କିଶୋର ମଧ୍ୟେ ତା ବାସ ।
ଅଶେଷ ବନ୍ଧେ ରତି । ନାହିଁ ତହିଁ ସ୍ତିରୀ ଗୁଣ ପୁରୁଷ ନାସ୍ତି ॥
ଷୋଳ ସସ୍ର ଗୋପୀ ମିଳି ନିଶବ୍ଦ ହୁଳାହୁଳି
ପଞ୍ଚସ୍ୱର ବାଦ୍ୟ ସୁରୁଛି ଅଶେଷକୁ ।
ଶେଷପରେ ଭାବନା । କ୍ଷୀନ ନାଳ ସୂତ୍ରେ ତୁ ଅନା ଶିଶୁମୁନା ॥
ଅଣାକାର ଅନହତ ଅନାଇଲେ ସୁରୁ ଚିତ୍ତ
ଡେର ତୁ ଶ୍ରବଣ ନାଦ ବିନ୍ଦୁକୁ ଘେନି ।
ଡର ଡର ନୋହିଣ । ଅଣସାଧନାରେ ଅନହତ ଶ୍ରବଣ ॥
ଅଷ୍ଟ ବିଳାସିନୀ ପାଶେ ଲଳିତା ଅଛନ୍ତି ରସେ
ସର୍ବ ରମଣୀ ରସ କରି ଭୋଜନ ।

କାଳିନ୍ଦୀ ବିନା କାଳୀ ନାହିଁ । କୋଟି ଯୁଗ ଗଲେ ପଲଙ୍କ ତଳେ କାହିଁ ॥
ବ୍ରହ୍ମା ଶିବ ଛନ୍ତି ଧ୍ୟାୟୀ ଆଉ କି ହୋଇବ କହି
କହିଲା କଥାକୁ ଦୁର୍ଗମ ସେ ବିଧାନ ।
ମନ ବୁଦ୍ଧିରେ ଅଛି । ସଦ୍‌ଗୁରୁ ସେବା ଯେ କରେ ମନେ ବାଞ୍ଛି ॥
ତୋତେ କହିଲି ଯେ ଜ୍ଞାନ ଶୁଣିଥିଲା ଅରଜୁନ
ଏ ଜ୍ଞାନ ପାଇ ଶଙ୍କର ଦେହ ରଖିଛି ।
ଭାବନି ମନେଟି ବାଞ୍ଛି । ଭାବିଲେ ଦେହ ଭଣ୍ଡାରେ ସକଳ ଅଛି ॥
ଶୁଣି ବିନତା ନନ୍ଦନ ଛାମୁରେ ଅତି କାର୍ପୁଣ୍ୟ
କରପତ୍ର ଯୋଡ଼ି ସ୍ତବ କରଇ ଆଗେ ।
ଜୟ ଜୟ ଗୋସାଇଁ । ନିରଞ୍ଜନ ନିରାକାର ପାଦେଟି ମୁହିଁ ॥
ଶୁଣି କହଇ ଗରୁଡ଼ କହିଲ ଯେ ମହାଦୃଢ଼
କଉଂ ଲୋକ କରଇ ଏହା ଅନୁମାନ ।
ସଦଗୁରୁ କାହାନ୍ତି । ଆପଣେ କହୁଛ ଗୁରୁ ଶିଷ୍ୟ ନାହାନ୍ତି ।
ଶୁଣିକରି ବଳେବର ଶୁଣ ଭୃତ୍ୟ ଶ୍ରୀହରିର
ଗୁରୁ ଶିଷ୍ୟ ସିନା ଏହି ଦେହରେ ଜାଣ ।
ଗୁପତ ହୋଇଛନ୍ତି । ସଦଗୁରୁ ବ୍ରହ୍ମଜ୍ଞାନ ଯାକୁ ଦିଅନ୍ତି ॥
ବ୍ରହ୍ମଜ୍ଞାନ ଦେଲାମାତ୍ରେ ପ୍ରକାଶ ସେ ହୋନ୍ତି ଗାତ୍ରେ
ତଇଳ ପଡ଼ିଲା ମାତ୍ରେ ଜଳଇ ଦିଅଁ ।
ଦେଖ ଦେଉଳେ ଦିଅ । ଅଭୟେ ସଭୟେ ଘେନି ଆଧୀନେ ରହ ॥
ଏ ଯେ ନୀଳାଦ୍ରି ଦେଉଳ ଅଶେଷ ବ୍ରହ୍ମାଣ୍ଡ ଖେଳ
ଭିତରେ ବାହାରେ ଦ୍ରଶ୍ନ ପ୍ରଶ୍ନ ହେଉଛି ।
ମାୟା ମହିଁମା ଗତି । ତାରଣ ମାରଣ ପୁଣି ବେନି ପ୍ରକୃତି ॥
ଅଶେଷ ଘେନି ପ୍ରକାଶ ନିଳାଅଁନେ ନିଜ ବାସ
ପରମବ୍ରହ୍ମ ନଥିଲା ନାହିଁ ଯେ ସ୍ଥାନ ।
ସର୍ବଠାରେ ପୂରିଛି । ଏକଭାବେ ଯେ ଭଜଇ ସେ ଜାଣେ କିଛି ॥
ଶୁଣ ବିନତା ନନ୍ଦନ କହିଲି ଯେ ଦିବ୍ୟ ଜ୍ଞାନ
ଶୁଣିଲେ ମହାପାତକ ହୁଅଇ ଧ୍ୱଂସି ।
ବୁଝିଲେ ମୋକ୍ଷମାନ । ଦେଖିଲେ ଭଗତି ଗତିଟି ପରିପୂର୍ଣ୍ଣ ॥
ସଦଗୁରୁ ସେବା ଯେହି ବେଦମନ୍ତ୍ର ଯନ୍ତ୍ର କହି

ତାହା ପ୍ରତେ ହୁଅଇ ସେ ଭାବକୁ ଘେନି ।
ଆଗୁଁ ନ ପାରେ ତାହା ରଖି । ସଦଗୁରୁ ସିନା ତହିଁ ଅଟନ୍ତି ସାକ୍ଷୀ ॥
ସଦଗୁରୁ ସିନା ଯେତେ କହିଦେବ ସର୍ବପଥେ
କହିଲେ କି ହେବ ପୁଣି ରହିଲେ ସିନା ।
ନ ରହିଲେ କାହିଁକି । ଏକପ୍ରଭୁ ଭାବେ ଗୁରୁ ଶିଷ୍ୟ ହୋଇଛି ॥
କ୍ଷୁଧାର୍ଥୀ ଲୋକକୁ ଅନ୍ନ ନ ଭୁଞ୍ଜି କରୁ ଲେଖନ
ସେ କି ଉପକାର ତାକୁ ହୋଇବ ପୁଣି ।
ଗର୍ଭ ହେଲେ ଶୀତଳ । ନ ଭୁଞ୍ଜି ଗୁରୁଙ୍କୁ ନିନ୍ଦା ନୋହୁ ବିକଳ ॥
ଯା ଶୁଣି ନମେ ଗରୁଡ଼ ଜୟ ଜୟ ଯୋଗାରୂଢ଼
ମୁଁ ତୁମ୍ଭ ଚରଣ ତଳେ ଥିବି ନିୟତ ।
ତୋର ମହିମାଁ ସତ । ଭାବେ ଶରଣ ପଶିଲେ ଶିଶୁ ଅନନ୍ତ ॥

## ଚତୁର୍ଥ ଅଧ୍ୟାୟ

### ବସନ୍ତ ବାଣୀ

ପୁଣି ନମୁଛି ଗରୁଡ଼ ହୋ ଜୟ ଜୟ ଯୋଗାରୂଢ଼
କହିଲ ତ ମୋତେ ଦୃଢ଼ ହୋ ଶୁଣି ମୋତେ ଲାଗେ ଗୁଢ଼
କି ସ୍ୱାମୀ ହେ ରୋକାର ଜ୍ଞାନ ଅମରା ଦେବ ॥
ଆନନ୍ଦରେ ପକ୍ଷୀରାଜ ହୋ ବୋଲଇ ହେ ଦେବରାଜ
ହଳହସ୍ତ ଶୂଳ ସଜ ହେ ଜହିବ ସାଧନା ସଜ
କି ସ୍ୱାମୀ ହେ । ଅନ୍ତର୍ଗତ କଥା ଅନ୍ତର୍ଯ୍ୟାମୀ ॥
କେ ଜାଣନ୍ତି ବ୍ରହ୍ମଜ୍ଞାନ ହେ କେମନ୍ତେ କରି ସାଧନ
କେମନ୍ତେ ଯେ ହେଲା ଜନ୍ମହେ ମାତାର ଗର୍ଭରେ ପୁଣ
କେତେ ଦିନେ କେତେ ନୀତି ଏହାର ପୁଣି
କି ସ୍ୱାମୀ ହେ । ତୁମ୍ଭେ ତ ଅନ୍ତର୍ଯ୍ୟାମୀ ॥
କେତେ କହିବା ସେ ଗୁଣ ମାତା ଗର୍ଭର ଯେ ଗୁଣ
ଶେଷ କହୁଛନ୍ତି ଶୁଣ ହେ ବିନତା ପକ୍ଷୀରାଜନ
କି ପକ୍ଷୀରାଜ । ରେତମାତ୍ରେ ମାତା ଗର୍ଭେ ସମ୍ଭୂତ ବୀର୍ଯ୍ୟ ॥
ସେହି ରେତକ ଯେ ସତ କମଳେ ହେଲା ସମ୍ଭୂତ

ଶୁକ୍ଳବର୍ଣ୍ଣ ପ୍ରଥମରେ ସାହେର ଜଳ ଭିତରେ
କି ପକ୍ଷୀରାଜ । ଚକ୍ର ଆକୃତି ଘେନି ଚତୁର୍ଭୁଜ ॥
ପଞ୍ଚମ ମାସେ ଯେ ଜୋତି ନିର୍ବାଣ ସର୍ବ ଆକୃତି
ପଞ୍ଚ ଅଙ୍ଗୁଷ୍ଟିମାନ ପଞ୍ଚୁଆତ୍ମାହିଁ ସ୍ଥାପନ
କି ପକ୍ଷୀରାଜ । ମୁଖ ନାସା ଶ୍ରବଣ ଚକ୍ଷୁ ବିରାଜ ॥
ଷଡମାସେ ଷଡବର୍ଣ୍ଣ ମୁଖ ନାସା ଯେ.ଶ୍ରବଣ
ଅଷ୍ଟାଙ୍ଗ.ଯୋଗ ଆସନ କରପତ୍ର ଯୋଡ଼ି ପୁଣ
କି ପକ୍ଷୀରାଜ । ନିରଞ୍ଜନ ପାଦତଳେ ଥିଲା ନିମଞ୍ଜ ॥
ସପ୍ତ ମାସରେ ସପ୍ତାଙ୍ଗ ସମ୍ପୂର୍ଣ୍ଣ ଏ ସର୍ବ ଅଙ୍ଗ
ସାକ୍ଷୀ ଯେ ପରମାନନ୍ଦ ମୂଳକମଳରେ ଛନ୍ଦ
କି ପକ୍ଷୀରାଜ । ଭଜୁଥିଲା ଏକାକ୍ଷର ଅଷ୍ଟାଙ୍ଗ ଯୋଗ ॥
ଅଷ୍ଟାଙ୍ଗୁ ଅଷ୍ଟାଙ୍ଗ ଜାତ ଆକାର ହେଲା ସମ୍ଭୂତ
ନବ  ମାସ ନବ ଦିନ ହେଲା ଅତି ଆଗମନ
କି ପକ୍ଷୀରାଜ । ନେତ୍ର ପ୍ରକାଶିବା ମାତ୍ରେ ବିକାର ସଙ୍ଗ ॥
ଦଶମ ମାସରେ ଧାଇଁ ଦଶ ଅବତାର ପାଇଁ
ସ୍ତବ କଲା ଅପ୍ରମିତ କରିଥିବି ଏହି ତତ୍ତ୍ୱ
କି ପକ୍ଷୀରାଜ । ପାଶୋରି ସକଳ କଥା ହେଲା ଅସଙ୍ଗ ॥
ପୁଣି ମର୍ତ୍ତେ ଜନ୍ମ ହୋଇଁ ମାତା ମୋହସ୍ତନ ପାଇଁ
ପାଶୋରୀ ସେ ପୂର୍ବଗତି ହେତୁମତିଙ୍କ ଆକୃତି
କି ପକ୍ଷୀରାଜ । ଜ୍ଞାନ ଛାଡ଼ି ଅଜ୍ଞାନେ ବଢ଼ିଲା ସହଜ ॥
ଯହୁଁ ସେ ଭୋଗ୍ୟାଦି କଲା ଦିନୁ ଦିନୁ ଯେ ବଢ଼ିଲା
ବଢ଼ି ବଢ଼ି ହେଲା ବଡ଼ ତେଜିଲା ସକଳ ଦୃଢ଼
କି ପକ୍ଷୀରାଜ । ଜ୍ଞାନ ତେଜି ଏମନ୍ତ ଇନ୍ଦ୍ରିୟ ସରୋଜ ॥
ପ୍ରକୃତି ଏ.କଲେ ଡକା ଯହୁଁ ଏ ହେଲା ନିଶଙ୍କା
ବିସୋରିଲା ଯହୁଁଧନ ତେଣୁ ଦରିଦ୍ର ଜୀବନ
କି ପକ୍ଷୀରାଜ । ଦୁଃଖୀ ଲୋକଙ୍କୁ କାହିଁ ଅମୃତ ବିମଞ୍ଜ ॥
ପୁଣି ଧନ ଦାରାସୁତ ଆବୋରିଲା ବନ୍ଧୁ ମିତ୍ର
ପ୍ରିୟା ପ୍ରୀତି ଘେନି ମତ ଅତିହେଲା ଦୃଢନନ୍ତ
କି ପକ୍ଷୀରାଜ । ଜାଣୁ ଜାଣୁ ହରାଇଲା ଯହୁଁ ଅମ୍ବୁଜ ॥

ଚକ୍ଷୁ ଥାଉଁ ଥାଉଁ ବଣା ଶ୍ରୀଅଙ୍ଗ ନ ଚିହ୍ନି ଉଣା
ଯହିଁ ଦେଖୁଛି ଅଶେଷ ସେ ପୁଣି ନୁହନ୍ତି ଦୃଶ୍ୟ
କି ପକ୍ଷୀରାଜ । ଆପଙ୍କୁ ଆପ ଚିହ୍ନିଲେ ନାହିଁ ଅସଜ ॥
ଏ ଗତି ଜାଣନ୍ତି ମୁନି ଇଷ୍ଟ ଯହୁଁ ପଦ୍ମଯୋନି
ଜନ୍ମ ହେତୁଥାନ୍ତି ଘେନି ଧ୍ୟାନ ଯୋଗ ପଥ ଚିହ୍ନି
କି ପକ୍ଷୀରାଜ । ତେଣୁ ସେ ସାଧୁଙ୍କ ପାଶେ ଜ୍ଞାନର ବୀଜ ॥
ତେଣୁ ସେ ଜ୍ଞାନ ସାଧନ୍ତି ବନଗାମୀ ହୋଇଥାନ୍ତି
ଗ୍ରାମଗୀତକୁ ନ ଚିନ୍ତି ଦୃଗମ ବନେ ସାଧନ୍ତି
କି ପକ୍ଷୀରାଜ । କହିଦେଲି ସ୍ୱାର୍ଥ ସନ୍ଥ ସାଧୁଟି ବୀଜ ॥
ସେ ଯେ ଜାଣନ୍ତି ସେ ଗତି ଜନ୍ମ ମୃତ୍ୟୁର ଆକୃତି
ଯୁଗେ ଯୁଗେ ରହିଛନ୍ତି ସେହି ମହାମଗ୍ନ ଚିନ୍ତି
କି ପକ୍ଷୀରାଜ । ନିରବଧି କୃଷ୍ଣ ଚରଣ ପଙ୍କଜ ଭଜ ॥
ଶୁଣି ସନ୍ତୋଷ ଗରୁଡ଼ ପାଦ ପଦ୍ମେ କରି ଦୃଢ଼
ନମସ୍ତେ ଭୋ ଯୋଗାରୂଢ଼ ଆଜ୍ଞାକଲ ମହାଗୂଢ଼
କି ସ୍ୱାମୀ ହେ । ନମସ୍ତେ ନମସ୍ତେ ଅନ୍ତର୍ଯ୍ୟାମୀ ॥
ଜୟ ଜୟ ବାସୁଦେବ ଅନନ୍ତ ଫଣାରେ ସର୍ବ
ନିରାକାର ମହାଦେବ ମୋ ମତି ଭାବୁ ତୋ ଭାବ
କି ସ୍ୱାମୀ ହେ । ନମସ୍ତେ ନମସ୍ତେ ବୈକୁଣ୍ଠ ବିଳାସୀ ॥
ମୁଁ ସେ ବିନତା ଚରଣେ ଶରଣ ଯେ ଅନୁକ୍ଷଣେ
ଅନନ୍ତ ଟୀକା ବଖାଣେ ଶିଶୁ ଭାବରେ ଯେ ଭଣେ
କି ସ୍ୱାମୀ ହେ । ଶ୍ରୀ ଜଗନ୍ନାଥ ପ୍ରଭୁ ଶ୍ରଚରଣେ ॥

## ପଞ୍ଚମ ଅଧ୍ୟାୟ

ସୁଜ୍ଞ ଜନମାନେ ଶୁଣ ଗରୁଡ଼ ପୁଛଇ ପୁଣ
କାହିଁଛନ୍ତି ସାଧୁଜନ କେଉଁଠାରେ ତପୋବନ
କି ସ୍ୱାମୀ ହେ । ଅନ୍ତର୍ଗତ କଥା ଅନ୍ତର୍ଯ୍ୟାମୀ ॥
କେଉଁ ବନସ୍ତରେ ପଶି ରାମ ନାମ ଯୋଗଭ୍ୟାସି
ସେ ବିଷେ କେମନ୍ତେ ପଶି କାହିଁରେ ରହନ୍ତି ରସି

କି ସ୍ୱାମୀ ହେ । କାହା ପିତୃ ଲୋକ କେଉଁ ଭାବେ ରସି ।।
କେଉଁ ପାପ କଲେ ପ୍ରାଣୀ କି ଗତି କି ପରିମାଣି
କୁହ ଏହା ଶୂଳପାଣି ମୁଁ ଯେ ପରିଭୃତ୍ୟ ପୁଣି
କି ସ୍ୱାମୀ ହେ । ନମସ୍ତେ ନମସ୍ତେ ବାସୁଦେବ ନିରାକାର ।।
ଶୁଣିଣ ହସନ୍ତି ରାମ ପକ୍ଷୀରାଜ ତୋ ଜୀବନ
ଧନ୍ୟ ତୋର ଅନୁମାନ ତୁ ଯହୁଁ ବିଷ୍ଣୁ ବାହାନ
କି ପକ୍ଷୀରାଜ । ସୁକୃତ ବିକୃତ ଗତି ଦେହରେ ଖୋଜ ।।
ତୁ ଯେ ପଚାରିଲୁ ବନ ନିରାଲମ୍ବର ଭଜନ
କାହିଁଛନ୍ତି ନିରଞ୍ଜନ ରୂପ ବ୍ୟତ୍ରକେ ଯେ ଶୂନ୍ୟ
କି ପକ୍ଷୀରାଜ । ମହାବନ ଦେହ ସଂସାର ହେଜ ।।
ସେ ବନେ ଯେ ପାରେ ପଶି ଧନ୍ୟ ତା'ର ରୂପରାଶି
ସୁମଳୟ ଅହନିଶି ସୁଧାଇ ସଦା ବରଷି
କି ପକ୍ଷୀରାଜ । ସେ ବନେଟି ଦେବ ସଭା ଅଛି ଆଶ୍ଚର୍ଯ୍ୟ ।।
ନଦୀ ବହେ ତ୍ରିବେଣୀତ ତଟେ ଯେ ବହେ ବସନ୍ତ
ସୁମଳୟା ଯେ ମରୁତ ଯୋଗେ ଯୋଗେ ବିଷ୍ଣୁତତ୍ତ୍ୱ
କି ପକ୍ଷୀରାଜ । ସେ ବନେ ସାଧୁଙ୍କ ସଙ୍ଗେ କୃଷ୍ଣେ ନିମଜ୍ଜ ।।
ସେ ବନେ ବ୍ୟାଘ୍ର ଶାର୍ଦ୍ଦୂଳ ପକ୍ୱଫଳ ନଟୀକେଳ
ମଣ୍ଡୁକି କୁଣ୍ଡଳୀ ଗୋଳ ଯେ ଭୁଞ୍ଜଇ ସେହୁ ଫଳ
କି ପକ୍ଷୀରାଜ । ଫଳ ଲାଳସେ ଲଭଇ ମୃତ୍ୟୁ ସହଜ ।।
ସେ ଲାଳସେ ପ୍ରାଣୀମରେ ମଧୁଛାଡ଼ି ବଧୂଠାରେ
ବହି ଯାଉଛି ନଧରେ ବଳବନ୍ତା ପଣକରେ
କି ପକ୍ଷୀରାଜ । ଅଳପ ଜନ୍ତୁ ଗଳଇ କ୍ଷୀରଦ୍ୱାରେ ସହଜ ।।
ପିମ୍ପୁଡ଼ି ଦ୍ୱାରରେ ନେଇଁ ଗୁଞ୍ଜରା ଦେବା ଲଗାଇଁ
ସେ କି ଗଳିପାରେ ଯାଇଁ ଏ କି ଦେଖାଅଛି କାହିଁ
କି ପକ୍ଷୀରାଜ । ହସ୍ତୀ କି ରେ ଗତି ପୁଣି ଅତି ସହଜ ।।
ଏମନ୍ତ ଯେ ବନ ଗତି ଏ ସର୍ବ ତନ ଆକୃତି
ତନଇଟି ତପୋବନ ତନ ଘେନି ପାପଧର୍ମ
କି ପକ୍ଷୀରାଜ । ତଳେକର ନେତ୍ର ଆଗେ ଗରୁଡ଼ଧ୍ୱଜ ।।
ଥଏକର ଯେତେ ମନ ଥୁଳବ୍ରହ୍ମ ମହାଶୂନ୍ୟ

ଥକାଇଁ ରଖି ପବନ ଥାପନା ବିଅକୁ ଚିହ୍ନ
କି ପକ୍ଷୀରାଜ । ଅକଳି ସାହେରେ କାହିଁ ସ୍ଥଳରେ ସଜ ॥
ରାମ ନାମ ଅନୁବ୍ରତେ ହେଉଥିବ ଅନ୍ତର୍ଗତେ
ହେତୁ ଚଇତନ ପଥେ ଅନୁଭବ ଅନୁମତେ
କି ପକ୍ଷୀରାଜ । ଘର୍ଷଣେ ଲୁହା କଳଙ୍କି ଛାଡ଼ି ସୁତେଜ ॥
ସୁବର୍ଣ୍ଣରେ ନାନା କମ ଦେଖିତେ ଯେ ଅନୁଆନ
ବିଗଳ ଯୁଗଳ କମ ସର୍ବ ଯେକଇ ସୁବର୍ଣ୍ଣ
କି ପକ୍ଷୀରାଜ । ସର୍ବ ନୋହେ ଯେକ ମୂଳ ପରୀକ୍ଷରାଜ ॥
ଏମନ୍ତ ବିଷ୍ଣୁ ମହିମା କେ ପୁଣି ଜାଣିବ ସୀମା
ଗର୍ବକୁ ଭାଙ୍ଗେ ଗାରିମା ଅତି ଅନନ୍ତ ମହିମା
କି ପକ୍ଷୀରାଜ । ଅବୟେ ବିଷ୍ଣୁଙ୍କୁ ଦେଖ ଯେ ଯେ ସହଜ ॥
ତୁ ଯେ ପୁଛିଲୁ ସୁଗତି ପିତୃ ଲୋକଙ୍କର ଗତି
କେଉଁ ଧର୍ମେ କେ ଅଛନ୍ତି କାହାର କେବଣ ରୀତି
କି ପକ୍ଷୀରାଜ । କୁଳଧର୍ମେ ଅନୁକର୍ମେ ପିତୃ ବିରାଜ ॥
କୁଳ ଶ୍ରେଷ୍ଠ ପୁତ୍ର ଥାଇ ସେ ଯେ ପୁଣ୍ୟ ଆଚରଇ
ପୁଣ୍ୟ କରେ ଅନ୍ନଦାନ ସକଳ ଭୂତେ ଅଧୀନ
କି ପକ୍ଷୀରାଜ । ଶିବ ଦର୍ଶନେ ପାତେକ ହୋଯେ ଦହିଜ ॥
ନିତ୍ୟେ ଶିବକୁ ଦର୍ଶନ କରିଣ ଭୁଞ୍ଜଇ ଅନ୍ନ
ଶ୍ରୀ ଭାରତ ରାମାୟଣ ଭାଗବତ ଗୀତରେଣ
କି ପକ୍ଷୀରାଜ । ଯେ ଜନର ମନ ନିତ୍ୟେ ଯେଥି ସହଜ ॥
ଆବର କୀରତି ଗୁଣ ପରଦୁଃଖେ ଦୁଃଖୀ ପୁଣ
ପରନାରୀ ଦେଖି ପୁଣ ମଣଇଁ ମାତୃ ସମାନ
କି ପକ୍ଷୀରାଜ । ସେ ଲୋକ ପିତୃ ଅମରେଟି ବିରାଜ ॥
ଜୀବଠାରେ ଥାଇଁ ଦୟା ନିର୍ଲୋଭ ଶ୍ରୀମତି କାୟା
ଦେହ ଗୁଣକୁ ସଂହରି ଜ୍ଞାନ ପରତେ ସୁମରି
କି ପକ୍ଷୀରାଜ । ସେ ଲୋକଙ୍କୁ ପିତୃ ସିଂହାସନେ ବିରାଜ ॥
ପରକୁ ଆଶ୍ୱାସି କହେ ବିଶ୍ୱାସ ଘାତକା ନୋହେ
ମିଥ୍ୟା କହେ ଭାବ ଘେନି ପୂଜା କରେ ଜ୍ଞାନୀ ଚିହ୍ନି
କି ପକ୍ଷୀରାଜ । ସେ ଲୋକଟି ପୁତ୍ର ଜନ୍ମେ ହୁଅଇ ଦିଜ ॥

ଯେ ଜନ ଯେଥେ ନାହାନ୍ତି ସେ ଲଭଇ ଜନ୍ତୁ ପତି
କାଳ ସଙ୍ଗତରେ ଥାଇ କଷ୍ଟସଙ୍ଗକୁ ଲଭଇ
କି ପକ୍ଷୀରାଜ । ପିତୃ ପିଣ୍ଡେକ ସେ ପୁତ୍ର କରେ ଅସଜ ॥
କୁଳ ସଙ୍କେତରେ ଥାଇ ନାନା ଅନ୍ୟାୟେ ବଞ୍ଚଇ
ନ ଶୁଣଇ ହରି କଥା ବିପ୍ରେ ନ ନୁଆଇଁ ମଥା
କି ପକ୍ଷୀରାଜ । ସେ ଲୋକ ଯିବଟି ସମନକୁ ଟି ସଜ ॥
ବିପ୍ର ବଇଷ୍ଣବଠାରେ ଢାଳେହେ ଭଜନ କରେ
ଗୁରୁ ସେବା ଯେ ନକରେ ଅପକୀର୍ତ୍ତିହିଂ ଆଚରେ
କି ପକ୍ଷୀରାଜ। ଭ୍ରମେ ନାନା ଯୋନି ସେ ଲୋକ ଯେ ନିର୍ଲଜ
ଦୁର୍ଲଭ ଦେହକୁ ପାଇଂ ଦୟା କ୍ଷମା ଯେବେ ନାହିଁ
ସତ ଶ୍ୟାନ୍ତି ବେନି ଗୁଣ ଯା ଦେହରେ ନାହିଁ ପୁଣ
କି ପକ୍ଷୀରାଜ । ପଶୁରେ ଲେଖନ ତାର ଦେହର ସଜ ॥
ଦ୍ରବ୍ୟ ଲୋଭରେ ବଢ଼ଇ ଇଙ୍ଗିତ ହାସ୍ୟ ପଢ଼ଇ
ଲୁଟଇ ଯେ ଯଉବନ ପରସ୍ତିରୀଙ୍କି ରମଣ
କି ପକ୍ଷୀରାଜ । ଇହ ପର ଦୁଇଆଡ଼େ କଲା ଅସଜ ॥
ହେଉ କୁଳ ଶୁଦ୍ଧ ପୁତ୍ର କଲା ସବୁ ଅପବିତ୍ର
ପାଶୋର ଯେ ମହାମନ୍ତ ରହିଲା କାଳ ସଙ୍ଗତ
କି ପକ୍ଷୀରାଜ । କୁମ୍ଭୀପାକ ନର୍କେ ସେ ଅବଶ୍ୟ ବିରାଜ ॥
ଯାତ୍ରା ତୀର୍ଥ କ୍ଷେତ୍ରେ ଯାଇଁ କୁକର୍ମକୁ ଆଚରଇ
ଦିବ୍ୟରସ ଭୋଗମାନ ସୁନ୍ଦର ନାରୀ ଯୌବନ
କି ପକ୍ଷୀରାଜ । ଦେବଠାରୁଁ ମନ ଛାଡ଼ି ପ୍ରକୃତି ସଜ ॥
ସେ ଲୋକଙ୍କୁ ନାହିଁ ଗତି ଯହୁଁ ବିଷୟ ପ୍ରକୃତି
ପୁଣ୍ୟ କ୍ଷେତ୍ର ଯାଇ ମତି ବଢ଼ାଇ ପାପ ପ୍ରକୃତି
କି ପକ୍ଷୀରାଜ । ସେ ଲୋକ ଧର୍ମ ଢାଳେ ନାଶଇ ସହଜ
ଯାତ୍ରା ତୀର୍ଥ କ୍ଷେତ୍ରେ ଯାଇଁ ପୁଣ୍ୟ କଥା ସୁମରଇଁ
ମହାମନ୍ତ ଜପ କରି ଅଧୀନେ ଥାଇ ସୁମରି
କି ପକ୍ଷୀରାଜ । ସେ ଲୋକକୁ ସୁକୃତ ସିନା ସହଜ ॥
କହିଲି ମୁଁ ଯେତେଁ ଧର୍ମ ଆଉ ଯେତେ ପାପ କର୍ମ
ଏହିବେନି କଥା ଘେନି ଏ ସର୍ବ ଯେ ଚାରିଖାନି

କି ପକ୍ଷୀରାଜ । ସେବା ଉପଦେଶ ଜ୍ଞାନୀ ଅଟଇ ବୀଜ ॥
ପାପଗୁଣ ଦୋଷ ଘେନି ଭ୍ରମୁଥାଇ ନାନା ଯୋନି
ପୁଣ୍ୟ ପଥକୁ ନମାନି ଭ୍ରମେ ଚଉରାଶି ଯୋନି
କି ପକ୍ଷୀରାଜ । ପୁଣ୍ୟ ଆଶ୍ରେ କଲା ଲୋକ ବିଷ୍ଣୁ ଆତ୍ମଜ
ସେ ଜନ ଅଟେ ମନୁଷ୍ୟ-ତା ପିତୃ ବିଷ୍ଣୁଙ୍କ ଦାସ
ସେବାକାର ପଣେ ଥାନ୍ତି ମଙ୍ଗଳସ୍ୱର ଗାବନ୍ତି
କି ପକ୍ଷୀରାଜ । ପାପୀଜନ ପିତୃପୁଣି ପଶୁଙ୍କ ସଜ ॥
ମାନବ ସଦୃଶ ଥାନ୍ତି ପଶୁ ଆଚାର କରନ୍ତି
ନ ଶୁଣନ୍ତି ହରି କଥା ଜନ୍ମହିଁ ତାଙ୍କର ବୃଥା
କି ପକ୍ଷୀରାଜ । ଦେଖନ୍ତେ ମନୁଷ୍ୟ ପ୍ରାୟେ ସର୍ବେ ବିରାଜ ॥
କହିଦେଲି ଯେଉଁ ସନ୍ଧି ବିଷ୍ଣୁୟେ ସର୍ବକୁ ଛନ୍ଦି
ଆଦିନାଥ ଗୁଣେ ବନ୍ଦୀ ଅଶେଷ ହେଉଛି ଧନ୍ଦି
କି ପକ୍ଷୀରାଜ । ହରି ଅର୍ଜୁନଙ୍କ ହେତୁ ଭାରଥ ହେଜ ॥
କହନ୍ତି ଯେ ଟୀକାସାର ଶେଷ ଗରୁଡ଼ ଆଗର
ଶିଶୁ ଭାବନ୍ତି ମନର ଧନ୍ୟାଗିରି ଖଣ୍ଡଠାର
କି ସ୍ୱାମୀ ହେ । ଶ୍ରୀ ନୀଳାଞ୍ଚଳ ପତି ଶ୍ରୀଚରଣ ତଳକୁ ଶରଣ ॥

## ଷଷ୍ଠ ଅଧ୍ୟାୟ

ପୁଣି ପଚାରନ୍ତି ଯାହା ଗରୁଡ଼ । ଭୋ ସ୍ୱାମୀ ନମସ୍ତେ ହେ ଯୋଗାରୂଢ଼ ॥
ଅଶେଷ ବ୍ରହ୍ମାଣ୍ଡେ ତୁମ୍ଭେ ଠାକୁର । ନମସ୍ତେ ନମସ୍ତେ ହେ ହଳଧର ॥
ତୁମ୍ଭ ମହିମା ଅଶେଷକୁ ଗତି । ନମସ୍ତେ ନମସ୍ତେ ରେବତୀ ପତି ॥
ନମସ୍ତେ ଧବଳାଙ୍ଗ ବିଶ୍ୱେଶ୍ୱର । ଗୁଣ ପରେ ନିର୍ଗୁଣ ନିରାକାର ॥
ଅଶେଷକୁ ଗତି ମୁକତି ଅଟ । ତୁମ୍ଭ ନାମକୁ ଶଂକଇ ସଙ୍କଟ ॥
ତୁମ୍ଭ ନାମକୁ ଯେ କରେ ସ୍ମରଣ । କାଟେ ମହାକାଳ ସଙ୍କଟ ମାନ ॥
ତୁମ୍ଭ ନାମରେ ଯାର ଅଛି ଶ୍ରଦ୍ଧା । ସେ ଯେ ମହାପାଶୁଁ ଅଟଇ ଜିତା ॥
ଅଣାକାର ଅଲେଖ ହେ ମହିମା । ଲେଖି ନ ପାରେ ଯାହା ହରବ୍ରହ୍ମା ॥
ଦେବ ବିଧି ଯେ ଅଶେଷ ସ୍ରିଜିଲେ । ଆଜ୍ଞାକୁ ଅବଧାରୀ ସର୍ବେ ହେଲେ ॥
ଆଜ୍ଞାକୁ ନଲଘଇ ସିନ୍ଧୁ କୂଳ । ଆଜ୍ଞାକୁ ଜଳ ମଧ୍ୟେ ଅଛି ଥଳ ॥

ତୁମ୍ଭ ଆଶ୍ରେଟି ରାଜା ବିଭୀଷଣ । ଅପ୍ରୀତି କଲା ତ୍ରିଜୀବୀ ରାବଣ ॥
ତୁମ୍ଭ ପାଦ ଲାଗିଲା ଯେ ଅହଲ୍ୟା । ପାଷଣୁ ମୋକ୍ଷ ସେକ୍ଷଣି ହୋଇଲା ॥
ତୁମ୍ଭ ନିଜ ନାମ ସୁମରି କାକ । କେତେ ଯୁଗେ ଅକ୍ରାମ୍ବର ତା ରୂପ ॥
ତୁମ୍ଭ ନିଜ ନାମ ସୁମରି କାକ । କେତେ ଯୁଗେ ଅକ୍ରାମ୍ବର ତା ରୂପ ॥
ତୁମ୍ଭ ନାମ ଧରିଣ ଯେ ବାସୁକି । ଚଉଦ ବ୍ରହ୍ମାଣ୍ଡ ମସ୍ତକେ ରଖି ॥
ତୁମ୍ଭ ମାୟା କେହି ନ ପାରେ ଜାଣି । ବ୍ରହ୍ମା ଯୋଗେଶ୍ୱର ଆବର ମୁନି ॥
ଅଶେଷକୁଟି ତୁମ୍ଭେ ପରିତ୍ରାଣ । ଅନ୍ତର୍ଗତ ବାରତା ମାନ ଜାଣ ॥
ଜାଣି ଗଜକୁ ରଖିଲ ଉଦ୍ଧରି । ଶିଳାରେ ବାନ୍ଧିଲ ସାହେର ବାରି ॥
ଶାପରୁ ଉଦ୍ଧରିଲ ଯେ ରାବଣ । ନେଇଣ ବଇକୁଣ୍ଠେ ଦେଲ ସ୍ଥାନ ॥
ନମସ୍ତେ ନମସ୍ତେ ଭୋ ନୀଳାମ୍ବର । ଅଶେଷ ବ୍ରହ୍ମାଣ୍ଡେ ଅଟ ଈଶ୍ୱର ॥
ନୀଳବସ୍ତ୍ର ପରିଧାନ ଅଙ୍ଗରେ । ଫଣିମଣି ଶୋଭା ମଥା ଉପରେ ॥
ଆବର ଶୋଭା ବିଶେ ବ୍ୟାଘ୍ରଲଖ । ଧବଳାଙ୍ଗ ଜ୍ୟୋତି ଅଟ ଅଲେଖ ॥
ଡମ୍ବରୁ କଟି ବଳିଆର ବାହୁ । ଅଶେଷ ବ୍ରହ୍ମାଣ୍ଡକୁ ସାହା ଏହୁ ॥
ସେ ଶ୍ରୀମୁଖ ଗୋଟି ଅତିହିଂ ଶୋଭା । ନୀଳ ମେଘେ ଯେହ୍ନେ ଆଦିତ୍ୟ ଶୋଭା ॥
ଏମନ୍ତେ ସ୍ତବ କରନ୍ତି ଗରୁଡ଼ । ନମସ୍ତେ ନମସ୍ତେ ହେ ଯୋଗାରୂଢ଼ ॥
ଯା କିଛି ଜାଣନ୍ତି ଅନନ୍ତ ଶିଶୁ । ମୋ ମନ ସେ ପାଦେ ଶରଣ ପଶୁ ॥

## ସପ୍ତମ ଅଧ୍ୟାୟ

ଦିନେ ମୁଁ ଭାବନା କରୁଥିଲି ସିନା ନୀଳାଦ୍ରି ଦେଉଳଠାରେ ।
ବଡ଼ ଦାଣ୍ଡେ ଥାଇଁ ଦେଲି ମୁଁ ଅନାଇଁ ବିଜେ ଚକ୍ର ପତାକାରେ ॥
ଚାରିଦ୍ୱାରେ ଚାରି ଫିଟିଅଛି ବାଟ ଜୟ ବିଜୟ ସେଠାରେ ।
ସେ ଦ୍ୱାରପାଳଙ୍କ ଆଜ୍ଞାରେ ଅଛନ୍ତି ଷଡ଼ ଗୋଟି ଯେ ସୁଆରେ ॥
ପଚିଶ ସେବକ ସେବାରେ ଅଛନ୍ତି ପଡ଼ିହାରୀ ପାଞ୍ଚଜଣ ।
ତିନି ବଡ଼ ପଣ୍ଡା ତିଆରୁ ଅଛନ୍ତି ତୁମ୍ଭେ ତ୍ରିଲୋକ କାରଣ ॥
ସେ ଦ୍ୱାରପାଳଙ୍କୁ ମୁହିଁ ଜଣାଇଲି ଶୁଣ ହୋ ବିଜୟେ ଦ୍ୱାରୀ ।
ଷଡ଼ ସୁଆରଙ୍କୁ କହିବି କଥାଯେ ଥିବ ବାରେ କୃପା କରି ॥
ପଚିଶ ସେବକ ପାଦତଳେ ପଡ଼ି କହିଲି କେତେ ବିନୋଇଁ ।
ପାଞ୍ଚ ପଡ଼ିହାରୀ ଆଗରେ ଶୋଇଲି ବେକରେ ଲୁଗା ଲଗାଇଁ ॥

ତିନି ବଡ଼ ପଣ୍ଡା ଛାମୁରେ କହିଲି ବାସୁଦେବ ସେବା କର ।
ବିବିଧ ବନ୍ଧେ ବିଶ୍ୱଲୀଳା ଦେଖାଅ ମସ୍ତକ ତୁମ୍ଭ ପୟର ॥
ତିନି ଦ୍ୱିଜବର କରିଣ ବିଚାର ଯେକ ସୁଦୟା ବାଞ୍ଛିଲେ ।
ତ୍ରିକାଳ ସନ୍ଧ୍ୟା ଦର୍ଶନ ଧୂପ ପରେ ହେଉ ବୋଲିଣ ବୋଇଲେ ॥
ଅର୍ଗଳି ସ୍ଥାନରେ ରଖି ଦ୍ୱିଜବର କହିଲେ ମୋତେ କଥାଯେ ।
ସହସ୍ରେ ଶାଳଗ୍ରାମ ତ୍ରିପୁରାକମ ମାଡ଼ିଲେ ନେଭାଶି ନୋହେ ॥
ନେଭାଶିରେ ରହି ନିଅର୍ଗଳି ତହିଁ ଦର୍ଶନ କଲି ଅଚ୍ୟୁତ ।
ସନ୍ଥଜନ ଦାଣ୍ଡ ଅକର୍ମ ସୁକାଣ୍ଡ କହଇ ଶିଶୁ ଅନନ୍ତ ॥

## ଅଷ୍ଟମ ଅଧ୍ୟାୟ

କହୁଅଛି ମନ ଶୁଣ ଚଇତନ  କିଶୋର କିଶୋରୀ କଥା ।
ଖଗପତି ନାଥ ଗହନ ଗୁପତ ଘୋଷଣାରେ ତୁ ଚାହିଁଥା ॥
ଓଁକାର ବ୍ରହ୍ମଟି ଉଦୟେ ହୋଇଛି ଚରାଚରେ ଛନ୍ତି ପୂରି ।
ଛନ ଛନ ନୋହିଁ ହଜରେ ଲଗାଇଁ ଜଗନି ତୁ ଯୋଗ ବାରଜ ॥
ଝଟଝଟ ହୋଇଁ ଦିଶି ଯାଉଛନ୍ତି ନିର୍ଲେପ ସେ ନିରଞ୍ଜନ ।
ଟାଣପଣ ଛାଡ଼ି ଦିଶା ତୁ ଟେକିଲେ ଠାକୁରଙ୍କ ଦରଶନ ॥
ଡୋଳା ପ୍ରତିମାକୁ ଡାହାଣେ ରଖିଣ ଢାକୁଣୀ ବାମେ ସଂହରି ।
ଅଭୟେ ଭୁବନେ ଅଣାକାର ସ୍ଥାନେ ତ୍ରିପୁରାରିଙ୍କି ସୁମରି ॥
ଥଏ କରି ମନ ସ୍ଥୁଳ ବ୍ରହ୍ମ ଶୂନ୍ୟ ଦିଆରେ ଦିଅ ତୁ ଲୟେ ।
ଧରଣୀଧର ଧରିଛନ୍ତି ସଂସାର ଲଗାଅ ତହିଁକି ଲୟେ ॥
ପାତାଳ ପୁରରେ ଅନନ୍ତ ଶିରରେ ବିଶ୍ରାମିଛନ୍ତି ପରମ ।
ଫଣି ପରେ ମଣି ବହୁଅଛି ପୁଣି ଭାସି ଭେଦେ ତ୍ରିଭୁବନ ॥
ମହାମାୟା ତହିଁ ଶକ୍ତି ଛନ୍ତି ହୋଇଁ ଅନନ୍ତ ପୁଚ୍ଛରେ ଛନ୍ତି ।
ଯୋଗୀଙ୍କ ନିଗମ ତହିଁରେ ଲଗାଇଁ ଲାଗି ବିଲଗେ ଅଛନ୍ତି ॥
ବସି ବିଶ୍ୱେଶ୍ୱର ତହିଁକି ଭାବନ୍ତେ ଗଙ୍ଗା ହେଲେଣି ଶିରର ।
ଶ୍ରୀୟା କାନ୍ତ ଶିବ ଦର୍ଶନ କରନ୍ତେ ଶୟଳେ ସୁରୁଣା ଜଳ ॥
ହଁ କ୍ଷଉଁ ସିନା ସେ ଅଙ୍ଗେ ନିର୍ଣ୍ଣୟ ହାସ୍ୟ ନ କରିଣ ବୁଝ ।
ଶିଶୁ ଅନନ୍ତ ଭାବନା ଏହି ସିନା ଏକାକ୍ଷରକୁ ସମଜ ॥

# ନବମ ଅଧ୍ୟାୟ

ସିଦ୍ଧିରସ୍ତୁ ଅ ଆ ଇ ଈ ଉ ଊ ଋ ୠ ଌ ୡ ଏ ଐ ଓ ଔ ଅଂ ଅଃ ।
କ ଖ ଗ ଘ ଙ ଚ ଛ ଜ ଝ ଞ ଟ ଠ ଡ ଢ ଣ ତ ଥ ଦ ଧ ନ ପ ଫ ବ ଭ ॥
ମ ଯ ର ଳ ବ ଶ ଷ ସ ହ କ୍ଷ
ବାରମାତ୍ରା ଘେନି ବୈକୁଣ୍ଠ ବିଧିରେ କହ ॥
ସିଦ୍ଧିରସ୍ତୁ ସୀମା ଶ୍ରୀବଡ଼ ଦେଉଳଠାରୁ ଭୋଗଘର ଯାଏ ।
ଅ ଆ ଇ ଈ ଉ ଊ ଯାହାକୁ ବୋଲି ସେ ଅଟେ ପାଚେରୀ ବେଢ଼ାଏ ॥
ଋ ୠ ଌ ୡ ଏ ଐ ଓ ଔ ବୋଲି ଯା ଚାରିଗୋଟି ସ୍ୱର ଜାଣ ।
ଅଂ ଅଃ ବୋଲି କରି ଯାହାକୁଟି ଅଟାଳିର ଅଧିଷ୍ଠାନ ॥
କ ଖ ଗ ଙ ଙ ଯାହାକୁ ସେ ବୋଲି ଅଟଇ କଳପ ବଟ ।
ଚ ଛ ଜ ଝ ଞ ଯେହାକୁ ଜାଣ ସେ ବାଇଶପାବଚ୍ଛ ଘାଟ ॥
ଟ ଠ ଡ ଢ ଣ ଏହାକୁ ଜାଣ ସେ ଚକ୍ରପତାକା ପ୍ରମାଣ ।
ତ ଥ ଦ ଧ ନ ପରେ ଦେଖ ସେ ଫୁରୁଣା ଏ ତ୍ରିଭୁବନ ॥
ବ ଭ ମ ଯ ଯାହାକୁ ବୋଲି ସେ ବଡ଼ଦାଣ୍ଡ ନନ୍ଦିଘୋଷ ।
ର ଳ ବୋଲି ଅକ୍ଷରଟି ଯାହା ସିଂହଦ୍ୱାରର ବିଳାସ ॥
ବ ଶ ବୋଲିଣ ଯାହାକୁ ବୋଲି ସେ ଦାରୁବ୍ରହ୍ମ ତିନିରୂପ ।
ଷ ସ ହ କ୍ଷ ଏହାକୁ ଜାଣ ସେ ଗୁଣ୍ଡିଚା ବାହୁଡ଼ା ସୁଖ ॥
ପଞ୍ଚାଶ ଅକ୍ଷର ଚଉବନପୁର ମୁକ୍ତମଣ୍ଡପ ସ୍ଥାନ ।
ସେଠା ବିଦ୍ୱଜନ ବିଦ୍ୟାକୁ ପ୍ରଚ୍ଛିନ ସ୍ୱୟଂବିଷ୍ଣୁ ନିରଞ୍ଜନ ॥
ମୋ ଛାର ବ୍ୟତ୍ରେ ମୁଁ କାହୁଁ ଯା ଜାଣନ୍ତି ବିବିଧ ଚନ୍ଦ ପ୍ରସଙ୍ଗ ।
ବିରଞ୍ଚି ଯେ ତାତ ପ୍ରଭୁ ଜଗନ୍ନାଥ ପ୍ରସନ୍ନ ହେଲେ ମୋ ଅଙ୍ଗ ॥
ମନ୍ତ୍ର ଯନ୍ତ୍ର ତନ୍ତ୍ର କିଛି ନ ଜାଣଇଁ ଭଜନକୁ ଅଭାର୍ଜନ ।
ମୋତେ ତ ଯେ କଥା ଅସମ୍ଭବ ବ୍ୟଥା ତୁଚ୍ଛାକୁ କିମ୍ପା ଏ ମାନ ॥
ଯୋଗୀମାନେ ଯାକୁ ଜାଗିଲେ ନ ପାନ୍ତି ଶେଷ ଲେଶ ନାହିଁ ଯାର ।
ଯୋଗୀଙ୍କ ନିଗମ ଅଯୋଗ୍ୟରେ ଶ୍ରମ କିମ୍ପା ଏମନ୍ତ ବିଚାର ॥
ମୁଁ ଯେ ମୂଢ଼ଜନ ଦରପଣୀ ସ୍ଥାନ ଛତିଆ ଗ୍ରାମେ ନିବାସ ।
ବାଳକାଳୁଁ ମୁଁ ଯେ ଅନ୍ୟ ନ ଜାଣଇଁ ସ୍ୱାମୀ ମୋର ହୃଷୀକେଶ ॥
ଜାତିରେ ବିନ୍ଧାଣୀ ଲୌହକାର ପୁଣି ବିପ୍ର ବୈଷ୍ଣବ ଆଜ୍ଞା ପାଇଁ ।

ସ୍ମରଣାରେ କରି ଭାଷାବନ୍ଧେ ହରି ଜିହ୍ୱାରେ ଦେଉଥାନ୍ତି କହି ॥
ବିନ୍ଧାଣୀ କୁଳେ ମୋହର ଜନ୍ମ ସିନା ଆଶ୍ରା ଚାଷୀ ପାଞ୍ଚଘର ।
ବିଦ୍ୟା ବରତନ ଆଣି ପୋଷି ପ୍ରାଣ ବୁଲୁଥାଇ ସର୍ବଦ୍ୱାର ॥
ଅପାର ମହିମା ଅଶେଷକୁ ସୀମା ଅଟନ୍ତି ଯେ ସାଧୁ ସନ୍ଥ ।
ବନ ଚଇତନେ ଏକାକ୍ଷର ସ୍ଥାନେ ଭେଟିଲେ ଶିଶୁ ଅନନ୍ତ ॥

## ଦଶମ ଅଧ୍ୟାୟ

ଗରୁଡ଼େ ବୁଝାବନ୍ତି ଶେଷଦେବ । ଶ୍ରୀହରି ଆଗେ କହନ୍ତି ପ୍ରସ୍ତାବ ॥
କଳିକାଳ କଲୁଷ କଥାମାନ । ହଳୀ କହନ୍ତି ହରି ତୁମ୍ଭେ ଶୁଣ ॥
ମତ୍ସ୍ୟ ଯେବେ ହେଲୁ ଜଗୁସୋଦର । ମୁଛ କରିଥିଲୁ ନାସିକା ଦ୍ୱାର ॥
କୂର୍ମ ଯେବେ ହେଲୁ ନୀଳାଦ୍ରିପତି । ମୋତେ ଅସ୍ଥି କରି ବହିଲୁ ପୃଥ୍ୱୀ ॥
ବରାହ ରୂପ ହୋଇଲୁ ଅନନ୍ତ । ମୋତେ ପରା ତହିଁ କରିଛ ଦନ୍ତ ॥
ନୃସିଂହ ରୂପ ଧଇଲୁ ଗୋସାଇଁ । ନୟନ ପରା କରିଥିଲ ତହିଁ ॥
ବାମନ ରୂପ ହେଲୁ ଆଦିକନ୍ଦ । ତୁ ତହିଁ ବ୍ରାହ୍ମଣ ମୁଁ ତହିଁ ବେଦ ॥
ପରଶୁରାମ ଅବତାର କାଳେ । ମୁଁ ହେଲି ପଦେ ତୋ ଶରୀରବଳେ ॥
ତୁ ପରା ହେଲୁ ରାମଚନ୍ଦ୍ର ମୂର୍ତ୍ତି । ମୋତେ ରଖିଲୁ ଲକ୍ଷ୍ମଣ ସଙ୍ଗତି ॥
କାହ୍ନା ଅବତାର ହୋଇଲୁ କୃଷ୍ଣ । ମୋତେ ପରା ତହିଁ କଲୁ ତୁ ଭୀଷ୍ମ ॥
ବଉଦା ବୋଲି ନୀଳଗିରି ସ୍ଥାନ । ବଳିଆ ବୋଲି ଦେଇଅଛ ନାମ ॥
କଳଙ୍କି ରୂପ ତୋ ମଧ୍ୟକୁ ଧର । ଚରଣେ କିଣା ଖଣ୍ଡିଆ ପାମର ॥
ଯେତେ ରୂପେ ତୋତେ ଜଗୁଜୀବନା । ଜାଣୁ ତ କରିଛି ଯେତେ ପ୍ରାର୍ଥନା ॥
ଏମନ୍ତେ କହନ୍ତେ ରଙ୍ଗାଅଧର । ମୃଦୁହାସ କଲେ ନୀଳାଦ୍ରିବର ॥
ଚରଣକୁ ଯେ ଚିତ୍ତେ ଚିନ୍ତୁଥାଇ । ମଉନ ହୋଇଲେ ନୀଳାଦ୍ରିସାଇଁ ॥
ବଳଦେବଙ୍କର କନିଷ୍ଠ ଭାଇ । ସେ ମୋତେ କହନ୍ତି ପ୍ରସନ୍ନ ହୋଇ ॥
ସେ ସିନା କହନ୍ତି ଭକ୍ତଙ୍କ ଗୁଣ । ସବୁକାଳେ ସେ ଭକ୍ତ ପରାୟଣ ॥
ନଥିଲା ଥିଲା ପରିଯନ୍ତେ ତହିଁ । ଭକ୍ତରୁଁ ତାର ଅନ୍ୟୋଅନ୍ୟ କାହିଁ ॥
କଳିଯୁଗେ ଉଦେ କଳପବଟ । ଦେବାସୁର ନରେ କରନ୍ତି ନଟ ॥
ସର୍ବଠାରେ ପୂରି ବ୍ରହ୍ମ ପ୍ରକାଶ । ପରମ ଯୋଗୀ ପୁରାଣ ପୁରୁଷ ॥
ହରିହରଙ୍କର ହୋଇଲେ କଳି । କେ ପାରୁ ସଂସାରକୁ ଯେ ସମ୍ଭାଳି ॥

କଳି ହେଲେ ମଳି ହେବ ବିନାଶ । ମହିମା ପରେ ରହିଥିବ ଯଶ ॥
ଗୁଣ ଗାଉଥିବେ ମୁଁ କାର ବହି । ମହିମା ବୋଲି ନ ଜାଣିବେ କେହି ॥
ଏମନ୍ତେ ମନ୍ଦର ହେବ ପ୍ରକାଶ । କେବଳ ମାତ୍ର ଥିବେ ଯେକା ଦାସ ॥
ଆଉ ମାନ ଯାହା ସଂସାର କରି । ଉଦେ କରାଇବେ ଉଦରେ ଭରି ॥
ଏମନ୍ତେ ଆଣି ନେଉଥାଇ ସିନା । କେ ପୁଣି ଜାଣିବ ଏଡ଼େ ଭାବନା ॥
ଜାଣିତେ କ୍ଷମ ଅଛି କି କାହାର । ଆପେ ଆପଙ୍କୁ ଅତି ଅଗୋଚର ॥
ଅଶେଷ ବ୍ରହ୍ମାଣ୍ଡଙ୍କୁ ଯେହୁ ଜ୍ଞାତା । ଆପେ ଆପଙ୍କୁ ଅସମ୍ଭବ କଥା ॥
ଶ୍ରୀନୀଳାଞ୍ଚଳ କ୍ଷେତ୍ରବରଠାରେ । ରାମ ଗୋବିନ୍ଦଙ୍କ ବଚନ ସ୍ଫୁରେ ॥
ଦୁଇ ଭାଇଙ୍କ ଛନ୍ଦଣି ବନ୍ଦଣି । ଯାମିନୀ ଦାମିନୀ ଏମନ୍ତ ଠାଣି ॥
ଅଚ୍ୟୁତ ଅଚ୍ୟୁତ ସର୍ବେ ବୋଲନ୍ତି । ଅଚ୍ୟୁତ ଦେଖିଲେ ଅଦୃଶ୍ୟ ହୋନ୍ତି ॥
ସେ କି କାହାଙ୍କୁ ଦୃଶ୍ୟ ନା ଅଦୃଶ୍ୟ । ଦାସ ଜନେ ଅନୁମାନଙ୍କୁ ଆସ ॥
ଏଥେ ଯେବେ କାହିଁ ପଡ଼ିବ କଷ୍ଟ । ଆପଙ୍କୁ ଆପେ ଚାହିଁ ହୁଅ ତୋଷ ॥
ଅପୂର୍ବ ଟୀକା ଯେ ଗରୁଡ଼ ଗୀତା । ଶୁଣି ବୁଝିଥିଲେ ଜଗତ ଜିତା ॥
ମୁଁ କାହୁଁ ଜାଣନ୍ତି ଏହି ପ୍ରସଙ୍ଗ । ହୃଦେ ପୂରି ସ୍ଫୁରିଚି ଶିରୀରଙ୍ଗ ॥
ମୁଁ ଯେ ଅଚ୍ୟୁତଙ୍କୁ ଭାବଇ ନିତି । ଯେଉଁ ଅଚ୍ୟୁତ ପଞ୍ଚଭୂତେ ସ୍ଥିତି ॥
ପୃଥ୍ୱୀ ଆପ ତେଜ ବାୟୁ ଆକାଶ । ଅଚ୍ୟୁତ ନାମଟି ଏ ତ୍ରୟୋଦଶ ॥
ବଟପ୍ରଟ ବୋଲି ଯେବଣ ସ୍ଥାନ । ବଟ ବିନୋଦୀ ଯହିଁରେ ଆସନ ॥
ସେହି ସ୍ଥାନଙ୍କୁ ଧାଇଣ ଶଙ୍କର । ଗମିଲେ ନାହିଁ ପାତିଛନ୍ତି ଶିର ॥
ବାସୁଦେବ ମୂର୍ତ୍ତି ଅଟନ୍ତି ସେହି · । ବିଶ୍ୱନାଥ ଶ୍ରୀନିବାସ କୁହାଇ ॥
ଦଶ ଅବତାର ଯହିଁକି ଲୋକ । କେ ଜାଣିବେ ବିବେକ ଅବିବେକ ॥
କୂଳରେ ସିନା ମୁହିଁ କାରିଗର । ହରି ସନ୍ଥ ପାଦେ ନିତ୍ୟେ କିଙ୍କର ॥
ହରି ଯେଣୁ ଭାବେ ନୀଳାଦ୍ରୀଶ୍ୱର । ହୃଦେ ଭଣିଲେ ନୀଳଗିରିବର ॥

## ଏକାଦଶ ଅଧ୍ୟାୟ

ତୋହ ମନେ ତୁହି ବୋଲାଉ ବଡ଼ । ମୋହ ବିଚାରଙ୍କୁ ତୁ ଅତି ମୂଢ଼ ॥
ତୁ-କାହୁଁ ଜାଣିବୁ ତୋହରି ଭାବ । ବ୍ରହ୍ମା ଶଙ୍କରେ ଯେ ଅଟେ ଦୁର୍ଲଭ ॥
ଶୟଳ ସୌନକ ଯେ ଅଗୋଚର । ତୁ ତହିଁକି ଅଟୁ କେତେ ମାତର ॥
ଲକ୍ଷ୍ମୀ ସରସ୍ୱତୀ ଯହିଁ ତୋ ଦାସୀ । ଏମାନେ ଯହିଁ ନ ପାରନ୍ତି ପଶି ॥

 

ଯାହା ନ ଚିହ୍ନି ଚନ୍ଦ୍ର ଦିବାକର । ଭ୍ରମନ୍ତି ନାହିଁ ଟିକାଏ ଅସର ॥
ତୁ ଅବା ତହିଁକି କେଉଁ ଭାର୍ଜନ । ତୋତେ ଅଗୋଚର ତୋହରି ନାମ ॥
ଏଡ଼େ ସୁଖୀ ତୁହି ଯେତିକି ଦୁଃଖୀ । ଯାଉ ମୋ ଜୀବନ ଏହା ନ ଦେଖି ॥
ତୋହ ବେଦନା କେ ଜାଣିବ ନାଥ । ତୋ ତହୁଁ ନାହିଁ ଆଉ ଅରକ୍ଷିତ ॥
ଲୁଚି ହୋଇଁ ଯାଇଁ ଜଗୁଜୀବନ । ଛାର ଜୀବନକୁ କିମ୍ପା ନ ଘେନ ॥
ମୋ ଦୁଃଖେ ବିଚାର ନଥିଲା କିଛି । ତୋ ଦୁଃଖେ ମରଇ ହୋ ଶିରୀବଚ୍ଛି ॥
କର୍ମର କର୍ମ ତୁ ହୋ ନିରଞ୍ଜନ । ତୋତେ କିମ୍ପା ହେଲା ଏତିକି ଭ୍ରମ ॥
ତୋହୋ ସୁଖ ତୋତେ ହେଲା ସଙ୍କଟ । ସଙ୍କଟେଇଁ ତୋର ସୁଖା ସମ୍ପୁଟ ॥
ଜୀବର ଜୀବନ ଅଟୁ ହୋ ବାବୁ । ଜେ ତୋତେ ଆସିବ ତାହା କରିବୁ ॥
ଅର୍ଜିତ ଅଛୁ କେହି ନାହିଁ ତୋର । ବିଚାରି ଯେ ହେବ ତାହା ଆଚର ॥
ତୁ ସିନା ଅଟୁ ଅପୂର୍ବ ବିନ୍ଧାଣୀ । ନିର୍ମାଣୁଣ ଥାଉ ଜାଣି ନ ଜାଣି ॥
ବିଚାରି ଯେ ହେବ ତାହା ଆଚର । ମାରି ଜୀଆଅ ହୋ କମଳାବର ॥
ନର୍କରେ ପଡ଼ି ଘାର୍ଣ୍ଣି ହେଲି ମୁହିଁ । କି ହେବ ଆଉ ପ୍ରଭୁ ପଣ ଥାଇଁ ॥
ପୁରୁଷ ଗୋଟାଏ ଯେତେ ଭରସା । ଶାଢ଼ି ପହୁଡ଼ି କଲା ଯେତେ ଯଶା ॥
ଶାଢ଼ି ପହୁଡ଼ି ପିନ୍ଧିଲାକ ଚୁଡ଼ି । ସବୁରି ଘର ନିଷ୍ଠେ କଲା ବୁଡ଼ି ॥
ଏଡ଼େ ଭବିଷ୍ୟ କାହିଁ ଅଛି ଶୁଣା । ନାକେ ନାକଚଣା ଭୁବନ ଜିଣା ॥
ଜୁଡ଼ା ବାନ୍ଧିଥାଇ ଅପୂର୍ବ ଖୋଷା । ବ୍ରହ୍ମା ଶିବ ଢ଼ଳି ପଡ଼ିବେ ରସା ॥
ଦୁଇ ବେଢ଼ା ପନ୍ଧେ ସର୍ବ ଘୋଡ଼ାଇ । ଈଷିତ ଚାହାଣୀ ଜଗତ ମୋହି ॥
ତାଡ଼ ମୁଦି ନାଇ ଖଞ୍ଜିଲା ବଳା । ଦେଖି ଦେହ ଥରୁ କେଉଁ ଅବଳା ॥
ପୁରୁଷ ହଟିଆ ଏଡ଼େ ମୋହନ । ଘେନଇଁ ଜୀବନ ଦେଖଇ ଥନ ॥
ଜାନୁ ଦେଖାଇ ପିନ୍ଧିଥାଇ ବାସ । କେଉଁ ରାଜ୍ୟେ ଅଛି ଯେତେ ଭବିଷ ॥
ପଞ୍ଝୁପନ୍ତି କରି ଗୁନ୍ଥଇ ମାଳା । ଯତନେ ପୂରୋଇ ଆପଣା ଗଳା ॥
ନାରୀ ବୋଲି କରି ଯାହାକୁ କହି । ପୁରୁଷୋତ୍ତମେ ଅଛି ଗୋପ୍ୟ ହୋଇ ॥
କାମେନୀ ବୋଲି ଯା ସେ ଅଟେ କାମ । କିଞ୍ଚିତ ହାସ୍ୟରେ ମୋହଇ ବାମ ॥
ପୁରୁଷ ବୋଲି ଯାହାକୁଟି କହି । ସାକ୍ଷାତେ ପରମ ଲକ୍ଷ୍ମୀ ଅଟଇ ॥
ଲକ୍ଷ୍ମୀ ନାରାୟଣଙ୍କର ଯେ ଖେଳ । ଏହି ଭାବଲୀଳା ଯେ ଆଖଣ୍ଡଳ ॥
କ୍ଲୀଂ ବୀଜଟି ହୋଇଛି କାମେନୀ । ହ୍ଲୀଂଟି ତହି ଉଦଯୋଗ ଘେନି ॥
ଶ୍ରୀଁଟି ତହିଁ ଶାରଦା ସାରସୀ । ସ୍ତିରୀ ପୁରୁଷ ଏଣୁ ଅଣବଂଶୀ ॥
ହରେ ରାମ ମନ୍ତ୍ର ଅଟଇ ସାର । ସ୍ତିରୀ ପୁରୁଷ ନିର୍ବନ୍ଧ ବିଚାର ॥

ଏହିଠାରେଟି ଏକାକ୍ଷର ସ୍ଥିତ । ଜାଣନ୍ତି ଶିବ ଧ୍ୟାୟେ ଅଷ୍ଟନେତ୍ର ॥
ସେହି ଅଷ୍ଟନେତ୍ର ଅବନାସାର । ପର ରଜଟି ପୃଥ୍ୱୀର ବିଚାର ॥
ଶୂନ୍ୟ ଶୟଳଟି ଅଟଇ ସେହି । ସଣବଦ ବୋଲି ଭାବନା ବହି ॥
ଏଥୁଟି କାମେନୀ ଯେ ହୋମ କୁଣ୍ଡ । ସ୍ୱାହା ଶ୍ରୁବ ଘୃତ ଓଁକାରେ ତେଣ୍ଡ ॥
ଏମନ୍ତେ ଯେବେ ଆତ୍ମା ହୋମ କରି । ଜଗନ୍ନାଥେ କିଛି ହୁଅନ୍ତି ବାରି ॥
ବାରି ଭାରିଯାର ଶ୍ରୀ ବାସୁଦେବ । ତା ତହୁଁ ଅନ୍ୟ ଆଉ ନ ଜାଣିବ ॥
ଏମନ୍ତେ ମନ୍ତ୍ରକୁ ଦେଖିବ ଘର । ଯନ୍ତ୍ରଇଟି ଅଟେ ଯମ ମନ୍ଦିର ॥
ସେ ବାଟେ ସାଧେ ଶୁଦ୍ଧେ ଯେବେ ଚାଲି । ତେବେ ଯମକୁ ପକାଇବ ପେଲି ॥
ଯମନ ଜଞ୍ଜାଳଇଟି କବାଟ । ଆଡିଆଇଁ ଦେଖିଲେ ଦିଶେ ବାଟ ॥
ସେ ବାଟେ ସତ ଅଟେ ଏକାକ୍ଷର । ଯନ୍ତ୍ର ମନ୍ତ୍ରେ ଥୋଇଁ ତନ୍ତ୍ର ସୁମର ॥
ସ୍ମରଣୁ ସୂର୍ଯ୍ୟ ହୋଇବ ପ୍ରକାଶ । ତିମିରି ତୁଟିଲେ ସକଳ ଦୃଶ୍ୟ ॥
ଦିବସେ ଉଦୟେ ହୋଇବ ତାରା । କର୍ଣ୍ଣିକାକେଶ୍ୱରେ ସେ ଗୋରୀଗୋରା ॥
ଏହା ଭାବୁଥିଲେ ଅନନ୍ତ ଶିଶୁ । ମୋ ମନ ତହିଁରେ ଶରଣ ପଶୁ ॥

## ଦ୍ୱାଦଶ ଅଧ୍ୟାୟ

ଏହି ଭାବେଟି ଯାତ୍ରା ଅନକୂଳ । ଶୁଭ ମଙ୍ଗଳ ନୀଳାଦ୍ରି ଦେଉଳ ॥
ଗୁଣ୍ଡିଚା ବାହୁଡ଼ା ଯାତ୍ରା ଆଚରି । ଭିତରେ ବିଜୟେ ଶ୍ରୀରାମ ହରି ॥
ନଣନ୍ଦ ଭାଉଜଙ୍କର ଯେ ନଟ । ଲୋକହସା କଥା ପଡ଼େ କବାଟ ॥
ପଦ୍ମାଳୟା ତହିଁ କରନ୍ତି ଗୋଳ । ଅଣସୂତ୍ରରେ ରାଧାକୃଷ୍ଣ ମେଳ ॥
ଶୁଣ ସୁଜନେ ଦିବ୍ୟରସ ବାଣୀ । ରସିଲେ ତରନ୍ତି ଭାବୁକ ପ୍ରାଣୀ ॥
ଶ୍ରୀ ନୀଳଗିରି ଶ୍ରୀୟାଦେବୀ କାନ୍ତ । ଭିଆଇ ଅଛନ୍ତି ଅପୂର୍ବଜାତ ॥
କମଳାଙ୍କୁ କହନ୍ତି ତାଙ୍କ ଦାସ । ଶୁଣ ଗୋ ମାତ ଅପୂର୍ବ ରହସ ॥
ଗୋବିନ୍ଦ ଭିଆଁଇ ଅଛନ୍ତି ଯାହା । କହନ୍ତି କିଛି ତୁମ୍ଭେ ହେଲେ ସାହା ॥
ନୀଳାଦ୍ରି ଗୁଣ୍ଡିଚା ଯାତ୍ରା ଯେ କଲେ । ଚଉଦ ଭୁବନେ ବରଣ ଦେଲେ ॥
ଇଛାହା ହେଲା ସବୁଙ୍କରି ଚିତ୍ତ । ଆସି ପୂରିଛନ୍ତି ତୁମ୍ଭରି କ୍ଷେତ୍ର ॥
ଯେ ଅବା ଅଇଲେ ସେ ତ ଅଇଲେ । ନଇଲା ଲୋକଙ୍କ ମନ ଆଣିଲେ ॥
ସବୁ ଆଣି ଶଙ୍ଖେ ପୂରୋଇଛନ୍ତି । ଉଲଟ ପାଲଟ ଯାତ୍ରା କରନ୍ତି ॥
ନେଇଣ ତୁମ୍ଭେ ଯଉତୁକ ରଥ । ଉଦେ କରାଇ ଅଛନ୍ତି ଅନନ୍ତ ॥

ଏକ ରଥର ଗୁଣ ହେଲା ତିନି । ଚାହିଁଣ ଚକିତ ହୋୟେ ଅବନୀ ॥
ପାତାଳ ଘେନି ଚଳେ ଯେଉଁ ରଥ । ତାଳଧ୍ୱଜ ତା ବୋଲନ୍ତି ଜଗତ ॥
ବିଜୟା ରଥ ଚଳେ ସ୍ୱର୍ଗ ଘେନି । ସେବା କରନ୍ତି ସର୍ବ ସୁର ମୁନି ॥
ନୀଳାଦ୍ରିସିଂହ ବିଜୟେଟି ଯହିଁ । ମର୍ତ୍ତ୍ୟପୁର ବୋଲି ତାହାକୁ କହି ॥
ପଞ୍ଚଶାଖା ଘେନି ପୁର ବେହାର । ତ୍ରିୟ ପଞ୍ଚକୁ ହୋଇଲା ପନ୍ଦର ॥
ବିଷ୍ଣୁ ଘେନି ସିନା ଏ ପଞ୍ଚଭୂତ । ଷୋଳ ନାହାକାରେ ଏ ସମ୍ପୂର୍ଣ୍ଣ ରଥ ॥
ଆଦିରଥେ ବିଜୟେ ଯୋଗାରୂଢ଼ । ଦେବାସୁରେ ଯେତ ଅତ୍ୟନ୍ତ ଗୂଢ଼ ॥
ନନ୍ଦିଘୋଷେ ବିଜୟେ ବାସୁଦେବ । ତାଳଧ୍ୱଜରେ ରେବତୀ ବଲ୍ଲଭ ॥
କେଉଁ ନିମନ୍ତ୍ରଣ ତୁମ୍ଭର ହେଲା । ଅପୂର୍ବ ବେଭାର ଶ୍ରୀହରି କଲା ॥
ସର୍ବ ଭୂତଙ୍କୁ ବସାଇଣ ରଥେ । ଚନ୍ଦ୍ର ଚନ୍ଦନ ଲିପୁଥାଇ ହସ୍ତେ ॥
ଆପଣେ ଅନେକ ବିଞ୍ଚେ ଚାମର । ସେବକ ପ୍ରାୟେ ହୋୟେ ପଟୁଆର ॥
ଆବର ପ୍ରପଞ୍ଚ କଥା କରନ୍ତି । ଛନ୍ଦା ବନ୍ଧା ହୋଇ ପଡ଼ିଣ ଥାନ୍ତି ॥
ଆପଣେ ହରି ଧରନ୍ତି ଦଉଡ଼ି । ଏକା ଗୋଟାର୍କ ଯେଡ଼େ ତୁଣ୍ଡ ରଡ଼ି ॥
ଅପୂର୍ବ ପକ୍ୱଫଳ ଭୋଗମାନ । ଭୁଞ୍ଜାନ୍ତି ଶ୍ରୀହରି ସନ୍ତୋଷ ମନ ॥
ସର୍ବ ଭୂତଙ୍କୁ ଦିଅ କରି ସ୍ଥାପି । ଦେଖାଇ ଶ୍ରୀହରି ଆପେ ଭୁଞ୍ଜନ୍ତି ॥
ସୁଖେ ଅପୂର୍ବ ଭୁଞ୍ଜି ଭୋଗମାନ । ନୃତ୍ୟେ ଗଡ଼ିପଡ଼ି କରେ ରୋଦନ ॥
ତୀର୍ଥ ମାନଙ୍କେ କରିଆସେ ସ୍ନାନ । ଦଣ୍ଡବତ କରେ ଭୂତ ଆଗେଣ ॥
ଏହି କଥା ମୋତେ ଲାଗିଲା ଭୀତି । କାହାକୁ ହୁଅଇ ଯେତେ ବିନୋତି ॥
ତୁମ୍ଭମନେ ତୁମ୍ଭେ ବିଚାର ଯେହା । ଛାଡ଼ିଗଲେ କି ମୋତେ ଚଉବାହା ॥
ତୁମ୍ଭଙ୍କୁ ଘେନି ଖେଳୁଛନ୍ତି ଖେଳ । ଦୁହିଁଙ୍କର ବାଣୀ ଅପୂର୍ବ ହେଳ ॥
ବରି ଆଣିଣ ନାଗ ନର ସୁର । ରଥେ ବସାଇ ପୂଜଇ ଅପାର ॥
ଯାତ୍ରା ଭିଆଇଣ ନୀଳାଦ୍ରିବ୍ରହ୍ମ । ନିର୍ମାଣିଛନ୍ତି ଚିତ୍ରଗତି କର୍ମ ॥
ପାଳଦଉଡ଼ି ଲୁଚାଏ ଗୁଡ଼ାଇ । ବଡ଼ ଦାଣ୍ଡରେ ପଡ଼ିଥାନ୍ତି ଶୋଇ ॥
ମଲି ମଲି ବୋଲି ଛାଡ଼ନ୍ତି ଡାକ । ବିକଳ ପାଇ ଛାଡ଼ନ୍ତି ମୋ ବାପ ॥
ଚିରା ବସନ ଖଣ୍ଡିମାନ ପାଡି । ମୂର୍ଦ୍ଧ୍ନି ଶିଖାରେ ଅଗ୍ନି ସଞ୍ଚାରି ॥
ତୀର୍ଥ ବାଟକୁ ଚାହିଁଥାନ୍ତି ବସି । ସବୁ ତୀର୍ଥ ବଡ଼ଦାଣ୍ଡ ଆକର୍ଷି ॥
କଡ଼ା ଗଣ୍ଡା ବୋଡ଼ି ବିରି ଚାଉଳ । କାଙ୍ଗାଳ ରୂପେ ଘେନେ ଆଦିମୂଳ ॥
ସିନ୍ଧୁକୁମାରୀ ସେବଇ ଯାହାକୁ । ଯେଡ଼େ ହନ୍ତ ସନ୍ତ କେ କଲା ତାଙ୍କୁ ॥
ତ୍ରିଲୋକେ ଛନ୍ତିଟି ଦାରୁ ଭିତରେ । ଆପଣେ ହରି ଖେଳନ୍ତି ସଂସାରେ ॥

ଦାରୁ ଭିତରେ ଅଛି ଯେତେ କର୍ମ । ତେଣୁ ଦେବତା ନାମ ଦାରୁବ୍ରହ୍ମ ॥
ସୁଜନ ଜନେ ହରିକଥା ଶୁଣ । ହରି ହରି ବୋଲି ମନରେ ଗୁଣ ॥
ହରିଟି ହରତା ହରି କରତା । ହରିହୁଁ କାହିଁ ଅଛି ପିତାମାତା ॥
ହରିଟି ଏ ସର୍ବ ଅଛନ୍ତି ହୋଇଁ । ହରିଙ୍କି ଧରିବାକୁ ପୁଣି କାହିଁ ॥
ସଙ୍କଟ କାଳେ ଭଜିବ ଶ୍ରୀହରି । ହରି ସୁମରି ସର୍ବ ଦୁଃଖୁ ତରି ॥
ଯାହା ଭିଆଇଁ ଥିବେ ନୀଳାମ୍ବର । ଅନ୍ୟକରୁ କେ ତା ସୃଷ୍ଟି ଭିତର ॥
ମୁହିଁ ହୀନ ଜନ ଜାତି କମାର । କରୁଣାନିଧିଙ୍କ ଭରସା ମୋର ॥
ନ ଜାଣେ ଜ୍ଞାନ ମୋ ନାହିଁ ବିବେକ । ବାତୁଳ ବୋଲି ହସୁଥାନ୍ତି ଲୋକ ॥
ଆଶା ଭରସା ଯେଣେ ମୋର କାହିଁ । ହେଲେ ହେବେ ସିନା ନୀଳାଦ୍ରିସାଇଁ ॥
ମୁଁ ପରା ପାପୀ ବାତୁଳ ଅଜ୍ଞାନ । ଥିଲା ପ୍ରାୟେ ତ ନ ଲାଗଇ ମନ ॥
କୁଟୁମ୍ବ ଆବୋରି ଫନ୍ଦା ହରାଇ । ହରି ହରି ବୋଲି ଚନ୍ତା କରଇ ॥
ତହିଁକି ହରି ନ ଚାହାନ୍ତି ମୋତେ । ଅପଖ୍ୟାତି କଥା କହନ୍ତି କେତେ ॥
ସର୍ବଘଟେ ଘନଶ୍ୟାମ ଯେ ରହି । ଯେତେ କହୁଛନ୍ତି ମୁଁ ତା ଜାଣଇ ॥
ମାନବ ହୋଇ କେ ସମ୍ଭାଳୁ ଦେହ । ନରହରି କେତେ ନକହି କୁହ ॥
ଆପେ ନ ମାରି ମାରୁଥାଅ ଆପେ । କେ ଜାଣିପାରୁ ଯେଡେ ମହାଗୋପ୍ୟେ ॥
ମୁଁ ମୂଢ଼ ବାତୁଳ ହୋଇଣ ମତ୍ତା । ଅର୍ଜିଲଇଁ ଯେତେ ଅପ୍ରାଧ କଥା ॥
କାମାନଳେ ହେଲି ବିଟପ ପ୍ରାୟେ । ବେଶ୍ୟା ସଙ୍ଗତେ ବଢ଼ିଲା ମୋ କାୟେ ॥
ଶାଳଗ୍ରାମ ଶିଳା ପ୍ରତିମା ମାନ । ବିପ୍ର ବୈଷ୍ଣବ ବିଷ୍ଣୁ ପରାୟଣ ॥
ତୁଳସୀ ଚଉରା ଶମ୍ଭୁ ଶକତି । ଏତେ ସ୍ଥାନରେ ହେଲି ପାଦଘାତି ॥
ମୋହର ପ୍ରକୃତି ପ୍ରପଞ୍ଚ ଚିତ୍ତ । ଅଶେଷ ପାପେ ବିଶ୍ରାମିବା ସତ ॥
ଯେଡ଼େ ପାଷାଣ୍ଡ ବ୍ରତିବାର ନୋହୁ । ଶ୍ରୀଖଣ୍ଡା ପ୍ରହାରେ ମୋ ପ୍ରାଣ ଯାଉ ॥
କି ବୋଲି କାହା ଆଗେ ହେବି ଉଭା । ପ୍ରକାଶ ନୋହିଲେ ପ୍ରଭୁଙ୍କ ପ୍ରଭା ॥
ହୀନ ହରି ଯେବେ ମଳାଟି ନାଥ । ଭାବରେ ଭଣିଲେ ଶିଶୁ ଅନନ୍ତ ॥

## ତ୍ରୟୋଦଶ ଅଧ୍ୟାୟ

ଭକ୍ତ ଜଣାଇଁ ଶେଷଙ୍କୁ ଯେ ଦୁଃଖ । ପାରିଲେ ପ୍ରଭୁ ଭକ୍ତ ବୃନ୍ଦ ରଖ ॥
ନମଇଁ ଲକ୍ଷ୍ମୀ ନାରାୟଣ ହରେ । ଦୁରିତ ନାଶନ କମଳାବରେ ॥
ଶିଶୁ ଅନନ୍ତଙ୍କୁ କରନ୍ତି ସ୍ତବ । ଯେଣୁ ଯେ ଅଚ୍ୟୁତ ତାଙ୍କ ବଲ୍ଲଭ ॥
ତେଣୁ ସେ କହନ୍ତି ସଂସାର ଗତି । ଯେଣୁ ତାଙ୍କ ସ୍ୱାମୀ ଶିରୀ ଅଚ୍ୟୁତି ॥

ଶିଶୁଟି ସନ୍ତତି ଅଚ୍ୟୁତ ମାତା । କେ ପୁଣି ଜାଣି ପାରିବ ଯେ କଥା ॥
ମୁଁ ଯହିଁ ତହିଁକି କଲି ଯେ ଆଶ । ତହୁଁଟି ପାଇଲି ଅନେକ ତ୍ରାସ ॥
ଅତ୍ରାହି ଭଞ୍ଜନ ଯୁଗଳ ମୂର୍ତ୍ତି । ନମଇ ପ୍ରଭୁ ଅନନ୍ତ ମୂରତି ॥
ଅଶେଷ ବ୍ରହ୍ମାଣ୍ଡେ ଅଚ୍ୟୁତ ରହିଁ । ଶେଷ କରିବାକୁ ଭାର୍ଜନ କାହିଁ ॥
ସକଳ ଘଟେ ପ୍ରାଣ ରୂପେ ଥାଉ । ତୋହୋ ନଥିଲା ସ୍ଥାନ ନାହିଁ ଆଉ ॥
ତୁହିଟି କର୍ମରୂପି ନାରାୟଣ । ତୁହି ଅକାରଣ ତୁହି କାରଣ ॥
ତୁହି ଗର୍ଭେ ଭରି ଜାତ କରାଉ । ବିଧାତା ରୂପେ କର୍ମ ଲେଖି ଯାଉ ॥
କାହାକୁ ସୁଫଳ କାହିଁ ବିଫଳ । କର୍ମ ରୂପେ ଦଣ୍ଡୁ ତୁ ଆଦିମୂଳ ॥
ତୁମ୍ଭଙ୍କୁ ଶରଣ ହେ ତ୍ରିପୁରାରି । ଅକାଳ କୁହୁଡ଼ି ହେଲା ତିମିର ॥
ଅନ୍ଧାରେ ଆଉ ନ ଦିଶଇ ବାଟ । ମନ ଛନ ଛନ ତନୁ ଉଚ୍ଚାଟ ॥
ଅତ୍ୟନ୍ତ କଷ୍ଟ କରିଛ ମୁରାରି । ବାଳକ କାଳୁଂ ହେଲି ଯେତେ ସରି ॥
ଚଉଦ ବରଷ ଠାରୁ ବିପତ୍ତି । ପଚିଶ ଯାୟେ ଦିନୁ ଦିନୁ ଅତି ॥
ଏତେ କଥା ଯେବେ ଥିଲା ତୋମନେ । ଛନ୍ଦୁଥିଲୁ କିମ୍ପା ମାୟା ବିପୁନ୍ୟେ ॥
ବେଳକ ଦିଅ ପାଣି ପେଜ କରି । ଦୋସଡ଼ା ନାହିଁ ଖଣ୍ଡିଏ ଲେଙ୍ଗୁଡ଼ି ॥
ଘର ଝଲାପଲା ଫନ୍ଦା ନରାଶ । ପଲମ ଅନ୍ତେ ଖପରାରେ ଗ୍ରାସ ॥
ଗୁଡ଼ିଆ ବାସୁସାହୁ ଘରୁ ଆଣି । ଗୁଡ଼ ଗୋଳି ଖଣ୍ଡି କରେ ତୋରାଣି ॥
ପାଇବା ବେଳକୁ ସେ ଇଡ଼ିଯାଇ । ଅଞ୍ଜୋଇବାକୁ ଠେକି ନ ମିଳଇ ॥
ଶୟନ କରିବାକୁ ନାହିଁ ହେଁସ । ଛିଣ୍ଡାକତରା ଅନ୍ଧାରରେ ଗ୍ରାସ ॥
ଦେହ ନୁଖୁରା ଖଅର ଉଡୁଛି । ବଳିତା ଦୀପ ତଇଳ କାହିଛି ॥
ଚୋକାଇ କୁଲା ଗଉଣୀ ଯେ ନାହିଁ । ଧନ ଦ୍ରବ୍ୟ ନାହିଁ କି ହେବ ଥାଇ ॥
ତମାଖୁ ନ ଥାଇଁ ଧୂଆଁ ଖାଇବା । ଲୁଣ ନଥାଇଁ ଯା ପେଜ ପିଇବା ॥
ଖଣ୍ଡିକ ଲେଙ୍ଗୁଣୀ ଚାରିମାସେଣ । ରଜକ ଘରେ ନଗଲା ମଳିଣ ॥
ମୁଁ ସିନା ଏହା କର୍ମକୁ ମଣଇଁ । ଯୁବତୀ ହୋଇ ଏହା ବୁଝିବ କାହିଁ ॥
ଜୀବନେ କିମ୍ପାଇଁ ସଞ୍ଚିତ କରି । ଏତେ କଷଣକୁ ଦେଲ ଶ୍ରୀହରି ॥
ଭଜନ ସ୍ମରଣ ନ ଜାଣେ କିଛି । ନ ଜାଣି ଶ୍ରୀପାଦେ ଆଶ୍ରେ କରିଛି ॥
କେବଳ ତୁମ୍ଭେ ସକଳ ଭରସା । ଆଶ୍ରେ କରିଛି ଏହୁ ଅପ୍ରୋଜନ ॥
ଦୁର୍ଗତିରେ ପଡ଼ି ଯାଉଛି ନାଶ । ଦୟା କରି ରଖିବା ହୃଷୀକେଶ ॥
ଶାଖା ସୋଦର କେହି ନାହିଁ ମୋତେ । ଆଶ୍ରେ କରିଛି ନାଥ ପାଦାଗ୍ରତେ ॥
କେବଳ ତୁମ୍ଭେ ସକଳ ଭରସା । ଖଣ୍ଡବା ଦଣ୍ଡବା ତୁମ୍ଭରି ଆଶା ॥

 

ଭଏଣୀ ଗୋଟିଯେ ଥିଲା ସଙ୍ଗତେ । ସେ ପୁଣି ଗଲା ଅନ୍ନକ୍ଷୋଭ ଅନ୍ତେ ॥
କାଳରୁଂ ବୃତି ପାଇଲାକ ଅନ୍ନ । ଅନ୍ନ ପାଇଣ ଲଭିଲା ସମନ ॥
ମାସେ ପାଞ୍ଚଦିନ ପାତକ ଭୁଞ୍ଜି । ପାଦ ପଦ୍ମରେ ହୋଇଲା ନିମଜ୍ଜି ॥
ଏଗାର ବରଷେ ସ୍ତିରୀ ଅଙ୍ଗରେ । ଜ୍ଞାନ ସପଳିଲା ତାହା ହୃଦରେ ॥
ପ୍ରାଣ ପ୍ରୟାଣ କାଳେ ବୋଲି ରାମ । ସେ ପୁଣି ଲଭିଲା ମୁକତି କର୍ମ ॥
ତହୁଁ ଦିନାକେତେ ଉଦାସ ହୋଇ । ଆତ୍ମା ବିକଳେ ଚିନ୍ତା କରୁଥାଇ ॥
ବିହି ସର୍ଜନା ପ୍ରିୟା ଯେ ମୋହୋର । ସେ ପୁଣି ବ୍ରତିଥିଲା ପିତାଘର ॥
ସେ ପୁଣି ବେନି ବରଷରେ ଆସି । ଦୁଃଖ ସୁଖକୁ ହୋଇଛି ମୁହାଁସି ॥
ଅନ୍ନ ଭୁଞ୍ଜିବାକୁ ମୋର ଘରଣୀ । ପାତ୍ର ନ ଦେଖିଣ କରେ ଭାଳେଣି ॥
ଯୋଗୀ ଥାଳରେ ଭୁଞ୍ଜିଣ ସେ ଅନ୍ନ । ବୋଲଇ ସତ୍ୟ ଏ ବିହି ଲେଖନ ॥
ପୁଣି ଆସି ମୋତେ କରିଛି ଯାହା । ଏହା ଜାଣନ୍ତି ନୀଳଗିରି ନାହା ॥
ଏବେ କୃପାକର ଗ୍ୟାନର ଭାବ । ଗରୁଡ଼େ ଯାହା ଆଜ୍ଞା ଦେଲେ ଶିବ ॥
ବାସ୍ତମାନଙ୍କର ଭାବନା ଗତି । ଗରୁଡ଼େ କହନ୍ତି ରେବତୀ ପତି ॥
ତଳେଟି ଶୟଳ ଉପରେ ଜଳ । ପ୍ରାଣୀମାନଙ୍କର ପୃଥ୍ୱୀରେ ଖେଳ ॥
ଚାରିଖାନିଙ୍କର ଖେଳ ଏ ବୃତ୍ତି । ରବି ପରେଟି ସବୁଙ୍କର ସ୍ଥିତି ॥
ରବି ରାମ ନାମ ଅଟଇ ଜାଣ । ରାମ ନାମଇ ସକଳ ଧାରଣ ॥
ରାମ ନାମକୁ ଯେ ପାରଇ ଧରି । ରାତ୍ର ଦିବସ ଅହର୍ନିଶି ସ୍ମରି ॥
ଚିତ୍ତକୁ ନ ଦେବ ଏ ଗ୍ରାମଗୀତେ । ଚିନ୍ତା କରୁଥିବ ଅଗ୍ରାମ ଗତେ ॥
ଭାଗବତକୁ ଶ୍ରଦ୍ଧାରଖି ମନ । ଭାବୁଥିବ ସଦା ମଧୁସୂଦନ ॥
ଏହି ଭାବଇ ଆତ୍ମ ଚରଣକୁ । ଯହିଁ ତହିଁ ସେ ଜାଣଇ ଆତ୍ମକୁ ॥
ଆତ୍ମକୁ ଦେଖଇ ତା ନିଜ ଦେହ । ମୁଁ ବୋଲିକରି ଯାହାକୁ କୁହ ॥
ମୁଁଟି ମୁକୁନ୍ଦ ସର୍ବ ସ୍ଥାନରେ । ମୋତେ ନ ଜାଣି ଯା ମୁକାର ଧରେ ॥
ମୋତେ ଅନ୍ୟ ମଣି ମୁକାର ବହେ । କହୁଁ କହୁଁ ସେ ମହାଭାରା ବହେ ॥
ତହୁଁ ସେ ସ୍ଥାନକୁ କରଇ ଭଗ୍ନ । ମୁହିଁ ଶୋଧି ଦେଇଁ ହୁଅଇ ମଗ୍ନ ॥
ମିଛେ ଦେଖାଇ ତାକୁ ଯେତେ ଫଳ । ସେ ମଣେ ଅମୃତ ମୁ ଦେଇଁ କାଳ ॥
ଧନ ଦାରା ସୁତ ଗୃହ ସମ୍ପଦ । ଏ ସର୍ବ ବିଷ ନାମ ଏକା ଗଦ ॥
ଏ ସର୍ବ ପାଇଁ ପ୍ରାଣୀ ହୋନ୍ତି ମତା । ଭୋଗ୍ୟ ନ କରନ୍ତି ଅମୃତ କଥା ॥
ଏଣୁ ସିନା ପ୍ରାଣୀ ଅଟଇ ଦୁଃଖୀ । କାଳବେଳ କଥା କେଝାରୁ ଲେଖି ॥
ଏଣୁ ସୁଜନେ ହୋ ଚାହିଁ ତଳକୁ । ତଳଯେ ନକଳ ପାଦପଦ୍ମକୁ ॥

ପାଦ ପଦ୍ମଟି ଅଟଇ ଯେ ଗଣ୍ଡ । ନବୀନ ଜଳେ ନୋହିବ ପ୍ରଚଣ୍ଡ ॥
ନାମ ମାତ୍ରକେ ପାରି ଭବ ଜଳ । ନିରନ୍ତେ ଚିନ୍ତ ନୀଳାଦ୍ରି ଦେଉଳ ॥
ଯାଇଁ ଆସି ଜନେ ଯାହା ଦେଖିଛ । ଶୁଣିଲା ଲୋକେ ମନକୁ ଡାରୁଛ ॥
ତେବେ ଭବଜଳ ଯେ ଘୋର ପାଣି । ରାମ ନାମ ଚିନ୍ତାକୁ ଆଗୁଆଣି ॥
ଗରୁଡ଼କୁ କହିଛନ୍ତି ଅନନ୍ତ । ଶିଶୁ ବିଶ୍ୱାସେ କଲେ ତହିଁ ତତ୍ତ୍ୱ ॥
ମୁଁ ଯେ ତହିଁକି ଲଗାଇଲି ଧ୍ୟାନ । ଯେଣୁ ମୋର ସ୍ୱାମୀ ଜଗୁଜୀବନ ॥
ସେହି ପିତା ସେହି ଭ୍ରାତା ବାନ୍ଧବ । ତା' ବିନୁ ଅଛି କେ ପାରିକରିବ ॥
ନମସ୍ତେ ସୁଦରଶନ ହେ ସନ୍ଥ । ତବ ପାଦରୁଁଟି ସର୍ବ ମୁକତ ॥
ଗରୁଡ଼ ଶିଶୁ ଧାଇଛନ୍ତି ଯହିଁ । ହୀନ ହରି ଭଣେ ଶରଣ ତହିଁ ॥

## ଚତୁର୍ଦ୍ଦଶ ଅଧ୍ୟାୟ

ନମଇଁ ରେବତୀରମଣ ଗୋସାଇଁ ଅଖିଳ ତ୍ରୈଲୋକ୍ୟ ନାହା ।
ନୀଳଗିରି ଘର କେମନ୍ତ ପ୍ରକାର ପ୍ରଭୁ କହୁ କି ନା ତାହା ॥
କାହା ପିତୃଗଣ କାହିଁଛନ୍ତି ପୁଣ ଏହା କହିଦେବ ମୋତେ ।
କେଉଁଠାରେ ପୁଣ କେମନ୍ତ ହୋଇଣ ରହିଛନ୍ତି ଜଗନ୍ନାଥେ ॥
ହସିଣ କହନ୍ତି ରେବତୀର ପତି ଶୁଣସି ହୋ ପକ୍ଷୀବର ।
ଅଶେଷ ରୂପାଧି ନିହାରି ଯା ଦେଖୁ ସେଟି ନାରାୟଣ ଘର ॥
ଥାବର ଜଙ୍ଗମ ଏ କୀଟ ପତଙ୍ଗ ଅଶେଷାଦି ବୋଲି ଯାହା ।
ସର୍ବଠାରେ ସତ ପୁରୁଷ ରହିଛି ଏ ଯେଉଁ ଦେବାଧି ନାହା ॥
କୀଟୁଂ ବ୍ରହ୍ମଯାଏ ସେହିଟି ହୋଇଛି ଜୀବ ଶକ୍ତି ଗୁଣ ଘେନି ।
ଯେଝାକୁ ଯେଝା ପ୍ରକାର ବହିଛନ୍ତି କିଛି ଜାଣନ୍ତି ଯା ମୁନି ॥
ଦଂଶିପୋକଠାରୁ ସିଂହ ପରିଯନ୍ତେ କୀଟୁଂ ବ୍ରହ୍ମ ଯାଏ ଜନ୍ତୁ ।
ଯେତେ ଦୂର ଯାଏ ଅନାଇ ପାରୁ ତୁ ସବୁଟି ଅନନ୍ତ ହେତୁ ॥
ପୋତକ ମାଛି ଯେ କେତେକ ମାତର ତାହା ଶ୍ୱରୀ ଅବା କେତେ ।
ମେରୁ ପ୍ରାୟେ ହୋଇଁ ମୁକୁନ୍ଦ ଅଛନ୍ତି ଜଳ ପ୍ରାୟେ ହୋନ୍ତି ଗୁପ୍ତେ ॥
ଜଗତେ ଯା ବାଞ୍ଛି ବୋଲ ନର୍କ ମାଛି ସେହି ପରା ହୃଷୀକେଶ ।
କେବଳ ଅଦଣ୍ଡେ ଦଣ୍ଡ ସିନା ଯେତେ ସେ ତ ନିର୍ଲେପେ ପୁରୁଷ ॥
କଳ୍ପଣାରୁ ଯାର ବ୍ରହ୍ମାଣ୍ଡ ସମ୍ଭୂତ କାହାକୁ କରିବ ପର ।

ପର ବୋଲି ପ୍ରାଣୀ ଯାହାକୁ ବାରନ୍ତି ସେଟି ତାଙ୍କ ଦେହ ଘର ॥
ତେଣୁ ନାନା ଯୋନି ଭ୍ରମନ୍ତି ଯେ ପ୍ରାଣୀ ସଙ୍ଗତେ ଥାନ୍ତି ଅଚ୍ୟୁତ ।
ଦୁଃଖ ସଙ୍ଗେ ସୁଖ ଗୋଡ଼ାଇ ଥିବାର କୋଟି କୋଟି ଯୁଗେ ସତ ॥
ସୁଖ ବୋଲି କରି କେବଣ କଥା ସେ ଯା ଯେବେ ପ୍ରାଣୀ ଚିହ୍ନନ୍ତା ।
ତେବେ କିମ୍ପା ମହାଯୋଗ ଦୁଃଖ ସହି ନାନା ଯୋନି ଭ୍ରମୁଥାନ୍ତା ॥
ନାନା ଯୋନି ଭ୍ରମି ଜୀବ ପଥ ଶ୍ରମି ପୁଣ୍ୟ ନ ଚିହ୍ନି ହୋଇଲା ।
ପୁଣ୍ୟ ପରଚେ ପରମାନନ୍ଦ ପୁଣି ତେଣୁ ତା ସଙ୍ଗେ ରହିଲା ॥
ଏହି ନ ଚିହ୍ନିଲା ସେହି ନ ଚିହ୍ନିଲେ ଆତଯାତ ହେବ କାହା ।
ଏଣୁ ସିନା ଭାବଗ୍ରାହୀ ଭକ୍ତବନ୍ଧୁ ରୂପମାନଙ୍କରେ ସାହା ॥
ଏ ନ ଜାଣେ ବୋଲି ସେ ଜାଣି ରହିଛି ଅଶେଷ ସ୍ଥାନ ଆବୋରି ।
ପ୍ରିୟ ପୁରୁଷ ମହାବାହୁ ଦେହରେ ପ୍ରାଣୀ ନ ପାରିଲେ ବାରି ॥
ଏଣୁ କର୍ମପରେ କର୍ମ ଅଧିକାର ନ କରନ୍ତି ବାସୁଦେବ ।
କର୍ମ ଯେଣେ ଯାଇ କୃଷ୍ଣ ତେଣେ ଥାଇ ଏ ବିଧି ଦେବ ବିଚାର ॥
ପ୍ରାଣୀ ଯା ଅର୍ଜିବ ନିଶ୍ଚେ ତା ଭୁଞ୍ଜିବ ଏ ସର୍ବ ଈଶ୍ୱର ଗତି ।
ଆନ ନ କରିବେ ସଙ୍ଗତରେ ଥିବେ ଦେଖିପାଇଁ ଶିରୀପତି ॥
କଷ୍ଟ ଭିଆଇବେ କଷ୍ଟକୁ ସହିବେ ପୁଣି ତା ମୋଚନ କରି ।
ମଳିଣ ମନ୍ଦିର ନିର୍ମଳ କରିବେ ପଖାଳି ଚରଣ ବାରି ॥
ତୁମ୍ଭେ ତା ନ ଜାଣ ସନ୍ନିପାତ ମଣ ପାପ ଯହିଁରେ ନିପାତ ।
ନିସତକୁ ନେଇଁ ସତରେ ରଖନ୍ତି ବାତ କରନ୍ତି ନିର୍ବାତ ॥
ଭବଜନ୍ତୁ ଦୁଃଖ ଦେଖି ପଦ୍ମମୁଖ କରୁଣା ହୃଦ ବହନ୍ତି ।
କାରୁଣ୍ୟ ବାରିଧି କୃପାକୁ ଆଚରି ଶ୍ରୀପାଦ ବଢ଼ାଇ ଦ୍ୟନ୍ତି ॥
ତେତେବେଳେ ସିନା ତିମିରି ତୁଟଇ ଦିନକର ହୋଏ ଦୃଶ୍ୟ ।
ଦେହର ଯେ ଗୁଣ ପ୍ରକୃତି ଲକ୍ଷଣ ସମୂଳେ ହୋନ୍ତି ପାଉଁଶ ॥
ସେହି ପାଉଁଶଟି ଅଙ୍ଗରେ ଭୂଷଣ ହୁଅଇ ପରମ ଯୋଗୀ ।
ଏଥିପାଇଁ ଦେବ ନାଶନ ବଟକୁ ସଦାଶିବ ଥାନ୍ତି ଜଗି ॥
ଦେବ ବୋଲିକରି ଯାହାକୁ ଜାଣିମା ଦେହ ବୋଲିଟି ତାହାକୁ ।
ସେ ସର୍ବ ବିଷ୍ଣୁ ମାୟାରେ ଆତଯାତ ନ ଜାଣନ୍ତି ଯେଣୁ ତାଙ୍କୁ ॥
ଦେହରୁଟି ମାୟା ପ୍ରକାଶିଛି କାୟା ସେ ସିନା ଅଟଇ ମିଛ ।
ଏ ଦୁହେଁ ସିନା ହରିହର ଅଟନ୍ତି ବିଷ୍ଣୁ ଯେଥେ କାହିଁ ବାଞ୍ଛ ॥

ତୁ ଯେ ଗୋତ୍ର ଗତି ପୁଚ୍ଛିଲୁ ଯେ·ଚିନ୍ତି ସବୁରି ଇଷ୍ଟ ଈଶ୍ୱର ।
ହର ନ ପୂଜି ହରେ କେ ଜନ୍ତୁମାନ ଗୋତ୍ରରେ ତାହାଙ୍କୁ ବାର ।।
ଏକଥାଇଁ ପୁଣ ଅଟଇ ପ୍ରମାଣ ଏ ଜୀବ ଯେଣୁ ଭ୍ରମଣି ।
ଅଶେଷ ଜନ୍ମ ଲଭିଣ ଭ୍ରମାଭ୍ରମ ଏହି ମର୍ତ୍ତପୁରେ ପୁଣି ।।
ସାକ୍ଷାତେ ଜାଣିଲେ ତା ଆଣି ପୂଜିଲେ ଯେହା ନ ଚିହ୍ନିଲେ ନର ।
ଦୁର୍ଲଭ ଜନ୍ମ ପାଇ କିମ୍ବା ଆମ୍ଭର ଇତର ଜନ୍ତୁ ଗୋଚର ।।
ଆମ୍ଭ ପିତୃଗଣ ପୁଣ୍ୟ ନ ପାଇଣ ହୋଇଲେ ଯେବେ ଯେମନ୍ତ ।
କି ହୋଇବ ପୁଣି ଆମ୍ଭ ଦେହ ଠାଣି ଜନ୍ମ ହୋଇବାର ବ୍ୟର୍ଥ ।।
ତେଜିବା ସଂସାର ପୂଜିବା ପୟର ପିତୃ ନିସ୍ତାରଣ ହେଉ ।
ଆମ୍ଭ ପ୍ରାଣଇ ପରିତ୍ରାଣ ହୋଇବ କୃପାକଲେ ମହାବାହୁ ।।
ଏ କଥା ଯେ ଚିହ୍ନି ପୂର୍ବେ ଭାଗିରଥୀ ସୁପୁତ୍ର ଅଟନ୍ତି ସିନା ।
ତେଜିଲେ ବିଭୂତି ପୁତ୍ର କଷ୍ଟ·ଚିନ୍ତି ମହିମାମେରୁ ଭଜନା ।।
ଭଜିଲେ ପୟର ପାଇଲେ ନିସ୍ତାର ପିତୃ ଆରାଧି ଚରଣେ ।
ଅଶେଷ ଯୁଗେ ଯଶ କୀର୍ତ୍ତି ରୁହାଇଁ ଅଭୟ ପଦ୍ମଚରଣେ ।।
ଏହା ନ ଚିହ୍ନିଣ କି ସୁଖ ଲଭିଣ ପ୍ରାଣୀ ବୋଲାବନ୍ତି ବଡ଼ ।
ପିତୃ ପଶୁପତି ନ ଜାଣନ୍ତି ମତି ତାଙ୍କ ତହୁଁ ଏ ତ ମୂଢ଼ ।।
ଏଣ ସୁଜ୍ଞଜନେ ସନ୍ଥ ସାଧୁମାନେ ଭଜନ୍ତି ଜାଣି ନ ଜାଣି ।
ଆପେ ନିସ୍ତାର ହୋଇଣ ସେ ତାରନ୍ତି ଅନେକ ପୁରୁଷ ପୁଣି ।।
ଏଣୁଟି ସନ୍ତତି ଅତି ଶୁଭ ଗତି ପିତୃ ଆରାଧନା ଅର୍ଥେ ।
ହୋଇଲେ ସୁପୁତ୍ର ପାଳଇ ପବିତ୍ର ନ ପାଳିଲେ ସେ ବିଅର୍ଥେ ।।
ସୁତ ଦାରା କାହା ହିତ ପ୍ରାୟେ ମଣ ସେଟି ସର୍ବ ପ୍ରାଣହାରୀ ।
ହିତ ପ୍ରାଣକୁ ଅତି ସତ୍ୟ ଜାଣିମ ଆହାର ପ୍ରାଣ ଭଗାରି ।।
ପ୍ରଥମ ଗ୍ରାସକ ଜୀବକୁ ସୁଗତି ଆଉ ସର୍ବ ନାଶ ପଥ ।
ହିତ ଶୀତଳ ଯାହାକୁ ପୁଣ ମଣ ସେହିଟି କରଇ ଚ୍ୟୁତ ।।
ଏହି ପ୍ରାୟେ ଗତି ପୁତ୍ର କୃଷେହିଁଟି ବାଳକାଳୁ ଭକ୍ତି ହେଲେ ।
ନୋହିଲେ ଆୟତି ଅତି ମନ୍ଦ ସେଟି ନିଶ୍ଚୟ ମାରିଣ ମଲେ ।।
ଏଣୁ ଯେ ସଂସାରେ କାହିଁ ନାହିଁ ସୁଖ ଶ୍ରୀକୃଷ୍ଣ ଚରଣ ବିନୁ ।
ଏଣୁ ସୁଜ୍ଞଜନେ ସନ୍ଥ ସାଧୁମାନେ କ୍ଷଣେ ନ ଛାଡ଼ିବ ମନୁ ।।
ମହା ପରମ ଦୟାଳୁ ପୂର୍ଣ୍ଣାନନ୍ଦ ଆବୋରି ଅଛିଟି ସର୍ବ ।

ଏଣୁ ସର୍ବଜନେ ଆନନ୍ଦର ମନେ ଚିନ୍ତୁଥିବ ବାସୁଦେବ ॥
ନ ଜାଣି ସମ୍ପଦ ଅର୍ଥ ବଡ଼ପଣ ଭାର ପରେ ସିନା ଭାର ।
ଗିରି ଉପରେ ଉଠିଲା ପ୍ରାଣୀ ଦେଖେ ଚାରିଖାନିଙ୍କି ଇତର ॥
ଚାରିଖାନି ବୋଲି ଯାହାକୁ ବୋଲି ସେ ଅଟଇଟି ବସୁନ୍ଧରୀ ।
ଯାହା ଉପରେ ବସାଇଛି ସୂକ୍ଷ୍ମରେ ଅଶେଷ କନ୍ଦର ବାରି ॥
ଏହା ନ ବିଚାରି କୁଧରକୁ ଧରି ପାଷାଣ ଧରିଛ ମୁଣ୍ଡେ ।
ବହି ଯେଡ଼େ ଭାର ବିଷମ ମନ୍ଦର ହରି ବୋଲୁଥିବ ତୁଣ୍ଡେ ॥
ଗରବ ଗଞ୍ଜନ ନାମ ସତ ପୁଣ ଉଡ଼ଇ ନୀଳଚକର ।
ପ୍ରାଣୀ ଯେଣେ ଯାଇ କାଳ ତେଣେ ଥାଇ ଯେ କଥା ଅଟେ ନିକର ॥
ତୁ ଯେ ପଚାରିଲୁ ନୀଳଗିରି ଘର ଅଶେଷ ମହିଁମା ସ୍ଥାନ ।
ମୁଖେ ତା ବଖାଣି ସଞ୍ଚପି କହିଣ କେ ଅଛି ପୁଣି ଭାଜନ ॥
ଯହିଁ ଷୋଳକଳା ମହିଁମା ପ୍ରକାଶ ମୁକତ ମଣ୍ଡପ ଥାନ ।
ଦ୍ୱାଦଶ କଳାରେ ଆତଯାତ ସିନା ଲୀଳା ଖେଳାର ବିଧାନ ॥
ତେଣୁ ଷୋଳସ୍ତମ୍ଭ ମଣ୍ଡପରେ ସିନା ବତିଶ ପାଖୁଡ଼ା ଘେନି ।
ଯେଉଁ ମଣ୍ଡପର ମହିଁମା ବିଚାର ନ ପାବନ୍ତି ସୁରମୁନି ॥
ଶୁଣ ହୋ ଗରୁଡ଼ କହିବା ସୁଦୃଢ଼ ସତ୍ୟ ସଞ୍ଚାର ବିଚାର ।
ଆମ୍ଭକୁ ବହୁ କି ଆମ୍ଭେ ତୋତେ ବହୁ ମନକୁ ତୋର ବିଚାର ॥
ତୁ ଜାଣୁ ମୁଁ ସିନା ପ୍ରଭୁଙ୍କୁ ବହିଛି ବୁଲଇ ସଚରାଚର ।
ପ୍ରଭୁ ସିନା ପୁଣି ସତ୍ୟ ଯେହ୍ନୁ ବାଣୀ ବହିଆନ୍ତି ତୋର ଭାର ॥
ଚଉଦ ଭୁବନେ ଫେରାଇ ଆଣନ୍ତି ତୋତେ ଈଷିତରେ ପୁଣି ।
ସାକ୍ଷୀ ହୋଇଁ ସିନା ପୃଷ୍ଠରେ ତୋହର ବସିଥାନ୍ତି ଚକ୍ରପାଣି ॥
ତୁ ତାହା ନ ଜାଣୁ ଏମନ୍ତ ଯେ ମଣୁ ମୁ ସେ ବହିଛି ଏହାକୁ ।
ଅଶେଷ ବ୍ରହ୍ମାଣ୍ଡଧରଙ୍କୁ ଧରିଛି କେ ବହିପାରେ ତାହାକୁ ॥
ତାକୁ କେ ଧରିବ ସେ ସର୍ବ ଧରିଛି ଏହା ନ ଜାଣନ୍ତି ଜନ ।
ଏ କଥା ନ ଚିହ୍ନି ମୋହେ ଅନୁମାନି ହେଉଥାନ୍ତି ବଡ଼ସାନ ॥
ରାତ୍ର ଯାହା ଚିହ୍ନ ସେହି ସିନା ଦିନ ସାକ୍ଷାତେ କଳା ପ୍ରକାଶ ।
ଦିନଟିଏ ଧଳା ଅଶେଷର ଲୀଳା ସେ ସିନା ଅଟଇ ଶେଷ ॥
ଯାମିନୀ ଅନଳ ଦାମିନୀଟି ଜଳ ଏ ଦୁହେଁ ଯହିଁ ବିଞ୍ଚଣା ।
ନୁହଇ ଯେ ବହ୍ନି ତୁଟଇ ଯାମିନୀ କେ ପାଉ ତହିଁର ଠଣା ॥

ନୁହଇ ଆହାର ତୃଷାକୁଳନୀର କ୍ଷୁଧା ନିବାରଣେ ପଣା ।
ନୁହଇ ଏ ମନ ଯାକୁ ବୋଲୁ ଅନ୍ନ କେମନ୍ତେ ବଳିଷ୍ଠ ଠଣା ।।
ନୁହଇ ଯେ ସ୍ଥିତି ବହେ ଅନୁବୃତ୍ତି କାହିଁ କି ରୂପେ ବିଳାସ ।
ନୋହେ ନିଜ ମୂର୍ତ୍ତି ଧରିଅଛି କ୍ଷିତି ଯା ଧ୍ୟାଇଛି କୃତିବାସ ।।
ପୁଣ୍ୟ କଲା ଲୋକ ପିତୃଗଣ ପୁଣି ଏକେତ ବିଷ୍ଣୁ ସେବକ ।
ପାପୀ ଲୋକଙ୍କର ପିତୃଗଣ ସିନା ସଂସାରେ ଯେହୁ ସେବକ ।।
ଛତିଶା ନିଯୋଗୀ ପୁଣ୍ୟ ସତ୍ତଭାଗୀ ପୁରୁଷୋତ୍ତମେ ସେବକ ।
ନିରବଧି ବିଷ୍ଣୁ ଅଙ୍ଗ ସଙ୍ଗ ହୋନ୍ତି ଚାହୁଁଥାନ୍ତି ପଦ୍ମମୁଖ ।।
ପାପୀ ପିତୃଗଣ ସଂସାରରେ ପୁଣ ହୋଇଛନ୍ତି ଯମଦୂତ ।
ବ୍ୟାଘ୍ର ଛାଗଳ ସର୍ପାଦି ପଶୁମାନ ଆବର ପ୍ରେତାଦି ଭୂତ ।।
ପୁଣ୍ୟ ଶ୍ରୀପୁରୁଷ ଦେଖ ଶୁଭ୍ର ପୁଷ୍ୟ ଆମ୍ଭ ଅଙ୍ଗରେ ଭୂଷଣ ।
ନାନା ଦୁଃଖେ ଯେ ଆମ୍ଭଙ୍କୁ ନ ପାଶୋରେ ଶ୍ରୀଅଙ୍ଗ ଦୟଣା ପୁଣ ।।
ଦରିଦ୍ର ଜନ ଆମ୍ଭ ହୃଦ ଦୟଣା ଏହି ସ୍ୱକାଶୁଂ ଭୂଷଣ ।
ଆମ୍ଭେ ତାହାର ସର୍ବ ଧନ ଅଟୁଟି ସେ ଆମ୍ଭର ନିଜ ପ୍ରାଣ ।।
ତାହା ତହୁଁ ଧନ ଆମ୍ଭଙ୍କୁ ଅପୂର୍ବ ତ୍ରୈଲୋକ୍ୟରେ ଦେଖାନାହିଁ ।
ସେହି ନାନା କଷ୍ଟେ ଆମ୍ଭର ଭାବକୁ ନିରବଧି ଥାଇ ଚାହିଁ ।।
ଧନ ଦାରାସୁତ ସମ୍ପଦ ଆବୋରି ଥାଇ ତ ଆଦି-ଅଠାରେ ।
ତଳଯେ ତଇଳ ଲଗାଇଁ ଛଡ଼ାଯେ ନ ଜାଣନ୍ତି କେ ସଂସାରେ ।।
ସେ ପୁଣି ଯେଣିକି ଛଡ଼ାଇ ଫେରିଲେ ଆୟତ୍ତ ଶ୍ରୀବାସୁଦେବ ।
ଯାକୁ ଆଶ୍ରେ କଲା ସେତ ନିସ୍ତରିଲା ଏ ପୁଣି କିସ କରିବ ।।
ଯେଣୁ ପରିତ୍ରାଣ ନ ଦିଶଇ ପୁଣ ତେଣୁଟି ଭଗତବଂଶୀ ।
ଭଗତ ତା'ର ଗହନା ଗହନଟି କେ ପାରିବ ତହିଁ ପଶି ।।
ଭଗବାନ ସିନା ବଳା ହୋଇଛନ୍ତି ଭଗତଇଟି ଅବଳା ।
ଏହି ଭାବରେଟି ଦେଖ ଯେ ସଂସାରେ ଲାଗିଅଛି ସର୍ବ ଖେଳା ।।
ଅନନ୍ତ ସମାଧୁ ଯୋଗେ ସର୍ବସାଧି ଭାବକୁ ବାନ୍ଧିଛି ଭେଳା ।
କୁଣ୍ଡଳୀ ମଧ୍ୟରେ ଗୋପ୍ୟ ହୋଇଅଛି ସଂପୂର୍ଣ୍ଣ ଅବ୍ୟକ୍ତ କଳା ।।
କଳାରୁ ସିନା ଲୀଳା ଲାଗି ରହିଛି ଏହା ନ ଜାଣନ୍ତି କେହି ।
ତେଣୁ ଏହା ଜାଣ ପଞ୍ଚଭୂତ ପ୍ରାଣ ସର୍ପ ଉଦରେ ଅଛଇ ।।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଚାରିଖାନି ବୋଲି ଯାହା ।

ଏ ସର୍ପ ଜାଣ ତୁ ସର୍ପ ଉଦରରେ ବିଷମୁଣାରେଟି ମାୟା ॥
ତିରଣ ପ୍ରାୟେ ସର୍ପ ଆକୃତି ସିନା ତା ଗର୍ଭେ ଅଶେଷ ସ୍ଥିତି ।
କେତେକେତେ ମେରୁ କେତେ ବା ସାହେର କେ କହିପାରେ ତା ଚିନ୍ତି ॥
ସେହିଟି ଶ୍ରୀପୁରୁଷୋତ୍ତମ ହୋଇଛି ଶ୍ରୀଶଙ୍ଖନାଭି ମଣ୍ଡଳ ।
ଯହିଁରେ ଅଶେଷ ସୁକୃତ ବିକୃତ ବେନିଗୁଣେ ଏକ ଠୁଳ ॥
ତହିଁ ଉପରେ ସୁଦର୍ଶନ ଉଡ଼ଇ ସୂର୍ଯ୍ୟ ବୋଲିଟି ଯାହାକୁ ।
ତାହାର ଯେ ଗତି ଅଶେଷକୁ ଗତି କେହି ନ ଚିହ୍ନିଲେ ତାକୁ ॥
ସେହି ସିନା ବେଳ ସେହି ସିନା ବଳ ବୀର୍ଯ୍ୟଗଁ ଅଟଇ ସେହି ।
ମୁକ୍ତି ବୋଲି ଯାହା ବେଦ ବର୍ଣ୍ଣୁଅଛି ତା ବିନୁ କେବା ଅଛଇ ॥
ସେ ସୂର୍ଯ୍ୟ ମନ୍ତ୍ର ଯେ ଷଷ୍ଟକ୍ଷରୀ ଜାଣ ଜଗତେ ହେଲା ପ୍ରକାଶ ।
ତାହାକୁ ଚିହ୍ନି ନିରବଧି ଭଜିଲେ କଲ୍ମଷ ହୋଇବ ନାଶ ॥
ନ କରିବ ହେଳା ପ୍ରଭୁ ଚକାଡ଼ୋଳା ଭଜିବ ସୁତ ସ୍ୱଭାବେ ।
ସୁତ ଦାରା ଧନ ଯେଦ୍ଦେ ସ୍ନେହ ଜାଣ ରଖିବ ତାଙ୍କରି ଭାବେ ॥
ତେବେ ସେ ନିକର ହୋଇବେ ସୋଦର ଏକଥା ଅଟଇ ସତ ।
ତୁମ୍ଭେ ଯେଣେ ଯିବ ସେହି ତେଣେ ଥିବ ନ ଜାଣନ୍ତି ଯା ଜଗତ ॥
ନାସିକା ଅଗ୍ରତେ ନାରାୟଣ ପ୍ରଭୁ ସାକ୍ଷାତେ ଛନ୍ତି ବିଳାସି ।
ନୟନେ ସିନ୍ଧୁଜା ସୁନ୍ଦରୀ ରହିଛି ଯେଉଁଥେ କେ ନ ପାରେ ପଶି ॥
ଶ୍ରବଣ ମୂଳେ ସୁଧାସିନ୍ଧୁ ଉଛୁଳେ ମୁଖେ ଝରଇ ଶ୍ୟଳ ।
ଘଣ୍ଟିକା ଉପରେ ଦେବନାଶନଟି କଣ୍ଠତଟେ ମହାକାଳ ॥
ଆନନ୍ଦେ ସୁଗତି ନିରାକାର ମୂର୍ତ୍ତି ଗରୁଡ଼େ କହିଲେ ପୁଣି ।
କାର୍ପୂଣ୍ୟ ହୋଇଣ ବିନତା ନନ୍ଦନ ଯୋଡ଼ିଲେକ ବେନିପାଣି ॥
କାରୁଣ୍ୟ ବାରାଧି ଅପୂର୍ବ ଯୋଗାଧି ସାକ୍ଷାତେ ଅଣ ଆଶ୍ରମ ।
ମୁଁ କାହୁଁ ଜାଣିମି ତୁମ୍ଭର ମହିମା ବ୍ରହ୍ମପରେ ଅଟ ବ୍ରହ୍ମ ॥
ସେ ଗରୁଡ଼ଠାରେ ଶିଶୁ ଆଶ୍ରେ କରେ ହରି ତହିଁ ଶ୍ରଦ୍ଧାମତି ।
ଅନନ୍ତ ଶିଶୁ ଯେ ଭାବରେ ଭଣିଲେ ଭକତ କଲେ ଅଚ୍ୟୁତି ॥

୩୦

# ବ୍ରହ୍ମନିରୂପଣ ଗୀତା

## ପ୍ରଥମ ଅଧ୍ୟାୟ

ବନ୍ଦଇ ଯେ ଅଣାକାର ଅରୂପ ଶରୀର,
ଅନାମ ଅଦେହ ପ୍ରଭୁ ମହିମାସାଗର ।
ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଅଲେଖ ପୁରୁଷ,
ବ୍ରହ୍ମନିରୂପଣ ଗୀତା କର ମୋତେ ଦୃଶ୍ୟ ।
ଆଜ୍ଞା ହେଲେ ନିଶବଦ ମନ୍ଦିରେ ପଶିବି,
କୁଞ୍ଚିତାଲା ଦିଅ ହସ୍ତେ କବାଟ ଫେଡ଼ିବି ।
ଅଣଶେଷ ମହିଁମାରୁ ଆଣିମଗଁ ଭେଦ,
ବଖାଣିବି ଏ ସଂସାରେ ତୁମ୍ଭରି ସମ୍ବାଦ ।
ଏ କଳିଯୁଗରେ କୁମ୍ଭୀନର୍କେ ପଡ଼ି ଜୀବେ,
ବ୍ରହ୍ମନିରୂପଣ ଗୀତା ଶୁଣିଲେ ତରିବେ ।
ବୁଡ଼ିଗଲା ସତ୍ୟ ଧର୍ମ ହେଲା ଅସମୟ,
କି ପ୍ରକାରେ ପ୍ରାଣୀମାନେ ତରିଯିବେ କହ ।
ଏ ନିମନ୍ତେ ଶ୍ରୀଛାମୁରେ ଲଗାଇଛି ଆଶା,
ଭୀମ ଅରକ୍ଷିତ ଚିତ୍ତେ କରିଛି ଭରସା ।
ଏତେବେଳେ ଏ ବ୍ରହ୍ମାଣ୍ଡେ ନାହିଁ ଆଉ ପୂର୍ଣ୍ଣ,
ମିଥ୍ୟା ପାତକରେ ସବୁ ହୋଇଗଲା ଶୂନ୍ୟ ।
ଏକାକ୍ଷର ବ୍ରହ୍ମ ଉଦେ ହେଲେ ଏ ମଣ୍ଡଳେ,
ଜୀବ ମୁକ୍ତିପଦ ହୋଇ କେହି ନ ଜାଣିଲେ ।
ନିଷ୍କାମ ବ୍ରହ୍ମ ପୁରୁଷ ନାହିଁ ତାଙ୍କ ମାୟା,
ରଜ ବୀର୍ଯ୍ୟ ନାହିଁ ନିର୍ଭା ହୋଇଅଛି କାୟା ।
ଯୋନିରେ ଜନମ ପିଣ୍ଡ ମାନବ ଶକତି,

କରୁଣା ପ୍ରକାଶ କର ଅଭୟ ଅଜ୍ୟୋତି ।
ନିଜ ଶକତି ଆସନେ ବିଜେ କରିଅଛ,
ଅଶେଷ ବ୍ରହ୍ମାଣ୍ଡ କଥା ସମସ୍ତ ଜାଣୁଛ ।
ପେଲି ପଶିବି ବୋଲୁଛି ଅବନା ମନ୍ଦିର,
ଭୋ ପ୍ରଭୁ ଅନାମ ବ୍ରହ୍ମ ମୋତେ କୃପାକର ।
ଭରସା କରିଛି ମୁହିଁ ବ୍ରହ୍ମ ସାଗରକୁ
ନିରନ୍ତରେ ଭୟ କରି ଗୁରୁ ପୟରକୁ ।
ତାଲୁ କର୍ଣ୍ଣ ଚକ୍ଷୁ ଦନ୍ତ ନାସା ଜିହ୍ୱା ନାହିଁ,
ହସ୍ତ ପାଦ ନାହିଁ ମାତ୍ରା ବସାଇବି କାହିଁ ? ।
ଅବ୍ୟକତ ପୁରୁଷ ସେ ନ କହେ ବଚନ,
ଜନ୍ମବନ୍ଧ ନ ଲାଗଇ ନିଷ୍କାମ ନିର୍ଗୁଣ ।
ଏଥୁ ଅନନ୍ତରେ ଶୁଣ ସାଧୁ ସୁଜ୍ଞାନର,
ଶ୍ରୀଗୁରୁଙ୍କୁ ଚାହିଁ ପୃଚ୍ଛା କଲେ ନିରାକାର ।
ସମ ଆସନରେ ବସି ଅମନ ସାଧନେ,
ଅନାଦି ବ୍ରହ୍ମକୁ ଚିନ୍ତା କରି ମନେ ମନେ ।

## ନିରାକାର ଉବାଚ

ନିରାକାର ପ୍ରଣମିଲେ ଶ୍ରୀଗୁରୁଙ୍କ ପାଦ,
ବ୍ରହ୍ମଜ୍ଞାନ ଘଟମଧ୍ୟେ ପଚାରନ୍ତି ଭେଦ
ପାଏ ପଡ଼ି ଉଠି ଶିରେ କରପତ୍ରଯୋଡ଼ି,
ପ୍ରସନ୍ନ ହୋଇଣ ମୋତେ କହ ଭେଦଧାଡ଼ି ।
ଭୋ ଗୁରୁ ଗତି ମୁକତି ଜୀବର କରତା,
ଏ ପିଣ୍ଡ ବ୍ରହ୍ମାଣ୍ଡ ସ୍ୱାମୀ ଆଜ୍ଞାରେ ରଞ୍ଜିତା ।
ଏ ଦେହରେ ଅଣରୂପ ବ୍ରହ୍ମ କାହିଁ ଅଛି,
ସଂଶୟ ଫେଡ଼ିଣ ମୋତେ କହିଦିଅ ବାଛି ।
କି ଅବା ସେ ନଖ ଚକ୍ର ଅଙ୍ଗୁଷ୍ଠିରେ ଅଛି,
ଏ ବେନି ପୟର ଗଣ୍ଠି ଚକ୍ରରେ ଲୁଚିଛି ।
କି ଅବା ସେ ନଖ ଚକ୍ର ଆଣ୍ଠୁ ଚକ୍ର ପରେ,
ଅଣରୂପ ବ୍ରହ୍ମ ଅବା ଲୁଚିଛି ତହିଁରେ ।

କି ଅବା ସେ ଜାନୁଚକ୍ର ଗୁହ୍ୟଚକ୍ର ଦୁଇ,
ଏଥି ଅବା ଅଣରୂପ ବ୍ରହ୍ମ ଅଛି ରହି ।
କି ଅବା ସେ ଲିଙ୍ଗ ଚକ୍ର ନାଭିର ଚକ୍ରରେ,
ଅଣରୂପ ବ୍ରହ୍ମ ଅବା ଅଛନ୍ତି ସେଠାରେ ।
କି ଅବା ସେ ଊର୍ଦ୍ଧ୍ୱଚକ୍ର ହୃଦଚକ୍ରେ ବାସ,
ଏଥି ଅବା ବସିଛନ୍ତି ଅନାଦି ପୁରୁଷ ।
କି ଅବା ସେ ବାହୁଚକ୍ର କଣ୍ଠ ଚକ୍ରେ ଅଛି,
ଅନାଦିତ ବ୍ରହ୍ମ ଅବା ସେଠାରେ ରହିଛି ।
କି ଅବା ସେ ଦନ୍ତଚକ୍ର ଜିହ୍ୱାଚକ୍ରେ ବ୍ରହ୍ମ,
ଗୁପତ ନ କରି ମୋତେ କହ ନିଜ ନାମ ।
କି ଅବା ସେ ନାସାଚକ୍ରେ ତ୍ରିଅଚକ୍ରେ ଠାବ,
ଏଥିର ସନ୍ଦେଶ କଥା କହ ଗୁରୁଦେବ ।
କି ଅବା ଶିଶୁମ୍ନା ଚକ୍ର ସୁଷୁପ୍ତି ଚକ୍ରରେ,
ଅଣନିରୂପଣ ବ୍ରହ୍ମ ଅଛନ୍ତି ସେଠାରେ ।
କି ଅବା ସେ ଭାଲଚକ୍ର କର୍ଣ୍ଣଚକ୍ରେ ଯାଇ,
ଏଥି ଅବା ବିଜେ କରିଛନ୍ତି ମହିମାଇ ।
କି ଅବା ସେ ଶିରଚକ୍ର ବାୟୁଚକ୍ର ସ୍ଥିତି,
ଏଥି ଅବା ବିରାଜିତ ଅରୂପ ମୂରତି ।
ଏ ଶରୀରେ ବାହ୍ୟମତେ ବ୍ରହ୍ମଅଛି କାହିଁ,
ନିର୍ଣ୍ଣୟ କରିଣ ମୋତେ କହିବା ଗୋସାଇଁ ।
ଅଣରୂପ ବୋଲିବାର ରୂପବର୍ଣ୍ଣ କିସ,
ଯେମନ୍ତେ ହୋଇଣ ରୂପ ଥିବ ତ ଅବଶ୍ୟ ।
ଜ୍ଞାନୀଜନମାନେ ଧ୍ୟାନ କରୁଛନ୍ତି ତାଙ୍କୁ,
ଅବଶ୍ୟ ତ ନେତ୍ରେ ଦେଖିଥିବେ ସେ ବ୍ରହ୍ମକୁ ।
ନିଶ୍ଚୟ ସେ ପାଉଛନ୍ତି ସଦଜ୍ଞାନ ଭେଦ,
ଜୀବ ଆତ୍ମା ପଞ୍ଚ ମନ ହେଉଅଛି ବୋଧ ।
ପୂର୍ବର ସୁକୃତ ଥିଲେ ଲଭିବି ଚରଣ,
ଏ ପିଣ୍ଡ ପ୍ରାଣକୁ ମୋର କରିବି କାରଣ ।
ହେତୁ ଚେତା ପାଉଛନ୍ତି କେବଣ ଯୋଗରୁ,
ସଂଶୟ ନ କରି ଫେଡ଼ି କହ ସେ ବ୍ରହ୍ମରୁ ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ନିରାକାର
ଅଣରୂପ ବ୍ରହ୍ମ ଅଣଆକାରେ ବେହାର ।
ତାଳୁକା ଦୁଆର ଶିଖେ ଅଟେ ତାର ବାସ,
ବ୍ରହ୍ମରନ୍ଧ୍ର ଶିଖେ ଛନ୍ତି ଅଲେଖ ପୁରୁଷ ।
ଶିଶୁରନ୍ଧ୍ରେ ରନ୍ଧ୍ର ବାଟ ଅଛି ସେ ଠାବକୁ,
ଆସିବା ଯିବା ହେଉଛି ସକଳ ସ୍ଥାନକୁ ।
ବ୍ରହ୍ମ ଯେଉଁଠାରେ ଅଛି ନିଗମ ଭୁବନ,
ଅନ୍ଧାର ଉଜ୍ଜଳ ନୋହେ ନାହିଁ ରାତ୍ର ଦିନ,
ନିଶବଦ ମନ୍ଦିର ସେ ନାହିଁ ଶବ୍ଦ ଭେଦ
ରଜ ବୀର୍ଯ୍ୟ ନ ଲାଗଇ ନାହିଁ ବିନ୍ଦୁନାଦ ।
ଜଳ ପବନର ତହିଁ ନାହିଁ ଗମାଗମ,
ତେଣୁକରି କହି ତାକୁ ଅଗମ୍ୟ ଦୁର୍ଗମ ।
ସ୍ଥିତି ଉତ୍ପତ୍ତି ପ୍ରଳୟ କ୍ଷୁଧା ତୃଷା ନାହିଁ,
କାମନା କଳ୍ପନା ବାଞ୍ଛା ନ ଥାଇ ସେଠାଇ ।
ଜନ୍ମବନ୍ଧ ନାହିଁ ତହିଁ ନୋହେ ଆତଯାତ
ବଚନ ସମସ୍ୟା ନାହିଁ ଅଟେ ଅବ୍ୟକତ ।
ହାଇ ଛାଇ ନ ଲାଗଇ ନିଦ୍ରା ମଇଥୁନ,
ଦିବସ ରଜନୀ ବାରି ନୋହେ ସେହୁ ସ୍ଥାନ ।
ଅଣରୂପ ରୂପବର୍ଣ୍ଣ ଚିହ୍ନ ନାହିଁ କିଛି,
ଜ୍ୟୋତି ଭିତରେ ଅଜ୍ୟୋତି ଅଚିହ୍ନାରେ ଅଛି ।
ଚନ୍ଦ୍ର ସୂର୍ଯ୍ୟ ନାହିଁ ତହିଁ ଶରଦ ଉଷ୍ମମ,
ହେମ ନ ଭେଦଇ ତାକୁ ଶିଶିର ନସମ ।
ନିର୍ବେଦ ଭୁବନ ସେ ଯେ ନ ବସଇ ବେଦ,
ଅର୍ଥ ନ ଚଳଇ ତହିଁ ନ ଲାଗେ ସମ୍ପାଜ ।
ମନ୍ତ୍ର ଯନ୍ତ୍ର ନାହିଁ ତହିଁ ଔଷଧ୍ୱ ମୌଷଧ୍ୱ,
ଉପାୟ ରଞ୍ଜନା ନାହିଁ ନସ୍ଫୁରଇ ବୁଦ୍ଧି ।
ଅମନ ମନ୍ଦିରେ ସେ ଯେ ନ ଗଳଇ ମନ,
ଗୀତା ଭାଗବତ ନାହିଁ ନାମ ସଂକୀର୍ତ୍ତନ ।

ନୀଚ ଉଚ୍ଚ ନାହିଁ ତହିଁ ବାଛନ୍ଦ ବିକାର,
ସର୍ବକର୍ମ ସମାଚାର ଅଟେ ଅବିକାର ।
ପାପ ପୁଣ୍ୟ ନାହିଁ ତହିଁ ଅପରାଧ ଦୋଷ,
ସକାମୀ ନୁହନ୍ତି ସେ ଯେ ନିଷ୍କାମ ପୁରୁଷ ।
ସ୍ତିରୀ ପୁରୁଷ ନୁହନ୍ତି ନୋହେ ବାଳ ବୃଦ୍ଧ,
ଦୁତି ପାଦ ନ ଚଳଇ ଅଛି ଏକ ପାଦ ।
ମହାଶୂନ୍ୟ ସେ ଶୂନ୍ୟ ଯେ ନିର୍ଗୁଣ ଶରୀର,
ଏକାକ୍ଷର ନ ବସଇ ବସେ ଅଣାକ୍ଷର ।
ଅଣାକ୍ଷର ଅଣମାତ୍ରା ଅଣ ନିଶବଦ,
ଶବଦର ଭେଦ ନାହିଁ ବ୍ରହ୍ମ ନିଜପଦ ।

## ନିରାକାର ଉବାଚ

ନିରାକାର ବୋଲୁଛନ୍ତି ଶୁଣିମା ଗୋସାଇଁ,
କେତେ ଲୋକ ସେ ଠାବକୁ ଗମାଗମ ନାହିଁ ।
ତତ୍ତ୍ୱକରି କେମନ୍ତେ ଜାଣିବା ତା'ର ଆଦ୍ୟ,
ଭେଦାଭେଦ କରି ମୋତେ କହ ନିଶବଦ ।
ତହିଁର ଆସ୍ଥାନ କେତେ ଦୀର୍ଘ ପ୍ରତି ଅଟେ,
ଶ୍ରୀମୁଖରୁ ଶୁଣିଥିବି ବେନିକର୍ଣ୍ଣ ପୁଟେ ।
ଅଣରୂପ ବ୍ରହ୍ମରୂପ ଅବଶ୍ୟ ତା ଥିବ,
ସ୍ୱରୂପ ନ ଥାଇ ଭେଦ କି ପ୍ରକାରେ ହେବ ।
ଅଲେଖ ବୋଲିଣ ସେ ଯେ ବ୍ରହ୍ମ ବୋଲାଇଲା,
ନିରଞ୍ଜନାକୁ ରଞ୍ଜନା କି ପ୍ରକାରେ କଲା ।
ଏଥିର ସନ୍ଦେହ ମୋତେ କହ. ଗୁରୁଦେବ,
ଶ୍ରୀମୁଖରୁ ଶୁଣି ମନ ସଂଶୟ ତୁଟିବ ।
ଏତେ ବୋଲି ନିରାକାର ଶ୍ରୀକର ପ୍ରସାରି,
ପାଦ ଧରି ପଚାରିଲେ ଧୀରେ ଧୀରେ କରି ।
ପ୍ରଳମ୍ବିତ ବିନତି ତ କରି ଶ୍ରୀପୟରେ,
ବେନି ନେତ୍ରୁ ଅଶ୍ରୁଧାର ବହେ ନିରନ୍ତରେ ।

ଶ୍ରୀଗୁରୁ କରତା ଗତି ପତି ପିତା ମାତା,
ତୁମ୍ଭ ବିନା ଏ ଜୀବକୁ କେ କରିବ ଚେତା ।
ଏ ପିଣ୍ଡ ପ୍ରାଣରେ କିଛି ନାହିଁ ନା ସଂଶୟ,
ବ୍ରହ୍ମନିରୂପଣ ଭେଦ ଏ ଦେହରେ କହ ।
ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ନିରାକାର,
ବ୍ରହ୍ମନିରୂପଣ ଭେଦ ଅତି ଅଗୋଚର ।
ଠୂଳ ରୂପୀ ବିଷ୍ଣୁ କି ପାଇବ ଜଣାନନ୍ଦ,
ସାବଧାନ ହୋଇ ତୁ ଗୋ, ଶୁଣ ଆଦିକନ୍ଦ ।
ଶୂନ୍ୟ ହୋଇ ଭୂମିଖନ୍ଦେ କିଛି ଦିନ ଥାଇ,
ପୋଖରୀ ଭିଆଇ ମୃତ୍ତ ହୁଡ଼ା ଟେକି ଦେଇ ।
ହୁଡ଼ାର ଗଭୀରେ ଜଳ ପୂରଇ ବହୁତ,
ଜଳର ଭିତର ମୀନ ଖେଳଇ ଯେମନ୍ତ ।
ମୀନ ଗର୍ଭେ ଯେଉଁ ରୂପେ ଜୀବ ଆତ୍ମା ଅଛି,
ସେହିରୂପେ ଏ ଘଟରେ ବ୍ରହ୍ମଟି ଖେଳୁଛି ।
ପଇଡ଼ ବୀଜକୁ ଭୂମି ମଧ୍ୟରେ ରୋପିଣ,
ବୃକ୍ଷ ଅଙ୍କୁରଇ ତହ ପାହିଁ ଆଭରଣ ।
ଦୀର୍ଘ ପ୍ରତି ଶାଖା ହୋଇ ଧରେ ପତ୍ର ପୁଷ୍ପ,
ପୁଷ୍ପ ତୁଲେ କଢ଼ି ଲାଗି ଫଳ ପରକାଶ ।
ଲତା ଲାଗି କତା ତାର ଖପରରେ ଯୋଡ଼ି,
ଖପରକୁ ଘେନି ରସ ଗୁଦାହିଁ ନ ଛାଡ଼ି ।
ଗୁଦାକୁ ଘେନିଣ ଜଳ ପୂରିଅଛି ତହିଁ,
ଭୂମିରୁ ଆକାଶ ଜଳ ବୃକ୍ଷ ଦେହେ ଯାଇ ।
ଯେସନେକ ପଇଡ଼ ଭିତରେ ଥାଇ ଅମ୍ବୁ,
ସେହିରୂପେ ବହ୍ମଜ୍ଞାନ ଘଟେ ଅଛି ବାବୁ ।
ଦୁର୍ଲ୍ଲଭ ଜନମ ପିଣ୍ଡ ସବୁଠାରୁ ସୁଖ,
ଜନ୍ମ ମରଣଟି ଏ ଦେହକୁ ବଡ଼ ଦୁଃଖ ।
ରୋମମାନ ଅଙ୍କୁରିଛି ଚରମକୁ ଘେନି,
ମୂଳ ମାନଙ୍କରେ ଗୁମ୍ଫା ହେଉଛି ମେଦିନୀ ।
ଚର୍ମଗୋଟି ରୁଧିରକୁ ରଖିଛି ଘୋଡ଼ାଇ,

ଶିରମାନ ଗୁନ୍ଥିଅଛି ସୂତ୍ରରେ ମଡ଼ାଇ ।
ରୁଧିର ପୂରିଛି ତହିଁ ମାଏଁସକୁ ଘେରି,
ଶିରମାନଙ୍କେ ପବନ ଫେରୁଅଛି ଧରି ।
ମାଏଁସ ଲାଗି ରହିଅଛି ଅସ୍ଥିର ଦେହରେ,
ଯତନରେ ଲିପିଅଛି ରଜର ପାକରେ ।
ଅସ୍ଥିର ଭିତରେ ଶିଶୁରନ୍ଧ୍ରେ ବାଟ ଅଛି,
ଅଣରୂପ ପୂର୍ଣ୍ଣ ବ୍ରହ୍ମ ଗୁପତେ ଖେଳୁଛି ।
ଶୁଣିଲୁ କି ନିରାକାର ଶରୀର ବୃତ୍ତାନ୍ତ,
ଅରୂପ ବ୍ରହ୍ମ ଘଟଣା ଭେଦ ଆତଯାତ ।
ଜ୍ଞାନୀଜନ ବାହ୍ୟମତେ ହେଉଥାନ୍ତି ଭ୍ରମ,
ଘଟ-ବ୍ରହ୍ମକୁ ନ ଚିହ୍ନି କରୁଥାନ୍ତି କର୍ମ ।
ଜଣାନନ୍ଦ ବୁଝାଇଲେ ଶିଷ୍ୟଙ୍କ ଆଗର,
ଶୁଣିକରି ସନ୍ତୋଷ ହୋଇଲେ ନିରାକାର ।
ସାଧୁଜନ ଚରଣରେ ପଶୁଛି ଶରଣ,
କୃପାନେତ୍ରେ ଚାହିଁ ଦେବ କୁଶଳ କଲ୍ୟାଣ ।
ଅଣରୂପ ବ୍ରହ୍ମ ଭେଦ କି ପାଇବ ଶେଷ,
ଦୟା କରିଥିବ ମୋତେ ପଣ୍ଡିତ ପୁରୁଷ ।
ଗୁରୁଶିଷ୍ୟଙ୍କ ସମ୍ବାଦ ପ୍ରବନ୍ଧ ପ୍ରକାଶ,
ବ୍ରହ୍ମ-ନିରୂପଣ-ଗୀତା ଭଣେ ଭୀମଦାସ ।

ଇତି ଶ୍ରୀ ବ୍ରହ୍ମ ନିରୂପଣ-ଗୀତା ସୁଜନ ଜନହିତା
ଗୁରୁ ଶିଷ୍ୟ ସମ୍ବାଦେ ଅନାମ ବ୍ରହ୍ମ ଆତଯାତ
ବର୍ଣ୍ଣନେ ନାମ ପ୍ରଥମୋଽଧ୍ୟାୟ ।

## ଦ୍ୱିତୀୟ ଅଧ୍ୟାୟ

## ନିରାକାର ଉବାଚ

ଶ୍ରୀଗୁରୁଙ୍କ ମୁଖକୁ ଚାହିଁଣ ନିରାକାର,
ପାଏ ପଡ଼ି ଉଠି ଶିରେ ଯୋଡ଼ି ବେନିକର ।

ଭୋ ଗୁରୁ ଗୋସାଇଁ ମୋତେ କରୁଅଛ ମାୟା,
ଆମ୍ଭଠାରେ ଲେଶେ ତୁମ୍ଭ ନାହିଁକି ସୁଦୟା ।
ବେଦାନ୍ତ ମାର୍ଗରେ ଯେ କହିଲ ନାନାମତେ,
ସଂଶୟ ଲାଗିଲା ମନେ ନ ଗଲା ପରତେ ।
ଅନେକ ପ୍ରକାରେ ଶ୍ରୁତି ବିଚାର କହିଲ,
ବ୍ରହ୍ମ-ନିରୂପଣ ଭେଦ ଗୁପତେ ରଖିଲ ।
ତୁମ୍ଭେ ଯେ ଆମ୍ଭର ଗୁରୁ ପିଣ୍ଡ ମୋକ୍ଷକାରୀ,
ମହାମନ୍ତ୍ର କର୍ଣ୍ଣମୂଳେ କହୁଛ ବିସ୍ତାରି ।
ଅମୋକ୍ଷ ପିଣ୍ଡକୁ ସ୍ୱାମୀ ମୋକ୍ଷ କରାଉଛ,
ସଦବ୍ରହ୍ମଜ୍ଞାନ ମୋତେ କିମ୍ପା ନ କହୁଛ ।
ଲୁଚାଇ ଥୋଇଛ ମୋତେ କରୁଛ କପଟ,
ଗୁରୁ ଆଜ୍ଞା ପାଳି ସିନା ପଶନ୍ତି ବୈକୁଣ୍ଠ ।
ବୈକୁଣ୍ଠ ମହିମା କଥା କହ ଗୁରୁଦେବ,
ଅପ୍ରତିଆ ମନେ ମୋର ଶୁଣି ପ୍ରତେ ଯିବ ।
ସଦା ଅପରାଧୀ ମୋର ନାହିଁ ଜ୍ଞାନ ବୁଦ୍ଧି,
ତୁମ୍ଭେ ମୋର ଗୁରୁଦେବ କରୁଣା ବାରିଧି ।
ସତ୍ୟ ତଥ୍ୟ କରି ଫେଡ଼ି କହ ମୋ ଆଗର,
ଅଣରୂପ ବ୍ରହ୍ମ କିସ ଅନାଦି ଶରୀର ।
ମହିମା ସାଗର ବ୍ରହ୍ମ କେମନ୍ତ ସ୍ୱରୂପ,
ନିଶ୍ଚୟ କହିବ ମୋତେ ନ କରିବ ଗୋପ୍ୟ

### ଶ୍ରୀଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ନିରାକାର,
ବ୍ରହ୍ମ-ନିରୂପଣ ଭେଦ ଅତି ଅଗୋଚର ।
ଅଶ୍ରୁତି ଅମୂର୍ତ୍ତିପଦ ମହାବ୍ରହ୍ମ ସେହି,
ନିରୂପଣ କଲେ ଶୁଷ୍କ ତରୁ ପଲ୍ଲବଇ ।
ପାଷାଣ ହୁଅଇ ପାଣି, ଦ୍ରବ ହୁଏ ଦାରୁ,
ଗିରିମାନେ ବଢ଼ିଯାନ୍ତି ପାଲଟନ୍ତି ମେରୁ ।

 

ମୃତଶବ ହୋଇଥିଲେ ପଶଇ ପରାଣ,
କଳା କମଳ ହୁଅଇ ଧବଳ ବରନ ।
ବିନା ମେଘେ ଅକାଶରୁ ବରଷଇ ଜଳ,
ଜୀବକୁ ଆକ୍ରୋଶି ଥିଲେ ଘୁଞ୍ଚିଯାଏ କାଳ ।
ବୃଦ୍ଧ ଅଙ୍ଗ ଯୁବା ଅଙ୍ଗ ହୁଏ ଦିନୁ ଦିନ,
କେଶବାଳ ପାଚିଥିଲେ କଳାହୁଏ ଜାଣ ।
ପଙ୍ଗୁ ଗିରିବର ଲଘି ଯାନ୍ତି ଏ ଧର୍ମରେ,
ଚିତ୍ତ ମଜାଇ ପାରିଲେ ଅରୂପବ୍ରହ୍ମରେ ।
ଜଡ଼ା ବୃକ୍ଷ ହୋଇ ଯାଇ ଅଗୁରୁ ଚନ୍ଦନ,
କାଲ ହୋଇଥିଲେ କର୍ଣ୍ଣେ ଶୁଭଇ ବଚନ ।
ଅନ୍ଧ ହୋଇଥିଲେ ଚକ୍ଷୁ ଦିଶଇ ନିଶ୍ଚୟ,
ମହାପାପୀ ହୋଇଥିଲେ ପାପ ଯିବ କ୍ଷୟ ।
ଶୁଖା ଭୂମି ଓଦା ଯେ ହୋଇବ ବର୍ଷିଥିଲେ,
ରୋମ ପୁଲକିବ ବ୍ରହ୍ମ ନିରୂପଣ କଲେ ।
ଲୁହାମୁଣ୍ଡା ହୀରା ହେବ ବ୍ରହ୍ମନିରୂପଣେ,
ଖପର ହୋଇବ ସୁନା ଅନାମ ବଚନେ ।
ନାଗ ଗରଳ ପ୍ରତ୍ୟକ୍ଷେ ହୋଇବ ଅମୃତ,
ଅଣରୂପ ବ୍ରହ୍ମଭେଦ ମହିମା ଏମନ୍ତ ।
ମହୁରା ବିଷ ହୋଇବ ଅମର ଔଷଧି,
ଅନାମ ଅରୂପ ବ୍ରହ୍ମ ଯେ ପାରିବ ଭେଦି ।
ଶିଶା ପହଁରିବ ଯେ ଅଗାଧ ସିନ୍ଧୁ ଜଳେ,
ଶୋଲପେଣ୍ଡା ପରା ଏକ ଲାଗିବ ସେ କୂଳେ ।
ନିର୍ଜୀବ କାଷ୍ଠପିତୁଳୀ ଜୀବନ୍ୟାସ ହେବ,
ନିଶବ୍ଦ ଶବ୍ଦ ଭେଦିଲେ ବଚନ କହିବ ।
ଅସଙ୍ଗାଗାଈ ଚିରରେ ପହ୍ନାଇବ କ୍ଷୀର,
ନିର୍ଝର ଝରରୁ ଯେ ବହଇ ଝର ଝର ।
ଅବସନ୍ତରେ ଶୀତଳ ବହିବ ପବନ,
ଫଟା କୁଡ଼ିଆ ହୋଇବ ନୂଆ ନବତନ ।
ବଜ୍ର ଦଧି ପ୍ରାଏ ହେବ ହସ୍ତ ମାରି ଦେଲେ,
ଅରୂପ ଅନାମ ବ୍ରହ୍ମ ଭେଦାଭେଦ କଲେ ।

ଜଳର ଭିତରୁ ମୀନ କୂଳକୁ ଆସଇ,
ଗିରି ପର୍ବତରେ ପଦ୍ମ ଫୁଲ ଏ ଫୁଟଇ ।
ମହାବ୍ରହ୍ମ ମହିମାର ଏମନ୍ତ ପ୍ରତାପ,
ତେଣୁକରି ବୋଲାଉଛ ଅନାଦି ଅରୂପ ।
ଅହି ସର୍ପକୁ ମଣ୍ଡୁକୀ ମୁଖେ ଦେବ ଚୁମ୍ବ,
ମଞ୍ଜାରୀ କୋଳରେ ମୂଷା ଶୟନ କରିବ ।
ସଞ୍ଚାଣ ପାରା ଏ ଦୁହେଁ ହୋଇବେ ସଂଯୋଗ,
ବ୍ରହ୍ମନିରୂପଣ ଭେଦ ଏମନ୍ତ ସ୍ୱଭାବ ।
ବ୍ୟାଘ୍ର ଛେଳି ହୋଇ ଏକ କୋଠାରେ ଭକ୍ଷିବେ,
ସିଂହ ଯେ ଶୃଗାଳ ନୃତ୍ୟ ଗୀତହିଁ କରିବେ ।
ଶତ୍ରୁ ଭଗାରୀ ଏକାନ୍ତ ବସିବେ ଯେ ମିତ୍ର,
ଗୁରସ୍ତ ଭାରିଯା ହୋଇଯିବେ ମାତା ପୁତ୍ର ।
ଅନଳ ପତଙ୍ଗ ହେବ ଏକାଙ୍ଗ ପୀରତି,
ଯମକୁ ଦେଖିଯିବ ସେ ମାଗିବ ସୁରତି ।
ହସ୍ତୀ ସଙ୍ଗତରେ ମୂଷା ହୋଇବ ସମାନ,
କର୍ଣ୍ଣରେ ଶୁଣିବ ଯେବେ ବ୍ରହ୍ମନିରୂପଣ ।
ଲବଣ କର୍ପୂର ହେବ ବହିବ ଶୀତଳ,
ମଧୁର ଜାତ ହୋଇବ ନିମ୍ବବୃକ୍ଷ ଡାଳ ।
ତେତେବେଳେ ଗୁରୁଶିଷ୍ୟ ବାରଣ ନ ଯିବେ,
ପାଶେ ବସିଥିଲା ଲୋକ ସିଦ୍ଧାନ୍ତ ହୋଇବେ ।
ବାଞ୍ଝସ୍ତିରୀ ଗର୍ଭେ ହୋଇଯିବ ପୁତ୍ର ଜାତ,
ଅରୂପ ବ୍ରହ୍ମର ଭେଦ ଶୁଣିଲେ ଚରିତ୍ର ।
ଦରିଦ୍ରକୁ ଅଷ୍ଟରତ୍ନ ପରାପତ ହେବ,
ଶୂନ୍ୟବ୍ରହ୍ମଙ୍କ ଚରିତ ଯୁଗେ ଯୁଗେ ଥିବ ।
ମହାପାପୀ ସ୍ୱଦେହରେ ହୋଇବ ମୁକତ,
ବ୍ରହ୍ମନିରୂପଣ ଭେଦ ଶୁଣିଲେ ଅରଥ ।
ମାତାକୁ ହରଣ କରିଥିବ ଯେଉଁ ଲୋକ,
ଏ ଗୀତା ଶୁଣିଲେ ତାର କ୍ଷୟ ଯିବ ପାପ ।
ବ୍ରହ୍ମହତ୍ୟା କରିଥିଲେ କଟିଯିବ ଦୋଷ,
ବ୍ରହ୍ମଭେଦ କର୍ଣ୍ଣେ ଯେବେ ହୋଇବ ପ୍ରକାଶ ।

ସ୍ତିରୀହତ୍ୟା କରିଥିଲେ ହୋଇବ ଉଦ୍ଧାର,
ତଦନ୍ତ କରି ବୁଝିଲେ ଦୋଷଯିବ ତାର ।
ବାଳହତ୍ୟା କରିଥିଲେ ପାତକ ଖଣ୍ଡିବ,
ମରିଗଲେ ଅନ୍ତଃକାଳେ ଯମ ନ ଦଣ୍ଡିବ ।
ଗୋରୁ ହତ୍ୟା କରିଥିଲେ ପାପଯିବ କ୍ଷୟ,
ଦାନ ପୁଣ୍ୟ କରିବାକୁ ନ ଥିବ ସଂଶୟ ।
ଅପରାଧି ହୋଇଥିଲେ କ୍ଷମାହେବ ଦୋଷ,
ଗୁରୁହେଲେ ବୋଲିବେ ଏହିଟି ମୋର ଶିଷ୍ୟ ।
ଶୁଣିଲୁ କି ନିରାକାର ବ୍ରହ୍ମର ମହିମା,
ବୁଝି ନ ପାରିଲେ ଭେଦ ପଶ୍ଚାନ୍ତେ କହିବା ।
ଅରୂପ ବ୍ରହ୍ମଟି ଯୋଗୀମାନଙ୍କର ଭେକ,
ସର୍ପ ପରାଏ ଯୋଗରୁ ଛାଡୁଛନ୍ତି ଜକ ।
ମୂର୍ଖ ପଣ୍ଡିତ ହୋଇବ ବୁଝିଲେ ଏ ଭେଦ,
ଅନାମ ବ୍ରହ୍ମରୁ ଆଣି ପ୍ରକାଶିବ ପଦ ।
ଦୁଷ୍ଟ ହୋଇଥିଲେ ଶାନ୍ତଶୀଳ ହୋଇଯିବ,
ସର୍ବକର୍ମ ତେଜି ଏକ ପାଦକୁ ଲଭିବ ।
ଅଜ୍ଞାନୀ ହୋଇଲେ ଜ୍ଞାନ ପାଇବ ତକ୍ଷଣ,
ବ୍ରହ୍ମ ନିରୂପଣ ଭେଦ ଏମନ୍ତ ବିଧାନ ।
ଅରତୁରେ ଚୂତଫଳ ଫଳିବ ପ୍ରତ୍ୟକ୍ଷେ,
ଚାଣ୍ଡାଳ ହୋଇଲେ ବେଦ ଉଚ୍ଚାରିବ ମୁଖେ ।
ବିନା ମାଡ଼େ ବାଜିଯିବ ଟମକ ନିଶାଣ,
ଦୁଲୁ ଦୁଲୁ ହୋଇ ଗରଜିବ ମହାଟାଣ ।
ଚାହିଁଦେଲେ ହୋଇଯିବ ସୁବର୍ଣ୍ଣ ମନ୍ଦିର,
ଆଜ୍ଞାକୁ ରଖିପାରିଲେ ହୋଇବ ଅମର ।
ଜନ୍ମ ମରଣ ନୋହିବ ଯୁଗେ ଯୁଗେ ଥିବ,
ବ୍ରହ୍ମ ମରଣ ନୋହିବ ଯୁଗେ ଯୁଗେ ଥିବ,
ବ୍ରହ୍ମ ବିନ୍ଦୁ ନାଦହିଁ ପାଷାଣ ପାଲଟିବ ।
କାୟା ଦୁର୍ବଳ ନୋହିବ ପାଇ ଜ୍ଞାନତତ୍ତ୍ୱ,
ଯୁଗ ଯୁଗାନ୍ତରେ ଆଉ ନ ବୁଡ଼ିବ ହେତୁ ।
ମୁଖରୁ ବ୍ରହ୍ମ ଅନଳ ଉଦେ କରିପାରେ,

ଫୁଙ୍କିଦେଲେ ଜଳିଯିବ କଞ୍ଚାକାଷ୍ଠ ଖରେ ।
ହାଡ଼ି ହୋଇଲେ ବ୍ରାହ୍ମଣ ହୋଇବ ନିଶ୍ଚୟେ,
କୋଟି ଜନ୍ମ ଦୋଷ ମୁହୂର୍ତ୍ତକେ ଯିବ କ୍ଷୟେ ।
ସୂତାର ବସନ ଛିଣ୍ଡାକନା ପିନ୍ଧିଥିଲେ,
ଝୀନ ପାଟ ହେବ ବ୍ରହ୍ମନିରୂପଣ କଲେ ।
କବିପଣ ହୋଇଯିବ ପଣ୍ଡିତ ସମାନ,
ଅଙ୍ଗେ ବିଜୟେ କରିବେ ବ୍ରହ୍ମନାରାୟଣ ।
ଚନ୍ଦ୍ରକିରଣ ପରାଏ ବିରାଜିବ ମୁଖ,
ବିନ୍ଦୁ ଝଟକ ପ୍ରାୟେ ଦିଶିବ ବ୍ରହ୍ମରୂପ ।
ସମୁଦ୍ର ଭିତରେ ଅଗ୍ନି ଲାଗିଯାଇ ପାରେ,
ମହାଜନ ହୋଇପାରେ ତିନିଭୁବନରେ ।
ଛିଡ଼ିଗଲା ମୁଣ୍ଡ ଫେରି ଯୋଡ଼ି ହୋଇଯିବ,
ବ୍ରହ୍ମନିରୂପଣ ଭାବ ଏମନ୍ତ ସ୍ୱଭାବ ।
ଉଠିଥିବ ଯେଉଁ ବ୍ରହ୍ମନିରୁପଣ ଧ୍ୱନି,
ଗୋରୁ ଖୋଜ ପରାଏକ ଦିଶିବ ସେ ଭୂମି ।
ଯେଣିକି ଚାହିଁଲେ ସବୁ ଦିଶିବ ତିରଣ,
ଶକତିରେ ବସିବାକୁ ହୋଇବ ଭାର୍ଜନ ।
ସାତତାଳ ଜଳେ ଧାଡ଼ିଦେଲେ ଉବୁକିବ,
ବ୍ରହ୍ମନିରୂପଣ ଯେଉଁଠାରେ ହୋଇଥିବ ।
ସାତକିଳଣି କବାଟ ଖଞ୍ଜାଫିଟିଯିବ,
ସାଙ୍କୁଳିଥିଲେ ଚରଣେ ଖଣ୍ଡ ଖଣ୍ଡ ହେବ ।
ଡର ଭୟ ଭ୍ରାନ୍ତି ନାହିଁ ଅଭୟ ଭୁବନ,
ଯେଉଁଠାରେ ଲାଗିଥିବ ବ୍ରହ୍ମନିରୂପଣ ।
କ୍ଷୁଧା ତୃଷା ନି ଲାଗିବ ଭୁଞ୍ଜିଲା ପରାଏ,
ନାମ ଅରୂପ ବ୍ରହ୍ମ ଯେ ପୂରିଯିବ ଦେହେ ।
ରୋଗ ବ୍ୟାଧି ଏ ଦେହରୁ ଯାଇପାରେ ଛାଡ଼ି,
ପଢ଼ି ଯେବେ ଥିବ ବ୍ରହ୍ମନିରୂପଣ ଧାଡ଼ି ।
ନିର୍ବୁଦ୍ଧିଆ ଲୋକମାନେ ବୁଦ୍ଧିବନ୍ତ ହେବେ,
ବ୍ରହ୍ମନିରୂପଣ ଯେବେ କର୍ଣ୍ଣରେ ଶୁଣିବେ ।
ଗୃହୀ ସଂସାରୀଏ ହୋଇଯିବେ ବ୍ରହ୍ମଋଷି,

ଭେଦ ନିରୂପଣ ଯେବେ ପାଶେ ଥିବ ବସି ।
ବେଶ୍ୟା ସ୍ତିରୀମାନେ ହେବେ ସତୀ ସୁଲକ୍ଷଣୀ,
ନିଶ୍ଚଏ ସତ୍ୟ ଏ ବାବୁ ବ୍ରହ୍ମବାକ୍ୟ ବାଣୀ ।
ଗ୍ରୀଷମ ଋତୁ ହୋଇଲେ ଶୀତ କରିଯିବ,
ବ୍ରହ୍ମନିରୂପଣ ଯେଉଁଠାରେ ହେଉଥିବ ।
ଉଡ଼ା ଜନ୍ତୁଧାନେ ହସ୍ତେ ଧରାଦେବେ ଆସି,
ଅନ୍ଧାର ନିଶିରେ ନିଶ୍ଚେ ଉଇଁଯିବ ଶଶୀ ।
ଘୃତ ଅଗ୍ନି ହୋଇଯିବେ ଦୁଇ ମଇତର,
ବ୍ରହ୍ମନିରୂପଣ ଭେଦ ଶୁଣିଲେ ବିଚାର ।
ଖଗ ସର୍ପ ହୋଇଯିବେ ବାନ୍ଧବ ପ୍ରମାଣ,
ବ୍ରହ୍ମନିରୂପଣ ଭେଦ ଚରିତ୍ର ବଖାଣ ।
ଅମର ଭୁବନ ବୋଲି ଅଛି ଆର କାହିଁ,
ଶୂନ୍ୟ ସ୍ଥାନମାନଙ୍କୁ ବୈକୁଣ୍ଠ ବୋଲି କହି ।
ଯା ଦେହରେ ଲାଗିଥିବ ପରମ କୀର୍ତ୍ତନ,
ସେହି ଏକ କରିପାରେ ବ୍ରହ୍ମନିରୂପଣ ।
କର୍ଣ୍ଣେ ଶୁଣି ନିରାକାର ମନେ ହେଲେ ତୋଷ,
ଗୁରୁଶିଷ୍ୟ ସମ୍ବାଦେ ଭଣିଲେ ଭୀମଦାସ ।

ଇତି ଶ୍ରୀ ବ୍ରହ୍ମ ନିରୂପଣ ଗୀତା ସୁଜନଜନହିତା
ଗୁରୁ-ଶିଷ୍ୟ ସମ୍ବାଦେ ବ୍ରହ୍ମଭେଦ କଥନ
ନାମ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

### ଶ୍ରୀଗୁରୁଦେବ ଉବାଚ

ଶୁଣ ବାବୁ ନିରାକାର ବ୍ରହ୍ମର ବୃତ୍ତାନ୍ତ,
ଆଦ୍ୟ ଅନ୍ତ କରି ତୋତେ କହିବା ସିଦ୍ଧାନ୍ତ ।
ଅରୂପ ବ୍ରହ୍ମର କଥା ପଚାରିଲୁ ଯେବେ,
ସାବଧାନ ହୋଇ ଶୁଣ କହିଦେବା ଏବେ ।
ସତ୍ୟତତ୍ତ୍ୱ ଦୃଢ଼ବ୍ରତ ପାର ଯେବେ କରି,

ହେତୁ ଚେତା ଘେନି ସ୍ୱଦେହରେ ଯିବ ତରି ।
ଗୋରୁ ଶିଙ୍ଗ ଅଗ୍ର ପ୍ରାଏ ତହିଁର ଆସ୍ଥାନ,
ତାଳୁକା ଦୁଆର ଶିଖେ ଶିଶୁରନ୍ଧ୍ରେ ମୁନ ।
ଫଣୀ ପରେ ମଣି ତହିଁ ନିଭା ହୋଇଅଛି,
ସେ ଭିତରେ ଅଣରୂପ ବ୍ରହ୍ମ ଖେଳୁଅଛି ।
ଛେଚିଲେ ନ ଫାଟେ ମଣି ଛେଦିଲେ ନ କାଟେ,
ଅଗ୍ନିରେ ନ ପୋଡ଼େ ମଣି ପବନେ ନ ଉଡ଼େ ।
ଜଳେ ନ ବୁଡୁଛି ଗନ୍ଧ ପ୍ରକଟ ନୋହୁଛି,
ବଜ୍ରହୁଁ କଠିନ ମଣି ମହା ଆଣ୍ଡେ ଅଛି ।
ସେ ମଣିକି ଏକାକ୍ଷର ବ୍ରହ୍ମ ବୋଲି କହି,
କବି ବିଚାରକୁ ଭେଦ ଏମନ୍ତ ଦିଶଇ ।
ଏକ ଧର୍ମ ଏକ ବ୍ରହ୍ମ ଏକ ଭେଦ ତାର,
ସେ ଗର୍ଭରେ ଶୂନ୍ୟ ବ୍ରହ୍ମ କରନ୍ତି ବେହାର ।
ଅଣଅକ୍ଷର ଅଲେଖ ପୁରୁଷ ଅଟଇ,
ଅନାମ ଅରୂପ ବ୍ରହ୍ମ ତାହାକୁଟି କହି ।
ମଥା କେଶ ଗୋଟାଏକ ଚାରିଫାଳ କରି,
ତହିଁରେ ଫାଳେକ ଯେତେ ମୋଟା ସମସରି ।
ତେତେଡ଼େ ସରୁ ଅଣରୂପ ବ୍ରହ୍ମର ଶରୀର,
ନେତ୍ରରେ ଦିଶୁଛି ନାହିଁ ଦିଶିଲା ପ୍ରକାର ।
ଆବାଲ୍ୟ ମୂରତି ବ୍ରହ୍ମ ସେହି ଏକା ଅଟେ,
ଆସିବା ଯିବା ହେଉଛି କେଶ ମୂଳ ବାଟେ ।
ଅଲେଖ ବ୍ରହ୍ମର ବାଟ ଊର୍ଦ୍ଧ୍ୱକୁ ଫିଟିଛି,
ତାଳୁକା ଦୁଆରେ ଅବକାଶ ହେଉଅଛି ।
ତହିଁରୁ ଆହୁରି ସରୁ ହେବ ଯାର ଚିତ୍ତ,
ଅରୂପ ବ୍ରହ୍ମର ସିନା ହୋଇବ ଭକତ ।
ମନକୁ ମୋଟୁଆ କଲେ କାହିଁରେ ପଶିବ,
ନିଗମର ଭେଦାଭେଦ କେମନ୍ତେ ଦିଶିବ ।
ଜ୍ଞାନ ନେତ୍ରେ ଚାହିଁବାକୁ ବଡ଼ାଇ ଦୁର୍ଗମ,
ବିବେକ ବୁଦ୍ଧିରେ କେହି ନାହିଁ ଗମାଗମ ।

ଚିହ୍ନିବି ବୋଇଲେ ଚିହ୍ନା ନଦିଏ କାହାକୁ,
ନିଗମ ଭିତରେ ମଜି ଯାଇଛି ମନକୁ ।
ଲେଉଟି ନ ଚାହେଁ ସେ ଯେ ଅପାଲଟ ବ୍ରହ୍ମ,
ଥୟରେ ଭେଟିବ ତାଙ୍କୁ ଘେନି କେଉଁ କର୍ମ ।
ତତ୍ତ୍ୱ ବୁଝି ଆଶ୍ରେ କଲେ ତରିବା ହେଉଛି
ଚାରିଯୁଗରେ କାହାକୁ ଦେଖା ନ ଦେଉଛି ।
ସର୍ବଠାରୁ ସାର ବ୍ରହ୍ମ ଅଲଗା ରହିଛି,
ଏକୋଇଶ ବ୍ରହ୍ମାଣ୍ଡରୁ ଛଡ଼ାଇ ହୋଇଛି ।
ଅତି ସୁକୁମାର ବ୍ରହ୍ମ କଷଣ ନ ସହେ,
ନିଗମ ଭିତରେ ଶୁଖା ମନ୍ଦିରରେ ରହେ ।
ମାୟା ଛାୟା ନ ଲାଗଇ ନିଷ୍କାମ ତା ଅଙ୍ଗ,
ଏକା ରହିଅଛି କାହିଁ ନୋହେ ସାଥି ସଙ୍ଗ ।
ଜନ୍ମ ମରଣ ନ ଲାଗେ ଅମର ଅକ୍ଷଏ,
ଖୋଲ ପୋଲ ନାହିଁ ନିଦା ଅଟେ ତାଙ୍କ କାୟେ ।
ନିଦ୍ରା ମଇଥୁନ ତାଙ୍କୁ ନ ଲାଗଇ କିଛି,
ସଦା ସରବଦା ଉଜାଗରେ ବସିଅଛି ।
ଏ ପିଣ୍ଡ ବ୍ରହ୍ମାଣ୍ଡ ତାର ଆଜ୍ଞାରେ ରହିଛି,
ବସିଲାଠାରେ ଅଶେଷ ବ୍ରହ୍ମାଣ୍ଡ ଦିଶୁଛି ।
କାମନା କଳ୍ପନା ନାହିଁ ନିଷ୍କାମ ମଉଜ,
ରୁଧିର ମାଏଁସ ନାହିଁ ନୋହେ ରଜ ବୀଜ ।
ଚିନ୍ତା ଅର୍ଥ ନ ଲାଗଇ ଅଚିନ୍ତାରେ ଅଛି,
ପିଣ୍ଡ ବ୍ରହ୍ମାଣ୍ଡକୁ କୃପାନେତ୍ରରେ ଚାହିଁଛି ।
ଅଖଣ୍ଡିତ ବ୍ରହ୍ମ ସେ ଯେ ଗୋଟା ହୋଇଅଛି,
କିଛି ଊଣା ନାହିଁ ତାର ପୂର୍ଣ୍ଣ ରହିଅଛି ।
ଶୂନ୍ୟ ମହାଶୂନ୍ୟ ବୋଲି ତାହାକୁଟି କହି,
ତାଙ୍କ ଉପରକୁ ଆଉ ବଡ଼ ନାହିଁ କେହି ।
ସେହିଟି ପୃଥ୍ୱୀର ବୃକ୍ଷ ସମସ୍ତଙ୍କ ବଡ଼,
ଆପେ ଆପଣେ ଗଢ଼ିଣ ହୋଇଛି ନିବାଡ ।
ଯୋନିରେ ଜନମ ନୋହେ ଗର୍ଭରେ ନରହେ,

ସମସ୍ତ ଗଢ଼ିଛି, ତାଙ୍କୁ ଗଢ଼ି ନାହିଁ କିଏ ।
ଭେଦ କଲେ ମହାଭିଡ଼ ପଦହିଁ ନିଗୂଢ଼,
ଅର୍ଥ ସମ୍ବାଦ ନ ଲାଗେ ଅତି ମହାଗାଢ଼ ।
ସେହି ସେ ସାକ୍ଷାତେ ବ୍ରହ୍ମ ବ୍ରହ୍ମାଣ୍ଡରେ ମେରୁ,
ଛପନ କୋଟି ଜୀବର ଅଟନ୍ତି ସେ ଗୁରୁ ।
ମୁକତି ପସରା ଗୋଟି ଆଛି ତାର ତହିଁ,
ଆଦ୍ୟନ୍ତରୁ ଅମନ ମନ୍ଦିରେ ଅଛି ଥୋଇ ।
ଅବ୍ୟଗତ ବ୍ରହ୍ମ ସେ ଯେ ବଚନ ନ କହେ,
ନିଜ କବିତା ତାହାର କାହାକୁ ନ ଦିଏ ।
ପାଶୁଶରେ ରହିବାକୁ ସ୍ଥାନ ଆଉ ନାହିଁ,
ଆସ୍ଥାନ ଖଣ୍ଡିଏ ଏକା ଅଛି ତାଙ୍କ ପାଇଁ ।
ସୂଚି ମୁନ ଅଗ୍ରେ ତହିଁ କେମନ୍ତେ ରହିବ,
ହଟିୟା ଜନକୁ ଆଉ କାହିଁଅଛି ଠାବ ।

## ନିରକାର ଉବାଚ

ବୋଇଲେ ସେ ନିରାକାର ଶୁଣ ଗୁରୁଦେବ,
କେଉଁଠାରେ ଥାଏ ସେବା ଭଗତି ଖଟିବ ।
ଯାହା ଆଜ୍ଞା ହେଲା ସ୍ୱାମୀ ବ୍ରହ୍ମର ତଦନ୍ତ,
ଆଶ୍ଚର୍ଯ୍ୟ ଲାଗିଲା ମୋତେ ଶୁଣି ଏ ସିଦ୍ଧାନ୍ତ ।
ଆଉ ଜଣେ ରହିବାକୁ ନାହିଁ ଯେବେ ଠାବ,
ସେ ବ୍ରହ୍ମର ମନ୍ଦିରକୁ କି ପ୍ରକାରେ ଯିବ ।
ଗଲେ କାହିଁ ଉଭାହୋଇ କରିବ ଦର୍ଶନ
ଦୁଃଖ ସୁଖ ଜାଣଇ କି ମାଗିବ ଶରଣ ।
କେଉଁଠାରେ ବସି ମଞ୍ଜାଳିବ ପଦ୍ମପାଦ,
ବ୍ୟକତ କରାଇ କେହ୍ନୁ ପଚାରିବ ପଦ ।
ଅନାହତ ଧ୍ୱନି ତାଙ୍କ କେହ୍ନୁ ଜଣାଇବ,
ଅବକାଶ ବେଳେ କେହ୍ନୁ ପାଶୁଶରେ ଥିବ ।
ଅଜାତ ଭୁବନ ସେ ଯେ ଆତଯାତ ନାହିଁ,
କେମନ୍ତ ପ୍ରକାରେ ଦେହ ଆସୁଛନ୍ତି ବହି ।
କିଳିଣି କବାଟ କେହ୍ନୁ ଦିଏସେ ମନ୍ଦିରେ,

ଆଜ୍ଞାବର୍ତ୍ତୀ ହୋଇ କେହୁ ଥାଇ ଶ୍ରୀଛାମୁରେ ।
ଶୟନ ଆସନ ତାଙ୍କ କେହୁ ଶେଯାଉଛି,
ଲିପା ପୋଛା କରି କେହୁ କୋଠା ଖରକୁଛି ।

## ଶ୍ରୀ ଗୁରୁଦେବ ଉବାଚ

ସେଠାବରେ ସେବାଭାବ ଭକତି ନସ୍ଥରେ,
ଛଡ଼ାଇ ହୋଇ ସେ ବ୍ରହ୍ମ ରହିଛି ନିରୋଳେ ।
ଦର୍ଶନ ଶରଣ ନାସ୍ତି ସେ ମନ୍ଦିରେ ସିନା,
ଆଦ୍ୟନ୍ତରୁ ଛଡ଼ାଇ କରିଛି ସବୁ ମନା ।
ଧରି ନ ପାରନ୍ତି କେହୁ ଅମୂଲ୍ୟ ରତନ,
ନିର୍ଗୁଣ ନୁହଇ ବ୍ରହ୍ମ ମହାନିରିଗୁଣ ।
ଚାରିଯୁଗ ଯୁଗାନ୍ତରେ ଯାଇନାହିଁ କେହି,
ଅର୍ଦ୍ଧାଙ୍ଗ ପରେ ଯେ ମରୁଛନ୍ତି ବ୍ରଣା ହୋଇ ।
ମହା ଅନ୍ଧକାର ପଥ ଅଲେଖ ଭୁବନ,
ଉପରକୁ ଦିଶଇ ସେ ଧୂର୍ମମଏ ବ୍ରହ୍ମ ।
କର୍ଣ୍ଣେ ନ ଶୁଣିଲା କଥା ନେତ୍ରେ ନ ଦେଖିଲା,
ଠାବେ ଠାବେ କବାଟ ଲାଗିଛି ଅନର୍ଗଳା ।
ସେ ରୂପକୁ ବର୍ଣ୍ଣିବାକୁ ବହୁତ କଠିନ,
ଅକ୍ଷର ନ ବସେ ଯହିଁ ନସ୍ଥରେ ବଚନ ।
କିସ ମୁଁ କହିବି ବାବୁ ତହିଁର ବିଧାନ,
ସୁଦୟା ହୋଇଲେ ଏକା ଫିଟିବ ପ୍ରସନ୍ନ ।
ଆଜ୍ଞା କରି କହିଲେ ଦିଶିବ ବ୍ରହ୍ମ କଥା,
ଚାରିଯୁଗେ ମୁନିଗଣ ହୋଇଛନ୍ତି ଗାଥା ।
ଅନେକ ପ୍ରକାରେ ବେଦ ଶାସ୍ତ୍ରମାନ କଲେ,
ଅରୂପ ବ୍ରହ୍ମର ଅନ୍ତ କେହି ନ ପାଇଲେ ।
ବ୍ରହ୍ମ ବ୍ରହ୍ମ ବୋଲିବାର ସମସ୍ତେ ଜାଣନ୍ତି,
ଭେଦା ଭେଦ କରି କେହୁ ତତ୍ତ୍ୱ ନ ଜାଣନ୍ତି ।
କର୍ମାଧି ପଥରେ ସର୍ବେ ଆତଯାତ ହେଲେ,
ଅଲେଖ ପୁରୁଷସ୍ୱାମୀ ନିର୍ବେଦେ ରହିଲେ ।
ଶୂନ୍ୟ ବୋଲିବାକୁ ସର୍ବେ ଗଲେ ଅପସରି,

କିଛି ନ ଦିଶନ୍ତେ ପଳାଇଲେ ଭୟ କରି ।
ଅମନ ମନ୍ଦିର ସେ ଯେ ନ ଲାଗଇ ମନ,
ନ ଥିଲା ପରାୟେ ପୁର ଦିଶୁଅଛି ଶୂନ୍ୟ ।
ଯା କୁ ଦୟା ହେବ ଅସାଧନାରେ ଦେଖିବ,
ଅନୁମାନ ଅନୁଭବ ପଥରେ ଦିଶିବ ।
ଲୋଡ଼ିଲେ ସିନା ପଦାର୍ଥ ହସ୍ତକୁ ଆସଇ,
ନ ଲୋଡ଼ିଲେ ଦାଣ୍ଡେ ପଡ଼ିଥିଲେ ନ ଦିଶଇ ।
ଚୋରଙ୍କ ପରାଏ ଲୁଚିଅଛି ନିରନ୍ତରେ,
ଆସିବା ଯିବା ହେଉଛି ଭିତରେ ଭିତରେ ।
ବହୁତ ଚତୁରେ ଅଛି ନଦେଉଛି ଧରା,
ଝଲକି ଦିଶୁଛି ସେହି ବିଦ୍ୟୁଟ ତୋରା ।
ନେତ୍ର ଲିଭିଯିବ ବ୍ରହ୍ମ ରୂପକୁ ଚାହିଁଲେ,
ପ୍ରସନ୍ନ ହୋଇବେ ମହାଭକ୍ତକୁ ଦେଖିଲେ ।

## ନିରାକାର ଉବାଚ

କେମନ୍ତ ପ୍ରକାରେ ବ୍ରହ୍ମ ହେଉଛି ପ୍ରସନ୍ନ,
ସଂଶୟ ଫେଡ଼ିଣ ମୋତେ କହ ନାରାୟଣ ।
ତୁମ୍ଭେ ତ ମୋହର ଗୁରୁ ମୁହିଁ ତୁମ୍ଭ ଶିଷ୍ୟ,
କେମନ୍ତେ ବିହରୁଛନ୍ତି ସେ ବ୍ରହ୍ମପୁରୁଷ ।.
କିସ ଜାତୁ ମାତୁ ତାର କିସ ଆଦିଅନ୍ତ,
କି ପ୍ରକାରେ କ୍ଷରାକ୍ଷର କେବଣ ବୃତାନ୍ତ ।
ତତ୍ତ୍ୱ ବ୍ରହ୍ମବାଣୀ ମୋତେ କହ ସାରସ୍ୱତ,
ଶୂନ୍ୟବ୍ରହ୍ମ ନିରୂପଣ ଶ୍ରୀମୁଖ ଉକତ ।
ନ କହିଲେ ନ ଛାଡ଼ିବି ପଚାରୁଣ ଥିବି,
ଗୁରୁ ଶ୍ରୀ ପୟରେ ପଛେ ଅପରାଧୀ ହେବି ।
ଏତେ ବୋଲି ନିରାକାର ଶିରେ ଯୋଡ଼ିକର,
ସାଷ୍ଟାଙ୍ଗେ ପ୍ରଳମ୍ବ କରି ଶ୍ରୀଗୁରୁ ପୟର ।
ଭାବ ଗଦଗଦେ ନେତ୍ରୁ ଅଶ୍ରୁଧାରା ବହେ,
ପୁନଃ ପୁନଃ ପ୍ରଳମ୍ବିତ କରି ଗୁରୁ ପାଏ ।

ମହିମା ସାଗର କଥା ଶୁଣ ସାଧୁଜନ,
ଅତି ମହାଗାଢ଼ କଥା ବ୍ରହ୍ମନିରୂପଣ ।
ଭାବିଲେ ଭଜିଲେ ହୋଇ ଯିବଟି ସିଦ୍ଧାନ୍ତ,
ଭେଦିଲେ ସୁଜ୍ଞାନୀ ହେବ ପଢ଼ିଲେ ପଣ୍ଡିତ ।
ଶୂନ୍ୟବ୍ରହ୍ମ ଘର ପଦ କରିଅଛି ଯୁକ୍ତ ।
ଦୋଷ ନ ଧରିବ ମୋର ସୁଜ୍ଞ ସାଧୁ ସନ୍ଥ ।
ମହିମା ବ୍ରହ୍ମମଣ୍ଡଳୁ ଛାଣି ଆଣି ପଦ,
ଅଣଶବଦେ ଶବଦ ବସାଇଛି ଭେଦ ।
ଜଣାନନ୍ଦ ନିରାକାର ଦୁହିଁଙ୍କ ସମ୍ବାଦ,
ବ୍ରହ୍ମଜ୍ଞାନୀ ଯୋଗିମାନେ ଅନୁମାନେ ଭେଦ ।
ଏକବ୍ରହ୍ମ ପାଦବିନ୍ଦୁ ହୃଦୟରେ ଗୁଣି,
ବ୍ରହ୍ମ-ନିରୂପଣ-ଗୀତା ଭୀମଦାସ ଭଣି ।

ଇତି ଶ୍ରୀ ବ୍ରହ୍ମନିରୂପଣ ଗୀତା.ସୁଜନଜନହିତା,
ଶ୍ରୀ ଗୁରୁଶିଷ୍ୟ ସମ୍ବାଦେ ବ୍ରହ୍ମନିରୂପଣ ବର୍ଣ୍ଣନେ ଭେଦାଭେଦ
ଚରିତ କଥନେ ନାମ ତୃତୀୟୋଽଧ୍ୟାୟଃ ।

## ଚତୁର୍ଥ ଅଧ୍ୟାୟ

### ଶ୍ରୀଗୁରୁଦେବ ଉବାଚ

ଶୁଣ ବାବୁ ନିରାକାର ବ୍ରହ୍ମଭେଦ ଛନ୍ଦ,
ଯେଉଁ ରୂପେ ବିହରୁଛି ଅନାଦିତ କନ୍ଦ ।
ଅପରଚେ ବ୍ରହ୍ମ ତୋତେ ପରଚେ କରିବା,
.ତୁ ଯେତେ ଅପ୍ରତେ କଲୁ ବୁଝାଇ କହିବା ।
ଆପେ ସେବା ଘେନୁଥାଇ ଆପେ ସେବା କରେ,
ଆପଣେ ଅଚିନ୍ତା ହୋଇ ଆପେ ଭୟ କରେ ।
ଆପେ ଶିଷ୍ୟ ହୋଇଥାଇ ଆପଣେ ଶ୍ରୀଗୁରୁ,
ଆପେ ତରୁ ତୃଣ ହୋଏ ଆପେ ଗିରି ମେରୁ ।
ଆପେ ସାଆନ୍ତପଣରେ ଆପଣେ ସେବକ,

ଆପେ ପଢ଼ାକ ପଣ୍ଡିତ ଆପଣେ ମୁରୁଖ ।
ଆପେ ମହାବ୍ରହ୍ମଜ୍ଞାନୀ ଆପଣେ ଅଜ୍ଞାନୀ,
ଆପଣେ ଅଣବିବେକ ଆପେ ଅନୁମାନି ।
ଆପେ ମାରୁଥାଇ ମାଡ଼ ଆପେ କଷ୍ଟ ସହେ,
ଆପେ କରୁଥାଏ ଦୋଷ ଆପେ ବୁଝେ ନ୍ୟାଏ ।
ଆପଣେ ଶତ୍ରୁପଣିଆ ଦୋଷ ଆପେ ହୋଏ ମିତ୍ର,
ଆପଣେ ସେ ପିତା ମାତା ଆପେ ହୋଏ ପୁତ୍ର ।
ଆପଣେ ସେ ହର୍ତ୍ତା କର୍ତ୍ତା ଆପେ ପତ୍ନୀ ପତି,
ଆପେ ଅନ୍ଧାର ଉଜ୍ଜ୍ୱଳ ଆପେ ଦିବା ରାତି ।
ଆପଣେ ତୋଳଇ ଘର ଆପେ ବୋଲେ ନୋହେ,
ଆପଣେ ବିଚାର କରି ଫେଡ଼ି ଭାଙ୍ଗିଦିଏ ।
ଆପଣେ ଚାଳଇ ପଥ ଆପେ ଥାଇ ବସି,
ଆପଣେ ବିରସ ମନ ଆପେ ଦିଏ ହସି ।
ଆପଣା ଇଚ୍ଛାରେ ବଡ଼ ଆପେ ହୋଏ ସାନ,
ଆପେ ସାଧକ ପଣିଆ ଆପେ ହୀନିମାନ ।
ଆପଣା ଇଚ୍ଛାରେ ଶୋଏ ଆପେ ଫେରି ଉଠେ,
ଆପେ ହୋଏ ଛୋଟ ମୋଟ ଆପଣେ ନିତୁଟେ ।
ଆପେ ହେଲେ ନାହିଁ ନାହିଁ ଆପେ ବୋଲେ ହୋଇ,
ଆପଣେ ଅଦେହ ରୂପ ଆପେ ବହେ ଦେହୀ ।
ଆପେ ସୁଖେ କୋପ କରେ ଆପେ ହୋଏ ଶାନ୍ତ,
ଆପେ ଗଞ୍ଜଣା ଦିଅଇ ଆପେ ହୋଏ ହିତ ।
ଆପଣେ ବୁଡ଼ାଇ ମାରେ ଆପେ ଯାଏ ବୁଡ଼ି,
ଆପଣାଙ୍କ ବୁଦ୍ଧି ପଶେ ଆପେ ଯାଇ ହୁଡ଼ି ।
ଆପଣେ ଲଗାଏ ପ୍ରୀତି ଆପଣେ ଛଡ଼ାଏ,
ଆପଣେ ଅନ୍ତର କରି ଆପଦ ଫେଡ଼ାଏ ।
ଆପଣେ ବନ୍ଧନ କରେ ଆପେ ବନ୍ଦୀ ହୋଏ,
ଆପଣେ ବହଇ ଭାର ଆପଣେ ନ ବହେ ।
ଆପଣେ ମହା ନିଷ୍କାମ ଆପଣେ ସକାମ,
ଆପେ ଅନାମିକା ବ୍ରହ୍ମ ଆପେ ବହେ ନାମ ।

 

ଆପେ ଧର୍ମ କରୁଥାଇ ଆପଣେ ଖରାପ,
ଆପେ ଦ୍ରୋହ କରୁଥାଇ ଆପେ ଦିଏ ଶାପ ।
ଆପେ କର୍ମ କରୁଥାଇ ଆପେ ହୋଏ ଭ୍ରମ,
ଆପେ କାଳ ରୂପେ ପୀଡ଼େ ଆପେ ହୋଏ ଯମ ।
ଆପେ ସୁଖୀ ହୋଇଥାଇ ଆପେ ରୋଗ ବ୍ୟାଧି,
ଆପେ ବଇଦ ହୁଅଇ ଆପେ ମଉଷଧି ।
ଆପେ ମହାପୁଣ୍ୟ ହୋଏ ଆପଣେ ପାତକ,
ଆପେ ରାଗ ତପ ହୋଏ ଆପଣେ ସାତ୍ତ୍ୱିକ୍ୟ ।
ଆପେ ସ୍ତିରୀଲିଙ୍ଗ ହୋଏ ଆପଣେ ପୁରୁଷ,
ଆପେ ପଚିଶ ପ୍ରକୃତି ଆପେ ପ୍ରେମରସ ।
ଆପେ ଭାଷେ ଆପେ ରସେ ଆପେ କଉତୁକ,
ଆପେ ମହାଯୋଗୀ ହୁଏ ଆପେ ମହାତିକ ।
ଆପେ କହେ ଆପେ ଶୁଣେ ଆପେ ନାହିଁ ବୁଝେ,
ଆପେ ଖେଳେ ଆପେ ପଢ଼େ ଆପେ ମନ ହେଜେ ।
ଆପେ ଦରଶନ କରେ ତାହିଁ ଆପ ଘଟେ,
ଆପେ ସେ ଶରଣ ମାଗେ ଆପେ ପାଦେ ଲୋଟେ ।
ଆପେ ବଶ୍ୟ ଆପେ ବେଶ୍ୟା ଆପେ କରେ ନାଟ,
ଆପେ ଛବି ଆପେ ଭବି ଆପେ ନଟକୂଟ ।
ଆପେ ଗଢ଼ି ଆପେ ସଢ଼ି ଯାଉଥାଇ ଭ୍ରମି,
ଆପେ ଭାବ ଭୋଳ ହୁଏ ଆପେ ନାମ ପ୍ରେମୀ ।
ଆପେ ଚଉଷଠି ବନ୍ଧେ କରୁଥାଇ ଲୀଳା,
ଆପେ ବୃଦ୍ଧ ଆପେ ଯୁବା ଆପେ ହୋଏ ପିଲା ।
ଆପେ ଦାରୀ ଆପେ ଚୋରୀ ଆପଣେ ଅନୀତି,
ଆପେ ହାରେ ଆପେ ଜିଣେ ରୁପିଥାଇ ଛାତି ।
ଆପେ ଚୋର ଆପେ ଧର ଆପେ ଡାକୁଥାଇ,
ଆପେ ସିନ୍ଧି ଗାତ ଖୋଳି ନେଉଥାଏ ବୋହି ।
ଆପେ ରାଜପଣେ ବସେ ଆପେ ଧରେ ଛତ୍ର,
ଆପେ ଦୂତପଣେ ହୋଏ ଆପେ ମନ୍ତ୍ରୀ ପାତ୍ର ।
ଆପେ ମିଛ ଆପେ ସତ ଆପେ ହୁଏ ଠକ,

 

ଆପେ ହୁକୁମ ହାକିମ ଆପେ ହୋଏ ଲୋକ ।
ଆପେ ଖେଳେ ଆପେ ବୁଲେ ଆପଣେ ନିଷତ,
ଆପେ କହଇ ବଚନ ଆପେ ଅବ୍ୟକତ ।
ଆପେ ହାଟ ଆପେ ବାଟ ଆପରେଣ ବୁଝା,
ଆପେ ପ୍ରଶଂସିତ ହୁଏ ଆପେ ବହେ ଲଜ୍ଜା ।
ଆପେ ଖାଏ ଆପେ ପିଏ ଆପେ ଉପାସନା,
ଆପେ ଦୁଃଖ ଆପେ ସୁଖ ଆପଣେ କଷଣା ।
ଆପେ ଯାଏ ଆପେ ରହେ ଆପେ ଇଚ୍ଛାମନ,
ଆପେ ସରିସମ ହୋଏ ଆପେ କରେ ମାନ୍ୟ ।
ଆପରେ ଅଣବିକାର ଆପଣେ ଆକାର,
ଆପଣେ ବାଛିକେ ଭାର ଆପଣେ ଆଚାର ।
ଆପଣେ ସାକ୍ଷାତେ ବ୍ରହ୍ମ ଆପେ ହୋଏ ଶୂନ୍ୟ,
ଆପେ ରୂପକାନ୍ତି ହୋଏ ଆପଣେ ଅବର୍ଣ୍ଣ ।
ଆପଣେ ପରମ ହୋଏ ଆପେ ହୋଏ ଜୀବ,
ଆପେ ସେ ଅଲଗା ହୋଏ ଆପେ ହୋଏ ଯୋଗ ।
ଆପଣେ ଅମୃତ ହୋଏ ଆପେ ହୋଏ ବିଷ,
ଆପଣେ ପ୍ରାଣେ ପାତକ ଆପେ ହୋଏ ନାଶ ।
ଆପଣେ ଗ୍ରହ କଳସ ଆପଣେ ବ୍ରାହ୍ମଣ,
ଆପେ ପରାଚିତ ହୋଇ ଆପେ ଘେନେ ଦାନ ।
ଆପଣେ ଚାଣ୍ଡାଳ ହୋଇ ଆପଣେ ସେ ଶୂଦ୍ର,
ଆପେ ଶୁଭା ପାଉଥାଇ ଆପେ ଛିନ୍ନ ଛିଦ୍ର ।
ଆପେ ଜନମ ଜାତକ ଆପଣେ ମରଣ,
ଆପଣେ ମୁକତି ପଦ ଆପେ ଉଦ୍ଧାରଣ ।
ଆପଣେ ବୈଷ୍ଣବ ହୋଇ ଆପଣେ ଅତିଥି,
ଆପେ ଶରଣ ସମ୍ଭାଳି ଆପଣେ ବଞ୍ଚିତ ।
ଆପେ ଉଚ୍ଚ ଆପେ ଲେଞ୍ଚ ଆପେ ସର୍ବେ ସମ,
ଆପେ ଛତିଶ ପାଟକ ଆପେ ବହେ ନାମ ।
ଆପଣେ ଶବଦ ଭେଦ ଆପେ ନିଶବଦ,
ଆପେ ମନ ଆନନ୍ଦରେ ଆପେ ଗଦ ଗଦ ।

ଆପେ କବି ଆପେ ଯୋଗୀ ଆପେ ହୁଏ ଭୋଗୀ,
ଆପେ ପଦ ଯୋଡ଼ି ହୁଏ ଆପେ ଅନୁଭବୀ ।
ଆପେ କ୍ଷୀର ଆପେ ନୀର ଆପେ ସ୍ୱାଦ ସର,
ଆପେ କଷା ଆପେ ପିତା ଆପଣେ ମଧୁର ।
ଆପେ ହୋଏ ମହାଜନ ଆପେ ସାଉ ଖାତ,
ଆପେ ଦରିଦ୍ର ହୁଅଇ ଆପେ ଧନବନ୍ତ ।
ଆପଣେ ହୁଅଇ କାୟା ଆପେ ହୋଏ ଛାୟା
ଆପେ ବଣା ହେଉଥାଇ ଆପେ ମହାମାୟା ।
ଆପେ ସତ ଶାନ୍ତି କ୍ଷମା ଆପେ ଦୟାଶୀଳ,
ଆପେ ଆଜ୍ଞା କରୁଥାଇ ଆପେ ମାନେ ବୋଲ ।
ଆପଣେ ହୁଅଇ ଭେଦ ଆପେ ହୋଏ ପଦ,
ଆପଣେ ଅବୁଝା ହୋଏ ଆପେ ଉନମାଦ ।
ଆପେ ବୋଲେ ମାର ମାର ଆପେ ବୋଲେ ରଖ,
ଆପେ ଦେଖାଇଣ ବୋଲେ ଆପେ ବୋଲେ ରଖ ।
ଆପେ ବୋଲେ ନାହିଁ ନାହିଁ ଆପେ ବୋଲେ ଯିବି,
ଆପେ ବୋଲେ ଦେବି ଆପେ ବୋଲେ ନେବି ।
ଆପେ ବିଚିତ୍ର ବିନ୍ଧାଣି ଆପେ ହୁଏ କର୍ମ,
ଆପେ ଲେଖନ ବାରେସି ଆପେ ସହେ ଧର୍ମ ।
ଆପଣେ ଦିବ୍ୟ ମନ୍ଦିର ଆପେ ହୋଏ ଇଟା,
ଆପେ ବିଷୟା ଲଭନ୍ତି ଆପେ ମହା ନିଷ୍ଠା ।
ଆପେ ହଜିଯାଇ ଆପେ ଅଥଳ ଅକୂଳ,
ଆପେ ଗୋଳିଆ ହୁଅଇ ଆପଣେ ନିର୍ମଳ ।
ଆପେ ଅନ୍ତର୍ଯ୍ୟାମି ହୋଇ ଆପେ ଜାଣ ସବୁ,
ଆପେ ନୁହଇ ଠାକୁର ଆପେ ମହାପ୍ରଭୁ ।
ଶୁଣିଲୁ କି ନିରାକାର ଅଦଭୁତ କଥା,
ବ୍ରହ୍ମର ଗର୍ଭ ବିଚାର ଦିଅନ୍ତି ବାରତା ।
ଗମି ଗମି ନ ପାରନ୍ତି ବେଦ ବେଦାନ୍ତରେ,
ରହିଅଛି ବ୍ରହ୍ମ ପିଣ୍ଡ ବ୍ରହ୍ମାଣ୍ଡ ବାହାରେ ।
ସଦଗୁରୁ ପାଦ ପଦ୍ମ ସେବାଥିବ ଯାର,
ସେ ଅଣରୂପ ବ୍ରହ୍ମର ପାଇବ ଗୋଚର ।

## ନିରାକାର ଉବାଚ

ନିରାକାର ବୋଲୁଛନ୍ତି ଶୁଣିମା ଗୋସାଇଁ
ସେ ବ୍ରହ୍ମର ବର୍ଣ୍ଣ କାନ୍ତି କହ ମୋତେ ଫେଇ ।
କାଳିଆ କି ଗୋରା ଅଙ୍ଗ ସେ ବ୍ରହ୍ମ ଶରୀର,
ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ନିରକାର ।

## ଶ୍ରୀ ଗୁରୁଦେବ ଉବାଚ

ରୂପ ପ୍ରାଏ ଦିଶୁଅଛି ସାକ୍ଷାତେ ଅରୂପ,
ଦେହ ପ୍ରାଏ ଦିଶୁଅଛି ଅଦେହ ସ୍ୱରୂପ ।
ଜାଜ୍ଜୁଲ୍ୟ ପରାଏ ଦିଶେ ଜାଜ୍ଜୁଲ୍ୟ ନୁହନ୍ତି,
ବାଳ ଝୀନ ପ୍ରାୟେ ଦିଶେ ଆବାଲ୍ୟ ମୂରତି ।
ସଂଜ୍ୟୋତି ପରାଏ ଦିଶେ ଦଇବେ ଅଜ୍ୟୋତି,
ଜ୍ୟୋତି ଲିଙ୍ଗ ପ୍ରାଏ ଦିଶେ ସ୍ୱଭାବେ ଅଜ୍ୟୋତି ।
ଧବଳାଙ୍ଗ ଦିଶେ ନାହିଁ ଧବଳ ମୂରତି,
କାଳିଆ ଦିଶଇ ନୋହେ କାଳିଆ ସଂଜ୍ୟୋତି ।
ଶ୍ରୋଣିତ ଦିଶଇ ନୋହେ ଶ୍ରୋଣିତ ପରାଏ,
ପୀତ ବର୍ଣ୍ଣ ଦିଶେ ପୀତ ବର୍ଣ୍ଣହିଁ ନ ଧରେ ।
ରଙ୍ଗ ପ୍ରାଏ ଦିଶେ ନୋହେ ରଙ୍ଗର ଦୃର୍ଚ୍ଛନା,
ଶ୍ୱେତବର୍ଣ୍ଣ ଦିଶେ ନୋହେ ଶ୍ୱେତର ଅଚିହ୍ନା ।
କୁଙ୍କୁମ ପ୍ରାଏକ ଦିଶେ କୁଙ୍କୁମ ସଦୃଶ,
ହେଙ୍ଗୁଳ ପ୍ରାୟେକ ଦିଶେ ହେଙ୍ଗୁଳ ସଦୃଶ ।
ପିଙ୍ଗଳ ଦିଶଇ ନୋହେ ପିଙ୍ଗଳର କାଏ,
ଶାମଳ ଦିଶଇ ନୋହେ ଶାମଳ ପରାଏ ।
ଲୋହି ବର୍ଣ୍ଣ ଦିଶେ ନୋହେ ଲୋହିତ ସ୍ୱରୂପ,
ନୀଳବର୍ଣ୍ଣ ଦିଶେ ନୋହେ ନୀଳର ପ୍ରତାପ ।
ଗୌରବର୍ଣ୍ଣ ଦିଶେ ନୋହେ ଗଉର ମୂରତି,
ତାମ୍ରବର୍ଣ୍ଣ ଦିଶେ ନୋହେ ତାମ୍ରର ଆକୃତି ।
ଅରୁଣ ପରାଏ ଦିଶେ ନିଅରୁଣ କାନ୍ତି,
ଚନ୍ଦ୍ରପ୍ରାଏ ଦିଶେ ନୋହେ ଚନ୍ଦ୍ରମା ମୂରତି ।

ଅନଳ ପରାଏ ଦିଶେ ନିଅନଳ ତେଜା,
ଶୋଭା ସୁନ୍ଦର ଦିଶୁଛି ନାହିଁ ଭାବ ମଜା ।
ତମ୍ଭାପ୍ରାଏ ଦିଶୁଅଛି ତମ୍ଭା ନୋହେ ଦେଖ,
ରୂପା ପ୍ରାଏ ଦିଶେ ନୋହେ ରୂପା ଜକ ଜକ ।
ସୁନା ପରା ଏକ ଦିଶେ ସୁନାରୁ ଅତୁଳ,
ହୀରା ପରାଏକ ଦିଶେ ହୀରାରୁ ଅମୂଲ୍ୟ ।
ମୋତି ପ୍ରାଏ ଦିଶେ ନୋହେ ମୋତିର ଝଟକ,
ମଣିରତ୍ନ ଦିଶେ ନୋହେ ମାଣିକ୍ୟ ଝଟକ।
ସ୍ଫଟିକ ପରାଏ ଦିଶେ ସ୍ଫଟିକେ ନ ଯାଏ,
ବଇଡୁର୍ଯ୍ୟ ପ୍ରାଏ ଦିଶେ ବଇଡୁର୍ଯ୍ୟ ନୋହେ ।
ବ୍ରହ୍ମ ଜ୍ୟୋତି ପ୍ରାଏ ଦିଶେ ବ୍ରହ୍ମର ଅଗ୍ରଣୀ,
ପଦ୍ମମଣି ପ୍ରାଏ ଦିଶେ ପଦ୍ମରାଗ ଜିଣି ।
ପରଶୁ ପଥର ପ୍ରାଏ ଦିଶଇ ଶୋଭିତ,
ପରଶୁ ପଥର ନୋହେ ବ୍ରହ୍ମ ଆଲୋକିତ ।
ଦର୍ପଣ ପ୍ରାଏ ଦିଶଇ ଛାୟାର ଝଲକ,
ଛାୟା ପ୍ରାଏ ନ ଦିଶଇ ବ୍ରହ୍ମ ନିଷ୍କଳଙ୍କ ।
ଆକାର ପ୍ରାୟ ଦିଶଇ ଆକାର ତା ନାହିଁ,
ଆକାଶ ବୋଇଲେ ବ୍ରହ୍ମ ମହାଶୂନ୍ୟ ଦେହୀ ।
ଧୂମ୍ରବର୍ଣ୍ଣ ଦିଶେ ନୋହେ ଧୂମାନ୍ତ ଶରୀର,
ନାମ ପ୍ରାଏ ଦିଶେ ନୋହେ ଅନାମ ଆକାର ।
ଅକ୍ଷର ପରାଏ ଦିଶେ ନୋହେ ମାତ୍ରାକ୍ଷର,
ବର୍ଣ୍ଣନା ବୋଇଲେ ବର୍ଣ୍ଣ ନୋହେ ରୂପ ତାର ।
ଜ୍ୱାଳା ପ୍ରାଏ ଦିଶୁଅଛି ନୋହେ ଜ୍ୱାଳା ତେଜେ,
ଆପ ପ୍ରାଏ ଦିଶେ ଅଣଆପରେ ବିରାଜେ ।
ପୃଥ୍ୱୀ ପରାଏକ ଦିଶେ ପୃଥିବୀ ସେ ନୋହେ,
ପୃଥ୍ୱୀ ଉପରେ ପୃଥ୍ୱୀରେ ସ୍ଥାନ ମାଡ଼ି ରହେ ।
ଶେଷ ପ୍ରାଏ ଦିଶୁଥାଇ ଅଶେଷ ଅଟଇ,
ଅନନ୍ତ ବୋଇଲେ ଆଦି ଅନ୍ତ ନ ମିଳଇ ।
ପବନ ପ୍ରାଏ ଦିଶଇ ନୁହଇ ପବନ,

 

ମୀନ ପରାଏକ ଦିଶେ ନୁହଇ ସେ ମୀନ ।
ପାଣି ପରାଏକ ଦିଶେ ନୁହଇ ସେ ପାଣି,
ଚିହ୍ନିଲା ପରାଏ ଦିଶେ ନୁହଇ ସେ ଚିହ୍ନି ।
ଆଣିଲା ପରାଏ ଦିଶେ ନୁହଇ ସେ ଆଣି,
ଭଣିଲା ପରାଏ ଦିଶେ ନୁହଇ ସେ ଭଣି ।
ଲେଖିଲା ପରାଏ ଦିଶେ ନୁହଇ ସେ ଲେଖି,
ଯୋଖିଲା ପରାଏ ଦିଶେ ନୁହଇ ସେ ଯୋଖି ।
ପକ୍ଷୀ ଜନ୍ତୁ ପ୍ରାଏ ଦିଶେ ନୁହଇ ସେ ପକ୍ଷୀ,
ଦେଖିଲା ପରାଏ ଦିଶେ ନୁହଇ ସେ ଦେଖି ।
ରହିଲା ପରାଏ ଦିଶେ କେବେହେଁ ନ ରହେ,
ଧରିବି ବୋଇଲେ ବ୍ରହ୍ମ ଧରାହିଁ ନ ଦିଏ ।
ଥୋଇଲା ପରାଏ ଦିଶେ ଥୋଇଲାର ନୋହେ
ଶୋଇଲା ପରାଏ ଦିଶେ କେବେହେଁ ନ ଶୁଏ ।
ବାନ୍ଧିଲା ପରାଏ ଦିଶେ ନୁହଇ ସେ ବନ୍ଧା,
ନିନ୍ଦା କରୁଥିଲେ ତାକୁ ନ ଲାଗଇ ନିନ୍ଦା ।
ମଲା ପ୍ରାଏ ଦିଶୁଥାଇ କେବେହେଁ ନ ମରେ,
ଉଣା ଦିଶୁଥାଇ ସର୍ବ ସାମାନ୍ୟ ଉପରେ ।
ଗୋଟା ପ୍ରାଏ ଦିଶୁଥାଏ ନୁହଇ ସେ ଗୋଟା,
ଦୁଇ ପ୍ରାଏ ଦିଶୁଥାଇ ଚିହ୍ନିଲେ ଏକଟା ।
ଗୁଆ ପ୍ରାଏ ଦିଶୁଥାଇ ନୁହଇ ସେ ଗୁଆ,
ପୁରୁଷ ପ୍ରାଏ ଦିଶୁଛି ନବତନୁ ନୂଆ ।
ଲମ୍ବ ପ୍ରାଏ ଦିଶୁଅଛି ନୁହଇ ସେ ଲମ୍ବ,
ଦୀର୍ଘପ୍ରତି ଦିଶେ ନୋହେ ଓସାର ଆରମ୍ଭ ।
ବେଦାନ୍ତ ପ୍ରାଏ ଦିଶୁଛି ନୁହଇ ବେଦାନ୍ତ,
ଅର୍ଷିତ ପ୍ରାଏ ଦିଶୁଛି ନୁହଇ ଅର୍ଷିତ ।
ପାଦ ପ୍ରାଏ ଦିଶୁଅଛି ନୋହେ ପାଦବନ୍ଧ,
ପୁଷ୍ପ ପ୍ରାଏ ଦିଶୁଅଛି ନୋହେ ବାସ ଗନ୍ଧ ।
ମେଘ ପ୍ରାଏ ଦିଶୁଅଛି ନୋହେ ମେଘ ଅନ୍ଧା,
ଧାରା ପ୍ରାଏ ଦିଶୁଅଛି ନୋହେ ଜଳବୁନ୍ଦା ।

ବିନ୍ଦୁ ପ୍ରାଏ ଝଟକୁଛି ନୁହଇ ସେ ବିନ୍ଦୁ,
ମଧୁ ପ୍ରାଏ ଦିଶୁଅଛି ନୁହଇ ସେ ମଧୁ ।
ଝର ପ୍ରାଏ ଦିଶୁଅଛି ନୋହେ ଅରବିନ୍ଦ,
ସୁଧା ପ୍ରାଏ ଦିଶେ ନୋହେ ସୁଧା ମକରନ୍ଦ ।
ମନୁଷ୍ୟ ପ୍ରାଏ ଦିଶୁଛି ନୁହଇ ମନୁଷ୍ୟ,
ପୁରୁଷ ପ୍ରାଏ ଦିଶୁଛି ନୁହଇ ପୁରୁଷ ।
କନ୍ଦର୍ପ ପ୍ରାୟେକ ଦିଶେ ନୁହଇ କନ୍ଦର୍ପ,
କୋଟିଏ କାମରୁ ଜିଣି ଅଲଗା ସେ ରୂପ ।
ବୃକ୍ଷ ପ୍ରାଏ ଦିଶୁଅଛି ନୋହେ ବୃକ୍ଷ ଗୋଟା,
ଝାଡ଼ି ବନ ପ୍ରାଏ ଦିଶେ ନୋହେ ଝାଟଲଟା ।
ଓଦା ପ୍ରାଏ ଦିଶୁଅଛି ନୁହଇ ସେ ଓଦା,
ଗଦା ପ୍ରାଏ ଦିଶୁଅଛି ନୁହଇ ସେ ଗଦା ।
ଶୁଖା ପ୍ରାଏ ଦିଶୁଅଛି ନୁହଇ ସେ ଶୁଖା,
ଏକ ହୋଇ ଥାଇ ତାର ନାହିଁ କିଛି ଶାଖା ।
ପୋଡ଼ା ପ୍ରାଏ ଦିଶୁଅଛି ନୁହଇ ସେ ପୋଡ଼ା,
ଏକାମ୍ବର ପ୍ରାଏ ଦିଶେ ନୁହଇ ସେ ଛିଡ଼ା ।
ବାରଣ ପ୍ରାଏକ ଦିଶେ ନୁହଇ ସେ ବାଇ,
ବଡ଼ାଇ ଚତୁରେ ଅଛି ଅଣରୂପ ହୋଇ ।
କନ୍ଦି ବେଢ଼ା ପ୍ରାଏ ଦିଶେ ନୋହେ କନ୍ଦି ବେଢ଼ା,
ଓଲୁଙ୍ଗ ପ୍ରାଏକ ଦିଶେ ନୁହେ କାଲି ଜଡ଼ା ।
ଅନ୍ଧା ପ୍ରାଏ ଦିଶୁଥାଏ ନୁହେ ନେତ୍ରା ଅନ୍ଧା,
ଫନ୍ଦା କଲା ପ୍ରାଏ ଦିଶେ ନକରଇ ଫନ୍ଦା ।
ଧୂଳିଆଧୂସର ଦିଶେ ନୁହଇ ଧୂଳିଆ,
ମେଳଛ ପ୍ରାଏକ ଦିଶେ ନୁହଇଁ ମୁଳିଆ ।
କାଳ ଭୟ ପ୍ରାଏ ଦିଶେ ନୁହେ କାଳରାହୁ,
କିସ କହିବି ମହିମା ବ୍ରହ୍ମ ମହାବାହୁ ।
ସଦଗୁରୁ ପ୍ରାଏ ଦିଶେ ନୁହେଁ ସଦ୍‌ଗୁରୁ,
ଶରଣ ବୋଇଲେ ଦୟା ହୁଏ ଶ୍ରୀପୟରୁ ।
ଗୁରୁ ଆଜ୍ଞା ଗରେଷ୍ଟରେ ବାନ୍ଧିଅଛି ପଦ,

ଏକ ବ୍ରହ୍ମ ଅଙ୍ଗେ ଏହୁ ଚଳିବ ସମ୍ପଦ ।
ଜ୍ଞାନୀ ଜନମାନେ ମୋର ନ ଧରିବ ଦୋଷ,
ବ୍ରହ୍ମ-ନିରୂପଣ-ଗୀତା ଭଣେ ଭୀମଦାସ ।

ଇତି ଶ୍ରୀ ବ୍ରହ୍ମନିରୂପଣ ଗୀତା ସୁଜନଜନହିତା,
ଗୁରୁଶିଷ୍ୟ ସମ୍ବାଦେ ଅଲେଖ ବ୍ରହ୍ମରୂପ ବର୍ଣ୍ଣନେ
ଏକଅଙ୍ଗ ନ୍ୟାୟବିଚାରଣେ ଭେଦାଭେଦ
କଥନେ ନାମ ଚତୁର୍ଥୋଽଧ୍ୟାୟଃ ।

## ପଞ୍ଚମ ଅଧ୍ୟାୟ

### ନିରାକାର ଉବାଚ

ନିରାକାର ବୋଇଲେ ଶୁଣିବା ସଦଗୁରୁ,
ଯାହା ଆଜ୍ଞା ହେଲା ପ୍ରଭୁ ସୁଧା ଶ୍ରୀଛାମୁରୁ ।
ଉଚିତ ପ୍ରମାଣ କଥା ସତ୍ୟ ଏ ବଚନ,
ମହା ଦୁରୁଗମ ଅଟେ ବ୍ରହ୍ମନିରୂପଣ ।
ଅଲେଖ ବ୍ରହ୍ମର ପଦ ଚାରିଯୁଗେ ସତ୍ୟ,
ପୂର୍ବର ସୁକୃତ ଥିଲେ ଲଭିବି ସେ ପଥ ।
ନର ସୁର ଦେବତା ଜାଣିବେ ଅବା କାହିଁ,
ବିଷ୍ଣୁ ଲୋକ ହୋଇଲେ ଭେଦାନ୍ତ ଜଣା ନାହିଁ।
ବିଷ୍ଣୁ ଆଦି ହେଲେ ମାୟା ବିଷୟରେ ବନ୍ଦି,
ଆପଣା କର୍ମରେ ଆପେ ହେଉଥାଇ ଧନ୍ଦି।
ବେନି କର୍ଣ୍ଣେ ଶୁଣି ମନେ ପାଇଲି ପରତେ,
ଆଉ କଥାଏ ସଂଶୟ ଅଛି ମୋର ଚିତ୍ତେ ।
ଅଲେଖ ପୁରୁଷ ବ୍ରହ୍ମ ନିଷ୍କାମ ନିର୍ଗୁଣ,
ଅଛି କି ନ ଅଛି ତାଙ୍କ ପାଦପାଣି ଚିହ୍ନ ।
ଇନ୍ଦ୍ର ଅଣ୍ଡ ତାହାଙ୍କର ଅଛିଟିକି ନାହିଁ,
ଏକଥା ମୋତେ ବୁଝାଇ କହିବ ଗୋସାଇଁ ।
କଟି ପୃଷ୍ଠ ଉଦର ଅଛି କି ନାହିଁ କହ,

ଶୁଣିକରି ସନ୍ତୋଷ ହୋଇବ ମୋର ଦେହ ।
ବେନିହସ୍ତ କର ପଖା କେମନ୍ତ ପ୍ରକାର,
ବିସ୍ତାରିଣ ମୋତେ ସେ କହିବ ଜ୍ଞାନ ସାର ।
କର୍ଣ୍ଣ ଚକ୍ଷୁ ଜିହ୍ୱା ନାସା ଅଛିଟିକି ନାହିଁ,
ଉଠି ନିରାକାର ଗୁରୁ ପୟରେ ନମଇଁ ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଲେ ବାବୁ ଉଠ ନିରାକାର,
ଚିହ୍ନଟ କରି କହିବା ବ୍ରହ୍ମର ଶରୀର ।
ପାଦପାଣି ନାହିଁ ତାଙ୍କ ପାଦପାଣି ଅଛି,
ବ୍ରହ୍ମଭେଦ ଜ୍ଞାନୀଜନେ ଅନୁସରି ଅଛି ।
ନଖକୋଣ ନାହିଁ ତାଙ୍କ ଲକ୍ଷ କୋଣ ପନ୍ତି,
ଆମେଦନୀ ମାଳମାନେ ଲୁଚି ରହୁଛନ୍ତି ।
ଅଙ୍ଗୁଷ୍ଠି ନୁହଇ ଅଛି ଅଙ୍ଗୁଷ୍ଠି ଆକାର,
ନିରୋପି ଚାହିଁଲେ ଦିଶେ ଶୂନ୍ୟର ଆକାର ।
ଗଣ୍ଠି ନାହିଁ ମୁଠି ନାହିଁ ଗଣ୍ଠି ମୁଠି ଅଛି,
ଆୟ କରିବି ବୋଇଲେ ଅନ୍ତ ନ ମିଳୁଛି ।
ଆଣ୍ଠୁନଳୀ ନାହିଁ ତାଙ୍କ ଅଛି ଆଣ୍ଠୁନଳ,
ପାଶକୁ ଗଲେ ବୋଇଲେ ଦୂରାନ୍ତକୁ ଚଳ ।
ଶିର ସୂତ୍ର ନାହିଁ ତାଙ୍କ ଶିର ସୂତ୍ର ଅଛି,
ବାରି ନୁହଇ ଏକାନ୍ତ ମିଶି ଯାଇଅଛି ।
ବେନି ଜାନୁ ଅଛି ତାଙ୍କ ନାହିଁ ବେନି ଜାନୁ,
ଜାନୁ ବୋଇଲେ କୋଟିଏ ବହିଯାଏ ମନୁ ।
ଗୁହ୍ୟ ଦ୍ୱାର ନାହିଁ ତାଙ୍କ ଗୁହ୍ୟ ଦ୍ୱାର ଅଛି,
ନିଦ୍ରା ବ୍ରହ୍ମ ଶରୀର ସେ ଫୋଡ଼ା ନାହିଁ କିଛି ।
ଇନ୍ଦ୍ରି ଅଣ୍ଡ ନାହିଁ ତାଙ୍କ ଇନ୍ଦ୍ରି ଅଣ୍ଡ ଅଛି,
ନିଅଗ୍ନି ବ୍ରହ୍ମ ପୁରୁଷ ନାମ ବୋଲାଉଛି ।
ଉଦରହିଁ ନାହିଁ ତାଙ୍କ ଉଦରହିଁ ଅଛି,

ମଳମୂତ୍ର ଆଚ୍ଛାଦାନ ନୁହଇ ସେ କିଛି ।
କଟି ଅଣ୍ଟା ନାହିଁ ତାଙ୍କ ଅଛି କର ପଖା,
ଗୋଟି ସବୁଟି ନୁହଇ ସବୁଆଡ଼େ ଏକା ।
କର ହସ୍ତ ନାହିଁ ତାର କର ପଖା ଅଛି,
ଲକ୍ଷେ ଯୋଜନକୁ ଭୁଜ ବଢ଼ାଇ ଦେଉଛି ।
ଅଙ୍ଗ ରୁମ ନାହିଁ ତାଙ୍କ ଅଙ୍ଗ ରୁମ ଅଛି,
ଗୋଟାଏ ଖସିଲେ ଗୋଟି ବ୍ରହ୍ମାଣ୍ଡ ହେଉଛି ।
ଓଷ୍ଠ ପାଟି ନାହିଁ ତାଙ୍କ ଓଷ୍ଠ ପାଟି ଅଛି,
କ୍ଷୀର ନୀର ପବନ ଆଧାର ନାହିଁ କିଛି ।
ଦନ୍ତ ଜିହ୍ୱା ନାହିଁ ତାଙ୍କ ଦନ୍ତ ଜିହ୍ୱା ଅଛି,
ନ ଚାଖି ନ ଖାଇ ସବୁ ସୁଆଦ ଜାଣୁଛି ।
ନାସା ପୁଡ଼ା ନାହିଁ ତାଙ୍କ ନାସା ପୁଡ଼ା ଅଛି,
ଫୁଲ ଚନ୍ଦନ ବାସନା ନ ଘେନଇ କିଛି ।
ବେନି ଚକ୍ଷୁ ନାହିଁ ତାଙ୍କ ଅଛି ବେନି ଚକ୍ଷୁ,
ରୂପ ବୟସ ସୁନ୍ଦର ନେତ୍ରରେ ନ ଦେଖୁ ।
ବେନି କର୍ଣ୍ଣ ନାହିଁ ତାଙ୍କ ଅଛି ବେନି କର୍ଣ୍ଣ,
ଶୁଣି ନ ଶୁଣିଲା ପ୍ରାୟ ହୁଅନ୍ତି ମଉନ ।
ମୁଖର ଯୋଗାଡ଼ ନାହିଁ ଅଛି ତାଙ୍କ ମୁଖ,
ବାରି ନୁହଇ ସଙ୍କୁନ ଅନାଦି ଅଲେଖ ।
ଅଲେଖ ନୁହନ୍ତି ସେହୁ ଅଟନ୍ତି ସେ ଲେଖ,
ତଳକୁ ନ ଆସନ୍ତି ଶୂନ୍ୟରେ ଥିଲା ଲୋକ ।
ଅନାଦି ନୁହନ୍ତି ସେହୁ ଅଟନ୍ତି ସେ ଆଦି,
ଅନ୍ତ ନ ପାବନ୍ତି କୂଳ ଲୋଡ଼ିଲେକ ଭେଦି ।
ଅବର୍ଣ୍ଣ ନୁହନ୍ତି ସେ ଯେ ଅବର୍ଣ୍ଣ ଅଟନ୍ତି,
ଅକ୍ଷର ମାତ୍ରା ଶବଦ କାହିଁ ନ ମିଶନ୍ତି ।
ଅବର୍ଣ୍ଣ ନୁହନ୍ତି ସେ ଯେ ଅଛି ତାଙ୍କ ବର୍ଣ୍ଣ,
ଯେଉଁ ବିଧାନେ ଅଛନ୍ତି ମହାଶୂନ୍ୟ ଶୂନ୍ୟ ।
ଅକ୍ଷଏ ନୁହନ୍ତି ସେ ଯେ ଅଟନ୍ତି ଅକ୍ଷଏ,
କାଳ ମରଣ ଅଙ୍ଗକୁ କେବେହେଁ ନଛୁଏଁ ।

ଅଶ୍ରୁତି ନୁହନ୍ତି ସେ ଯେ ଅଛି ତାଙ୍କ ଶ୍ରୁତି
ଭେଦାଭେଦ କଲେ ନ ଟଳଇ ଚିତ୍ତ ମତି ।
ଅନାମିକ ନୁହନ୍ତି ସେ ଅଛି ତାଙ୍କ ନାମ,
କଲମ ନ ଚଳେ ନାହିଁ ଯାର ବ୍ରହ୍ମଜ୍ଞାନ ।
ନିଶବଦ ନୁହନ୍ତି ସେ ହେଉଛି ଶବଦ,
ପବନର ଭେଦ ନାହିଁ ଅଟନ୍ତି ତବଦ ।
ନାଦ ବିନ୍ଦୁ ନାହିଁ ତାଙ୍କ ଅଛି ନାଦବିନ୍ଦୁ,
କାତ ଯେ ବୁଡ଼ଇ ନାହିଁ ଯେସନେକ ସିନ୍ଧୁ ।
ନିର୍ବେଦ ନୁହନ୍ତି ସେ ଯେ ଅଟନ୍ତି ସେ ବେଦ,
ବିଚାରି ବୁଝିଲେ ଏ ବହୁତ ଅଧାଧମନ୍ଦ ।
ନିଗମ ନୁହନ୍ତି ସେ ଯେ ଅଟନ୍ତି ସେ ଗମ୍ୟ,
ସେ ଭିତରେ ପଶିବାକୁ କେହିଁ ନାହିଁ କ୍ଷମ ।
ଅଗମ୍ୟ ନୁହନ୍ତି ସେ ଯେ ଅଛି ଗମାଗମ,
ସେ ପଥରେ ଗଲେ ବଣା ହୋଇଯିବ ଯମ ।
ଦୁର୍ଗମ ନୁହନ୍ତି ସେ ଯେ ଅଛି ତହିଁ ଦୃଶ୍ୟ,
ବହୁତ ନିବିଡ଼ ସନ୍ଧି ନ ପାଏ ସାହସ ।
ଅଣଶେଷ ନୁହନ୍ତି ସେ ଅଛି ତାଙ୍କ ଶେଷ,
ଠିକ କରିବି ବୋଇଲେ ନୁହନ୍ତି ସେ ବଶ ।
ନିଷ୍କାମ ନୁହନ୍ତି ସେ ଯେ ଅଛି ତାଙ୍କ କାମ,
ବୁଦ୍ଧି ନସ୍ଫୁରଇ କିସ ଦେବି ଅନୁପମ ।
ଅକଳଣା ନୁହନ୍ତି ସେ ଅଛି ତାଙ୍କ କଳ
ବ୍ରହ୍ମକୁ ଦେଖିବ ଯେବେ ଫିଟାଅ କୁଲୁପ ।
ନିଗୂଢ଼ ନୁହନ୍ତି ସେ ଯେ ମେଲା ଦିଶୁଥାଇ,
ସେଠାବରେ ସୁଚି ମାଛି ପରୀକ୍ଷ ନୁହଇ ।
ଅଣବ୍ରହ୍ମଠାରୁ ତହୁଁ ସରେ ବ୍ରହ୍ମଜ୍ଞାନ,
ଅଣଶେଷ ରୂପ ରୂପ ଦିଶୁଅଛି ଭିନ୍ନ ।
ହସ୍ତେ ଆଉଁସିଲେ ବ୍ରହ୍ମ ପିଛୁଳି ପଡୁଛି,
ଅତି ସୁକୁମାର ବ୍ରହ୍ମ ଚିକ୍କଣ ହୋଇଛି ।
ତୁଳା ପ୍ରାଏ ଚିକ୍କଣ ହୋଇଛି ବ୍ରହ୍ମଦେହ,

ଲୁହୁ ଲୁହୁ ଲୁହୁ ସିହ୍ନା ଅଟଇ ସେ ପୁଅ ।
ଯୋକ ପରାଏ କୋମଳ ହୋଇଛି ଶ୍ରୀଅଙ୍ଗ,
ତ୍ରାସ ସହି ନ ପାରିଣ ସୂକ୍ଷ୍ମ ବ୍ରହ୍ମଲିଙ୍ଗ ।
ପାଣି ପରାଏ କୋମଳ ହୋଇଛି ଶରୀର,
କ୍ଷୀର ଦଧିରୁ ପାତଳ ଅତି ମନୋହର ।
ସୋରିଷ ପୁଷ୍ପ ପରାଏ ହୋଇଛି କୋମଳ,
ସାଉଁଟି ଶାଙ୍କୁଳି ଥିଲେ ନୁହଇ ଶାମିଳ ।
ମୀନ ପ୍ରାୟେ ନାଳୁଆ ହୋଇଛି ତାଙ୍କ ଦେହ,
ମୁଠା କରି ବେନି ହସ୍ତେ କେ ଧରିବ କହ ।
ଲହୁଣୀ ପୋଛଣୀ ପ୍ରାଏ ହୋଇଛି ଚିକ୍କଣ,
ପୂରି ରହିଅଛି ଅଙ୍ଗ ସର୍ବତ୍ର ସମ୍ପୂର୍ଣ୍ଣ ।
ପୂର୍ଣ୍ଣାନନ୍ଦ ପୁରୁଷ ଅଲେଖ ଅବଧୂତ,
ନିଜ ବ୍ରହ୍ମ ସାଗର ଅତିହିଁ ଅଦଭୁତ ।
ସେ ଯେଉଁ ଅଲେଖ ନିଜ ବ୍ରହ୍ମର ବୃତ୍ତାନ୍ତ,
ଚାରିଯୁଗେ ଯୁଗାନ୍ତରେ ହୋଇଛି ଗୁପତ ।
ଅମନ ଦଣ୍ଡ ଆସ୍ଥାନ ଉପରେ ବିଜୟେ,
ଅଣାକାର ବ୍ରହ୍ମଦ୍ୟୁତି ଯୁଗ କହି ନୁହେ ।
ଗୁରୁଦେବ କହୁଛନ୍ତି ଶିଷ୍ୟଙ୍କ ଆଗର,
ଆସ୍ଥାନ ବିଧାନ କଥା ଶୁଣ ନିରାକାର ।
ଅଣସଣା ଅଣଭିଣା ମାଟି ଅଛି ତହିଁ,
ଆଣପାଣି ଅଣ ହସ୍ତେ ପାଗ ଉତୁରଇ ।
ଅଣପିର୍ଚ୍ଚ ଅଣଇଟା ବସିଅଛି ତହିଁ,
ଅଣଗୋଟା ଅଣପଟା ପୂରିଅଛି ହୋଇ ।
ଅଗଢ଼ାରେ ଅପୋଡ଼ାରେ ହୋଇଛି ତିଆରି,
ଅଣଅଠା ଅଣଚୂନ ଲାଗିଛି ତହିଁର ।
ଅଣଛଞ୍ଚା ଅଣପୋଛା ହୋଇଛି ଶପୋଟ,
ଅଣଘଷା ଅଣଲିପା ହେଉଛି ଚୌପଟ ।
ଅଣବସା ଅହିଂସାରେ ପଡ଼ିଅଛି କାନ୍ଥ,
ଅକରାରେ ଅଟରାରେ ହୋଇଛି କେମନ୍ତ ।

ଅପାବଛେ ଅଣଛାଚେ ହୋଇଅଛି ଉଚ୍ଚ,
ଅବେଠିଆ ଅବାଠିଆ ଲାଗି ସେ ସୁସଞ୍ଚ ।
ଅମାପରେ ଅଶ୍ରୁତିରେ ତୋଳିଛି ମଣ୍ଡପ,
ଅଣଦୀର୍ଘ ଅଣପ୍ରତି ହୋଇଅଛି ଦେଖ ।
ଅଣମେଢ଼ା ଅଣମେଢ଼ା ଦଉଭୋମି ଘର,
ଅଣଦୀର୍ଘ ପ୍ରତି ଅଛି ଅଣ ଚଉଦ୍ୱାର ।
ଅଣକବାଟରୁ ଅଣକିଳିଣି ତ ଖଞ୍ଜା,
ଅଣଲୁହା କବାଟ ଲାଗିଛି ଦିବ୍ୟ ପୁଞ୍ଜା ।
ଅଣଖାତେ ଅଣଖୁମ୍ବ ପକାଉଛି ଖେପା,
ଅଣଖାପେ ଅଣଶ୍ରେଣୀ ହୋଇଅଛି ନପା ।
ଅଣଧାରା ଅଣଓରା ପଡ଼ିଅଛି ତହିଁ,
ଅଣସୂତ୍ରେ ଅଣଚିତ୍ରେ କାମ ଅଛି ହୋଇ ।
ଅମ୍ବାକେରୀ ଅପାଚେରି ବଢ଼ାଇଛି ପରେ,
ଅକାଟ ଆକଟ ବାରି ନୁହଇ ତହିଁରେ ।
ଅଣରୁଅ ଅଣଲଇ ଆଣ୍ଟେ ଅଛି ଭିଡ଼ି,
ଅଣବତା ଅନୁମାନେ ଆଡ଼େ ଆଡ଼େ ଯୋଡ଼ି ।
ଅଣଚିରା ଅଣମୋରା ଲଗାଇଛି ପନ୍ତି,
ଅଣଲୋକ ଇଚ୍ଛାସୁଖେ ହୋଇଅଛି ବେନ୍ତି ।
ଅପଟଣୀ ଓଲଟଣୀ ଖଞ୍ଜି ବାୟବତା,
ମନ୍ଦିର ବୃଛନା ଦିଶେ ଯେସନେକ ଛତା ।
ଅନ୍ୟପରେ ମନ୍ଦିରକୁ ଛାଏଣି କରିଛି,
ଛାଏଣିର ଉପରେଣ ଘୋଡ଼ାଇ ହୋଇଛି ।
ମନ୍ଦିରକୁ ଚାହିଁ କେତେ ଦେବି ମୁଁ ଉପମା,
ରଙ୍ଗିଣ ଧବଳ ଦେହ ଦିଶଇ ମଧ୍ୟମା ।
ଅନାଦି ମଣ୍ଡଳେ ଆପେ ଆକାରରେ ଘର,
ଆପଣା ନିଜ ମନ୍ଦିରେ ଆପେ ବୀର ବର ।
ଶୂନ୍ୟ ଧ୍ୱନି ଜାଗିଅଛି ଅନାହତ ନାମ,
ଅଗ୍ନିର ବହୁତ ତ୍ରାସ ନୁହଇ ଗରମ ।
ଶୂନ୍ୟଜଳ ବରଷିଛି ନାହିଁ ଜକ ଓଦ,

କାଶ ନଶମ ନକରେ ନୁହଇ ଶବଦ ।
ଶୂନ୍ୟ ହେମ ଶିଶିର ବରଷା କରୁଅଛି,
ଉଷୁମ ହୋଇଛି ଘର ଶୀତ ନ କରୁଛି ।
ଶୂନ୍ୟ କାଷ୍ଠ ପୋଡୁଅଛି ଅଙ୍ଗାର ନୋହୁଛି,
ପାଉଁଶ ନ ପଡ଼ି ରାତ୍ର ଦିବସ ଜଳୁଛି ।
ଶୂନ୍ୟରୁ ଘୃରୁଚି କୁଣ୍ଡେ ପଡୁଛି ଆହୁତି,
ସମିଧ ସକାଶୁ ଧ୍ୱନି ରହିଅଛି ଚେତି ।
ଶୂନ୍ୟଗୁଡ଼ ମଧୁ ପଡୁଅଛି ଅନୁକ୍ଷଣ,
ଅଗ୍ନିର ହୁତାଶ ଉଠୁଅଛି ଘନ ଘନ ।
ଶୂନ୍ୟବତୀ ଜଳୁଥାଇ ତଇଳ ନଥାଇ,
ଆଲୁଅ ଦିଶୁଛି ପୁର ଧୂମାନ୍ତ ନୁହଇ ।
ଶୂନ୍ୟେ ଭ୍ରମଣ କରୁଛି ଅନାମିକା ଯୋଗୀ,
ଦୁଃଖ ପୀଡ଼ା ନାହିଁ ଯୋଗୀ ଯୁଗାନ୍ତ ନିରୋଗୀ ।
ଶୂନ୍ୟରେ ଚାଲୁଅଛନ୍ତି ଅଲେଖ ପୁରୁଷ,
ଅଚେତାରେ ଉଜାଗର ହୁଅଇ ପ୍ରକାଶ ।
ଶୂନ୍ୟ ଉଭା ଆସନରେ କରଇ ଆସନ,
ଅଙ୍ଗେ କଳଙ୍କ ନ ଲାଗେ ଅମୂଲ୍ୟ ରତନ ।
ଅସାଧନାରେ ପବନ ବହଇ ଶୀତଳ,
ମଳୟ ବସନ୍ତ ନୋହେ ଅତି ପରିମଳ ।
ଅସାଧାନା ଶବଦ ହେଉଛି ସେହିଠାରୁ,
ଉତ୍ତର ଦେଉଛି ବ୍ରହ୍ମ ଭିତର ଗମ୍ଭୀରୁ ।
ଅସାଧନା ଭୁବନ ସେ ନ ଟଳଇ କିଛି,
ଭିନ୍ନ ଭିନ୍ନ କରି ଶବ୍ଦ ପକାଉଛି ବାଛି ।
ଅସାଧନା ବ୍ରହ୍ମ ସେ ଯେ ଅମନ ପୁରୁଷ,
ମହାଧରବନ୍ତ ସ୍ୱାମୀ ନାହିଁ ନା ପୁରୁଷ ।
ଅସାଧନା ଭେଦ ମାର୍ଗ ଅଗୋଚର କଥା;
ଅଶେଷ ଭୁବନ ସ୍ୱାମୀ ବ୍ରହ୍ମାଣ୍ଡ କରତା ।
ଅସାଧନା ଗତି ମୁକ୍ତି ଅଟଇ ସେ ପାଦ,
କେହି ପଶିନାହିଁ ବ୍ରହ୍ମ ସାଗର ଅଗାଧ ।

ଅସାଧନା ସିଦ୍ଧାନ୍ତ ଯେ ସଦଜ୍ଞାନ ହେତୁ,
ତାଙ୍କଠାରେ ରହିଛି ସକଳ ଚେତା ହେତୁ ।
ଅସାଧନା ପୁରୁଷ ସେ ସାକ୍ଷାତେ ଠାକୁର,
ଅଲଗା ହୋଇ ରହିଛି ମହାଶୂନ୍ୟ ପୁର ।
ଅସାଧନା ଦୀକ୍ଷା ସେ ଯେ ବହୁତ କଠିଣ,
ଅନୁସରି କରିବି ବୋଲିବ କେଉଁ ଜଣ ।
ଅସାଧନା ଦର୍ଶନ ମୁଖରେ କହି ନୋହେ,
ନିଅଇଁଠା ପଦ ସେ ମାଡ଼ଇ ବଡ଼ଭୟେ ।
ଏକ ବ୍ରହ୍ମ ଧର୍ମ ଏକ କର୍ମ ଉଦେ,
ଏକ ପାଦ ଏକ ଭେଦ ଏକ ବାକ୍ୟ ପଦେ ।
ଏକ ସ୍ଥିତା ଏକ ଦଣ୍ଡା ଏକାହ ମୂରତି,
ଏକ ଧ୍ୟାନ ଏକ ଜ୍ଞାନ ବ୍ରହ୍ମର ବିଭୂତି ।
ଏକବାର ଏକ ଦ୍ୱାର ଏକାନ୍ତ ଭୋଜନ,
ଅବିକାର ନିର୍ବିକାର ସେ ବ୍ରହ୍ମ ନିର୍ଗୁଣ ।
ଏକ ସତ୍ୟ ଏକ ବ୍ରତ ଏକ ଦୃଢ଼ବାଣୀ,
ଏକ ନାମୀ ଏକ ସ୍ୱାମୀ ଏକାନ୍ତରେ ଚିହ୍ନି ।
ଏକ ନ୍ୟାଏ ଏକ ରାଏ ଏକ ତାର ପନ୍ଥା,
ଏକ ଚିତ୍ତ ଏକ ହିତ ଅଗୋଚର କଥା ।
ଏକ ତାତ ଏକ ବ୍ରତ ଏକ ତାର ଫନ୍ଦା,
ଏକଦୃଢ଼ ଏକବ୍ରତ ବାସସଏ ଫନ୍ଦା ।
ଏକ ପିତା ଏକ ମାତା ଏକ ଗୁରୁ ଶିଷ୍ୟ,
ଏକ ମାନ ଏକ ମାନ୍ୟ ଏକ ଭାବେ ବଶ୍ୟ ।
ଏକ ମୂଳ ଏକ ଠୂଳ ଏକ କୂଳ ତହିଁ,
ଏକ ସୂତ୍ର ଏକ ଛତ୍ର ଏକ ପୁତ୍ର ସେହି ।
ଏକ ଶୂନ୍ୟ ଏକ ବର୍ଣ୍ଣ ଏକ ତାର କାଏ,
ଏକ ଦାନ ଏକ ପୁଣ୍ୟ ଏକାନ୍ତେ ସୁଦଏ ।
ଏକ ଧାଡ଼ି ଏକ ଘଡ଼ି ଏକାଙ୍ଗ ସେ ଲୀଳା,
ଏକ ଶୁଭ ଏକ ଯୋଗ ଏକାକର ଖେଳା ।
ବ୍ରହ୍ମ ବୋଲିବାର କଥା ମୁଖେ କହି ନୋହେ,

ସଂଖ୍ୟା ନ ଛିଡ଼ଇ ତାର ଅଣସଂଖ୍ୟା ହୋଏ ।
ବ୍ରହ୍ମ ବୋଲିବାର କଥା ମହା ଓଲକିତ,
କ୍ଷୟ ବୃଦ୍ଧି ନାହିଁ ନୋହେ ଅଳପ ବହୁତ ।
ବ୍ରହ୍ମ ବୋଲିବାର କଥା ନ ଜାଣନ୍ତି କେହି,
ବ୍ରହ୍ମ ବୋଲିବା ମାତ୍ରକେ ଗଲାଟି କିମ୍ପାଇ ।
ବ୍ରହ୍ମ ନିରୂପଣ କଥା କହି ନୋହେ ଖେପ,
ଚାରି ବେଦ ବାହାରେ ରହିଛି ତାର ରୂପ ।
ଅଶେଷ ରୂପରୁ ଭିନ୍ନ କାହିଁ ତ ନ ମିଶେ,
ଚିହ୍ନିବି ବୋଇଲେ କାହିଁ ଦିଶଇ ନ ଦିଏ ।
ପଶ୍ଚିମ ଦ୍ୱାରେ ଦର୍ଶନ ଚଉଷଠି ଥର,
କବାଟ ପକାଇ ବୋଲେ ଦୋଷ କ୍ଷମାକର ।
ପୂର୍ବ ଦ୍ୱାରରେ ଦର୍ଶନ ଷୋଳଥର କରି,
କବାଟ ପକାଇ ଅଣାକାରଙ୍କୁ ସୁମରି ।
ଉତ୍ତର ଦ୍ୱାରେ ଦର୍ଶନ ଏକୋଇଶ ଥର,
କବାଟ ପକାଇ ବୋଲେ ମୋତେ ତ୍ରାହିକର ।
ଦକ୍ଷିଣ ଦ୍ୱାରେ ଦର୍ଶନ କରିବାର ଶତେ,
କବାଟ ପକାଇ ବୋଲେ ଦୟାଥିବ ମତେ ।
ଅଣକିଳିଣୀ କବାଟ ପାଚେରୀ ପଡ଼ିଛି,
ତହିଁର ଦୁଆରେ ଚଉତାଳ ଛବି ଅଛି ।
ଚାରି ଦୁଆରେ କବାଟ ପଡ଼ିଲାକ ମୁଦ,
ବ୍ରହ୍ମଜ୍ଞାନ କହୁଅଛି ସେ ବ୍ରହ୍ମକୁ ଭେଦ ।
ଜ୍ଞାନ ବୋଲି ଯାହାକରି ଏକା ପଦେ ସିନା,
ଆଉ କଥା ଯାକ ସବୁ ବେଦର ବୁଲଣା ।
ଶୁଣିଣ ସେ ନିରକାର ମନେ ହେଲେ ତୋଷ,
ବ୍ରହ୍ମ ନିରୂପଣ ଗୀତା ଭଣେ ଭୀମଦାସ ।

ଇତିଶ୍ରୀ ବ୍ରହ୍ମନିରୂପଣ ଗୀତା ସୁଜନଜନହିତ-
କରଣେ ଭେଦ ବର୍ଣ୍ଣନେ, ମହାବ୍ରହ୍ମ ଚରିତ
କଥନେ ନାମ ପଞ୍ଚମୋଽଧ୍ୟାୟଃ

## ଷଷ୍ଠ ଅଧ୍ୟାୟ

## ନିରାକାର ଉବାଚ

କର୍ଣ୍ଣେ ଶୁଣି ନିରାକାର ମନେ ଆନନ୍ଦିତ,
ଗୁରୁପାଦବିନ୍ଦେ କରି ଦଣ୍ଡ ପ୍ରଣମିତ ।
ଶତେବାର ନମସ୍କାର କରି ପାଦଗତେ,
ପାଏପଡ଼ି ଉଠି କରପତ୍ର ଯୋଡ଼ି ମାଥେ ।
ଗୁରୁ ସେ ପିଣ୍ଡ କାରେଣୀ ଜୀବକୁ ମୁକତ,
ବ୍ରହ୍ମ ନିରୂପଣ କହିବାକୁ ସାମରଥ ।
ଗୁରୁ ସେବା କଲେ ସିନା ପାଇ ସଦଜ୍ଞାନ,
ଅନ୍ତକାଳେ ସାରବ୍ରହ୍ମେ ହୁଅନ୍ତି ନିମଗ୍ନ ।
ଯାହା ମୋ ସଂଶୟ ଥିଲା ହୃଦୟର ଗତେ,
ବ୍ରହ୍ମ ନିରୂପଣ ପଦ ପାଇଲି ପରତେ ।
ଅଲେଖ ମନ୍ଦିର ମହାଶୂନ୍ୟରେ ରହିଲା,
ନିରୂପଣ ହୋଇ ଚାରି ବେଦରେ ପଡ଼ିଲା ।
ଯୋଗେଶ୍ୱର ପୁରୁଷ କରୁଣା ଯେବେ କହ,
ମହାନିତ୍ୟ ମଣ୍ଡଳ ଚରିତ ମୋତେ କହ ।
ଅଲେଖ ମନ୍ଦିରଠାରୁ ମହାନିତ୍ୟ ଭୂଇଁ,
କେତେ ଦୂରାନ୍ତର ଛଡ଼ାଛଡ଼ି ଅଛି ତହିଁ ।
ମହାନିତ୍ୟ ମହିଁମାର କେମନ୍ତ ବିଧାନ,
ଗୁପତ ନକରି ମୋତେ କହ ନାରାୟଣ ।
ମହିଁମା ବୋଲିବା କଥା କେମନ୍ତ ବିଷୟ,
ବେନି କର୍ଣ୍ଣେ ଶୁଣି ମନେ ଲାଗୁଛି ସଂଶୟ ।
ଅଲେଖ ମନ୍ଦିର କେତେ ପାବଛରେ ଛେଡ଼ା
ମହାନିତ୍ୟେ ମଣ୍ଡଳେ ପଡ଼ିଛି କେତେ ବେଢ଼ା ।
ଏଥିର ସନ୍ଦେଶ ମୋତେ କହ ଗୁରୁଦେବ,
ଆପେ ଯେବେ ନ କହିବ ଅନ୍ୟ କେ କହିବ ।

## ଶ୍ରୀ ଗୁରୁଦେବ ଉବାଚ

ମହାନିତ୍ୟ ଭୂମିଠାରୁ ଉପରକୁ ଉଞ୍ଚ,
ପଡ଼ି ଆସିଅଛି ତହିଁ ଦ୍ୱାଦଶ ପାବଚ୍ଛ ।
ଦ୍ୱାଦଶ ପାବଚ୍ଛ ତଳେ ଦୁତିଆ ପୀଠରେ,
ମହାନିତ୍ୟ ମଣ୍ଡଳ ରଞ୍ଜନା ସେହିଠାରେ ।
ଦ୍ୱାଦଶ ପାବଚ୍ଛ ସେ ଯେ ଦ୍ୱାଦଶ ଯୋଜନ,
ଉପରକୁ ଉତ୍ସର୍ଗ ସେ ମେରୁ ପରମାଣ ।
ପ୍ରଥମ ପାବଚ୍ଛ ମହାଶୂନ୍ୟ ବୋଲି କହି,
ଉପରକୁ ଅନାଇଲେ କିଛି ନ ଦିଶଇ ।
ଦ୍ୱିତୀୟ ପାବଚ୍ଛ ଗୋଟା ଅନାମିକା ନାମ,
ତାକୁ ଛୁଇଁବାକୁ ଆଉ କେହି ନାହିଁ କ୍ଷେମ ।
ତୃତୀୟ ପାବଚ୍ଛ ଗୋଟା, ଅନାମିକା ଅଟେ,
ତହିଁ ଉଠିବାକୁ କାହା ଶକତି ନ ଖଟେ ।
ଚତୁର୍ଥ ପାବଚ୍ଛ ଗୋଟା ନିଘୋଡ଼ ଅନାମିକା,
ପାଦ ନ ଚଳଇ ତହିଁ ନ ସ୍ଫୁରଇ ଭାଷା ।
ପଞ୍ଚମ ପାବଚ୍ଛ ଗୋଟା ନିଷ୍କାମ ନିର୍ମୋହ,
ଉପମା ଦେବାକୁ ତହିଁ ବହୁତ ସଂଶୟ ।
ଷଷ୍ଠମ ପାବଚ୍ଛ ଗୋଟି ନିର୍ଗୁଣ ତାରାସି,
ଚାଲି ନ ପାରିଲେ ତହିଁ ପଡ଼ିଯିବ ଖସି ।
ସପ୍ତମ ପାବଚ୍ଛ ଗୋଟା ନିଗମ ଅଟନ୍ତି,
ଭରସା କରିଣ କେହି ପଶି ନ ପାରନ୍ତି ।
ଅଷ୍ଟମ ପାବଚ୍ଛ ଗୋଟା ଅଗମ୍ୟତା ନାମ,
ଗୋଚର ନୋହିଲେ ଚିତ୍ତେ ହୋଇ ଯାଇ ଭ୍ରମ ।
ନିଗମ ବନସ୍ତ ଗୋଟା ଦୁର୍ଗମ ଅଟଇ,
ଅନୁସରି କହୁଁ କହୁଁ ଯାଉଛନ୍ତି ବହି ।
ଦଶମ ପାବଚ୍ଛ ଗୋଟା ନାମ ଅଟେ ଭେଦ,
ଚିହ୍ନି ନ ପାରିଲେ ନମିଳଇ ତତ୍ତ୍ୱବୋଧ ।
ଏଗାର ପାବଚ୍ଛ ଗୋଟା ନିର୍ବେଦ ତା କାମ,
ଚେଡ଼ି ନ ପାରିଲେ ବୁଦ୍ଧି ହୋଇଯାଏ ବାମ ।

ବାର ପାବଛ ଠାବରୁ ବସେ ଚାରିବେଦ,
ଅଧା ନ ହୋଇ ସ୍ୱରିଛି ଶାହାସ୍ର ସମ୍ପଦ ।
ବାର ବାର ପାବଛ ବସିଛି ଚାରି ଦ୍ୱାର,
ବାହିମାନଙ୍କରେ ସୁନା ଦିଶୁଛି ସଞ୍ଚାର ।
ପୂର୍ବ ପଶ୍ଚିମ ପାବଛ ବସିଛି ଚବିଶ,
ଦକ୍ଷିଣ ଉତ୍ତର ଘେନି ହେଲା ଅଠଚାଳିଶ ।
ପାବଛମାନ ବସିଛି ଚକ୍ରର ପ୍ରକାର,
ଦୀର୍ଘ ପ୍ରତି ବାରି ନୋହେ ମଣ୍ଡଳ ଆକାର ।
ମଣିର ଆକାରେ ନିରୂପଣ ହେଉଅଛି,
ଫଣୀର ପାବଛ ତହିଁ ତଳକୁତ ଅଛି ।
ମଣିର ତଳକୁ ଅଛି ଫଣୀ ଅହିରାଜ,
ଫେଣାର ଉପରେ ମଣି ହୋଇଛି ବିରାଜ ।
ଶବଦ ବ୍ରହ୍ମ ପାବଛେ ହୋଇଅଛି ବେଢ଼ା,
ଅସ୍ଥି ମାଳମାଳ ତହିଁ ପୋତିଅଛି ଗୋଡ଼ା ।
ପାବଛ ତଳେ ବସିଛି ଚାରି ଚାରି ବେଦ,
ହିସାବ ପ୍ରମାଣ ହେଉଅଛି ଶ୍ଳୋକ ବେଦ ।
ପଶ୍ଚିମ ଦ୍ୱାରରେ ଛନ୍ତି ଅନନ୍ତ ମହିଁମା,
ସୁଦର୍ଶନ ଚକ୍ର ବାଢ଼ ଶସ୍ତ୍ରେଗୁଣ ସୀମା ।
ପରମ ମହିଁମା ଛନ୍ତି ଉତ୍ତର ଦୁଆରେ,
ସକ୍ଷମ ଚକ୍ରକୁ ଆପେ ଘେନି ଶ୍ରୀହସ୍ତରେ ।
ଦକ୍ଷିଣ ଦୁଆରେ ଆଦି ମହିଁମା ଅଛନ୍ତି,
କାଳ ଦାଢ଼ ଚକ୍ର ଯେ ହସ୍ତରେ ଧରିଛନ୍ତି ।
ପୂର୍ବ ଦ୍ୱାରେ ଛନ୍ତି ମହା ଶକତି ମହିଁମା,
ପୁଣ୍ୟ ଚକ୍ର ଦାଢ଼ ତାଙ୍କ ଅଶେଷ ଗାରିମା ।
ଚାରିଦ୍ୱାରେ ବସିଛନ୍ତି ଚାରି ଚକ୍ର ଘେନି,
ବାପର ସୁତ ହୋଇବ ଗଲେ ସିନା ଜିଣି ।
ତେବେ ଯାଇ ଅଲେଖ ପୁରୁଷ ଭେଟ ଦେବେ,
ନୋହିଲେ କହୁଛୁ ଆମ୍ଭେ ମାତା ପୁତ୍ର ସର୍ବେ ।
ଅନନ୍ତ ମହିଁମାଙ୍କର ଦୀକ୍ଷା ଆଭରଣୀ,

ତାଙ୍କ ନାମ ଅଟେ ବ୍ରଜ ଚଉଁରୀ କୌପୁନୀ ।
ପରମ ମହିମାଙ୍କର କାଷର କୌପୁନୀ,
ଭେକ ତାଙ୍କର ଅଟଇ ପରମ ହଂସିନୀ ।
ଆଦି ମହିମାଙ୍କ ବାନା ପତିତପାବନ,
ତାଙ୍କର ଭେକ ଅଟଇ ସୂତାର ବସନ ।
ମହାଶକ୍ତି ମହିମାଙ୍କ ବାନା ରସମୂଳ,
ତାହାଙ୍କ ବାନା ଅଟଇ ବୃକ୍ଷର ବକଳ ।
ମଧ୍ୟେ ବିଜେ ଅଲେଖ ପୁରୁଷ ଅଣ ବ୍ରହ୍ମ,
ଚାରିଦ୍ୱାରେ ଜଗିଛନ୍ତି ଚାରିଖର୍ବ ନାମ ।
ଶୁଣିଲୁ କି ନିରାକାର ମହିମା ବେବସ୍ଥା,
କେଉଁ ମହିମା ଭଜିବୁ ଅଗୋଚର କଥା ।
ଓ ମ ବେନି ଅକ୍ଷରର ନାହିଁ ଭିନ୍ନା ଭିନ୍ନ,
ମଧରେ ରହି ଯାଉଛି ଅଲେଖ ଭୁବନ ।
ପାପ ପୁଣ୍ୟ ବେନିକ୍ଷର ଏକାନ୍ତ ଅକ୍ଷର,
ମଧ୍ୟମ ହୋଇ ରହିଛି ଅଲେଖ ମନ୍ଦିର ।
ଚାରିଗୋଟି ମହିମା ସେ ଚାରିଗୋଟି ବ୍ରହ୍ମ,
ଚାରିଯୁଗେ ରବିତଳେ ହୋନ୍ତି ଅବତୀର୍ଣ୍ଣ ।
ଅବ୍ୟଗତ ମହିମାଙ୍କୁ ମହାନିତ୍ୟ କହି,
ମହାବ୍ରହ୍ମ ଶକତି ସେ ଗର୍ଭ ଅନ୍ତ ନାହିଁ ।
ଅଲେଖ ମନ୍ଦିର ଷୋଳ ଯୋଜନ ପଉଚ,
ବାର ଯୋଜନରୁ ପଡ଼ି ଆସିଛି ପାବଚ୍ଛ ।
ପଶ୍ଚିମ ଦ୍ୱାରରେ ମହାନିତ୍ୟର ସଞ୍ଚାର,
ବାର ଯୋଜନ ପର୍ଯ୍ୟନ୍ତେ ହୋଇଛି ଓସାର ।
ଉତ୍ତର ଦିଗର ଦ୍ୱାର ମହାନିତ୍ୟ ଭୂଇଁ,
ସେହି ବାର ଯୋଜନରେ ଓସାର ଅଟଇ ।
ପୂର୍ବଦିଗ ଦ୍ୱାର ମହାନିତ୍ୟର ରଞ୍ଜନା,
ବାର ଯୋଜନରେ ହୋଇଅଛି ଆୟତନା ।
ଦକ୍ଷିଣ ଦ୍ୱାରରେ ମହାନିତ୍ୟର ମଣ୍ଡଳି,
ସେହି ବାର ଯୋଜନରେ ଅଛି ତାଙ୍କ ସ୍ଥଳୀ ।

ଚାରିଦିଗ ଦୀର୍ଘ ପ୍ରତି ହୋଇଛି ସମାନ,
ନିବିଡ଼ ହୋଇଛି ମହାନିତ୍ୟର ମଣ୍ଡନ ।
ମହାନିତ୍ୟ ମଣ୍ଡଳରେ ଯେତେ ଲୋକଛନ୍ତି,
ବିଷ୍ଣୁ ଅଙ୍ଗୀ ଅଟନ୍ତି-ସେ ଚତୁର୍ଭୁଜ ମୂରତି ।
ସ୍ତିରୀ ପୁରୁଷ ସେଠାରେ ଅଟନ୍ତି ସମାନ,
ଗୁରୁ ଶିଷ୍ୟଙ୍କର ତହିଁ ନାହିଁ ଭିନ୍ନାଭିନ୍ନ ।
ଲେଞ୍ଜ ଉଞ୍ଜ ସେ ଠାବରେ ବାରଣ ନୁହନ୍ତି,
ବ୍ରହ୍ମ ମହାନିତ୍ୟବାସୀ ସର୍ବେ ଏକଜାତି ।
ଅହିଂସା ଭୁବନ ତହିଁ ନ ଥାଇ ଅରଷ୍ଟି,
ସଦା ସରବଦା ହେଉଅଛି ସାଧୁ ଗୋଷ୍ଠୀ ।
ଅନ୍ଧାର ଉଜ୍ଜ୍ୱଳ ନୋହେ ରାତ୍ର ଦିନ ଏକ,
ଚନ୍ଦ୍ରସୂର୍ଯ୍ୟ ସେଠାବରେ-ହୋଇଛନ୍ତି ଦୀପ ।
ଚାରିଯୋଗ ତହିଁ ହୋଇଅଛି ଏକ କୂଳ,
ଶୁଭ ଲଗ୍ନ ନାହିଁ ତହିଁ ସର୍ବଦା ମଙ୍ଗଳ ।
ଚାରି ଧର୍ମ ତହିଁ ହୋଇଛନ୍ତି ଅଧିକାରୀ,
ସମ୍ଭାଳ କରୁଅଛନ୍ତି ଆଜ୍ଞା ଶିରେ ଧରି ।
ଉର୍ମ ଧୂର୍ମ ଜ୍ୟୋତି ଜ୍ୱାଳା ଚଉକି ପହରା,
ବହୁତ ଆକଟ ଆଜ୍ଞା ପଡୁଛି ଦୋହରା ।
ବ୍ରହ୍ମା ବିଷ୍ଣୁ ଶିବ ପଡ଼ିହାରୀ ସେ ମନ୍ଦିରେ,
ଦର୍ଶନ କରାଉଛନ୍ତି ମହିମା ଛାମୁରେ ।
ମହାନିତ୍ୟ ମଣ୍ଡଳରେ ଆଠଗୋଟି ଦ୍ୱାର,
କବାଟ ଲାଗିଛି ଦଶ ଦଶ ପରକାର ।
ଅଷ୍ଟମ ବଟ ଅଛନ୍ତି ଅଷ୍ଟମ ଦୁଆରେ,
ଅଷ୍ଟାଙ୍ଗ ଯୋଗ ବୋଲି କହିଛି ବେଦାନ୍ତରେ ।
ହେତୁବଟ ଯୋରବଟ କର୍ମବଟ ଅଛି,
କାମନା ବଟକୁ ଘେନି ଅଷ୍ଟ ବୋଲାଉଛି ।
ବିଷ୍ଣୁ ବଟ ଦେବବଟ ଅନନ୍ତ ସେ ବଟ,
ମହିମା ପ୍ରକାଶ ବଟ ସବୁଠାରୁ ଶ୍ରେଷ୍ଠ ।
ଶୁଣ ବାବୁ ନିରାକାର ଉଚିତ ପ୍ରମାଣେ,

ସେ ଯହିଁରେ ଚେତା ହୋଇଛନ୍ତି ଯେଉଁମାନେ ।
ଆକାର ହୋଇଅଛନ୍ତି ପ୍ରଥମର ବେଢ଼ା,
କର୍ମକାଣ୍ଡ ଇଟାହିଁ ପଥର କରି ଯୋଡ଼ା ।
ଆକାର ହୋଇଅଛନ୍ତି ଦ୍ୱିତୀୟର ବେଢ଼ା,
ଅକ୍ଷରୁ କ୍ଷରିତ ହେଉଥିବ ଯୁଡ଼ା ଯୁଡ଼ା ।
ଉକାର ହୋଇଅଛନ୍ତି ତୃତୀୟର ବେଢ଼ା,
ତିନି ତିନି ଅକ୍ଷରରେ ହେଉଛି ପଦପଢ଼ା ।
ମକାର ହୋଇଅଛନ୍ତି ଚତୁର୍ଥର ବେଢ଼ା,
ଚିତ୍ତ ବୃତ୍ତି ନାହିଁ ତହିଁ ହୋଇଅଛି ଛଡ଼ା ।
ଶକାର ହୋଇଅଛନ୍ତି ପଞ୍ଚମର ବେଢ଼ା,
ପବନ ବହୁଛି ଅଣ ପ୍ରକାରେ ପାହାଡ଼ା ।
ନାଦ ବିନ୍ଦୁ ହୋଇଅଛି ଷଷ୍ଠମର ବେଢ଼ା,
ଘୁଁ ଘୁଁ ଗରଜନେ ହେଉଅଛି ତଡ଼ାବଡ଼ା ।
ଜଳ ହୋଇଅଛି ତହିଁ ସପ୍ତମର ବେଢ଼ା,
ପବନ ଫେରୁଛି ଆଡ଼େ ମାରୁଛି ଲହଡ଼ା ।
ହାଇଛାଇ ହୋଇଛନ୍ତି ଅଷ୍ଟମର ବେଢ଼ା,
ପ୍ରେମ କାଳିନ୍ଦୀ ହ୍ରଦରୁ ଲାଗିଅଛି ଧାରା ।
ସଦସୁଖ ହୋଇଛନ୍ତି ନବମର ବେଢ଼ା,
ଦ୍ୟୁତି ସ୍ୱରୂପରୁ ଖସୁଛନ୍ତି ଯୋଡ଼ା ଯୋଡ଼ା ।
ଦଶମ ବେଢ଼ାରେ ଦଶ ଇନ୍ଦ୍ରିୟ ହୋଇଛି,
ପ୍ରକୃତିମାନେ ପାଖୁଡ଼ା ତହିଁ ଫୁଟିଅଛି ।
ନାନାକାର ହୋଇଛନ୍ତି ଏଗାରର ବେଢ଼ି,
ଜଳ ପବନରୁ ଫଳ ଧରିଅଛି କଢ଼ି ।
ଆକୁଳ ମହିମା ସେ ସାଗର ଅଣ ଖୋଲା,
ସମସ୍ତ ବେଢ଼ାକୁ ଧରି ଚବିଶ ହୋଇଲା ।
ଚଉକଡି ବେଢ଼ାଇ ରହିଛି ଏହି ରୂପେ,
ପ୍ରଭୁ ବିଜେ କରିଛନ୍ତି ଅମନର ଶିଖେ ।
ବଜ୍ର କବାଟ ଲାଗିଛି ଜାଉଁଳି ରନ୍ଧ୍ରରେ,
ସ୍ଥିତି ଉତ୍ପତ୍ତି ପ୍ରଳୟ ନ ପଶେ ତହିଁରେ ।

ନିର୍ଭୟ ଭୁବନ ସେ ଯେ ଭୟ ଭ୍ରାନ୍ତି ନାହିଁ,
କାଳ ଭୟ ରୋଗ ଶୋକ-ପଶିବ ସେ କାହିଁ ।
ମହାନିତ୍ୟ ମଣ୍ଡଳେ ଅଛନ୍ତି ଯେତେଲୋକ,
ସଦା ସରବଦା ମନ ଆନନ୍ଦ ଉଛୁକ ।
ଛପନା କୋଟି ଜୀବ ଯେ ଜନ୍ତୁଙ୍କର ବଳ,
ମହା ମହିଁମାଙ୍କର ପୟରେ ସବୁ ଠୁଳ ।
ସେହିମତେ ହୋଇଛନ୍ତି ଦଇବ ଦଉଡ଼ି,
ଯହିଁ ବୁଲାଇଲେ ବୁଲୁଛନ୍ତି ଧାଡ଼ି ଧାଡ଼ି ।
କର୍ମକାଣ୍ଡ ରଜ୍ଜୁ ସେ ଯେ ନ ଛିଡ଼ଇ କେଭେ,
ପୁଷ୍ପ ପ୍ରାଏ ଗୁନ୍ଥା ହୋଇ ରହିଛନ୍ତି ସର୍ବେ ।
ମହାନିତ୍ୟ ମଣ୍ଡଳରେ ଛନ୍ତି ଯେତେ ଜନ,
ସମସ୍ତେ ପିନ୍ଧିଅଛନ୍ତି ଅମୂଲ୍ୟ ବସନ ।
ହୀରା ଅଙ୍ଗ ପ୍ରାଏ ଦିଶେ ସମସ୍ତଙ୍କ ତେଜ,
ସର୍ବେ ବ୍ରାହ୍ମଣ ବ୍ରାହ୍ମଣୀ କେହି ନାହିଁ ଦ୍ୱିଜ ।
ବାଛନ୍ଦ ବିକାର ତହିଁ ନ ଥାଇ ସେଠାରେ,
ବ୍ରହ୍ମ ପଇତା ପଡ଼ିଛି ସବୁରି ଅଙ୍ଗରେ ।
ବ୍ରହ୍ମ କର୍ମେ ପରିପୂର୍ଣ୍ଣ ହେଉଛନ୍ତି ନିତି,
ଅପାପୀ ଅଟନ୍ତି ନାହିଁ ପାତକ ପ୍ରକୃତି ।
ଛଡ଼ମୁଖୀ ଗାବର ହେଉଛି ମଳମୂତ୍ର,
ଗୋମୟ ଲଗାନ୍ତି ଅଙ୍ଗେ ପିଅନ୍ତି ପବିତ୍ର ।
ଶୂନ୍ୟ ଧର୍ମେ ଚାଲୁଛନ୍ତି ନୁହଇ ଅର୍ଦ୍ଧାଙ୍ଗ,
ଅସିଦ୍ଧ ନୁହନ୍ତି ସେ ଅଟନ୍ତି ସିଦ୍ଧାଙ୍ଗ ।
ଉଦେ ହସ୍ତ ଦରଶନ ଲାଗିଅଛି ନିତି,
ଖଣ୍ଡ ତପସ୍ୟା ନୁହନ୍ତି ଅଖଣ୍ଡ ବିଭୂତି ।
ଚାରିଯୁଗେ ତ୍ରିଭୁବନେ ଯାହା ହୋଇଅଛି,
ସକଳ ବିଷୟ ସମ ଅକ୍ଷରେ ଛିଡୁଛି ।
ମହିଁମାଙ୍କୁ ଯେତେ ପ୍ରାଣୀ ଆଶ୍ରିତ କରିବେ,
ମହାନିତ୍ୟ ମଣ୍ଡଳରେ ସମସ୍ତେ ରହିବେ ।
ମହାବ୍ରହ୍ମ ଶକତି ସେ ନୁହନ୍ତି ପୁରୁଷ,

ଛପ୍ପନକୋଟି ଜୀବ ତାଙ୍କ ଗର୍ଭରୁ ପ୍ରକାଶ ।
ମହିଁମା ସାଗର ସେ ଯେ ଅନନ୍ତ ଯାମିନୀ,
ବ୍ରହ୍ମ-ନିରୂପଣଗୀତା ଭୀମଦାସ ଭଣି ।

ଇତିଶ୍ରୀ ବ୍ରହ୍ମ-ନିରୂପଣ ଗୀତା ସୁଜନ
ଜନହିତା ଗୁରୁ ଶିଷ୍ୟ ସମ୍ବାଦେ, ମହିମାଯୋଗ
ବର୍ଣ୍ଣନେ, ଭେଦାଭେଦ କଥନେ, ଆଗମ
ନିଗମ ବିଚାରଣେ ନାମ ଷଷ୍ଠୋଽଧ୍ୟାୟଃ ।

## ସପ୍ତମ ଅଧ୍ୟାୟ

### ନିରାକାର ଉବାଚ

ନିରାକାର ବୋଲୁଛନ୍ତି ଶୁଣ ମୋ ବିନତି,
ଗୁରୁ ସିନା ଅଟନ୍ତି ଜୀବର ମୋକ୍ଷଗତି ।
ଗୁରୁ ନ କହିଲେ ସଦଜ୍ଞାନ ନୋହେ କିଛି,
ଗୁରୁ ବିନୁ ଉଦ୍ଧାର ଅନ୍ୟରେ ନୋହେ କିଛି ।
ଚାରିଯୁଗେ ଗୁରୁପାଦେ ସେବା ସିନା ମୂଳ,
ଆଉ କଥାମାନ ଯେତେ ସବୁ ସିନା ଫଳ ।
ଅନ୍ୟ ଧର୍ମମାନଙ୍କରେ କ୍ଷମା ଧର୍ମ ନାହିଁ,
ତେଣୁକରି ସିନା ଗୁରୁ ଛାମୁରେ ପୁଛଇ ।
ଗୁପତ ସନ୍ଦେଶ ଜ୍ଞାନ ରଖିଥିଲେ କାହିଁ,
ତାହା ମୋତେ ଶ୍ରୀମୁଖରେ କହିଲ ବୁଝାଇ ।
ଏବେ ମହିଁମାର କଥା ହେଉଛି କେମନ୍ତ,
ନିରୂପଣ କରି ମୋତେ କହ ଆଦି ଅନ୍ତ ।
ମହିଁମା ବୋଲିବା ପଦ କେତେ ବା ଶକତି,
କେଉଁ ବର୍ଣ୍ଣ ରୂପ ତା'ର ଦିଶଇ ମୂରତି ।
ଶ୍ରୀଚରଣେ କେଉଁପରି ଭଗତି କରିବା,
ସତ୍ୟ ସତ୍ୟ କରି ମୋତେ କହ.ଗୁରୁ ବାବା ।
କେବଣ ମାର୍ଗେ ଭଜିଲେ ହୋଇବ ପ୍ରସନ୍ନ,

ଯୁଗେ ଯୁଗେ ଏ ପିଣ୍ଡରେ ରହିବ ପରାଣ ।
ଚିଆଁ ଚଇତନ୍ୟ ହେତୁ ଚେତା ନ ବୁଡ଼ିବ,
କି ଉପାୟ କଲେ ପିଣ୍ଡ ଭୂମି ନ ପଡ଼ିବ ।
ମହିଁମା ସାଗର ନାମ ଅତି ଭୟଙ୍କର,
ବିଚାରିଲେ ମନକୁ ମାଡ଼ଇ ବଡ଼ ଡର ।
ସାଗର ବୋଇଲେ କଥା ସମଜି ନୁହଇ,
ଗୁପତ ନ କରି ମୋତେ କହ ଗୁରୁସାଇଁ ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ଦିବ୍ୟସୀମା,
ମହାବ୍ରହ୍ମ ଶକତିର ଅଶେଷ ମହିଁମା ।
ବ୍ରହ୍ମଅଂଶ ଆଏଶ ବହନ୍ତି ଯେଉଁ ଜନ,
ପରିପୂର୍ଣ୍ଣକରି ବୁଝି ନୋହେ ତା'ର ଗୁଣ ।
ପରିପୂର୍ଣ୍ଣ ନାମଟି ଯେହୁ ମଥା ପରେ ଅଛି,
ଯେଉଁଆଡ଼େ ମୁଖକଲେ ଆଗକୁ ହେଉଛି ।
ମହିଁମା ନାମଟି ଯେହୁ ମହାଦୂର ନୋହେ,
ଆଣି ନେଇ ଥୋଇବାକୁ ବହୁତ ସଂଶୟେ ।
ମହିଁମା ନାମଟି ଯେହୁ ଅଟେ କର୍ମବେଦ,
କପୋଳରେ ଲେଖି ଦିଆଇଛି ଯୋଗ ଭୋଗ ।
ମହିଁମା ନାମଟି ଯେହୁ ଅଟେ ମହାମାୟା,
ରଜ ବୀଜ ଯୁକ୍ତ କରି ଗଢୁଅଛି କାୟା ।
ମହିଁମା ନାମଟି ଯେହୁ ମାତାଟି ହେଉଛି,
ଦଶମାସ ଯାଏ ଗର୍ଭ ଗତରେ ବହୁଛି ।
ମହିଁମା ନାମଟି କରୁଅଛି ପାର ତାର,
ଏ ସଂସାର ସାଗରରୁ କରନ୍ତି ଉଦ୍ଧାର ।
ମହିଁମା ନାମଟି ଯେହୁ ଏ ମହୀ ମେଦିନୀ,
ଦୁଷ୍ଟ ସନ୍ଥ ଏକ ସମାନରେ ଅଛି ମଣି ।
ମହିଁମା ନାମଟି ଯେହୁ ମନଟି ହୋଇଛି,
ବୁଦ୍ଧି ବିଚାରଣେ କରି ଧୀରାନ୍ତ ରହିଛି ।

ମହିଁମା ନାମଟି ଯେହୁ ଅଟଇ ସେ ମୀନ,
ଏ ଘଟରେ ଖେଳୁଅଛି ଯେସନେ ଜୀବନ ।
ମହିଁମା ନାମଟି ଯେହୁ ମହତ୍ତ୍ୱଟି ସେହି,
ସଭାମଣ୍ଡଳ ମଧ୍ୟରେ ଧର୍ମରୂପେ ଥାଇ ।
ମହିଁମା ନାମଟି ଯେହୁ ମରଣଟି ଅଟେ,
ନିର୍ବଳ ହୋଇଲେ ଅଙ୍ଗେ କାଳରୂପେ ଘୋଟେ ।
ମହିଁମା ନାମଟି ଯେହୁ ମଦନ ଆରତ,
ପିଣ୍ଡ ବ୍ରହ୍ମାଣ୍ଡ ହୋଇଛି ମଳୟ ବସନ୍ତ ।
ମହିଁମା ନାମଟି ଯେହୁ ମିଶେ ସର୍ବଠାରେ,
ଅନ୍ତର ବାହାରେ ଆବୋରିଛି ଏ ଦେହରେ ।
ମହିଁମା ନାମଟି ଯେହୁ ମନ୍ତ୍ର ମଉଷଧି,
ହୃଦରେ ପ୍ରକାଶ ହୋଇଅଛି ବ୍ରହ୍ମବୁଦ୍ଧି ।
ମହିଁମା ନାମଟି ଯେହୁ ମହାପୁଣ୍ୟ ଅଟେ,
ଆପେ ଦେଇ ଦିଆଉଛି ବସି ସର୍ବଘଟେ ।
ମହିଁମା ନାମଟି ଯେହୁ ସର୍ବ ବୋଲାଉଛି,
ଶ୍ରୀଅଙ୍ଗରୁ କୋଟି କୋଟି ଜନ୍ମ କରୁଅଛି ।
ମହିଁମା ନାମଟି ଯେହୁ ସାକ୍ଷାତେ ସେ ଧର୍ମ,
ଅଗାଧ ଗଭୀର ସେ ଅଟଇ ପୂର୍ଣ୍ଣ ବ୍ରହ୍ମ ।
ମହିଁମା ନାମଟି ଯେହୁ ପ୍ରତ୍ୟକ୍ଷେ ମନୁଷ୍ୟ,
ଦୁର୍ଲ୍ଲଭ ଜନ୍ମଟି ଅଟେ ସର୍ବଙ୍କ ପୁରୁଷ ।
ମହିଁମା ନାମଟି ଯେହୁ ମଧୁର ବଚନ,
ଆଶ୍ୱାସନା ଅବଲମ୍ବେ ସ୍ନେହରେ ବନ୍ଧନ ।
ମହିଁମା ନାମଟି ଯେହୁ ମେଘ ବୋଲାଉଛି,
ଧର୍ମ ଅନୁସାରେ ମେଘ ବରଷା କରୁଛି ।
ମହିଁମା ନାମଟି ଯେହୁ ମହା ମହେଶ୍ୱର,
ଛପ୍ପନ କୋଟି ଜୀବରୁ ସେ ଆତ୍ମାର ଗୋଚର ।
ମହିଁମା ନାମଟି ଯେହୁ ଅଟଇ ସେ ମେରୁ,
ପ୍ରସନ୍ନ ହୋଇଲେ ସେହୁ ଦ୍ରବ କରେ ଦାରୁ ।
ମହିଁମା ନାମଟି ଯେହୁ ମହା ନିଦ୍ରାବତୀ,
ସମସ୍ତଙ୍କୁ ଅଚେତ କରୁଛି ନବକ୍ଷିତି ।

ମହିମା ନାମଟି ଯେହୁ ମୁକତି ପସରା,
ଭକ୍ତଗଣମାନେ କରୁଅଛନ୍ତି ଆଶରା ।
ମହିମା ନାମଟି ଯେହୁ ମୁରୁଛା ନ ଯାଏ,
ଦିନେ ଭଜିଥିଲେ ବ୍ରହ୍ମ ବୈକୁଣ୍ଠ ସେ ଯାଏ ।
ମହିମା ନାମଟି ଯେହୁ ମାର୍ଗ ବୋଲାଉଛି,
ଭେଦା ଭେଦ କଲେ ଯାଇ ପ୍ରସନ୍ନ ହେଉଛି ।
ମହିମା ନାମଟି ଯେହୁ ମରୁତ ଉଜାଣି,
ବାସନା ବିକାଶ ପୂର୍ବ ସୁକୃତକୁ ଘେନି ।
ମହିମା ନାମଟି ଯେହୁ ମଧ୍ୟମ ହେଉଛି,
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏକାନ୍ତ ଠାରେ ଅଛି ।
ମହିମା ନାମଟି ଯେହୁ ମହାଶୂନ୍ୟ କହି,
ସେଠାବକୁ ଗଲେ ଉଠି ନିଶୁଣି ଲଗାଇ ।
ମହିମା ନାମଟି ଯେହୁ ମାଏଁସ ରୁଧିର,
ଜଳ ପବନରେ ନିର୍ଭା ହୋଇଛି ଶରୀର ।
ମହିମା ନାମଟି ଯେହୁ ମୂର୍ତ୍ତିବନ୍ତ ଅଟେ,
ଲିଙ୍ଗରୂପ ଆବୋରି ରହିଛି ଏହି ଘଟେ ।
ମହିମା ନାମଟି ଯେହୁ ଅଟଇ ଯେ ମୁନି,
ଚାରିଯୁଗେ ଖୋଜି ଖୋଜି ନ ପାବନ୍ତି ଜ୍ଞାନୀ ।
ମହିମା ନାମଟି ଯେହୁ ଅଟଇ ଯେ ଯମ,
ସର୍ବଠାରେ ଘଟେ କରି ଅଛଇ ବିଶ୍ରାମ ।
ମହିମା ନାମଟି ଯେହୁ ରାମ ନାମ ପଦ,
ଶବଦ ସ୍ୱରୂପ ହୋଇ ପୂରିଅଛି ଭେଦ ।
ମହିମା ନାମଟି ଯେହୁ ମହାରାଟ କହି,
ଆକାରରୂପେ ଶରୀରେ ବିରାଜୁଛି ଦେହୀ ।
ମହିମା ନାମଟି ଯେହୁ ମ ଅକ୍ଷର ଅଟେ,
ସେହିପରି ସର୍ଜନା ହୋଇଛି ନାନା ବାଟେ ।
ମହିମା ନାମଟି ଯେହୁ ସତ ରଜ ଜାଣ,
ବାଳ ବୃଦ୍ଧ ସବୁ କରୁଅଛି ସଂହାରଣ ।
ମହିମା ନାମଟି ଯେହୁ ଅଟେ ମହାରସ,
ପାନ କଲେ ନ ଜାଣିବ ରଜନୀ ଦିବସ ।

 

ମହିଁମା ନାମଟି ଯେହୁ ଅଟେ ମହାମେରୁ,
ମକରନ୍ଦ ଝରୁଅଛି ପଦାରବିନ୍ଦରୁ ।
ମହିଁମା ନାମଟି ଯେହୁ ଅଟଇ ନମାମି,
ସାର ବ୍ରହ୍ମଜ୍ଞାନ ସେ ସାକ୍ଷାତେ ଗୁରୁସ୍ୱାମୀ ।
ମହିଁମା ନାମଟି ଯେହୁ ମହାଘୋର ସିନ୍ଧୁ,
ଅବ୍ୟଗତ ଶକତି ସେ ଅବ୍ୟଗତ ଇନ୍ଦୁ ।
ମହିଁମା ନାମଟି ଯେହୁ ମହାଦେବ ଜାତି,
ମହାବ୍ରହ୍ମ ଶକତିରୁ ହୋଇଲା ସିଦ୍ଧାନ୍ତି ।
ଶୁଣିଲୁକି ନିରାକାର ମହିମାଙ୍କ ରୀତି,
ମହିଁମା ନାମଟି ଯେହୁ ଜୀବର ମୁକତି ।
ମହିଁମା ନାମଟି ଯେହୁ ଚାରିଯୁଗେ ସାର,
ମହିଁମା ପ୍ରକାଶହେଲେ ହୁଅନ୍ତି ଅମର ।
ମହିଁମା ଗର୍ଭରୁ ଜାତ ହେଲା ଚାରିବେଦ,
ଋକ ସମ ଯଜୁ ଅଥ କହିଲା ସେ ପଦ ।
ମହିଁମା ଗର୍ଭରୁ ଜାତ ହେଲା ଚାରିଧର୍ମ,
ଶାନ୍ତଶୀଳ ଦୟା କ୍ଷମା ବୋଲି ତାଙ୍କ ନାମ ।
ମହିମା ଗର୍ଭରୁ ଜାତ ହେଲା ଚାରିଦିଗ,
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ସମ୍ଭବ ।
ମହିଁମା ଗର୍ଭରୁ ଜାତ ଚାରିଯୁଗ ହେଲା,
ସତ୍ୟ ତ୍ରେତୟା ଦ୍ୱାପର କଳି ବୋଲାଇଲା ।
ମହିଁମା ଗର୍ଭରୁ ଜାତ ଚାରି ବ୍ରହ୍ମଭକ୍ତ,
ଅନନ୍ତ ଶ୍ରୀରାମଚନ୍ଦ୍ର କୃଷ୍ଣ ଜଗନ୍ନାଥ ।
ମହିଁମା ଗର୍ଭ ଭିତରୁ ହୋଇଲେ ପ୍ରକାଶ,
ଏହାଙ୍କର ନାମ ଶୂନ୍ୟ ଧରତୀ ଅକାଶ ।
ମହିଁମା ଗର୍ଭରୁ ଜାତ ବ୍ରହ୍ମା, ବିଷ୍ଣୁ, ଶିବ,
ତିନିପୁରେ ଅଧିକାରୀ ହେଲେ ଜୟଦେବ ।
ମହିଁମା ଗର୍ଭରୁ ଜାତ ହେଲା ତିନିପୁର,
ସ୍ୱର୍ଗ ମର୍ତ୍ତ୍ୟ ଘେନି ହେଲା ପାତାଳ ବିସ୍ତର ।
ମହିଁମା ଗର୍ଭରୁ ହେଲେ ହ୍ଲୀଁ ଶ୍ଲୀଁ କ୍ଲୀଁ ଯେ ଜାତ,
ଅଧ ଊର୍ଦ୍ଧ୍ୱ ରଜ ବୀଜ ହୋଇଲା ସମ୍ଭୂତ ।
ମହିଁମା ଗର୍ଭରୁ ଜାତ ତରିଲା ପୁରୁଷ,

ଯୁଗଳ ଜ୍ୟୋତି ସଂସାରେ ହୋଇଲା ପ୍ରକାଶ ।
ମହିମା ଗର୍ଭରୁ ଜାତ ଦିବସ ରଜନୀ,
ଅନ୍ଧାର ଉଜ୍ଜ୍ୱଳ ହେଲା ଏ ନବ ମେଦିନୀ ।
ମହିମା ଗର୍ଭରୁ ଜାତ ହେଲେ ଚନ୍ଦ୍ର ସୂର୍ଯ୍ୟ,
ଉଦେ ଅସ୍ତ ଏ ସଂସାରେ ହେଉଛି ବିରାଜ ।
ମହିମା ଗର୍ଭରୁ ଜାତ ହେଲା ପାପ ପୁଣ୍ୟ,
ଶୁଭ ଅଶୁଭ ସଂସାରେ ହୋଇଲା ଭିଆଣ ।
ମହିମା ଗର୍ଭରୁ ଜାତ ଭକ୍ତ ଭଗବାନ,
ଗୁରୁ ଶିଷ୍ୟ ସଂସାରେ ହୋଇଲେ ବେନି ଜନ ।
ମହିମା ଗର୍ଭରୁ ଜାତ ଏବେ ହେଲା ମନ୍ଦ,
ତେଣୁକରି ସଂସାର ହୋଇଲା ନାନା ଛନ୍ଦ ।
ମହିମା ଗର୍ଭରୁ ଜାତ ଜନମ ମରଣ,
ଆସିବା ଯିବା ହେଉଛି କେବେ ନୋହେ ଶୂନ୍ୟ ।
ମହିମା ଗର୍ଭରୁ ଜାତ ହେଲା ପରମ ଜୀବ,
ଦିବ୍ୟ ଜ୍ଞାନ ସଂସାରେ ଦିଶିଲା ସର୍ବ ଶୁଭ ।
ମହିମା ଗର୍ଭରୁ ଜାତ ହେଲେ କୃଷ୍ଣ ରାଧା,
ଭିଆଣ ହୋଇଲା ଯହୁଁ ନଟକୁଟ ବିଦ୍ୟା ।
ମହିମା ଗର୍ଭରୁ ଜାତ ହୋଇଲା ଅଶେଷ,
ଅକଳଣା ଗର୍ଭ ସେହି କେବେ ନୋହେ ଶେଷ ।
ମହିମା ଗର୍ଭରୁ ଜାତ ଛପ୍ପନକୋଟି ଜନ୍ତୁ,
ସଞ୍ଚରିତ ହେଲେ ନିଜ ଶକତିର ହେତୁ ।
ମହିମା ଗର୍ଭରୁ ଜାତ ତେତିଶ୍କୋଟି ଦେବ,
ରଜଗୁଣେ ସଞ୍ଚରିତ ହୋଇଲେ ସଂଯୋଗ ।
ମହିମା ଗର୍ଭରୁ ଜାତ ନବଲକ୍ଷ ତାରା,
ଆକାଶରେ ଜଳୁଛନ୍ତି ଯେସନେକ ହୀରା ।
ମହିମା ଗର୍ଭରୁ ଜାତ ନବକୋଟି ଦେବୀ,
ତିନି ଭୁବନରେ ଠାବେ ରହିଛନ୍ତି ଯୋଗୀ ।
ମହିମା ଗର୍ଭରୁ ଅଷ୍ଟକୋଟି ଯେ କାତ୍ତାନୀ,
ଧରିଛନ୍ତି ଖର୍ବକାତି ଖପର ଭବାନୀ ।
ମହିମା ଗର୍ଭରୁ ଜାତ ହେଲେ ଚାରି ମେରୁ,
ଅଚଳ ହୋଇଅଛନ୍ତି କେତେଦିନଠାରୁ ।

ମହିଁମା ଗର୍ଭରୁ ଜାତ ହେଲେ କ୍ଷୁଧା ତୃଷା,
ସେହି ଦିନକୁ ଯେ ସବୁ ହେଲା ପ୍ରତି ଆଶା ।
ମହିଁମା ଗର୍ଭରୁ ଜାତ ହେଲେ ସତ ମିଛ,
ଯାରୁ ଯେବେ ନିରାକାର ନିରୋଳାରେ ବାଛ ।
ମହିଁମା ଗର୍ଭରୁ ଜାତ ହେଲା ପଞ୍ଚଭୂତ,
ପଞ୍ଚମ ଗୁଣରେ ଦେହ ହୋଇଲା ଶକତ ।
ମହିଁମା ଗର୍ଭରୁ ଜାତ ମହୀ ଓ ଧରତୀ,
ମହିଁମା ଗର୍ଭରୁ ଜାତ ସ୍ଥିତି ଉତପତ୍ତି ।
ମହିଁମା ଗର୍ଭରୁ ଜାତ ହେଲା ହେତୁ ଚେତା,
ଶ୍ରୋତ ତତ୍ତ୍ୱ ଭେଦରେ ଛିଡ଼ିଛି ସର୍ବକଥା ।
ମହିଁମା ଗର୍ଭରୁ ଜାତ ହେଲା କାଳଗ୍ରହ,
ବ୍ୟାଧିରୂପେ ପୀଡ଼ିତ ହୋଇଲା ସର୍ବଦେହ ।
ମହିଁମା ଗର୍ଭରୁ ଜାତ ଲକ୍ଷ୍ମୀ ସରସ୍ୱତୀ,
ଅନ୍ନବସ୍ତ୍ର ହୋଇ ଘୋଟିଛନ୍ତି ଦିବାରାତି ।
ମହିଁମା ଗର୍ଭରୁ ଜାତ ହେଲା ରସବାସ,
ପୁଷ୍ପଚନ୍ଦନ ବାସରେ ହୋଇଲା ପ୍ରକାଶ ।
ମହିଁମା ଗର୍ଭରୁ ଜାତ ହେଲା ସରି ମଧୁ,
ନିର୍ଝରୁ ଝରୁଛି ମହା ଶକତିର ଇନ୍ଦୁ ।
ମହିଁମା ଗର୍ଭରୁ ଜାତ ତପତ ଉଷୁମ,
ସର୍ବ ଘଟେ ଆବୋରିଛି ସତ ରଜ ତମ ।
ମହିଁମା ଗର୍ଭରୁ ଜାତ ହେଲା ବେନି ଜାତି,
ମାଇ ଅଣ୍ଡିରା ଯୋଡ଼ିଏ ତ୍ରିଭୁବନେ ଛନ୍ତି ।
ମହିଁମା ଗର୍ଭରୁ ଜାତ କହାନ୍ତା ବହନ୍ତା,
ଯେ ଯାହାର ଦୁଃଖ ସୁଖ ଲାଗିଅଛି ଚିନ୍ତା ।
ମହିଁମା ଗର୍ଭରୁ ଜାତ କାମଦେବ ରତି,
ତେଣୁକରି ସଂସାରେ ଯୋଡ଼ିଲା ପତିପତ୍ନୀ ।
ମହିଁମା ନାମଟି ଯେହୁ ସାତ୍ତ୍ୱିକ୍ୟ କରମ,
ସୁପଥରେ ବୁଲିବାରୁ ଲଭିଲେ କାରଣ ।
ମହିଁମା ଗର୍ଭରୁ ଜାତ ହେଲା ସର୍ବଶ୍ରମ,
ତେଣୁକରି ସଂସାରେ ବୋଲିଟି ଏକ ନାମ ।
ମହିଁମା ଗର୍ଭରୁ ଜାତ ରଜବୀର୍ଯ୍ୟ ହେଲା,
ସେହିଠାରୁ ସମସ୍ତଙ୍କୁ ଭାଗ ବଣ୍ଟାଗଲା ।

ମହିଁମା ଗର୍ଭରୁ ଜାତ ହୋଇଲା ସକଳ,
ମଅକ୍ଷରଟି ଯେହ୍ନୁ ସାଗର ଅକୂଳ ।
ମହିଁମା ଗର୍ଭରୁ ଜାତ ହେଲା ଫଳ ମୂଳ,
ଦେହଧାରୀ ଯେତେ ଖାଇ ବଞ୍ଚିଲେ ସକଳ ।
ମହିଁମା ଗର୍ଭରୁ ଜାତ ହେଲା ତରୁ ତୃଣ,
ତେଣୁ କରି ସଂସାରେ ହୋଇଲା ଝଡ଼ା ବଣ ।
ମହିଁମା ସାଗରୁ ଜାତ ଦୟା କ୍ଷମା ଦୁଇ,
ତାରଣ ମାରଣ ତାର ଗୋଚରେ ଅଛଇ ।
ମହିଁମା ଗର୍ଭରୁ ଜାତ ହେଲା ଲୋଭ ଲାଭ,
ଗୃହ ଆବୋରି ଯତନେ କରାଇ ସଂଯୋଗ ।
ଛପ୍ପନକୋଟି ଜୀବ ଜାତ କରିଅଛି ସେହି,
ମାତା ରୂପେ ଜନ୍ମାଇ ଭାରିଯା ରୂପେ ଖାଇ ।
ମହିଁମା କଥାଟି ଯେହ୍ନୁ ସାଗର ଶକତି,
ଅଙ୍ଗରୁମ ପ୍ରାଏ ଜୀବ କ୍ଷରିତ.ଅଛନ୍ତି ।
ମହିଁମାଠାରୁ ହୋଇଛି ଅଶେଷ ବ୍ରହ୍ମାଣ୍ଡ,
ଅଲେଖ ପୁରୁଷ ସେହ୍ନୁ ପୁରୁଷେ ଅଖଣ୍ଡ ।
ଅକଳନା ବାରାନିଧି ଅଲେଖର ପେଟ,
କୋଟି ବ୍ରହ୍ମା ବିଷ୍ଣୁ ଶିବ ନ ପାରନ୍ତି ଭେଟ ।
ଶୁଣିଲୁକି ନିରାକାର ବ୍ରହ୍ମନିରୂପଣ,
ମନ ଭେଦି ପାରିଲେ ଝଡ଼ିବ ପାପମାନ ।
ଶୁଣ ସାଧୁ ସୁଜନେ ମହିମା ବ୍ରହ୍ମ କଥା,
ମମ ଅକ୍ଷରଟି ଯେହ୍ନୁ ସାକ୍ଷାତେ କରତା ।
ହେ ମହିଁମା ମେରୁ ମୋର ନ ଧରିବ ଦୋଷ,
ବ୍ରହ୍ମନିରୂପଣ ଗୀତା ଭଣେ ଭୀମଦାସ ।

ଇତିଶ୍ରୀ ବ୍ରହ୍ମନିରୂପଣ ଗୀତା ସୁଜନଜନହିତା
ଗୁରୁ, ଶିଷ୍ୟ ସମ୍ବାଦେ ମହାବ୍ରହ୍ମ ଶକ୍ତିର
ଆତଯାତ ବର୍ଣ୍ଣନେ ଭେଦାଭେଦ ଚରିତ ବିଚାରଣେ
ମହିଁମା ମୋର କଥନେ ନାମ ସପ୍ତମଽଧ୍ୟାୟଃ ।

# ଅଷ୍ଟମ ଅଧ୍ୟାୟ

## ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ଗୁରୁଦେବ,
କେତେ ଦୀର୍ଘ ପ୍ରତି ଅଟେ ମହିମାଙ୍କ ଗର୍ଭ ।
କେଉଁ ବର୍ଣ୍ଣ ଚିହ୍ନ ଅଟେ କେବଣ ସ୍ୱରୂପ,
କେତେ ସରୁ କେତେ ଗୁରୁ କହ ତାଙ୍କ ସତ୍ୟ ।
କୋଟି କୋଟି ଜୀବ ତହୁଁ ହେଉଛନ୍ତି ଜାତ,
ଉଚିତ ବଚନ ଗୁରୁ କହିବ ଯେ ସତ୍ୟ ।
ଦେହଧାରୀ ହୋନ୍ତି ସର୍ବେ ତ୍ରିଭୁବନେ ଖ୍ୟାତି,
କେଉଁରୂପେ ଫେରି ହତ ହୋଇ ଯାଉଛନ୍ତି ।
ଭାରାଭାର ନାହିଁକି ଲାଗଇ ତାଙ୍କୁ କିଛି,
ଏହିରୂପେ ବୁଝାମଣା କେଉଁରୂପେ ଅଛି ।
ଏତେ ବୋଲି ପଡ଼ିଲେ ଶ୍ରୀଗୁରୁ ପାଦଗତ,
ନିର୍ଣ୍ଣୟ କରିଣ କହ ଏଥିର ଅରଥ ।
କେତେ କୂଳ କେତେ ଜଳ କେତେ ସ୍ଥଳ ଅଛି,
କେତେ କଳ କେତେ ନାଡ଼ ପାଖୁଡ଼ା ଫୁଟିଛି ।
ତହିଁର ଗଭୀର କେତେ ଯୁଣ ଉସର୍ଗତ,
କେତେ ଜଳ କେତେ ସ୍ଥଳ ହୋଇଅଛି ଯୁକ୍ତ ।
ଅଶେଷ ଭୁବନ ତାଙ୍କ ଗର୍ଭଗତେ ଠଣା,
ଚାରିଯୁଗେ କି ପ୍ରକାରେ ହେଉଛି କଳଣା ।
ଏ କଥା ବିଚାର ମୋତେ କହ ନାରାୟଣ,
ଶୁଣିଲେ ପରତେ ଯିବ ପଞ୍ଚଭୂତ ମନ ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ଶୁଣ ତହିଁର ବିଧାନ,
ବୁଝାଇ କହିବା ତାଙ୍କ ଗର୍ଭ ନିରୂପଣ ।
କୋଟିଏ ଅଗ୍ନିରୁ ଜିଣି ବିରାଜଇ ରୂପ,
କୋଟି ସୂର୍ଯ୍ୟ ପ୍ରାୟେ ଅଙ୍ଗ ବିରାଜେ ଝଟକ ।

 

କୋଟି ଚନ୍ଦ୍ରରୁ ଜିଣିଣ ଶରୀର ନିର୍ମଳ,
କୋଟିଏ ଜ୍ୟୋତିରୁ ଜିଣି ଶ୍ରୀମୁଖ ଉଜ୍ଜ୍ୱଳ ।
ବାରିଭାଗେ ବତିଶ ଯୋଜନ ଲକ୍ଷ ସ୍ଥଳୀ,
କନ୍ଦି କନ୍ଦି ହୋଇଣ ପଡୁଛି ଦାଣ୍ଡ ଥାଳି ।
ଡାହାଣରେ ବତିଶ ଯୋଜନ ଲମ୍ବ ଅଛି,
ଅନୁମାନ ଭେଦାନ୍ତରେ ତୋଳିକରି ବାଛି ।
କଟିଭାଗେ ବତିଶ ଯୋଜନ ଲକ୍ଷ ମହୀ,
ସେଠାରୁ ଯେ ଆସିଥିବ ସେ ପାରିବ କହି ।
ଅଗଭାଗେ ବତିଶ ଯୋଜନ ଲକ୍ଷ ଲମ୍ବ,
ଚଉକତି ସମାନରେ ହୋଇଛି ଆରମ୍ଭ ।
ଆୟତନକୁ ଆବୋରି ଅଛି ଗର୍ଭସ୍ଥିତି,
ଦ୍ୱାରେ ଚନ୍ଦନ ଅର୍ଗଳି ଉଜାଣି ଉଠନ୍ତି ।
ଗର୍ଭ ମଧ୍ୟେ ମଣ୍ଡଳିରେ ଶକତି ବସିଛି,
ଜୀବମାନଙ୍କର ପିଣ୍ଡ ଗଢ଼ା ହେଉଅଛି ।
ଉଜାଣି ଝର ଝରକୁ ଯେ ପାରିବ ଭେଟି,
ମହାଶୂନ୍ୟ ଭୁବନକୁ ଆସିବ ସେ ଉଠି ।
ସିଦ୍ଧ ହୋଇଅଛି ତହିଁ ଗିରି ହ୍ରଦ ମଣ୍ଡ,
ଶିଶିର ପରାଏ ଜୀବମାନଙ୍କର ପିଣ୍ଡ ।
ଶବଦ ବ୍ରହ୍ମରୁ ପିତା ଅଙ୍ଗରୁ କ୍ଷରୁଛି,
ସିନ୍ଧୁ ପ୍ରାଏ ହୋଇ ମାତା ପଦ୍ମରେ ପଶୁଛି ।
ମହିମାଶକତି ପାଖୁଡ଼ାରେ ସପ୍ତଦଳ,
ତିନିଶ ଷାଠିଏ ଦିନ ଫୁଟିଅଛି ଫୁଲ ।
ସଦାବେଳେ ଅବିରତେ ବସନ୍ତ ବହୁଛି,
ଅବାଚ୍ୟ ବ୍ରହ୍ମର ତେଜ କିରଣ ପଡୁଛି ।
ଗଜାଖଞ୍ଜା ହୋଇ ତହିଁ ଅଙ୍କୁରିଚି ଗଜା,
ଲିଙ୍ଗ ଗୋଟାକରେ ଉପୁଜୁଛି ଦ୍ୱିଦ୍ୱି ପୁଞ୍ଜା ।
ତେସନେକ ତିମିର ଶ୍ରୀଗୁରୁ ଦେହେ ଅଛି,
ଜୀବ ପିଣ୍ଡରୁ ପବନ କ୍ଷରିତ ହେଉଛି ।
ମହାଶକତିରେ ଜୀବ ଛନ୍ତି ପନ୍ତି ପନ୍ତି,

ଭୂମିର ତିରଣ ପ୍ରାୟ ଉଦେ ହୋଇଛନ୍ତି ।
ସଞ୍ଚାର ହୋଇଣ ଅଛି ସେ ଶକତି ମଞ୍ଚେ,
ମାତା ଗର୍ଭେ ଆସି ନିର୍ଭା ହୋଇଅଛି ପଛେ ।
ଶକତିରୁ କାଟିଦିଆ ହୋଇଅଛି ଥାଇ,
ମହାମହିମାଙ୍କ ଆଜ୍ଞା ପାର ଉତାରହିଁ ।
ଭକ୍ତି ଯୋଗ କର୍ମକାଣ୍ଡ ଯୁକ୍ତ ହେଲେ ଯାଇ,
ପଛେ ମନୁ ବ୍ରହ୍ମଗର୍ଭେ ପିଣ୍ଡକୁ ସଞ୍ଚଇ ।
ଶୁଣିଲୁକି ବାବୁ ପିଣ୍ଡ ବ୍ରହ୍ମାଣ୍ଡ ରଞ୍ଜନା,
ମହିଁମାଙ୍କଠାରୁ ସବୁ ହେଉଛି ସର୍ଜନା ।
ସିନ୍ଧୁ ପ୍ରାଏ ଲହରୀ ଫିଟୁଛି ଧୀର ଧୀର,
ଶକତିରୁ ଉଦ୍ଗାରି ପଡୁଛି ଭୂମିର ।
ଶକତିରୁ ଲିଙ୍ଗ ଜାତ ଜୀବର ପାଟଣା,
ଏ ସ୍ୱଭାବ ଲାଗିଅଛି କିଣା ଯେ ବିକିଣା ।
ରୋଟ ମୁଁ କୋଣ ମୁଁ କି କହିବି ଦୀର୍ଘ ପ୍ରତି,
ଚର୍ମ ରୋଗମାନେ ମାଳ ମାଳ ହେଉଛନ୍ତି ।

## ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ବ୍ରହ୍ମବେତ୍ତା,
ଯାହା ଆଜ୍ଞା ହେଲା ସ୍ୱାମୀ ଅସମ୍ଭବ କଥା ।
ଯାହାର ଗର୍ଭରୁ ଜୀବ ଜାତ ହେଉଛନ୍ତି,
ମେରୁମାନେ କେଉଁରୂପେ ହୋଇଲେ ଉତ୍ପତ୍ତି ।
ଏ କଥା ବିଚାରି ମୋତେ କହ ତତ୍ତ୍ୱ ବୋଧ,
ବିଚାର କଲାବେଳକୁ ଲାଗୁଅଛି ଭେଦ ।
ଅନୁମାନ ବୁଦ୍ଧି ମୋର ନ ପାଉଛି ତହିଁ,
ଗୁପତ ନକରି ମୋତେ ଫେଡ଼ିଦିଅ କହି ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ହୋ ଭଗତ,
ଅତ୍ୟନ୍ତ କରି କହିବା ତହିଁର ଚରିତ ।
ମହିଁମା ଶକତି ଅଣଆକାର ଅଖଣ୍ଡ,

ଅଚଳ ମେରୁ ପ୍ରମାଣେ ଚାରିଯୁଣ ମୋଟ ।
ଉଣା ଯେ ଅଧିକ ତହିଁ କହି ନୁହେଁ କିଛି,
ଧର୍ମ ତରାଜୁରେ ସବୁ ତୁଳନା ହେଉଛି ।
ଯେସନେ ନଉକା ସ୍ଥଳେ ଜଳ ପୂରିଥାଇ,
ସେହିରୂପେ ମହିଁମାଙ୍କ ଗର୍ଭଟି ଅଟଇ ।
ଯେଉଁରୂପେ ପକ୍ଷୀ ଜନ୍ତୁ ଡିମ୍ବେକ ପ୍ରସବେ,
ଦିବା ନିଶି ଜଗିଥାଇ ବାଳକର ଲୋଭେ ।
ଡିମ୍ବର ଖୋଳା ଭିତରେ ଛାଏଣି ବକଳ,
ବକଳ ଭିତରେ ପୂରିଅଛି ଫୁଲ ଜଳ ।
ଡୋଳାର ଭିତରେ ଯେଉଁ କେଶର ଅଟଇ,
ବିମ୍ବପ୍ରାଏ ଭାସୁଥାଇ ଢଳ ଢଳ ହୋଇ ।
ସେହିରୂପେ ଅଣରୂପ ବ୍ରହ୍ମର ଉଷ୍ମ,
ମହାନିତ୍ୟ ଆକାଶ ଭୁବନ କହି ଡିମ୍ବ ।
ସେହିରୂପେ ମହିଁମାର ଓଦର ଅଟଇ,
ନବକ୍ଷିତି ଭାସୁଅଛି ଡିମ୍ବ ପ୍ରାଏ ହୋଇ ।
ଡିମ୍ବର ଭିତରେ ମହାବ୍ରହ୍ମର ଶକତି,
ମହିମା ଗର୍ଭରେ ମହାନିତ୍ୟ ରସେ ସ୍ଥିତି ।
ଯେସନେକ ଅଗାଧ ସିନ୍ଧୁରେ ଥାଇ ମୀନ,
ଜଳର ଭିତରେ ଚହଲଇ ଘନ ଘନ ।
ସେହିରୂପେ ଅଟେ ମହା ମହିଁମାଙ୍କ ଗର୍ଭ,
ସାଗର ପ୍ରରାଏ ଖେଳୁଛନ୍ତି ସର୍ବଜୀବ ।
ଯେସନେକ ମଥାର କେଶରେ ଥାଇ ଲିଖ,
ବୋହିବା ଲୋକକୁ ଗୁରୁ ନୁହଇ ଅଧିକ ।
ସେହିରୂପେ ମହିଁମା ଶକତି ଅଟଇ,
ଛପ୍ନାକୋଟି ଜୀବଛନ୍ତି ଲିଖପ୍ରାୟ ହୋଇ ।
ଯେଉଁରୂପେ ଯୁଗଳରେ ରତିସୁଖ ପାଇ,
ପିତା କୋଳେ ମାତା ଯେସନେକ ବସିଥାଇ ।
ମାତା କୋଳେ ଯେସନେକ ବସିଥାଇ ପୁଅ,
ମନ ଆନନ୍ଦରେ ହସୁଥାଇ ଟହ ଟହ ।

ସେହିରୂପେ ମହିମାର ସ୍ୱରୂପ ଆକୃତି,
ସ୍ଥୂଳରେ ବସିଛି ମହା ବିଷମ ଶକତି ।
ଶକତିର ଚଉକତି ମେଦିନୀ ସଞ୍ଚାର,
ଜୀବମାନ ତହିଁ କରୁଅଛନ୍ତି ବେହାର ।
ଚଳ ଅଚଳ ଏ ଦୁଇ ଉଡ଼ା ବୁଡ଼ା ଛନ୍ତି,
ଚାରିଖାନି ପିଣ୍ଡ ଜୀବ ଗଡ଼ାଗଡ଼ି ଛନ୍ତି ।
ଯେସନେକ ବାସୁକି ଧରିଛି ବ୍ରହ୍ମାଣ୍ଡକୁ,
ମେରୁ ମାନେ ସ୍ତମ୍ଭ ହୋଇଛନ୍ତି ବ୍ରହ୍ମାଣ୍ଡକୁ ।
ମେରୁ ଆବୋରିଣ ଛନ୍ତି ସପ୍ତସିନ୍ଧୁ ପାଣି,
ସାଗର ଭିତରେ ନବଖଣ୍ଡ ଏ ମେଦିନୀ ।
ସେହିରୂପେ ମହିମା ଗର୍ଭରେ ନବ କ୍ଷିତି,
ମେରୁମାନେ ମାଳ ମାଳ ପୋତା ହୋଇଛନ୍ତି ।
ଶକତି ତାଲୁ ମୁରାଟ ହୋଇଅଛି ଡେରା,
ମେରୁ ମାଳମାନେ ମହିମାର ଗର୍ଭଶିରା ।
ମହା ମହା ଅଚଳ ହୋଇଛି ମହୀଧର,
ଚନ୍ଦ୍ର ସୂର୍ଯ୍ୟ ଛପି ଯାଉଅଛି ଯୋଜନର ।
ବେନି ଯାନୁ ଲମ୍ୱାଇଛି ଉତ୍ତର ଦକ୍ଷିଣ,
ପୂର୍ବାଦି ଦିଗକୁ ମୁଖ ଶକତି ମୁହାଁଣ ।
ପଦ୍ମ ଓଲଟି ପଦ୍ମରେ ହୋଇଛି ଗୋପ୍ୟାନ,
ନି ଦିଶଇ ଚିହ୍ନା ଅଚିହ୍ନାକୁ ପରିମାଣ ।
ବିନ୍ଦୁର ଝଳକ ପ୍ରାଏ ମୁଖର ସଂଯୋଗ,
ଯେଣିକି ଚାହିଁଲେ ଦିଶୁଅଛି ଚାରିଦିଗ ।
ଶୁଣିଲୁକି ନିରାକାର ଗର୍ଭ ନିରୂପଣ,
ମହିମା ଅଙ୍ଗରେ ନିଜ ଶକତି ସମାନ ।

## ନିରାକାର ଉବାଚ

ନିରାକାର ବୋଲୁଛନ୍ତି ଶୁଣିମା ଗୋସାଇଁ,
ମହିମା ଅଙ୍ଗରେ କିସ ଭୂଷଣ ଅଟଇ ।
କେଉଁ ଅଳଙ୍କାର ହୋଇଛନ୍ତି ଆଭରଣ,

କିସ କିସ ନାମ ଗନ୍ଧକର୍ପୂର ଚନ୍ଦନ ।
ବାଜୁବନ୍ଧ ବିଦ ମୁଦି ହସ୍ତ-ଖଡ଼୍ଗ ବାହୀ,
ଗୁପତ ନ କରି ପ୍ରଭୁ ମୋତେ ଦିଅ କହି ।
ପିନ୍ଧିଲା ବସନ ଅଙ୍ଗେ ଉତ୍ତରାଣ ପଡ଼ି,
କି ସୂତାରେ ବୁଣା ସେ ଯେ ଅଟେ କେଉଁ ଶାଢ଼ି ।
ଡୋର କଉପୁନୀ ବାନା ଏ ନିତ୍ୟର କିସ,
ବିଚାର କହବା ମୋତେ ସର୍ବଜ୍ଞ ପୁରୁଷ ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ଆଦିକନ୍ଦ,
ବୁଝାଇ କହିବା ତୋତେ ଅଳଙ୍କାର ଭେଦ ।
ଜାନୁ ଯୋନି ବ୍ୟୁହ ହୋଇଛନ୍ତି ଯଶ ରାଜା,
ବେନିକରେ ଚର୍ମରାଶି ହୋଇଅଛି ଭୁଜା ।
ପଦ୍ମଦ୍ୱାର ହୋଇଛନ୍ତି କାଳ ଯୋଗୀ ଗଣେ,
ଭକ୍ତରସ ରୁଧିର ଅଧ୍ୟାନ ଅନୁକ୍ଷଣେ ।
ଅଣ୍ଡା ଡୋର ହୋଇଛନ୍ତି ଅନନ୍ତ ଯେ ଅହି,
ଲାଙ୍ଗମୂଳେ ନାଭିତଳେ ଛନ୍ତି ମୁଦ ହୋଇ ।
କୌପୁନୀ ହୋଇଅଛନ୍ତି ମହାଦେବ ହର,
ଶିବ ଶିରେ ଶ୍ରୋଣି ପଡୁଅଛି ଝର ଝର ।
କଉପୁନୀ ଫେରକୁ ସେ କଟିରେ ଖୋସିଲା,
ତୁଣ୍ଡରୁ ଖସନ୍ତେ କୁମ୍ଭୀପଟ ବୋଲାଇଲା ।
ବିଷ୍ଣୁ ହୋଇଛନ୍ତି ତହିଁ ଶ୍ରୀଅଙ୍ଗ ବିଭୂତି,
ମହାମହିମା ସେ ଅବଧୂତ ସେ ମୂରତି ।
ଚେତାକୁ କରି ଅଛନ୍ତି ଶୀତଳ ଚନ୍ଦନ,
ତତ୍ତ୍ୱପଦ ହୋଇଅଛି ତଇଳ ଚିକ୍କଣ ।
ତମ ପଦ ହୋଇଅଛି ହଳଦୀ କୁଙ୍କୁମ,
ବ୍ରହ୍ମଧ୍ୱନି ଜାଗି କରୁଅଛନ୍ତି ବିଶ୍ରାମ ।
କର୍ମକାଣ୍ଡ ହୋଇଅଛି କର୍ପୂର ବାସନା,
ଜ୍ଞାନ କଳା ଗନ୍ଧ ହେଉଅଛି ହିଁ ମାର୍ଜନା ।

ପୁଣ୍ୟକୁ କରିଅଛନ୍ତି ଶ୍ରୀଅଙ୍ଗର ପୋଛା,
ନବାବ ମହିଁମା ମେରୁ ଉଦଣ୍ଡ ବଇଛା ।
ବୀରବର କ୍ଷତ୍ରୀ ହୋଇଛନ୍ତି ବିଦ ବାହୁ,
ମୁଛକୁ ମୁରାଟ ଆଗେ ଦିଶେ ମହାବାହୁ ।
ହସ୍ତମୁଦି ଖଡ୍ଗ ବାହି କ୍ଷମା ଦୟା ପଦ,
କର ଲେଉଟିଲେ କମ୍ପେ ତିନିପୁର ମଧ ।
ରାମ ନାମ ପଦ ହୋଇଛନ୍ତି ଅଙ୍ଗ ରୋମ,
ମାଳା ମାଳା ବ୍ରହ୍ମାଣ୍ଡ ହୋଇଅଛି ଅଙ୍ଗ ହୋମ ।
ବେନି ସ୍ତନ ଗୋଟିକ ସେ ସାଗର ଅଟଇ,
ଛପ୍ପନକୋଟି ଜୀବ ପିଉଥିଲେ ନ ସରଇ ।
କରତା ନାମଟି ଏକା ପଦେ ମହାବଳୀ,
ବୈକୁଣ୍ଠପୁର ହୋଇଛି ବେକ କଣ୍ଠମାଳୀ ।
ବେନି ନେତ୍ରରେ କଜ୍ଜଳ ଫୁଲ୍ଲା ଝଟକିତା,
ସତ୍ୟ ପଦ ହୋଇଅଛି ସିନ୍ଦୂରର ଚିତା ।
ଆଭରଣ କରିଛନ୍ତି ଅମଳାଣ ଶାଢ଼ି,
ମଛ କଛ ଅବତାର ଛନ୍ତି ପାଏ ପଡ଼ି ।
ଶୁକ୍ର ନରସିଂହ ଶାଢ଼ି ଡୋର କଉପୁନୀ,
ବାବନ ରାମଚନ୍ଦ୍ର ହୋଇଛନ୍ତି କର୍ମ ବେନି ।
କୃଷ୍ଣ ବଳରାମ ଦୁଇ ଶାଢ଼ିର ପଣନ୍ତ,
ବଉଦ ଶ୍ରୀପର୍ଶୁରାମ କମ ବିପରୀତ ।
ଦଶ ଅବତାର ହୋଇଅଛି ଶାଢ଼ି ସୂତା,
ଏମନ୍ତ ପ୍ରଭୁ ଅଟନ୍ତି ମହିଁମା ବିଧାତା ।
ସରସ୍ୱତୀ ହୋଇଛନ୍ତି କଣ୍ଠନଳା ସ୍ୱର,
ଲକ୍ଷ୍ମୀ ଦେବୀ ହୋଇଛନ୍ତି ଅଙ୍ଗର ସିନ୍ଦୂର ।
ପାର୍ବତୀ ହୋଇଅଛନ୍ତି ଲକ୍ଷଣ ଆଚାର,
ମହିଁମା ପଦଟି ସେହୁ ଅଟେ ନାମ ସାର ।
ସାବିତ୍ରୀ ହୋଇଅଛନ୍ତି ଶ୍ରୀଅଙ୍ଗର ମଳି,
ବ୍ରହ୍ମା ହୋଇଛନ୍ତି ତହିଁ ଚରଣର ଧୂଳି ।
ରେବତୀ ରାଧିକେ ବେନି ପୟର ଅଳତା,

ଅଶେଷ ମହିମା ଅଙ୍ଗେ ଅଗୋଚର କଥା ।
ଦ୍ୱାଦଶ ବର୍ଣ୍ଣ ହୋଇଛି କିଙ୍କିଣୀ ବାଜେଣୀ,
ଝଲକି ଦିଶୁଛି ଏକ ଆରେକକୁ ଜିଣି ।
ଦଶାଙ୍ଗ ଯୋଗ ହୋଇଛି ଦଶମ ଅଙ୍ଗୁଳି,
ଭେଦ ମୁଦି ଗଢ଼ି ପିନ୍ଧିଅଛନ୍ତି ଯାଉଁଳି ।
ଅଷ୍ଟାଙ୍ଗ ଯୋଗ ହୋଇଛି ଅଷ୍ଟଗୋଟି ଫୁଲ,
ଏକଘନି ସୂତା ଗୁନ୍ଥି ଧରିଛନ୍ତି ମାଳ ।
ସପ୍ତାଙ୍ଗ ଯୋଗ ହୋଇଛି ସପ୍ତ ରଜ ଧାତୁ,
ସାତ କକ୍ଷ ମନୁ ଗଲେ ହୋନ୍ତି ପୁଷ୍ପରତୁ ।
ତେବେ ଅଲେଖ ପୁରୁଷ ଶକ୍ତିକି ଚାହାଁନ୍ତି,
ତେଜ ପଡ଼ିଲେ ମହିମା ଗର୍ଭାବାସ ହୋନ୍ତି ।
କବାଟ ପକାଇ ପ୍ରଭୁ ମଉନେ ରହନ୍ତି,
ମହିମା ଗର୍ଭରୁ ପିଣ୍ଡ ବ୍ରହ୍ମାଣ୍ଡ ହୁଅନ୍ତି ।
ଯେତେବେଳେ ସ୍ତିରୀମାନେ ରଜବତୀ ଜାଣ,
ରଜବତୀ ହେଲେ ଶୁଦ୍ଧ ହୋନ୍ତି ସାତ ଦିନ ।
ଯୋନିର କୌପୁନୀ କାଢ଼ି ପକାଇ ଦିଅନ୍ତି,
ଦୋସରା ଖଣ୍ଡିଏ କଉପୁନୀ ପହରନ୍ତି ।
ସେହିରୂପେ ମହିମାର ଶକତିର ରୀତି,
ମହାଦେବ କଉପୁନୀ ଖଣ୍ଡିଏ ହୁଅନ୍ତି ।
ସାତକକ୍ଷ ମନୁ ଏ ଗୋଟିଏ କ୍ଷୟ ଯାନ୍ତି,
ଆନ ମହାଦେବ ପୁଣି କୌପୁନୀ ହୁଅନ୍ତି ।
ବୁଝିଲୁ କି ନିରାକାର ମହିମା ଚରିତ,
ବେନି କର୍ଣ୍ଣେ ଶୁଣି ମନେ ହେବ ଆଚମ୍ଭିତ ।
ପରମ ହୋଇଅଛନ୍ତି ପଡ଼ିହାରୀ ଦୂତ,
ଜୀବମାନେ ତହିଁ ହେଉଛନ୍ତି ଗତାଗତ ।
ପଞ୍ଚତତ୍ତ୍ୱ ହୋଇଛନ୍ତି ତହିଁ ବାଦ୍ୟକାର,
ତାଣ୍ଡବ ନୃତ୍ୟ ଅଟଇ ଧ୍ୱନି ଘେନି ଘର ।
ପ୍ରକୃତି ହୋଇଅଛନ୍ତି ଆସ୍ଥାନ ଜଗଡ଼ା,
ଖତ କୁଢ଼ ଖଳା ପ୍ରାଏ ହୋଇଅଛନ୍ତି ପୁଡ଼ା ।

ମନ୍ତ୍ରମୂର୍ତିମାନ ମହିମାର ମଳ ମୂତ୍ର,
ନିତ୍ୟର ବାହାରେ ପଡ଼ିଛନ୍ତି ସମଛତ୍ର ।
ଛପ୍ପନ କୋଟି ଜୀବ ଜନ୍ତୁ ଧରି ବାମହସ୍ତେ,
ନିତ୍ୟର ବାହାରେ ପଡ଼ିଛନ୍ତି ସମସ୍ତେ ।
ସିଦ୍ଧ ପଦ ହୋଇଅଛି ଅଙ୍ଗୁଷ୍ଠିର ନଟ,
ଦେବମାନେ ଜାତ ହେଉଛନ୍ତି ଅନର୍ଯ୍ୟାପ୍ତ ।
ଚାରି କର୍ମ ହୋଇଛନ୍ତି ଶ୍ରୀପୟର ସ୍ଥଳୀ,
ମହିମା ଭୁବନ ଜୀବ ଯେ ପାରିବ କଳି ।
ଅରୁଣ ନ ଉଦେ ଯେହୁ ସ୍ନାହାନ ସାରିବ,
ଅସାଧନା ଯୋଗେ ସେହୁ ଦର୍ଶନ କରିବ ।
ଦିବସରେ ଯେହୁ ଜାଣି ଭୋଜନ କରିବ,
ସେହୁ ଭେଦି ପାରିବ ବ୍ରହ୍ମର ସଦଭାବ ।
ସେହି ଏକା ମହିମାକୁ ପାଇବଟି ଭେଟ,
ନିଶ୍ଚୟ ଭେଟିବ ଯାଇ ଅଭୟ ବୈକୁଣ୍ଠ ।
ମହାନିତ୍ୟେ ଯେତେଛନ୍ତି ସେ ଏକା ଭଗତ,
ନର ଦେହଧାରୀ ଯେତେ କାମନା ଆଶ୍ରିତ ।
ତିନି ବ୍ରହ୍ମାଣ୍ଡରେ ସ୍ତିରୀ ପୁରୁଷ ଦୁଇଟି,
ମହିମାଙ୍କ ହସ୍ତେ ଅଛି ସମସ୍ତଙ୍କ ବୁଟି ।
ବେନି ଜାନୁ ପାତି ବସିଛନ୍ତି ମହାବୀରା,
ଶକତି ଲିଙ୍ଗରେ ବସେ ଯେସନେକ ଧାରା ।
ଅଲେଖ ମହିମା ବୋଲି ଛଡ଼ ଗୋଟି କ୍ଷର,
ଯେ ଚିହ୍ନାଇ ଦେବ ତାର ପାଦେ ନମସ୍କାର ।
ଶୂନ୍ୟ ମନ୍ଦିରେ ଅଛନ୍ତି ଅଲେଖ ବୈରାଗୀ,
ସେ ଚାରି ମହିମା ଛନ୍ତି ଚାରିଦ୍ୱାରେ ଜଗି ।
ମହିମାଙ୍କୁ ସସ୍ରେ ନାମ ଜଗିଆ ସମ୍ଭବ,
ନାମଙ୍କୁ ଜଗିଆ ଛନ୍ତି ସହସ୍ର ଗନ୍ଧର୍ବ ।
ଗନ୍ଧର୍ବଙ୍କୁ ଜଗିଆ ଅଛନ୍ତି ଦେବଗଣ,
ଦେବଙ୍କୁ ଜଗିଆ ହୋଇଛନ୍ତି ଦେବୀଗଣ ।
ଦେବୀମାନଙ୍କୁ ଜଗିଆ ଚଣ୍ଡି ଯେ ଚାମଣ୍ଡା,
ଚାମଣ୍ଡାଙ୍କୁ ଜଗିଛନ୍ତି ଭୂତ ପ୍ରେତ ଲଣ୍ଡା ।
ପ୍ରେତଙ୍କୁ ଜଗିଅଛନ୍ତି କାଳଭୟ ମାନେ,

ବାମ ଡାହାଣରେ ବସିଛନ୍ତି ବେନି ଜନେ ।
କାଳଭୟର ଜଗିଆ ନବଗ୍ରହମାନେ,
ମହାନିତ୍ୟ ଜଗିଆ ନବଗ୍ରହମାନେ,
ମହାନିତ୍ୟ ବାହ୍ୟରେ ଅଛନ୍ତି ଅନୁକ୍ଷଣେ ।
ମହିମା ଧର୍ମର ବାଟ ବହୁତ କଠିଣ,
ଏହାକୁ ଜିଣିଲେ ଯିବ ବୈକୁଣ୍ଠ ଭୁବନ ।
ମହାନିତ୍ୟ ମଣ୍ଡଳରେ ପ୍ରବେଶ ହୋଇବ,
ତେବେ ନିଜ ମହିମାକୁ ଦର୍ଶନ ପାଇବ ।
ମହିମା ଠାବରୁ ଆଉ କାହିଁ ଭେଟ ନାହିଁ,
ମାତାଙ୍କୁ ସେବିଲେ ସିନା ପିତା ଭେଟ ପାଇ ।
ସାଧୁ ସୁଜ୍ଞଜନେ ମୋର ନ ଧରିବ ଦୋଷ ।
ଶୁଦ୍ଧ ଅଶୁଦ୍ଧ ପୂରାଇ କରିବ ଅଭ୍ୟାସ ।
ମହିମା ନିଜ ଶକତି ନିରୂପଣ କଥା,
ଯେହୁ ସେ ପଢ଼ିବ ବୋଲାଇବ ବ୍ରହ୍ମବେତ୍ତା ।
ଅଲେଖ ମହିମା ପାଦପଦ୍ମେ କରିଆଶ,
ବ୍ରହ୍ମ-ନିରୂପଣ-ଗୀତା ଭଣେ ଭୀମ ଦାସ ।

ଇତିଶ୍ରୀ ବ୍ରହ୍ମନିରୂପଣ ଗୀତା ସୁଜନ ଜନ ହିତା
ଗୁରୁ ଶିଷ୍ୟ ସମ୍ବାଦେ ଶକତି ଭେଦାଭେଦ
ବର୍ଣ୍ଣନେ, ନିଜ ମହିମା ଚରିତ କଥନେ
ବ୍ରହ୍ମଜ୍ଞାନ ବିଚାରଣେ ନାମ ଅଷ୍ଟମୋଽଧ୍ୟାୟଃ

## ନବମ ଅଧ୍ୟାୟ

### ଅଲେଖ ସଦ୍‌ଗୁରୁ

ଅଲେଖ ସଦ୍‌ଗୁରୁ ରୂପଞ୍ଚ ସତ୍ୟ ଧର୍ମୋ ପ୍ରକାଶିତ,
ସର୍ବ ଧର୍ମୋପରେ ଶ୍ରେଷ୍ଠ ଭକ୍ତି ମୁକ୍ତି ନସଂଶୟ ।
ଅଲେଖ ଶରଣଂ ନିତ୍ୟ ସର୍ବ କାଳେ ପଦାମ୍ବୁଜଂ ।
ତେପାଦେ ବନ୍ଦତେ ନିତ୍ୟଂ ଭବବନ୍ଧ ପ୍ରମୁଚ୍ୟତେ,

ଅଲେଖ ଅବର୍ଣ୍ଣ ଶ୍ଚୈବ ଅଭେଦଂ ସର୍ବତ୍ର ଭେଦଂ
ଅରୂପଞ୍ଚ ରୂପ ନାସ୍ତି ଅଦେହ ଅଦୃଶ୍ୟଂ ତତଃ ।
ଶବ୍ଦବିକାର ମଗ୍ନୟୋ ଅଲେଖ ପ୍ରତିଯୁଗ୍ମଞ୍ଚ ।
ବ୍ରହ୍ମରୂପୋ ପରିତ୍ୟାଗ ସତ୍ୟଧର୍ମୋନିରୂପଣ ।
ଅଲେଖ ଅରୂପଶ୍ଚୈବ ଅଣାକ୍ଷରଂ କ୍ଷରୟତେ ।
ମାତ୍ରା ବିଦ୍ୟା ବିଲୋପଞ୍ଚ ତତ୍ପରେ ପରମ୍ବିଭୁ ।
ଅମାତ୍ରଂ ଶବ୍ଦରହିତଂ ସ୍ୱର ବ୍ୟଞ୍ଜନ ବର୍ଜିତଂ ।
ବିନ୍ଦୁ ନାଦକଳାତୀତଂ ଯସ୍ତ ଦେବ ଓ ବେଦବିତ୍ ।

## ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ଗୁରୁସାଇଁ,
ଭଲ କଥା ଗୋଟିଏ ପଚାରୁଅଛି ମୁହିଁ ।
ଅନୁମାନ କରି ହୃଦେ ବିଚାରିଛି ଭାବ,
ଯାହା ଅଜ୍ଞା ହେଲା ସ୍ୱାମୀ ଦେବଙ୍କୁ ଦୁର୍ଲ୍ଲଭ ।
ମହାବ୍ରହ୍ମ ଶକତି ମହିମା ନିରୂପଣ,
ବିସ୍ତାର କରି ଶ୍ରୀମୁଖେ କହିଲ ଆପଣ ।
ଯାହା ମୋ ସଂଶୟ ଥିଲା ହୃଦୟର ଗତେ,
ବେନି କର୍ଣ୍ଣେ ଶୁଣି ମନେ ପାଇଲି ପରତେ ।
ପିଣ୍ଡକୁ ପବିତ୍ର ଏହି ଜୀବକୁ କାରଣ,
ଆବର ରହିବ ହେତୁ ଚିଆଁ ଚଇତନ ।
ଏତେ ବୋଲି ନିରାକାର ଶିରେ କରଯୋଡ଼ି,
ଦନ୍ତରେ ତିରଣ ଧରି ଗୁରୁପାଦେ ପଡ଼ି ।
ଭୋ ଗୁରୁ ଗୋସାଇଁ ମୋତେ ହୁଅ ପରସନ୍ନ,
ସସ୍ରଦଳ ପଦ୍ମକୁଞ୍ଜ କେମନ୍ତ ବିଧାନ ।
କି ପ୍ରକାରେ ରଞ୍ଜନା ହୋଇଲା ଆଦ୍ୟନ୍ତରୁ,
ସଂଶୟ ଫେଡ଼ିଣ ମୋରେ କହିବ ଶ୍ରୀଗୁରୁ ।
କେତେ ଆୟତନ ଅଟେ ସେ କୁଞ୍ଜର ସ୍ଥଳୀ,
କେତେ ଦୀର୍ଘ ପ୍ରତି ତାର ହୋଇଛି ମଣ୍ଡଳୀ ।

ଖଣ୍ଡ ଶେଣୀ ଉରା କେତେ ଲାଗିଅଛି ତହିଁ,
କେମନ୍ତ ପ୍ରକାରେ ଘର ନିବାଡ଼ିଛି କାହିଁ ।
ଏହିମାନ ପ୍ରସଙ୍ଗେ କହିବା ଜଣାନନ୍ଦ,
ଏତେ ବୋଲି ଧଇଲେ ଶ୍ରୀଗୁରୁ ପାଦବିନ୍ଦ ।
ନିରୂପଣ କରି ମୋତେ କହ ତହିଁ କଥା,
ତୁମ୍ଭେ ତ ଶ୍ରୀଗୁରୁ ବ୍ରହ୍ମ ପଦରେ ଶକତା ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ନିରାକାର,
ମହାନିତ୍ୟ ସସ୍ରେ ଦଳ କୁଞ୍ଜର ସଞ୍ଚାର ।
ଅନାମିକା ବୋଲି ଭୂମି ଖଣ୍ଡି ଏକ ଥିଲା,
ପରମ ଅକ୍ଷର ଆଦ୍ୟ ନାମ ସଞ୍ଚାରିଲା ।
କର୍ମ ଇଟା ପଥର ବସାଇ ଅଛି ତହିଁ,
ଜ୍ୟୋତିରୂପ ଝାର୍ନ କଳା ତିନିରୂପ ଦେଇ ।
ସେ ମନ୍ଦିର ସ୍ଥଳୀ ଆଠ ଯୁଣହିଁ ଓସାର,
ଅଠର ଯୋଜନ ଉଚ୍ଚ ଉପରକୁ ତାର ।
ଉଦେ ଅସ୍ତ ମେରୁ ତହିଁ ହୋଇଛି ତୁଳିଆ,
ସସ୍ରେ ଶେଣୀ ଲାଗି ମୁଦ୍ରୁ ମାରିଛି ଚୂଳିଆ ।
ସତ୍ୟ ତ୍ରେତୟା ହୋଇଛି ଉତ୍ତର ପାରିଆ,
ରାମନାମ ଶେଣୀ ତହିଁ ଲାଗିଚି ଧରୁଆ ।
ଦ୍ୱାପର କଳି ହୋଇଛି ଦକ୍ଷିଣର ଖମ୍ଭ,
ଚାରି ଯୁଗ ଚାରି ଗୋଟି ପାରିଆର ଦମ୍ଭ ।
ସସ୍ରେ ମୁଖୀ ବ୍ରହ୍ମା ତହିଁ ଚଉକିଆ ସ୍ତମ୍ଭ,
ଶତେ ମୁଖୀ ବ୍ରହ୍ମା ତହିଁ ଚଉକି ଆରମ୍ଭ ।
ବାର ମୁଖୀ ବ୍ରହ୍ମ ପୂର୍ବ ତୁଳିଆ ଚଉକ,
ଦଶମୁଖୀ ବ୍ରହ୍ମ ତାର ପଡ଼ିଅଛି ଦେଖ ।
ଅଷ୍ଟମୁଖୀ ଓରା ବ୍ରହ୍ମ ପାଟି ପଡ଼ିଅଛି,
ଛଡ଼ମୁଖୀ ବେଦବ୍ରହ୍ମା ମାନେଟି ବସିଛି ।

ଚାରି କବି କରକାଣ୍ଡ ହୋଇ ସେ ମନ୍ଦିରେ,
ଅର୍ଥ ଲୁହା କଣ୍ଟା ପିଟା ହୋଇଛି ତହିଁରେ ।
ସେ ଚାରି ପଣ୍ଡିତ ହୋଇଛନ୍ତି ପାଣି ପାଟି,
ସହସ୍ରେ ପାଖୁଡ଼ା କୁଞ୍ଜ ଘର ଅଛି ବାଣ୍ଟି ।
ଚଉଷଠିସିଦ୍ଧ ଋଷି ମନ୍ଦିରର ଖମ୍ବ,
ଧାଡ଼ି ଧାଡ଼ି ପୋତା ହୋଇଛନ୍ତି ଚାରିଧାମ ।
ନାଗାନ୍ତ ଯୁଗାନ୍ତ ହୋଇଛନ୍ତି ପିଣ୍ଡା କୋଠା,
ସିଦ୍ଧାନ୍ତ ବେଦାନ୍ତ ତହିଁ ପାବଛର ଉଠା ।
ତେତିସ୍କୋଟି ଦେବ ହୋଇଛନ୍ତି ରୁଅ ବତା,
ଦ୍ୱାଦଶ ସ୍ୱରୂପ କମ ପଟାଇଛି ଲତା ।
ଷୋଳକଳା ହୋଇଅଛି ମନ୍ଦିରର ବାଟ,
ଷୋଳ ପରକାରେ ତହିଁ ଲାଗିଛି କବାଟ ।
କେତେ ମୁଁ କହିବି ସେହି ମନ୍ଦିର ଉପମା,
ସ୍ତମ୍ଭ ହୋଇଛନ୍ତି ତହିଁ ପୁଞ୍ଜା ପୁଞ୍ଜା ବ୍ରହ୍ମା ।
ଚାରିନାମ ହୋଇଛନ୍ତି ସେ ମନ୍ଦିର କାନ୍ଥ,
ମହାବ୍ରହ୍ମ ଶକତିରୁ ମହିମା ବିଦିତ ।
ଷୋଳକ୍ଷର ହୋଇଅଛି କବାଟ ଅର୍ଗଳି,
କିଳିଣିର ଖଞ୍ଜାମାନ ପଡ଼ିଛି ଯାଉଳି
ବତିଶ ନାମଟି ହୋଇଅଛି ଦ୍ୱାରବନ୍ଧ
ଦୁମୁହାଁ ସର୍ପ ହୋଇଛି ଶିଙ୍କୁଳିର ଛନ୍ଦ ।
ଭାବବତ ମୂଳ ତହିଁ ହୋଇଅଛି ଚକି,
ଦ୍ୱାରବନ୍ଧେ ବଳାପିଟା ହୋଇଅଛି ମୁଖୀ ।
କୁଞ୍ଚିଖଡ଼ା ହୋଇଅଛି ପବନର ଗୋଡ଼,
କବାଟର ଫରୁଆ ହୋଇଛି ପାଣି ହାଡ ।
ହରି ରାମ କୃଷ୍ଣ ପଟା ହୋଇଅଛି ଯୋଡ଼ା,
ଚଉଭୁଜୀ କୁଞ୍ଜ ଘର ସହସ୍ର ପାଖୁଡ଼ା ।
ସହସ୍ରେକ ନାମ ତହିଁ ହୋଇଛି କବାଟ,
ଏକା ବଖୁରିକେ ଅଛି ପୁଞ୍ଜେ ଲେଖେ ବାଟ ।
ମହାନିତ୍ୟ ପଦ୍ମ କୁଞ୍ଜ ସହସ୍ରେ ପାଖୁଡ଼ା,

କେହି କାହାକୁ ନ ଲାଗି ହୋଇଅଛି ଛଡ଼ା ।
ପାଖୁଡ଼ା ଗୋଟାକେ ଅଛି ସହସ୍ରେ ବଖୁରୀ,
ଜ୍ୟୋତିର୍ମଏ ବ୍ରହ୍ମ ତହିଁ ଛନ୍ତି ବିଜେକରି ।
ସହସ୍ରେ ପାଖୁଡ଼ା ଯାକ ସହସ୍ରେକ କୋଠା,
ମାଟିହିଁ ପଥର ନୁହେଁ ସୁବର୍ଣ୍ଣର ଇଟା ।
ସର୍ଜନା କଛଣା ଝଣ୍ଟି ଅଛଣା ହୋଇଛି,
ଏକକୁ ଆରେକ ତହିଁ ବିରାଜି ବାସୁଛି ।
ବାରକଳା ତହିଁ ହୋଇଅଛି ଚିତ୍ରପଟ,
ବିଚିତ୍ର କମେ ମନ୍ଦିର ଦିଶୁଛି ପ୍ରଘଟ ।
ଆପ ତେଜ ବାୟବ ଯେ ଧରତୀ ଆକାଶ,
ପଞ୍ଚଭୂତମାନ କୁଞ୍ଜ କୁଠାର ଆଶୀଷ ।
ଜପ ତପ ହୋଇଛନ୍ତି ଗଣ୍ଠି ଅନାବତା,
ବେଦାନ୍ତକୁ ଖଞ୍ଜି ଅଛି ପାଟଫୁଲି ସୂତା ।
ଅଷ୍ଟାଦଶ ସିଦ୍ଧି ସେହି ମନ୍ଦିରରେ ରୁଅ,
ଶ୍ରୋତା ବକ୍ତା କଣ୍ଟା ପିଟା ହୋଇଛି ସର୍ବୟ ।
ଧର୍ମ ହୋଇଅଛି କୁଞ୍ଜ କୋଠା ଅଧିକାରୀ,
ଟିଆଁ ଚଇତନ ତହିଁ ଛାଞ୍ଚୁଣୀ ପହରି ।
ମନ ହୋଇଅଛି ସେ ମନ୍ଦିରେ ଲୁଣ୍ଠାହାଣ୍ଡି,
ବିଚାରିଟି କରୁଛି ନିର୍ମଳ ଘରଖଣ୍ଡି ।
ଛଡ଼ ବ୍ରହ୍ମବାସୀ ତହିଁ ଖଟିଛନ୍ତି ସେବା,
ସସ୍ରେ ଦଳ ପଦ୍ମକୁଞ୍ଜ କି ଉପମା ଦେବା ।
ବେଦର କଳ୍ପ ହୋଇଛି କୁଠା ଆଭରଣ,
ସେଠାବକୁ କାହିଁ ଆଉ ଜନ୍ମାଦି ମରଣ ।
ସସ୍ରେ ଦଳ ପଦ୍ମ କୁଞ୍ଜ ନିବାଡ଼ କରିଛି,
ମେଦିନୀ ମାଳକୁ ଛଣବିଡ଼ା ଛାଇଅଛି ।
ଶୁଭ ଅନୁକୂଳ ହୋଇଛନ୍ତି ବାମ ବତା,
ଖଣ୍ଡିଏ ଖଡ଼ନ ଖସେ ଅଗୋଚର କଥା ।
ନବଲକ୍ଷ ତାରା ବସିଛନ୍ତି ହୀରାକଣି,
ମହାନିତ୍ୟ କୁଞ୍ଜଘର ବିଚିତ୍ର ମଣ୍ଡଣି ।

 

ଶୋଳକ ସ୍ମୃତି ହୋଇଛନ୍ତି ଝରି ଝମା,
ଅର୍ଥ ସମ୍ବାଦରେ ମରା ହୋଇଛନ୍ତି ଛପା ।
ଆପତେଜ ତହିଁ ହୋଇଛନ୍ତି ଚନ୍ଦ୍ରାତପ,
ଝଟକି ଦିଶୁଛି ପୁର ଆକାଶ ସ୍ୱରୂପ ।
ହରତା କରତା ଦୁଇ ଛାମୁ ଆଜ୍ଞାକାରୀ
ଏ ପିଣ୍ଡ ବ୍ରହ୍ମାଣ୍ଡ ତହୁଁ ଆତଯାତ କରି ।
କହନ୍ତା ବହନ୍ତା ଦୁଇ କୁଞ୍ଜ ଦ୍ୱାରପାଳ,
ରାତ୍ର ଦିନ ବାରି ନୁହେଁ ସେ ପୁର ଧବଳ ।
ସୁବର୍ଣ୍ଣଠାରୁ ଅଧିକ ବିରାଜଇ ତେଜ,
ବିହି ବିଶ୍ୱକର୍ମା ଲାଗି ହୋଇଅଛି ଭଜ ।
ଶହାସ୍ର ପଥରେ କେତେ ଦେବି ମୁଁ ଉପମା,
କହି ନ ପାରନ୍ତି ଯାକୁ ଇନ୍ଦ୍ରଚନ୍ଦ୍ର ବ୍ରହ୍ମା ।
ଅନ୍ତ କରି ନୋହେ ମହାନିତ୍ୟ କୁଞ୍ଜ କଥା,
ଏକକୁ ଆରେକ ସବୁ ହୋଇଛନ୍ତି ଜିତା ।
ଏ କୋଠାର କମ ଆର କୋଠାକୁ ନ ଆସେ,
ବଖୁରିକେ ଭିନ୍ନ ଭିନ୍ନ ବର୍ଣ୍ଣମାନ ଦିଶେ ।
ଶୁଣିଲୁ କି ନିରାକାର ମନ୍ଦିର ଚରିତ,
ଚିତ୍ରରୁ ବିଚିତ୍ର କାମ ବହୁ ବିବର୍ଜିତ ।
ମହାନିତ୍ୟ ସସ୍ରଦଳ କୁଞ୍ଜର ଆକୃତି,
ଦୀର୍ଘପ୍ରତି ସମାନ ହୋଇଛି ଚଉକତି ।
ନବଗ୍ରହ ହୋଇଛନ୍ତି ଜୁଲୁକି କବାଟ,
କୁଲ୍ଲା ଦରପଣ ବସି ଦିଶୁଛି ପ୍ରଘଟ ।
କାନ୍ଥ ଛାଏଣିରେ ସର୍ବେ ଫୁଟିଛନ୍ତି ଲତା,
ସାକ୍ଷାତରେ ପଟ ପଟ କହୁଛନ୍ତି କଥା ।
ଏକାଦଶୀ ବ୍ରତ ତହିଁ ଏକାନ୍ତ ଚାହାଣି,
କଦଳୀଭଣ୍ଡା ପରାଏ ପଡ଼ିଅଛି ବେଣୀ ।
ଅନଳ ହୋଇଛି ତହିଁ ଚଉକୀ ପାହାରୀ,
ଶବଦ ଭେଦଟି ତହିଁ ହୋଇଛି ଦୁଆରୀ ।
କୁଞ୍ଜଘର ମନ୍ଦିରରେ ବ୍ରହ୍ମ ତେଜମୟେ,

 

ଚାରିଯୁଗ ଯୁଗାନ୍ତରେ ନୁହନ୍ତି ସେ କ୍ଷୟେ ।
ଦିବସ ରଜନୀ ତହିଁ ଉଲଟିଆ କାନ୍ଥ,
କଳଣା ନଯାଇ ପୁର ଅଗୋଚର ପଥ ।
କାଳଗଣମାନେ ତହିଁ ଅଛନ୍ତି ଦୁଆରୀ,
ବଖରା ଗୋଟିକେ ଯୋଡ଼ି ଯୋଡ଼ି ଜଗୁଆଳି ।
ଯମରାଜା ହୋଇଅଛି ତହିଁ କୁଞ୍ଜ ବେଢ଼ା,
ମାଳ ମାଳ ପୋତା ହୋଇଅଛି ତହିଁ ଗୁଡ଼ା ।
ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ଆଦିକନ୍ଦ,
କହିଦେବା କୁଞ୍ଜପଦ୍ମ ପାଖୁଡ଼ାର ବନ୍ଧ ।
ପ୍ରଥମ ପାଖୁଡ଼ା ଏକାକ୍ଷର ବୋଲି କହି,
ଅନାମରୁ ଶୂନ୍ୟ ନାମ ଉଚିତ ଅଟଇ ।
ଏକ ପାଖୁଡ଼ାରୁ ତହିଁ ଦ୍ୱିତୀୟ ହୋଇଲା,
ଅଧେକ ଅଣ୍ଡିର ଅଧେ ମାଇ ବୋଲାଇଲା ।
ତ୍ରୟ ବୀର୍ଯ୍ୟ ଅର୍ଦ୍ଧ ମାତ୍ରା ତୃତୀୟ ପାଖୁଡ଼ି,
ଯେସନେକ ବୃକ୍ଷପରେ ଶାଖା ଧାଡ଼ି ଧାଡ଼ି ।
ଚତୁର୍ବେଦ ହୋଇଅଛି ପାଖୁଡ଼ା ସେ ଚାରି,
ଚଉରସ ରୂପେ ସେ ମନ୍ଦିର ଅଛି କରି ।
ପଞ୍ଚଭୂତ ହୋଇଅଛି ପଞ୍ଚମ ପାଖୁଡ଼ା,
କର୍ମମାନେ ଆଡ଼ ବତା ହୋଇଛନ୍ତି ଧଡ଼ା ।
ଛଡ଼କ୍ଷର ସଷ୍ଟମ ପାଖୁଡ଼ା ବୋଲି ଜାଣ,
ସଷ୍ଟମ କଳାରେ ପୁର ହୋଇଛି ନିର୍ମାଣ ।
ସାତ ସିନ୍ଧୁ ହୋଇଅଛି ସପ୍ତମ ପାଖୁଡ଼ା,
ଫେଣା ବୁଲାଉଛି ତହିଁ ଅବନା ଅଛଡ଼ା ।
ଅଷ୍ଟକୁଳା ନାଗ ତହିଁ ଅଷ୍ଟମ ପାଖୁଡ଼ି,
ପନ୍ତି ପନ୍ତି ହୋଇ ରହିଛନ୍ତି ବେଢ଼ ପଡ଼ି ।
ନବଧା ଭକ୍ତି ହୋଇଛି ନବମ ପାଖୁଡ଼ା,
ମୂଳ ବୀଜଠାରୁ କ୍ଷରୁଛନ୍ତି ଯୋଡ଼ା ଯୋଡ଼ା ।
ବାର ପଦ୍ମ ହୋଇଅଛି ଦ୍ୱାଦଶ ପାଖୁଡ଼ି,
ନାଭିମଣ୍ଡଳୁ ଯେସନେ ଲାଗିଅଛି ନାଡ଼ି ।

ଚଉଦ ବ୍ରହ୍ମାଣ୍ଡ ଚତୁର୍ଦ୍ଦଶମ ପାଖୁଡ଼ା,
ମାଳ ମାଳ ସର୍ପ କୁଞ୍ଜ-ମନ୍ଦିରରେ ଭିଡ଼ା ।
ପନ୍ଦର ତିଥି ହୋଇଛି ପନ୍ଦର ପାଖୁଡ଼ା,
କ୍ଷରି ଯାଇଅଛି ପୁର ଯେସନେ ଲହଡ଼ା ।
ଷୋଡ଼ଦଶ ପାଖୁଡ଼ାରେ ଷୋଡ଼ଦଷ ଲତା,
ଅବିକାରମାନେ ତହିଁ ହୋଇଛନ୍ତି ବତା ।
ଏକୈଶ ବ୍ରହ୍ମାଣ୍ଡ ତହିଁ ଏକୈଶ ଚଉଁରୀ,
ସ୍ୱର୍ଗ ମର୍ତ୍ତ ପାତାଳହିଁ ସର୍ବେଛନ୍ତି ପୂରି ।
ଚବିଶ ପଟଳ ମନ୍ତ୍ର ଚବିଶ ପାଖୁଡ଼ା,
ପଚାଶ ବର୍ଣ୍ଣରେ ନିବାଡ଼ିଛି କୁଞ୍ଜ ବେଢ଼ା ।
ଅଣତ୍ରିଶ ପାଖୁଡ଼ା ମନ୍ଦିର ପରିପୂର୍ଣ୍ଣ,
କେ କାହାକୁ ନୁହେ ଊଣା ରୂପ ଭିନ୍ନ ଭିନ୍ନ ।
ଏକଚାଳିଶ ପାଖୁଡ଼ା ବଢ଼ିଗଲା ଯେଣୁ,
ମହାନିତ୍ୟ ପଦ୍ମକୁଞ୍ଜ ବୋଲାଇଲା ତେଣୁ ।
ଚଉଷଠୀ ପାଖୁଡ଼ା ହୋଇଲା ଯେତେବେଳେ,
ଚଉଷଠୀ ବ୍ରହ୍ମ ଘର ନାମହିଁ ନିରୋଳେ ।
ଅଶୀ ଶହେ ପାଖୁଡ଼ା ରଚିଲା ଏହିପରି,
ବେଦପତି ବ୍ରହ୍ମା ହେଲେ ବର୍ଣ୍ଣିତ ନ ପାରି ।
ବିଂଶାଶହେ ପାଖୁଡ଼ା ହୋଇଲା ଯେଣୁ ପୁର,
ପାଖୁଡ଼ାକେ ବୋଲାଉଛି ସହସ୍ରେକ ଘର ।
ଶୁଣ ବାବୁ ନିରାକାର ଠିକ ଠିକ କଥା,
ସହସ୍ରେ ପାଖୁଡ଼ାରୁ ପୁର ଅଛି ଅଗଣିତା ।
ସଂଖ୍ୟାକରି ମନ୍ଦିର କହିବା କେତେ ବଢ଼ି,
ଅଙ୍କପଢ଼ା ଜନମଧ ନ ପାରିବେ ଧରି ।
ମହାନିତ୍ୟ ପଦ୍ମ କୁଞ୍ଜ ସହସ୍ରେ ପାଖୁଡ଼ା,
ସକଳ ବଂଖୁରି ଭୂମି ହୋଇଛି ଚଉଡ଼ା ।
ଅଶେଷ ଭୁବନ ତହିଁ ମହାନିତ୍ୟ କୁଞ୍ଜ,
ଗଣା ପୋଛା କଲେ ତହିଁ ମନ ହେବ ଉଜ ।
ଚଉଖୁଣ୍ଟିଆ ସେ ପୁର ହୋଇଛି ନିର୍ମାଣ,
ଅନ୍ତ କରି ନୋହେ ଯେସନେକ ଗିରି ବଣ ।
କ୍ଷୟେ ବୃଦ୍ଧି ନୁହେ ପୁର ଅଟଇ ଅକ୍ଷଏ,

ସ୍ତିରୀ ପୁରୁଷ ଅଛନ୍ତି ଯୋଡ଼ାଏ ଯୋଡ଼ାଏ ।
ବୃଦ୍ଧ ବୃଦ୍ଧା ନୁହନ୍ତି ସେ ସବୁଦିନେ ଯୁବା,
ପ୍ରତିଦିନ ସୁମଙ୍ଗଳେ ହେଉଛନ୍ତି ବିଭା ।
ଯୁଗେ ଯୁଗେ ବୟସ ଭୂଷଣ ସେ ଭୁବନେ,
ବରକନ୍ୟା ବେଶ ହୋଇଛନ୍ତି ସର୍ବଜନେ ।
କେହି କାହାକୁ ନୁହନ୍ତି ପାତର ଅନ୍ତର,
ସାଆନ୍ତ ସେବକ ଏକ ଆସ୍ଥାନେ ବେହାର ।

## ନିରାକାର ଉବାଚ

ନିରାକାର ବୋଇଲେ ଶୁଣିବା ଜ୍ଞାନ ରାଜି,
କୁଞ୍ଜ ମନ୍ଦିରର କଥା ନ ପାରିଲି ବୁଝି ।
ସଂଖ୍ୟାକରି ଯାହା ସେ କହିଲ ମୋ ଆଗରେ,
କର୍ଣ୍ଣେ ଶୁଣି ସଂଶୟ ଲାଗିଲା ମୋ ମନରେ ।
ଭିନ୍ନ ଭିନ୍ନ କରି ମୋତେ କହିଦିଅ ବାଛି,
ସୁଧା ଶ୍ରୀଛାମୁରୁ ଶୁଣି ମନେ ପ୍ରୀତେ ଅଛି ।
ଅଣହିସାବ ହେଉଛି ମନ୍ଦିର ସଞ୍ଚାର,
ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ନିରାକାର ।

## ଶ୍ରୀ ଗୁରୁଦେବ ଉବାଚ

ପ୍ରଥମ ପାଖୁଡ଼ା ପରେ ତିନି ବସାଇଲା,
ଦ୍ୱିତୀୟେ ଚାରି ମିଶନ୍ତେ ଅଷ୍ଟମ ହୋଇଲା ।
ତୃତୀୟରେ ପଞ୍ଚମ ପାଖୁଡ଼ା ଗଲା ବସି,
ହେଜାକୁ ତେର ହୋଇଲା କହିଦେଲୁଁ ବାଛି ।
ଚତୁର୍ଥରେ ସଷ୍ଟମ ପାଖୁଡ଼ା ବସାବନ୍ତେ,
ଲେଖାକୁ ହୋଇଲା ଊଣାଇଶ ପରିଯନ୍ତେ ।
ପଞ୍ଚମରେ ସପ୍ତ ପାଖୁଡ଼ା ପରକାଶ,
ଦବାତାକୁ ଘେନି ତହୁଁ ହେଲା ସତାଇଶ ।
ଷଷ୍ଟମରେ ଅଷ୍ଟମ ପାଖୁଡ଼ା ବସାଇଲା,
ସତାଇଶ ଘେନି ପଞ୍ଚତିରିଶ ହୋଇଲା ।
ସପ୍ତମରେ ନବମ ପାଖୁଡ଼ା ବସାଇଲା,

ପଞ୍ଚତିରିଶକୁ ଘେନି ଚୌରାଳିଶ ହେଲା ।
ଅଷ୍ଟମରେ ଏକାଦଶ ପାଖୁଡ଼ା ବସିଲା,
ଚଉରାଳିଶକୁ ଘେନି ପଞ୍ଚାବନ ହେଲା ।
ନବମରେ ଦ୍ୱାଦଶ ପାଖୁଡ଼ା ବସାବନ୍ତେ,
ପଞ୍ଚାବନୁ ହେଲା ଅଠଷଠି ପରିଯନ୍ତେ ।
ଦଶମରେ ଚଉଦ ପାଖୁଡ଼ା ବସାଇଲା,
ଅଠଷଠି ମିଶାବନ୍ତେ ବୟାଶୀ ହୋଇଲା ।
ଏଗାର ଷୋଳ ପାଖୁଡ଼ା ବସାଇଲା ଯହୁଁ,
ବୟାଶୀ ମିଶାବନ୍ତେ ହୋଇଲା ଅଠାନଉ ।
ଦିବସରେ ଦଶମ ପାଖୁଡ଼ା ବସାଇଲା,
ଅଠାନଉରେ ଶଏଅଷ୍ଟ ଉତର ହେଲା ।
ସସ୍ର ନାମ ହୋଇଲା ସହସ୍ର ପାଖୁଡ଼ା,
ସହସ୍ର ଦଳ ପଦ୍ମ କୁଞ୍ଜ ମନ୍ଦିର ଆଖଡ଼ା ।
ଗନ୍ଧର୍ବମାନେ ଦୁଆରୀ ହୋଇଛନ୍ତି ତହିଁ,
ସୁବର୍ଣ୍ଣରେ ବେତ ସର୍ବେ ଛନ୍ତି ହସ୍ତେ ଲାଇ ।
ମହାବ୍ରହ୍ମ ପ୍ରଭୁ କରିଅଛନ୍ତି ବିଜୟେ,
ମହାନିତ୍ୟ ଭୁବନେ ସର୍ବଦା ଜୟେ ଜୟେ ।
ଲକ୍ଷେ ଘଣ୍ଟ ଲକ୍ଷେ ଶଙ୍ଖ ସେଠାରେ ବାଜୁଛି,
ଲକ୍ଷେ ଲକ୍ଷେ ଚାମର ଛତ୍ର ଯେ ଉଡୁଅଛି ।
ଲକ୍ଷେ ବୀର ଲକ୍ଷେ ଦୂର ଲକ୍ଷେ ଘଣ୍ଟା ଘଣ୍ଟା,
ଲକ୍ଷେ ଲକ୍ଷେ ସନ୍ଦର୍ଭ ହେଉଛି ଭାଗ ବଣ୍ଟା ।
ଲକ୍ଷେ ଗନ୍ଧ ଦୀପ ଜଳୁଅଛି ନିରନ୍ତର,
ଲକ୍ଷେ ନେତ ଲକ୍ଷେ ପାଟ ଉଡ଼େ ଫରହର ।
ଲକ୍ଷ ଲକ୍ଷ ନିଶାଣ ଟମକ ବାଜୁଅଛି,
ସିନ୍ଧୁ ଗରଜନ ପ୍ରାଏ ଶବଦ ଶୁଭୁଛି ।
ଲକ୍ଷେ କନ୍ୟା ତହିଁ ଖଟିଛନ୍ତି ଆଜ୍ଞାପାଳି,
ଲକ୍ଷେ ଅର୍ଘସ୍ଥାଳୀ ଧରି ଲକ୍ଷେ ଦୀପାବଳୀ ।
ହରିବୋଲ ହୁଳହୁଳୀ ପଡ଼େ ଅବିଚ୍ଛିନ୍ନ,

ନୃତ୍ୟ କରୁଛନ୍ତି ମହାନିତ୍ୟ ଭକ୍ତଗଣ ।
ଲକ୍ଷେକ ମାଳ ଦିହୁଡ଼ୀ ଜଳୁଅଛି ତହିଁ,
ରାତ୍ର ଦିବସହିଁ କିଛି ବାରଣ ନ ଯାଇ ।
ଲକ୍ଷେ ଝାଞ୍ଜ ଲକ୍ଷେ ତାଳ ବାଜେ ଏକାବେଳେ,
ଗହ ଗହ ଶୋଭା ମହାନିତ୍ୟର ମଣ୍ଡଳେ ।
ଲକ୍ଷେ ମର୍ଦ୍ଦଳ ମୃଦଙ୍ଗ ବାଜେ ଘୁମୁ ଘୁମୁ,
କୁଞ୍ଜ ମଧ୍ୟରେ ବିଜୟେ କରିଛନ୍ତି ପ୍ରଭୁ ।
ଅଗୁର ଚନ୍ଦନ ଚୁଆ କର୍ପୂର ସହିତେ,
ଅଙ୍ଗେ ଲିପା ଲିପି ହେଉଅଛନ୍ତି ସମସ୍ତେ ।
ଅଭୟ ଭୁବନ ସେ ଯେ ଭୟ ଭ୍ରାନ୍ତି ନାହିଁ,
ଯମ ରାଜାଗଣେ ସେବା ଖଟିଛନ୍ତି ଯହିଁ ।
ଶୁଣିଲକି ଆଦିକନ୍ଦ କୁଞ୍ଜର ବୃତ୍ତାନ୍ତ,
ଏବେନି କର୍ଣ୍ଣେ ଶୁଣି ମନେ ହେବ ଆନନ୍ଦିତ ।
କର୍ଣ୍ଣେ ଶୁଣି ନିରାକାର ମନେ ହେଲେ ତୋଷ,
ବ୍ରହ୍ମ-ନିରୂପଣ-ଗୀତା ଭଣେ ଭୀମ ଦାସ ।

ଇତି ଶ୍ରୀ ବ୍ରହ୍ମ-ନିରୂପଣ ଗୀତା ସୁଜନଜନ
ହିତା, ଗୁରୁଶିଷ୍ୟ ସମ୍ବାଦେ ସହସ୍ରଦଳ କୁଞ୍ଜ
ଆତଜାତ ବର୍ଣ୍ଣନେ, ଭେଦାଭେଦ
ବିଚାରଣେ ନାମ ନବମୋଽଧ୍ୟାୟ ।

## ଦଶମ ଅଧ୍ୟାୟ

### ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ଗୁରୁଦେବ,
ସହସ୍ରଦଳ ପଦ୍ମକୁଞ୍ଜ ବ୍ରହ୍ମାଙ୍କୁ ଦୁର୍ଲ୍ଲଭ ।
ଅଶ୍ରୁତି ଅମୂର୍ତ୍ତି କଥା ମନ୍ଦିର ବିଧାନ,
ସଂଖ୍ୟା କରି ମୁଖେ କହିବବା କେଉଁଜନ ।
ଅପୂର୍ବ ଚରିତ ଏ ଅଟଇ ଦିବ୍ୟ ରସ,

ବେନି କର୍ଣ୍ଣେ ଶୁଣିଲେ ପାତକ ହେବ ଧ୍ୱଂସ ।
ଅନୁମାନୀ ଅନ୍ତର୍ଯ୍ୟାମୀ ହୋଇବ ଯେ ଜନ,
ସେହି ସେ ବୁଝିପାରିବ ଏତେ କଥାମାନ ।
ଯାହା ଆଜ୍ଞା ହେବ ଗୁରୁ ସ୍ୱାମୀ ନାରାୟଣ,
କୃଷ୍ଣ, ନିରୂପଣ ଶୁଣି ପ୍ରତେ ଗଲା ମନ ।
ଆସ୍ଥାନର ବିଧିମତ ଫେଡ଼ି ମୋତେ କହ,
ଶୁଣିକରି ସନ୍ତୋଷ ହୋଇବ ମୋର ଦେହ ।
ମହିମାଙ୍କ ସିଂହାସନ କେମନ୍ତ ପ୍ରକାର,
କେତେ କେତେ ଘଟଣା ହୋଇଛି ଆସ୍ଥାନର ।
ଦଣ୍ଡ ସିଂହାସନ କେତେ ଦୀର୍ଘ ପ୍ରତି ଅଛି,
ଏହା ମୋତେ ନିରୂପଣ କହିଦିଅ ବାଛି ।
କେତେ ପାବଚ୍ଛ ବସିଛି ଆସ୍ଥାନ ମଧ୍ୟରେ,
କେହୁ ଶେଯ ମୁଚୁଳି ହୋଇଛି ସେହି ପୁରେ ।
କେତେ ପୁର କେତେ ବାହୀ ଲାଗିଛି ତହିଁରେ,
ମହିମା ପ୍ରଭୁ ବିଜୟେ ଯୋଗ ଆସନରେ ।
ଏକଥା ବିସ୍ତାରି ମୋତେ କହ ବ୍ରହ୍ମବେତ୍ତା,
ଶ୍ରୀମୁଖରୁ ଶୁଣି ମନେ ରହିବ ମୋ ଚେତା ।
ଏତେ ବୋଲି ନିରାକାର ଶିରେ କର ଦିଏ,
ପୁଣ ପୁଣ ପ୍ରଳମ୍ଭିତ କରି ଗୁରୁ ପାଏ ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ନିରାକାର,
ତୋ ଆଗେ କହିବା ସିଂହାସନର ପ୍ରଚାର ।
ଚାରି ଯୁଗେ ତହିଁ ରହିଅଛି ଦୀର୍ଘପ୍ରତି,
ସମାନରେ ସମ ହୋଇଅଛି ଚଉକତି ।
ସି ସି ଧି ଧି ହୋଇଅଛି ବେନି ଖଟପୁଆ,
ରାମ ନାମ ଲାଗିଅଛି ଆଡ଼େଣୀ ମଚୁଆ ।
ର ର ରସ୍ତ ହୋଇଅଛି ଆରି ବେନି ପୁଇ,

ହରେକୃଷ୍ଣ ଷର ଆଡ଼େ ହୋଇଛି ମଟ୍ଟଇ ।
ଅଅ ଆଆ ହୋଇଅଛି ଖଟ ଖୁର ବାଣୀ,
ଇଇ ବେନିକ୍ଷର ତହିଁ ହୋଇଛି ଛନ୍ଦଣି ।
ଉଉ ବେନିକ୍ଷର ହୋଇଅଛି ବେନିଭଣ୍ଡା,
ଋଋ ବେନିକ୍ଷର ତହିଁ ଠିଆବାହୀ ଦଣ୍ଡା ।
ଲୃଲୃ ବେନିକ୍ଷର ତହିଁ ବସିଅଛି ଖୁରା,
ଫରୁଆ ଲାଗିଛି ତହିଁ ହୀରା ତେଜ ତୋରା ।
ଏ ଐ ବେନିକ୍ଷର ଆର ପୁଆ ଖୁଇ,
ଫରୁଆ ବସିଛି ନୀଳା ତେଜ ପ୍ରାଏ ହୋଇ ।
ଓ ଔ ବେନିକ୍ଷର ହୋଇଅଛି ଶେଷ,
ରାରା ପୁଷ୍ପ ବିଞ୍ଚା ତହିଁ ହୋଇଛି ସରୋଜ ।
ଅଂ ଓ ଅଙ୍ଗ ହୋଇଅଛି ମଥାର ମୁଚୁଳି,
ମହାବ୍ରହ୍ମ ପ୍ରଭୁ ବିଜେ ମହିଁମା ଅକୁଳି ।
ଡାହାଣରେ ବସିଅଛି ଷଷ୍ଟମ ପାବଚ୍ଛ,
ଯାଇ ପାରିଲେ ଦେଖିବୁ ବାବୁ ନୁହେ ମିଛ ।
ବାମଭାଗେ ଷଷ୍ଟମ ପାବଚ୍ଛ ବସିଅଛି,
ଶରଣ ରକ୍ଷଣେ ବେନି ଭୁଜ ଟେକିଅଛି ।
ଆଗଭାଗେ ବସିଅଛି ଛଡ଼ ଯେ ପାବଚ୍ଛ,
ଶୟନରୁ ଚାହିଁଲେ ଦିଶୁଛି ସ୍ୱର୍ଗ ମଞ୍ଚ ।
ପୂର୍ବ ଭାଗେ ଷଷ୍ଟମ ପାବଚ୍ଛ ବସିଅଛି;
ପ୍ରଳୟ ସଂହାର ପୃଷ୍ଠ ଭାଗେ ଲୁଚାଇଛି ।
ଉତ୍ତର ଦକ୍ଷିଣେ ବାର ପାବଚ୍ଛ ବସିଲା,
ପୂର୍ବ ପଶ୍ଚିମକୁ ଘେନି ଚବିଶ ହୋଇଲା ।
ଊଅ ହୁଅ ସସ ଅଟନ୍ତି ସେ ତିନିଜଣ,
ମହିଁମାଙ୍କ ଅଙ୍ଗେ ଲିପ୍ତ ଅଛନ୍ତି ଚନ୍ଦନ ।
ହ୍ଲୀ ଶ୍ଳୀ କ୍ଲୀ ସେ ଅଟନ୍ତି ତିନି ମୂର୍ତ୍ତି,
ମହିଁମାଙ୍କ ବେନିପାଦ ମଞ୍ଜାଳୁ ଅଛନ୍ତି ।
ଅଣ୍ଡାବୀଜ ସ୍ୱେଦ ବୀଜ ଉଦ ବୀଜ ତିନି,
ଶ୍ରୀଅଙ୍ଗ ଆଉଁଶୁଛନ୍ତି ଆଜ୍ଞା ଶିରେ ଘେନି ।
ରାମ ମମ ଶବଦହିଁ ତିନି ଲୋକ ଛନ୍ତି,

ଶୟନ ଭୋଜନ ଠାରେ ଖଟଣିଆ ନିତି ।
ଅଷ୍ଟ ଜ୍ୟୋତି ଦୀପ ତହିଁ ଛାମୁ ରୁଖା ଦୀପ,
ଚତୁର୍ମୁଖ ଜାଗର ଜଳୁଛି ଚାରିପାଖ ।
ସାତସିନ୍ଧୁ ହୋଇଅଛି ସୁବର୍ଣ୍ଣର ଝରି,
ମହାବ୍ରହ୍ମ ମହିଁମା ସେ ଧୁଉଅନ୍ତି ମୁଖାରି ।
ଜ୍ଞାନର କଳ୍ପ ହୋଇଛି ସୁବର୍ଣ୍ଣ ଚାନ୍ଦୁଆ,
ଯମୁନା ନଦୀ ହୋଇଛି ଶ୍ରୀପୟର ଧୁଆ ।
ଚାରି ଅଗ୍ନି ପଟୁଆରି ଛନ୍ତି ଚଉପାଶେ,
ମଧ୍ୟେ ବିଜୟେ ମହିଁମା ବ୍ରହ୍ମ ପରକାଶେ ।
କ ଅକ୍ଷର ହୋଇଛନ୍ତି ଶ୍ରୀବୀର କାହାଳୀ,
ଶବଦ ଘାତରେ ପୁର ପଡୁଛି ଉଛୁଳି ।
ଖ ଅକ୍ଷର ହୋଇଅଛି ଖଞ୍ଜରୀକା ବାଦ୍ୟ,
ଘୁଉ ଘୁଉ କମ୍ପୁଅଛି ମହାନିତ୍ୟ ମଧ୍ୟ
ଗ ଅକ୍ଷର ହୋଇଅଛି ମନ୍ଦିରା ଯେ ତିନି
ସୁସ୍ୱର ଶବଦ ବାଜୁଅଛି ଟିଣି ଟିଣି ।
ଜ ଅକ୍ଷର ହୋଇଛି ପିଟା ଘଡ଼ି ଘଣ୍ଟ,
ଝାଉଁ ଝାଉଁ ଶବଦ କରୁଛି ମହା ଆଣ୍ଟ ।
ଙ ଅକ୍ଷର ହୋଇଛି ଆୟ ଅଳଙ୍କାର,
ମହିମାଙ୍କ ଶ୍ରୀଅଙ୍ଗ ହୋଇଛି ଆୟ ଶୋଭାକାର ।
ଚ ଅକ୍ଷର ହୋଇଅଛି ଶ୍ୱେତ ଯେ ଚାମର,
ଶ୍ରୀଛାମୁରେ ପକାଉ ଅଛନ୍ତି ଧୀର ଧୀର ।
ଛ ଅକ୍ଷର ହୋଇଛି ଛତର ଯେ ସତି,
ଧବଳମୟେ ଦିଶୁଛି ମହାନିତ୍ୟ କ୍ଷିତି ।
ମ ଅକ୍ଷର ତହିଁ ପରେ ଜଳୁଅଛି ଦୀପ,
ଫୁଟି ଦିଶୁଅଛି ମହିଁମାଙ୍କ ନିଜ ରୂପ ।
ଝ ଅକ୍ଷର ହୋଇଛି ତହିଁ ଫୁଲଝରା,
ମହିମା ମଧ୍ୟରେ ଖଞ୍ଜା ହୋଇଅଛି ଝରା ।
ଞ ଅକ୍ଷରଟି ତହିଁ ହୋଇଛି ନିଶାଣ,
ଦୁଲୁ ଦୁଲୁ ବାଜଣା ବାଜଇ ମହାଟାଣ ।
ଟ ଅକ୍ଷରଟି ଯେହ୍ନୁ ହୋଇଛି ଟମକ,

ଅଶେଷ ବ୍ରହ୍ମାଣ୍ଡ ଯାକ ଶୁଭୁଛି ଚମକ ।
ଠ ଅକ୍ଷର ଠାକୁର ଠାକୁରାଣୀ ନାମ,
ଲୀଳା ଲାଗିଅଛି ତହିଁ ମହାନିତ୍ୟ ଧାମ ।
ଡ ଅକ୍ଷରଟି ତହିଁ ପଡ଼ିହାରୀ ଡାକ,
ତଦନ୍ତରେ କଳନା କରୁଛି ଚଉପାଖ ।
ଢ ଅକ୍ଷରଟି ହୋଇଅଛି ବାଜା ଢୋଲ,
ଶବଦରେ ଭୁବନ କମ୍ପୁଛି ଦଳ ଦଳ ।
ଅଣ ଅକ୍ଷର ହୋଇଛି ଅନୁମାନ ବୁଦ୍ଧି,
ଲକ୍ଷେ ବନ୍ଧେ ଲୀଳାରଙ୍ଗ ଭିଆଉଛି ସିଦ୍ଧି ।
ତ ଅକ୍ଷରଟି ହୋଇଅଛି ତାଳ ଝାଞ୍ଜ,
ଯହିଁକି ଯେମନ୍ତେ ସାଜେ ଲଗାଇଛି ଖଞ୍ଜ ।
ଥ ଅକ୍ଷର ହୋଇଅଛି ତା ତା ଧିନାଥେଇ,
ମୃଦଙ୍ଗ ବାଜୁଛି ଆଦ୍ୟ ସଞ୍ଚାରକୁ ଫେଇ ।
ଦଅ ଅକ୍ଷର ହୋଇଛି ଦାଉଣ୍ଡ ଆ ବାଦ୍ୟ,
ଦାଉ ଦାଉ ଶବଦ କରୁଛି ମହାନାଦ ।
ଧଅ ଅକ୍ଷରଟି ତହିଁ ଧାରଣା ଧରତୀ,
ଏକ କର୍ମରେ ଚାଲନ୍ତି ସର୍ବେ ଏକ ଜାତି ।
ନଅ ଅକ୍ଷରଟି ତହିଁ ନଫୁରି ବାଜଣା,
ଡାକୁଅଛି ଧର ଧର ତିନିପୁର ଜିଣା ।
ପଅ ଅକ୍ଷରଟି ହୋଇଛି କରପଖା,
ଅନୁକ୍ଷଣେ ପଡୁଅଛି ପାରୁଶରେ ଶାଖା ।
ଫ ଅକ୍ଷରଟି ତହିଁ ବରଷୁଛି ଫୁଲ,
ଆମୋଦ ବାସନା ବାସେ ମହାନିତ୍ୟ ସ୍ଥଳ ।
ବଅ ଅକ୍ଷର ହୋଇଛି ବେଣୁ ଯେ ବୈଂସୋରି,
ଶବଦ ମଧୁର ଧ୍ୱନି କରେ ଶିରି ଶିରି ।
ଭଅ ଅକ୍ଷର ହୋଇଛି ଭାଷା ପରବନ୍ଧ,
ଭାବ ଭୋଳେ ପୟରୁ ଝରୁଛି ମକରନ୍ଦ ।
ମଅ ଅକ୍ଷରଟି ତହିଁ ମର୍ଦ୍ଦଳ ଡମ୍ବରୁ,
ବାଜଣାରେ କମ୍ପମାନ ହୁଏ ଗିରି ମେରୁ ।

 

ଯଅ ଅକ୍ଷରଟି ତହିଁ କରୁଛି ଯତନ,
ଯେଣିକି ଚାହିଁଲେ ତେଣେ ଦିଶେ ଘନ ଘନ ।
ରଅ ଅକ୍ଷରଟି ତହିଁ ରାହାସ ମଣ୍ଡଳି,
ଲୀଳା ଲାଗିଅଛି ଆରେ ଆରକକୁ ବଳି ।
ଲଅ ଅକ୍ଷରଟି ତହିଁ ଲାବଣ୍ୟ ସୁନ୍ଦର,
ଗହ ଗହ ଧ୍ୱନି ଶୁଭୁଅଛି ନିରନ୍ତର ।
ବଅ ଅକ୍ଷରଟି ତହିଁ ବେହେଲା ଶିତାର,
ପଞ୍ଚମ ପ୍ରକାରେ ବାଦ୍ୟ ବାଜୁଛି ସୁସ୍ୱର ।
ଶ୍ରୀ ଅକ୍ଷର ହୋଇଅଛି ସିତାର ସାରଙ୍ଗୀ,
ଅଶେଷ ପ୍ରକାରେ ହେଉଅଛି ନୃତ୍ୟ ଭଙ୍ଗୀ ।
ଷଅ ଅକ୍ଷରଟି ଶଙ୍ଖ ଶିଙ୍ଘା ହୋଇଅଛି,
ଜୟ ଜୟ ଶବଦ ତ୍ରିପୁର ଉଛୁଳୁଛି ।
ସଅ ଅକ୍ଷରଟି ତହିଁ ଶୁରୁତା ବକତା,
ହରିର ସେ ମଦ୍ୟପାନେ ସର୍ବେ ମାଏ ମତ୍ତା ।
ହ ଅକ୍ଷରଟି ହୀରା ଅଙ୍ଗ ତେଜ ମାଏ,
ସର୍ବାଙ୍ଗେ ଶୁକଳ ଦିଶେ ସବୁଙ୍କର କାଏ ।
କ୍ଷ ଅକ୍ଷରଟି ଲାଗିଅଛି ଲୀଳାଖେଳ,
ମହିଁମା ବିଜୟ ମହାନିତ୍ୟର ମଣ୍ଡଳ ।
ବସନ୍ତ ପବନ ତହିଁ ବହୁଛି ଶୀତଳ,
ଅଗୁରୁ ଚନ୍ଦନ ବାସ ଗନ୍ଧ ପରିମଳ ।
ଶରଦ ଉଷୁମ ଦୁଇ ପରକାର ଅଛି,
ମହାନିତ୍ୟ ଅଭୟ ଭୁବନ ବୋଲାଉଛି ।
ଜ୍ଞାନୀମାନେ ସେଠାବକୁ ଛନ୍ତି ଅନୁସରି,
ଧର୍ମ ପୂର୍ଣ୍ଣ ଯାଏ କେହି ନ ପାରନ୍ତି ଧରି ।
ତାରଣ ମାରଣ ତହିଁ ସର୍ବ ପୂରିଅଛି,
ସ୍ଥିତି ଉତ୍ପତ୍ତି ପ୍ରଳୟ ନ ବାଧଇ କିଛି ।
ଅଶେଷ ବ୍ରହ୍ମାଣ୍ଡେ ଯେତେ ଦେହ ଧରିଛନ୍ତି,
ମହିମା ଶକତିଠାରୁ ସର୍ବେ ଉତପତ୍ତି ।

ଦିବସ ରଜନୀ ଲୀଳା ଲାଗିଅଛି ତହିଁ,
ସେହିଠାରୁ ଚାରିଯୁଗ ମୁହୂର୍ତ୍ତେ ଲାଗଇ ।
ଅକ୍ଷଏ ମହିଁମା ସେ ନୁହଇ କ୍ଷଏ ବୃଦ୍ଧି,
ଅନାଦିଠାରୁ ମହିମା ଅଟନ୍ତି ସେ ଆଦି ।
ମହିମା ନାମଟି ସେ ଅଟନ୍ତି ମହାମାୟୀ,
ଅନାଦି ଦୋରେହା ହେଲେ ଆଦି ଦିଏ ଖାଇ ।
ଏହିରୂପେ ନାଶ ଯାଉଛନ୍ତି ଏ ଜଗତ,
ସମସ୍ତେ ଅଟନ୍ତି ଆଦି ମହିଁମା ଭଗତ ।
ଆଦି ଅନାଦି ତ ଏ ଅଟନ୍ତି ମାତା ପିତା,
ପିତାଠାରେ ଦ୍ରୋହ କଲେ ସଂହାରଇ ମାତା ।
ଅଲେଖଙ୍କ ଭଗତ ହୋଇବ ଯେଉଁ ଜନ,
ମହିମା ଭଜିଲେ ସିନା ବ୍ରହ୍ମେ ହେବ ଲୀନ ।

## ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ଗୁରୁସାଇଁ,
ଛଡ଼ ପାବଚ୍ଛ ସିଦ୍ଧାନ୍ତ ଫେଡ଼ିଦିଅ କହି ।
କେ କେ ମାନେ ସଷ୍ଟମ ପାବଚ୍ଛେ ବସିଛନ୍ତି,
ଶ୍ରୀଛାମୁରେ ଆଜ୍ଞା ହେଉ ଯିବ ମୋକ୍ଷଗତି ।
ନିରାକାର ବଚନେ କହନ୍ତି ଗୁରୁଦେବ,
ଶୁଣ ବାବୁ ଆଦିକନ୍ଦ ପାବଚ୍ଛ ସଂଯୋଗ ।

## ଶ୍ରୀ ଗୁରୁଦେବ ଉବାଚ

ପ୍ରଥମ ପାବଚ୍ଛ ଗୋଟା କଜ୍ଜଣା ଅଟଇ,
କଜ୍ଜଣା କ୍ଷରନ୍ତେ ନାଦ ଆସୁଅଛି ବହି ।
ଦ୍ୱିତୀୟ ପାବଚ୍ଛ ଗୋଟି ଜନମ ଜାତକ,
କୋଟି କୋଟି ସଞ୍ଚରିତ ହୋଇଛନ୍ତି ଦେଖ ।
ତୃତୀୟ ପାବଚ୍ଛ ଗୋଟି ମରଣ ଅଟଇ,
ସ୍ଥିତି ଉତ୍ପତ୍ତି ପ୍ରଳୟ ସଂହାର କରଇ ।
ଚତୁର୍ଥ ପାବଚ୍ଛ ଗୋଟି ହୁଅଇ ନିଗମ,

 

ଯାହାକୁ ଯେମନ୍ତ ବାଣ୍ଟି ଲାଗିଅଛି କର୍ମ ।
ପଞ୍ଚମ ପାବଚ୍ଛ ଗୋଟି ଜନମ ହୋଇଲା,
ଅଚଳ ପାବଚ୍ଛ ସେ ଚଳାକି ତହୁଁ ହେଲା ।
ସପ୍ତମ ପାବଚ୍ଛ ଗୋଟି ଅଟଇ ସ୍ଥାବର,
ଛଡ଼ ବେଦର ଉପରେ ମହିମାଙ୍କ ଘର ।
ଅଭୟ ମହିଁମା ତହିଁ ବିଜେ କରିଛନ୍ତି,
ଅଚିନ୍ତା ଭୁବନ ସେ ନ ଥାଇ ଭୟ ଭ୍ରାନ୍ତି ।
ଶରଣ ରକ୍ଷଣ ବାନା ମହିମାଙ୍କ ସିନା,
ମହିମା ଠାରୁ ବ୍ରହ୍ମାଣ୍ଡେ କେହି ନାହିଁ ଜିଣା ।
ଗତି ମୁକତି ପଦକୁ ହୃଦେ ବହିଛନ୍ତି,
ଶରଣ ବୋଇଲେ ଗର୍ଭଗତରେ ରଖନ୍ତି ।
ମହିଁମା ପ୍ରସନ୍ନ ହେଲେ କି କରିବ କାଳ,
ସିଂହ ପ୍ରାଏ ଫେରୁଥିବ ଏ ମହିମଣ୍ଡଳ ।
ମହିମା ପ୍ରସନ୍ନ ହେଲେ କି କରିବ ଯମ,
ପାଦତଳେ ପଡ଼ି ଯମ କରିଯିବ କ୍ଷମ ।
ମହିମା ପ୍ରସନ୍ନ ହେଲେ କି କରିବ ରୋଗ,
ଏ ତିନି ବ୍ରହ୍ମାଣ୍ଡ ନିଶ୍ଚେ କରିବ ସେ ଭୋଗ ।
ମହିମା ପ୍ରସନ୍ନ ହେଲେ କି କରିବ ମୃତ୍ୟୁ,
ଅନନ୍ତ ଗର୍ଭେ ରହିବ ପାଇ ନିଜ ହେତୁ ।
ମହିମା ପ୍ରସନ୍ନ ହେଲେ କି କରିବ ଦେବୀ,
ଭଗତ ଦୃଷ୍ଟି ପଡ଼ିଲେ ପଳାଇବ ଭାଗି ।
ମହିମା ପ୍ରସନ୍ନ ହେଲେ କି କରିବ ଗ୍ରହ,
ଭଗତ ଅଙ୍ଗେ ପଡ଼ିଲେ ପାଇବ ସେ ଦ୍ରୋହ ।
ମହିମା ପ୍ରସନ୍ନେ କି କରିବ କାଣ୍ଡ ଖଣ୍ଡା,
ଭଗତ ଅଙ୍ଗେ ପଡ଼ିଲେ ହେବ ମସି ଗୁଣ୍ଡା ।
ମହିମା ପ୍ରସନ୍ନ ହେଲେ କି କରିବ ବାଣ,
ଯେ ପେଷିବ ଲେଉଟାଇ ଘେନିବ ତା ପ୍ରାଣ ।
ଶୁଣିଲୁକି ନିରାକାର ମହିଁମାର କଥା,
ମହିମା ପଦଟି ଯେହୁ ବଡ଼ ସାରକଥା ।
ମହିମାଙ୍କ ଠାରୁ ବଡ଼ ନାହିଁନା ସଂସାରେ,

ମହିମାଙ୍କୁ ଆତଯାତ ତିନି ଜଗତରେ ।
ଚାରିଖାନି ଜୀବ ତହୁଁ ହେଉଛନ୍ତି ଜାତ,
ବିଚାରିଲେ କ୍ଷଣକ ମାତ୍ରକେ କରେ ହତ ।
ତାହାର ସଞ୍ଚିଲା ସିନା ଅଶେଷ ଭୁବନ,
ମନକଲେ ମୁହୂର୍ତ୍ତକେ କରେ ରଣଭଣ ।
ଛପ୍ପନକୋଟି ଜୀବ ତାର ଲେଖାରେ ଅଛନ୍ତି,
ଯାହା ବିଚାରିବ ତାହା ସେହି ଦେଉଛନ୍ତି ।
ଧନ୍ୟ ଧନ୍ୟ ରତ୍ନ ସିଂହାସନର ମହିମା,
ପଦ ପ୍ରସଙ୍ଗରେ ବର୍ଣ୍ଣି କି ଦେବି ଉପମା ।
ଅଶେଷ ଭୁବନ ଠାରୁ ଅଧିକ ସେ ପୁରୀ,
କୋଟି କୋଟି ବ୍ରହ୍ମା ଯାକୁ ଛନ୍ତି ଆଶ୍ରେ.କରି ।
ଚାରିକୋଟି ବିଷ୍ଣୁ ଚଉପାଶେ ଅନୁସରି,
ଚାରିପାଦେ ମହିମା ତହିଁରେ ବିଜେ କରି ।
କୋଟି କୋଟି ବ୍ରହ୍ମା ଧରି ଅଛନ୍ତି ପୟର,
ବ୍ରହ୍ମାଙ୍କ ପଛରେ ଛନ୍ତି କୋଟି ବିଶେଶ୍ୱର ।
ବିଷ୍ଣୁଙ୍କ ପଛରେ ଛନ୍ତି କୋଟି ସଦାଶିବ,
ଶିବଙ୍କ ପଛରେ ଛନ୍ତି କୋଟିଏ ଗନ୍ଧର୍ବ ।
ବେଦ କଣ୍ଠ କାନ୍ଥ ଚଉପାଶେ ହୋଇଅଛି,
ଅଭୟ ମହିଁମା ବ୍ରହ୍ମ ଅଚିନ୍ତାରେ ଅଛି ।
ଅଭୟ କବାଟମାନ ଲାଗିଅଛି ତହିଁ,
ଅଦଭୁତ କଣ୍ଟମାନ ପିଟିଅଛି ତହିଁ ।
ଅନ୍ତର୍ଯ୍ୟାମୀ ମହିମା ଜାଣନ୍ତି ସର୍ବ କଥା,
ଅଶେଷ ଭୁବନ ପୁର ସମସ୍ତ ବାରତା ।
ଜୟ ଜୟ ଶ୍ରୀ ମହିମା ଚରଣେ ଶରଣ,
ସୁଧା ମକରନ୍ଦ ଦେଇ କର ଉଦ୍ଧାରଣ ।
ଜୟ ଜୟ ଶ୍ରୀ ମହିମା ଭକ୍ତ ହିତକାରୀ,
କୃପାନେତ୍ରେ ଚାହିଁ ମୋତେ ଥିବ ଦୟାକରି ।
ପଶ୍ଚିମ ଦିଗ ଦୁଆର କବାଟ ପକାଇ,
ମହିମା ଚରଣେ ଦଣ୍ଡ ପ୍ରଲମ୍ବ କରଇ ।
ଉତ୍ତରଦ୍ୱାର କବାଟ ପକାଇ ତକ୍ଷଣ,

ମହିମା ଚରଣ ବିନ୍ଦେ ମାଗଇ ଶରଣ ।
ଦକ୍ଷିଣ ଦ୍ୱାର କବାଟ ତହୁଁ ପକାଇଲା,
ଶତେବାର ପ୍ରଲମ୍ବିତ ଶିରେ କର ଦେଲା ।
ପୂର୍ବ ଦୁଆର କବାଟ ପକାଇ ସଧୀର,
ମହିମାକୁ ଚାହିଁ ବୋଲେ ଦୋଷ କ୍ଷମାକର ।
ମହା ମହିମା ସେ ଅଲେଖଙ୍କ ପାଟରାଣୀ,
ମନ୍ଦିର ମଧ୍ୟରେ ଛନ୍ତି ଅବ୍ୟକତ ମଣି ।
ଚାରିଦୁଆରେ କବାଟ ପଡ଼ିଲାକ ମୁଦ,
ସେ ମନ୍ଦିରେ ମୂଳ ହାରୀ ହୋଇଅଛି ଭେଦ ।
ଭଗତ ହୋଇଲେ ଅନୁସରି ସେହିଠାକୁ,
କାଳ ବେଳ ନିକଟ ହେଲାଣି ଦେଖୁ ଦେଖୁ ।
ଏ ଯୁଗରେ ମହିମା ଭଜିଲେ କାର୍ଯ୍ୟ ଅଛି,
ଅନ୍ୟ କର୍ମାର୍ଥରେ ଆଉ ସୁଖ ନାହିଁ କିଛି ।
ହୋଇବେ ସମସ୍ତେ ଯେବେ ମହାନିତ୍ୟବାସୀ,
ଭଜ ଏତେବେଳେ ପ୍ରଭୁଙ୍କର ଦାସ ଦାସୀ ।
ବ୍ରହ୍ମ-ନିରୂପଣ-ଗୀତା ସାରସତ୍ୱ ବାଣୀ,
ଶ୍ରୀଗୁରୁଙ୍କୁ ଧ୍ୟାୟିକରି ଭୀମ ଦାସ ଭଣି ।

ଇତିଶ୍ରୀ ବ୍ରହ୍ମନିରୂପଣ ଗୀତା ସୁଜନ ଜନ ହିତା
ଗୁରୁଶିଷ୍ୟ ସମ୍ବାଦେ ଶକତି ଭେଦା-ଭେଦ ବର୍ଣ୍ଣନେ
ନିଜ ମହିମା ଚରିତ କଥନେ ଆଗମନ
ନିଗମ ବିଚାରଣେ ନାମ ଦଶମୋଽଧ୍ୟାୟ

## ଏକାଦଶ ଅଧ୍ୟାୟ

### ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ଗୁରୁସ୍ୱାମୀ,
ଜଣାନନ୍ଦ ପୁରୁଷ ସକଳ ଅନ୍ତର୍ଯ୍ୟାମୀ ।
ମହିମା ନାମଟି ଯେହୁ ମହାବ୍ରହ୍ମ ସେହି,
ବେନି କର୍ଣ୍ଣେ ଶୁଣି ମନେ ପ୍ରତେ ଗଲି ମୁହିଁ ।

ନିଜ ମହିମା ମନ୍ଦିର କବାଟ ପଡ଼ିଲା,
ମହାନିତ୍ୟ ପୁର କଥା କେମନ୍ତେ ହୋଇଲା ।
ବ୍ରହ୍ମର ଭୁବନ ସେ ଯେ ଅମରାଧିପୁର,
କେତେ ପ୍ରକାରରେ ତୋଳା ହୋଇଛି ମନ୍ଦିର ।
କୁଞ୍ଜ ମଣ୍ଡଳକୁ ଘେନି ମହାନିତ୍ୟ ଭୂଇଁ,
ଚାରି ଦ୍ୱାରେ କେତେ କେତେ ମନ୍ଦିର ଅଛଇ ।
କେମନ୍ତ ପ୍ରକାରେ ନିର୍ଭା ହୋଇଛି ମନ୍ଦିର,
କେତେ କେତେ ଖମ୍ଭ ପାଟି ଲାଗିଛି ତହିଁର ।
ଏ କଥା ବିସ୍ତାରି ମୋତେ କହ ବ୍ରହ୍ମବେତ୍ତା,
ମହାନିତ୍ୟ ଭୁବନର ବସତିର କଥା ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ନିରାକାର,
କହିଦେବା ମହାନିତ୍ୟ ଭୁବନ ବିଚାର ।
ଉତ୍ତର ଦୁଆରେ ଅଛି ଏକସ୍ତମ୍ଭ ଘର,
ଛାଉଣୀ ବିଶଇ ଦୀର୍ଘ ଚଉଡ଼ା ପ୍ରକାର ।
ଖମ୍ଭମୂଳରେ ତିଆରି ହୋଇ ରତ୍ନ ବେଦୀ,
ପରମ ପୁରୁଷଙ୍କର ବଇଠକ ଗାଦି ।
ମହାନିତ୍ୟ ଭୁବନର ଦ୍ୱାର ଯେ ଉତ୍ତର,
ଘର କରିଛନ୍ତି ଷୋଳଲକ୍ଷ ପର୍ମେଶ୍ୱର ।
ଷୋଳଲକ୍ଷ ପରମକୁ ଷୋଳଲକ୍ଷ ଜୀବ,
ସେବା ଭକ୍ତି ଲାଗି କରୁଛନ୍ତି ପୁଣ୍ୟ ଭୋଗ ।
ରାମ ନାମ ପଦ ହୋଇଅଛି ଘଡ଼ିଘଣ୍ଟ,
ବ୍ରହ୍ମସେବା କରି ବୋଲୁଛନ୍ତି ଉଠ ଉଠ ।
ପରମ ଜ୍ୟୋତି ଶବଦ ହୋଇଛି ପାହାରୀ,
ଷୋଳ ଲକ୍ଷର ଆକାର ମନ୍ଦିରକୁ ଧରି ।
ନିର୍ଭା ହୋଇଅଛି ପୁର ସୁବର୍ଣ୍ଣର ଇଟା,
ନବରତ୍ନେ ତିଆରି ହୋଇଛି ଘର କୋଠା ।
ସୁବର୍ଣ୍ଣ ତେଜ ପତର ହୋଇଛି ଛାଉଣୀ,

ଶୋଭା ଦିଶୁଅଛି ପୁର ଅପୂର୍ବ କାହାଣୀ ।
ଉତ୍ତର ଦୁଆର ବିଧି ଏମନ୍ତ ପ୍ରକାର,
ପଶ୍ଚିମ ଦୁଆର କଥା ଶୁଣ ନିରାକାର ।
ଧବଳ ମୟ ଦିଶୁଛି ପଶ୍ଚିମ ଦୁଆର,
ଏକୋଇଶ ଲକ୍ଷ ଅନନ୍ତ କରିଛନ୍ତି ଘର ।
ରାତ୍ର ଦିନ ବାରଣ ନୁହଇ ସେ ଦୁଆରେ,
ବ୍ରହ୍ମଜ୍ଞାନୀ ଭଗତ ଲାଗିଛି ନିରନ୍ତରେ ।
ଅଶ୍ରୁତି ଅଦୃଷ୍ଟି ହୋଇଅଛି ସେହି ପୁର,
ଅନନ୍ତ ନାମଟି ଘଣ୍ଟା ହୋଇଛି ତହିଁର ।
ଅନନ୍ତ ଶବଦ ତହିଁ ହୋଇଛି ପାହାରୀ,
ଏକୋଇଶ ଲକ୍ଷ ମନ୍ଦିର ଆକ୍ରାନ୍ତକୁ ଧରି ।
ପୁରମାନ ମଣ୍ଡଣି ହୋଇଛି ମନୋହର,
ଚାହିଁ ଦେଲେ ଦିଶୁଅଛି ବିଚିତ୍ର ପ୍ରକାର ।
ଶୁଣିଲୁ କି ନିରାକାର ପଶ୍ଚିମର ରୀତି,
ବୁଝାଇ କହୁ ଦକ୍ଷିଣ ଦୁଆର ବିଭୂତି ।
ଦକ୍ଷିଣ ଦିଗ ଦୁଆରେ ଜଗନ୍ନାଥ ଛନ୍ତି,
ବାର ଲକ୍ଷ ଅଛି ତହିଁ ମନ୍ଦିର ବିଭୂତି ।
ଜଗନ୍ନାଥ ନାମ ହୋଇଅଛି ଘଡ଼ି ଘଣ୍ଟା,
ନିରନ୍ତରେ ସ୍ନେହ ଭକ୍ତି ଲାଗିଅଛି ନିଷ୍ଠା ।
ଶବଦ ବ୍ରହ୍ମଟି ତହିଁ ହୋଇଛି ପାହାରୀ,
ଚଉଦ ଲକ୍ଷ ମନ୍ଦିର ଆକାରକୁ ଧରି ।
ସୁବର୍ଣ୍ଣ ଇଟା ପଥର ଲାଗିଅଛି ତହିଁ,
ଅଷ୍ଟ ଧାତୁ ନୁହେଁ ବ୍ରହ୍ମ ଜାତି ସେ ଅଟଇ ।
ଛାଏଣି ହୋଇଛି ତହିଁ ତେଜପତ୍ର ମାନ,
ଶୋଭାକାର ଦିଶୁଛି ଘଟଣା ଅନୁମାନ ।
ଶୁଣିଲୁକି ନିରାକାର ତହିଁର ଭିଆଣ,
ବୁଝାଇ କହିବା ଯେତେ ପୂର୍ବର ବିଧାନ ।
ପୂର୍ବ ଦ୍ୱାରେ ବାର ଲକ୍ଷ ମନ୍ଦିର ବସତି,
ଚବିଶ ଲକ୍ଷ ରାଧିକା ଶ୍ରୀକୃଷ୍ଣ ଅଛନ୍ତି ।

ରଙ୍ଗ ପିଙ୍ଗଳ ହିଙ୍ଗୁଳ ସୁବର୍ଣ୍ଣର ଛଟା,
ବଇଡୁର୍ଯ୍ୟ ବ୍ରହ୍ମଜାତି ତହିଁ ପିଣ୍ଡା କୋଠା ।
ଶ୍ରୀକୃଷ୍ଣ ନାମଟି ତହିଁ ହୋଇଛି ପାହାରୀ,
ବାର ଲକ୍ଷ ମନ୍ଦିରର ଅକାରକୁ ଧରି ।
ନାରଦ ଶବଦ ହୋଇଅଛି ଘଡ଼ି ଘଣ୍ଟା,
ଶୁଭ ଅନୁକୂଳ ବାର ହେଉଅଛି ପିଟା ।
ଶୁଣିଲୁ କି ନିରାକାର ମହାନିତ୍ୟ କଥା,
ଇଟା ଫୁଟାଇ କହିଲେ ବଢ଼ିଯିବ ପୋଥା ।
କୃଷ୍ଣ ମଣ୍ଡଳରେ ଚଳେ ମୃଦଙ୍ଗ କର୍ତ୍ତାଳ,
ଶଙ୍ଖ ଶିଙ୍ଗା କାହାଳିରେ ଶବଦ ଚହଳ ।
ପରମ ମଣ୍ଡଳେ ଚଳେ ସିତାର ବେହେଲା,
ଝାଞ୍ଜ ମର୍ଦ୍ଦଳ ଶବଦେ ମେଦିନୀ ଉଛୁଳା ।
ଅନନ୍ତ ମନ୍ଦିରେ ବାଜେ ଖଞ୍ଜଣୀ ମନ୍ଦିରା,
ଏକତାଳୀ ବାଦ୍ୟ ନାଦ ପୃଥ୍ୱୀକମ୍ପା ଧାରା ।
ଜଗନ୍ନାଥ ମଣ୍ଡଳରେ ନିଶାଣ ଚମକ,
ଦେବୀଙ୍କର ବାଦ୍ୟ ସେ ଯେ ପୃଥ୍ୱୀ କି ଚମକ ।
ଅନନ୍ତଙ୍କ ପୁରେ ଲାଗିଅଛି ଲକ୍ଷେ ଲୀଳା,
ମହା ବ୍ରହ୍ମଜ୍ଞାନର କୋଟିଏ ତେଜ କଳା ।
ଜଗନ୍ନାଥ ପୁରରେ ଲାଗିଛି ଲକ୍ଷେ ନାଟ,
ସେହିଠାରୁ ରଚନା ହେଉଛି ନଟକୂଟ ।
ଶ୍ରୀକୃଷ୍ଣ ପୁରରେ ଲକ୍ଷେ ଲୀଳା ଆଭରଣ,
କାମ ପ୍ରେମ କଙ୍କଣାଟି ହେଉଛି ଉଦ୍ୟାନ ।
ପରମ ମନ୍ଦିରେ ଲାଗିଅଛି ଲକ୍ଷେ ଲୀଳା,
କୋଟିଏ ଅନଳ ଦିଶେ ଜ୍ୟୋତି ବ୍ରହ୍ମକଳା ।
ଅନନ୍ତ ମଣ୍ଡଳୁ ଜାତ ହେଉଛି ଅନଳ,
ପରମ ମଣ୍ଡଳୁ ଜାତ ପବନ ଶୀତଳ ।
ଶ୍ରୀକୃଷ୍ଣ ମଣ୍ଡଳୁ ଜାତ ହେଲେ ନାଦ ବିନ୍ଦୁ,
ଜଗନ୍ନାଥ ଭୁବନୁ ପ୍ରକାଶ ରୂପ ଇନ୍ଦୁ ।
ଅନନ୍ତ ମଣ୍ଡଳୁ ଜାତ ହେଉଅଛି କ୍ଷୀର,

ପରମ ମଣ୍ଡଳୁ ଜାତ ହେଉଅଛି ନୀର ।
କୃଷ୍ଣ ମଣ୍ଡଳରୁ ଜାତ ହେଉଛି ବକତା,
ଜଗନ୍ନାଥ ମଣ୍ଡଳରୁ ସ୍ଫୁରୁଛି ବାରତା ।
ଅନନ୍ତ ଅଙ୍ଗରୁ ଜାତ ହେଉଛି ଶବଦ,
ପରମ ଅଙ୍ଗରୁ ଜନ୍ମ ହେଉଅଛି ଭେଦ ।
ଶ୍ରୀକୃଷ୍ଣ ଅଙ୍ଗରୁ ଜାତ ହେଉଅଛି ବେଦ,
ଜଗନ୍ନାଥ ଶ୍ରୀଅଙ୍ଗରୁ ହେଉଛି ସମ୍ବାଦ ।
ଅନନ୍ତ ମନ୍ଦିରୁ ଜାତ ହେଉଅଛି ହାଇ,
ଦେହ ଆଳସିକ ହେଲେ ନିଦ୍ରା ତ ଘୁମାଇ ।
ପରମ ମନ୍ଦିର ଛାଇ ଜନମ ହୋଇଲା,
ଜ୍ୟୋତିର୍ମୟ ବ୍ରହ୍ମତେଜ ଜାଲ ବେଢ଼ାଇଲା ।
କୃଷ୍ଣ ମନ୍ଦିରରୁ ତହୁଁ ଘୋଟିଲା ଅଚେତା,
ଜଗନ୍ନାଥ ମନ୍ଦିରରୁ ଜନ୍ମିଲା ଅଶକତା ।
ଶୁଣିଲୁ କି ନିରାକାର ମଣ୍ଡଳ ଆକାର,
ଶିର କର୍ଣ୍ଣ ଲଲାଟର ଚକ୍ରର ବିଚାର ।
ତୋଳା ହୋଇଅଛି ପାଞ୍ଚହାତିଆ ମନ୍ଦିର,
ଛଡ଼ ଖୁମ୍ବେ ତିଆରି ହୋଇଛି ସେହୁ ଘର ।
ସାତ ହାତ ଘର ତହିଁ ଉତ୍ସର୍ଗ ଆରମ୍ଭ,
ତ୍ରିଅ ଶେଣୀ ଉଠାଇଛି ପୋତି ନବ ଖୁମ୍ବ ।
ନବହାତିଆ ମନ୍ଦିର ହୋଇଛି ରଚନା,
ଷୋଳ ଖୁମ୍ବେ ନିର୍ଭାଶେଣୀ ଅଟେ ଗୋଟି ସିନା ।
ବାରହାତିଆ ମନ୍ଦିର ନିର୍ମାଣ ହୋଇଛି,
ଅଠର ଖୁମ୍ବରେ ନବ ଶେଣୀ ଚଢ଼ାଇଛି ।
ଚଉଦହାତିଆ ଘର ରଚିଅଛି ତହିଁ,
ଚବିଶ ଖୁମ୍ବରେ ବାରଶେଣୀ ଅଛି ଲିହି ।
ଷୋଳହାତିଆ ମନ୍ଦିର ମହା ନିତ୍ୟେ ଅଛି,
ଅଠତିରିଶ ଖୁମ୍ବରେ ନିର୍ମାଣ ହୋଇଛି ।
ଶେଣୀ ଲାଗିଅଛି ତହିଁ ଊନବିଂଶ ଖଣ୍ଡ,
ଆବର ଲାଗିଛି ତହିଁ ଚାରି କଣ କାଣ୍ଡ ।

ଅଠର ହାତିଆ ଘର ସେ ଭୁବନେ ଅଛି,
ପଚାଶ ଖୁମ୍ବରେ ପୁର ନିବାଡ଼ ହୋଇଛି ।
ପଞ୍ଚବିଂଶ ଖୁମ୍ବ ଶେଣୀ ଲାଗିଅଛି ତହିଁ,
ଉରମାନ ଲାଗିଅଛି କଳଣା ନ ଯାଇ ।
ଏକୋଇଶହାତିଆ ଘର ସେ ଭୁବନ ଜାଣ,
ଚତୁର୍ଦ୍ଦଶ ଖମ୍ବ ଲାଗିଅଛି ପରମାଣ ।
ଦୁଇପଣ କୋଡ଼ିଏକ ଶେଣୀ ଅଛି ଲାଗି,
କାନ୍ଧିଆ ପଡ଼ିଛି ତହିଁ ଧାରଣା ନିଯୋଗୀ ।
ଚବିଶହାତ ମନ୍ଦିର ମହାନିତ୍ୟେ ଦେଖ,
ପଚାଶ ଖୁମ୍ବ ଲାଗିଅଛି ଅନୁମାନେ ଲେଖ ।
ଅଷ୍ଟାଦଶ ହାତରେ ରଚନା ଯେଉଁପୁର,
ଷାଠିଏ ଖୁମ୍ବରେ ଯାଇ ହୋଇଛି ତିଆର ।
ତିନିପଣ ଦୁଇ କୋଡ଼ି ଲାଗିଅଛି ଶେଣୀ,
ଅନୁଭବ କଲା ଲୋକ ପାରିବ ଯେ ଜାଣି ।
ବତିଶ ହାତରେ ହୋଇଅଛି ଯେଉଁପୁର,
ଚଉଷଠୀ ଖୁମ୍ବ ପୋତି ହୋଇଛି ତିଆର ।
ଚାରିପଣ ଦୁଇକୋଡ଼ି ଶେଣୀ ଅଛି ପଡ଼ି,
କରତ ବଛନା ପ୍ରାଏ ଦିଶେ ଧାଡ଼ି ଧାଡ଼ି ।
ଛବିଶ ହାତରେ ନିବାଡ଼ିଛି ଯେଉଁ ଘର,
ଅଶୀଏ ପାଞ୍ଚ ଖୁମ୍ବରେ ହୋଇଛି ତିଆର ।
ପାଞ୍ଚପଣ ଦୁଇକୋଡ଼ି ଶେଣୀ ଅଛି ଚଡ଼ି,
ଛାଏଣି ଆକୃତି ଦିଶେ ଯେସନେକ ନାଡ଼ୀ ।
ଚାଳିଶ ହାତ ମନ୍ଦିର ଅଛି ମହାନିତ୍ୟେ,
ଶହେ ଅଷ୍ଟ ଖୁମ୍ବ ଲାଗେ କହୁଅଛି ତୋତେ ।
ଦୁଇଶ ଷାଠିଏ କୋଡ଼ି ଶେଣୀ ଲାଗେ ତାର,
ତୋ ଆଗେ କହୁଛି ବାବୁ ଶୁଣ ନିରାକାର ।
ଅଠଚାଳିଶ ହାତରେ ଅଛି ଯେଉଁ ଘର,
ବିଂଶ ଶହେ ଖୁମ୍ବ ଲାଗି ହୋଇଛି ତିଆର ।
ତିନିଶ ପଣେକ ଶେଣୀ ଲାଗେ ବାବୁ ତହିଁ,

ସାବଧାନ ହୋଇ ଶୁଣ ଫେଡ଼ି ଦେଲୁ କହି ।
ବାଉନହାତିଆ ପୁର ମହାନିତ୍ୟ ପୁରେ,
ଦୁଇପଣ ଖୁମ୍ବ ଲାଗିଅଛି ସେ ତହିଁରେ ।
ତିନିଶତ ତିନିକୋଡ଼ି ଲାଗିଅଛି ପାଟି,
କଳି ନୁହେ ଘର ଅନୁମାନରେ ନ ଘଟି ।
ଛୟାବନ ହାତ ଘର ହୋଇଛି ରଞ୍ଜନା,
ବିଂଶାଶହେ ଖୁମ୍ବ ଲାଗି ହୋଇଛି ଘଟଣା ।
ସାତପଣ ଶେଣୀ ଲାଗିଅଛି ସେ ମନ୍ଦିରେ,
କୁମ୍ଭ ବସିଅଛି ଘରମାନଙ୍କ ଉପରେ ।
ଷଠୀହାତ ପରିଯନ୍ତେ ଅଛି ଯେଉଁ ଘର,
ଦୁଇଶତ ଦୁଇକୋଡ଼ି ଖୁମ୍ବରେ ତିଆର ।
ତିନିଶତ ଦୁଇପଣ ପାଟି ଲାଗେ ତହିଁ,
ସେ ମନ୍ଦିର ନରଲୋକ କଳି ନ ପାରଇ ।
ଷାଠିଏ ହାତିଆ ଠାରୁ ଘର ଆଉ ନାହିଁ,
ତହିଁରୁ ଅଧିକ ହେଲେ ପୁର ବୋଲି କହି ।
ଷାଠିଏ ଭିତରେ ଯେତେ ଘରମାନ ଛନ୍ତି,
ଲେଖାରେ ବଖୁରି ସେ ଯେ ମନ୍ଦିର ବୋଲାନ୍ତି ।
ଷାଠିଏ ହାତ ଭିତରେ ହୁଏ ଯେତେ ଘର,
ପୁର ବୋଲାଯାଏ ଭୁବନେକ ଅନ୍ତେଶ୍ୱର ।
ତହିଁରୁ ଅଧିକ ଯେବେ ତିଆରି ହୁଅଇ,
ବିଂଶାଶହେ ହାତ ହେଲେ କୁଞ୍ଜେ ଲେଖାଯାଇ ।
ତହିଁରୁ ଅଧିକ ହେଲେ ଯୋଜନେ ଅଟଇ,
ଯୋଜନରେ ଦୀର୍ଘ ପ୍ରତି ଚଉରାଶୀ କହି ।
ତହିଁରୁ ଅଧିକ ଯେବେ ଚାରିଗୁଣ ହୁଏ,
ନିତ୍ୟ ସ୍ଥଳି ଭୂମି ସେ ଦ୍ୱାଦଶ ବୋଲାଯାଏ ।
ତହିଁରୁ ଅଧିକ ହେଲେ ମଣ୍ଡଳ ଅଟଇ,
ଆଠଗୁଣ ଦୀର୍ଘ ପ୍ରତି ସ୍ଥଳ ବୋଲି କହି ।
ତହିଁରୁ ଅଧିକ ହେଲେ ବଢ଼େ ଅଣସଂଖ୍ୟା,

ମହାନିତ୍ୟ ସହସ୍ରଦଳ କୁଞ୍ଜେ ହୁଏ ଲେଖା ।
ତହିଁରୁ ଅଧିକ ହେଲେ ପଦ୍ମ ବୋଲି କହି,
ପଦ୍ମରୁ ଅଧିକ ହେଲେ ଗର୍ଭଟି ଅଟଇ ।
ଗର୍ଭରୁ ଅଧିକ ହେଲେ ବୋଲାଏ ଶକତି,
ଶକ୍ତିରୁ ଅଧିକ ହେଲେ ମହାବ୍ରହ୍ମ ମୂର୍ତ୍ତି ।
ଶୁଣିଲୁ କି ନିରାକାର ମନ୍ଦିର ସଞ୍ଚାର,
ଅପୂର୍ବ ଚରିତ ଏ ଅଟଇ ବିଦ୍ୟାସାର ।
ଆହୁରି କଥାଏ ତୁହି ଶୁଣ ଆଦିକନ୍ଦ,
ବୁଝାଇ କହିବା ରଚନାର ଭେଦ ବନ୍ଧ ।
ସେ ଯେଉଁ ପୁର ମଙ୍ଗଳ ମହାନିତ୍ୟ ଜାଣ,
ମାଈ ଅଣ୍ଡିରା ଦୁଜାତି ହୋଇଛି ଭିଆଣ ।
ଦୁଇଜାତି ଭେଦ କଥା ଶୁଣ ନିରାକାର,
କହିଦେବା ତୋତେ ଭେଦ ବର୍ଣ୍ଣର ବିଚାର ।
ପୁରୁଷ ଅନ୍ତ ସ୍ୱରୂପ ଶମ୍ଭୁର ଆକାର,
ସ୍ତିରୀ ଅଙ୍ଗରେ ଶଙ୍ଖନ ଭିନ୍ନେ ପରକାର ।
ଦୁଇ ରୂପ ଦୁଇ ଜାତି ରଞ୍ଜିତ ସେ ଜାଣ,
ଏକ ବ୍ରହ୍ମରୁ ଦ୍ୱିତୀୟ ହୋଇଲେ ଜନମ ।
ଏକ ଶକତିରୁ ଯହୁଁ ହେଲେ ଦୁଇ ଜାତ,
ବେନି ବର୍ଣ୍ଣ ତେଣୁ କରି ହୋଇଲେ ଏକାନ୍ତ ।
ଗୁରୁଙ୍କୁ ସେବି ପୁରୁଷ ବୋଲାଇଲା ଦାସ,
ସ୍ତିରୀଗୁରୁ ପାଦେ ସେବି ହେଲେ ଦାସୀ ଦାସ ।
ଯେସନକ ଜଳ ପବନର ଭେଦ ନାହିଁ,
ପୁରୁଷ ଯେଣିକି ଯିବ ସ୍ତିରୀ ଯିବ ତହିଁ ।
ଯେମନେ ମାଟି ପଥର ସର୍ଜିଲା ଦଇବ,
ଏମାନଙ୍କୁ ଭିନ୍ନାଭିନ୍ନ କରି କେ କହିବ ।
ଯେସନକ କ୍ଷୁଧା ତୃଷା ଛନ୍ତି ବେନି ମୂର୍ତ୍ତି,
ଏକା ପାଖୁଡ଼ା ଗୋଟିକ ହୃଦେ ଫଳିଛନ୍ତି ।
ସେହି ରୂପେ ପତି ପତ୍ନୀ ଏକ ବ୍ରହ୍ମେ ଜାତ,

ଭିନ୍ନାଭିନ୍ନ ଯେ କରିବ କୁଳ ଯିବ ହତ ।
ବ୍ରହ୍ମ ଭଗତିରେ ଆଉ ବର୍ଣ୍ଣ ଭେଦ ନାହିଁ,
ଯେ ଭେଦ କରିବ କୁମ୍ଭୀନର୍କରେ ପଡ଼ଇ ।
ଗୁରୁ ଦୁଆରକୁ ସର୍ବେ ଅଟନ୍ତି ସମାନ,
ସ୍ତିରୀ ବା ପୁରୁଷ ତହିଁ ନାହିଁ ବଡ଼ ସାନ ।
ଯେଉଁ ବ୍ରହ୍ମେ ବେନି ଜନ ହୋଇଛନ୍ତି ଜାତ,
କାୟା ବର୍ଣ୍ଣ ଭେଦ ସିନା ରହିଲା କଥାତ ।
ସ୍ତିରୀ ପୁରୁଷ ଯେ ଏହି ରଞ୍ଜନାର ମୂଳ,
ଯୁଗଳ ପଶ୍ଚାତେ ସିନା ସବୁ ହେଲା ଠୁଳ ।
ଯେତେବେଳେ ମାଟି ପୃଥ୍ୱୀ ନଥିଲାକ ହୋଇ,
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ନ ଥିଲେଟି କେହି ।
ଜଳ ପବନର ଠାରୁ ଜ୍ଞାନ ଆଉ ନାହିଁ,
ଏଠାରୁ ଅଧିକ ହେଲେ ଭେଦାନ୍ତ ଅଟଇ ।
ଶୁଣିଲୁ କି ନିରାକାର ବ୍ରହ୍ମଭେଦ ବାଣୀ,
ଠିକ ଠିକ କରି ତୋତେ ବୁଝାଇଲୁ ଆଣି ।
ଗୁରୁ ଶିଷ୍ୟଙ୍କର ବେନି ଚରଣକୁ ଆଶ,
ବ୍ରହ୍ମ-ନିରୂପଣ-ଗୀତା ଭଣେ ଭୀମଦାସ ।

ଇତିଶ୍ରୀ ବ୍ରହ୍ମନିରୂପଣ ଗୀତା ସୁଜନଜନ ହିତା
ଗୁରୁ ଶିଷ୍ୟ ସମ୍ବାଦେ, ମହାନିତ୍ୟ ଗୁରୁମନ୍ଦିର ବର୍ଣ୍ଣନେ,
ଭେଦା-ଭେଦ କଥନେ ଆଗମ ନିଗମ
ବିଚାରଣେ ନାମ ଏକାଦଶୋଽଧ୍ୟାୟଃ ।

## ଦ୍ୱାଦଶ ଅଧ୍ୟାୟ

### ନିରାକାର ଉବାଚ

ନିରାକାର ବୋଇଲେ ଶୁଣିବା ନାରାୟଣ,
ଯାହା ଆଜ୍ଞା ହେଲା ସ୍ୱାମୀ ଉଚିତ ପ୍ରମାଣ ।
ଠିକ ଠିକ କରି ବେଦ ମତରେ କହିଲ,
ଭେଦାନ୍ତ ନିର୍ଗୁଣ ଜ୍ଞାନ ଗୁପତେ ରଖିଲ ।

ଅନନ୍ତ ନାମଟି କେଉଁ ଅକ୍ଷର ଶବଦ,
ଫେଡ଼ି ମୋତେ କହ ଶୁଣି ଅତ୍ମା ହେଉ ବୋଧ ।
ପରମ ନାମଟି କିସ ଶବଦ ଗୋଚର,
ଏ କଥା ବିଚାରି ମୋତେ କହ ଜ୍ଞାନ ସାର ।
କୃଷ୍ଣ ନାମ ଶବଦ ଅଟଇ ଭେଦ କିସ,
ଏହା ମୋତେ ଫେଡ଼ି କହ ହେବ ମନ ତୋଷ ।
ଜଗନ୍ନାଥ ନାମ କିସ ଶବଦ ତା ଅଟେ,
ଅକ୍ଷର ଭେଦରେ ମୋତେ କହ ଏହି ଘଟେ ।
ଏତେ ବୋଲି ନିରାକାର ଯୋଡ଼ି ବେନିକର,
ପାଏ ପଡ଼ି ସାଷ୍ଟାଙ୍ଗରେ ନମିଲେ ପୟର ।

## ଶ୍ରୀ ଗୁରୁଦେବ ଉବାଚ

ଗୁରୁଦେବ ବୋଲୁଛନ୍ତି ଶୁଣ ନିରାକାର,
ବୁଝାଇ କହିବା ତୋତେ ଭେଦର ବିଚାର ।
ଏ ଘଟ ଶିର କମଳ ମେରୁଦଣ୍ଡ ଶିଖେ,
ପୃଷ୍ଠ ଭାଗରେ ଅନନ୍ତ ବିଜୟ ପ୍ରତ୍ୟକ୍ଷେ ।
ଙ ଅକ୍ଷରଟି ତହିଁ ଓଁ କାରେ ବସିଲା,
ଶକତି ପରାଏ ଆକାରରେ ବିଶ୍ରାମିଲା ।
ନଅ ଅକ୍ଷରଟି ତହିଁ ନାମ ବୋଲାଇଲା,
ନାମରୁ ଭେଦାନ୍ତ ତହୁଁ ଚେତା ସରିଗଲା ।
ତଅ ଅକ୍ଷରଟି ତହିଁ ତାରଣ ଅଟଇ,
ଭେଦ ନିର୍ଗୁଣକୁ ଧରି ବର୍ଣ୍ଣଟି ବସଇ ।
ଓଁ ଅକ୍ଷରଟି ଦିଶେ ଅଗ୍ନି ତେଜମାଏ,
ଶକତି ବସିଛି ତହିଁ ଅଗ୍ନି ତେଜ ପାଏ ।
ନଅ ଅକ୍ଷରଟି ତହିଁ ଦିଶେ ତମ୍ବାବର୍ଣ୍ଣ,
ନଅ ମଅ ଦୁଇମଧ୍ୟେ ଭେଦଅଛି ଜାଣ ।
ତଅ ଅକ୍ଷରଟି ବର୍ଣ୍ଣ ଦିଶଇ ଧବଳ,
ଜ୍ଞାନନେତ୍ର ଥିବ ଯାର ପାଇବ ସେ ସ୍ଥଳ ।

ଅନନ୍ତ ନାମଟି ଯେହୁ ତିନିକ୍ଷର ବସେ,
ଏ ମଥାର ପୃଷ୍ଠଭାବେ ରହିଅଛି ପାଦେ ।
ଅନନ୍ତ ବୋଲନ୍ତେ ଅନୁମାନ ନ ପାଇଲା,
ଉହାଡ଼ରେ ରହିବାରୁ ଅଗୋଚର ହେଲା ।
ପରମ ନାମର ଭେଦ ଶୁଣ ଏବେ ବାବୁ,
ଭିନ୍ନ ଭିନ୍ନ କରି ତୋତେ କହିଦେବା ସବୁ ।
ପଅ ଅକ୍ଷରଟି ଅଟେ ପ୍ରାଣ ଶକ୍ତି ଲିଙ୍ଗ,
ମଣ୍ଡଳ ଆକାରେ ତାର ହୋଇଛି ଆରମ୍ଭ ।
ରଅ ଅକ୍ଷରଟି ତହିଁ ଶରଣ ରକ୍ଷଣ,
ରରକୁ ପରତେ ହେଲେ ନୋହିବ ମରଣ ।
ମଅ ଅକ୍ଷରଟି ତହିଁ ମଇ ଅଟେ ଜାଣ,
ଚିହ୍ନି ନ ପାରିଲେ ମୋହ ମାୟା କରେ ଭ୍ରମ ।
ପଅ ଅକ୍ଷରଟି ଦିଶେ କୁଙ୍କୁମ ବରଣ,
ପଦ ପ୍ରାଏ ଢଳଢଳ ଅରୁଣ ପ୍ରମାଣ ।
ରର ଅକ୍ଷରଟି ଦିଶେ ଶୁକ୍ଳାମ୍ବର ମୂର୍ତ୍ତି,
ତହିଁର ଶବଦମାନେ ବେଦାନ୍ତ ଆକୃତି ।
ମ ଅକ୍ଷରଟି ଜ୍ୟୋଛନା ଦିଶେ କଳାପ୍ରାଏ,
ଯେ ଚିହ୍ନି ପାରିବ ଦେଖ ଜାଜ୍ଜ୍ୱଲ୍ୟତା ମଏ ।
ପଅ ଟଅ ବେନିକ୍ଷର ମଧ୍ୟରେ ପ୍ରକାଶେ,
ରରକ୍ଷର ଭେଦ ଅର୍ଥ ସବୁଙ୍କୁ ନ ଆସେ ।
ପରମ ନାମଟି ତହିଁ ବସେ ତିନିକ୍ଷରେ,
ଆବୋରି ରହିଛି ଶିର କର୍ଣ୍ଣ ବାମକରେ ।
କୃଷ୍ଣ ନାମରେ ଶବଦ ଶୁଣ ନିରାକାର,
ତୋ ଆଗେ କହିବା ଫେଇ ଭେଦର ବିଚାର ।
କୃଉ ଅକ୍ଷରଟି ଯେଉଁ କାମ ଶକ୍ତି କଳା,
ଶୁଭ ଅକ୍ଷରେ କା ହୋନ୍ତେ କଳପ ଜନ୍ମିଲା ।
ର ଅକ୍ଷରଟି ଯେହୁ ଅଟେ ରଜ ରସ,
ରା ରାର ଭିତରେ ପ୍ରେମ ଭେଦରେ ପ୍ରକାଶ ।
ସ ଅକ୍ଷରଟି ତହିଁ ପବନ ହୋଇଛି,
ପାଣିର ବଳେ ପବନ ବଢ଼ ଉଠୁଅଛି ।

କୁଉ ଅକ୍ଷର ରୂପଟି ଗଉର ବରଣ,
ଶକତି ଆକାରେ ହୋଇଅଛି ଆଭରଣ ।
ଗଂଉ ଅକ୍ଷର ବର୍ଣ୍ଣଟି ଦଧିପ୍ରାଏ ଦିଶେ,
ଚେତାବିନ୍ଦୁ ବ୍ରହ୍ମ ତହିଁ ଲାଲୁଆ ପ୍ରକାଶେ ।
ସଅ ଅକ୍ଷରଟି ଦିଶେ ପାଣ୍ଡୁର ବରଣ,
ଶଶୀ ତେଜ ଜ୍ୟୋଛନା ଅଟଇ ବିସ୍ତାରଣ ।
କୃଷ୍ଣ ନାମ ଶବଦରେ ତ୍ରିଅକ୍ଷର ବସେ,
କୁରୁକ୍ଷଣ ମାତ୍ର ଦୁଇ ଅର୍ଥରେ ନମିଶେ ।
ଏହି ଶିର ମୁଖଦ୍ୱାର ବର୍ଣ୍ଣ ଭେଦ କଥା,
ଶୁଣ ନିରାକାର ତୁହେ। ମନେ ଧର ଚେତା ।
ଭ୍ରୂଲତା ପଟରେ ଜ୍ଞାନ କପୋଳର ନ୍ୟାଏ,
ବୁଝାଇ କହିଲେ ଭେଦ ମହାଦୂରନୁଏ ।
ଜଗନ୍ନାଥ ନାମରେ ଭେଦାନ୍ତ ଦେବାକହି,
ଏକମନ ହୋଇ ଶୁଣ ବେନିକର୍ଣ୍ଣ ଦେଇ ।
ଜଅ ଅକ୍ଷରଟି ଯେହୁ ଜୀବନ ସେ ଲିଙ୍ଗ,
କୋଟି କୋଟି ତହିଁରୁ ହେଉଛି ଅଙ୍ଗଭଙ୍ଗ ।
ଗଅ ଅକ୍ଷରଟି ଯେହୁ ଗର୍ଭ ବୋଲି କହି,
ଭାତଫୁଟା ପ୍ରାଏ ବ୍ରହ୍ମ ପଞ୍ଚନ ହୁଅଇ ।
ନଅ ଅକ୍ଷରଟି ବହୁଅଛି ନାମରାଶି,
ସୋହତିରେ ପଡ଼ି ଆସେ କାଳନ୍ଦୀରେ ଭାସି ।
ଥଅ ଅକ୍ଷରଟି ଯେହୁ ତୁଳନ ନିକିତି,
ବ୍ରହ୍ମକୁ ମରମ ଖଞ୍ଜେ ଦେଉଛି କରତି ।
ଜଅ ଅକ୍ଷର ବରଣ ଅରୁଣର କ୍ରାନ୍ତି,
ଡଗ ଡଗ ସେ ଶକ୍ତିରୁ ଉଠୁଛି ତପତି ।
ଗଅ ଅକ୍ଷର ଜ୍ୟୋଛନା ରଙ୍ଗବର୍ଣ୍ଣ ଦିଶେ,
ଚମକି ଶବଦ ଘେନି ମଣ୍ଡଳ ପ୍ରକାଶେ ।
ନଅ ଅକ୍ଷରର ରୂପ ଶ୍ୱେତ ବର୍ଣ୍ଣ ଦିଶେ,
ଜୀବ ଅଙ୍ଗେ ଭେଦ ଭୂତ ଭବିଷ୍ୟ ପ୍ରକାଶେ ।
ଥଅ ଅକ୍ଷର ଚରଣ ହୀରାକଣି ପ୍ରାୟେ,
ପାରା ପ୍ରାଏ ତଳ ହଳ ହେଉଛି ତା କାଏ ।

 

ଶର ବର୍ଣ୍ଣ ଡାହାଣ ଭାଗର ଏହୁ ଅର୍ଥ,
ଡାହାଣ ଭାଗରେ ଛନ୍ତି ଜୀବ ମୁକ୍ତି ଭୂତ ।
ଶୁଣିଲୁ କି ନିରାକାର ମହାନିତ୍ୟ ବୁଝ,
ଏହାଙ୍କୁ ଚିହ୍ନି ଭେଦିଲେ ରହେ ନିଜ ଦେହ ।

## ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ବ୍ରହ୍ମବେତ୍ତା,
ଏ ସେ ମହା ନିତ୍ୟସ୍ଥଳୀ ନିରୂପଣ କଥା ।
ପିତା ଅଙ୍ଗେ ଜୀବ ପିଣ୍ଡ ଘଟଣା ହେଉଛି,
ହେତୁ ଚେତା ଦୁଇ ଏ କାହିଁରୁ ପାଉଅଛି ।
ଠୁଳରୂପ ଧରି ସିନା ଆକାଶୁ ଖସିଲା,
ପିତା ଅଙ୍ଗ ତେଜି ମାତା ପଦ୍ମରେ ପଶିଲା ।
ପିତା ଅଙ୍ଗୁ ସକଳ ଧରିଣ ଆସିଥିଲା,
କି ଅବା ମାତା ଗର୍ଭରେ ସମସ୍ତ ପାଇଲା ।
ବିନ୍ଦୁରୂପ ଦ୍ରୋଛନା ଧଇଲା କେଉଁପରି,
କେତେଠାରୁ ଠୁଳାନ୍ତ ହୋଇଲା ଭାଗକରି ।
ପିତାର ଅଙ୍ଗ ଶକତି ନିଷା ବୋଲି କହି,
କି ପ୍ରକାର ପାଣି ଲାଜ ହେଲା କହ ଫେଇ ।
ଏ କଥା ଗୋଟାକୁ ମୋର ବହୁତ ସଂଶୟ,
ଏଥିରେ ଅରଥ ସନ୍ଧି ତତ୍ତ୍ୱ ମୋତେ କହ ।

## ଶ୍ରୀଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ତୁହୋ ଶୁଣ ଆଦିକନ୍ଦ,
ବୁଝାଇ କହିବା ଜୀବ ପିଣ୍ଡ ଭେଦ ବନ୍ଧ ।
ଅକାଶ ମଣ୍ଡଳୁ ଶୂନ୍ୟ ହେଉଅଛି ଜାତ,
ଶୂନ୍ୟ ରୂପ ବିନେ ଗୋଡ଼ ଆକାର ସମ୍ଭୂତ ।
ପବନ ଗୋଡ଼ରୁ ଜାତ ହେଉଅଛି ଭେଦ,
ପବନ ପାଦ ଶବ୍ଦରୁ ସଞ୍ଚରୁଛି ନାଦ ।
ନାଦର ଉଝାଳ ଘେନି ଜାତ ହେଲା ବିନ୍ଦୁ,
ଆକାରେ ପ୍ରକାଶ ହେଲେ କୁହୁଡ଼ିଆ ବିନ୍ଦୁ ।
ଅ ବୋଲନ୍ତେ ଆସି ଆକାର ଧଇଲା,

ଶୂନ୍ୟ ଭେଦ ଶବଦ ବେଦାନ୍ତ ଯୁକ୍ତ ହେଲା ।
ଶୂନ୍ୟ ପବନ ଆକାରେ ହାନ୍ଦୋଳନ୍ତେ ଭରି,
ବିନ୍ଦୁବ୍ରହ୍ମ ଦିଶିଲା ଯେସନେ ଛଳ ବାରି ।
ଜଳ ମନ୍ଥନ କରନ୍ତେ ଜ୍ୟୋତି ରୂପ ହେଲା,
ବ୍ରହ୍ମ ଯୋଗସ୍ଥଳେ ପଡ଼ି ଜୀବ ବୋଲାଇଲା ।
ଯେତେବେଳେ ଜୀବ ପିଣ୍ଡ ଘଟଣା ହେଉଛି,
ସବୁ ଠୁଳକରି ଅନାହତେ ସିଝାଉଛି ।
ଅନନ୍ତ ନାମ ତହିଁରେ ମିଶାଉଛି ଅଠା,
ମେଦକରି ଏକଠାରେ ବାନ୍ଧୁଅଛି ମେଣ୍ଡା ।
ପରମ ନାମଟି ତହିଁ ହେଉଅଛି ପାଣି,
ଅଠାଣି ପେଶାଣି ହେଉଅଛି ଦୁଇବେନି ।
ଶ୍ରୀକୃଷ୍ଣ ନାମଟି ତହିଁ ବୃନ୍ଦକ ଟାଙ୍ଗଣା,
ମେଦକରି ଜୀବ ପିଣ୍ଡ ହେଉଛି ପାଙ୍ଗଣା ।
ଜଗନ୍ନାଥ ନାମଟି ହେଉଛି ରୂପ ଜାତି,
ସକଳ ମିଶାଇ ଏକ ଠାବରେ ପାଗନ୍ତି ।
ଅନନ୍ତଙ୍କ ତ୍ରିଅକ୍ଷର ଲାଗିଅଛି ତହିଁ,
ପରମ ତ୍ରୟ ଅକ୍ଷର ସପ୍ତମ ବୋଲାଇ ।
ଶ୍ରୀକୃଷ୍ଣ ତ୍ରି ଅକ୍ଷର ତହିଁରେ ମିଶୁଛି,
ତିନି ତିନି ଥର କଲେ ନବମ ହେଉଛି ।
ଜଗନ୍ନାଥ ଚାରିକ୍ଷର ତହିଁରେ ମିଶୁଛି,
ତ୍ରିଗୁଣ ବୋଲନ୍ତେ ନରେ ଅକ୍ଷର ଲାଗୁଛି ।
ସେ ତେର ଅକ୍ଷର ତେର କଳା ବୋଲାଉଛି,
ତେରୁ ଗୁଣେ ଜୀବ ପିଣ୍ଡ ଘଟଣା ହେଉଛି ।
ତେବେ ସିନା ବୋଲାଉଛି ବ୍ରହ୍ମ ବୀଜ ନାମ,
ଜୀବ ଘଟଣାଟି ଜ୍ଞାନୀ ଜନଙ୍କୁ ଅଗମ୍ୟ ।
ଯେତେବେଳେ ବ୍ରହ୍ମ ବୀଜ ସ୍ଥଳରୁ ଖସୁଛି,
ମହିମା ଶକତି ଖମ୍ଭ ଉପରେ ବସୁଛି ।
ମହିମାଙ୍କ ହସ୍ତ ନାହିଁ ଲାଗିଲେ ନଆସେ,
କର୍ମ କାଣ୍ଡବର ବାଞ୍ଛା ଦେଲେ ଯାଇ ଖସେ ।

 

ବ୍ରହ୍ମ ବୀଜ ଯେତେବେଳେ ଖସିଆସୁଅଛି,
ଲଲାଟ ଚକ୍ର ମଣ୍ଡଳେ ବେଢ଼ାଏ ବୁଲୁଛି ।
ବିହି ଧାତା ଧରିଛନ୍ତି କର୍ମଦଣ୍ଡ ଛପା,
ଜୀବ ମୁଣ୍ଡେ ଛପା ଦ୍ୟନ୍ତି ଅଢ଼ୈଅକ୍ଷର ଲେଖା ।
ତେବେ ସିନା ଜୀବ ବିନ୍ଦୁ ପିତାଙ୍କୁ ଆସେ,
କର୍ମ ସିଦ୍ଧି ଘେନି ତହିଁ ମାତା ଅଙ୍ଗେ ପଶେ ।
ହଅ ଅକ୍ଷରଟି ଯେହେତୁ ବୋଲି ଜାଣ,
ପିଣ୍ଡ ଶକ୍ତିରେ ପଶନ୍ତେ ହୁଅଇ ସିହାଣ ।
ଚଅ ଅକ୍ଷରରୁ ଚେତା ହେଉଅଛି ଜାଣ,
ରଜ ବୀଜ ପିଣ୍ଡ ମଧ୍ୟେ ଘେନି ଆସୁଛି ପରାଣ ।
ପିତା ଅଙ୍ଗ ମଧ୍ୟେ ଘେନି ଆସୁଛି ନିର୍ଗୁଣ,
ମାତାଙ୍କ ଅଙ୍ଗରୁ ପାଉଅଛି ଗୁଣ ଜ୍ଞାନ ।
ଶୁଣିଲୁ କି ନିରାକାର ଜୀବ ନିରୂପଣ,
ଏ ପ୍ରକାରେ ଆତ୍ମପିଣ୍ଡ ହୋଇଛି ସର୍ଜନ ।

## ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ନାରାୟଣ,
କଥାଏ ପୁଚ୍ଛିବି କୋପ ନ କରିବା ପୁଣ ।
ଏ ଘଟରେ କେଉଁଠାରେ ଅଛନ୍ତି ଶ୍ରୀଗୁରୁ,
କହି ଆଜ୍ଞା ହେଉ ମୋତେ ସୁଧା ଶ୍ରୀମୁଖରୁ ।
ବାମେ କି ଡାହାଣେ ଛନ୍ତି ନ ଜାଣଇ କିଛି,
ଗୁରୁ ମୁଖେ ଶୁଣିଥିଲେ ପରତେ ମୋ ଅଛି ।
ଗୁରୁ ନ କହିଲେ କିଛି ସଂଶୟ ନ ଯାଏ,
ଦେଖିଲା ଶୁଣିଲା କଥା ଅପରତେ ଥାଏ ।
ନିରାକାର ମୁଖକୁ ଚାହିଁଣ ଗୁରୁ ହସି,
ସାବଧାନ ହୋଇ ଶୁଣ ଠୁଳଶୂନ୍ୟବାସୀ ।
ଅପ୍ରସନ୍ନ ଭେଦ ତୋତେ ପ୍ରସନ୍ନ କରିବା,
ତୁ ଯେବେ ଅପ୍ରତେ କଲୁ ବୁଝାଇ କହିବା ।
ପଦେପଦେ ସୁଧାରସ ଅଟଇ ଏକଥା,

ଭେଦି ପାରିଲେ ମୂର୍ଖ ହେବ ଜ୍ଞାନବନ୍ତା ।
ଏ ଘଟରେ ବାମ ପାରଶ୍ବରେ ଗୁରୁଛନ୍ତି,
ମହିମା ଛାମୁରେ ନେଇ ଦର୍ଶନ କରାନ୍ତି ।
ଏ ପିଣ୍ଡ ପ୍ରାଣର ସେ ଅଟନ୍ତି ଦୀକ୍ଷା ଗୁରୁ,
ଜୀବନକୁ ତାରି ନ୍ୟନ୍ତି ପ୍ରକୃତି ପିଣ୍ଡରୁ ।
ଏ ଘଟକୁ ଜଗୁଆଳ ପରମ ପୁରୁଷ,
ଜୀବନ ସମୀପେ ସାକ୍ଷୀ ରୂପେ ପରକାଶ ।
ବାମ ଅଙ୍ଗଠାରୁ ଦେହ ପ୍ରଳୟ ହେଉଛି,
ପଶ୍ଚିମ ଭାଗକୁ ଫେରି ଡାହାଣେ ଘୋଟିଛି ।
ବାମ ଅଙ୍ଗୁ ରୋଗମାନେ ହେଉଛନ୍ତି ଜାତ,
ଦେହରେ ପୀଡ଼ା କରନ୍ତେ ଆତ୍ମା ହୁଏ ହତ ।
ଯମର ଭୁବନେ ଅଛି ଡାହାଣ ଅଙ୍ଗରେ,
ପରମକୁ ଆଜ୍ଞା ଘେନି ଆସ୍ୟ ଖିନ୍ନ କରେ ।
ଜୀବ ଦହିଁ ନାମ ଯହିଁ ଛନ୍ତି ଏକ ଫାଳେ,
ଡାହାଣ ଭାଗରେ କଣ୍ଠ ଚକ୍ରର ମଣ୍ଡଳେ ।
ଦ୍ୱାଦଶ ଯୁଣେକ ତହିଁ ଛଡ଼ା ଛଡ଼ି ଅଛି,
ମୋହ ତେଜି ଜୀବଆତ୍ମା ଚେତି ନ ପାରୁଛି ।
ପରମକୁ ଜୀବ ଖୋଜୁଅଛି ନିରନ୍ତରେ,
ଚିହ୍ନି ପାରିଲେ ସେ ଦୁଇ ଛନ୍ତି ଏକଠାରେ ।
ଯେସନେ ଜିହ୍ୱାର ଅଗ୍ର ନାଶାକୁ ନଯାଏ,
ସେହି ରୂପେ ପରମଟି ଜୀବପାଶେ ଥାଏ ।
ଯେସନେ ବେନି ନେତ୍ରେ ହୋଇଛି ଯାଉଁଳି,
ଏ ନେତ୍ରରୁ ଆରନେତ୍ର ନ ଦିଶେ ଅଗୁଳି ।
ସେହିପରି ଜୀବ ଧର୍ମ ଛନ୍ତି ଏକଠାରେ,
ମଧ୍ୟରେ ବାରଣ ହୋଇଛନ୍ତି ଏ ପ୍ରକାରେ ।
ଯେସନେକ ଜଳକୁମ୍ଭ ମଥାପରେ ଥାଇ,
ଓହ୍ଲାଇ ପିଇବେ ସିନା ତୃଷାର୍ତ୍ତ ପଳାଇ ।
ଅନୁମାନ ବୁଦ୍ଧି ଥିଲେ ଜଳକୁ ପିଇଲା,
ନୋହିଲେ ସେ ଜଳ ଥାଇ ତୃଷାର୍ତ୍ତରେ ମଲା ।

ସେହିରୂପେ ମଥାପରେ ଅଛି ନିଜ ନାମ
ନାମ ନାମ ବୋଲି ପ୍ରାଣୀ ହେଉଛନ୍ତି ଭ୍ରମ ।
ତୁ ଅବା ବୋଲିବୁ କାଳ କେଉଁଠାରୁ ଅସେ,
ଆପଣା ଘଟୁ ଉବୁରି ଆତ୍ମାଳିଙ୍ଗେ ଗ୍ରାସେ ।
କହିଲା ଶୁଣିଲା କଥା ମିଥ୍ୟା ଏ ବଚନ,
ତତ୍ତ୍ୱକୁ ପାଇବୁ ଆପ ଦେହେ କଲେ ଜ୍ଞାନ ।
ରାମ ରାମ ବୋଇଲେ କି କ୍ଷୟ ଯିବ ପାପ,
ଭାତ ଭାତ ବୋଇଲେ କି ପଳାଇବ ଭୋକ ।
ଆହାର ଭକ୍ଷିଲେ ସିନା ଆତ୍ମା ବୋଧ ହେବ,
ନାମକୁ ଭଜିଲେ ସିନା ମୁକତି ଲଭିବ ।
ଭଜିବାରେ କି ଲାଭ ଶୁଣିଲେ ଯାଇ ସିନା,
ଶୁଣିବାରେ କି ଲାଭ ପଢ଼ିଲେ ଯାଏ ଜଣା ।
ପଢ଼ିବାରେ କି ସୁଖ ବୁଝିଲେ ସିନା ଅଛି,
ବୁଝିବାରେ କିସ ପ୍ରିୟ ଭେଦ କର ବାଛି ।
ଭେଦ କଲେ କି ହେବ ଭଜିଲେ ଅଛି ସବୁ,
ଭଜୁଥିଲେ କି ହେବ ତେଜିଲେ ମିଳେ ପ୍ରଭୁ ।
ତେଜ୍ୟା କଲେ କି ହୋଇବ ଧରି ନ ପାରିଲେ
ଧରିଲେ କିସ ହେ ହୋଇବ ଚିହ୍ନି ନ ପାରିଲେ ।
ଚିହ୍ନିଲେ କି ହେବ ବାନ୍ଧି ଯେମନ୍ତ ନ ପାରେ,
ବାନ୍ଧିଲେ କି ହେବ ଯେବେ ଜାଗ୍ରତ ନ ଧରେ ।
ଧଇଲେ କି ହେବ ଲଭି ପାରିଲେ କି ଯାଇ,
ମଞ୍ଜି ପାରିଲେ ବ୍ରହ୍ମରେ ତେବେ ଲୀନ ହୋଇ ।
ଶୁଣିଲୁ କି ନିରାକାର ଜ୍ଞାନର ଆଚାର,
ନିର୍ବେଦ ନିଷ୍କାମ ବ୍ରହ୍ମ ଭକ୍ତିର ବିଚାର ।
ବ୍ରହ୍ମ ନିଜ ଆତ୍ମାନକୁ ଗୋଟିଏ ଉହାଡ଼,
ତାହାଙ୍କ ଭକତି ଅଟେ ସବୁଠାରୁ ବଡ଼ ।
ବ୍ରହ୍ମ ବୋଲିବାର କଥା ବହୁତ କଠିଣ,
ସତ୍ୟ ଧର୍ମ ପାଳିବାର ବଡ଼ଇ କଷଣ ।
ବ୍ରହ୍ମକୁ ଭଜିଲା ଲୋକ ବ୍ରହ୍ମେ ହୋନ୍ତି ଲୀନ,
କ୍ରିୟା କର୍ମ-କଳାମାନେ ମାୟାରେ ବନ୍ଧନ ।

 

ସତ୍ୟ ଆଶ୍ରେ କଲା ଲୋକ ଶୂନ୍ୟ ବ୍ରହ୍ମ ପାଶେ,
ପାପ କର୍ମ କଲା ଲୋକ ନରକେ ନିବାସେ ।
ବିହି କର୍ମ କଲା ଲୋକ ମହତକୁ ପାଏ,
କୁକର୍ମ କରିବା ଲୋକ ଯମପୁର ଯାଏ ।
ସତ୍ୟଟି ଶୁକଳ ଅଟେ ମିଥ୍ୟା ପଦ କଳା,
କାଳିଆ ନୁହନ୍ତି ପ୍ରଭୁ ନୁହନ୍ତି ଧବଳା ।
ଶୁଣିଣ ସେ ନିରାକାର ମନେ ଗଦ ଗଦ,
ତତକ୍ଷଣେ ନମିଲେ ଶ୍ରୀଗୁରୁ ପଦ୍ମପାଦ ।
ସାଧୁ ସୁଜ୍ଞଜନେ ମୋର ଦୋଷ ନ ଧରିବ,
ଶରଣ ପଶୁଛି ପାଦେ ସୁଦୟା କରିବ ।
ଦୋଷ ଅପରାଧ ମୋର କ୍ଷମା କରି ସବୁ,
ତୁମ୍ଭଙ୍କୁ ଭଗତମାନେ କରିଛନ୍ତି ପ୍ରଭୁ ।
ତୁମ୍ଭ ପାଦେ ଭୃତ୍ୟ କରି ମୋତେ ପାରି କର,
ଦନ୍ତରେ ତିରଣ ଧରି ପଶୁଛି ପୟର ।
ଗୁରୁ ଶିଷ୍ୟଙ୍କର ବେନି ପାଦେ ପରଣାମି,
ଦିବାନିଶି ଡାକୁଅଛି ରଖ ଗୁରୁ ସ୍ୱାମୀ ।
ବ୍ରହ୍ମନିରୂପଣ- ଗୀତା ପ୍ରବନ୍ଧେ ପ୍ରକାଶ,
ଅଲେଖ ବ୍ରହ୍ମକୁ ଧାୟି ଭଣେ ଭୀମ ଦାସ ।

ଇତିଶ୍ରୀ ବ୍ରହ୍ମ-ନିରୂପଣ-ଗୀତା ସୁଜନଜନହିତା
ଗୁରୁ ଶିଷ୍ୟ-ସମ୍ବାଦେ, ଘଟଭେଦ ଆତଜାତ
ବର୍ଣ୍ଣନେ ଶିର କର୍ଣ୍ଣ ଚକ୍ରମଣ୍ଡଳ ଭୁଅ କଥନେ
ଆଗମ ନିଗମ ବିଚାରଣେ ନାମ ଦ୍ୱାଦଶୋଽଧ୍ୟାୟଃ ।

## ତ୍ରୟୋଦଶ ଅଧ୍ୟାୟ

### ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ବ୍ରହ୍ମବେତ୍ତା,
ଯାହା ଆଜ୍ଞା ହେଲା ସ୍ୱାମୀ ଅଗୋଚର କଥା ।
ଉଚିତ ପ୍ରମାଣ କଥା ସତ୍ୟ ଏ ବଚନ,
ଗୁରୁପାଦ ଧରି ପ୍ରଲମ୍ବିତ ପୁଣ ପୁଣ ।

ଭୋ ଗୁରୁ ବିନତି ମୋର ଘେନିବାର ହେଉ,
ମନରୁ ସଂଶୟ କଥା ମୋର ଦୂର ଯାଉ ।
ଉତ୍ତମ କଥାଏ ଆସି ପଡ଼ିଲା ମୋ ମନେ,
ଆଜ୍ଞା ହେଲେ ପଚାରିବି ଶ୍ରୀଗୁରୁ ଚରଣେ ।
ଏ ଶରୀରେ ହଂସମାନଙ୍କର କି କି ନାମ,
ବିସ୍ତାରି କହିବା ମୋତେ ନ କରିବ ତମ ।
ଶ୍ରୀଗୁରୁ ମୁଖରୁ ଶୁଣି ମନେ ପ୍ରତେଯିବ,
ଏ ସଂଶୟ ତୁମ୍ଭ ବିନୁ ଆନ କେ କହିବ ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ନିରାକାର,
ବୁଝାଇ କହିବା ହଂସମାନଙ୍କ ସଞ୍ଚାର ।
ହ ଅକ୍ଷର ଗୋଟି ଏକ ହଂସ ବୋଲି କହି,
ପାଣି ପବନ ସର୍ବାଙ୍ଗେ ଅଙ୍ଗରେ ଖେଳଇ ।
ହାଉ ହାଉ ମନ୍ଦିର ସେ ଅଗ୍ନି ବିରାଜିତ,
ତେଣୁ ଅଙ୍ଗରେ ପୂରିଛି ଉଷ୍ମ ତପତ ।
ସ ଅକ୍ଷରଟି ଅଟେ ଗୋଟିଏ ସେ ହଂସ,
ଚେତା ଚମକୃତ ଥାଏ ଅଙ୍ଗକୁ ପରାସ ।
ଶବଦର ଘର ତହିଁ ଆବୋରିଛି ଚେତା,
ଅସ୍ଥିମାଂସ ରୋଗ ଚର୍ମେ କରେ ତେଣୁ ବ୍ୟଥା ।
ପଅ ଅକ୍ଷରଟି ଗୋଟାଏକ ହଁସ କହି,
ପାଣି ପବନ ସର୍ବାଙ୍ଗେ ଅଙ୍ଗରେ ଖେଳଇ ।
ତେଣୁକରି ପବନଟି ଏ ଦେହେ ଖେଳୁଛି,
ସମୁଦ୍ରରେ ଗଙ୍ଗା ପ୍ରାଏ ଶରୀରେ ବୁଲୁଛି ।
ରାଆ ଅକ୍ଷରଟି ରାଜହଂସ ବୋଲାଉଛି,
ରାଆର ମଣ୍ଡଳୁ ତୁଣ୍ଡ ବଚନ ଫିଟିଛି ।
ରାଆ ଶବଦୁ ହେଉଛି ରାମ ନାମ ପଦ,
ତେଣୁକରି ନାମ ରାଶି ଜନ୍ମରେ ସମ୍ବାଦ ।
ହ ଅକ୍ଷରଟି ମନ୍ଦିରଟି ଅଗ୍ନିମଏ ତେଜ,

 

ଅରୁଣ ପରାଏ ତହୁଁ ପେଲୁଅଛି ଝାଞ୍ଜ ।
ସଅ ଅକ୍ଷର ମଣ୍ଡଳ ଅତ୍ୟନ୍ତ ଶୀତଳ,
ହସ୍ତ ଦୃଷ୍ଟି ନ ଗମଇ ପାଣିରୁ ପାତଳ ।
ପ ଅକ୍ଷର ମଣ୍ଡଳ ଶିଶିର ହେମମଏ,
ଜାଜ୍ୱଲ୍ୟ ହେମାଳ ଭୂମି ରହି ନୋହେ ଘାଏ ।
ରା ଅକ୍ଷର ମଣ୍ଡଳଟି ସର୍ବଦା ଶୀତଳ,
ଘୁ ଘୁ ଘୁ ଘୁ ଶବଦ ଶୁଭୁଛି କୋଳାହଳ ।
ଶୁଣିଲୁ କି ନିରାକାର ହଂସର ଚରିତ,
ନ ବୁଝି ପାରିଲେ ଅର୍ଥେ ବହୁତ ବିଚିତ୍ର ।

## ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ସଦଗୁରୁ,
ଆହୁରି କଥାଏ ଆଜ୍ଞା ହେଉ ଶ୍ରୀମୁଖରୁ ।
ଶୂନ୍ୟ ଶୂନ୍ୟ ମହାଶୂନ୍ୟ କାହ୍ନାକୁଟି କହି,
ତିନିଥରେ ତିନିଗୋଟି ଶବଦ ବସଇ ।
ନିର୍ବେଦ ବୋଲିବା କଥା କେମନ୍ତ ଶବଦ,
ବୁଝାଇ କହିବା ମୋତେ ତତ୍ତ୍ୱ ଭେଦାଭେଦ ।
ନିଷ୍କାମ ବୋଲିବା କଥା କେମନ୍ତ ବିଧାନ,
ଏହା ମୋତେ ପ୍ରସନ୍ନେ କହିବା ନାରାୟଣ ।
ଅରୂପ ବ୍ରହ୍ମ ଶବଦ ବୋଲିବା କି ହେତୁ,
ଏ ସନ୍ଦେଶ ବୁଝାଇ କହିବା ଜ୍ଞାନ ତତ୍ତ୍ୱ ।
ଅନାମିକ ବୋଲିବାର କେବଣ ବିଭୂତି,
ଅନାମ ବୋଲିବା ପଦ କିସ ଆଦି ରୀତି ।
ଅକ୍ଷଏ ବୋଲିବା ପଦ କେମନ୍ତ ସ୍ୱଭାବ,
ଏହା ମୋତେ ପ୍ରସନ୍ନେ କହିବା ଗୁରୁଦେବ ।
ସଗୁଣ ନିର୍ଗୁଣ ବୋଲିବାର କେଉଁ ବିଧି,
ଏହା ମୋତେ ବିଚାରି କହିବା ଜ୍ଞାନ ସିଦ୍ଧି ।
ନିଗମ ଦୁର୍ଗମ ବୋଲି କେମନ୍ତ ପରାଏ,
ଏକଥା ଶୁଣି ମୋ କର୍ଣ୍ଣେ ମନେ ବଡ଼ ଭଏ ।
ଗୁରୁ ସ୍ୱାମୀ ବୋଲିବାର ଶବଦ ତା କିସ,

ଏହା ମୋତେ ଆଜ୍ଞା ହେଉ ହେ ବ୍ରହ୍ମପୁରୁଷ ।
କର୍ତ୍ତା ପ୍ରଭୁ ବୋଲିବାର କେବଣ ବୃତ୍ତାନ୍ତ,
ବୁଝାଇ କହ ଏଥିର କାରଣ ସିଦ୍ଧାନ୍ତ ।
ଅଲେଖ ମହିମା ବୋଲିବାର କେଉଁ ହେତୁ,
ଏହା ମୋତେ ବୁଝାଇ କହିବା ଜାତୁ ମାତୁ ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ବାବୁ ଶୁଣ ନିରାକାର,
ବୁଝାଇ କହିବା ତିନିଶୂନ୍ୟର ବିଚାର ।
ଠୁଳ ଶୂନ୍ୟ ପୁରକୁ ଶୂନ୍ୟେକ ବୋଲି କହି,
ବାବୁ ନିରାକାର ତୋର ଭୁବନ ଅଟଇ ।
ମହାନିତ୍ୟ ଭୁବନ ଶୂନ୍ୟେକ ବୋଲି କହି,
ସେ ଶୂନ୍ୟରେ ରହିଛନ୍ତି ମହିମାଗୋସାଇଁ ।
ତହିଁ ଉପରକୁ ଅଛି ଅଲେଖ ଭୁବନ,
ଦ୍ୱିତୀୟ ଶୂନ୍ୟରୁ ଗୋଟେ ବୋଲାଉଛି ଶୂନ୍ୟ ।
ଗୁରୁ ବୋଲିବାର କଥା ପଚାରିଲୁ ଯାହା,
ଶୁଣ ନିରାକାର ତୁହୋ ଚତୁର୍ଦ୍ଧାତା ବାହା ।
ଗଅ ଅକ୍ଷରଟି ଯେହ୍ନୁ ଆଜ୍ଞାଟି ଗରିଷ୍ଠ,
ନ ପାଳି ପାରିଲେ ତାଙ୍କୁ ପଡୁ ଥାଏ ରିଷ୍ଟ ।
ରଅ ଅକ୍ଷରଟି ରକ୍ଷା ରକ୍ଷଣ ସେ ପଦ,
ବଚନ ଅବଜ୍ଞା କଲେ ପଡ଼ଇ ପ୍ରମାଦ ।
ପ୍ରଭୁ ବୋଲିବାର ପଦ ପ୍ରାଣଟି ଅଟଇ,
ଘଟରୁ ଜୀବ ଛାଡ଼ିଲେ ପ୍ରାଣ ନାଶ ଯାଇ ।
କ୍ଷଅ ଅକ୍ଷରଟି ଯେହ୍ନୁ ପରମ ପୁରୁଷ,
ଛଡ଼ାଇ ହୁଅନ୍ତେ ଜୀବ ଭବେ ଗଲା ନାଶ ।
ଭଅ ଅକ୍ଷରଟି ଯେହ୍ନୁ ଭୂତାନ୍ତ ଭବିଷ୍ୟ,
ନ ଚିହ୍ନି ପାରିଲେ କାଳ ଭୟକରେ ନାଶ ।
ସ୍ୱାମୀ ବୋଲିବାର କଥା ଶୁଣ ନିରାକାର,
ବୁଝାଇ କହିବା ତୋତେ ତହିଁର ବିଚାର ।
ସଅ ଅକ୍ଷରଟି ଯେହ୍ନୁ ସତ୍ୟବାଦୀ ଅଟେ,

ନ ଧରି ପାରିଲେ କାଳ ମରଣହିଁ ଘୋଟେ ।
ନିଷ୍କାମ ବୋଲିବା ପଦ ଶୁଣ ବାବୁ ତୁହି,
ଭିନ୍ନ ଭିନ୍ନ କରି ତୋତେ କହିଦେବା ଫେଇ ।
ଓଁ ଅକ୍ଷରଟି ଯେହୁ ସାକ୍ଷାତେ ସେ ନାମ,
ନିରୋଳାରେ ଥାଇ ନ ଲଗାଇ କାଳଯମ ।
ସ୍ୱାଆ ଅକ୍ଷରଟି ଯେହୁ କାମନା ଅନଙ୍ଗ,
କାମନା ଦେହରେ ନାମ ହୋଇଥାଇ ସଙ୍ଗ ।
ଅଗ୍ନିର ଭିତରେ ଅଗ୍ନି ପଡ଼ିଲେ କି ପୋଡ଼େ,
ଅଗ୍ନି କି ଅଗ୍ନି ସ୍ୱରୂପ ଖାଇବ କି ଦାଢ଼େ ।
ସେହିରୂପେ ନିଷ୍କଳଙ୍କ ହୋଇଛନ୍ତି ସ୍ନେହ,
ଲିଙ୍ଗେ ବ୍ରହ୍ମ ପଶିଯାନ୍ତେ ଲାଗିବ କି ମୋହ ।
ଜଳର ଭିତରେ ମୀନ ମରଇ କି ବୁଡ଼ି,
ସେହିରୂପେ ନିଷ୍କାମ ବ୍ରହ୍ମର ନିଅାଁ ଧାଡ଼ି ।
ମୃତ୍ତିକା ପାଷାଣ ନୁହେଁ ଏକାଠାରେ ରହି,
ମାଟିସଙ୍ଗେ ପଥର କି ଯିବ ମାଟି ହୋଇ ।
ସେହିରୂପେ ନିଷ୍କା ବ୍ରହ୍ମକାମନା ଭିତରେ,
ଅକଲ୍ପଣାରୁ ସେ ମାୟା ନ ଭେଦେ ଅଙ୍ଗରେ ।
ନିର୍ଗୁଣ ବୋଲିବା କଥା ଶୁଣ ଆଦିକନ୍ଦ,
ବୁଝାଇ କହିବା ତୋତେ ତାର ଭେଦବନ୍ଧ ।
ନିର୍ଗୁଣ ବ୍ରହ୍ମଟି ଗୁଣ ଭିତରରେ ଥାଇ,
ଗାୟନ କରନ୍ତେ ଯଶ ପରା ରସ ପାଇ ।
ଗୁଣ ପାଶେ ଓଁ ଶବ୍ଦ ଯେ ଚିହ୍ନି ପାରିବ,
ନିରାଧାର ପ୍ରଭୁଙ୍କୁ ସେ ଦର୍ଶନ କରିବ ।
ନିର୍ବେଦ ବୋଲିବା କଥା ପଚାରିଲୁ ମୋତେ,
ସାବଧାନ ହୋଇ ଶୁଣ କହଇ ମୁଁ ତୋତେ ।
ନିଗମ ବ୍ରହ୍ମଟି ଯେହୁ ବେଦାନ୍ତରେ ଥାଇ,
ନ ଚିହ୍ନି ପାରିବ ଯେବେ ଶାହାସ୍ତ୍ରେ ଭୁଲାଇ ।
ବେଦରେ ନିରୋଳ ରୂପେ ଥାଇ ଯେଉଁ ବ୍ରହ୍ମ,
ବେଦତତ୍ତ୍ୱଙ୍କୁ ନ ଚିହ୍ନି କରୁଥାନ୍ତି କର୍ମ ।
ତେଣୁ କରି ଭ୍ରମ ହୁଏ ସବୁଙ୍କର ଚିତ୍ତ,

ବେଦର ତତ୍ତ୍ୱଟି କେହି ନ ପାଆନ୍ତି ଅନ୍ତ ।
ଅକ୍ଷଏ ବୋଲିବା କଥା ଶୁଣ ଠୁଳବାସୀ,
ତତ୍ତ୍ୱବୋଧ କରି ତୋତେ କହିବା ବିଶ୍ୱାସୀ ।
ଓ ଓ ପାଶେ କ୍ଷମା ମାତ୍ରା ବସିଅଛି ଯେଣୁ,
କ୍ଷରାକ୍ଷର ନାହିଁ ତହିଁ ଅଣାକ୍ଷର ତେଣୁ ।
ଅଲେଖ ମହିମା ପଦ ପଚାରିଲୁ ମୋତେ,
ଛଡ଼ଗୋଟା ଅକ୍ଷର ଭେଦାନ୍ତ ଅଦଭୁତେ ।
ଅ ଅ କ୍ଷ କ୍ଷ କ୍ଷର ଯେ ଅର୍ଥ କରିବ,
ଶରଣ ମାଗି ତା ପଦ୍ମପାଦରେ ନମିବ ।
ମ ମ ହି ହି ମା ମା କ୍ଷର ଯେ ଦେବ ଚିହ୍ନାଇ,
ପ୍ରତେଯିବୁ ତାରପାଦେ ଖଟିଥିବୁ ତୁହି ।
ଛଡ଼ ଗୋଟା କ୍ଷର ସେହୁ ପରଚେ କରିବ,
ମହିଁମା ଭଜିବା ତାର ସୁଫଳ ହୋଇବ ।
କେତେ ପ୍ରାଣୀ ନାମ ବୋଲୁ ଅଛନ୍ତି କି ନାହିଁ
କର୍ଣ୍ଣେ ଶୁଣିଲା ମାତ୍ରକେ ଜୀବ କି ତରଇ ।
ଚିହ୍ନି ପାରିଲେ ତାହାଙ୍କୁ ମୁକତି ପାଇବ
ନୋହିଲେ ଲେଉଟି ଫେରି ଯମ ଭାଗେହେବ ।
ମହିଁମା ବୋଲିବା କଥା ସମସ୍ତେ ଜାଣନ୍ତି
ନିଜ ମହିଁମାର ଅନ୍ତ କେହି ନ ଜାଣନ୍ତି ।
କେହୁଣୀ ଠାବରେ ନାହିଁ ସବୁଠାରେ ଥାନ୍ତି,
ଆତ୍ମ ଜ୍ଞାନୀ ଭକ୍ତଙ୍କୁ ସେ ଦୃଶ ହୋଇଛନ୍ତି ।
ଶୁଣିଲୁ କି ନିରାକାର ଚରିତ ବିଧାନ,
ଲତାପ୍ରାଏ କଥାକେତେ କରିବା ଆଧାନ ।
ଆହୁରି କଥାଏ ତୋତେ କହିଦେବା ବାଛି,
ମନକୁ ତୋର ଯେବେ ପ୍ରତେ ନ ପାଉଛି ।
ଗୁରୁ ବୋଲି ଉଚ୍ଚାରନ୍ତେ ଆଜ୍ଞା ବୋଲାଇଲା,
ଆତ୍ମାଭେଦି ଭଗତଙ୍କ ହିତାନ୍ତ ବୋଇଲା ।
ସ୍ୱାମୀ ବୋଲି ବଖାଣନ୍ତେ ଗଲା ଶୂନ୍ୟହୋଇ,
ଉର୍ଦ୍ଧ୍ୱ ଆକାଶେ ଚାହିଁଲେ କିଛି ନ ଦିଶଇ ।
ପ୍ରଭୁ ବୋଲିବାକୁ ସେହୁ ପାଶେ ନ ରହିଲା,

ଅରୂପ ବୋଲନ୍ତେ ରୂପ ରେଖ ନ ଦିଶିଲା ।
ନିର୍ଗୁଣ ବୋଲନ୍ତେ ହେଲା ଗିରି ପ୍ରାଏ ବୋଝ,
ଅଜ୍ଞାନୀମାନେ ବୋହନ୍ତେ ହେଲା ଅଣଶଯ ।
ସୁଜ୍ଞାନୀମାନଙ୍କୁ ହୁଏ ଫୁଲମାଳ ପ୍ରାୟ,
ସେ ବ୍ରହ୍ମକୁ କରି ସେ ପାରନ୍ତି ଆଏ ବଏ ।
ନିର୍ବେଦ ବୋଲନ୍ତେ ତାଙ୍କୁ ନ ବସିଲା କ୍ଷର,
ଅଦଭୁତେ ଯୁକ୍ତହେଲା ଶୂନ୍ୟର ଆକାର ।
ନିର୍ଗୁଣ ବୋଲନ୍ତେ ତାଙ୍କୁ ଗୁଣ ନ ଲାଗଇ,
ରଜ ବୀଜରୁ ସେ ପ୍ରଭୁ ବାହାର ଅଟଇ ।
ଅକ୍ଷଏ ବୋଲନ୍ତେ ତାର କ୍ଷୟ ବୃଦ୍ଧି ନାହିଁ,
ଅପାଲଟ ବ୍ରହ୍ମ ସେ ଯେ ପାଲଟ ନୁହଇ ।
ନିଷ୍କାମ ବୋଲନ୍ତେ ତାଙ୍କୁ ନିର୍ମଳ ହୋଇଲା,
ମାୟା ମୋହରେ ନ ପଶି ନିଷ୍ଠିନ୍ତେ ରହିଲା ।
ଅନାମ ବୋଲନ୍ତେ ତାର ନାମ ରାଶି ନାହିଁ,
ରୂପରେଖ ଧରି ଆକାଶକୁ ଉଡ଼ି ଯାଇ ।
ଶୁଣିଲୁ କି ନିରାକାରବ୍ରହ୍ମର ନିର୍ଣ୍ଣୟ,
ଏ ଘଟ ଭିତରେ ତୋର ଭେଦ କର ଥୟ ।

## ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ଗୁରୁସାଇଁ,
ଜୀବ ଆତ୍ମା ନିଜ ସ୍ଥାନ କେମନ୍ତ ଅଟଇ ।
ପରମର ନିଜ ସ୍ଥାନ କେମନ୍ତ ପ୍ରକାର,
ଭୋ ସ୍ୱାମୀ ଶ୍ରୀଗୁରୁ ଶ୍ରୀମୁଖରେ ଆଜ୍ଞା କର ।

## ଶ୍ରୀ ଗୁରୁଦେବ ଉବାଚ

ଶୁଣ ବାବୁ ନିରାକାର ଆତ୍ମାର ବିଚାର,
ଜୀବ ନିଜ ସ୍ଥାନ ଘର ଯେମନ୍ତ ପ୍ରକାର ।
କାଚ ଘଡ଼ି ଭିତରେ ଯେ ପୂରିଥାଇ ଜଳ,
ଯେତେ ସୀମାନ୍ତରୁ ଥାଇ ଦିଶେ ଝଲଝଳ ।

ସେହି ରୂପେ ଜୀବଆତ୍ମା ଏ ଘଟରେ ଅଛି,
ଜୀବ ନିଜ ସ୍ଥାନେ ଜଳ ବୁନ୍ଦେ ଆକ୍ରୋଛିଣି ।
ସେ ଭିତରେ ଜୀବ ଆତ୍ମା ଅଛି ମୀନ ପାଏ,
ଜଳ ପଙ୍କ ହୃଦହିଁ ନ ଲାଗେ ତାଙ୍କ କାଏ ।
ପାଣିର ଫୋଟକା ପ୍ରାଏ ତହିଁର ଆକାର,
ସେହି ସ୍ଥାନେ ଜୀବ ଆତ୍ମା କରୁଛି ବେହାର ।
ଜୀବଆତ୍ମା ରୂପ ଦିଶେ କୁଙ୍କୁମ ବରଣ,
ତାହାର ପୁତ୍ର ଅଟନ୍ତି ଚିଆଁ ଚଇତନ ।
ସାକ୍ଷାତେ ଯୁବତୀ ଜାନୁ ଯଉବନ ଅଛି,
ଏ ଘଟରେ ଏକଶତ ପଣକୁ ଯେ ଗଛି ।
ଯୁବତୀ ବୋଲନ୍ତେ ଜୀବ ଭୋଗ ବିଳସିଲା,
ପରମ ସାକ୍ଷୀ ରୂପରେ ଅଲଗା ବସିଲା ।
ତେଣୁକରି ଜୀବଆତ୍ମା ପଶୁଅଛି ଆପେ,
ବନଶୀ କଣ୍ଟାରେ ମୀନ ଅୟଉ ଯେ ରୂପେ ।
ଶୁଣିଲୁ କି ନିରାକାର ଆତ୍ମା ଭେଦାଭେଦ,
ଶିରୀ ଅର୍ଥ ବ୍ରହ୍ମ ଗୀତା ନିରୂପଣ ପଦ ।
ପରମ ପବିତ୍ର ଏବେ ଶୁଣ ସାବଧାନେ,
ତୁ ଯେବେ ଅପ୍ରତେ କଲୁ କହୁ ତୋ ବଚନେ ।
ଶୁକ୍ଳାମ୍ବର କାନ୍ତି ବେଦ ତହିଁର ଆସ୍ଥାନ,
ପବନ ଚଳୁଛି ତହିଁ କ୍ଷଣେ ନାହିଁ ଶୂନ୍ୟ ।
ସିଂହାସନେ ବସିଛନ୍ତି ପରମ କୁଶଳ,
କୋଟିଏ ଚନ୍ଦ୍ରର ଜିଣି ଆସ୍ଥାନ ଶୀତଳ ।
ତହିଁର ପାରୁଶେ ନାସା ପବନର ଘର,
କମାର ଧୂଳିକଣାପ୍ରାଏ ତହିଁର ଆକାର ।
ସେହିଠାରୁ ପବନ ହେଉଛି ଆତଯାତ
ଯନ୍ତ୍ର ସୂତ୍ରେ ଫେରୁଅଛି ଏ ଦେହ ସୁଚେତ ।
ଯେସନେକ କୀଟ ଟାଣି ଥାଇ ଜାଲ ତାର,
ସେରୂପେ ପବନ ଗୋଡ଼ା ଏ ଘଟେ ସଞ୍ଚାର ।
ଏ ଜୀବ ପରମ ଯେତେ ଦିନ ଘରେ ଥାଇ,
ତେତେଦିନ ମାତୃପିଣ୍ଡ ଶୋନ୍ନ ପାଉଥାଇ ।
ପାଣି ପବନରେ ପିଣ୍ଡ ହୋଇଅଛି ଜାତ,

ଜୀବ ପରମଟି ଏ ଘଟରେ ସାମରଥ ।
ଶୁଣିଲୁକି ନିରାକାର ଜୀବମର୍ମ କଥା,
ବେନି କର୍ଣ୍ଣେ ଶୁଣି ମନେ ଧର ହେତୁ ଚେତା ।
କୋଟିଏ ଜନ୍ମର ସାଧ୍ୱ ସିଦ୍ଧାନ୍ତ ହୋଇଛି,
ହେତୁ ନ ଧରି ପାରନ୍ତେ ଅଯଶ ହୋଇଛି ।
ହଅ ଅକ୍ଷରକୁ ପ୍ରବେ ହୁଅ ନିରନ୍ତରେ,
ମମକ୍ଷର ଲାଗିଅଛି ତହିଁର ପାଶରେ ।
ମାମା କ୍ଷର ବସିଅଛି ତହିଁର ପାଖକୁ,
ଏକ ଠାରେ ଥାଇ ନାଚ ଅଛି ଦେଖୁ ଦେଖୁ ।
ଏହି ରୂପେ ଚାରିଯୁଗ ଯାଉଅଛି ବହି
ହେତୁ ବ୍ରହ୍ମ ନିଜନାମ ନ ପାବନ୍ତି କେହି ।
ଅ ଅକ୍ଷରେ ଅବ୍ୟଗତ ଅବନା ଅଟଇ,
ତାହାଙ୍କୁ ଚିହ୍ନିଲେ ହେତୁ ବୁଡ଼ିଯବ ନାହିଁ ।
ଲଲ କ୍ଷର ଲାଗିଅଛି ତହିଁର ପାଶକୁ,
ସତ୍ୟ ତତ୍ତ୍ୱ କରିକେହି ନାହିଁ ଚିହ୍ନିବାକୁ ।
ଖଖ କ୍ଷର ବସିଅଛି ତହିଁର ଆଗରେ,
ଛଡ଼କ୍ଷର ଗୁନ୍ଥାଅଛି ଅନାମିକା ଡୋରେ ।
ଶୁଣିଲୁ କି ନିରାକାର ବ୍ରହ୍ମର ବୃତ୍ତାନ୍ତ
ତୋ ଦେହରେ ଭେଦି ତୁ ହୋ କର ଆଦିଅନ୍ତ ।
କର୍ଣ୍ଣ ଶିର ଚକ୍ରରୁ ଲାଗିଛି ସୂତା ପ୍ରାଏ,
ଯନ୍ତ୍ର ଚଳୁଅଛି ତହିଁ ପବନର ଦେହେ ।
ପରମ ମଣ୍ଡଳୁ ଚଳାହେଉଅଛି କଳ,
ତାର ଲାଗିଛି ଅଙ୍ଗୁଷ୍ଠି ଅଗ୍ରର ମଣ୍ଡଳ ।
ତେଣୁକରି ପବନ ଚଳୁଛି ସର୍ବଠାରେ,
ଭେଦରୂପେ ନିଶବଦେ ଖେଳୁଛି ଦେହରେ ।
ଜୀବ ମଣ୍ଡଳରୁ ତହିଁ ଲାଗିଅଛି ଧାରା,
ରୁଧିର ପଡୁଛି ଦେହେ ଜଳ ପ୍ରାଏ ତୋରା ।
ତେଣୁକରି କଞ୍ଚାଅଛି ସର୍ବାଙ୍ଗ ଶରୀର
ଯେଉଁଠାରେ ଖୁଣ୍ଟି ଦେଲେ ବୁହଇ ରୁଧିର ।
ହେତୁ ମଣ୍ଡଳ ଯନ୍ତରେ ଲାଗିଅଛି ଲତା

ଶ୍ରୁତି ହେବାରୁ ଭାସୁଛି ସର୍ବକଥା ।
ସର୍ବାଙ୍ଗଶରୀରେ ଲାଗିଅଛି ଚେତାଗ୍ରହ,
ଯହିଁରେ ଛୁଇଁଲେ ଚିହ୍ନାଉଛି ଏହି ଦେହ ।
ନିଅ ନାମ ମଣ୍ଡଳରୁ ନିଦ୍ରା ପ୍ରସରୁଛି
କୁହୁଡ଼ି ପରାଏ ଏ ଶରୀରେ ଘୋଟିଅଛି ।
ଓଁ ମଣ୍ଡଳରୁ ଆଳସିକ ଉଦେ ହୋଇ
ପିଣ୍ଡ ଅଶକତ କରି ଆଶାରେ ଘାରଇ ।
କାଳର ଅଙ୍ଗରୁ ଅଙ୍ଗେ ପଡ଼ିଗଲେ ଛାଇ
ଦେହଧାରୀ ହୋଇ ଯେତେ ପଡୁଛନ୍ତି ଶୋଇ ।
ଶୁଣିଲୁ କି ନିରାକାର ଦେହର ଭେଦାନ୍ତ
ବୁଦ୍ଧି ଯାର ଥାଇ ତାକୁ ବୋଲି ଜ୍ଞାନବନ୍ତ ।
ସାଧୁ ସୁଜ୍ଞଜନେ ମୋର ନ ଧରିବ ଦୋଷ,
ମୁର୍ଖ କବି ଅଟଇ ମୁଁ ବାଳୁତ ବୟସ ।
କୃପା କରିଥିବ ଦେଇ ଅଶିଷ କଲ୍ୟାଣ,
ସାଧୁ ସୁଜ୍ଞଜନଙ୍କ ଚରଣେ ମୋ ଶରଣ ।
ବ୍ରହ୍ମ-ନିରୂପଣ-ଗୀତା ପଦ ସାରସ୍ୱତ,
ମହାନିତ୍ୟ ଭୁବନରୁ ହୋଇଛି ଉକତ ।
ଅନାମ ଅଲେଖ ବ୍ରହ୍ମ ମହିମା ଅଶେଷ,
ବ୍ରହ୍ମ-ନିରୂପଣ-ଗୀତା ଭଣେ ଭୀମ ଦାସ ।

ଇତିଶ୍ରୀ ବ୍ରହ୍ମ ନିରୂପଣ ଗୀତା, ସୁଜନ ଜନ୍ମ-ହିତା
ଶ୍ରୀ ଗୁରୁ-ଶିଷ୍ୟ ସମ୍ବାଦେ ଜୀବ ପରମ ଚରିତ୍ର କଥନେ
ଭେଦାଭେଦ ବର୍ଣ୍ଣନେ ଆଗମ ନିଗମ ବିଚାରଣେ
ଗୁରୁଦେବ ପ୍ରସନ୍ନେ ନାମ ତ୍ରୟୋଦଶୋଽଧ୍ୟାୟ ।

## ଚତୁର୍ଦ୍ଦଶ ଅଧ୍ୟାୟ

## ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ଗୁରୁଦେବ,
ବ୍ରହ୍ମନିରୂପଣ ଜ୍ଞାନୀଜନଙ୍କୁ ଦୁର୍ଲ୍ଲଭ ।

ସକଳ କହିଲେ ବ୍ରହ୍ମ-ନିରୂପଣ ଫେଇ,
ବେନି କର୍ଣ୍ଣେ ଶୁଣି ମନେ ପ୍ରତ୍ୟେ ଗଲି ମୁହିଁ ।
ସକଳ ନିର୍ଣ୍ଣୟ ମୋତେ ବୁଝାଇ କହିଲ,
ଆହୁରି କଥାଏ ସ୍ୱାମୀଗୁପତେ ରଖିଲ ।
ଅବଧୂତ ଅଣାକାର ଅବ୍ୟଗତ ମଣି,
ଆଶ୍ରୟ କରିଛି ପାଦେ କେଉଁ ନାମ ଘେନି ।
ବ୍ରହ୍ମ କର୍ମ ଆଦ୍ୟ ଅନ୍ତ କହ ମୋ ଆଗର,
ଏତେ ବୋଲି ନିରାକାର ଧରି ଶ୍ରୀପୟର ।
ଅନାମ ବ୍ରହ୍ମର ଅଙ୍ଗ ଚିହ୍ନାଇ କହିଲ,
ତ୍ରିପୁର ସଂସାର ମୋତେ ଉଦ୍ଧରି ଧଇଲ ।
ସତ୍ୟ ତଥ୍ୟ କରି ମୋତେ କହ ଭକ୍ତିକଥା,
ନିରାକାର ବଚନେ କହନ୍ତି ବ୍ରହ୍ମବେତ୍ତା ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀ ଗୁରୁଦେବ ବୋଇଲେ ଶୁଣ ନିରାକାର,
ବ୍ରହ୍ମ ଭକତିର କଥା ଅତି ନିରାଧାର ।
ଶାନ୍ତଶୀଳ ଦୟା କ୍ଷମା ହୃଦରେ ବହିବୁ,
ବଚନ ଶୁଣି ପ୍ରଥମେ କୋପିତ ନୋହିବୁ ।
ପୃଥୀର ପରାଏ ଦେହ ଯେ ସହି ପାରୁଛି,
ମାୟା ମୋହ ଜିଣି କିଛି ଦିନ ସେ ରହୁଛି ।
ଧୀର ସମୀର ହୋଇବୁ ନ କରିବୁ ରୋଷ,
କ୍ରୋଧ ରାଗ ତମ କଲେ ଜ୍ଞାନ ହୁଏ ନଷ୍ଟ ।
ମେଦିନୀ ପରାଏ ଯେବେ କରିପାରୁ ଶ୍ରମ,
ଅଙ୍ଗରେ ଖେଳିବ ତୋର ଅନାମିକା ବ୍ରହ୍ମ ।
ଜଳ ପ୍ରାଏ ଯେବେ ମନ ହେବ ଅକାରଣ,
ତେବେ ଲଭିବୁ ବ୍ରହ୍ମକୁ କହୁଅଛି ଜାଣ ।
ମେଦିନୀରେ କେତେ କଥା ଉପଦର୍ପ ନାହିଁ,
ବସୁମତୀ ଯେଉଁ ରୂପେ ସୟାଳିଛି ମହୀ ।
ସେହିରୂପେ ଯେବେ ବାବୁ ହେବ ତୋର ଅଙ୍ଗ,

ଅନାମ ବ୍ରହ୍ମରେ ନିଷ୍ଠେ ହୋଇବୁ ତୁ ସଙ୍ଗ ।
ଜଳ ଯେ ବରଷା କରେ ବ୍ରହ୍ମାଣ୍ଡ ଭିତର,
ସର୍ବଠାରେ ପଡ଼ଇ ସେ ନ ଥାଇ ଅନ୍ତର ।
ଜଳର ପରାଏ ଧର୍ମ କର ତୁ ହୋ ବାବୁ,
ଅଣରୂପ ବ୍ରହ୍ମର ଭଗତ ଯେବେ ହେବୁ ।
ଚନ୍ଦ୍ର ସୂର୍ଯ୍ୟ ଉଦେ ହେଉଛନ୍ତି ପ୍ରତିଦିନ,
ଅମୃତ ଦୃଷ୍ଟିରେ ପଡ଼ୁ ଅଛଇ କିରଣ ।
ତେଜ ପଡ଼ିଲା ମାତ୍ରକେ ହୋଇଲା କି ମାରା,
ସର୍ବସମ ଦିବାକର ଅଟେ ତାଙ୍କ ଧରା ।
ଯେଣୁ ଅଲେଖ ବ୍ରହ୍ମର ଆଜ୍ଞା ଛନ୍ତି ବହି,
ତେଜ ପଡ଼ି ଦୋଷ କୃତ ହେଉଅଛି ଦହି ।
ଚନ୍ଦ୍ର ସୂର୍ଯ୍ୟ ପ୍ରାଏ ଧର୍ମ କରିବୁ ଯେମନ୍ତେ,
ଅଲେଖ ବ୍ରହ୍ମର ପୁତ୍ର ହେବୁ ତୁ ସାକ୍ଷାତେ ।
ପବନ ପରାଏ ଦୀକ୍ଷା ଯେବେ ତୁ କରିବୁ,
ଚାରିଯୁଗେ ମାୟା ମୋହ ଦୁସ୍ତରୁ ତରିବୁ ।
ପବନ ଯେ ବହୁଅଛି ନବଦ୍ୱୀପା ମହୀ,
ସର୍ବଠାରେ ହାବୋଡ଼ାଇ ଅନ୍ତର ନ ଥାଇ ।
ଗନ୍ଧ ପରକଟ ଯେତେ ଆମିଷ ବିଷର,
ସର୍ବେଠାରେ ଭ୍ରମି କରୁଥାଇ ଏକାକାର ।
ସାମାନ୍ୟ ଧର୍ମରେ ଦୋଷ ନଲାଗଇ ତାକୁ,
ଯେଣୁ ଧ୍ୟାନ କରୁଛନ୍ତି ଶନ୍ୟାଧି ବ୍ରହ୍ମକୁ ।
ପବନ ପରାଏ ଦୀକ୍ଷା ଧର ତୁ ହୋ ବାବୁ,
ଭଲ ମନ୍ଦ ଦୁଇ କଥା ଅନ୍ୟ ନ କରିବୁ ।
ପବନ ଧର୍ମେ ଚାଲିଲେ ନଲାଗଇ କିଛି,
ତତ୍ତ୍ୱ କରି ଧର ବାବୁ ବୁଝାଇ କହୁଛି ।
ସକଳ ସମାନ ତୁ ହୋ କର ଅବିକାର,
ଚାରିଯୁଗେ ନାମ ବହିଥିବୁ ନିରାକାର ।
ଅଗ୍ନିର ପରାଏ ଦୀକ୍ଷା କରସିରେ ବାବା,
ତୁ ଯେବେ ଅପ୍ରତେ କଲୁ ବୁଝାଇ କହିବା ।

ଅନଳ ଯେସନେ ହୁତାଶନେ ଜଳୁଥାଇ,
ଭଲ ମନ୍ଦ ଏକ କରି ସମସ୍ତ ଭକ୍ଷଇ ।
ଗୁଡ଼ ଘୃତ ତରୁତୃଣ ପତଙ୍ଗ ସହିତେ,
କୀଟ ପଶୁ ମାନବ ମସ୍ତାଦି ପରିଯନ୍ତେ ।
ଉଚ୍ଚ ନୀଚ ନ ବାରଇ କରଇ ଆହାର,
ଖାଦ୍ୟ ଅଖାଦ୍ୟ ଅମେଧ ସର୍ବ ସମାଚାର ।
ଅନଳ ଯେଉଁ ପ୍ରକାରେ ନୁହଇ ସେ ଭ୍ରଷ୍ଟ,
ସବୁ ମଣିଥାଇ ସେ ଯେ ରନ୍ଧନାହିଁ ଶ୍ରେଷ୍ଠ ।
ଅନଳ କରାଏ ଦୀକ୍ଷା କର ଆଦିକନ୍ଦ,
କେବେ ତୁ ପାଇବୁ ସେ ଧର୍ମର ଭେଦାଭେଦ ।
ବିଚାର ଆଚାର କଲେ ନ ପାଇଟି ବ୍ରହ୍ମ,
ବର୍ଣ୍ଣଭେଦ କଥା ଯେତେ ସବୁ ଏ ଅଧର୍ମ ।
କାମ କ୍ରୋଧ ଲୋଭ ମୋହ ବ୍ରହ୍ମକୁ ନପାଇ,
ଅନର୍ଥ ଗୋପ୍ୟରେ ସର୍ବେ ଯାଉଛନ୍ତି ବହି ।
ଦେଖିବା ଶୁଣିମା ଯେତେ କହିବା ବୋଲିବା,
ପ୍ରକୃତି ବିକାର ସବୁ ମନରୁ ଭୁଲିବା ।
ପଢ଼ିବା ଶୁଣିମା ଅର୍ଥ ସମ୍ପଦ ଏ ସବୁ,
ବେଦର ବୋଲଣା ତହିଁ ନ ଥାଇଟି ପ୍ରଭୁ ।
ଏବେ ଦୃଢ଼ ରକ୍ଷେ ଧର ନାମ ବ୍ରହ୍ମଶିକ୍ଷା,
ଅନ୍ତର ନ କରି ସବୁ ମଣିଥିବୁ ଏକା ।
ମହିମାକୁ ଭଜିଲେ ତୁ ମହୀରେ ରହିବୁ,
ଗୁରୁ ଚରଣ ଧଇଲେ ଜ୍ଞାନ ତୁ ପାଇବୁ ।
ବଡ଼ ପ୍ରଭୁ ଆଶ୍ରେ କର ହେବୁ ଏବେ ସିଦ୍ଧି,
ଏବେ ନିରାକାର ତୁ ବିଚାର ବଡ଼ ବୁଦ୍ଧି ।
ମହାବ୍ରହ୍ମେ ଆଶ୍ରେକଲେ ମାୟା ମୋହ ଯାଇ,
ବଡ଼ ଲୋକଙ୍କୁ ସେବିଲେ ମହତ୍ତ୍ୱଟି ପାଇ ।
ଯେଡ଼େ ପ୍ରଭୁଙ୍କୁ ଭଜିବୁ କର ତେଡ଼େ ବୁଦ୍ଧି,

ନ୍ୟାୟକୁ ବିଚାରି ଥିବୁ ଯେସନେ ବାରାଧି ।
ରୂପେ ଥାଇ ଅରୂପକୁ ଲଗାଅ ତୁ ଦୃଷ୍ଟି
ତେବେ କ୍ଷୟ ଯିବ ତୋର କଳ୍ପନା ଅରିଷ୍ଟି ।
ବେଦେ ଥାଇ ନିର୍ବେଦକୁ ଧ୍ୟାନ ତୁ କରିବୁ,
ବେଦାନ୍ତ ଛାଡ଼ିଲେ ଅରୂପରେ ଲୀନ ହେବୁ ।
ଦେହ ଧରିଅଛୁ ଅଦେହକୁ କର ଆଶା,
ତେବେ ତୁ ପାଇବୁ ବାବୁ ନିଶବଦେ ବସା ।
ବେଦାନ୍ତ ଦେହକୁ ବାବୁ କାହିଁ ପକାଇବୁ,
ଏ ଶରୀର ଛାଡ଼ିଲେ ତୁ କି ଜ୍ଞାନ ପାଇବୁ ।
ଏହିଘଟ ଥିଲେ ସବୁ ଅଛି ଜ୍ଞାନ ଧ୍ୟାନ,
ଅନୁଭବ ପଥେ ଥୁଅ ଅମନରେ ମନ ।
ଏ ଦେହ ଛାଡ଼ିଲେ କିଛି ଜ୍ଞାନ ଆଉ ନାହିଁ,
ଅଣହେତୁ ହେଲେ ବ୍ରହ୍ମ ପାଇବୁ ତୁ କାହିଁ ।
ଶବଦରେ ଥାଇ ଅନାମକୁ କର ଲଏ,
ତେବେ ସେ ତୁଟିବ ତୋର ଯୋନିଜନ୍ମ ଭଏ ।
ଆକାରରେ ଥାଇ ଅଣ ଆକାରକୁ ଭଜ,
ବୃଥା ତୃଣ ପ୍ରାୟେ ଦେହ କର ତୁ ନିର୍ଲ୍ଲଜ ।
ତୁଠର ପଥର ପ୍ରାୟେ କର ତୋର ହିଆ,
ତେବେ ଅଣରୂପ ବ୍ରହ୍ମ ତୋତେ ହେବ ଦୟା ।
ସହିବା ଲୋକଟି ଅଟେ ବଡ଼ ସମରଥ,
କହିବା ଲୋକଟି ଜାଣ ଦୁର୍ଜ୍ଜନ ପତିତ ।
ଅଳପ ବୁଦ୍ଧିଟି ଯାର ନ ପାଏ ବ୍ରହ୍ମକୁ,
ଇତର ମଣଇ ସେହି ସତ୍ୟାଦି ଧର୍ମକୁ ।
ମନେ ନ ଧରିବୁ ତୁହୋ ପରବଶ କଥା,
ଆପଣା ବୁଦ୍ଧି ଠାକୁର ପରବୁଦ୍ଧି କୁତ୍ତା ।
ବିଷୟ ସଙ୍ଗ ମେଳରେ ଧର୍ମ ନ୍ୟାୟ ଯାଇ,
ଆପେ ଅପରାଧୀ ହୋଏ ଧର୍ମକୁ ନ ପାଇ ।

ଶୁଣିଲୁ କି ନିରାକାର ଭକ୍ତିର ବିଚାର,
ପାରିବୁ ଯେମନ୍ତ ଏହି ପ୍ରକାରେ ବିହର ।

## ନିରାକାର ଉବାଚ

ନିରାକାର ବୋଇଲେ ଶୁଣିମା ଗୁରୁସାଇଁ,
ଅଣରୂପ ବ୍ରହ୍ମ କେତେ ବ୍ୟଗ୍ର ସେ ଅଟଇ ।
କେତେହେଁ ଚଞ୍ଚଳ କେତେ ନିଶ୍ଚଳ ସେ ପ୍ରଭୁ,
ଏ କଥା ବିସ୍ତାରି ମୋତେ ଫେଡ଼ି କହ ସବୁ ।
ଧରିବି ବୋଇଲେ ହସ୍ତେ ଧରା ନ ଦିଅଇ,
କି ପ୍ରକାରେ ସେ ବ୍ରହ୍ମକୁ ସମ୍ଭାଳିବି ମୁହିଁ ।
ଅବନ୍ଧା ଅଛନ୍ଦା ସେ ଯେ ଅବାରଣ ମୂର୍ତ୍ତି,
କେମନ୍ତେ ପ୍ରକାରେ ତାକୁ କରିବଇଁ ସ୍ଥିତି ।
ଏକଥା ବିସ୍ତାରି ମୋତେ କହ ବ୍ରହ୍ମବେତ୍ତା,
ଅନୁମାନ କରନ୍ତେ ଲାଗଇ ବହୁ ଚିନ୍ତା ।

## ଶ୍ରୀ ଗୁରୁଦେବ ଉବାଚ

ଶ୍ରୀଗୁରୁ ବୋଇଲେ ଶୁଣ ଠୁଳଶୂନ୍ୟବାସୀ,
ସଂଶୟ ଫିଟାଇ ତୋତେ କହିବା ପ୍ରକାଶି ।
କୋଟିଏ କାମକୁ ଜିଣି ବ୍ରହ୍ମର ପ୍ରତାପ,
ଅବକାଶ ହେଲେ ତିନି ପୁର ଦିଏ ଧାପ ।
କୋଟିଏ ଅନଳୁ ଜିଣି ଗରମ ଉଷ୍ମୁମ,
ଓଦଳ ହୋଇଲେ ନୁହେଁ ତପତ ଉଷ୍ମୁମ ।
କୋଟିଏ ପାରାରୁ ଜିଣି ତେଜ ତା ପ୍ରଚଣ୍ଡ,
ଆୟତ୍ତ ନ ରହେ ଏହୁ ରଜବୀର୍ଯ୍ୟ ପିଣ୍ଡ ।
କୋଟିଏ ଜ୍ୟୋତିରୁ ଜିଣି ରୂପ ପରକାଶ,
ସେ ବ୍ରହ୍ମ ଉଠିଲେ ମନ ପାଞ୍ଚନା ଅଶେଷ ।
କୋଟିଏ ସୂର୍ଯ୍ୟରୁ ଜିଣି ତେଜ ମହାବାହୁ,
କୋଟିଏ କାଳରୁ ଜିଣି ତେଜ ମହାରାହୁ ।
କୋଟିଏ ବୀର୍ଯ୍ୟରୁ ଜିଣି ଅଟଇ ସେ ବୀର୍ଯ୍ୟ,
ବୋହି ନେବା ଆଣିବାକୁ ନୁହଇ ସେ ସଜ ।
କୋଟିଏ ପ୍ରେମରୁ ଜିଣି ଅଟଇ ସେ ପ୍ରେମ,

ଧରି ନ ପାରିଲେ ମନ ବୁଦ୍ଧି କରେ ଭ୍ରମ ।
କୋଟିଏ ବ୍ରହ୍ମରୁ ଜିଣି ଅଟେ ବ୍ରହ୍ମସାର,
କୋଟିଏ ପ୍ରକୃତି ପରେ କରଇ ବେହାର ।
ମହାପରବତ ଦାରୁ ରଞ୍ଜାକରୁ ବେଗ,
ଅଶେଷ ବ୍ରହ୍ମାଣ୍ଡ ନିମିଷକେ କରେ ଭୋଗ ।
କୋଟିଏ ସମୁଦ୍ରଠାରୁ ପ୍ରଳୟ ହୁଅନ୍ତି,
ମେରୁଦ୍ରୁମ, ଚନ୍ଦ୍ର ସୂର୍ଯ୍ୟ କାକୁ ନ ରଖନ୍ତି ।
କୋଟିଏ ଅନ୍ଧାରୁ ଜିଣି ଅଟନ୍ତି ଯେ ନିଶି,
ଭଗତ ପଶିଲେ ତହିଁ ଲେଉଟି ନ ଆସି ।
କୋଟିଏ ଅଙ୍ଗରୁ ଜିଣି ଅଙ୍ଗ ସାରସ୍ୱତ,
ସର୍ବଠାରେ ବୁଲି ଯାଇଅଛି ପ୍ରଭୁ ହସ୍ତ ।
କୋଟିଏ ରସରୁ ଜିଣି ଅଟେ ମହାରସ,
ଭଗତ ଜନେ ଆପ୍ୟାନ କରି ହୋନ୍ତି ତୋଷ ।
କୋଟିଏ ଭାଗରୁ ଜିଣି ଅଟନ୍ତି ସେ ଗରୁ,
ତେଣୁ କରି ବୋଲନ୍ତି ଅଲେଖ ମହାମେରୁ ।
କୋଟିଏ ବେଦରୁ ଜିଣି ଅଟନ୍ତି ସେ ବେଦ,
ତା ଶୁଣି ଗାୟନ କଲେ ଛିଡ଼ଇ ସମ୍ବାଦ ।
କୋଟି କୋଟି ବିଷୟରୁ ତା ବିଷୟା ଭାରି,
ଅଳପକେ ନୁହେଁ ତାକୁ ପାଏ ବଏ କରି ।
କୋଟି କୋଟି ନାମର ଉପରେ ଅଟେ ନାମ,
କୋଟି ଯମରାଜା ପରେ ଅଟଇ ସେ ଯମ ।
କୋଟି କୋଟି ଲିଙ୍ଗ ପରେ ଅଟନ୍ତି ସେ ଲିଙ୍ଗ,
କୋଟି ସିଂହ ବପୁ ପରେ ଅଟନ୍ତି ସେ ସିଂହ ।
କୋଟି କୋଟି ବୀର ପରେ ଅଟନ୍ତି ସେ ବୀର,
କୋଟି ଧର୍ମରେ ସେ ଅଟନ୍ତି ଯେ ଧରାଧର ।
କୋଟି କୋଟି ହାକିମରେ ଅଟନ୍ତି ହୁକୁମ,
ଅଲେଖ ପ୍ରଭୁ ଏ ବ୍ରହ୍ମାଣ୍ଡରେ ମେରୁ ଖମ ।
ଶୁଣିଲୁ କି ନିରାକାର ବ୍ରହ୍ମର ବୃତାନ୍ତ,
କୋଟି ଶବଦ ବ୍ରହ୍ମର ଅଟନ୍ତି ସିଦ୍ଧାନ୍ତ ।
କୋଟି କୋଟି ଭେଦ ପରେ ଅଟନ୍ତି ସେ ଭେଦ,
ଅନାମିକା ବ୍ରହ୍ମ ସେ ଏକାନ୍ତ ଗୋଟା ପାଦ ।

ଚାରିଯୁଗେ ବଇଷ୍ଣବ ରୂପରେ ଅଛନ୍ତି,
ସେହି ଏକା ଯୋଗୀ ସର୍ବେ ଭୋଗ୍ୟାଦି ଅଟନ୍ତି ।
ସମସ୍ତେ ଏ କଳ୍ପଣା ଷରନ୍ତେ ଉତପତ୍ତି,
ଏକା ଅକଳ୍ପଣା ସ୍ୱାମୀ ଅନାଦି ଅଛନ୍ତି ।
ସେ ବ୍ରହ୍ମକୁ ଯେଉଁ ଜନ କରିବ ଭଗତି,
ଏ ବ୍ରହ୍ମାଣ୍ଡ ତରୁ ତୃଣ ପରାଏ ଦିଶନ୍ତି ।
ସେହି ଏକା ଅଲେଖଙ୍କ ଭଗତ ଅଟଇ,
ଛପ୍ପନକୋଟି ଜୀବ ପିଣ୍ଡ ବ୍ରହ୍ମାଣ୍ଡ ପାଳଇ ।
ଅଲେଖ ପୁରୁଷ ସ୍ୱାମୀ ନିଷ୍କାମ ଶରୀର,
ସକଳ ଶବଦ ସିନା ଅଟେ ଭଗତର ।
ତାରଣ ମାରଣ ତହିଁ ଥାଇ ଦୁଇ କଥା,
ଆଜ୍ଞାବଳେ ମୁକତି ସେ ଦେବାକୁ ଶକତା ।
ଶୁଣିଲୁ କି ନିରାକାର ଭକ୍ତିରସ ବାଣୀ,
ହେତୁ ଚେତା କରିଥିବୁ ଅନ୍ତର୍ଗତେ ଜାଣି ।
ଆହୁରି କଥାଏ ତୋତେ କହିବା ବୁଝାଇ,
ସାବଧାନ ହୋଇ ବାବୁ ଶୁଣ ମନ ଦେଇ ।
ସେ ବ୍ରହ୍ମର ଦର୍ଶନ ଭଜନ ସବୁ ନାସ୍ତି,
ଚିତା ପଇତା ଆବର ଗୋମୟ ବିଭୂତି ।
ଡୋର କଉପୁନୀ ଆଦି କିଛି ନାହିଁ ତହିଁ,
ନିଷ୍କଳଙ୍କ ବ୍ରହ୍ମ ସେ ଯେ କଳଙ୍କ ନଥାଇ ।
ଜଟାଭାର ବର୍ଣ୍ଣ ମୁଦ୍ରା କାହିଁ ନାହିଁ କିଛି,
ନିର୍ମଳ ବ୍ରହ୍ମ ସ୍ୱରୂପ କିଛି ନ ଲାଗୁଛି ।
ନିର୍ମଳ ବ୍ରହ୍ମ ଶରୀର ପରିପୂର୍ଣ୍ଣ ଅଙ୍ଗ,
ଏକାନ୍ତେ ଅଛନ୍ତି ତାଙ୍କ କେହି ନାହିଁ ସଙ୍ଗ ।
ଡୋର ଆଡ଼ବନ୍ଧ ସେହୁ ଲଗାଇବ କାହିଁ,
ସଦା ନିଦାବ୍ରହ୍ମ ତାଙ୍କ କଟି ଅଣ୍ଟା ନାହିଁ ।
କଷା କଉପୁନୀ ସେ ଯେ କି କରିବ ବୋହି,
ନିଆମିଷା ଅଙ୍ଗ ଯାର ସୋନିଅଣ୍ଡ ନାହିଁ ।
ଦ୍ୱାର ଫିଟିଥିଲେ ସିନା ଲାଗିବ କବାଟ,
କିସ କରିବ କୌପୁନୀ ଯାର ନାହିଁ ବାଟ ।
ମୁଦ୍ରା କାହିଁରେ ଦେବ ଶ୍ରବଣ ଯା ନାହିଁ,

ସେ ବ୍ରହ୍ମକୁ ଏତେ କର୍ମ ଲାଗି ନ ପାରଇ ।
ବେନିସ୍ତନ ରସ ପୁଷ୍ପ ନାହିଁ ତାର ଅଙ୍ଗେ,
ରଜ ବୀର୍ଯ୍ୟ ନାହିଁ ନ ଲାଗଇ କାହା ସଙ୍ଗେ ।
ଶିର କମଳ ଯାହାର ମଥା କେଶ ନାହିଁ,
ଜଟା ବାନ୍ଧିବାକୁ ଶ୍ରଦ୍ଧା କରିବ ସେ କାହିଁ ।
ଅବ୍ୟଗତ ବ୍ରହ୍ମ ସେ ଯେ ବଚନ ନ କହେ,
କର୍ମାଦି ପଥରେ କଦାଚିତ ବଶ୍ୟ ନୋହେ ।
ଭେଖବାନା ଯେତେ ସବୁ ଆଦି ମଣ୍ଡଳରୁ,
ସବୁ କ୍ଷରିତ ହେଉଛି ମହିମା ଅଙ୍ଗରୁ ।
ଆଦି ଭୁବନରୁ ସର୍ବ ସର୍ଜନା ହେଉଛି,
ଅଲେଖକୁ ଲଗାଇଲେ ନ ଲାଗଇ କିଛି ।
ଭୋଗ ଯୋଗ ଲାଗିଅଛି ଆଦି ମନ୍ଦିରରୁ,
ସବୁ ରଚନା ହେଉଛି ଅନନ୍ତ ଗର୍ଭରୁ ।
ଯେତେଠାରୁ ଜଳଣା ରଞ୍ଜନା ହେଉଅଛି,
ତେତେ ସୀମାନ୍ତରୁ ଜଳ ପବନ ଲାଗିଛି ।
ତହିଁ ମଧ୍ୟେ ରଜ ବୀର୍ଯ୍ୟ ସଞ୍ଚରୁଛି ପିଣ୍ଡ,
ସର୍ବ ଏ ଉତିଷ୍ଟ ଯେତେ ଭାସୁଅଛି ତୁଣ୍ଡ ।
ଶୁଣିଲୁ କି ନିରାକାର ଜ୍ଞାନର ବିଚାର,
ଏଣୁ ବୈକୁଣ୍ଠ ପଦ ହେତୁ ଚେତା ଧର ।
ଅନେକ ପ୍ରକାରେ ଭକ୍ତ କରିଗଲେ ବହି,
ହେତୁ ଘର ଗୋଚର କାହାକୁ ଜଣା ନାହିଁ ।
ହେତୁ ହେତୁ ବୋଲିବାର ସମସ୍ତେ ଜାଣନ୍ତି,
ହେତୁ ପଦକୁ ଯେ କେହି ଲଭି ନ ପାରନ୍ତି ।
ଜ୍ଞାନ ବୋଲି ଉଚ୍ଚାର କରନ୍ତି ସର୍ବ ମୁଖେ,
ତାହା ନ ଜାଣନ୍ତି କେହି ମିଳେ କେତେ ଦୁଃଖେ ।
ଭଗତି ବୋଲିବା କଥା ସମସ୍ତେ କହନ୍ତି,
ଭାବି କରି ବ୍ରହ୍ମେ ଲୀନ ହୋଇ ନ ପାରନ୍ତି ।
ବୁଦ୍ଧି ବୋଲିବାର କଥା ପାଞ୍ଚୁଛନ୍ତି ସର୍ବେ,
ନ ଜାଣନ୍ତି ବିଚାର ଲାଗିଛି କେତେ ମାର୍ଗେ ।
ଧର୍ମ ବୋଲିବାର କଥା ସମସ୍ତେ ଜାଣନ୍ତି,
ନ ବୁଝନ୍ତି କି ପ୍ରକାରେ ରହିଛି ଧରତୀ ।

ଛପ୍ପନକୋଟି ଜୀବବୋଲି ଶାସ୍ତ୍ରେ ଅଛି କହି,
କେତେ କୋଟି ଜାତ ହେଲା କରେ ଲେଖା ଯାଇ ।
ଅଲେଖ ପୁରୁଷ ନିର୍ଭା କରିଛନ୍ତି ସବୁ,
ସବୁଙ୍କର ଜୀବରେ ଅଟନ୍ତି ମହାପ୍ରଭୁ ।
ମହାନିତ୍ୟଠାରୁ ଆସୁଅଛନ୍ତି ଉତୁରି,
ଠୁଳ ଶୂନ୍ୟରୁ ପଡ଼ିଲେ ହେତୁକୁ ପାସୋରି ।
ଠୁଳ ଶୂନ୍ୟଠାରୁ ହେଉଅଛି କ୍ଷରାକ୍ଷର,
ତଳକୁ ଲାଗି ଆସିଛି ଅଶେଷ ପ୍ରକାର ।
ଠୁଳ ଶୂନ୍ୟଠାରୁ ସବୁ ହେଉଛି ବିଖ୍ୟାତ,
ଉପରକୁ ମହାନିତ୍ୟ ହୋଇଛି ଉଦିତ ।
ଠୁଳଶୂନ୍ୟ ଯାଏ ବାବୁ ଅଛି ଚାରିବେଦ,
ତହିଁ ଉପରକୁ ଆଉ ନ ଚଳଇ ପାଦ ।
ଠୁଳ ଶୂନ୍ୟଠାରୁ ବୃତି ଯୁଗଳ ଲାଗିଛି,
ଏକୋଇଶ ପୁର ଆଦି ଯନ୍ତ୍ରିତ ହୋଇଛି ।
ଅଦ୍ୟାପି ବ୍ୟକ୍ତିମାନଙ୍କୁ ପଚାରିବୁ ତୁହି,
ଠୁଳଶୂନ୍ୟ ଉପରକୁ ନ ପାରିବେ କହି ।
ଅନେକ ପ୍ରକାରେ ଶାସ୍ତ୍ର ପଥରେ କହିବେ,
ଉପରକୁ ପଚାରିଲେ ତୁଚ୍ଛଟା ବୋଲିବେ ।
ନର ଦେବ ଅସୁରଏ କି ପାଇବେ ଭେଦ,
ଜ୍ଞାନକୁ ଜାଣିବେ ଯାହା ତାକୁଅଛି ପଦ ।
ତେଣୁକରି ବେଦକୁ ମଦ୍ୟପି ବୋଲି କହି
ବହୁତ ଶାସ୍ତ୍ର ପଢ଼ିଲେ ଚିତ୍ତ ଭ୍ରମ ହୋଇ ।
ଯେଉଁରୂପେ ମଦୁଆ ଚଢ଼ାଇ ଥାଇ ନିଶା,
ମୁଖେ ଭାଷୁଥାଇ ନାନା ପରପଞ୍ଚ ଭାଷା ।
ସେହି ରୂପେ ଶାସ୍ତ୍ରପଢ଼ା ଲୋକଙ୍କ ବେଭାର,
ସେ କାହିଁ ପାଇବେ ନିଜ ବ୍ରହ୍ମର ବିଚାର ।
ବେଦ ଯେତେ ବାଟେ ନେଲା ତେତେ ବାଟେ ଗଲେ,
କ୍ରିୟା କର୍ମରେ ସମସ୍ତେ ଧନ୍ଦି ହୋଇ ମଲେ ।
ଉଜାଡ଼ ହୋଇ ଯାଉଛି ଷୋଳପୁରୀ ଘର,
ଫଟା କୁଡ଼ିଆରେ ଛାପୁଛନ୍ତି ଭଙ୍ଗାବାଡ଼ ।
ଏକୋଇଶ ପୁର ସବୁ ବେଦର ବୋଲଣା,

କ୍ରିୟା କର୍ମେ ସମସ୍ତଙ୍କୁ କରିଅଛି ବଣା ।
ବେଦର କର୍ମ ରହିଛି ମହାନିତ୍ୟ ଭୂଇଁ,
ବେଦ ଜନ୍ମିଅଛି ତହୁଁ ନ ଜାଣଇ ସେହି ।
ଶୁଣିଲୁ କି ନିରାକାର ଭେଦର ମହିମା,
କଷଣାରେ ବୁଡ଼ି ରହିଛନ୍ତି ହର ବ୍ରହ୍ମା ।
ଶ୍ରୀଗୁରୁ ବୋଇଲେ ବାବୁ ସବୁ କଥା ଛାଡ଼,
ଅଲେଖ ମହିମାଠାରୁ କେହି ନାହିଁ ବଡ଼ ।
ଏ ସଂସାରେ ଯେମନ୍ତ ତୁ ନର ଦେହ ପାଉ,
ଦିନେ ହେଲେ ଅଲେଖ ମହିମା ଭଜିଥାଉ ।
ଅଲେଖ ମହିମା ନାମ ମୁଖେ ନୋହେ କହି,
ଗୋଟେ ମୁଣ୍ଡିଆରେ କୋଟି ପାତକ ହରଇ ।
ମହାନିତ୍ୟପୁର ସେହୁ ବହୁତ ଆକଟ,
ଖୋଲ ଦ୍ୱାରଯାକ ସବୁ ପଡ଼ିଛି କବାଟ ।
ଅଦୃଷ୍ଟ ଭୁବନ ସେ ଯେ ନେତ୍ରେ ଚାହିଁ ନୋହେ,
ଅବ୍ୟକତ ମହିମା ମୁଖରେ କହି ନୋହେ ।
ନିରାକାର ଜଣାନନ୍ଦ ଦୁହିଁଙ୍କ ସମ୍ବାଦ,
ଗୁରୁସେବା କଲା ଲୋକ ବୁଝିବେ ଏ ଭେଦ ।
ସାଧୁ ସୁଜ୍ଞଜନେ ମୋର ନ ଧରିବ ଦୋଷ,
ଅଲେଖ ମହିମାଙ୍କର ଅଟଇ ମୁଁ ଶିଷ୍ୟ ।
ଏ କଳିଯୁଗରେ ଜନ୍ମ ହୋଇଅଛି ବାବୁ,
ପାପ ପୁଣ୍ୟ କଥା ମୋର ଜାଣନ୍ତି ସେ ପ୍ରଭୁ ।
ବ୍ରହ୍ମ-ନିରୂପଣ ଗୀତା-ପ୍ରବନ୍ଧ ପ୍ରକାଶ
ଅଲେଖ ପ୍ରଭୁଙ୍କୁ ଧାୟି ଭଣେ ଭୀମ ଦାସ ।

ଇତିଶ୍ରୀ ବ୍ରହ୍ମନିରୂପଣ ଗୀତା, ସୁଜନଜନ ହିତୀ
ଶ୍ରୀଗୁରୁଶିଷ୍ୟ ସମ୍ବାଦେ, ଅର୍ଥଭେଦାଭେଦ କଥନେ,
ମହାନିତ୍ୟ ଅଲେଖ ଭୁବନ ବର୍ଣ୍ଣନେ ଆଗମ ନିଗମ
ବିଚାରଣେ ନାମ ଚତୁର୍ଦ୍ଦଶୋଽଧ୍ୟାୟ ।

ଠଠ

